# ଆତ୍ମଦର୍ଶନରେ
# ବିଶ୍ୱଚିତ୍ର କଳ୍ପନା

ସ୍ୱପ୍ନେଶ୍ୱର ପାଣିଗ୍ରାହୀ



ପ୍ରକାଶକ—

**କାଳନ୍ଦୀ ଚରଣ ପାଣିଗ୍ରାହୀ**

"ସ୍ୱପ୍ନପୁଷ୍ପ," ପୀଠାପୁର, କଟକ-୧



ପ୍ରଥମ ମୁଦ୍ରଣ

୧୯୬୯



ମୂଲ୍ୟ—ବୋର୍ଡ଼ ବନ୍ଧେଇ : [redacted] ଟ 40/-

ସାଧା ବନ୍ଧେଇ : [redacted]

## କୃତଜ୍ଞତା

ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ଆନୁକୂଲ୍ୟରେ 'ଆତ୍ମଦର୍ଶନରେ **ବିଶ୍ୱଚିନ୍ତ-କଳ୍ପନା**' ଗ୍ରନ୍ଥଟି ପ୍ରକାଶିତ ହୋଇଥିବାରୁ, ପୁଣି ଅବସରପ୍ରାପ୍ତ ପୂଜ୍ୟ ସୁବିଜ୍ଞ **ଦର୍ଶନଶାସ୍ତ୍ର** ଅଧ୍ୟାପକ ଶ୍ରୀ ବିପିନ ବିହାରୀ ବସୁ ଗ୍ରନ୍ଥର ମୁଖବନ୍ଧ ଲେଖିଥିବାରୁ ତଥା ସାହିତ୍ୟିକ ପରମ ଶ୍ରଦ୍ଧାସ୍ପଦ ଶ୍ରୀ ରାମକୃଷ୍ଣ ନନ୍ଦ ପ୍ରୁଫ୍ ସଂଶୋଧନ ଓ ସୁପରିଚିତ ଶିଳ୍ପୀ ଶ୍ରୀ ଦାଶରଥି ପ୍ରସାଦ ଦାସ ପ୍ରଚ୍ଛଦପଟ ଅଙ୍କନ କରିଥିବାରୁ ମୁଁ ସେମାନଙ୍କ ନିକଟରେ ଚିରର କୃତଜ୍ଞତା-ପାଶରେ ଆବଦ୍ଧ ରହିଲି ।

କଟକ
ତା ୧୪ । ୯ । ୧୯୬୯

କାଳନ୍ଦୀଚରଣ ପାଣିଗ୍ରାହୀ



*Swapneshwar Panigrahi*

ଜନ୍ମ—ମାଘ ଶୁକ୍ଳ ପଞ୍ଚମୀ
ଭୋଗ ଷଷ୍ଠୀ ମଙ୍ଗଳବାର
ଇଂ ତା ୧୪-୨-୧୮୬୦

ତିରୋଧାନ—ଆଷାଢ଼ କୃଷ୍ଣ ଦଶମୀ
ଭୋଗ ଏକାଦଶୀ ବୁଧବାର
ଇଂ ତା ୨୮-୭-୧୯୩୫

# ସ୍ମୃତିତର୍ପଣ

ବିଶ୍ୱ-ଚିତ୍ରପଟରେ ଅସୀମ ଆଲୋକ-ଛାୟା ପରି ଅଦ୍ଭୁତ ଅକଳନ ରୂପ-ରଙ୍ଗ-ରସ-ସ୍ପର୍ଶ-ଛନ୍ଦ-ଗନ୍ଧମୟ ଜୀବନ-ମୃତ୍ୟୁର ଅବିରାମ ଧାରା ଅହରହ ପ୍ରବାହିତ । ଆରମ୍ଭ ତା'ର କେଉଁଠାରୁ ପୁଣି କାହିଁ ତା'ର ପରିସମାପ୍ତି ! ଆଦିଅନ୍ତହୀନ ଅସଂଖ୍ୟ ନବ ନବ ଧାରା ମୁହୂର୍ତ୍ତ ମୁହୂର୍ତ୍ତ ହୁଏ ପ୍ରବର୍ତ୍ତନ । ଅସୁମାରି ଜନ୍ମ-ମୃତ୍ୟୁ ହୁଏ ଗୋଟିଏ ଛନ୍ଦରେ ଗ୍ରଥିତ । ଚିର ବିଚିତ୍ର ରୂପାୟନ ତା'ର ସୃଷ୍ଟି କରେ ଅଗଣିତ ବସ୍ତୁପୁଞ୍ଜ । ପ୍ରତି ମୁହୂର୍ତ୍ତରେ ନୂତନ ହୁଏ ପୁରାତନ । ଦୃଶ୍ୟ ହୁଏ ଅଦୃଶ୍ୟ । ସ୍ମୃତି ହଜିଯାଏ ବିସ୍ମୃତିର ଅତଳ ଗହ୍ୱରରେ । ଅବଶେଷରେ ରହିଯାଏ ଅନ୍ତହୀନ ଅନୁଭୂତିର ଏକମାତ୍ର ବାସ୍ତବତା—ଅହଂକାର ! ଏକମାତ୍ର ଚିନ୍ତା ଓ କଳ୍ପନା—ଗୋଟିଏ ଏକାକ୍ଷର ଶବ୍ଦ—'ମୁଁ' !

"ଆତ୍ମଦର୍ଶନରେ ବିଶ୍ୱଚିତ୍ର କଳ୍ପନା"ର ରୂପକାରଙ୍କ ସହିତ ମୋର ପିତାପୁତ୍ରର ସମ୍ପର୍କ ମୋତେ ମଧ୍ୟ ଏହିପରି ଦର୍ଶନ ଓ କଳ୍ପନାର ଅଭେଦ୍ୟ ଜାଲ ଭିତରେ, ସ୍ୱପ୍ନ ଓ ବାସ୍ତବତାର ଅସମ୍ଭବ ଧନ୍ଦା ଭିତରେ ନିର୍ମମଭାବରେ ନିକ୍ଷେପ କରିଛି । ପଚିଶ ବର୍ଷରୁ ଊର୍ଦ୍ଧ୍ୱକାଳ ହେଲା ସେ ମୋ ଦର୍ଶନର ଅଗୋଚର ହୋଇଛନ୍ତି । ସେଥି ସଙ୍ଗେ ମୋର ସ୍ମୃତିପଟରୁ ଅନ୍ତର୍ହିତ ହୋଇଛି ତାହାଙ୍କ ଜୀବନଚରିତର ଅନେକ ବାସ୍ତବ ଚିତ୍ର । ପୁଣି ତାହା ଆଶ୍ଚର୍ଯ୍ୟ ରୂପେ ପରିଣତ ହୋଇଛି କଳ୍ପନାରେ । କଳ୍ପନା ଓ ଦର୍ଶନର ଦ୍ୱନ୍ଦ୍ୱ ଭିତରୁ ବିସ୍ମୃତିର ଅନ୍ତରାଳରେ ଯେତିକି ଆଲୋକରଶ୍ମି ଆଜ ଦୃଷ୍ଟିରେ ପଡ଼େ, ତାହାର ମଧ୍ୟରୁ କିଞ୍ଚିତ୍ ଏଠାରେ ଉଲ୍ଲେଖ କରିବା ମୋର କର୍ତ୍ତବ୍ୟ ।

"ଆତ୍ମଦର୍ଶନରେ ବିଶ୍ୱଚିତ୍ର କଳ୍ପନା"ର ଗ୍ରନ୍ଥକାର ମୋହର ପୂଜନୀୟ ପିତୃଦେବ ସ୍ୱର୍ଗୀୟ ଶ୍ରୀ ସ୍ୱପ୍ନେଶ୍ୱର ପାଣିଗ୍ରାହୀ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଜନ୍ମଲାଭ କରନ୍ତି ମାଘ ଶୁକ୍ଳ ପଞ୍ଚମୀ ଭୋଗ ଷଷ୍ଠୀ ତିଥିରେ ୧୮୭୦ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସ ୧୪ ତାରିଖରେ । ଭୁବନେଶ୍ୱରଠାରୁ ପୂର୍ବ ଦିଗରେ ଆଠ ମାଇଲ ଦୂରରେ ଅବସ୍ଥିତ ବିଶ୍ୱନାଥପୁର ଗ୍ରାମଟି ଥିଲା ତାଙ୍କର ଜନ୍ମସ୍ଥାନ । ତାଙ୍କର ପିତାମହ ଶ୍ରୀନିବାସ ପାଣିଗ୍ରାହୀ ଏହି ଗ୍ରାମର ମଧ୍ୟସ୍ୱତ୍ତ୍ୱାଧିକାରୀ ମକଦ୍ଦମ ଥିଲେ ଓ ଗ୍ରାମରେ ଦେବମନ୍ଦିର ନିର୍ମାଣ, ସେବା ପୂଜାଦି ଗ୍ରାମସଂଗଠନ କରିଥିଲେ । ଶ୍ରୀନିବାସଙ୍କର ଦୁଇ ପୁତ୍ର ଥିଲେ—ନରୋତ୍ତମ ଓ ମାଳାଦ୍ରି ।

ନରୋତ୍ତମଙ୍କର ଏକମାତ୍ର ପୁତ୍ର ସ୍ୱପ୍ନେଶ୍ୱର ସର୍ବପ୍ରଥମେ ସେହି ଗ୍ରାମଟିର ଇଂରାଜୀ ଶିକ୍ଷିତ ବ୍ୟକ୍ତି ଥିଲେ । ପୁରୀ ଓ କଟକରେ ଶିକ୍ଷାଲାଭ କରି ୧୮୮୦ ଖ୍ରୀଷ୍ଟାବ୍ଦରେ ସ୍ୱପ୍ନେଶ୍ୱର ମ୍ୟାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ତାହା ପରେ ସେ ପୁରୀ କଚେରୀରେ ଆଇନ ବ୍ୟବସାୟ ଆରମ୍ଭ କରନ୍ତି । ତାଙ୍କର ଏକମାତ୍ର ଜ୍ୟେଷ୍ଠା ଭଗିନୀ ସୁନାମଣିଙ୍କର କୁଶଭଦ୍ରା ନଦୀ ନିକଟରେ ଅବସ୍ଥିତ ଉପର-ସାହି ଗ୍ରାମର 'ନନ୍ଦ' ଉପାଧିଧାରୀ ବ୍ରାହ୍ମଣ ପରିବାରରେ ବିବାହ ହୋଇଥିଲା ।

ସୁନାମଣିଙ୍କର ଦୁଇଟି ପୁତ୍ରସନ୍ତାନ ଥିଲେ — ୰ ମଧୁସୂଦନ ଓ ୰ ଭୁବନାନନ୍ଦ । ପିତୃଦେବ ବିବାହ କରନ୍ତି ତାଙ୍କର ଜନ୍ମସ୍ଥାନ ବିଶ୍ୱନାଥପୁର ଗ୍ରାମର ୰ ମୃତ୍ୟୁଞ୍ଜୟ ଶତପଥୀଙ୍କ କନ୍ୟା ୰ ସରସ୍ୱତୀଙ୍କୁ । ସରସ୍ୱତୀଙ୍କ ଗର୍ଭଜାତ ସନ୍ତାନମାନଙ୍କ ମଧ୍ୟରୁ ଆମ୍ଭେମାନେ ଥିଲୁଁ ତିନି ଭାଇ ଓ ତିନି ଭଉଣୀ । ସେହି ଛଅ ଜଣଙ୍କ ମଧ୍ୟରୁ ଆଜି ମାତ୍ର ଜୀବିତ ରହିଛନ୍ତି ଗୋଟିଏ ଭଉଣୀ ଓ ଏହି ଲେଖକ ।

ଶୈଶବରେ ପିତୃକୋଡ଼ରେ ଆଶ୍ରୟ ନେବାର ଏକାଧିକ ଘଟଣା ମୋର ମନେ ଅଛି । ବାପାଙ୍କଠାରୁ ପ୍ରଥମ (First Book) ଇଂରାଜୀ ବହି ପଢ଼ି ଇଂରାଜୀ ଭାଷା ମଧ୍ୟ ଶିକ୍ଷା କରିଛି । ଆହୁରି ମଧ୍ୟ ଶୁଣିଛି, ଆଧୁନିକ ଶିକ୍ଷାପଦ୍ଧତି ଉପରେ ତାଙ୍କର କଠୋର ସମାଲୋଚନା । ପ୍ରଚଳିତ ପଦ୍ଧତିକୁ ସେ ସର୍ବଦା ଏକ ବିଜାତୀୟ ଓ ଭାରତୀୟ ସଂସ୍କୃତିର ବୈରୀପନ୍ଥୀ ବୋଲି ମତ ପୋଷଣ କରୁଥିଲେ । ପୁରୀରେ ରହି ସେ ଆଇନ ବ୍ୟବସାୟ କରୁଥାନ୍ତି ଓ ମଝି ମଝି ଗ୍ରାମକୁ ଆସନ୍ତି । ଗ୍ରାମରେ ଦିନେ କି ଦୁଇ ଦିନ ରହି ପୁଣି ପୁରୀ ଫେରିଯାଆନ୍ତି । ସେହି ଦିନେ ଦୁଇ ଦିନ ଭିତରେ ତାଙ୍କର ସ୍ନେହ ଲାଭ କରିବାର ସୁଯୋଗ ମୋତେ ଶୈଶବ ଜୀବନରେ ମିଳିଥାଏ । ଗ୍ରାମ ଭିତରେ ଆମର କୁଟୁମ୍ବ କିମ୍ବା ଅନ୍ୟମାନଙ୍କଠାରୁ ବାପାଙ୍କର ସ୍ୱତନ୍ତ୍ରତା ଲକ୍ଷଣୀୟ ଥିଲା । କାରଣ ସେ ଥିଲେ ଗ୍ରାମର ଉଚ୍ଚ ଶିକ୍ଷିତ ଚରିତ୍ରବାନ୍ ବ୍ୟକ୍ତି, ଧନୀ-ଦରିଦ୍ରର ଭେଦହୀନ ଅଭିମାନହୀନ ଏକ ଅମାୟିକ ଚରିତ୍ର, ଅନ୍ୟାୟ ଅଧର୍ମର ପରମ ଶତ୍ରୁ ଓ ଧୀରତାର ଅବତାର ।

ମୋର ପଞ୍ଚବିଂଶ ବର୍ଷ ବୟସ ପର୍ଯ୍ୟନ୍ତ ଏହି ଭାବରେ ହିଁ ମୁଁ ତାଙ୍କୁ ଦେଖି ଆସିଛି । କ୍ୱଚିତ୍ ଯଦି କୌଣସି କାରଣରୁ ସେ କ୍ରୁଦ୍ଧ ହୁଅନ୍ତି ତାହା ମାତ୍ର ଅଳ୍ପ ସମୟ ପାଇଁ । ଗାଁ ସ୍କୁଲରେ ମୋର ବିଦ୍ୟା ଆରମ୍ଭ କରାଯାଏ । ବାପା ମୋତେ ସେତେବେଳେ ଗାଁର ପ୍ରାଥମିକ ବିଦ୍ୟାଳୟକୁ ସାଥିରେ ନେଇ ଯାଇଥା'ନ୍ତି । ପୁଣି ମଝିରେ ମଝିରେ ଗାଁକୁ ଆସିଲେ ମଧ୍ୟ ସେ ସ୍କୁଲକୁ ଯାଇ ବୁଲି ଆସନ୍ତି । ଏମିତି ଥରେ ସେ ସ୍କୁଲକୁ ଯାଇଥିଲେ, ସେତେବେଳେ ଶିକ୍ଷକ ଅନୁପସ୍ଥିତ ଥା'ନ୍ତି । ସ୍କୁଲ ରେଜିଷ୍ଟରରେ କିମ୍ବା କୌଣସି ଖାତାରେ ଶିକ୍ଷକ ମହାଶୟ "ଗୋପିନାଥ" ବୋଲି ଜଣକର ନାମ ଉଲ୍ଲେଖ କରିଥା'ନ୍ତି । 'ପ'ରେ ହ୍ରସ୍ୱଇକାର ଦେଖି ବାପା ଏକ କଠୋର ମନ୍ତବ୍ୟ ଦେଲେ ଯେ ଶିକ୍ଷକ ଏପରି ଭୁଲ ଲେଖିଛନ୍ତି କାହିଁକି ? ଶିକ୍ଷକ ଆସି

ପିଲାଙ୍କଠାରୁ ତାହା ଶୁଣିଲେ । ନିଜେ ଅପମାନିତ ବୋଧକରି ସେ ବାପାଙ୍କୁ ଯାଇ ପଚାରିଲେ ମଧ୍ୟ । କାରଣ ଗୋପୀନାଥ ହ୍ରସ୍ୱ କିମ୍ବା ଦୀର୍ଘ ହେବ ସେ ବିଷୟରେ ତାଙ୍କର ସନ୍ଦେହ ଥିଲା । ବାପା ତା'ଙ୍କୁ ବୁଝାଇଦେଲେ ଯେ ତାହା କଦାପି ହ୍ରସ୍ୱଇକାର ହୋଇ ନ ପାରେ । ସେଇପରି କବିତାରେ 'ବସିଣ', 'ହସିଣ', 'ଯାଇଣ', 'ଖାଇଣ', ଆଦି କ୍ରିୟା ପ୍ରତ୍ୟୟଗୁଡ଼ିକୁ କବିତ୍ୱର ତ୍ରୁଟି ବୋଲି ସେ ସମାଲୋଚନା କରୁଥିଲେ । ବିଦ୍ୟାଳୟ-ରେ ଶିକ୍ଷକମାନଙ୍କର ଛାତ୍ରଙ୍କ ଉପରେ ପ୍ରହାର କିମ୍ବା ଅନ୍ୟ ପ୍ରକାର କାୟିକ ଦଣ୍ଡର ମଧ୍ୟ ସେ ବିରୋଧୀ ଥିଲେ ।

ମୁଁ ଗାଁରେ ପଢ଼ୁଥିଲାବେଳେ ବାପା ମୋ ନିକଟକୁ ପ୍ରତି ସପ୍ତାହରେ ଡାକରେ ଖଣ୍ଡିଏ ସାପ୍ତାହିକ "ଉତ୍କଳ ଦୀପିକା" ନିୟମିତ ଭାବରେ ପଠାଉଥା'ନ୍ତି ଓ ଗାଁକୁ ଆସିଲେ ମୁଁ ସେ ପତ୍ରିକାରୁ କଣ ପଢ଼ିଲି, ବୁଝିଲି, ତାହା ପଚାରନ୍ତି । ଅସ୍ପଷ୍ଟ ଭାବରେ ମନେ ପଡ଼େ, ଗାଁଆକୁ ଥରେ ଜଣେ ସୁନ୍ଦର ଗୌରକାନ୍ତି ପୁରୁଷ ସବାରିରେ ବସି ଆସିଥିଲେ । ବାପା ତାଙ୍କୁ ଆମ ଘରକୁ ଡାକି ନେଇଥିଲେ । ଆମ ଘର କାନ୍ଥରେ ମୋର ବଡ଼ ଭଉଣୀ ୰ରାଧାମଣି ନାନା ରଙ୍ଗର ଫୁଲପତ୍ର ଚିତ୍ର ଆଙ୍କିଥିଲେ । ତାହା ଦେଖି ସେଇ ସମ୍ଭ୍ରାନ୍ତ ବ୍ୟକ୍ତି ଖୁବ୍ ପ୍ରଶଂସା କରନ୍ତି । ପରେ ଶୁଣିଲି, ସେହି ବ୍ୟକ୍ତି ଥିଲେ ଓଡ଼ିଶାର ଭକ୍ତକବି ମଧୁସୂଦନ ରାଓ ।

ଗାଁ'ରୁ ଆସି ମୁଁ ପୁରୀଜିଲ୍ଲା ସ୍କୁଲରେ ନାମ ଲେଖାଇଲି । ସେତେବେଳେ ମଧ୍ୟ ବାପା ମୋ ସଙ୍ଗରେ ସ୍କୁଲକୁ ଯାଇଥା'ନ୍ତି ଓ ପୁରୀଜିଲ୍ଲା ସ୍କୁଲର ହେଡ଼ମାଷ୍ଟର ଥା'ନ୍ତି ସ୍ୱର୍ଗତ ଦାଶରଥି ପାଣିଗ୍ରାହୀ । ପୁରୀରେ କେବଳ ବାପା ଓ ମୁଁ ରହୁଥାଉଁ ଗୋଟିଏ ଭଡ଼ା ଘରେ । ଘରଟି ଗୁଳ ଛପର । ସେତେବେଳେ ପୁରୀରେ ମର୍କଟମାନଙ୍କର ଉତ୍ପାତ ଅତ୍ୟନ୍ତ ଉତ୍କଟ ଥିଲା । ତାହା ଫଳରେ ଗୁଳ ଛପର ଘରଟିର ଅବସ୍ଥା ଶୋଚନୀୟ ହୋଇ ପଡ଼ିଥାଏ । ପୂର୍ବରୁ ଅବଶ୍ୟ ଦିନେ ଦୁଇ ଦିନ ପାଇଁ ମୁଁ ପୁରୀ ଯାଇ ସେହି ଘରଟିକୁ ଦେଖି ଆସିଥିଲି । ସେହି ସମୟରେ ବାପା ଇଚ୍ଛା କରିଥିଲେ, ପୁରୀରେ ଖଣ୍ଡିଏ ଘର ସହଜରେ କରି ପାରିଥା'ନ୍ତେ । କିନ୍ତୁ ଗାଁରେ ଯେବେ ଘର ଅଛି, ଆଉ କୌଣସି-ଠାରେ ଘରର ଆବଶ୍ୟକତା ସେ ଅନୁଭବ କରି ନ ଥିଲେ । ବର୍ଷା ହେଲେ ସେହି ଭଡ଼ାଘରଟି ପାଣିରେ ବୁଡ଼ିଯାଏ, ରାତିଅଧରେ ଉଠି ବିଛଣା ପତ୍ର ଗୋଟାଇ ଗୋଟିଏ କଣରେ ରଖିଦେବାକୁ ହୁଏ, ଓ ସେହି ବିଛଣା ଉପରେ ଆଉଜି ପିତାପୁତ୍ର ଦୁହେଁ ରାତିଟି କଟାଇଦେଉଁ । ଆଶ୍ଚର୍ଯ୍ୟର କଥା ଯେ, ଏହାକୁ ସେ କେବେହେଲେ ଅବସ୍ଥାର ଶୋଚନୀୟତା ବୋଲି ମନେ କରନ୍ତି ନାହିଁ । ବରଂ ପରିହାସ ଛଳରେ ବର୍ଷାରାତିର ବିବରଣୀଟି ଅନ୍ୟମାନଙ୍କୁ କହିବା ମଧ୍ୟ ତାଙ୍କର ଏକ ବିଳାସରେ ପରିଣତ ହୁଏ ।

ବାପାଙ୍କର ଗୋଟିଏ ଛୋଟ ଆଲମାରିରେ କେତେଗୁଡ଼ିଏ ବହି ରଖାଯାଇଥାଏ । ସେ ସମସ୍ତ ପ୍ରାୟ ଧର୍ମପୁସ୍ତକ । ଆଇନ ବ୍ୟବସାୟ କରୁଥିଲେ ମଧ୍ୟ ଆଇନ ବହି କିଣି

ରଖିବାର କ୍ଷମ୍ୟା ବ୍ୟବସାୟରେ ଏକନିଷ୍ଠ ହୋଇ ଲାଗି ପଡ଼ିବାର କର୍ମଠତା ତାଙ୍କଠାରେ କେବେ ମୁଁ ଲକ୍ଷ୍ୟ କରିନାହିଁ । ପ୍ରାୟ ପ୍ରତି ଶନିବାର ସନ୍ଧ୍ୟାରେ ଷ୍ଟେସନରୁ ରେଳଗାଡ଼ି ଛାଡ଼ିବା ଘଣ୍ଟାକ ପୂର୍ବରୁ ସେଠାରେ ଯାଇ ସେ ବସନ୍ତ ଓ ଗାଁରେ ରବିବାର ରାତିରେ ଶଗଡ଼ରେ ବସି ଭୁବନେଶ୍ୱର ଷ୍ଟେସନକୁ ଆସନ୍ତି ପୁରୀ ଅଭିମୁଖରେ । ପୁରୀ କଚେରୀରୁ ଏକ ଫର୍ଲଂ ଭିତରେ ରାମଚଣ୍ଡୀ ସାହିରେ ଅବସ୍ଥିତ ଘରଟିକୁ ଚାଲି ଚାଲି ଆସିବା ପାଇଁ ତାଙ୍କୁ ପ୍ରାୟ ଗୋଟିଏ ଘଣ୍ଟା ଲାଗିଯାଏ । ସେଥିଲାଗି କେହି କେହି ତାଙ୍କୁ ପରିହାସ ମଧ୍ୟ କରିଥା'ନ୍ତି । ବାପା କିନ୍ତୁ ଏତେ ବେଶି ପରିହାସପ୍ରିୟ ଥିଲେ ଯେ, ତାଙ୍କ ମୁହଁରେ ପରିହାସ କରି ଆଉ କାହାରି ପକ୍ଷେ ବଳି ପଡ଼ିବା ସମ୍ଭବପର ନ ଥିଲା । ତାଙ୍କର ଆଉ ଗୋଟିଏ ଅଭ୍ୟାସ ଥିଲା, ପୁରୀକୁ କେହି ବଡ଼ ମହାପୁରୁଷ ବା ସାଧୁ ସନ୍ନ୍ୟାସୀ ଆସିଲେ, ତାଙ୍କ ସହିତ ଯାଇ ସାକ୍ଷାତ୍ କରିବା । କୌଣସି କୌଣସି ସନ୍ନ୍ୟାସୀଙ୍କ ସହିତ ମଧ୍ୟ ତାଙ୍କର ଘନିଷ୍ଠତା ବଢ଼ିଯାଇ ଆତ୍ମୀୟତାରେ ପରିଣତ ହୋଇଥିଲା । ଏହିପରି କେତେକ ସନ୍ନ୍ୟାସୀଙ୍କ କଥା ତାଙ୍କ ମୁହଁରୁ ଶୁଣିବାର ସୁଯୋଗ ମୋର ଘଟିଛି । ଆହୁରି ମଧ୍ୟ ଶୁଣିଛି, ପୁରୀ ରାମଚଣ୍ଡୀ ସାହି ଜାଗା ପୋଖରୀରେ ସେ ବହୁତ ସମୟ ବୁଡ଼ି ପାଣି ଭିତରେ ରହିଥିବାର ପ୍ରତ୍ୟକ୍ଷଦର୍ଶୀ ବିବରଣ । ତାଙ୍କ ନିଜଠାରୁ ମଧ୍ୟ ଶୁଣିଛି ଯେ ରାତିରେ ସେ କେତେକ ସନ୍ନ୍ୟାସୀଙ୍କ ସଙ୍ଗେ ଶ୍ମଶାନଭ୍ରମଣ ଓ ଯୌଗିକ ସାଧନା କରିଥାନ୍ତି ।

ଜଣେ ନାଗା ସନ୍ନ୍ୟାସୀଙ୍କ ସହିତ ତାଙ୍କର ବହୁ କାଳ ପର୍ଯ୍ୟନ୍ତ ଏହି ଭାବରେ ସମ୍ପର୍କ ଜନ୍ମିଥାଏ । ମାତ୍ର ଗୋଟିଏ ଘଟଣାରେ ସେ ବନ୍ଧୁତା ଶିଥିଳ ହୋଇପଡ଼େ । ଘଟଣାଟି ହେଲା—ଥରେ ଦେବୀ ମନ୍ଦିରରେ ସାହିର ଲୋକମାନେ ମିଶି ଭୋଗରାଗର ବ୍ୟବସ୍ଥା କରନ୍ତି । ଶେଷରେ ପ୍ରଶ୍ନ ଉଠେ, ପୂଜା କରିବେ କିଏ ? ସନ୍ନ୍ୟାସୀ କହିଲେ, ସେ ତାହା ଦେବୀଙ୍କୁ ଉତ୍ସର୍ଗ କରିବେ କିନ୍ତୁ ବ୍ରାହ୍ମଣମାନେ ଜିଦ୍ ଧରିଲେ, ସନ୍ନ୍ୟାସୀର ସେ ଅଧିକାର ନାହିଁ—ତାହା କେବଳ ପୂଜକ ବ୍ରାହ୍ମଣଙ୍କର ।

ବିବାଦ-ନିଷ୍ପତ୍ତି ଲାଗି ମଧ୍ୟସ୍ଥ କରାଗଲା ବାପାଙ୍କୁ । ସେ ବ୍ରାହ୍ମଣଙ୍କ ସପକ୍ଷରେ ମତ ଦେବାରୁ ସନ୍ନ୍ୟାସୀ କ୍ଷୁବ୍ଧ ହୋଇ ଉଠିଲେ ଓ ସେହି ଦିନଠାରୁ ତାଙ୍କର ସବୁ ସମ୍ପର୍କ ଛିନ୍ନ ହୋଇଗଲା । କିନ୍ତୁ ଘରେ ମୋର ବଡ଼ଭାଇ ୰ହରିହରସିଂହ ଓ ପିଉସୀପୁଅ ଭାଇ ୰ଭୁବନାନନ୍ଦଙ୍କ ପ୍ରତି ସନ୍ନ୍ୟାସୀଙ୍କର ସ୍ନେହ ଦୟା ଅକ୍ଷୁଣ୍ଣ ରହିଥିଲା ।

ରଥଯାତ୍ରା ସମୟରେ ୰ଭୁବନାନନ୍ଦଙ୍କୁ ସେହି ସନ୍ନ୍ୟାସୀ ଆଶ୍ଚର୍ଯ୍ୟ ଭାବରେ ହଇଜାରୋଗରୁ ଉଦ୍ଧାର କରିଥିବା କଥା ମୁଁ ଶୁଣିଛି । ଗୋଟିଏ ଘଣ୍ଟା ଭିତରେ ତାଙ୍କୁ ମୁମୂର୍ଷୁ ଅବସ୍ଥାରୁ ଉଠାଇ ଓ ଦାଣ୍ଡରେ ଚଲାଇ ଜଣେ ସୁସ୍ଥ ଯୁବକ ଭାବରେ ସେ ଛାଡ଼ି ଦେଇଥିଲେ ।

ଉତ୍କଳମଣି ଗୋପବନ୍ଧୁଙ୍କ ଗୁରୁ ସ୍ୱର୍ଗତ ମୁକ୍ତାର ରାମଚନ୍ଦ୍ର ଦାଶ ଥିଲେ ବାପାଙ୍କର ସହକର୍ମୀ ବନ୍ଧୁ । ରାମଚନ୍ଦ୍ରଙ୍କର ସହୃଦୟତା ଓ ଦେଶପ୍ରାଣତା ସମ୍ପର୍କରେ ବାପାଙ୍କଠାରୁ କେତେ ପ୍ରଶଂସା ମୁଁ ଶୁଣିଛି । ଗୋପବନ୍ଧୁଙ୍କୁ ମଧ୍ୟ ବହୁତ ଥର ଆମ ଘରକୁ ଆସିବା ଦେଖିଛି । ଥରେ ଆମର ପିଠା ହୋଇଥାଏ ଓ ଗୋପବନ୍ଧୁ ଭୋଜନରେ ବସିଥାନ୍ତି । ମୁଁ ବୋଧହୁଏ ପରଶୁଥାଏଁ, ଗୋପବନ୍ଧୁ ମନା କରୁଥାନ୍ତି କିନ୍ତୁ ବାପା ଆଉ ଗୋଟିଏ ଗୋଟିଏ ପିଠା ଦେବାକୁ ମୋତେ କହୁଥାନ୍ତି । ସେତିକବେଳେ ଗୋପବନ୍ଧୁ ହସି ହସି ନିଜ ଜୀବନର ଗପଟିଏ କହିଲେ—

ପିଲାଦିନେ ମାଆ ତାଙ୍କର ପିଠା ପରଶିଲା ବେଳେ ଏମିତି ଜିଗର କରି କୁଆଡ଼େ କହନ୍ତି, "ଆଉ ଦି'ଖଣ୍ଡ ଖାଇଦେ, ତତେ ସାତଥର କରି ମୋ ରାଣ।" ଏମିତି ପେଟେ ପିଠା ଗିଳେଇସାରି ଶେଷକୁ ସେ ଖୀରି କଂସାଏ ଆଣି ପୁଣି ସେମିତି ଲଗାନ୍ତି ।

ଗୋପବନ୍ଧୁ ନେହୁରା ହୁଅନ୍ତି, "ମତେ ରକ୍ଷାକର ଭଲା । ଏଣିକି ମୋ ପେଟ ଫାଟିଯିବ । ମୁଁ ମରିଯିବି ସିନା । ତା'ହେଲେ କଣ ତୋର ଭଲ ହେବ ?" ଜିଭ କାମୁଡ଼ି ବୁଡ଼ୀ ବୁଝାଇ କହନ୍ତି, "କାହିଁକି ରେ ପୁଅ, ଏଡ଼େବଡ଼ କଥା କହୁଛୁ ? ବାଇଗଣ ଟୋକେଇକ ଭିତରେ ଗଡ଼ୁଣିଏ ସୋରିଷ କଣ ପଶିଯିବନି କି ?"

ସେତେବେଳେ ଯେଉଁ କଥା ଶୁଣି ଘରେ ସମସ୍ତେ ହସିଥିଲୁଁ, ଆଜି ସେ ସବୁ ମନେପକେଇ ଆଖିରେ ଲୁହ ଜକେଇ ଆସୁଛି ସୁଖ ଦୁଃଖର ପରସ୍ପର ବିରୋଧିତାକୁ ଦୂର କରିଦେଇ !

ବାପାଙ୍କ ବାଲ୍ୟବୟସର ଶିକ୍ଷକ ଥିଲେ କବି ଜୟଦେବ-ଖ୍ୟାତ କେନ୍ଦୁବିଲ୍ୱ ଗ୍ରାମ ନିକଟବର୍ତ୍ତୀ ଅଡ଼ଙ୍ଗପୁରର ସ୍ୱର୍ଗତ ପାରେଶ୍ୱର ସେନାପତି । ବାପା ଗାଁଆକୁ ଗଲେ, ସେନାପତି ମହାଶୟ ତାଙ୍କ ପାଖକୁ ଚିଠି ଲେଖି କିଛି ଚପିଟକ ଓ ନାରିକେଳ ଅର୍ଥାତ୍ ଚୁଡ଼ାନଡ଼ିଆ ମଗାଇ ପଠାନ୍ତି । ପୁଣି ତାଙ୍କ ଚିଠିଗୁଡ଼ିକ ମଧ୍ୟ ଅତି ସୁନ୍ଦର ହସ୍ତାକ୍ଷରରେ ପ୍ରାୟ କବିତାକାରେ ଲେଖାଯାଇଥାଏ । ବାପା ତାଙ୍କ ବାଲ୍ୟଗୁରୁଙ୍କ ନିର୍ଦ୍ଦେଶକୁ ଶିଶୁଭଳି ଶେଷପର୍ଯ୍ୟନ୍ତ ଶିରୋଧାର୍ଯ୍ୟ କରିଥିଲେ ।

ପ୍ରତି ଦିନ ଗାଧୋଇ ସାରି ଜପ ଓ ନୀରବରେ ଗୀତାପାଠ ଥିଲା, ପିତାଙ୍କର ନୈମିତ୍ତିକ କର୍ମ । ସେତେବେଳେ ପ୍ରାୟ ଗୋଟିଏ ଘଣ୍ଟା ସେ ନୀରବ ରହନ୍ତି । ଘରେ ମଧ୍ୟ ସମସ୍ତେ ଛୁଇଁ କପଡ଼ା ଭିନ୍ନ ହୋଇଯାନ୍ତି । ଅତି ସନ୍ତର୍ପଣରେ ଆମକୁ ଯାତାୟାତ କରିବାକୁ ହୁଏ ।

ଜ୍ୟେଷ୍ଠପୁତ୍ର ନିତ୍ୟାନନ୍ଦ ଯେଉଁ ଦିନ ଓକିଲ ହୋଇ ପୁରୀ କଚେରିରେ ଯୋଗ ଦିଅନ୍ତି, ସେଇ ଦିନଠାରୁ ବାପା ରାଣ ଦେଲା ଭଳି ନିଜେ କଚେରି ଯିବା ବନ୍ଦ କରି-ଦେଲେ । ତାଙ୍କର ଯୁକ୍ତି ହେଲା, ପୁଅ ଯେଉଁ କଚେରିରେ କାମ କଲାଣି, ବାପ ସେଠାକୁ ଯିବା ଉଚିତ ନୁହେଁ । ଗୋଟିଏ ପକ୍ଷ ଆସି ପୁଅକୁ ମକଦମା ଦେଲେ ଅନ୍ୟ ପକ୍ଷ

ଯେବେ ବାପକୁ ମକଦମା ହଏ, ଆଇନ ବ୍ୟବସାୟରେ ତାହା ତ ମନା କରିବା ଅନ୍ୟାୟ; କିନ୍ତୁ ପ୍ରକୃତ ନ୍ୟାୟ ପାଇଁ ସେଠାରେ ସ୍ଥାନ ବନ୍ଦ ହୋଇଯିବ ବୋଲି ତାଙ୍କର ଧାରଣା ଥିଲା ।

ଆଇନ ବ୍ୟବସାୟ ଛାଡ଼ି ସେ ପ୍ରାୟ ୨୦ ବର୍ଷ ଜୀବିତ ରହିଲେ । ସେହି ସମୟ ମଧ୍ୟରେହିଁ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଚୂଡ଼ାନ୍ତ ପର୍ଯ୍ୟାୟର ଆରମ୍ଭ ହୁଏ । ମନ ପ୍ରାଣ ଓ ସର୍ବାନ୍ତଃକରଣରେ ବାପା ମୁକ୍ତିସଂଗ୍ରାମକୁ ସ୍ୱାଗତ କଲେ । ଗାନ୍ଧୀ, ଗୋପବନ୍ଧୁ ଓ ଭାରତୀୟ ଅନ୍ୟାନ୍ୟ ନେତାମାନଙ୍କ ତ୍ୟାଗ-ଆଦର୍ଶ ପ୍ରତି ସେ ପ୍ରଶଂସାମୁଖର ହୋଇ-ପଡ଼ିଲେ । ଅହିଂସା-ଅସହଯୋଗ ଆନ୍ଦୋଳନର ସଭାଗୁଡ଼ିକରେ ଯୋଗ ଦେବା ତାଙ୍କର ପ୍ରାୟ ନିତ୍ୟନୈମିତ୍ତିକ କାର୍ଯ୍ୟ ହୋଇପଡ଼ିଥାଏ ।

ଗୋଟିଏ ଘଟଣା । ଆମ ଗାଁରେ ଚୈତ୍ରପୂର୍ଣ୍ଣିମା ଦିନ ପ୍ରତି ବର୍ଷ ଭଗବତ-ମେଳନ ହୁଏ । ସେହି ମେଳନରେ ଗୋଟିଏ ସଭାର ଉଦ୍ୟମ କରାଯାଉଥାଏ ଓ ବାପା ହୋଇଥାନ୍ତି ସଭାପତି । ସଭାପତି ଅଭିଭାଷଣରେ ଶ୍ରୀମଦ୍ ଭଗବତ୍‌ଗୀତାରେ ଅର୍ଜୁନଙ୍କ ବିଶ୍ୱରୂପ-ଦର୍ଶନ ଦୃଷ୍ଟାନ୍ତ ଦେଇ ସେ ଅହିଂସ ଅସହଯୋଗ ଆନ୍ଦୋଳନର ଏପରି ଏକ ପ୍ରାଞ୍ଜଳ ବ୍ୟାଖ୍ୟା କରିଥିଲେ ଯେ, ସଭାରେ ଉପସ୍ଥିତ ନିରକ୍ଷର ଲୋକ ସୁଦ୍ଧା ତାହା ବୁଝିପାରି ପ୍ରଶଂସାମୁଖର ହୋଇଥିଲେ । ସେ କହିଥିଲେ, ଆଜି ଆମର କୋଟି କୋଟି ଲୋକ ରହୁଥିବା ଆର୍ଯ୍ୟାବର୍ତ୍ତ ଏହି ପୁଣ୍ୟଭୂମି ଭାରତବର୍ଷରେ ସେହି ବିଶ୍ୱରୂପ ଦର୍ଶନ ମିଳୁଛି । କୋଟି କୋଟି ସୁପ୍ତ ଜନତା ଆଜି ଜାଗି ଉଠିଛନ୍ତି ! ସମସ୍ତେ ଦେଖୁଛନ୍ତି, ସେଇ ବିଶ୍ୱରୂପ ।

ରାଜନୀତିକୁ ସେ ଧର୍ମର ଗୋଟିଏ ପ୍ରଧାନ ଅଙ୍ଗ ଭାବରେହିଁ ବିଚାର କରୁଥିଲେ । "ହିନ୍ଦୁଧର୍ମ" କଥାଟି ସମ୍ପୂର୍ଣ୍ଣ ଭୁଲ ବୋଲି ତାଙ୍କର ମତ ଥିଲା । "ଆର୍ଯ୍ୟଧର୍ମ" କିମ୍ବା "ସନାତନ ଧର୍ମ" କହିବା ମଧ୍ୟ ସମ୍ପୂର୍ଣ୍ଣ ଠିକ୍ ନୁହେଁ । ଏସବୁ ହେଲା ପରବର୍ତ୍ତୀ ଯୁଗର ନାମକରଣ ମାତ୍ର । ପ୍ରକୃତରେ "ଧର୍ମ"ହିଁ ହେଲା ଏକମାତ୍ର ଶବ୍ଦ, ଯାହା ଶାସ୍ତ୍ର ପୁରାଣରେ ମିଳିଥାଏ । ସେହିପରି "ଶୈବଧର୍ମ" "ବୈଷ୍ଣବ-ଧର୍ମ" କିମ୍ବା "ବ୍ରାହ୍ମ-ଧର୍ମ" ପ୍ରୟୋଗ-ଗୁଡ଼ିକର ଯାଥାର୍ଥ୍ୟ ନ ଥିବା କଥା ସେ କହିଥାନ୍ତି ।

ଆଧୁନିକ ସାହିତ୍ୟରେ ସେ ରାଧାନାଥ, ମଧୁସୂଦନ ଓ ଫକୀର ମୋହନଙ୍କ ରଚନାରେ ଭାଷା, ଭାବ ଓ ବିଷୟଗତ ତ୍ରୁଟିମାନ ପ୍ରଦର୍ଶନ କରିଥାନ୍ତି । ଧର୍ମ ଓ ନୈତିକତା ଉପରେ ସାହିତ୍ୟ ପ୍ରତିଷ୍ଠିତ ହେବାହିଁ ପ୍ରଥମେ ଆବଶ୍ୟକ ବୋଲି ତାଙ୍କର ମତ ଥିଲା । ମହାପୁରୁଷମାନଙ୍କ ଛବିକୁ ଚାହିଁ ସେ କେତେଗୁଡ଼ିଏ ସ୍ମରଣୀୟ ମତ ପ୍ରକାଶ କରୁଥିଲେ । ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପ୍ରତିକୃତି ଦେଖି ସେ କହୁଥିଲେ ଯେ ତାଙ୍କ ଲଲାଟ ପରି ସୁପ୍ରଶସ୍ତ ଲଲାଟ ଅତି ଅଳ୍ପ ଦେଖା ଯାଇଥାଏ । ସେହିପରି ଶ୍ରୀରାମକୃଷ୍ଣ ପରମହଂସଙ୍କ ଓଷ୍ଠଦ୍ୱୟରେ ସେ ଯୋଗୀ ମହାପୁରୁଷର ଲକ୍ଷଣ ଲକ୍ଷ୍ୟ କରୁଥିଲେ ।

ଜୀବନବ୍ୟାପୀ କେବେହେଲେ ସେ ଓଡ଼ିଶାର ସୀମା ଅତିକ୍ରମ କରି ନ ଥିଲେ। ତାଙ୍କର ଜ୍ୟେଷ୍ଠପୁତ୍ର ଏଦୁବ୍ୟସିଂହ ମୟୂରଭଞ୍ଜ ଷ୍ଟେଟ୍ ଓଡ଼ିଶା ହୋଇଯିବା ପରେ ସେ ରେଳପଥରେ ପ୍ରଥମେ ମହାନଦୀ ଅତିକ୍ରମ କରି ବାରିପଦାରେ ଅବସ୍ଥାନ କଲେ। ସେଠାରେ ଥରେ ଜଣେ ତାଙ୍କର ଆତ୍ମୀୟ କଟକ ପୁରୀ ପ୍ରଭୃତି ଅଞ୍ଚଳର ଲୋକେ ଭଦ୍ରଭାବରେ ଲୁଗା ପିନ୍ଧି ଜାଣନ୍ତି ନାହିଁ ବୋଲି ଆକ୍ଷେପ କରନ୍ତି। ତାଙ୍କୁ ଉତ୍ତର ଦେଇ ସହାସ୍ୟରେ ବାପା କହିଥିଲେ, "ଯେଉଁ ସବୁ ଅଞ୍ଚଳ ଲୋକେ ଆଦୌ ଲୁଗା ପିନ୍ଧୁ ନ ଥିଲେ, ସେମାନେ ସିନା ନୂଆ କରି ଲୁଗାପିନ୍ଧା ଶିଖିଥିବାରୁ ଭୁଲ ତ୍ରୁଟି ଲକ୍ଷ୍ୟ କରିବେ, କିନ୍ତୁ ଯେଉଁମାନେ ପୁରୁଷାନୁକ୍ରମେ ଲୁଗା ପିନ୍ଧି ଆସିଲେଣି, ତାଙ୍କର ସେଥିପ୍ରତି ଭ୍ରୂକ୍ଷେପ କରିବା ଅବକାଶ କାହିଁ ?"

ଜାତ୍ୟାଭିମାନ, ଦେଶାଭିମାନ, ଆତ୍ମସମ୍ମାନ-ଜ୍ଞାନ, ସମୁନ୍ନତ ରୁଚି ଓ ବିଚାର ସଙ୍ଗେ ଜାତିଧର୍ମ ନିର୍ବିଶେଷରେ ଉଦାର ମତ ପୋଷଣ ଥିଲା ତାଙ୍କ ଚରିତ୍ରର ବିଶେଷତ୍ୱ। ଜୀବନର ୩୫ ବର୍ଷ ବୟସ ପର୍ଯ୍ୟନ୍ତ ଅଧିକାଂଶ ସମୟ ତାଙ୍କ ସାନ୍ନିଧ୍ୟରେ ରହି କେବେ-ହେଲେ ତାଙ୍କୁ ମୁଁ ଧୈର୍ଯ୍ୟଚ୍ୟୁତ ହେବା କିମ୍ବା କ୍ରୋଧ ବା କ୍ରନ୍ଦନ କରିବାର ଦେଖି ନାହିଁ।

ଗୋଟିଏ ଥର ମାତ୍ର ତାଙ୍କୁ କାନ୍ଦିବା ଲକ୍ଷ୍ୟ କରିଥିଲି। ମୋର ବୟସ ବୋଧ-ହୁଏ ତେର ଚଉଦକୁ ଟପି ନ ଥାଏ। ମୋର ମଝିଆଁ ନାନୀ ଯୌବନରେ ସନ୍ତାନହୀନା ହୋଇ ବିଧବା ହେଲେ। ଘରେ ବୋଉ, ଭାଇନା ଓ ଆଉ ସମସ୍ତେ ବିକଳ ହୋଇ କାନ୍ଦୁଥାନ୍ତି। ଅଥଚ ବାପାଙ୍କ ଆଖିରୁ ଲୁହ ବୋହିବା ବଦଳରେ ସେ ଆଉ ସମସ୍ତଙ୍କୁ ବୁଝାଉଥାନ୍ତି। ଦ୍ୱାଦଶାହ ପରେ ମୁଁ ଶଗଡ଼ ନେଇ ନାନୀକୁ ଆଣିବାପାଇଁ ଗଲି। ଶଗଡ଼ରେ ବସି ଘରକୁ ଫେରିଲାବେଳେ ନାନୀ ବାଟଯାକ କାନ୍ଦି କାନ୍ଦି ଆସୁଥାଏ। ଆମ ଗାଁ ଦାଣ୍ଡରେ ନାନୀର ବାହୁନା ଆହୁରି ଅଧିକ ହୋଇପଡ଼େ।

ମୁଁ ମଧ୍ୟ କୋହ ସମ୍ଭାଳି ନ ପାରି ଆଗରେ ବସି ଲୁହ ପୋଛୁଥାଏଁ। ଶେଷରେ ଶଗଡ଼ଟି ଆସି ଆମ ଦାଣ୍ଡପିଣ୍ଡା ତଳେ ଠିଆ ହେଲା। ବାପା ପିଣ୍ଡାରୁ ଓହ୍ଲାଇ ଆସିଲେ ଝିଅର ହାତ ଧରି ଘର ଭିତରକୁ ନେଇ ଯିବାପାଇଁ। ନାନୀ ସେତିକିବେଳେ ବାହୁନିଲା—"ବାପା, କାଚହାତ ଧରି ପଠାଇଥିଲ, ଏବେ ଖାଲିହାତ ଧରି ଘରକୁ ନେଲ।"

ସେତେବେଳେ ଶଗଡ଼ ପାଖରେ ଜମା ହୋଇଥିବା ସ୍ତ୍ରୀ ପୁରୁଷ ସମସ୍ତେ ତ ଆଖି ପୋଛୁଥାନ୍ତି। ବାପା ମଧ୍ୟ ସଦ୍ୟ ବିଧବା କନ୍ୟାର ନିରାଭରଣ ହାତଟିକୁ ଧରି ଶଗଡ଼ ଭିତରୁ ଆଣିଲାବେଳେ "ମୋ ମାଆ, ମୋ ମା" ବୋଲି ଭେ ଭେ କାନ୍ଦି ଉଠି-ଥିଲେ। ମୋର ପଞ୍ଚତିରିଶ ବର୍ଷ ବାପାଙ୍କ ସାହଚର୍ଯ୍ୟ କାଳ ଭିତରେ ତାଙ୍କୁ କାନ୍ଦିବା ଦେଖିଥିଲି ସେହି ମାତ୍ର ପ୍ରଥମ ଓ ଶେଷ ଥର ପାଇଁ।

ଭାରତୀୟ ଜୀବନଦର୍ଶନର ଗୋଟିଏ କଥା ତାଙ୍କଠାରୁ ମୁଁ କେତେ ଥର ଶୁଣିଛି— "ଦୁଃଖମେବ କେବଳମ୍ ।" ଏହି ସିଦ୍ଧାନ୍ତ ବିରୁଦ୍ଧରେ ମୁଁ ମୋର ଯୌବନସୁଲଭ ଉଦ୍ଦାମତା ଘେନି କେତେ ଥର ତାଙ୍କ ସହିତ ଯୁକ୍ତିତର୍କ କରିଛି । ଏହିପରି ବିଷାଦବାଦ ହେତୁ ଯେ ଭାରତର ଅଧୋଗତି ଘଟିଛି, ଏ ଦେଶର ଲୋକେ ନିରୁଦ୍ୟମ, ନିଷ୍କର୍ମା, ନିସ୍ପୃହ ଓ ନୈରାଶ୍ୟବାଦୀ ହୋଇପଡ଼ି ପରାଧୀନତା ବରଣ କରିଛନ୍ତି—ପୁଣି ପରିଣାମରେ ଭାଗ୍ୟବାଦୀ ଓ ଈଶ୍ୱରବିଶ୍ୱାସୀ ହୋଇ ଆଉ ଯେପରି ପୁନର୍ଜନ୍ମ ନ ଘଟି ଚିରକାଳ ପାଇଁ ମୁକ୍ତିଲାଭ ହୁଏ, ସେଥିଲାଗି ଜପତପ ଧ୍ୟାନ ଧାରଣାର ଅନ୍ତ ନାହିଁ—ଇତ୍ୟାଦି ବହୁ ସାଧାରଣ ତର୍କ ମୁଁ ତାଙ୍କ ଆଗରେ ବାଢ଼ିଥାଏଁ । ମାତ୍ର ସେ ସମସ୍ତ କେବଳ ପର୍ବତକୁ ଟେକା ଫିଙ୍ଗିଲା ଭଳି ଦୃଷ୍ଟିଭୂତ ହୋଇଯାଏ । ଶ୍ରୀମଦ୍ ଭଗବଦ୍ ଗୀତାରେ ହିଁ ସେ ସବୁ ପ୍ରଶ୍ନର ଉତ୍ତର ସହଜରେ ମିଳେ କର୍ମଯୋଗ ଅଧ୍ୟାୟରୁ ବୋଲି ସେ ଦର୍ଶାଇଥାନ୍ତି ।

ମୋହର ଦମ୍ଭ ଓ ବିଶ୍ୱାସ ଯେ—ସେହି ସମସ୍ତ ଯୁକ୍ତିତର୍କର ଫଳସ୍ୱରୂପ ସେ ତାଙ୍କ ନିଜ ଉପଲବ୍ଧି, ଅନୁଭୂତି ଓ ଦର୍ଶନ ଘେନି ଏହି ଗ୍ରନ୍ଥଟି ରଚନା କରନ୍ତି । ଗ୍ରନ୍ଥଟିକୁ ସମ୍ପୂର୍ଣ୍ଣ କରିବା ପାଇଁ ମଧ୍ୟ ମୁଁ ତାଙ୍କୁ ବାରମ୍ବାର ପ୍ରରୋଚନା ଯୋଗାଇଥିଲି । ପୂର୍ବରୁ ଲେଖିବା ଅଭ୍ୟାସ ନ ଥିଲେ ହେଁ ତାଙ୍କର ସର୍ବପ୍ରଥମ ଓ ସର୍ବଶେଷ କବିତା ସୃଷ୍ଟି, ପୁଣି ସର୍ବପ୍ରଥମ ଓ ସର୍ବଶେଷ ଗଦ୍ୟ ରଚନାର ନିଦର୍ଶନ ଏଇ ଦର୍ଶନ-ଗ୍ରନ୍ଥଟି ।

ଆତ୍ମ-ଉପଲବ୍ଧି ଓ ଅନୁଭୂତିକୁ ସେ ଓଡ଼ିଆ ଭାଷା ମାଧ୍ୟମରେ ଯେପରି ପ୍ରକାଶ କରିଛନ୍ତି, ତାହା ତାଙ୍କର ସମ୍ପୂର୍ଣ୍ଣ ନିଜସ୍ୱ । ମୋହର ବାଲ୍ୟଗୁରୁ ଓ ଶିକ୍ଷକ ଆମ୍ଭ ଗ୍ରାମର ସ୍ୱର୍ଗତ ଆନନ୍ଦଚନ୍ଦ୍ର ମିଶ୍ର ଗ୍ରନ୍ଥର ବହୁଳାଂଶ ନକଲ କରିଥିଲେ । ଗ୍ରନ୍ଥଟିର ପ୍ରକାଶ ପାଇଁ ବାପା କେବେହେଲେ ଆଗ୍ରହ ବା ଆବେଗ ପ୍ରକାଶ କରି ନ ଥିଲେ । ଅବଶ୍ୟ ମୁଁ ଚେଷ୍ଟା କରିଥିଲେ, ତାଙ୍କ ମୃତ୍ୟୁ ପୂର୍ବରୁ ହିଁ ଏହା ପ୍ରକାଶିତ ହୋଇପାରିଥାନ୍ତା । କିନ୍ତୁ ମୋ ପକ୍ଷରେ ତାଙ୍କ ମୃତ୍ୟୁ ଏକାନ୍ତ ଆକସ୍ମିକ ଓ ଅପ୍ରତ୍ୟାଶିତ । ପୁଣି ତାଙ୍କ ମୃତ୍ୟୁ ପରେ ପରିବାରରେ ଅନ୍ୟମାନଙ୍କ ମୃତ୍ୟୁ ମଧ୍ୟ ଗୋଟିକ ପରେ ଆଉ ଗୋଟିଏ ଏପରି ଲାଗି ରହିଲା ଯେ, ପାଣ୍ଡୁଲିପିର ପ୍ରକାଶନ ଦିଗରେ ମୁଁ ଧ୍ୟାନ ଦେଇପାରିଲି ନାହିଁ ।

ମୃତ୍ୟୁ ପୂର୍ବରୁ ବାପା କିଛି କାଳ ଶଯ୍ୟାଶାୟୀ ହୋଇଥିଲେ । ମଧ୍ୟେ ମଧ୍ୟେ ନିଜ ଜନ୍ମସ୍ଥାନ ଗ୍ରାମ କିମ୍ବା ପୁରୀରେ ସେ ଦେହତ୍ୟାଗ କରିଥିଲେ ଭଲ ହୋଇଥାନ୍ତା ବୋଲି ସୂଚାଉଥାନ୍ତି । କିନ୍ତୁ ସେ କଥାକୁ ଆମ୍ଭେମାନେ ଏଡ଼ିଦେଇ ସେ ସୁସ୍ଥ ହୋଇ ଉଠିବେ ବୋଲି କହୁଥାଉଁ; ଏଣେ ଡାକ୍ତରଙ୍କ ପରାମର୍ଶ ଯେ, ତାଙ୍କୁ ଏହି ଅବସ୍ଥାରେ ସ୍ଥାନାନ୍ତରିତ କରିବାର ପ୍ରଶ୍ନ ନାହିଁ । ଡାକ୍ତରଙ୍କୁ ଦେଖି ସେ କହନ୍ତି, "ଅନେକ ଦିନୁଁ ପ୍ରାଣବାୟୁ ମୋର ଉଡ଼ିଯାନ୍ତାଣି । କିନ୍ତୁ ମୁଁ ତାକୁ ରୋକି ଧରିଛି ।"

ଡାକ୍ତର ସୁଶୀଲବାବୁ ପଚ୍ଚାରନ୍ତି, "ଆପଣ ବୋଧହୁଏ ପ୍ରାଣାୟାମ ଆଦି ବାୟୁ ସାଧନ କରୁଥିଲେ ?" ତା'ପରେ ଟିକିଏ ସହାନୁଭୂତି-ସିକ୍ତ କଣ୍ଠରେ କହନ୍ତି, "ନା, ନା, ସେପରି କରିବେ ନାହିଁ ।"

ବାପାଙ୍କର ଅନ୍ୟ କୌଣସି ବ୍ୟାଧି ନ ଥିଲା । ପୁରୀରେହିଁ ସେ ପ୍ରାୟ ସମସ୍ତ ଜୀବନ ଅତିବାହିତ କରନ୍ତି । ଶେଷ-ଜୀବନରେ ସେଠାରୁ ତାଙ୍କୁ ବାରିପଦା ଆସିବାକୁ ହୁଏ ଜ୍ୟେଷ୍ଠ ପୁତ୍ରଙ୍କ ସହିତ । ଗୋଟିଏ ସମଶୀତଳ ସ୍ଥାନରୁ ଗ୍ରୀଷ୍ମପ୍ରଧାନ ଜଳବାୟୁକୁ ସେ ଆସନ୍ତି । ସେ ଦିନ ଅପରାହ୍ଣରେ ସ୍ନାନ କରିବାକୁ ଯାଇ ହଠାତ୍ ସେ ଶ୍ୱାସକଷ୍ଟ ଅନୁଭବ କଲେ । ତାହାହିଁ ହେଲା ତାଙ୍କର ବ୍ୟାଧି; ତେଣୁ ସେହି ଅବସ୍ଥାରେ ତାଙ୍କୁ ସ୍ଥାନାନ୍ତରକୁ ନେବା ଓ ଚିକିତ୍ସା କରାଇବା ସୁଦ୍ଧା ସମ୍ଭବପର ହେଲା ନାହିଁ ।

ଡାକ୍ତରଙ୍କ କଥା ଶୁଣିସାରି ସେ ଘରୁ ବାହାରିଯିବା ପରେ ବାପା ମୋତେ କହନ୍ତି, "ଏ ଡାକ୍ତର ବିଚାର କିଛି ବୁଝନ୍ତି ନାହିଁ ।" ରୋଗୀ-ମୁଖରେ ଡାକ୍ତରଙ୍କ ପ୍ରତି ଏଭଳି ଅନୁକମ୍ପା ପ୍ରକାଶ ମୋତେ ବଡ଼ ଅଡ଼ୁଆ ବୋଧହୁଏ ।

କନିଷ୍ଠ ପୁତ୍ର ୰ଭଗବତୀ ଚରଣଙ୍କୁ ବାରିପଦାରୁ ଜିଦ୍ କରି ଗ୍ରାମକୁ ସେ ପଠାଇ-ଦେଇଥାନ୍ତି ଗୃହକାମ ଦେଖିବାପାଇଁ । ସେ କଥା ମନେ ପକାଇ ପେଟ ଭିତରୁ ତାଙ୍କର ଗୋଟାଏ କୋହ ଉଠେ । ମଝିରେ ମଝିରେ କହିପକାନ୍ତି—"ଭାଗ୍ୟ କହିବ, ବାପା ମୋତେ ଗାଁଆକୁ ଚଡ଼ଦେଇ ନିଜେ ସଂସାରରୁ ବିଦାୟ ହୋଇଗଲେ ।"

ଶେଷ ଜୀବନ ପର୍ଯ୍ୟନ୍ତ ଗାଁ ଥିଲା ବାପାଙ୍କର ବଡ଼ ଆକର୍ଷଣ । ବୋଉଙ୍କୁ ମଧ୍ୟ ସେ ବୁଝାଇ କହୁଥିଲେ, "ମୁଁ ଚାଲିଗଲେ ସୁଦ୍ଧା ତୁମମାନଙ୍କର କାହାରି କିଛି ଅସୁବିଧା ହେବନାହିଁ ।" ତା' ପରେ ବୋଉ ଯାଇ ନିଜ ଗାଁ ବିଶ୍ୱନାଥପୁରରେ ରହିବା ପାଇଁ ସେ ପରାମର୍ଶ ଦେଇଥିଲେ । ବୋଉ ମଧ୍ୟ ସେହି ପରାମର୍ଶକୁ ଗ୍ରହଣ କରିଥିଲେ ।

"ତଥା ଦେହାନ୍ତର ପ୍ରାପ୍ତିଃ ଧୀରସ୍ତତ୍ର ନ ମୁହ୍ୟତି !" ଅବଶେଷରେ ସେଇ ମୁହୂର୍ତ୍ତ ଆସିଗଲା—ଆଷାଢ଼ କୃଷ୍ଣ ଦଶମୀ ଭୋଗ ଏକାଦଶୀ ବୁଧବାର (ପଣ୍ଡିତ ବାସର) ଇଂରାଜୀ ଜୁଲାଇ ମାସ ୨୮ ତାରିଖ ୧୯୩୫ ମସିହା । ବୋଉଙ୍କୁ କହିଲେ, ବଡ଼ ପୁଅଙ୍କୁ ଓ ମୋତେ ଡାକି ଆଣିବା ପାଇଁ । ବଡ଼ ପୁଅଙ୍କୁ ବୋଉ ଡାକିଆଣି ମୋତେ ନିଦରୁ ଉଠାଇବାକୁ ଆପତ୍ତି କରି କହିଥିଲେ, "ସେ ତ ତୁମକୁ ଜଗି ବସିଥିଲା । ଏବେ ଶୋଇ-ବାକୁ ଯାଇଛି ।"

ବିରକ୍ତ ହୋଇ ବାପା କହିଲେ, "ଆରେ ନା ନା ! ବାପା ମରିବାକୁ ଯାଉଛି, ପୁଅ ଘରଭିତରେ ଶୋଇ ରହିବ !"

ବୋଉଙ୍କର ତାଙ୍କ କଥାରେ ବିଶ୍ୱାସ ହେଉ ନ ଥାଏ । କିନ୍ତୁ ବାପାଙ୍କର ବାରମ୍ବାର ଜିଦ୍‌ରେ ସେ ଯାଇ ମୋତେ ଡାକିଲେ । ଉଠିଆସି ବାପାଙ୍କ ପାଖରେ

ବସିଲି । କିନ୍ତୁ ଦିନ ହେଲା ଶୋଇ ନ ପାରି ସେ ଚକଆଲୁ ଆଉଜି ରହିଥାନ୍ତି । ତାଙ୍କ ଘୁଞ୍ଚି ଆଉଁସି ଦେବାକୁ ମୋତେ ସେ ସଙ୍କେତ ଦେଲେ । ତା'ପରେ ମୋ କାନ ପାଖକୁ ମୁହଁ ଆଣି ଯେପରି ଅତି ଗୋପନରେ କହିଲେ, "କାଳନ୍ଦୀ ! ମୁଁ ଚାଲିଲି !"

ଅବାକ୍ ବିସ୍ମୟରେ ମୁଁ ତାଙ୍କ ମୁହଁକୁ ଚାହିଁଲି । ପୂର୍ବ ଝରକାବାଟେ ସୂର୍ଯ୍ୟୋଦୟର ପ୍ରଥମ ରଶ୍ମିରେ ମୁଖ ତାଙ୍କର ଆଲୋକିତ । ଚାହୁଁ ଚାହୁଁ ତାଙ୍କର ଚକ୍ଷୁ-ପଲକ ସ୍ଥିର ହୋଇଯାଏ ।

. ଧୈର୍ଯ୍ୟ, ଦାମ୍ଭିକତା ଓ ସାହସିକତାର ପ୍ରତିମୂର୍ତ୍ତି ଜନନୀ ମୋର କହି ଉଠିଲେ, "ଆରେ ବାପାଙ୍କ ଆଖିରେ ପଲକ କାହିଁ ତ ପଡ଼ୁନାହିଁ । ମହାପ୍ରସାଦ ପାଣି ଦିଅ ।"

ସମସ୍ତେ ମହାପ୍ରସାଦ ପାଣି ଦେଲୁଁ । ତା'ପରେ ?

ତା'ପରେ କ୍ରନ୍ଦନର ରୋଳ ଓ ବିଧିବିଧାନର ପର୍ଯ୍ୟାୟ ।

ମାତ୍ର ବୋଉଙ୍କୁ କେବେ କେହି କାନ୍ଦିବା ଦେଖିଲୁ ନାହିଁ । ମୁଁ ଅବଶ୍ୟ ଲକ୍ଷ୍ୟ କରିଛି, ଅତି ନିରୋଳାରେ କେହି ନ ଥିବା ଅବସ୍ଥାରେ ସେ ନୀରବଅଶ୍ରୁ ବିସର୍ଜନ କରନ୍ତି । ଅନ୍ୟମାନଙ୍କ ପାଖରେ ବୋଉ ସ୍ମୃତିଇ ଥିବାର ଶୁଣିଛି—ମୁଁ କାନ୍ଦିଲେ ପିଲା-ମାନଙ୍କୁ ବୁଝାଇବ କିଏ ? କିନ୍ତୁ ବୋଉ ସୁଦ୍ଧା ଆଜି ପାଖରେ ନାହାନ୍ତି ପିଲାମାନଙ୍କୁ ବୁଝାଇବା ପାଇଁ ।

ବୁଝାଇବା ପାଇଁ ଆଜି କେବଳ ରହି ଯାଇଛି—"ଆତ୍ମଦର୍ଶନରେ ବିଶ୍ୱଚିନ୍ତ କଳ୍ପନା"—ବିଚ୍ଛେଦ-ମିଳନ-ଦୁଃଖ-ସୁଖ ଅନୁଭୂତିମୟ ଅହଂକାର—ସେଇ ମୌଳିକ 'ମୁଁ'ଭିର ବିସ୍ତୃତ ବିଶ୍ଳେଷଣ ବ୍ୟାଖ୍ୟା ଓ ସିଦ୍ଧାନ୍ତ—ଅଧ୍ୟୟନ, ଅଭିଜ୍ଞତା, ଅନୁଭୂତି, ଅନ୍ୱେଷଣର ଏକ ଆତ୍ମିକ ପ୍ରକାଶ ।

# ଦାର୍ଶନିକ ଶ୍ରୀ ବିପିନବିହାରୀ ରାୟଙ୍କ ଅଭିମତ

I had opportunity of going through some portions of the book—ଆତ୍ମଦର୍ଶନରେ ସ୍ୱଶ୍ଚିତ କଳନା . The author Shri Swapneswar Panigrahi has presented in this book a mass of materials carefully examining the proper relation between body and mind, man and world, man and God. In this sense, it may be called a philosophical presentation of the problems of human life and the path to be pursued for solution with the ultimate aim of reaching the goal of life.

The writer appears in this book as an idealist thinker. He rejects the materialistic and atheistic concept of life and arrives at his conclusion at page 126 of the book. At pages 2 and 3, he tells us that the path to the goal is to be reached by discarding the wrong line of action, overcoming difficulties and obstructions on the way. This means the progress of human life is not plain sailing. At pages 126 and 127, he discusses the difference between *Vidya* and *Avidya* and upholds the value of *Vidya* as the gateway to perfection of mankind. Self-knowledge is the foundation of true knowledge. Right knowledge leads to right action. At pages 46 to 48, he tells us that it is wrong to identify self with body or material goods. Ignorance is the cause of misery. At page 74, he asks us to have faith in God as just and benevolent master ruling over the destiny of mankind. He is both *Sasaka* and *Palaka*.

The book is not a religious treatise in strict sense of the term. But amidst complexity and obscurity of language here and there along with absence of close logical exposition, readers could detect in it the nearest approach to the Vedantic concept of the universe. It is in this sense both a philosophical and religious discussion. By discriminating between Vidya and Avidya, putting emphasis on *Atma Tatwa Gyana*, manifestation of one Brahma amidst diversity, the author is placing before us the essence of the spirit of Hindu view of life in respect of human problems.

Cuttack
27. 6. 1969

Bepin Vehari Ray,
Retired Professor of Philosophy.

# ଇଂରାଜୀ ଅଭିମତର
## ଓଡ଼ିଆ ଅନୁବାଦ

"ଆତ୍ମଦର୍ଶନରେ ବିଶ୍ୱଚିତ୍ର କଳ୍ପନା" ଗ୍ରନ୍ଥର କେତେକାଂଶ ଅଧ୍ୟୟନ କରିବା ସୁଯୋଗ ମୋତେ ମିଳିଲା । ଗ୍ରନ୍ଥକର୍ତ୍ତା ଶ୍ରୀ ସ୍ୱପ୍ନେଶ୍ୱର ପାଣିଗ୍ରାହୀ ଦେହ ଓ ମନ, ମନୁଷ୍ୟ ଓ ଜଗତ୍ ପୁଣି ମନୁଷ୍ୟ ଓ ଭଗବାନଙ୍କ ମଧ୍ୟରେ ଯଥାର୍ଥ ସମ୍ପର୍କକୁ ସଯତ୍ନରେ ପରୀକ୍ଷା କରି ଏହି ଗ୍ରନ୍ଥରେ ପ୍ରଚୁର ଉପାଦାନ ପରିବେଷଣ କରିଛନ୍ତି । ଏହି ଦୃଷ୍ଟିରୁ ମନୁଷ୍ୟ-ଜୀବନର ସମସ୍ୟାସମୂହର ଚୂଡ଼ାନ୍ତ ସମାଧାନ କରି ଜୀବନର ଚରମ ଲକ୍ଷ୍ୟରେ ଉପନୀତ ହେବା ପାଇଁ ଏହାକୁ ଏକ ଦାର୍ଶନିକ ଉପସ୍ଥାପନା ବୋଲିଯାଇପାରେ ।

ଏହି ଗ୍ରନ୍ଥର ରଚୟିତା ଜଣେ ଆଦର୍ଶବାଦୀ ଭାବୁକରୂପେ ବୋଧ ହୁଅନ୍ତି । ଜୀବନର ବସ୍ତୁବାଦୀ ତଥା ନିରୀଶ୍ୱରବାଦୀ ଚିନ୍ତାଧାରାକୁ ଅସ୍ୱୀକାର କରି ଏହି ଗ୍ରନ୍ଥର ୧୨୭ ପୃଷ୍ଠାରେ ସେ ସ୍ୱୀୟ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଦ୍ୱିଶତ ଓ ତ୍ରିଶତ ପୃଷ୍ଠାରେ ସେ ଆମ୍ଭମାନଙ୍କୁ କହିଛନ୍ତି ଯେ ଚରମ ଲକ୍ଷ୍ୟପଥରେ ପହଞ୍ଚିବା ପାଇଁ ସମସ୍ତ ପ୍ରତିବନ୍ଧକ ଓ ପ୍ରତିରୋଧକୁ ଅତିକ୍ରମ କରି ଯିବାକୁ ହେବ । ଏହାର ତାତ୍ପର୍ଯ୍ୟ ହେଲା ଏହି ଯେ ମାନବଜୀବନର ପ୍ରଗତି ଏତେ ସହଜସାଧ୍ୟ ନୁହେଁ ।

୧୨୬ ଓ ୧୨୭ ପୃଷ୍ଠାରେ ସେ ବିଦ୍ୟା-ଅବିଦ୍ୟାର ପାର୍ଥକ୍ୟ ଉପରେ ଆଲୋଚନା କରି ମନୁଷ୍ୟଜୀବନର ପୂର୍ଣ୍ଣତାଲାଭ ପକ୍ଷରେ ବିଦ୍ୟାହିଁ ପ୍ରକୃତ ଦ୍ୱାରଦେଶ ବୋଲି ପ୍ରତିଷ୍ଠା କରିଛନ୍ତି । ଆତ୍ମଜ୍ଞାନ ହିଁ ସତ୍ୟଜ୍ଞାନର ଭିତ୍ତିଭୂମି । ପ୍ରକୃତ ଜ୍ଞାନହିଁ ପ୍ରକୃତ କର୍ମର ପଥପ୍ରଦର୍ଶକ । ୪୭ ପୃଷ୍ଠାରୁ ୪୮ ପୃଷ୍ଠା ମଧ୍ୟରେ ସେ ଆତ୍ମାକୁ ଦେହ କିମ୍ବା ବୈଷୟିକ ବସ୍ତୁସମୂହ ସହିତ ଏକ ବୋଲି ବିଚାରିବା ଭ୍ରମାତ୍ମକ ବୋଲି ଦର୍ଶାଇଛନ୍ତି । ଅଜ୍ଞାନ ହେଲା ସକଳ ଦୁଃଖର କାରଣ । ୨୪ ପୃଷ୍ଠାରେ ଭଗବାନଙ୍କଠାରେ ମାନବ ଭାଗ୍ୟର ନ୍ୟାୟବାନ୍ ଉପକାରୀ ପ୍ରଭୁ ରୂପେ ବିଶ୍ୱାସ ସ୍ଥାପନ କରିବାକୁ ସେ ଆମ୍ଭମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଭଗବାନହିଁ ଶାସକ ଓ ପାଳକ ।

ଯଥାର୍ଥରେ କହିବାକୁ ଗଲେ ଏହା ଧର୍ମମୂଳକ ଗ୍ରନ୍ଥ ନୁହେଁ । କିନ୍ତୁ ଭାଷାର ସ୍ଥାନେ ସ୍ଥାନେ ଜଟିଳତା ଓ କ୍ଲିଷ୍ଟତା ମଧ୍ୟରେ ନିବିଡ଼ ସୂକ୍ଷ୍ମର ଅଭାବ ସତ୍ତ୍ୱେ ବେଦାନ୍ତ ବିଚାରଧାରାର ବିଶ୍ୱ-ପରିକଳ୍ପନାର ନିକଟତମ ପରିଚୟ ପାଠକମାନେ ଏଥିରୁ ପାଇ ପାରିବେ । ଏହି ବିଚାରରୁ ଗ୍ରନ୍ଥଟି ଉଭୟ ଦାର୍ଶନିକ ଓ ଧର୍ମତତ୍ତ୍ୱର ବିଶ୍ଳେଷଣ । ବିଦ୍ୟା ଓ ଅବିଦ୍ୟାର ଭେଦ ପ୍ରତିପନ୍ନ କରିବାକୁ ଯାଇ ଏବଂ ଆତ୍ମତତ୍ତ୍ୱଜ୍ଞାନ ଉପରେ ବହୁ ବିଭେଦ ମଧ୍ୟରେ ବ୍ରହ୍ମର ପ୍ରତିଷ୍ଠା କରି ଗ୍ରନ୍ଥକାର ଆମ୍ଭମାନଙ୍କ ସମକ୍ଷରେ ମାନବିକ ସମସ୍ୟା ସମୂହ ଦୃଷ୍ଟିବିନ୍ଦୁର ଜୀବନଦର୍ଶନର ସାରତତ୍ତ୍ୱ ଉପସ୍ଥାପନ କରିଛନ୍ତି ।

କଟକ
ତା ୨୭ । ୬ । ୧୯୬୯

ଶ୍ରୀ ବିପିନ ବିହାରୀ ରାୟ
ଅବସରପ୍ରାପ୍ତ ଦର୍ଶନ ଅଧ୍ୟାପକ

# ସୂଚୀପତ୍ର

ପାଠ | ବିଷୟ | ପୃଷ୍ଠା

---

# ଆତ୍ମଦର୍ଶନରେ ବିଶ୍ୱଚିତ୍ର କଳ୍ପନା

(ସ୍ତବ)

(ହରିଃ ଓଁ ତତ ସତ୍)

ସ୍ୱରୂପ ସଚ୍ଚିଦାନନ୍ଦ ବ୍ରହ୍ମ ସନାତନ
ମାୟାଽଶ୍ରୟେ ସର୍ବେଶ୍ୱର ସର୍ବଶକ୍ତିମାନ ।୧।

ଶକ୍ତିଭେଦେ ବ୍ରହ୍ମା ବିଷ୍ଣୁ ରୁଦ୍ର ମହେଶ୍ୱର
ଗୁଣ-ଭାବ-କ୍ରିୟାଭେଦେ ଦେବାସୁର ନର ।୨।

ଭେଦାଭେଦବିବର୍ଜିତ ମାୟା ଲୀଳା ପାଇଁ
ନାନାରୂପେ ବିରାଜିତ ବ୍ରହ୍ମାଣ୍ଡ ଗୋସାଇଁ ।୩।

କର୍ମ, ଭୋଗ, ଜ୍ଞାନ, ଲୀଳାରଙ୍ଗେ ଏ ଜଗତ
ତହିଁ ମୋହେ ଜୀବାତ୍ମାକୁ କରନ୍ତୁ ରଞ୍ଜିତ ।୪।

କର୍ମ, ଭୋଗ, ଜ୍ଞାନ, ଲୀଳାରଙ୍ଗ ସୁଶୋଭିତ
ବିଶ୍ୱଚିତ୍ରାକାରେ ସ୍ୱୟଂ ଆତ୍ମା ଆଭାସିତ ।୫।

ଜଡ଼ଚିଦାତ୍ମକ ଜୀବ ସର୍ବ କୋଟି ମିଶି
ବିନ୍ଦୁ ବିନ୍ଦୁଠାରୁ ସାନ ତୋର ଅଙ୍ଗେ ବସି ।୬।

ଅନନ୍ତ ଚୈତନ୍ୟପୂର୍ଣ୍ଣ ଅଂଶାନନ୍ତ ତୋର
ଅଂଶ ସର୍ବାଽନନ୍ତମୟ ସର୍ବୈଶ୍ୱର୍ଯ୍ୟାଧାର ।୭।

ବିଦ୍ୟୁତ ଆଲୋକରେଖା ସ୍ୱଚ୍ଛ ମହାକାଶେ
ଖେଳେ ଯଥା ଜୈବଚିତ୍ର ତୋ ଅଙ୍ଗେ ପ୍ରକାଶେ ।୮।

ବ୍ୟକ୍ତ ବିଶ୍ୱସର୍ବମୟ-ମୂର୍ତ୍ତି, ମୂର୍ତ୍ତିହୀନ
ବ୍ୟକ୍ତାବ୍ୟକ୍ତବିବର୍ଜିତ ଦେବଃ ନମୋନମଃ ।୯।

ସର୍ବାତ୍ମ ସ୍ୱଭାବେ ନିରାକାର ତୁ ସାକାର
ତେଣୁ ତୋର ପଦାମ୍ବୁଜେ ସଦା ନମସ୍କାର ।୧୦।

ଶରଣ ଅଭୟପଦେ ପଦେ ଭୟ କଥା
ତୁମ୍ଭ ଘରେ ଦ୍ୱେଷ ହେବ ହେଉ ଯେ ବ୍ୟବସ୍ଥା ।୧୧।

ବଣ୍ଡ ଘର ଚୌର୍ଯ୍ୟେ ବଣ୍ଡ ଦ୍ୱେଷ ଖ୍ୟାତ ନାମ
ଅନ୍ତ ବଣ୍ଡ ହେବ ମଧ୍ୟ ଦଣ୍ଡର ବିଧାନ ।୧୨।

କାମ୍ୟଦଣ୍ଡ ଅର୍ଥଦଣ୍ଡ ଉଭୟ ହୋଇଛି
କ୍ଷମାନଧି କ୍ଷମାଗୁଣେ ଦଣ୍ଡ ନ କ୍ଷମିବ । ୧୩ ।

ଧ୍ୟେୟ କରବ ତୋ ଜ୍ଞାନ ରତନ ଭଣ୍ଡାର
ଗଳଲଗ୍ନ ପ୍ରେମସୂତ୍ରେ ବନ୍ଧାହେବ ଧ୍ୟେୟ । ୧୪ ।

ଛନ୍ଦାହେବ ଛନ୍ଦାପଦେ ଯୋଗଚଣ୍ଡି ପଣ୍ଡ
କାଳେ କାଳେ ନ ଫିଟିବ ଦୃଢ଼େ ଥିବ ଜଣ୍ଡ । ୧୫ ।

କାମ୍ୟଦଣ୍ଡ ଚଲ୍ଲ ଏବେ ଅର୍ଥଦଣ୍ଡ ବଧି
ସବୁ ଅର୍ଥ ହରନେବ ହାରଯିବ ବଧି । ୧୬ ।

ପ୍ରାଣେନ୍ଦ୍ରିୟ ମନ ବୁଦ୍ଧି ଚିତ୍ତ ଅହଂକାର
ଜ୍ଞାତୋଽପାଧି ସହ ସବ ଅର୍ଥ ହେବ ଜୂର । ୧୭ ।

ମାୟା କୋଠଭଣ୍ଡାରରେ ମିଶିଯିବ ଯାଇଁ
କିକାଳାନ୍ତେ ନ ଫେରବ ପଣ କର ସ୍ୱାମି ! । ୧୮ ।

ଥରେ ଦେଉଅଛୁ ଏକ ସାଷ୍ଟାଙ୍ଗ ପ୍ରଣାମ
ଅଷ୍ଟାଙ୍ଗ ମୋ ବ୍ୟାପିଯିବ ଅଶେଷ ଭୁବନ । ୧୯ ।

ବିଶ୍ୱସାକ୍ଷୀ ହେଲୁ ପୂର୍ଣ୍ଣ ଦୃଷ୍ଟି ମୋରେ ସ୍ଥିତ
ହେବ ତୁମ୍ଭେ ଚକ୍ଷୁହୀନ ଅନେ୍ୟ ଅନୁମିତ । ୨୦ ।

ଦଣ୍ଡବତଭୂମି ବିଶ୍ୱ ନୁହେଁ କର୍ମକ୍ଷେତ୍ର
କର୍ମପାଶ ମୁକ୍ତ ବୋଲି ରଟିବ ସର୍ବତ୍ର । ୨୧ ।

ତେଣୁ ସର୍ବମୁଖେ ହେବ ଅନ୍ଧ ନାମ ତୋର
ଦଣ୍ଡବତ ତୀର୍ଥଭୂମି ନାମ ସଂସାରର । ୨୨ ।

ହେଉ ପଛେ ଅନ୍ଧ ନାମ ଯେ ଗୁଣ ଆସ୍ପଦ
ନ ଦେଖିବା ଲୋକର କି ରହଇ ସମ୍ପଦ ? । ୨୩ ।

ତବ ଜ୍ଞାନ ଦୟାମୃତ ସିନ୍ଧୁ ହେବ ଲୁଟି
ଯାନେ ମୁକ୍ତ ହେବେ ପ୍ରାଣୀ ପୂତ କର ଯାଚି । ୨୪ ।

ପର ଉପକାର ପାଇଁ ଯବୁ ହୋଇପାର
ଏହି ଗୁଣ ମହାପ୍ରଭୁ ତୁମ୍ଭର ଅପାର । ୨୫ ।

ମୋତେ ଦଉ ଏ ଦୁର୍ନାମ ? କ୍ଷମା ହେବ ଦୋଷ
ଶରଣପଞ୍ଜର ବାନା ମିନତି ବିଶେଷ । ୨୬ ।

କେତେ ଦୁଃଖୀ କଷ୍ଟୀ କେତେ ଢେଡେ ବିକଳାଙ୍ଗ
ପ୍ରଭୁ ଯନ୍ଧ ନୁହଁ ଅନ୍ଧ କମା ଏହି ହାନ ? ୨୭ ।

ସର୍ବକର୍ମକର୍ତ୍ତା ତୁହି ସର୍ବଦୃଶ୍ୟଦ୍ରଷ୍ଟା
ସର୍ବଜ୍ଞାନଜ୍ଞାତା ତୁହି ପୁଣି ସର୍ବସ୍ରଷ୍ଟା । ୨୮ ।

କର୍ମଫଳଭୋକ୍ତା ଜୀବ ଦୁଃଖାବଦ୍ଧ ସେହି
ଅନ୍ଧ ବିନା ଏ ବଞ୍ଚନା ଅନ୍ୟେ କି ଶୋଭଇ ? । ୨୯ ।

ଅକର୍ଣ୍ଣ ଅଚକ୍ଷୁ ତୁମ୍ଭେ ବେଦାନ୍ତ ଡିଣ୍ଡିମ
ତେବେ କିମ୍ପା ନ ହୋଇବ ଅନ୍ଧ ତବ ନାମ ? । ୩୦ ।

ତୁହି ଅନ୍ଧ ହେଲୁ ପ୍ରଭୁ ମୁହିଁ ହେଲି ଘେର
ଶ୍ରବଣେ ଏ ମନ୍ଦ ପିନା ଜ୍ଞାନେ ସୁଧାଧାର । ୩୧ ।

ଶରଣ ମାଗୁଛି ଏକା ଅଭୟ ଚରଣ
ପ୍ରତିଦାନେ ଦେବି ଖାଲି ସାଷ୍ଟାଙ୍ଗ ପ୍ରଣାମ । ୩୨ ।

ଶରଣଦାନର ସଙ୍ଗେ ଯାହା ଦୟା ଦିଅ
ପ୍ରଣିପାତ ନେବା ସଙ୍ଗେ ଇଚ୍ଛା ଯାହା ନିଅ । ୩୩ ।

ଯାହା ଇଚ୍ଛା କର ତୁମ୍ଭେ ହେ ଇଚ୍ଛାବିହାରୀ
ପ୍ରଣତପାଳନ ଧର୍ମ ସଙ୍ଗେ ମତେ ସ୍ମରି । ୩୪ ।

ଶରଣ ମୋ ଧର୍ମ ଏକା କେବଳ ଶରଣ
କର୍ମମାତ୍ର ଦଣ୍ଡବତ ସାଷ୍ଟାଙ୍ଗ ପ୍ରଣାମ । ୩୫ ।

ନାହିଁ କାହିଁ ଦୃଶ୍ୟାଦୃଶ୍ୟ ବିଶ୍ୱଚରାଚର
ତୋର ଏ ବିଭୂତି ସର୍ବ ତୁ ଅଛୁ କେବଳ । ୩୬ ।

ମୁଁ ମୋର ସମର୍ପି ତୋରେ ମିଶି ତୋର ହୋଇ
ଅଭେଦାତ୍ମ ମନ୍ତ୍ରେ ଭଜ ମଜ ତୋର ତହିଁ । ୩୭ ।

ଆତ୍ମବୋଧ ବ୍ରହ୍ମାନନ୍ଦେ ଜୀବୋପାଧି ଲୀନ
ସେବୋଽପାସନାନ୍ଧ ତନ୍ତ୍ର ସେବେ ପୂଜାର୍ଚ୍ଚନ । ୩୮ ।

ସ୍ୱତଃ ପ୍ରେମେ ସର୍ବ କର୍ମ, ଭକ୍ତି, ଜ୍ଞାନ, ଧର୍ମ
ତୋ ବିଭୂତିରୂପେ ତୋର ବନ୍ଦନ୍ତି ଚରଣ । ୩୯ ।

ତେଣୁ ତୁ ଶରଣ୍ୟାରାଧ୍ୟ ସର୍ବମୟ ବ୍ରହ୍ମ
ଶରଣଧର୍ମ ଏ ଆତ୍ମ ସର୍ବସ୍ୱାର୍ଥାର୍ପଣ । ୪୦ ।

ଶବ୍ଦ ମାତ୍ର ବର୍ଣ୍ଣୋଽବର୍ଣ୍ଣେ ଗାଏ ତୁମ୍ଭ ସ୍ତବ
ପ୍ରତି ଜ୍ଞାନ ମୂଳେ ଗୁପ୍ତେ ରାଜେ ରୂପ ତବ । ୪୧ ।

କ୍ଷମାକର ସବୁ ଦୋଷ ତବ ନିଜ ଗୁଣେ
କୋଟିବିଶ୍ୱପ୍ରଭୁ ତୁମ୍ଭେ ଦୁଃଖୀ ମୁହିଁ ଜଣେ । ୪୨ ।

ନ ହସ୍ତର କ୍ଷମାର୍ଣ୍ଣବ ନାମର ମହିମା
ତୋ ପ୍ରକୃତ-ଦାସ-ଦୋଷ ତୋର ଯୋଗ୍ୟ କ୍ଷମା । ୪୩ ।

କଳି ମ୍ଲେଚ୍ଛ ପାପ ଦଗ୍ଧ ଅଗ୍ନି ନେଇ ଗ୍ରହି
ଜଗତ ମୁକତ କର ପଦଧୂଳି ଦେଇ । ୪୪ ।

କାହିଁ ପଦ ? କାହିଁ ଧୂଳି ? ତୁମ୍ଭେ ନରାକାର
ସମ୍ଭବ ଏହା ଯିନା ହେଲେ ଅବତାର । ୪୫ ।

ଶ୍ରୀପଦ ଚିହ୍ନରେ ହନେ ଶୋଭିବ ଭାରତ
ସତେ ଏତେ ଭାଗ୍ୟବେଳ ହେବ ଉପସ୍ଥିତ ? । ୪୬ ।

ସ୍ତବ ଏଠି ଥାଉ ତାଙ୍କୁ ଧରି ଯୋଗାସନ
ଏଠାରୁ ଆରମ୍ଭ ଆତ୍ମ-ଦୁଃଖ-ନିବେଦନ । ୪୭ ।

ଜୀବ ଦେହଧାରୀ ହେଲେ ଦୁଃଖ ଅକଥନ
ଲଭି ମାତ୍ର ଦୃଶ୍ୟମାନ ବ୍ରହ୍ମ ଦରଶନ । ୪୮ ।

ସବୁ ଜନ୍ମ ଜନ୍ମାନ୍ତର ଯାତନା ସକଳ
କେତେ ଜନ୍ମ ମୃତ୍ୟୁ ଗଲା ନାହିଁ ଶେଷ ମୂଳ । ୪୯ ।

ପ୍ରତି ଜନ୍ମେ ଦୁଃଖ, କଷ୍ଟ, ଶୋକ, ମୋହ, ତାପ,
ଗ୍ଲାନି ଆଦି କେତେ ଗଲା ନାହିଁ ତାର ମାପ । ୫୦ ।

ଆଗକୁ ଏପରି ଜନ୍ମ ମୃତ୍ୟୁଭୟ କେତେ
ଆଦ୍ୟନ୍ତବିହୀନ ତାପ ଚକ୍ର ଲୁଚିହିଁ ଚିତ୍ତେ । ୫୧ ।

ହୃଦୟ, ଇନ୍ଦ୍ରିୟ, ଦେହ ସମ୍ବନ୍ଧରୁ ଜାତ
ଦୁଃଖତ୍ରୟ ତ୍ରୟତାପ ନାମେ ଅଭିହିତ । ୫୨ ।

ଆଧ୍ୟାତ୍ମିକ, ଆଧିଦୈବ, ଆଧିଭୌତିକ
ଜୀବ ଅଙ୍ଗେ ଅନୁକ୍ଷଣେ ତାପପ୍ରଦାୟକ । ୫୩ ।

ମନକ୍ଷୋଭ, ଦେହ କଷ୍ଟ, ଇନ୍ଦ୍ରିୟ ତାଡ଼ନା
ନାହିଁ କାର ? କେହୁ ଅବା କ୍ଷଣେ ମୁକ୍ତମନା । ୫୪ ।

ସେ ଦୁଃଖ ସୂମରି ସଦା କମ୍ପେ ଦେହ ପ୍ରାଣ
କମ୍ପୁଛି ଇନ୍ଦ୍ରିୟ, ଜୀବ, ଆତ୍ମା, ମନ, ଜ୍ଞାନ । ୫୫ ।

ସେ କମ୍ପନ କ୍ରିୟା ଚିନ୍ତାଶକ୍ତିର ପ୍ରେରଣା
ମୂଳେ ସ୍ଥିତ ତା' ନିୟତି ଚକ୍ର କୁମନ୍ତ୍ରଣା । ୫୬ ।

ସଂସାର ତ୍ରିତାପମୟ ମାୟାମୋହବନ
କାଳଚକ୍ର ଆବର୍ତ୍ତନତଳେ ଭ୍ରାମ୍ୟମାନ । ୫୭ ।

ଏଥି ଭ୍ରମି ଶର ଦୁଃଖେ ଜୀବ ଅବସନ୍ନ
ଲବେ ହେଲେ ଦୁଃଖ ଶାନ୍ତ ନାହିଁ ଅବସାନ । ୫୮ ।

କାହିଁ ଥିଲୁ ? ଅଛୁ ଏଠି, ଯିବୁ କେଉଁଠାକୁ ?
କାହିଁ ତଟେ ସ୍ଥାନ ନାହିଁ ଶାନ୍ତ ଲଭିବାକୁ । ୫୯ ।

ଯହିଁ ଜୀବ ତହିଁ ପିଣ୍ଡ ସଂସାର ବିତାପ
ଜୀବ ! ତୋର ପାଇଁ ଗଢ଼ା ମୋହ ଅନ୍ଧକୂପ । ୬୦ ।

ବିଶ୍ୱ ସୁଖ ମନ୍ତ୍ରଦାତା ଧାତା ପ୍ରବଞ୍ଚକ
ସୁଧା ନାମେ ବିଷପୂର୍ଣ୍ଣ ତା ବଜାରପାକ । ୬୧ ।

ସୁଖ ଯା' ନାମକୁ ତାହା ବିକଳ୍ପ ବିଭ୍ରମ
ଦୁଃଖ ମାତ୍ର ସାର ସୁଖ ମିଥ୍ୟା ପ୍ରଲୋଭନ । ୬୨ ।

ମହାକାଳ ଫଳ ଯଥା ଦିଶଇ ସୁନ୍ଦର
ଖାଇବା ବେଳକୁ ତାର ଭିତର ଗୋବର । ୬୩ ।

ଅଗ୍ନିକୁ ପତଙ୍ଗ ମରୀଚିକା ପ୍ରତି ମୃଗ
ଯଥା ତଥା ସୁଖ ଲୋଭେ ଦୁଃଖ ହୁଏ ଭୋଗ । ୬୪ ।

ମାୟାର ମୋହିନୀ ଶକ୍ତି ସୁଖାଦର୍ଶେ ମୋହେ
ସେ ମୋହରୁ ଦୁଃଖ ଜନ୍ମ ବାହ୍ୟାନ୍ତର ଦହେ । ୬୫ ।

ସୁଖ, ଦୁଃଖ ଦୁହିଙ୍କର ଭିତର ଠକ୍‌ଜାର
ସୁଖ ପ୍ରଲୋଭନ ଦୁଃଖ ନିଜ ରୂପ ତାର । ୬୬ ।

ଏହା ଭୋଗି ଜୀବ କିମ୍ପା ସୁଖ ଇଚ୍ଛା କରେ ?
ଅଧ୍ୟାତ୍ମରାଜ୍ୟର ବସ୍ତୁ ଗଢ଼ା ସେ ସୁଖରେ । ୬୭ ।

ସେହି ଆତ୍ମସୁଖ ଲୋଡ଼େ ମର୍ତ୍ତ୍ୟ ଦେହ ପାଇଁ
ଭୌତିକ ଜଗତେ ତାହା ସମ୍ଭବ ବା କାହିଁ ? । ୬୮ ।

ସୁଖଜ୍ଞାନେ ଦୁଃଖକୁ ସେ କରେ ଆଲିଙ୍ଗନ
ଜାଗତିକ ମୋହ ଦୁଃଖେ ସଦା ଅଚେତନ । ୬୯ ।

ଧନ, ଜନ, ମାନ, ବିଦ୍ୟା, ଯଶ, ପଉରୁଷ
ଗଉରବ ଆଡ଼ମ୍ବର ମିଳେ ଲଭି କ୍ଲେଶ । ୭୦ ।

ଉପାସନା, ଧ୍ୟାନ, ବ୍ରତ, ଯୋଗ, ଧର୍ମମତ
କଷ୍ଟେ ହୁଏ ବଳେ କଷ୍ଟ ଘଟିଲେ ବିକୃତ । ୭୧ ।

ବ୍ୟତିକ୍ରମ ସବୁ କଥା ସଙ୍ଗେ ଲୁଚି ଥାଇ
ଆଲୋକର ପାଖେ ଛକ ଥାଏ ଯଥା ଛାଇ । ୭୨ ।

କହିବାକୁ ଶୁଣିବାକୁ "ସୁଖ" ଦୁ'ଅକ୍ଷର
ଭୋଗିବାକୁ ଦୁଃଖମୟ ବିଶ୍ୱ ବାହ୍ୟାନ୍ତର । ୭୩ ।

ସୁଖ, ଦୁଃଖ, ଆଡ଼ମ୍ବର, ମୃତ୍ୟୁ କାଳସମ
ହିନେ ସବୁ ଶୂନ୍ୟ କରି କରୁଛି ନିଶ୍ଚିହ୍ନ । ୭୪ ।

ପ୍ରାଣୀ ସୃଷ୍ଟି ବ୍ୟକ୍ତିଗତ ଭାବେ କ୍ଷଣସ୍ଥାୟୀ
ଅପତ୍ୟପ୍ରବାହ ଧାରା କ୍ରମେ ନିତ୍ୟ ଏହି । ୭୫ ।

ସୃଷ୍ଟି ସୃଷ୍ଟ ସ୍ରୋତ-ସ୍ରଷ୍ଟା-ମାୟାଧୀନ ଖେଳ
ନିଃସ୍ୱ ଜୀବ ଦୁଃଖୀ ହେତୁ ମାତ୍ର ଅହଂକାର । ୭୬ ।

ଖାଲି ଦୁଃଖ ପାଇଁ ମାୟା ପାତିଅଛି ଫାନ୍ଦ
ତଥାପି ସେ ପଥେ ଭ୍ରମେ ଜୀବ ଜନ୍ମଅନ୍ଧ । ୭୭ ।

ଅଘଟ୍ୟ ଘଟଣା ନଇପୁଣ୍ୟ ଚତୁରତା
ସବୁ ବ୍ୟୟ କରି ବିଶ୍ୱ ଗଢ଼ିଛି ବିଧାତା । ୭୮ ।

ଜୀବ ଦୁଃଖ ପାଇଁ ପିଣ୍ଡ ବ୍ରହ୍ମାଣ୍ଡ ରଚନା
ପିଣ୍ଡ ବିସାଘର ଦେଖ ଅଜ୍ଞାତ କଳ୍ପନା । ୭୯ ।

ଅଙ୍ଗ ପ୍ରତିଅଙ୍ଗ ଶୋଭା ତହିଁ ନବଦ୍ୱାର
କେତେ ଗଣ୍ଠି ଶିରା ନାଡ଼ୀ ଇନ୍ଦ୍ରିୟ ସମ୍ଭାର । ୮୦ ।

ପଞ୍ଚକୋଷ ଦେହହିଁ ଚତୁର୍ବିଂଶ ତତ୍ତ୍ୱ
ପଞ୍ଚକ୍ଲେଶାନ୍ୱିତ ଏହା ତ୍ରିଗୁଣେ ସନ୍ନିତ । ୮୧ ।

ମାଟି ଘଟେ ସ୍ଥିତ ପଞ୍ଚପ୍ରାଣ କାରବାରି
ନାନା ଭାବମୟ ମନ ସଙ୍ଗେ ଷଡ଼ ଅରି । ୮୨ ।

କରମ ସଂସ୍କାର ଭୋଗ ବାସନା ଅପାର
ତହିଁ ବିଜଡ଼ିତ ଜୀବ ଦୁଃଖ ମହାଘୋର । ୮୩ ।

ଜୀବ ଦୁଃଖ ଯାହା ତୁମ୍ଭ ମାୟା ଖେଳଘର
ମହାପ୍ରଭୁ ! ତବ ଏ ବ୍ୟବସ୍ଥା ଚମତ୍କାର । ୮୪ ।

ଅଜ୍ଞ ଦେଖେ ଏ ସଂସାର ଆମୋଦ ଆସ୍ପଦ
ଜ୍ଞାନୀ ବୁଝେ ଏହା ମହା ପରୀକ୍ଷା ଆପଦ । ୮୫ ।

ହୃଦୟ ଜାଣଇ ସିନା ହୃଦୟ ବେଦନା
ଅନ୍ୟ କେ କି କରିପାରେ ତହିଁର ସୂଚନା । ୮୬ ।

ସବୁ ଜାଣୁଛନ୍ତି କିନ୍ତୁ ହୃଦୟର ନାଥ
ଔଦାସ୍ୟ ଦେଖାଣି ତାଙ୍କ ମାୟାତ୍ମିକା ତତ୍ତ୍ୱ । ୮୭ ।

ସ୍ୱର୍ଗକୁ ନିଶୁଣୀ ନାହିଁ ବଡ଼କୁ ଉତ୍ତର
ଅନ୍ୟ ବଡ଼ ପ୍ରଭୁ ଥିଲେ ଥାନ୍ତା ପ୍ରତିକାର । ୮୮ ।

ଅସଂଖ୍ୟ ଅନନ୍ତ ବିଶ୍ୱ ଜୀବ ଅଗଣନ
ଜଣେ ମାତ୍ର ମହାପ୍ରଭୁ ଅତ୍ୟନ୍ତ ଦାରୁଣ । ୮୯ ।

ଠକ ପ୍ରବଞ୍ଚକାଗ୍ରଣୀ ଶଠ ଚୂଡ଼ାମଣି
ନଟବରଶେଖର ତୁ ରଙ୍କରତ୍ନଖଣି । ୯୦ ।

କୁହୁକୀ ମାୟାବୀ ତୁରେ ଚୂଡ଼ାନ୍ତ ହଟିଆ
ଗଢ଼ା ଭଙ୍ଗା ସବୁ ଜାଣୁ ବଡ଼ କୌତୁକିଆ । ୯୧ ।

ବଶ ଉଚ୍ଚାଟନ ଜାଣୁ ମାରଣତାରଣ
ମୋହନ ମନ୍ତ୍ରାଦି ସର୍ବଗୁଣସୁସମ୍ପନ୍ନ । ୯୨ ।

ଜୀବ ତୋର କ୍ରୀଡ଼ାପେଣ୍ଡୁ ବହୁରଙ୍ଗେ ଖେଳ
ବଡ଼ ଯାଦୁକର ତୁରେ ବଡ଼ ଖେଳୁଆଡ଼ । ୯୩ ।

ଅକାରଣ ଅକର୍ତ୍ତା ତୁ ତୋର ଅଧିଷ୍ଠାନେ
ପ୍ରକୃତି ସର୍ଜଇ ସର୍ବ ତ୍ରିଗୁଣବିଧାନେ । ୯୪ ।

ତହିଁ ତୋସାହ୍ୱସଚିତ୍ତୁ ସଜେ ଜୀବ କ୍ଷଣ—
ରୂପେ ସାଜେ ବିଶ୍ୱଲୀଳା ଚତ୍ରକୁ ପ୍ରକାଶ । ୯୫ ।

ଦେବଜୀବାଦି ସର୍ବାତ୍ମା ତୋ ଅଙ୍ଗପ୍ରତ୍ୟଙ୍ଗ
ତୁ ସର୍ବାତ୍ମ ବିଭବୀ ତୋ ଦ୍ୱୈତାଽଦ୍ୱୈତରଙ୍ଗ । ୯୬ ।

ନିରାକାର ପୁରୁଷର ସାକାର କାରଣ
ପ୍ରକୃତି ସମ୍ବନ୍ଧୁ ଜାତ ମାୟାଲୀଳା ଧ୍ୟାନ । ୯୭ ।

ତହିଁରୁ ଆତ୍ମବିସ୍ମୃତି ଅବିଦ୍ୟାଽଭିମାନ
ତହିଁ ଆତ୍ମବନ୍ଧ ହଣି ସୃଜେ ଆତ୍ମଭ୍ରମ । ୯୮ ।

ସେ ଭ୍ରମ ଅଜ୍ଞାନୁ ଅହଂ ମମକାର ଜନ୍ମ
ତହୁଁ ମନ ପ୍ରାଣେନ୍ଦ୍ରିୟ ଦେହାଦି ସର୍ଜନ । ୯୯ ।

ବହୁଦେହବର୍ତ୍ତୀ ହୋଇ ଗଜଇ ପ୍ରକୃତି
ଆତ୍ମା ବନ୍ଧୁ ହୋଇ କରେ ପ୍ରତି ଦେହେ ପ୍ରୀତି । ୧୦୦ ।

ଜଡ଼େ ଜଡ଼ ଜୀବାତ୍ମା ସେ ପରମୁଁ ପୃଥକ
ବିପରୀତ ଆତ୍ମରତି ଦେହ ଆତ୍ମା ଏକ । ୧୦୧ ।

କହଇ ଦେହକୁ ଆତ୍ମା ବୋଲି ନିଜ ରୂପ
ବହଇ ଦୈହିକ ଦୁଃଖ କଷ୍ଟ ମୋହ ତାପ । ୧୦୨ ।

ମାୟାବୀ ସ୍ୱଭାବେ ରମେ ପ୍ରକୃତିକୁ ପ୍ରେମେ
ମାୟାକୃତ ଜୀବୋଽପାଧି ରମେ ଭ୍ରାନ୍ତ କାମେ ।୧୦୩।

ସ୍ୱରୂପେ ଭୋଗଇ ପ୍ରେମ ଜୀବରୂପେ କାମ
କାମୁଁ ଜାତ ବିକାରିତ ଦେହୋଽପାଧି ଭ୍ରମ ।୧୦୪।

ପ୍ରେମେ ଚିଦାଭାସ ଯୋଗେ ରମଇ ପ୍ରକୃତି
କାମମୟ ଭ୍ରମ ଯୋଗେ ରମଇ ବିକୃତି ।୧୦୫।

ପ୍ରକୃତିରେ ପରମେଶ ବିକୃତିରେ ଜୀବ
ପ୍ରେମେ ଏକାଽନେକ କାମେ ଧରେ ଦୁଇ ଭାବ ।୧୦୬।

ପ୍ରକୃତି ବିକୃତି ଚିହ୍ନେ ଶ୍ରୀଅଙ୍ଗ ଚିହ୍ନିତ
ଏକ ବ୍ରହ୍ମ ଈଶ ଜୀବାକାରେ ସୁଶୋଭିତ ।୧୦୭।

ଈଶ୍ୱର ଉପାଧିମାୟା ଜୀବୋଽପାଧି ଦେହ
ଦେହଜନ୍ୟ ସୁଖ ଦୁଃଖ କର୍ମ ଭୋଗବ୍ୟୂହ ।୧୦୮।

ପିଣ୍ଡ ବ୍ରହ୍ମାଣ୍ଡ ଯା ଗର୍ଭେ ସେ ପିଣ୍ଡ ଭିତରେ
ଅଂଶେ ବହୁ ଜୀବରୂପେ ଲୁଚକାଳି ଖେଳେ ।୧୦୯।

ନିଜେ ଲୁଚେ ନିଜେ ଖୋଜେ ନ ମିଳେ ସନ୍ଧାନ
ହାରେ ଯୁଗ କଳ୍ପ ଚେଷ୍ଟା ବୁଦ୍ଧି ବିଦ୍ୟାଜ୍ଞାନ ।୧୧୦।

କାରଣ ଉପାଧି (ମାୟା) ଧରି ଲୁଚେ ଈଶରୂପେ
କାର୍ଯ୍ୟୋଽପାଧି (ଅବିଦ୍ୟା) ଧରି ଜୀବରୂପେ
ଖୋଜେ ଆପେ ।୧୧୧।

ଏହି ଖେଳେ ଯୋଗମାୟା ଅଭିନେତ୍ରୀ ହୋଇ
ଖେଳାଏ ଈଶ୍ୱର ଜୀବ ଆଦି ଅନ୍ତ ନାହିଁ ।୧୧୨।

ଏହିରୂପେ ଏକ ଆତ୍ମା ବହୁରୂପବାନ
ପ୍ରତିରୂପେ ବହୁବିଧ କ୍ରିୟା କ୍ରୀଡ଼ାମାନ ।୧୧୩।

ଦେହୋଽପାଧିଭେଦେ ଆତ୍ମା ବହୁ ଭେଦ ଅଙ୍ଗ
ଭେଦବାହୁଲ୍ୟରୁ ଜାତ ଲୋକ ଯାହାରଙ୍ଗ ।୧୧୪।

ଆତ୍ମ-ପର-ଭେଦେ ପ୍ରତିଯୋଗିତା ଉଦୟ
ତହିଁ ମୋହ ବଢ଼ି କରେ ଲୀଳାରେ ତନ୍ମୟ ।୧୧୫।

କ୍ରୀଡ଼ାମୟତ୍ୱରୁ ଗୋଳ କନ୍ଦଳ ଅମିତ ।
ତହିଁ କ୍ରୋଧ ରାଗ ଦ୍ୱେଷ ହିଂସାଦି ସମ୍ଭୃତ ।୧୧୬।

ତହିଁରୁ ଅଧର୍ମ ପାପ ଅଶାନ୍ତି ଅକର୍ମ
ତହୁଁ ଦୁଃଖ କଷ୍ଟ ଜନ୍ମ ବଢାଉଇ ମର୍ମ । ୧୧୭ ।

ସଂସାରୀ ଜୀବର ଏହା ବିଶ୍ୱଲୀଳାକ୍ରମ
ଅବିଦ୍ୟା ବାସନାଭ୍ରମଗର୍ଭେ ଏ ଜନମ । ୧୧୮ ।

ଏ ସଂସାର ଲୀଳାଚିତ୍ର ଦ୍ରଷ୍ଟା ଆତ୍ମା ଏକ
ସ୍ୱୟଂମୁକ୍ତ କିନ୍ତୁ ବଦ୍ଧ ହେବାରୁ ଅନେକ । ୧୧୯ ।

ଏକତ୍ୱେ ଈଶ୍ୱର ସେହୁ ବହୁତ୍ୱେ ସେ ଜୀବ
ଏକାନେକ ଭେଦାଭାବେ ସେହି ବ୍ରହ୍ମ ଶିବ । ୧୨୦ ।

ବହୁତ୍ୱେ ବନ୍ଧନ ଦୋଷ ଏକତ୍ୱେ ନିର୍ବାଣ
ଭଲା ଯାଦୁକର ଧନ୍ୟ ସେହି ଏକଜଣ । ୧୨୧ ।

ସର୍ବ ବୈପରୀତ୍ୟ ବଇଚିତ୍ର୍ୟ ଅଘଟଣ
ଅସମ୍ଭବ ଆଦି ଯୁକ୍ତି ତର୍କ ଅନୁମାନ । ୧୨୨ ।

ସର୍ବେ ମିଶି ହାରିଛନ୍ତି ସେହି ଯାଦୁଠାଇଁ
ଯେଉଁ ମନ୍ତ୍ରବଳେ ଆପେ ନିଜକୁ ମୋହଇ । ୧୨୩ ।

ମୋହକରେ ମୁଗ୍ଧ ହୁଏ ଦଣ୍ଡେ ଭୋଗେ ଦଣ୍ଡି
ସ୍ୱୟଂ ପରମାତ୍ମା ଏହି ଏତେ ବଡ଼ ଭଣ୍ଡି । ୧୨୪ ।

ଅକର୍ତ୍ତା ସେ କିନ୍ତୁ ଯାଦୁବଳେ ସର୍ବ କର୍ମ
କରେ ଭୋଗେ କର୍ମଫଳ ଅଭୋକ୍ତା ଆପଣ । ୧୨୫ ।

କର୍ତ୍ତୃତ୍ୱ ଭୋକ୍ତୃତ୍ୱ ଅଭିମାନେ ଜୀବ ରୂପ—
ଧରେ ଯାଦୁ ମନ୍ତ୍ରବଳେ ସ୍ୱରୂପେ ନିର୍ଲିପ୍ତ । ୧୨୬ ।

ଚିଦ୍ରୂପେ ପ୍ରଣବାକାର ଲୀଳାକାରେ ହଂସ
ପରମ ଜୀବାତ୍ମାରୂପେ ଦେହେ ସେ ପ୍ରକାଶ । ୧୨୭ ।

ପ୍ରାଣେନ୍ଦ୍ରିୟ ହୃଦାକାଶେ ନିଜ ସ୍ନେହେ ଜଡ଼ି
ଆତ୍ମପ୍ରେମ ଉତ୍ତଲୀଳା ରସ ଅଛି ବାଢ଼ି । ୧୨୮ ।

ସେହି ରସାସ୍ୱାଦବନ୍ଧ ଯୋଗେ ଜନ୍ମ ରୂପେ
କର୍ମସୂତ୍ରେ ମନଶ୍ଚକ୍ରେ ଭ୍ରମେ ମାୟାକଳ୍ପେ । ୧୨୯ ।

ଏକ ଜଣେ ବଦ୍ଧ ମୁକ୍ତ ଦୁଇ ବିପରୀତ
ଭବଧାରା ବଦ୍ଧ ଜୀବ ଈଶ ନିତ୍ୟ ମୁକ୍ତ । ୧୩୦ ।

ଏକବ୍ରହ୍ମେ ଏତେଡ଼ ଭେଦ ଏ ନ ଜାଣେ ତାକୁ
ଆତ୍ମ ମାୟାକୃତ ଦ୍ୱୈତଛନ୍ଦେ ଖେଳିବାକୁ । ୧୩୧ ।
ବ୍ରହ୍ମରସେ ମାୟାଲୀଳା ରସ ଆସ୍ୱାଦନ
ଇଚ୍ଛି ଜୀବ ଈଶ ହେବ କ୍ରୀଡ଼ାର୍ଥୀ ଆପଣ । ୧୩୨ ।
ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ସିଦ୍ଧ ସ୍ୱଚ୍ଛା କର୍ତ୍ତୃତ୍ୱ
ସର୍ବଶକ୍ତିମତ୍ତ୍ୱ ଆଦି ଈଶଲୀଳାତତ୍ତ୍ୱ । ୧୩୩ ।

ଭୋଗ ଯୋଗ କର୍ମ ଭକ୍ତି ଜ୍ଞାନ ଧର୍ମ ଆଦି
ଲୀଳା ସାଧି ଈଶାର୍ପଣ ଅର୍ଥେ ଜୀବୋପାଧି । ୧୩୪ ।
ଈଶ କ୍ରୀଡ଼େଚ୍ଛାରେ ବହୁ ଜୀବରୂପେ ଖ୍ୟାତ
ଅବିଦ୍ୟାବନ୍ଧନେ ଜୀବ ଭୁଲେ ଈଶ ତତ୍ତ୍ୱ । ୧୩୫ ।
ମୋହେ ଭୁଲେ ଜୀବ ତତ୍ତ୍ୱ ଲଭି ଦେହାକାର
ଦେହାତ୍ମ ଭ୍ରମରୁ ଭୋଗେ ଯାତନା ସଂସାର ।୧୩୬ ।

ପ୍ରାରବ୍ଧ କରମ ପୂର୍ବ ବାସନା ସଂସ୍କାର
ଭୋଗ ସ୍ପୃହା ଆଦି ମିଶି ଗଢ଼ନ୍ତି ଶରୀର । ୧୩୭ ।
ଦେହାତ୍ମ ବାସନା ସଙ୍ଗେ ସର୍ବ ଗୁଣ ଭାବ
ହିଂସା ଆଦି ମିଶି ଦୃଢ଼େ ବାନ୍ଧନ୍ତି ଏ ଜୀବ । ୧୩୮ ।
ଖେଳରୁ ଏ ଗୋଳ ସୃଷ୍ଟି ଆତ୍ମା ମାୟା ଦୁଇ
ପ୍ରତିଯୋଗିତାରେ ମାତି ଅଛନ୍ତି ଉଭାଇ । ୧୩୯ ।

ମାୟାର ଉତ୍କର୍ଷ୍ୟ ସୃଷ୍ଟି ଲୀଳା ଆତ୍ମାବଳେ
ବଳୀ ହେଲେବେଳେ ସୃଷ୍ଟି ମୂଷାରୂପ ଧରେ । ୧୪୦ ।
ଯୋଗ ଜ୍ଞାନାଦି ଅଭ୍ୟାସେ ବ୍ରହ୍ମ କୃପାବଳେ
ବଢ଼େ ଆତ୍ମବଳ ପୁଣି ଅବତାରକାଳେ । ୧୪୧ ।
ଏ ଦୁଇ ଅଭାବେ କିଛି ନାହିଁ ପ୍ରତିକାର
ଜୀବର କେବଳ ଦୁଃଖ ସଂସାର ସମ୍ଭାର । ୧୪୨ ।

ହଉ ତେବେ ଦୁଃଖ ହେଉ ଶ୍ରୀମହାପ୍ରସାଦ
ଏଥିରୁ ସମ୍ଭବ ସିନା ଶାନ୍ତି ମୁକ୍ତିପଦ । ୧୪୩ ।
ଭାବି ଦେଖିବାକୁ ହେବ ଦୁଃଖଠାରୁ ବଳି
କେହି କିଛି ନାହିଁ ଆଉ ବଡ଼ ଉପକାରୀ । ୧୪୪ ।
ବରନ୍ତି ମୀରତା ଭକ୍ତେ ଦୈନ୍ୟ ଦୁଃଖ କଷ୍ଟ
ତହିଁ ପ୍ରଭୁ ଡାକୁଅଛି ବୋଲି ତା ଉତ୍କୃଷ୍ଟ । ୧୪୫ ।
ଡାକିବା ଜୀବର ଧର୍ମ ସାର ଶ୍ରେଷ୍ଠ କର୍ମ
ପ୍ରଭୁ ଜାଣେ ତାର ମୂଲ୍ୟ ପ୍ରାର୍ଥୀ ଜାଣେ ମର୍ମ । ୧୪୬ ।

ଚହ୍ଲାଏ ସୁଖକୁ ଦୁଃଖ ଏ ତା ବଡ଼ ଗୁଣ
ତହୁଁ ସିନା ଦୁଃଖ ପ୍ରତିକାର ନିରୂପଣ । ୧୪୭ ।
ଦୁଃଖବେଗ ଲୋଡ଼େ ସୁଖ ଶାନ୍ତି ନିକେତନ
ଶାନ୍ତି ପରେ ବ୍ରହ୍ମାନନ୍ଦ ଲଭେ ଧାଏଁ ଜ୍ଞାନ । ୧୪୮ ।
ଏଡ଼େ ମହାଲଭର ତ ଦୁଃଖ ମୂଳଦୁଆ
ଧନ୍ୟବାଦ ଦୁଃଖ ତୋତେ ତୁ ନିଜେ ଦୁଃଖହା । ୧୪୯ ।

ବହୁ କୋଟି ଜନ୍ମ ଦୁଃଖ ସୁମରି ମାନସ
ତହିଁ ଅଦ୍ୟ ମହାଘୋର କଳିର କଳୁଷ । ୧୫୦ ।
ତମୋମୟ ତାପ ଭୋଗି ଲଭ୍ ଦଶା ଶେଷ
ପାଇବାକୁ ଆଶା ଏବେ ସାଗର ପୀୟୂଷ । ୧୫୧ ।
ଦୟା ଧର୍ମ ପ୍ରେମ ଜ୍ଞାନ ଅମୃତ ସାଗର
ଆଦ୍ୟ ପୂର୍ଣ୍ଣ ରୂପ ତବ ନବକଳେବର । ୧୫୨ ।

ଈଶ୍ୱର ଆକାର ନାହିଁ ତୁମ୍ଭେ ନିରାକାର
ଜୀବ ମାଟିପିଣ୍ଡଧାରୀ ତୁମ୍ଭେ ଅବତାର । ୧୫୩ ।
ଧରି ଆସିବାର ସୁଧା ଲଭ ଏ ଦର୍ଶନ
ହରି ହରି ବୋଲ ସର୍ବମୁଖେ ଏକ ଗାନ । ୧୫୪ ।
ଉଠୁ ଏହି ରୋଳ ଫାଟୁ ଆକାଶ ମେଦିନୀ
ପ୍ରାକୃତ ଜଗତ ଭେଦି ଯାଉ ସ୍ୱର୍ଗ ଭୂମି । ୧୫୫ ।

କମ୍ପାଉ ବୈକୁଣ୍ଠଧାମ ରତ୍ନ ସିଂହାସନ
ଭାଙ୍ଗୁ ମହା ଯୋଗନିଦ୍ରା ଉଠନ୍ତୁ ଆପଣ । ୧୫୬ ।
ଆସନ୍ତୁ ତାକବ ଢଂଗ ତେଜନ୍ତୁ ଅଳସ
ଜାଣନ୍ତୁ ହୋଇଲା ବେଳ ପାପାକ୍ରାନ୍ତ ବିଶ୍ୱ । ୧୫୭ ।
ଯାର ଜ୍ଞାନଶକ୍ତି ସଦା ଚେତା ହଏ ମନେ
ଯାର ବଳୁ କ୍ରିୟାଶକ୍ତି ଆସେ ପ୍ରାଣେ ପ୍ରାଣେ । ୧୫୮ ।

ଜୈବଶକ୍ତି ଦାନେ ଗଢ଼ିଲେ ଜଡ଼ାକାର ପିଣ୍ଡ
ଐଶୀଶକ୍ତି ବଳେ ଶାସେ ସଜାଡ଼େ ବ୍ରହ୍ମାଣ୍ଡ । ୧୫୯ ।
କ୍ଷୁଦ୍ରଶକ୍ତି ଦାନେ ଯଥା ଶୋଧଇ ଶରୀର
ମହାଶକ୍ତି ବଳେ ତଥା ପାଳଇ ସଂସାର । ୧୬୦ ।
ଆସୁର ପୈଶାଚୀକ୍ରିୟା ଅନନ୍ତ ଅଧର୍ମ
ବଢିଲେ ତା ନାଶେ ଯଥା ମହା କାଳଯମ । ୧୬୧ ।
ଭକ୍ତି ଦେଇ ଯଥାଶକ୍ତି ନିଜେ ସବୁ ମହା—
ଶକ୍ତି ଧରି ଆସି ମେଣ୍ଟେ ଧର୍ମରକ୍ଷା ସ୍ପୃହା । ୧୬୨ ।

ଲେଡ଼ା ମତ ଆତ୍ମାମାୟା ଶକ୍ତି ଇଚ୍ଛାବଳେ
ଆସି ହୁଏ ସ୍ୱରୂପେ ବା ପ୍ରବେଶି ଅନ୍ୟରେ । ୧୬୩ ।

ନାଶି ପାପ ରଖେ ଧର୍ମ ସତ୍ୟ ତାରେ ଆଣ୍ଡି
ଅଜ୍ଞାତ ତା ମାୟାଲୀଳା ଗୁପ୍ତତନ୍ତ୍ର ଗତି । ୧୬୪ ।

ଭାବର ବିଗ୍ରହ ସେହି ଭାବର ଗୋସାଇଁ
ନାମେ ଗୁଣେ ଭାବଗ୍ରାହୀ ଭାବେ ଦୃଶ୍ୟ ସେହି । ୧୬୫ ।

ଧର୍ମଗ୍ଲାନ ଅଭ୍ୟୁଦୟୁ ହେଲେ ଅଧର୍ମର
ଆପଣାକୁ ଆପେ ସୃଜ ହୁଏ ଅବତାର । ୧୬୬ ।

ବିନାଶି ଦୁଷ୍କୃତଗଣ ସୁକୃତପାଳନ
କରନ୍ତୁ ସୁରକ୍ଷା ଧର୍ମବିଧି ସନାତନ । ୧୬୭ ।

ଗୀତାର ପ୍ରତିଜ୍ଞା ବାକ୍ୟ ପ୍ରଭୁ ସତ୍ୟବାଦୀ
ଏହି ବେଳ ସେହି ସିନା ବୁଝ ମର୍ମ ଭେଦ । ୧୬୮ ।

ଆସି ଦେଖ ଆଜ ପ୍ରଭୁ ତୁମ୍ଭ ଅବତାର
ଭୂମି ଏ ଭାରତମାତା କେଡ଼େ ନାରଖାର । ୧୬୯ ।

ଜନନୀ ଜନମଭୂମି ସଦା ବନ୍ଦନୀୟା
ମାତୃ ମାତୃଭୂମି ଦୁଃଖ ସହେ କାର ହିୟା । ୧୭୦ ।

ଅନ୍ନ-ବସ୍ତ୍ର-ଧନ-ମାନ-ହୀନ ତା ସନ୍ତାନ
ମୁଖାବନ୍ଧ ପ୍ରହାର ସ୍ୱଗୃହକାରାଶ୍ରମ । ୧୭୧ ।

ଭୋଗି ଏ ନର୍ମମ ଦୁଃଖ ବିକଳ ବେଦନେ
ତପ୍ତାଶ୍ରୁ ଉତ୍ସର୍ଗେ ସଦା ମର୍ମାହତ ପ୍ରାଣେ । ୧୭୨ ।

ଛଳେ ବଳେ କଉଶଳେ ଲୁଣ୍ଠନ ଶୋଷଣ
ନିତିନଇତିକ ଦସ୍ୟୁ ଆତତାୟୀଗଣ । ୧୭୩ ।

ଦମ୍ଭ, ଦର୍ପ, ମୋହ, ଗର୍ବ, ମିଥ୍ୟା, ପ୍ରବଞ୍ଚନା
ସ୍ୱେଚ୍ଛାଚାର ଆଡ଼ମ୍ବରକାରୀ ଶ୍ରେଷ୍ଠେ ଗଣା । ୧୭୪ ।

କୁଶିକ୍ଷା କୁଦୀକ୍ଷା ଶସ୍ୟୁତାମୀ ପରନାଶ,
ନିଶାଖୋରୀ ବ୍ୟସନେ ବିଳାସେ ଦେଶ ଶେଷ । ୧୭୫ ।
ବାହ୍ୟାନ୍ତର କର୍ମଭାବ ଅଶୁଦ୍ଧ ଅଭବ୍ୟ
ସ୍ୱେଚ୍ଛାଚାର ମ୍ଲେଚ୍ଛ ହାର ସବୁ ପଶୁଭାବ । ୧୭୬ ।
ଧର୍ମ, କର୍ମ, ଉପାସନା ରୁଚି ଇଚ୍ଛାଧୀନ
ରହି ଦୁଃଖେ ଡାକେ ଝାହି ଶ୍ରୀ ମଧୁସୂଦନ । ୧୬୭ ।

କୋଟି-ଦୁଃସ୍ଥ-ଶିଶୁ କୋଡ଼ା ଲଞ୍ଛିତା ଦଳିତା ।
ପରପଦାନତା ମାତା ତାର ବିଶ୍ୱଧାତା । ୧୭୮ ।

ପଦଧୂଳି ଦିଅ ମୁକ୍ତ ହୋଇବ ଭାରତ
ଅନ୍ୟାୟ-ଅଧର୍ମ ସବୁ ହେବ ଅନ୍ତର୍ହିତ । ୧୭୯ ।

ଭାରତ ସମୀର ହେବ ବସନ୍ତ ମଳୟ
ମୃଣ୍ମୟ ଜଗତ ସ୍ୱର୍ଣ୍ଣ ଗଙ୍ଗା ଜଳାଶୟ । ୧୮୦ ।

ଆକାଶ ହୋଇବ ଶିବାକାର ଦିଗମ୍ବର
ଜ୍ଞାନାଲୋକମୟ ହେବ ଦିବସ ଅନ୍ଧାର । ୧୮୧ ।

ଭକ୍ତ ମୁକ୍ତ ହେବେ ଦୂର ହେବ ଅମଙ୍ଗଳ
ନାସ୍ତିକତା ଜଡ଼ବାଦ ଯିବ ରସାତଳ । ୧୮୨ ।

ବ୍ୟବହାରେ ମିଶିଯିବ ଧର୍ମଜ୍ଞାନ ପ୍ରେମ
ଛନ୍ଦ ମିଥ୍ୟା କୁଟିଳତା ଆଦି ସବୁ ଭସ୍ମ । ୧୮୩ ।

ଆଜି ଯା କରିବ ସବୁ ତବ ଇଚ୍ଛାଧୀନ
କୀଟାଣୁ ରଚିବା ଶକ୍ତି ତା କରେ ବର୍ଣ୍ଣନ । ୧୮୪ ।

ନାନାବିଧ ଉପାସନା କର୍ମ ଭକ୍ତି ଜ୍ଞାନ
ଧାରଣା ସମାଧି ଆଦି ପ୍ରାଣାୟାମ ଧ୍ୟାନ । ୧୮୫ ।

ଏ ସବୁ ଉପାୟେ ହେଲେ ତୋର ଅନୁଗ୍ରହ
ଜୀବ ଭେଟିପାରେ ବା ତୋ ଚିନ୍ମୟ ବିଗ୍ରହ । ୧୮୬ ।

ମନବୁଦ୍ଧି ଇନ୍ଦ୍ରିୟାଦି ପରଶ ଶରୀର
ମ୍ରିୟମାଣ ଭାବେ ପଡ଼ିଥାଆନ୍ତି ପାଖର । ୧୮୭ ।

ହେଲେ କିନ୍ତୁ ଅବତାର ନବ କଳେବର
ସୂକ୍ଷ୍ମ ସ୍ଥୂଳ ଦେହ ଆଦି କୃତାର୍ଥ ସକଳ । ୧୮୮ ।

ଆଖି ଆଖି ଦେଖାଦେଖି ବେଳେ ନେତ୍ରମୁକ୍ତ
ତୋର କଥାମୃତପାନେ କର୍ଣ୍ଣ ପରିତୃପ୍ତ । ୧୮୯ ।

ଶ୍ରୀଅଙ୍ଗ ସୁବାସାନିଳ ନାସାରନ୍ଧ୍ରେ ପଶି
ନାସିକା ପରଶ ଦେହାନ୍ତର ଯିବ ବାସି । ୧୯୦ ।
ମୁକତ ହୋଇବ ନାସା ଜିହ୍ୱା ରସଗ୍ରାହୀ
ମୁକ୍ତ ହେବ ପଦାମୃତ ପଦଧୂଳି ପାଇ । ୧୯୧ ।
ତୋହର ଶ୍ରୀଅଙ୍ଗ ସଙ୍ଗ ପାଇଁ ବାହ୍ୟାନ୍ତର
ଜଡ଼ ପିଣ୍ଡାକାର ଦେହ ମୁକତ ସତ୍ୱର । ୧୯୨ ।

ନାସାଦ୍ୱାରେ ଧାଇଁ ସଦା ବ୍ୟଗ୍ରେ ଏହି ପ୍ରାଣ
ଅତ୍ୟାଗ୍ରହେ ଆସେ ଯାଏ ଧାଇ ଦରଶନ । ୧୯୩ ।
ନାସାଗ୍ର ବାହାରେ ଆସି ପ୍ରଭୁ ନ ଦେଖଇ
ସମ୍ମୁଖେ ଭିତରେ ଯାଏ ନ ଦେଖଇ ତହିଁ । ୧୯୪ ।
ବହୁକୋଟି ଜନ୍ମଭୂମି କର ଅନ୍ୱେଷଣ
କ୍ଲାନ୍ତ ଲଭି ଧାଉଅଛି ମୂର୍ତ୍ତିମାନ ବ୍ରହ୍ମ । ୧୯୫ ।

ଅମୂଲ୍ୟ ଅମୋଘ ଚିନ୍ତାମଣି ଦେଖି ସ୍ଥିର
ହେବ ବିନା ପ୍ରାଣାୟାମେ କୁମ୍ଭକ ଆକାର । ୧୯୬ ।
ଅବିଦ୍ୟା ବାସନା ଆଦି ସ୍ୱଭାବ ସଂସ୍କାର
ହୃଦୟସ୍ଥ ମନ ବୁଦ୍ଧି ଚିତ୍ତ ଅହଂକାର । ୧୯୭ ।
ମାୟିକ ଗୁଣ ବିକାରଯୁକ୍ତ ଏହିମାନେ
ପ୍ରାଣେନ୍ଦ୍ରିୟ ଦେହ ସଙ୍ଗେ ଦେଖିବେ ନୟନେ । ୧୯୮ ।

ନିରାକାର ପରଂବ୍ରହ୍ମ ସାକାର ମୂରତି
ଦରଶନ ପାଇଁ ସର୍ବେ ଲଭିବେ ମୁକତି । ୧୯୯ ।
ଜାଙ୍ଗୁଳିକମନ୍ତ୍ର ଯଥା ହରେ ସର୍ପ ବିଷ
ସେହିପରି ଧ୍ୱଂସ ହେବ ଅଜ୍ଞାନ କଳୁଷ । ୨୦୦ ।
ଯୋଗମାର୍ଗାଦିରେ ସିନା ପ୍ରକୃତି ବିଲୀନ
ସୁପ୍ତ ମୃତ ପ୍ରାପ୍ତ ହେଲେ ବ୍ରହ୍ମ ଦରଶନ । ୨୦୧ ।

ଘଟଇ ଆତ୍ମାର ଏକା ଏ ନୁହେ ସେପରି
ଏଥିରେ ପ୍ରକୃତି ସଙ୍ଗେ ଜୀବ ଦେଖେ ହରି । ୨୦୨ ।
ପୁରୁଷ ପ୍ରକୃତି ମନ ପ୍ରାଣେନ୍ଦ୍ରିୟ ଦେହ
ସର୍ବେ ସମେ ନିସ୍ତରିବେ ରଚି ଏକ ବ୍ୟୂହ । ୨୦୩ ।
ବର୍ଣ୍ଣନା ଅତୀତ ମନ ବଚନ ଅତୀତ
ଜ୍ଞାନଭକ୍ତି ଯୋଗାତୀତ ସର୍ବାତୀତ ତତ୍ତ୍ୱ । ୨୦୪ ।

ଅବତାର ଲୀଳାତତ୍ତ୍ୱ ଚତୁର୍ବର୍ଗପର
ସେ ଜ୍ୟୋତି ପ୍ରକାଶି ସ୍ୱରେ ଆଗମନ ତୋର । ୨୦୫ ।
କର୍ତ୍ତବ୍ୟପରାୟଣତା, ସଂଯମ, ଅହିଂସା
ଦାନ, ଦୁଃଖ, ସହନତ୍ୱ, ତ୍ୟାଗ, ସତ୍ୟ ଭାଷା । ୨୦୬ ।
ବ୍ରହ୍ମ କର୍ମ ଭାବାଲୋକ ପୁଣ୍ୟ ତେଜୋଦୟ
ବିକାଶି ମହାପୁରୁଷେ ଦେଲେଣି ଅଭୟ । ୨୦୭ ।

ସାମ୍ୟ, ମୈତ୍ରୀ, ସ୍ୱାଧୀନତା, ଧୈର୍ଯ୍ୟ, ଶାନ୍ତି, ପ୍ରେମ
ପରସେବା ବ୍ରତ, ବିଶ୍ୱହିତେ ପ୍ରାଣଦାନ । ୨୦୮ ।

ପ୍ରବୃଦ୍ଧତ ଦୟା, ଭକ୍ତି, ଧର୍ମ, କ୍ଷମା, ଜ୍ଞାନ
ସୂର୍ଯ୍ୟାଗମ ପୂର୍ବରଶ୍ମି ରେଖା ଯଥା ଯେନ । ୨୦୯ ।

ଏ କାରଣ ଦେଇ ଲୁଚି ରହିଅଛ ଯହିଁ
ଆସ ପ୍ରଭୁ ଜ୍ଞାନ-ଧର୍ମ-ରବି ଉଦେ ହୋଇ । ୨୧୦ ।

ଅଚଳ ଚଳସ୍ଥ ଗୁପ୍ତ ମର୍ମ ତଥ୍ୟଗାନ
ହେବ ଦେଖି ପ୍ରେମାନନ୍ଦ ପୂର୍ଣ୍ଣଚନ୍ଦ୍ରାନନ । ୨୧୧ ।

ପଙ୍ଗୁ ଲଂଘେ ମେରୁ ମୂକ ମୂର୍ଖ ବେଦଗାନ
କୃପାବଳେ ଅସମ୍ଭବ ହୁଏ ସୁଘଟନ । ୨୧୨ ।

ସେ ଆଶେ ରହିଲି ଅଧା ହୋଇ ଏହି ଭବ
ଅବଶିଷ୍ଟ ଯୋଗେ ସିନା ପୂର୍ଣ୍ଣାଙ୍ଗ ସମ୍ଭବ । ୨୧୩ ।

ପୂର୍ଣ୍ଣ ହେବା ଆଶା ପ୍ରଭୁ ତୋ ପାଖକୁ ଯାଉ
ଅଳଙ୍କଳ ସବୁକର ପାଦେ ଖଟୁଥାଉ । ୨୧୪ ।

କୃପାରେ ସେ ଅଗ୍ରଦୂତ ହେଉ ସଂସାରର
କଢ଼ାଇ ଆଣୁ ସେ ବାଟ ବ୍ରହ୍ମାଣ୍ଡଠାକୁର । ୨୧୫ ।

ଆସ ହେ ଦେହର ପ୍ରାଣ ପ୍ରାଣର ହୃଦୟ
ହୃଦୟର ବନ୍ଧୁ, ଆତ୍ମା, ଆସ ସର୍ବମୟ । ୨୧୬ ।

ଜୀବ ନିତ୍ୟ ଗୁପ୍ତବନ୍ଧୁ ଜୀବେଶ୍ୱର ଆସ
ଆଦି-ମଧ୍ୟ-ଲୟ ସାକ୍ଷୀମୁକ୍ତ-ପୀଠାଧୀଶ । ୨୧୭ ।

ସର୍ବାବସ୍ଥା ସଖା ନାଥ ବନ୍ଧୁ ଧାତା ତୁହି
ବାରେ ନେତ୍ର ଦେଖି ପ୍ରଭୁ ବୋଲୁ ଧାହି ଧାହି । ୨୧୮ ।

ନାଥ, ବନ୍ଧୁ କ୍ଷଣ ପଦେ ତୁ ଏକା ଭଜନ
ଶୁଣ ଆଉ ସବୁ ଯା ଅଜ୍ଞାତ ସମ୍ବୋଧନ । ୨୧୯ ।

ଦୁଷ୍ଟ ନିବାରଣ ପୁଣି ସୁକୃତ ପାଳନ
ହେଲେ ଆସିବା ତୋ ଧର୍ମ ଥାଉ ଏ ଆହ୍ୱାନ । ୨୨୦ ।

ଡାକିବା ଜୀବର ଧର୍ମ ସେ କରୁ ତା କର୍ମ
କାଳୋଚିତ ତୋ କର୍ତ୍ତବ୍ୟ ତୁ କର ପାଳନ । ୨୨୧ ।

ଆସିବାର ବେଳ ଏହି ଆସ ପ୍ରଭୁ ଆସ
ଧର ମହାପାପଭାର କର ହେ ଉଶ୍ୱାସ । ୨୨୨ ।

ଯାଇବାକୁ ନାହିଁ ଆଜ ଆଜ ନାହିଁ ମନେ
କଛି ନାହିଁ କହିବାକୁ ଅଧିକ ବଚନେ । ୨୨୩ ।
ସର୍ବଜ୍ଞ ସରବମୟ ସର୍ବ ସର୍ବେଶ୍ୱର
ଅଧିକ କହିବା ଲଜ୍ଜା ସମାନ ତୁମ୍ଭର । ୨୨୪ ।
କୀଟାଣୁ ପକ୍ଷରେ ମଧ୍ୟ ହେବ ଗୁରୁତର
ଏହିଠାରେ ସବୁ ଦୋଷ ପ୍ରଭୁ କ୍ଷମାକର । ୨୨୫ ।

କ୍ଷମା ଦୟା ଜ୍ଞାନ ଧର୍ମ ସକଳ ତୋଠାରିଁ
ଦରଶନ ମିଳୁ ପ୍ରଭୁ ବ୍ରହ୍ମାଣ୍ଡ ଗୋସାଇଁ । ୨୨୬ ।
ସର୍ବୈଶ୍ୱର୍ଯ୍ୟ ସର୍ବ ଧର୍ମ ଅର୍ଥ କାମ ମୋକ୍ଷ
ସର୍ବସିଦ୍ଧଧାମ ତୁମ୍ଭେ ସିଦ୍ଧ କଳ୍ପବୃକ୍ଷ । ୨୨୭ ।
ହେଲେ ସୁଧା ଫଳମୟ ଏ ବୃକ୍ଷ ଦର୍ଶନ
ଅନ୍ୟ ଫଳ ସବୁ ତୁଚ୍ଛ ଯଥା ବାନ୍ତ୍ୟାଶନ । ୨୨୮ ।

ଭାବକୁ ନକଟ ହରି ନକଟରେ ଦୃଶ୍ୟ
ଅଭାବକୁ ଅତି ଦୂର ବଡ଼ ଅପ୍ରକାଶ୍ୟ । ୨୨୯ ।
ଏ ଭାବ ତୋ' କୃପାଦତ୍ତ ଅନ୍ୟ ମତେ ନାହିଁ
ସେହି କୃପା ଅହେତୁକ ଦାନ ନୁହେ କହି । ୨୩୦ ।
କୃପାର ସାଗର ହରି କରୁଣାନିଧାନ
ସର୍ବମୟ ହରି ହରିମୟ ସର୍ବ ସମ । ୨୩୧ ।

ପ୍ରଣତ ସମ୍ବଳ ହରି ତୁମ୍ଭେ ଦୟାମୟ
ନଜ ଗୁଣେ ଦୟାକର ଦରଶନ ଦିଅ । ୨୩୨ ।
ଦୃଶ୍ୟ, ଦ୍ରଷ୍ଟା, ଦର୍ଶନାଦି ସବୁ ଯହିଁ ଲୀନ
ସେ ଦର୍ଶନ ମିଳୁ ପ୍ରଭୁ ସେହି ଦରଶନ । ୨୩୩ ।
ମ୍ଲେଚ୍ଛନିବହନିଧନେ କରେ କରବାଳ
ପାଦତଳଗତ ହେଉ ଭୁବନ ମଣ୍ଡଳ । ୨୩୪ ।

ଆଖି ଲାଖି ରହୁ ସେହି ପାଦପଦ୍ମ ତଳେ
ସର୍ବ ଧର୍ମ, ଭକ୍ତି, ଜ୍ଞାନ ସେବନ୍ତୁ ସେଠାରେ । ୨୩୫ ।
ସମାଧିସିଦ୍ଧ ନର୍ବାଣେ ଯେ ଅଦ୍ୱୈତବ୍ରହ୍ମ
ସର୍ବମତେ ଖ୍ୟାତ ସେହୁ ପୁରୁଷ ପ୍ରଧାନ । ୨୩୬ ।
ଦେବଦତ୍ତ ଅଶ୍ୱପୃଷ୍ଠାସନେ ବାରବେଶେ
ଅମଳ କମଳ ଶୋଭା ପଦ ଯାର ଦିଶେ । ୨୩୭ ।

———

# ଆତ୍ମଦର୍ଶନରେ ବିଶ୍ୱଚିତ୍ରକଳ୍ପନା

## ଓଁ ପରଂବ୍ରହ୍ମଣେ ନମଃ

## ୧ମ ପାଠ--ଦେହଦର୍ଶନରୁ ଜ୍ଞାନାନୁସନ୍ଧାନ ଓ ଆତ୍ମପରିଚୟ

ଏହି ପରିଦୃଶ୍ୟମାନ ବିଶାଳ ବିଶ୍ୱ ବ୍ରହ୍ମାଣ୍ଡ ସ୍ୱତଃ ବିରାଜିତ ରହି ଅସଂଖ୍ୟ ପ୍ରାଣୀମାନଙ୍କ ଦ୍ୱାରା ସର୍ବଦା ସନ୍ଦୃଷ୍ଟ ହେଉଅଛି; ଏହି ଦର୍ଶନ ଆତ୍ମ ସଙ୍ଗେ ସଙ୍ଗେ ଆତ୍ମଠାରେ ସମୁଦିତ ଥିବା ଜ୍ଞାନସାହାଯ୍ୟରେ ସୁସମ୍ପାଦିତ ହେଉଅଛି । ଏହି ଜ୍ଞାନର ଅଧିକାଂଶ ସ୍ୱରୂପ ଆମ୍ଭେ ସର୍ବଦା ଜ୍ଞାମି ହୋଇ ବିରାଜମାନ ରହିଥାଉଁ । 'ଆମ୍ଭେ' ବୋଲି ଏହି ଆତ୍ମଲକ୍ଷ୍ୟ ପ୍ରତ୍ୟେକ ପ୍ରାଣୀର ସ୍ୱରୂପତଃ ନିର୍ଦ୍ଦିଷ୍ଟ ଅଛି । ଦୈହିକ ଓ ମାନସିକ ସମୁଦାୟ କର୍ମର ଆମ୍ଭେ କର୍ତ୍ତା, ଏତଦ୍ରୂପ ସମୁଦାୟ ଜ୍ଞାନର ଆମ୍ଭେ ଜ୍ଞାତା, ସମୁଦାୟ ଦୃଶ୍ୟର ଆମ୍ଭେ ଦ୍ରଷ୍ଟା ଓ ସମୁଦାୟ ଭୋଗର ଆମ୍ଭେ ଭୋକ୍ତା ବୋଲି ଏହାରି ଦ୍ୱାରା ଆମ୍ଭେମାନେ ଆପଣାକୁ ନିଶ୍ଚୟ କରୁଥାଉଁ । ଏହାକୁ କୁହାଯାଏ ଅହଂକାରାତ୍ମକ ଜ୍ଞାନ ।

ଏହି ଜ୍ଞାନ ପ୍ରତି ଅନ୍ତରରେ ବିଦ୍ୟମାନ ଥାଇ ପ୍ରାଣୀଶରୀରକୁ ସଚେତନ ଓ ସଚେଷ୍ଟ କରି ରଖିଅଛି, ଅର୍ଥାତ୍ ଏ ଜ୍ଞାନ ଅଭାବରେ ଜୀବଜଗତର କର୍ମ, ଉଦ୍ୟମ ଓ ସୃଷ୍ଟିର ନିୟମରକ୍ଷଣ ପ୍ରଭୃତି ଅସମ୍ଭବ ହୋଇପଡ଼ନ୍ତା । ବ୍ୟବହାରନ୍ତଃ ଜଣାଯାଉଅଛି ଯେ ଏହି ଆତ୍ମଲକ୍ଷ୍ୟଦ୍ୱାରା ଦେହାକାରବିଶିଷ୍ଟ ଜଡ଼ପିଣ୍ଡ 'ମୁଁ' ବୋଲି ଅଭିଲକ୍ଷିତ ହେଉଅଛି । କୌଣସି ଲୋକକୁ 'ଏ କିଏ ?' ବୋଲି ପଚାରିଲେ ସେ କହିଥାଏ 'ହଁ'—ଅର୍ଥାତ୍ ଏହି 'ହଁ' ବା 'ହୁଁ' ଶବ୍ଦ ଯହିଁରୁ ବାହାରିଲା, ସେହି ଦେହ 'ମୁଁ' । ତା'ପରେ ମଧ୍ୟ ସମୟେ ସମୟେ ଲୋକ ଆପଣାକୁ ଲକ୍ଷ୍ୟକରି ଛାତିରେ ହାତ ମାରିଥାଏ, ଅର୍ଥାତ୍ ଏହି ଦେହହିଁ 'ମୁଁ' । କର୍ମେନ୍ଦ୍ରିୟରେ କର୍ମ କଲାବେଳେ ବା ଜ୍ଞାନେନ୍ଦ୍ରିୟରେ ଜାଣିବାବେଳେ ଉକ୍ତ ଇନ୍ଦ୍ରିୟମାନେ ଦେହ ସଂଲଗ୍ନ ଥିବାରୁ ସେହି କର୍ତ୍ତା 'ଆପଣାକୁ' ଦେହ ବୋଲି ନିଶ୍ଚୟ କରିଥାଏ । ସୁତରାଂ ଦେହରେ କେହି ଆଘାତ କଲେ ଲୋକ କହିଥାଏ, ମତେ ପ୍ରହାରକଲା, ସେବା ଶୁଶ୍ରୂଷା କଲେ କହିଥାଏ, ମତେ ସେବା କଲା । ରୋଗଦ୍ୱାରା ପୀଡ଼ିତ ହେଲେ ଲୋକ କହେ, 'ମୁଁ' ପୀଡ଼ିତ ଅଛି । ଏଥିରୁ ବୁଝାଯାଉଅଛି ଦେହକୁ 'ମୁଁ' ବୋଲି ନିଶ୍ଚୟ କରିବା ଲୋକର ବ୍ୟବହାରପ୍ରସିଦ୍ଧ ଅଟେ । ଆଜି ମଧ୍ୟ ଦେହ ଅସୁସ୍ଥ ଥିଲେ, ଏକ ସମୟରେ କହିବାକୁ ହୁଏ ମୁଁ ଅସୁସ୍ଥ ଅଛି, ଅନ୍ୟ ସମୟରେ କହିବାକୁ ହୁଏ ମୋର ଦେହ ଅସୁସ୍ଥ ଅଛି । ଏ ସ୍ଥଳରେ ଦେହକୁ ଏକ ସମୟରେ ମୁଁ ଓ ଅନ୍ୟ-ସମୟରେ ମୋର ବୋଲି ସ୍ଥିର କରିଗଲା । ମାତ୍ର ବୁଝିବାକୁ ହେବ, ମୁଁ ଯାହା ଓ ମୋର ଯାହା—ଏ ଉଭୟ ଏକ ହୋଇ ନ ପାରେ; ଧନୀର ଧନ ସ୍ଥଳେ ଧନୀ ଓ ଧନ ଏକ ପଦାର୍ଥ ନୁହନ୍ତି ।

## ୨ୟ ପାଠ—ଦେହ ଓ ଦେହୀର ପାର୍ଥକ୍ୟସମ୍ବନ୍ଧର ସୂଚନା

ଦେହକୁ ମୋର କହିବାବେଳେ ବକ୍ତା ଆପଣାକୁ ଦେହର ଅଧିକାରୀ ବା ଦେହୀ ବୋଲି ଭିତରେ ଭିତରେ ଅଜ୍ଞାତସାରେ ସ୍ୱୀକାର କରନ୍ତି । ଏପରି ସ୍ୱୀକରଣ ସ୍ଥଳେ ଦେହରୁ ଦେହୀ ସ୍ୱତନ୍ତ୍ର ଅନ୍ୟତମ ପଦାର୍ଥ ବୋଲି ନିଶ୍ଚୟ କରାଯିବା ବିଧେୟ । ତେବେ ଦେହ କିଏ ? ଏବଂ ଦେହୀ କିଏ ? ଏ ଉଭୟ ଏକ କି ନା ଏ ସମ୍ବନ୍ଧେ ବିଚାର କରାଯାଉ । 'ମୁଁ କିଏ ? କିଏ ? ବା କିପରି ?' ଏ ସମ୍ବନ୍ଧେ ଆତ୍ମନିଶ୍ଚୟ ହେଲେ ସିନା ମୋର କର୍ତ୍ତବ୍ୟ କିଏ, ମୋର ଧର୍ମ କିଏ, ଇତ୍ୟାଦି ସବୁ ସ୍ଥିର କରିବା ସୁବିଧା ହେବ । ଆତ୍ମନିଶ୍ଚୟ ନ ହେଲେ ଧର୍ମାଧର୍ମ, ଜ୍ଞାନାଜ୍ଞାନ, ବା କର୍ତ୍ତବ୍ୟାକର୍ତ୍ତବ୍ୟ କିଛି ସ୍ଥିର ହୋଇ ନ ପାରେ । ଏହି ଆତ୍ମନିଶ୍ଚୟଜ୍ଞାନ ଅଭାବରେ ସଂସାରରେ ସବୁ ବିପରୀତ ଫଳ ଘଟୁଅଛି ଓ ସଂସାରୀ ସର୍ବଦା ସର୍ବପ୍ରକାରରେ ସନ୍ତପ୍ତ ଓ ପରିକ୍ଲିଷ୍ଟ ହୋଇ ରହିଅଛି ।

ମନୁଷ୍ୟର ଆନ୍ତରିକ ଇଚ୍ଛା, ମୋର ସୁଖ ଓ ଶାନ୍ତି ସର୍ବଦା ଅଖଣ୍ଡଭାବରେ ଚିରବିରାଜମାନ ରହିଥାଉ, ମୋର ଦୁଃଖ, କଷ୍ଟ ବା ଅଶାନ୍ତି କଦାଚ ନ ହେଉ । ମାତ୍ର ଏ ଅଭିପ୍ରାୟର ବିପରୀତ ଫଳ ସଂସାରୀ ଲୋକ ପ୍ରାୟ ଅନୁଭବ କରିଥାଏ । ଅନିର୍ବଚନୀୟ ଓ ଅଚିନ୍ତ୍ୟ କୌଶଳସୃଷ୍ଟ ଏହି ପରିଦୃଶ୍ୟମାନ ସୁବୃହତ୍ ସଂସାର ବହୁବିଧ ପ୍ରାଣୀବର୍ଗ ସହିତ ସ୍ୱତଃ ସୁଶୋଭିତ ହୋଇ ରହିଅଛି, ଅଥଚ ଏହା ସୁଖଦୁଃଖ ଓ ମୋହବିଜଡ଼ିତ; ଏଥିରେ ନିର୍ମଳ ସୁଖଶାନ୍ତିର ଅଭାବ କାହିଁକି ?

ପ୍ରାଣୀର ଆନ୍ତରିକ ଇଚ୍ଛା—ସୁଖ, ଶାନ୍ତି । ପ୍ରାଣିଦେହାକାର-ପିଣ୍ଡ ଓ ବାହ୍ୟ-ବ୍ରହ୍ମାଣ୍ଡ ଉଭୟର ସଂଶ୍ଳିଷ୍ଟ ଓ ସମ୍ବନ୍ଧ ନେଇ ବିଚାର କଲେ ଦେଖାଯାଏ ଯେ ପ୍ରାଣୀ ଅନ୍ତରରେ ଯେପରି ସୁଖଶାନ୍ତି ଲୋଡ଼ୁଛି, ବାହ୍ୟତଃ ଏହି ବିରାଟ ବିଶ୍ୱବ୍ରହ୍ମାଣ୍ଡ ମଧ୍ୟ ତଦନୁରୂପ ସୁଖଶାନ୍ତିପ୍ରଦଭାବରେ ଦଣ୍ଡାୟମାନ ରହିଅଛି; ଅର୍ଥାତ୍ ଏ ଉଭୟ ସମ୍ବନ୍ଧ ଯେପରି ପ୍ରେମମୟ, ଫଳ କାହିଁକି ସେପରି ନ ହୋଇ ବିପରୀତ ଭାବ ଧାରଣ କରିଅଛି ?

ମୁଁ କିଏ, କିଏ ବା କିପରି ? ଅର୍ଥାତ୍ ମୁଁ ସୁଖମୟ କି ନା ଏବଂ ଏହି ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ-ଜଗତ୍ ପ୍ରେମମୟ କି ନା ? —ପ୍ରଥମରେ ବିଚାର କରାଯାଉ, ଏବଂ ଏହା ଦୁଃଖମୟ କାହିଁକି ପରେ ବିଚାର କରାଯିବ ।

ତେବେ ପ୍ରଥମରେ 'ମୁଁ' କିଏ ବା କ'ଣ ଅଥବା କିପରି ? ଏହି ଦେହ କିଏ ? ଏବଂ ଏଇ ସଂସାରଇ ବା କିଏ ? ଏକାଧାରରେ ଏଇ ତିନି ବିଷୟର ବିଚାର ନ କଲେ ବିଚାର ସାଙ୍ଗ ହେବ ନାହିଁ । କାରଣ ଏ ତିନିହେଁ ସମବ୍ୟାପ୍ତି, ଏଥିରୁ ଗୋଟିକର ଅନୁପସ୍ଥାନରେ ଅନ୍ୟ ଦୁଇଟିର ଅସ୍ତିତ୍ୱ ସ୍ୱୀକାର କରିବା କଠିନ । 'ମୁଁ' ଏହି ଜ୍ଞାନର ମୋକ୍ଷ ଅବସ୍ଥାରେ ଦେହ ବା ସଂସାର ସମ୍ବନ୍ଧରେ କୌଣସି ଜ୍ଞାନ ନାହିଁ; ପୁଣି ଦେହ, 'ମୁଁ' ଏହି ଜ୍ଞାନର ଏକମାତ୍ର ଆଧାର ସ୍ୱରୂପ କିପରି ? କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟାଦି ତ

ଦେହସ୍ଥ—'ମୁଁ' ଜନ୍ମଷଟି କର୍ମର କର୍ତ୍ତା ଏବଂ ଜ୍ଞାନେନ୍ଦ୍ରିୟସାଧିତ । ଜଡ଼, ସ୍ମର୍ଣ୍ଣୀନ୍ଦ୍ର ଜ୍ଞାନର ଜ୍ଞାତା ରୂପେ ଆପଣାକୁ ସ୍ୱୀକାର କରିବା—ଭିନ୍ନ ଖାଲି 'ମୁଁ' ବୋଲି ସ୍ଫୁରଣ ହେବା ଅସମ୍ଭବ । ସୁତରାଂ 'ମୁଁ' ଓ ଦେହ ଉଭୟ ସମବାୟୀ ଓ ଉଭୟର ସମ୍ବନ୍ଧ ସ୍ଥିରଭାବାପନ୍ନ; ଅଥଚ ସଂସାର ଅଭାବରେ ଦେହର ଅସ୍ତିତ୍ୱ ରହି ନ ପାରେ, ତେଣୁ ଦେହ ଓ ସଂସାର ଉଭୟ ସମବାୟୀ—ଏହି କ୍ରମରେ ତିନହେଁ ପରସ୍ପର ଧରାଧରି ହୋଇ ରହିଅଛନ୍ତି । ଅତଏବ 'ମୁଁ' ପଦବାଚ୍ୟ ବସ୍ତୁ, ଦେହ ଓ ସଂସାର, ଏ ତିନହେଁ ପରସ୍ପର ସମବାୟୀ ବା ନିତ୍ୟ ସମ୍ବନ୍ଧ ବିଶିଷ୍ଟ । (ଏ ତିନି ବିଷୟର ପରସ୍ପର ସମବାୟ ସମ୍ବନ୍ଧ ବର୍ଣ୍ଣନା କରିବାକୁ ଗଲେ କେତେ ଖଣ୍ଡ ସୁବୃହତ୍ ପୁସ୍ତକ ହୋଇପାରେ । ଏହି କ୍ଷୁଦ୍ର ପୁସ୍ତକରେ ଏ ବୃହତ୍ତମ ବିଷୟ ସାଙ୍ଗ ହୋଇ ନ ପାରେ ।)

ଏ ତ୍ରୟୋକ୍ତ ଉଲ୍ଲିଖିତ ବିଷୟ ଆଲୋଚନା କରିବାକୁ ଗଲେ ଯେଉଁ ଶିକ୍ଷା ଏକାନ୍ତ ଆବଶ୍ୟକ ତାହା କିପରି ପ୍ରାପ୍ତ ହେବା ? ଉପର୍ଯ୍ୟୁକ୍ତ ତିନି ପଦାର୍ଥ ସମ୍ବନ୍ଧରୁ ଏବଂ ସେହି ସମ୍ବନ୍ଧରୁ ଅନ୍ୟ ଯେଉଁ ଯେଉଁ ସମ୍ବନ୍ଧ ନିରୂପିତ ହେବା ସ୍ୱାଭାବିକ, ସେହି ସେହି ପଦାର୍ଥମାନଙ୍କ ଏକତ୍ରୀକୃତ ତତ୍ତ୍ୱଦର୍ଶନରୁ ଆମ୍ଭେମାନେ ଯେଉଁ ଶିକ୍ଷାଲାଭ କରିବା, ସେହି ଶିକ୍ଷାହିଁ ଏ ସମ୍ବନ୍ଧରେ ପ୍ରକୃତ ଶିକ୍ଷା । ତେବେ ଏହା ବଡ଼ ସୂକ୍ଷ୍ମଭାବରେ ଧୀରସ୍ଥିର ହୋଇ ବିଚାର କରିବାକୁ ହେବ । ସେ ସମ୍ବନ୍ଧରେ ନିମ୍ନରେ ଗୋଟିଏ ଆଖ୍ୟାୟିକା ପ୍ରଦତ୍ତ ହେଲା ।

## ୩ୟ ପାଠ—ଆତ୍ମଲକ୍ଷ୍ୟ ସ୍ଥିର ରଖିବା ନିମିତ୍ତ ପାଠ୍ୟ ସମ୍ବନ୍ଧୀୟ ବାକ୍‌ବିନ୍ୟାସ ଛନ୍ଦାଦିର ପରିହାର

ମନେ କରାଯାଉ, ଆମ୍ଭେ ପୁରୁଷୋତ୍ତମ କ୍ଷେତ୍ରରୁ ବହୁଦୂରରେ ଥାଉଁ । ଆମ୍ଭର ଶ୍ରୀଜଗନ୍ନାଥଦେବ-ମନ୍ଦିର ଦର୍ଶନ କରିବାକୁ ଇଚ୍ଛା ହେଲା । ତେବେ କିପରି ହେବ ? ଆମ୍ଭଙ୍କୁ ବାଟ ଠିକ୍ କରିବାକୁ ପଡ଼ିବ, ବାଟଘାଟ ସ୍ଥିର କରିବାକୁ ହେବ ଏବଂ ଅନେକ ସ୍ଥାନ ଦେଖି ଗୃହିଁ ଅତିକ୍ରମ କରିବାକୁ ହେବ । ଏ ମଧ୍ୟରେ କେତେ ପ୍ରକାର ସୁଦୃଶ୍ୟ କୁଦୃଶ୍ୟ ଦେଖି ଦେଖି କେତେ ପ୍ରକାର ସୁଖ ଦୁଃଖ ଓ କଷ୍ଟ ସହିବାକୁ ପଡ଼ିବ, ତାହାର ଇୟତ୍ତା ନାହିଁ । ମାତ୍ର ସେସବୁ ଆମ୍ଭର ଇପ୍‌ସିତ ନୁହେ । ଆମ୍ଭର ଏକମାତ୍ର ଲକ୍ଷ୍ୟ ଶ୍ରୀମନ୍ଦିରଦର୍ଶନ । ଆମ୍ଭଙ୍କୁ ସାବଧାନ ହୋଇ ଲକ୍ଷ୍ୟ ଉପରେ ଏକାଗ୍ରଚିତ୍ତ ହୋଇ ଉପର୍ଯ୍ୟୁକ୍ତ ସୁଖ ଦୁଃଖ ବାଧା ବିଘ୍ନାଦି ଘଟିବା ବେଳେ ମନେ କରିବାକୁ ହେଉଥିବ, ମୋର ଉଦ୍ଦେଶ୍ୟ ଶ୍ରୀମନ୍ଦିରଦର୍ଶନ । ହେ ସୁଖ ଦୁଃଖ ବାଧାବିଘ୍ନାଦି ! ତୁମ୍ଭେମାନେ ମୋର ଇଚ୍ଛାସିଦ୍ଧିର ସଙ୍ଗୀ, କାରଣ ତୁମ୍ଭେମାନେ ବାଟ ଜଗି ରହିଅଛ, ତୁମ୍ଭ ସଙ୍ଗ ନ କରି ମୁଁ କିପରି ମନ୍ଦିର ନିକଟକୁ ଯାଇପାରେଁ ? ଯାହାହେଉ ତୁମ୍ଭେମାନେ ମୋତେ ଏଇ ଯେ ଦେଖାଦେଇ ସେତିକରେ ଏଠାରୁ ନିବୃତ୍ତ ହୁଅ ଆଉ ଆଗକୁ ବାଟ ଦେଖାଅ । ଏହିପରି ଧୀରସ୍ଥିର ଭାବରେ ଲକ୍ଷ୍ୟ ଠିକ୍ ରଖି, ବାଧାବିଘ୍ନାଦିକୁ ପଛକୁ ପକାଇ

ଶ୍ରୀପୁରୁଷୋତ୍ତମରେ ପହଞ୍ଚିବାକୁ ହେବ ଏବଂ ଶ୍ରୀମନ୍ଦିର ଦେଖିବାକୁ ହେବ । ଏ ସ୍ଥଳରେ ଆମ୍ଭର ପ୍ରଥମ ସ୍ଥିତ ସ୍ଥଳରୁ ମନ୍ଦିର ଦର୍ଶନ ମଧ୍ୟରେ ଯେତେ ସୁଖ ଦୁଃଖ ବାଧାବିଘ୍ନାଦିର ଅନୁଭବ କରିବାକୁ ପଡ଼ିଲା, ସେ ସବୁ ଆମ୍ଭର ନିଷ୍ପ୍ରୟୋଜନ ଓ ଇଚ୍ଛାନୁମୋଦିତ ନ ହେଲେ ସୁଦ୍ଧା 'ମନ୍ଦିର ଦେଖିବା ଇଚ୍ଛା ସିଦ୍ଧି କରିବାକୁ' ସେଗୁଡ଼ିକ ଆନୁସଙ୍ଗିକ ବିଷୟ ବୋଲି ଆମ୍ଭେ ସେଗୁଡ଼ିକ ଆଦର ସହିତ ଗ୍ରହଣ କରିବାକୁ ବାଧ୍ୟ ।

ସେହିପରି ଅହଂବାଚକ ପଦାର୍ଥ, ଦେହ, ସଂସାର ଓ ଅନ୍ୟାନ୍ୟ ଆନୁସଙ୍ଗିକ ବିଷୟମାନ ସ୍ଥିର କରିବାକୁ ଗଲେ ସେଥି ନିମିତ୍ତ ଯେତେ ଯେତେ ପ୍ରକାରର ଆଲୋଚନା କରିବାକୁ ପଡ଼ିବ, ଆମ୍ଭେ ତାହାସବୁ ଆଲୋଚନା କରି ତହିଁରେ ବିରାଗୀ ବା ବିମୁଗ୍ଧ ନ ହୋଇ ଲକ୍ଷ୍ୟ ନିକଟରେ ପହଞ୍ଚିବାକୁ ଚେଷ୍ଟା କରିବା । ଏବେ ଏ ପ୍ରବନ୍ଧର ପ୍ରସ୍ତାବ ଆରମ୍ଭ ହେଉ ।

## ୪ର୍ଥ ପାଠ—ଦେହୀ, ଦେହ, ଓ ସଂସାରର କଳ୍ପିତ ନିତ୍ୟସମ୍ବନ୍ଧ

ପ୍ରଥମରୁ ନିବେଦନ କରି ରଖାଗଲା ଯେ ଏ ପ୍ରବନ୍ଧରେ ପରଂବ୍ରହ୍ମତତ୍ତ୍ୱ, ପରମେଶ୍ୱରତତ୍ତ୍ୱ, ଜୀବତତ୍ତ୍ୱ, ପ୍ରକୃତିତତ୍ତ୍ୱ, ଓ ସୂକ୍ଷ୍ମସ୍ଥୂଳାଦିଭୌତିକ ତତ୍ତ୍ୱ ଆଲୋଚନା କରାଯିବ, ଏବଂ ତହିଁରୁ ଧର୍ମାଧର୍ମ, ଜ୍ଞାନାଜ୍ଞାନ, କର୍ତ୍ତବ୍ୟାକର୍ତ୍ତବ୍ୟ ଏବଂ ଇଷ୍ଟାନିଷ୍ଟାଦି ଯଥାସାଧ୍ୟ ନିରୂପଣ କରାଯିବ । ଏସବୁ କରିବ କିଏ ? ଯେ କରିବ ସେ ତ 'ମୁଁ' ବୋଲି ଆପଣାକୁ ନିର୍ଦ୍ଦେଶ କରିବ । ସୁତରାଂ 'ମୁଁ' କ'ଣ—ଏ ସମ୍ବନ୍ଧରେ ଟିକିଏ ମାତ୍ର ଆଭାସ ପ୍ରଥମରୁ ଦିଆଅଛି । ଆଉ ମଧ୍ୟ ଉପରୋକ୍ତ ତତ୍ତ୍ୱନିରୂପଣ ଅତିଶୟ ସୂକ୍ଷ୍ମତମ ବିଷୟ । ତାହା ବିଚାରିବାକୁ ଗଲେ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ଅନେକ ପ୍ରକାରର ଆଲୋଚନା, ଅନେକ ବିଷୟର ବର୍ଣ୍ଣନା ଓ ନାନା ରକମ ଯୁକ୍ତିତର୍କାଦିର ଆଶ୍ରୟ ନେବାକୁ ହେବ । ଏହି ଆନୁସଙ୍ଗିକ ପ୍ରସଙ୍ଗଗୁଡ଼ିକ ଆଦର ସହିତ ଗ୍ରହଣୀୟ । ଆଉ ମଧ୍ୟ ମନେ-ରଖିବାକୁ ହେବ, ସେସବୁ ବର୍ଣ୍ଣନା ଓ ଯୁକ୍ତିତର୍କାଦି ପ୍ରକୃତ ଲକ୍ଷ୍ୟସାଧନର ସାହାଯ୍ୟକାରୀ । ଏହି ଅଭିପ୍ରାୟରେ ଶ୍ରୀପୁରୁଷୋତ୍ତମ-ମନ୍ଦିରଦର୍ଶନ ପ୍ରଧାନ ଲକ୍ଷ୍ୟ-ସମ୍ବନ୍ଧୀୟ ଆଖ୍ୟାୟିକାଟି ପ୍ରଦତ୍ତ ହୋଇଅଛି । ଦେହ-ସଂସାର ଓ ଦେହୀ ଏହି ତିନିର ସମ୍ବନ୍ଧ ଧରି ସବୁ ପ୍ରକାର ବର୍ଣ୍ଣନାର ଉପଲବ୍ଧି ମାତ୍ର ପରମାତ୍ମତତ୍ତ୍ୱ କେବଳ ଏହାର ଚରମ ଲକ୍ଷ୍ୟ ।

## ୫ମ ପାଠ—ସ୍ଥୂଲଦେହର ଭୌତିକତାନିର୍ଣ୍ଣୟ ଓ ପଞ୍ଚଭୂତ ପରିଚୟ

ଦେଖିବାକୁ ଗଲେ ଆମ୍ଭର ଏହି ଦେହ ପାଞ୍ଚଭୌତିକ, ଅର୍ଥାତ୍ ପଞ୍ଚମହାଭୂତର ସମଷ୍ଟିରେ ନିର୍ମିତ, ଯଥା—ପୃଥିବୀ, ଜଳ, ଅଗ୍ନି, ବାୟୁ ଓ ଆକାଶ । ଯାହା ସ୍ଥୂଳତମହେତୁ ଘନୀଭୂତ ଓ କଠିନସ୍ୱଭାବବିଶିଷ୍ଟ ଅଥଚ ଦୃଶ୍ୟମାନ, ତାହା ପୃଥିବୀ । ପୃଥିବୀଠାରୁ ଯାହା ସୂକ୍ଷ୍ମତର ବୋଲି ତରଳସ୍ୱଭାବବିଶିଷ୍ଟ ଅଥଚ ଦୃଶ୍ୟମାନ ଓ ରସାତ୍ମକ, ତାହା ଜଳ । ଜଳଠାରୁ ଯାହା ସୂକ୍ଷ୍ମତର (ସୂର୍ଯ୍ୟକିରଣ ବା ଅଗ୍ନିତେଜ ଜଳଠାରୁ ସୂକ୍ଷ୍ମ) ମାତ୍ର

ତାପସ୍ୱଭାବ-ବିଶିଷ୍ଟ ଅଥଚ ଦୃଶ୍ୟମାନ, ତାହା ତେଜ । ବାୟୁ ତେଜଠାରୁ ସୂକ୍ଷ୍ମବୋଲି ପରିଦୃଶ୍ୟ ନୁହେ ଅଥଚ ସ୍ପର୍ଶ ସ୍ୱଭାବବିଶିଷ୍ଟ ହେତୁ କେବଳ ସ୍ପର୍ଶଦ୍ୱାରା ଅନୁଭୂତ ହୁଏ । ଆକାଶ ବାୟୁଠାରୁ ସୂକ୍ଷ୍ମ, ତେଣୁ ସ୍ପର୍ଶାଦି ଦ୍ୱାରା ମଧ୍ୟ ଜଣାଯାଏ ନାହିଁ, ଏହା କେବଳ ଶୂନ୍ୟସ୍ୱଭାବ-ବିଶିଷ୍ଟ । ଆକାଶ ସୂକ୍ଷ୍ମତମ ଓ ଶବ୍ଦଗୁଣସମ୍ପନ୍ନ । ଏହି ଆକାଶସମ୍ବନ୍ଧୀୟ ମହାପରମାଣୁର ପ୍ରଥମ ଘନୀଭୂତ ଅବସ୍ଥା ବାୟବୀୟ ପରମାଣୁ; ତାହାର ସମଷ୍ଟିରୁ ବାୟୁ; ବାୟବୀୟ ପରମାଣୁର ପ୍ରଥମ ଘନୀଭୂତ ଅବସ୍ଥା ତୈଜସପରମାଣୁ ; ତାହାର ସମଷ୍ଟିରେ ତେଜ, ତୈଜସପରମାଣୁର ପ୍ରଥମଘନୀଭୂତ ଅବସ୍ଥା ଜଳୀୟପରମାଣୁ, ତହିଁର ସମଷ୍ଟିରୁ ଜଳ ବା ବାଷ୍ପ, ଜଳୀୟପରମାଣୁର ଘନୀଭୂତ ଅବସ୍ଥା ପାର୍ଥିବପରମାଣୁ ; ତହିଁର ସମଷ୍ଟିରୁ ପୃଥିବୀ । ଉପରୋକ୍ତ ପରମାଣୁମାନଙ୍କର ସ୍ୱଭାବସିଦ୍ଧ ଗୁଣ ଏହି ଯେ ସେମାନେ ପରସ୍ପର ଆକର୍ଷିତ ହୋଇ ନାନାବିଧ ଅଣୁ ଓ ଅଣୁସମଷ୍ଟିରୁ ନାନାବିଧ ପଦାର୍ଥାନ୍ତର ଆକାରରେ ପରିଣତ ହୋଇଯାଆନ୍ତି ।

## ୬ଷ୍ଠ ପାଠ—ପାଞ୍ଚଭୌତିକ ଦେହର ବର୍ଣ୍ଣନା

ଶରୀରସ୍ଥ ମାଂସ, ଅସ୍ଥି ପ୍ରଭୃତି କଠିନ ଭାଗ ପୃଥିବୀ; ରକ୍ତ, ମଜ୍ଜା ପ୍ରଭୃତି ତରଳ ଭାଗ ଜଳୀୟାଂଶ ବା ଜଳ, ଦେହମଧ୍ୟ ତାପ ବା ଜଠରାନଳ ତୈଜସାଂଶ ବା ତେଜ; ଅନ୍ତରସ୍ଥ ନାଡ଼ୀସମୂହ ବାୟୁପୂର୍ଣ୍ଣ; ତାହା ନିଃଶ୍ୱାସପ୍ରଶ୍ୱାସରୂପରେ ପ୍ରବାହିତ; ଦେହାଭ୍ୟନ୍ତର ଓ ଦୈହିକ ପରମାଣୁ ସମସ୍ତଙ୍କୁ ଆକାଶ ବ୍ୟାପିକରି ରହିଅଛି । ଏହିରୂପେ ଦେଖାଯାଉଅଛି ଯେ ସ୍ଥୂଳଦେହ ପୃଥିବ୍ୟାଦି ପଞ୍ଚମହାଭୂତରେ ନିର୍ମିତ । ସର୍ବପ୍ରକାର ପ୍ରାଣୀଶରୀର ଏହି ପଞ୍ଚମହାଭୂତର ସମଷ୍ଟି-ସ୍ୱରୂପ ।

## ୭ମ ପାଠ—ପଞ୍ଚମହାଭୂତର ଆଧାରରୂପ ସଂସାରର ପାଞ୍ଚଭୌତିକତା

ବାହ୍ୟ ଜଗତ ମଧ୍ୟ ଏହିପରି ପଞ୍ଚଭୂତାତ୍ମକ । ପୃଥ୍ୱୀ ଭୂତର ଭଣ୍ଡାରସ୍ୱରୂପ ଏହି ମୃତ୍ତିକା ପ୍ରଭୃତି ଘନକଠିନ-ବସ୍ତୁ-ବିଶିଷ୍ଟ ଧରଣୀଦେବୀ । ଜଳର ଭଣ୍ଡାର ସାଗର, ତେଜର ଭଣ୍ଡାର ସୂର୍ଯ୍ୟାଦି ଜ୍ୟୋତିଷ୍କଗଣ, ବାୟୁର ଭଣ୍ଡାର ଏହି ମହାବାୟୁମଣ୍ଡଳ, ବିଶ୍ୱବ୍ରହ୍ମାଣ୍ଡର ବାହ୍ୟାନ୍ତରରେ ଏହା ପରିବ୍ୟାପ୍ତମାନ । ଆକାଶ ତ ଏହି ମହଦାକାଶ; ଏହାର ଅନାଦି-ଅନନ୍ତ-ଅସୀମ କଳେବର ମଧ୍ୟରେ ଏ ସମୁଦାୟ ବିଶ୍ୱବ୍ରହ୍ମାଣ୍ଡ ନଗଣ୍ୟ ସ୍ଥାନ ଅଧିକାର କରି ଅବସ୍ଥିତ ଅଛି । ଏହିପରି ଅସଂଖ୍ୟ କୋଟି ବ୍ରହ୍ମାଣ୍ଡ ଏହାର ଗର୍ଭରେ ପରମାଣୁସ୍ୱରୂପ ପଡ଼ିରହିଲେ ମଧ୍ୟ ଏହାର କୌଣସି ଅଂଶାଂଶ ପୂରଣକରି ପାରିବେନାହିଁ ।

## ୮ମ ପାଠ—ସଂସାରୀୟ ପଞ୍ଚଭୂତାତ୍ମକ ମହାଭଣ୍ଡାର ସହିତ ଦୈହିକ ପଞ୍ଚଭୂତର ରକ୍ଷକ-ରକ୍ଷିତ-ସମ୍ବନ୍ଧ

ଏହି ବାହ୍ୟଜଗତ ପଞ୍ଚମହାଭୂତର ମହାଭଣ୍ଡାର ରୂପେ ବିରାଜମାନ ଥିବାରୁ ତହିଁର ପଞ୍ଚଅଂଶ ଗ୍ରହଣ କରି ପ୍ରାଣୀ ଶରୀର ପାଞ୍ଚଭୌତିକ ରୂପେ ବିରାଜିତ ରହିଅଛି ।

ପ୍ରାଣୀର ଖାଦ୍ୟ ବାହ୍ୟଜଗତର ପାର୍ଥିବାଂଶ ଫଳ, ଶସ୍ୟାଦି; ପେୟ ବାହ୍ୟ ଜଗତର ଜଳୀୟ ବସ୍ତୁ । ସୂର୍ଯ୍ୟ ଓ ଅଗ୍ନ୍ୟାଦିର ତାପ ପ୍ରାଣୀଶରୀରଭ୍ୟନ୍ତର ତାପ ସହିତ ସଂଯୁକ୍ତ ରହିଅଛି । ବହିଃସ୍ଥ ବାୟୁ ପ୍ରାଣୀ ଶରୀରର ଆଭ୍ୟନ୍ତରୀଣ ପ୍ରାଣ ସହିତ ମିଳିଥିବାରୁ ପ୍ରାଣବାୟୁ ଦେହମଧ୍ୟରେ ନାସାରନ୍ଧ୍ର ଦେଇ ସର୍ବଦା ଯାତାୟାତ କରି ପ୍ରାଣୀକୁ ଜୀବିତ ରଖିଅଛି । ଏପରିକି ବାୟୁ ସୂକ୍ଷ୍ମ, ତରଳ ଅଥଚ ସର୍ବଗ ଓ ସର୍ବତ୍ର ବିଦ୍ୟମାନ ବସ୍ତୁ ନ ହୋଇଥିଲେ ପ୍ରାଣୀମାନେ କ୍ଷଣକ ପାଇଁ ବଞ୍ଚି ପାରନ୍ତେ ନାହିଁ । ଯେ ଯେତେ ବଡ଼ ବା ଯେତେ କ୍ଷୁଦ୍ର ହେଉ, ଯେ ଯେଉଁଠାରେ ଥାଉ, ତାହାର ନାସାରନ୍ଧ୍ର ନିକଟ ମହାବାୟୁର ଅଂଶ ନ ଥିଲେ ସେ କଦାଚ ବଞ୍ଚିପାରିବ ନାହିଁ । ପିମ୍ପୁଡ଼ି ଭଳି କ୍ଷୁଦ୍ର ଜୀବ କ୍ଷୁଦ୍ର ଗର୍ତ୍ତରେ ଥିଲେ ମଧ୍ୟ ତା'ର ନାସିକା ନିକଟରେ ବାୟୁ ବିଦ୍ୟମାନ । ବିଶ୍ୱବ୍ରହ୍ମାଣ୍ଡ ତଥା ପ୍ରାଣୀଶରୀର ବାହ୍ୟାଭ୍ୟନ୍ତର ଭେଦ କରି ମହା ଆକାଶ ଅଚଳ ଅଟଳ ସ୍ଥାଣୁ ପରି ରହିଥିବାରୁ ଯେ ଯାହାର ଚହ୍ନିତ ଅବୟବସମ୍ପନ୍ନ ହୋଇ ରହିଅଛନ୍ତି ।

ଦେଖିବାକୁ ଗଲେ ବାହ୍ୟ ଜଗତ ପ୍ରକୃତ ମାତା, ସୁତରାଂ ତାହାର ନାମ ଧରଣୀ । ସେ ସର୍ବବିଧ ପ୍ରାଣୀଙ୍କୁ ସର୍ବଦା କ୍ରୋଡ଼ରେ ଧରି ନିଜର ପଞ୍ଚଭୂତାତ୍ମକ ପଞ୍ଚାଂଶରୁ ପ୍ରାଣୀ ଶରୀର ପଞ୍ଚଭୌତିକ ଅଂଶକୁ କଚ୍ଛ କଚ୍ଛ ପ୍ରଦାନ କରି ପ୍ରାଣୀ ଦେହକୁ ପୁଷ୍ଟି କରି ରଖିଅଛି । ପରିଶେଷରେ ପ୍ରାଣୀର ପାଞ୍ଚଭୌତିକ ଦେହର ପଞ୍ଚାଂଶକୁ ନିଜର ପଞ୍ଚ ସ୍ଥାନରେ ବିଲୟ କରୁଅଛି । ଏଥିରୁ ସ୍ପଷ୍ଟ ଉପଲବ୍ଧି ହୁଏ ଯେ ବିଶ୍ୱବ୍ରହ୍ମାଣ୍ଡ ଯେପରି ପାଞ୍ଚଭୌତିକ, ପ୍ରାଣୀଶରୀର ଠିକ୍ ସେହିପରି ପଞ୍ଚଭୂତସମଷ୍ଟିରେ ଗଢ଼ା । ପ୍ରାଣୀ-ଶରୀର ବ୍ୟଷ୍ଟି ପଦାର୍ଥ ଓ ବିଶ୍ୱ ବ୍ରହ୍ମାଣ୍ଡ ସମଷ୍ଟ୍ୟାତ୍ମକ ବସ୍ତୁ । ଏହିପରି ବିଶ୍ୱବ୍ରହ୍ମାଣ୍ଡ ଓ ପ୍ରାଣୀଶରୀରାଦି ବ୍ୟଷ୍ଟି ସମଷ୍ଟି ଭାବରେ ବିଦ୍ୟମାନ ରହିଅଛି । ଅତଏବ ଏ ସଂସାର କେବଳ ସଂସାର ମାତ୍ର ନୁହେ ବା ପ୍ରାଣୀସୃଷ୍ଟି କେବଳ ପ୍ରାଣୀସୃଷ୍ଟି ନୁହେ । ଏ ଉଭୟେ ଫଳତଃ ଏକ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଅବିଚ୍ଛେଦ୍ୟ ବସ୍ତୁରୂପେ ବିରାଜମାନ । ଅତଏବ ଉଭୟ ସମବାୟୀ ।

## ୯ମ ପାଠ—ସୃଷ୍ଟଦେହାବଦ୍ଧ ଜୀବ ଓ ସ୍ରଷ୍ଟା ପରମେଶ୍ୱରର ଅସ୍ତିତ୍ୱ ସୂଚନା

ଏହି ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚିତ୍ର ପରିଦର୍ଶନ କଲେ ସେହି ଦର୍ଶନରୁ କଣ ଶିକ୍ଷା ମିଳେ ? ଏହି ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚିତ୍ରର ଆମ୍ଭେ ଦ୍ରଷ୍ଟା ମାତ୍ର, ସ୍ରଷ୍ଟା ନୋହୁଁ—କାହିଁକି ? ଆମ୍ଭେ ଏହାକୁ ଦେଖିବାର ପ୍ରଥମ ମୁହୂର୍ତ୍ତ ପୂର୍ବରୁ ଏ ସଂସ୍ଥାପିତ ରହିଅଛି । ଆଜି ମଧ୍ୟ ଏହା ମାନବବୁଦ୍ଧିର ଅଜ୍ଞାତ ବିଚିତ୍ର ଚାତୁର୍ଯ୍ୟପୂର୍ଣ୍ଣ କୌଶଳରେ ଅଘଟନ ଘଟନା ଦ୍ୱାରା ବିରାଜମାନ ଥିଲା ପରି ବୋଧହୁଏ । ନିୟମରୁ ନିୟାମକ ବା ନିୟନ୍ତା ସହଜ ଅନୁମେୟ । ତେଣୁ ଏ ଦୃଶ୍ୟ, ଏ ନିୟମ, ଏ କୌଶଳପୂର୍ଣ୍ଣ ସୃଷ୍ଟିର ନିୟନ୍ତା ମହତୋମହୀୟାନ୍ ବୋଲି ପ୍ରମାଣିତ ହେଉଅଛି । ସୁତରାଂ ଏହି ସମୁଦାୟ ଦୃଶ୍ୟ ନିୟମାଦି, ଓ ନିୟନ୍ତାଙ୍କ

ସମ୍ମୁଖରେ ଆମ୍ଭେ ପ୍ରଣତ, ଅବନତ ଓ ଆଜ୍ଞାଧୀନ ବୋଲି ଆପଣାକୁ ନ୍ୟୂନଜ୍ଞାନ କରିବା ବିଧେୟ । ଏତଦନୁଯାୟୀ ଆମ୍ଭର କର୍ତ୍ତବ୍ୟ କଣ ବୋଲି ଶିକ୍ଷା ପାଇଲେଁ ?

## ୧୦ମ ପାଠ—ଜୀବ ଓ ପରମେଶ୍ୱର ଏହି ଉଭୟସମ୍ବନ୍ଧରୁ ଶିକ୍ଷା

ଏଥିରୁ ଏହି ଶିକ୍ଷା ମିଳୁଅଛି ଯେ, ଆମ୍ଭର ଏହି ଦେହ ପାଞ୍ଚୁଆଏ ମାଟି, ଅଥଚ ଏହି ଉପରୋକ୍ତ ବିଶ୍ୱବ୍ରହ୍ମାଣ୍ଡ-ନିୟନ୍ତାର ଅଧୀନ । ଏହି ପିଣ୍ଡବ୍ରହ୍ମାଣ୍ଡାତ୍ମକ ଶରୀରରେ ଦୟାର ସ୍ରୋତ ସର୍ବଦା ପ୍ରବାହିତ । ଯେହେତୁ ଦେଖାଯାଏ, ଏହା ପ୍ରାଣୀସୃଷ୍ଟିର ରକ୍ଷା-ପାଳନା ଲାଗି ସମ୍ପୂର୍ଣ୍ଣ ଅନୁକୂଳ ଓ ଉପଯୋଗୀ ହୋଇଅଛି । ଯେଉଁ ନିୟମ ସର୍ବପ୍ରକାର ପ୍ରାଣୀର ଅନୁକୂଳ ଓ ଉପଯୋଗୀ ଅଥଚ ସମଦୟାମୟ, ସେହି ନିୟମ ସମ୍ମୁଖରେ, ତଦଧୀନ ଅବସ୍ଥାରେ ଆମ୍ଭେ ଯେପରି ଆତ୍ମ ଦେହପ୍ରତି ସଦା ସଚେଷ୍ଟ ଓ ଯତ୍ନବାନ୍, ସେହିପରି ପ୍ରାଣିବର୍ଗ ପ୍ରତି ଦୟାଳୁ, ଉପକାରୀ ଓ ସମଆସ୍ଥାବାନ୍ ହେବା ଉଚିତ । କୌଣସି ପ୍ରାଣୀକୁ ତୁଚ୍ଛ ବା ଅବହେଳା କରିବା, ବା କାହାର କିଛି ଅନିଷ୍ଟ କି ଅଶାନ୍ତି ଘଟାଇବାକୁ ଆମ୍ଭେ କଦାଚ ଅଧିକାରୀ ନୋହୁଁ । ଆତ୍ମ ଦେହ ଲକ୍ଷ୍ୟରେ ଆମ୍ଭେ ଗୋଟିଏ କଳ୍ପିତ ନାମରେ ଗର୍ବ କରିବା ଅଜ୍ଞତା ମାତ୍ର । ପୁଣି ତଦ୍ରୂପ କଳ୍ପିତ ନାମ ସଙ୍ଗେ ଲୌକିକ ବ୍ୟବହାରର କଳ୍ପିତ ଉପାଧିଟାଏ ଲଗାଇଦେଇ ତହିଁରେ ମାଟିପିଣ୍ଡକୁ ବଡ଼ କରି ଟେକି ଧରି ଗୃହପାଖର ଅନ୍ୟ ଇତରମାନଙ୍କୁ ନୀଚଜ୍ଞାନ କରି ସ୍ୱୟଂ ଗର୍ବାହଂକାରପୂର୍ଣ୍ଣ ଆଡ଼ମ୍ବରରେ ଫୁଲିଉଠିବା ଆମ୍ଭ ପକ୍ଷରେ ନିତାନ୍ତ ପୈଶାଚିକତା ଓ ପଶୁତ୍ୱର ଆଦର୍ଶ ଭିନ୍ନ ଆଉ କିଛି ନୁହେ । ଦେଖ, ଯଦି ଗୋଟାଏ ମାଟିପିଣ୍ଡର ନାମ ଜଗଦ୍‌ଚନ୍ଦ୍ରଶେଖର ସିଂହ ବା ଏହିଭଳି ଯାହା କିଛି, ପୁଣି ତହିଁରେ ଏକାକ୍ଷରୀ ଉପାଧିର ଗଣ୍ଡାଏ ଛଅଟା କଟମଟିଆ ଅକ୍ଷର ଥୁଆହୋଇଛି—ମାନବୀୟ ଆତ୍ମା ପକ୍ଷରେ ମାଟିପିଣ୍ଡରେ ଏପରି ବିମୋହିତ ହେବା ବଡ଼ ହାସ୍ୟାସ୍ପଦ । ଏହି ବିଶ୍ୱବ୍ରହ୍ମାଣ୍ଡ ପିଣ୍ଡାତ୍ମକ ଶରୀରରେ କେତେ କେତେ ଅସଂଖ୍ୟ କୋଟି ପ୍ରାଣୀଦେହର ଶରୀର ଏକାଧାରରେ ରକ୍ଷିତ ରହିଅଛି । ଏ ମଧ୍ୟରେ ଗୋଟିଏ ମାତ୍ର ନଗଣ୍ୟ ପରମାଣୁଠାରୁ ହୀନ ଶରୀରରେ ଏଭଳି ଗର୍ବ ଆଡ଼ମ୍ବରର ସ୍ଥାନ କାହିଁ ? ପ୍ରାଣୀଦେହର ପରିମାଣ ତ ମାଟି ଟିକିଏ, ପୁଣି ତାହାର ସ୍ଥାୟିତ୍ୱ ସମୟର ପରିମାଣ କେତେ ? ଦେଖିବାକୁ ହେବ ୫୦ କି ୭୦, ଅତି ବଡ଼ ୧୦୦ ବର୍ଷ । ଅନାଦି ଅନନ୍ତ ଅପରିମେୟ ମହାକାଳର କଳେବର କେତେ ବଡ଼ ? କାଳର ଆଦି ନାହିଁ,—ଯେ କୌଣସିଠାରେ ଆଦି ନିଶ୍ଚୟ କର, ତା' ପୂର୍ବରେ କାଳ ଅଛି; ଅନ୍ତ ମଧ୍ୟ ନାହିଁ,—ଯେ କୌଣସି ଅସଂଖ୍ୟ କୋଟି କଳ୍ପ ପରେ ତାହାର ସୀମା କଳ୍ପନା କର, ତା'ପରେ କାଳ ଅଛି । ଅତଏବ କାଳ ଅନାଦି, ଅନନ୍ତ ଓ ଅସୀମ; ୫୦ କି ୭୦ ବା ଏକ ଶତ ବର୍ଷ ହେଉ ଅଥବା କୋଟି କଳ୍ପ ହେଉ, ଏହା ସବୁ ପରିମିତ । ଅପରିମିତ ପଦାର୍ଥର ପରିମିତ ପଦାର୍ଥ କୌଣସି ଅଂଶାଂଶ ବୋଲି ମଧ୍ୟ ନିର୍ଦ୍ଦେଶ କରିଯାଇପାରିବ ନାହିଁ । କାରଣ ଅପରିମିତ ବସ୍ତୁ ପରିମିତ ବା ସସୀମ ହୋଇ ପଡ଼ିବ । ଅତଏବ ଏ ନିତ୍ୟ ବିରାଜମାନ ମହାକାଳ-କଳେବର ମଧ୍ୟରେ

ପଞ୍ଚାଶ କି ଶହେ ବର୍ଷ କିଛି ନୁହେ । ବିଶ୍ୱବ୍ରହ୍ମାଣ୍ଡ-ପିଣ୍ଡାତ୍ମକ-ଚକ୍ରରେ ଗୋଟିଏ ମାଛି ଦେହ ଯନ୍ତ୍ର ଯେପରି ନଗଣ୍ୟ, ଏହି ମହାକାଳଦେବଙ୍କ ସମ୍ମୁଖରେ ପଚିଶ ବା ଶତ ବର୍ଷ ପରମାୟୁ ତହିଁରୁ ବହୁ ପରିମାଣରେ ନଗଣ୍ୟ । କାରଣ ସେ ଚକ୍ର ସସୀମ, ଏ କାଳ ଚକ୍ର ପରା ଅସୀମ । ତେବେ ନଗଣ୍ୟ ପରମାୟୁ ବିଶିଷ୍ଟ ଅଥଚ ନଗଣ୍ୟ କ୍ଷୁଦ୍ରାଦପି କ୍ଷୁଦ୍ରତମ ପରମାଣୁ ସମ ମାଟିପିଣ୍ଡରେ ଗର୍ବ, ମୋହ, ଆଡ଼ମ୍ବରାଦି ବଡ଼ିମା ଦେଖାଇବା କି ଅଜ୍ଞତା !!! ଉପରୋକ୍ତ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚକ୍ରରୁ ଆହୁରି ଅନେକ ଶିଖିବାର ଅଛି । ସେ ସବୁ ଚିନ୍ତାଶୀଳ ପାଠକବର୍ଗ ଆଲୋଚନା କରିନେବେ । ଏଠାରେ ଆଉ ବେଶୀ ଲେଖିବା ବାହୁଲ୍ୟ ମାତ୍ର । ସେହି ଶିକ୍ଷଣୀୟ ବିଷୟ ଲେଖିବାକୁ ଗଲେ ପୁସ୍ତକର କଳେବର ବର୍ଦ୍ଧିତ ହେବ । ବର୍ତ୍ତମାନ ଦେହ ସମ୍ବନ୍ଧୀୟ ଅନ୍ୟାନ୍ୟ ବିଷୟପ୍ରତି ପ୍ରଣିଧାନ କରାଯାଉ ।

## ୧୧ଶ ପାଠ—ଦେହର ଗଠନ, ଇନ୍ଦ୍ରିୟବିଭାଗ ଓ ସେ ସବୁର କାର୍ଯ୍ୟାଦିର ସଂସ୍କାରସାପେକ୍ଷତା

ଆମ୍ଭର ଏ ଦେହ ତ ପାଞ୍ଚଭୌତିକ ଓ ବିଶ୍ୱବ୍ରହ୍ମାଣ୍ଡାତ୍ମକ ବସ୍ତୁର ଓ ତତ୍ତ୍ୱ ପ୍ରତିପାଦକ ନିୟମାଦିର ଅଧୀନ, ପୁଣି ଏ ଦେହରେ ଦେଖାଯାଉଅଛି ପାଞ୍ଚଗୋଟି କର୍ମେନ୍ଦ୍ରିୟ ଓ ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ ପରସ୍ପର ଚକ୍ରିତଭାବରେ ରହିଅଛି । ହସ୍ତ ଆଦାନପ୍ରଦାନାଦି, ପାଦ ଗମନାଗମନାଦି, ମୁଖ ବାକ୍‌ନିଃସରଣାଦି, ଗୁହ୍ୟ ମଳ-ବହିର୍ଗମନାଦି ଓ ମୂତ୍ରଦ୍ୱାର ମୂତ୍ରାଦି ତ୍ୟାଗ କ୍ରିୟା ସମ୍ପାଦନ କରନ୍ତି । କର୍ଣ୍ଣ, ଚକ୍ଷୁ, ନାସା ଓ ଚର୍ମ—ଏ ପାଞ୍ଚଟି ଜ୍ଞାନେନ୍ଦ୍ରିୟ । କର୍ଣ୍ଣରେ ଶବ୍ଦଜ୍ଞାନ, ଚକ୍ଷୁରେ ଦର୍ଶନଜ୍ଞାନ, ଜିହ୍ୱାରେ ମଧୁର ଓ ଅମ୍ଳାଦି ରସଜ୍ଞାନ, ନାସିକାରେ ସୁଗନ୍ଧ ଓ ଦୁର୍ଗନ୍ଧାଦି ଜ୍ଞାନ ଏବଂ ଚର୍ମରେ ଶୀତଳ ଉଷ୍ଣାଦିର ସ୍ପର୍ଶଜ୍ଞାନ ବୋଧ ହୋଇଥାଏ । ଏ ଦଶଗୋଟି ବାହ୍ୟେନ୍ଦ୍ରିୟ; ବାସ୍ତବରେ ପ୍ରକୃତ ଦଶେନ୍ଦ୍ରିୟମାନଙ୍କର ଦଶଗୋଟି ସ୍ଥାନ ବା ଗୋଲକ ଏବଂ ଏ ଦଶେନ୍ଦ୍ରିୟର ନାମାନ୍ତର ମାତ୍ର । ଏପରି ଅନ୍ତରେନ୍ଦ୍ରିୟ ବା ସୂକ୍ଷ୍ମେନ୍ଦ୍ରିୟର କଥା । ସେମାନେ ମନପରି ସୂକ୍ଷ୍ମ । ଉପରୋକ୍ତ ଦଶଗୋଟି ଇନ୍ଦ୍ରିୟ ଉପରେ ଏମାନଙ୍କର ପରିଚାଳକ ବା ନେତା କିମ୍ବା ଅଧିନାୟକରୂପେ ଆଉ ଗୋଟିଏ ଇନ୍ଦ୍ରିୟ ଅଛି । ଏହି ଦଶଟି ଇନ୍ଦ୍ରିୟ ଦେହର ବାହାରେ ଦେଖାଯାଉଥିବାରୁ ତାହା ବାହ୍ୟେନ୍ଦ୍ରିୟ । ଅପର ଶ୍ରେଷ୍ଠ ଇନ୍ଦ୍ରିୟଟି ଅନ୍ତରରେ ଥିବାରୁ ତାହା ଦେଖାଯାଏ ନାହିଁ । କାର୍ଯ୍ୟରୁ ତାହାର ଅସ୍ତିତ୍ୱ ବୋଧହୁଏ । ତାହାର ନାମ ମନ । ଏହିପରି ବାହ୍ୟାନ୍ତର ଭେଦରେ ଏକାଦଶଟି ଇନ୍ଦ୍ରିୟର ଅସ୍ତିତ୍ୱ ଆମ୍ଭେମାନେ ନିରୂପଣ କରୁଥାଉଁ । ବାହ୍ୟେନ୍ଦ୍ରିୟମାନଙ୍କର ବାହ୍ୟ ବିଶ୍ୱବ୍ରହ୍ମାଣ୍ଡ ସହିତ ଘନିଷ୍ଠ ସମ୍ବନ୍ଧ । ବାହ୍ୟ ବ୍ରହ୍ମାଣ୍ଡ ନ ଥିଲେ ଏମାନଙ୍କର କ୍ରୀଡ଼ା ବା କ୍ରିୟା କିଛି ହୋଇପାରନ୍ତା ନାହିଁ ।

ଦେହସୀମାର ସର୍ବ ଉପରେ ଆକାଶ ଏବଂ ତଳଭାଗରେ ପୃଥିବୀ ଥିବାରୁ ମଳମୂତ୍ର ତ୍ୟାଗ କରାଯାଉଅଛି, ଚଲାବୁଲା କରାଯାଉଅଛି । ହସ୍ତର ପରିଚାଳନାକୁ ଆକାଶ

ସ୍ଥାନ ମୁକ୍ତ କରି ରଖି ଦେଇଅଛି ; କଥା କହିବାକୁ ମଧ୍ୟ ବାୟୁ ସେହିପରି ସାହାଯ୍ୟ କରୁଅଛି । ଏହା ପଞ୍ଚ କର୍ମେନ୍ଦ୍ରିୟ ସହିତ ବାହ୍ୟ ଜଗତର ସମ୍ବନ୍ଧ ବିଚାର । ପଞ୍ଚ ଜ୍ଞାନେନ୍ଦ୍ରିୟ କଥା ଆଲୋଚିତ ହେଉ । ଶବ୍ଦର ଦ୍ୱାର କର୍ଣ୍ଣ, ଶବ୍ଦ ବାହ୍ୟାକାଶରେ ପ୍ରକାଶିତ ହେଉଅଛି । କର୍ଣ୍ଣର ଛିଦ୍ରାକାଶ ସହିତ ବାହ୍ୟାକାଶର ଅବାଧ ସଂଯୋଗ ଥିବାରୁ ସିନା ବାହ୍ୟାକାଶ ନିନାଦିତ ଶବ୍ଦ କର୍ଣ୍ଣକୁହରରେ ପ୍ରବେଶ କରୁଅଛି ଏବଂ ତଦ୍ଦ୍ୱାରା ଶବ୍ଦଜ୍ଞାନ ହେଉଅଛି । ସ୍ପର୍ଶ,—ଶୀତଳ, ଉଷ୍ଣ, କୋମଳ ବା କଠିନର ଯେଉଁ ଅନୁଭୂତି ଚର୍ମେନ୍ଦ୍ରିୟ ଦ୍ୱାରା ହେଉଅଛି, ତାହା ବହିଃସ୍ଥ ବାୟୁ ସହିତ ଚର୍ମଗତ ବାୟୁର ସଂଯୋଗରୁ; ବିଶେଷତଃ ବାୟୁ ସୂକ୍ଷ୍ମ ତରଳ ପଦାର୍ଥ ଥିବାରୁ ତାହା ଦେହର ଅଭ୍ୟନ୍ତରି-ଦେଶ ବାୟୁ ସହିତ ଅଭେଦଭାବରେ ସଂଯୁକ୍ତ ଅଛି । ରୂପ,—ଏହା ଚକ୍ଷୁଦ୍ୱାରର ଜ୍ଞାନ । ବାହ୍ୟାଲୋକ ସୂର୍ଯ୍ୟକିରଣାଦି ସହିତ ଚକ୍ଷୁଗୋଲକର ଅବାଧ ସଂଯୋଗ ସମ୍ବନ୍ଧଦ୍ୱାରା ବାହ୍ୟପଦାର୍ଥାଦିର ଆକାର ଓ ବର୍ଣ୍ଣବିଷୟକ ଜ୍ଞାନ ଚକ୍ଷୁଦ୍ୱାରା ହୁଏ । ରସ,—ସ୍ୱାଦୁ, ଅସ୍ୱାଦୁ ପ୍ରଭୃତି ଜ୍ଞାନ ଜିହ୍ୱାଦ୍ୱାରା ହୋଇଥାଏ । ବାହାରରୁ ଖାଦ୍ୟ ପେୟାଦି ଜିହ୍ୱାରେ ସଂଲଗ୍ନ ହେଲେ ଏହି ସ୍ୱାଦୁ ଅସ୍ୱାଦୁ ସେହି ଖାଦ୍ୟପେୟାଦିରୁ ଜଣାଯାଏ । ଗନ୍ଧ,—ନାସା-ଛିଦ୍ରରେ ବାହ୍ୟ ବସ୍ତୁର ନିକଟ ସମ୍ବନ୍ଧ ହେଲେ, ତହିଁରୁ ସୁଗନ୍ଧ ବା ଦୁର୍ଗନ୍ଧର ଜ୍ଞାନ ଜନ୍ମେ । ଏହିପରି ପଞ୍ଚଜ୍ଞାନେନ୍ଦ୍ରିୟ ମଧ୍ୟ ବାହ୍ୟ ଜଗତକୁ ଆଲିଙ୍ଗନ କରି ତହିଁରୁ ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧାଦିର ଅନୁଭବ କରିବାକୁ କ୍ଷମ ହୋଇଅଛି ।

## ୧୨ଶ ପାଠ—ବାହ୍ୟ ଜଗତ ବିଶ୍ୱମାତୃକା ପ୍ରକୃତିଦେବୀର ସ୍ଥୂଳ-ଦେହ ଓ ପ୍ରାଣୀଯନ୍ତ୍ର ତଦୀୟ ନିତ୍ୟ ପାଳିତ ସନ୍ତାନ

ପଞ୍ଚକର୍ମେନ୍ଦ୍ରିୟଦ୍ୱାରା ପାଞ୍ଚପ୍ରକାର କର୍ମ୍ମର ସାଧନ ଓ ପଞ୍ଚ ଜ୍ଞାନେନ୍ଦ୍ରିୟଦ୍ୱାରା ପାଞ୍ଚ ପ୍ରକାର ଜ୍ଞାନର ଅନୁଭୂତି ଇତ୍ୟାଦି ସମସ୍ତ ବିଷୟ ପିଣ୍ଡବ୍ରହ୍ମାଣ୍ଡର ସମ୍ବନ୍ଧରୁ ସଂସାଧିତ ହେଉଛି । ଭୌତିକ ଗୁଣ ସମ୍ବନ୍ଧରେ କହିବାକୁ ଗଲେ—ଆକାଶର ଗୁଣ ଶବ୍ଦ, ବାୟୁର ଗୁଣ ସ୍ପର୍ଶ, ତେଜର ଗୁଣ ରୂପ, ଜଳର ଗୁଣ ରସ ଓ ପୃଥିବୀର ଗୁଣ ଗନ୍ଧ । ଏହି ପଞ୍ଚଭୂତାତ୍ମକ ବାହ୍ୟ ଜଗତ ଏହି ଏହି ପଞ୍ଚଗୁଣସମନ୍ୱିତ ଜାଗତିକ ପଦାର୍ଥମାନଙ୍କୁ ଯେପରି ଅନବରତମାୟ ଦାତାରୂପେ ବିରାଜମାନ ରହି ତଦ୍‌ଯ କ୍ରୋଡ଼ସ୍ଥ ପ୍ରାଣିମାନଙ୍କୁ ଶବ୍ଦସ୍ପର୍ଶାଦି ଭୋଗ ପ୍ରଦାନ କରି ଖୁସି କରାଇବା ନିମିତ୍ତ ସେହି ପ୍ରାଣିମାନଙ୍କୁ ମଧ୍ୟ ତଦ୍ରୂପ ଇନ୍ଦ୍ରିୟ-ବିଶିଷ୍ଟ ଓ ତଦ୍ରୂପ ଭୋଗବାଞ୍ଛାଦି-ବିଶିଷ୍ଟ କରି ସୃଷ୍ଟିକରି ରଖିଅଛି । ଅର୍ଥାତ୍ ଆକାଶ-ତତ୍ତ୍ୱରୁ କର୍ଣ୍ଣେନ୍ଦ୍ରିୟ, ତଦ୍ଦ୍ୱାରା ତହିଁର ଗୁଣ ଶବ୍ଦାନୁଭୂତି ; ଜଳତତ୍ତ୍ୱରୁ ରସନେନ୍ଦ୍ରିୟ, ତଦ୍ଦ୍ୱାରା ତଦ୍‌ୟ ଗୁଣ ରସାନୁଭୂତି ; ବାୟୁତତ୍ତ୍ୱରୁ ଚର୍ମ ବା ସ୍ପର୍ଶେନ୍ଦ୍ରିୟ, ତଦ୍ଦ୍ୱାରା ବାୟୁର ଗୁଣ ସ୍ପର୍ଶାନୁଭୂତି ; ତେଜତତ୍ତ୍ୱରୁ ଦର୍ଶନେନ୍ଦ୍ରିୟ, ତଦ୍ଦ୍ୱାରା ତେଜର ଗୁଣ ରୂପାନୁଭୂତି ; ପୃଥ୍ୱୀତତ୍ତ୍ୱରୁ ଘ୍ରାଣେନ୍ଦ୍ରିୟ, ତଦ୍ଦ୍ୱାରା ଗନ୍ଧବତୀ ପୃଥ୍ୱୀର ବା ପାର୍ଥିବ ପଦାର୍ଥାଦିର

ଗୁଣ ଗନ୍ଧାନୁଭୂତ ସମ୍ପାଦିତ ହେଉଅଛି । ଏଥିରୁ ଦେଖାଯାଉଅଛି, ପିଣ୍ଡ ଓ ବ୍ରହ୍ମାଣ୍ଡ ଉଭୟ ଏପରି ପରସ୍ପର ସମ୍ବନ୍ଧ ଦ୍ୱାରା ସଂସ୍ଥାପିତ ଯେ, ମନେହୁଏ ଏ ଉଭୟ ଯେପରି ଏକାତ୍ମକ ପଦାର୍ଥ । ସେହିପରି ଏକ ମହତ ଉଦ୍ଦେଶ୍ୟ ସାଧନରେ ଯେପରି ଉଭୟର ସୃଷ୍ଟି ହୋଇଅଛି । ପ୍ରାଣୀ-ହୃଦୟରେ ଯେପରି ଭୋଗବାଞ୍ଛା ନିହିତ ଅଛି, ତଦନୁସାରେ ସେହି ବାଞ୍ଛାମୟ ଭୋଗ ସାଧନର ଉପଯୋଗୀ ଇନ୍ଦ୍ରିୟବର୍ଗାଦି ମଧ୍ୟ ପ୍ରାଣୀଶରୀରରେ ନିହିତ ଅଛି । ଆଉ ମଧ୍ୟ ତଦ୍ରୂପ ଭୋଗବାଞ୍ଛା ଓ ଇନ୍ଦ୍ରିୟତୃପ୍ତି ନିମିତ୍ତ ଏହି ବ୍ରହ୍ମାଣ୍ଡ ଶବ୍ଦସ୍ପର୍ଶାଦି ଭୋଗ୍ୟ ଉପହାର ସେହି ମାତୃରୂପରେ ବା ପ୍ରତିପାଳକ ଅଥବା ପୋଷକରୂପରେ ସର୍ବଦା ମୁକ୍ତଭାବରେ ପ୍ରାଣିମାନଙ୍କୁ ଶାନ୍ତିମୟ କୋଡ଼ରେ ଧରି ବସିଅଛି । ଶ୍ରୀ ଜଗଦାମ୍ବେନେ ନମଃ । ଭ୍ରାତୃବର୍ଗ ! ଏହି ବିଶ୍ୱମାତୃଦେବୀଙ୍କୁ ଦର୍ଶନ କର । ଦେଖ ସେ କହୁଛନ୍ତି, "ସକଳ ମନୁଷ୍ୟ ମୋ ଚକ୍ଷୁରେ ସମାନ, ବୈଷମ୍ୟ ଦୃଷ୍ଟି ମୋର ନାହିଁ । ଯେ କେହି ବୈଷମ୍ୟଦ୍ୱାରା କୌଣସି ପ୍ରାଣୀର ଅନିଷ୍ଟ ସାଧନ କରିବ, ମୋର କୋପାନଳରେ ଶୀଘ୍ରପ୍ରାୟ ତାହାର ଦଶା" ଘଟିବା ସୁନିଶ୍ଚିତ ।

## ୧୩ଶ ପାଠ—ଭୌତିକ ପରମାଣ୍ୱାଦିର ବ୍ୟାପ୍ତି ଓ ସେମାନଙ୍କର କିୟଦଂଶରୁ କାର୍ଯ୍ୟ-କାରଣ ସମ୍ବନ୍ଧ କ୍ରମେ ପିଣ୍ଡ-ବ୍ରହ୍ମାଣ୍ଡାଦିର ଉତ୍ପତ୍ତି

ପରିଶେଷରେ ପଞ୍ଚମହାଭୂତ ସମ୍ବନ୍ଧରେ ବକ୍ତବ୍ୟ ଏହି ଯେ, ପଞ୍ଚମହାଭୂତର ଆଦି ଔପାଦାନିକ ଭୂତ ଭୌତିକ ମହଦାକାଶ,—ଏହା ପରମାଣୁ ସଂଜ୍ଞାର ନିର୍ବିଶେଷ ଅବସ୍ଥା; ଏହା ଜ୍ଞାନଗମ୍ୟ—ଅର୍ଥାତ୍ ଔପାଧିକ ସଂଜ୍ଞା ଏଠାରେ ବିଲୁପ୍ତ ହୋଇଅଛି । ଏହା ଅନାଦି, ଅନନ୍ତ, ଅପରିସୀମ, ଅଚିନ୍ତ୍ୟ ଓ ମହଦାକୃତିବିଶିଷ୍ଟ । ଏହା ମଧ୍ୟରେ କେତେ କଣ କି କି ପ୍ରକାର ଜଡୀୟ ଉପାଦାନ, ଜଡ଼ୀୟ ସୂକ୍ଷ୍ମତମ ବସ୍ତୁ ନିହିତ ଅଛି, ତାହାର ଇୟତ୍ତା ନାହିଁ । ସ୍ଥୂଳତଃ ଏଥିରୁ ବାୟବୀୟ ପରମାଣୁର ସୃଷ୍ଟି; ଉକ୍ତ ବାୟବୀୟ ପରମାଣୁମୟ ବସ୍ତୁର ସୀମା ନିର୍ଦ୍ଦେଶ କରିବା କଠିନ । ତହିଁର କିୟଦଂଶ ଘନୀଭୂତ ହୋଇ ବାୟୁରେ ପରିଣତ ହୁଏ । ଏହିରୂପେ ଏହି ମହତ୍ ବାୟୁ-ରାଶିର ସୃଷ୍ଟି । ଏହିପରି ବାୟୁରୁ ତୈଜସ ପରମାଣୁର ସୃଷ୍ଟି । ସମୁଦାୟ ତୈଜସ ପରମାଣୁମୟ ବସ୍ତୁର କିୟଦଂଶରୁ ପରିଦୃଶ୍ୟମାନ ତେଜର ସୃଷ୍ଟି । ଏହି ପରି କ୍ରମେ କ୍ରମେ ଏଥିରୁ ଜଳୀୟ ପରମାଣୁ, ତହିଁର କିୟଦଂଶରୁ ଜଳ ଓ ଜଳରୁ ପାର୍ଥିବ ପରମାଣୁ । ପାର୍ଥିବ ପରମାଣୁର କିୟଦଂଶ ଘନୀଭୂତ ହୋଇ ଏହି ପରିଦୃଶ୍ୟମାନ ପାର୍ଥିବ ଜଗତରେ ପରିଣତ ହୋଇଅଛି । ଏଥିରୁ ସମୁଦାୟ ପାର୍ଥିବ ପଦାର୍ଥମାନଙ୍କର ସୃଷ୍ଟି । ଯେପରି ଦୁଗ୍ଧରୁ ଦଧି, ଦଧିରୁ ନବନୀତ ଓ ନବନୀତରୁ ଘୃତ ଉତ୍ପନ୍ନ ହୁଏ, ସେହିପରି ଜଡ଼ ବସ୍ତୁ ବିକାର ଧର୍ମବିଶିଷ୍ଟ ହେତୁ ତାହା ନାନା ପ୍ରକାର ପଦାର୍ଥରେ କାର୍ଯ୍ୟକାରଣ-ଭେଦରେ ପରିଣତ ହୋଇଥାଏ । ଏତତ୍ ବର୍ଣ୍ଣିତ ପୃଥ୍ୱୀ, ଜଳ, ତେଜ, ବାୟୁ ଓ

ଆକାଶାଦି ପଞ୍ଚମହାଭୂତ ଏତତ୍ ନିଜ ନିଜ ଜାତୀୟ ପରମାଣୁମାନଙ୍କର ସମଷ୍ଟିର ପରିଣତି ମାତ୍ର । ଏହି ପଞ୍ଚମହାଭୂତ ଏତତ୍ ନିଜ ନିଜ ଜାତୀୟ ପରମାଣୁମାନଙ୍କର ସମଷ୍ଟିଭୂତ ବ୍ୟକ୍ତାବସ୍ଥା ବା କାର୍ଯ୍ୟାବସ୍ଥା; କାରଣାବସ୍ଥାରେ ଏହା ଅବ୍ୟକ୍ତ ପରମାଣୁମୟ ମାତ୍ର । ଆକାଶ, ଆଦି ଭୌତିକ ଉପାଦାନକ ବସ୍ତୁ; ତହିଁରୁ ଅନୁଲୋମ-କ୍ରମେ ବାୟୁ, ତେଜ, ଜଳ ଓ ପୃଥ୍ୱୀ ପର୍ଯ୍ୟନ୍ତ ଉତ୍ପତ୍ତି । ପୁନରପି ପ୍ରତିଲୋମ ବା ବିଲୋମ କ୍ରମେ ସେହିପରି ପୃଥ୍ୱୀ, ତଦୀୟ ପାର୍ଥିବ ପରମାଣୁରେ, ପାର୍ଥିବ ପରମାଣୁ ପୃଥକ୍ଭାବେ ସହିତ ଜଳରେ, ଜଳ ତଦୀୟ ପରମାଣୁ ସହିତ ତେଜରେ, ତେଜ ତଦୀୟ ପରମାଣୁ ସହିତ ବାୟୁରେ ଏବଂ ବାୟୁ ତଦୀୟ ପରମାଣୁ ସହିତ ଆକାଶରେ ବିଲୀନ ହୁଏ । ତତ୍ତ୍ୱତଃ ସର୍ବଦାହିଁ ସବୁ କିଛି ଆକାଶମୟ ମାତ୍ର । ଯେପରି ମାଟିରୁ ଘଟ, ଏବଂ ଉକ୍ତ ଘଟ ଭାଙ୍ଗି ମାଟିରେ ପରିଣତ ହୁଏ, ଏହିରୂପେ ଭୌତିକ ସୃଷ୍ଟି ସମ୍ବନ୍ଧେ ଆକାଶହିଁ ଆଦି ଉପାଦାନ ଅଟେ । ବର୍ତ୍ତମାନ ମଧ୍ୟ ଏ ସମସ୍ତ ସେହି ସୂକ୍ଷ୍ମତମ ପରମାଣୁମୟ ବସ୍ତୁ ।

## ୨୪ଶ ପାଠ—ଆଦ୍ୟ-ଭୂତ-ଆକାଶର ସ୍ୱରୂପୋପଲବ୍‌ଧି

ଆକାଶ ସର୍ବଭୂତରେ ଆଦ୍ୟ ଓ ଅନ୍ତଭୂମି ରୂପେ ଚିର ବିରାଜମାନ ରହିଅଛି । ଏହାହିଁ ଭୌତିକ ଦର୍ଶନର ସୀମାନ୍ତ ସ୍ଥାନ । ଏହି ଭୌତିକ ମହାକାଶ ଗର୍ଭରେ ବାୟୁ, ତେଜ, ଜଳ ଓ ପୃଥ୍ୱ୍ୟାତ୍ମକ ନାନାବିଧ ଆକାର ଓ ଗୁଣବିଶିଷ୍ଟ ଚରାଚରମୟ ପ୍ରାଣୀ ଓ ପଦାର୍ଥସମନ୍ୱିତ ଏହି ପରିଦୃଶ୍ୟମାନ ଅଖିଳ ବିଶ୍ୱ ସଂସାର ଏକ ଶୋଭାମୟ ଦୃଶ୍ୟରୂପରେ ବିରାଜମାନ ରହିଅଛି । ଅଥଚ ଏହି ଭୌତିକ ମହାକାଶ ଜ୍ଞାନ-ଦୃଷ୍ଟିରେ ସ୍ୱରୂପତଃ ଅଜ୍ଞାନସମଷ୍ଟିମୟ-ପଦାର୍ଥର ନାମାନ୍ତର ମାତ୍ର । ତେଣୁ ଏହାର ନାମ ଅଜ୍ଞାନ ବା ତାମସ ଅଥବା ଆନ୍ଧ୍ୟ । ଏହାର ସ୍ୱରୂପାନୁଭୂତି ଜ୍ଞାନଦୃଷ୍ଟିରେ ଏଇ ପର୍ଯ୍ୟନ୍ତ । ଅଭ୍ୟାସଦୃଷ୍ଟିରେ ଏହାର ଅନୁଭୂତି କିପରି ? ମନେକର ଅମାବାସ୍ୟା-ରାତ୍ରି-ଅର୍ଦ୍ଧ-ସମୟରେ ଏକ ରୁଦ୍ଧ ଗୃହ ମଧ୍ୟରେ ଆମ୍ଭେ ବସ୍ତ୍ରାବୃତମୁଖ ହୋଇ ଶୋଇଥାଇଁ । ଆଖି ମେଲାଇ ଦେଖିବା କେବଳ ଘୋର ଅନ୍ଧକାର, ଅଥଚ ସର୍ବପ୍ରକାର ପଦାର୍ଥାବୟବ ସହିତ ପୃଥିବୀ ନିଶ୍ଚିହ୍ନ ହୋଇ ଯାଇଅଛି । ଆଖି ବୁଜିଲେ ମଧ୍ୟ ତଦ୍ରୂପ ଦେଖିବା । ତାରକାଦିଶୂନ୍ୟ ଅଥବା ଅମାବାସ୍ୟା ମେଘାଚ୍ଛନ୍ନ ରାତିରେ ଆମ୍ଭେ ପଦାରେ ଠିଆହୋଇ ଦେଖିଲେ ସୁଦ୍ଧା ଘୋର ଅନ୍ଧକାର ଦେଖିବା । ସମସ୍ତ ଅବୟବ-ବିଶିଷ୍ଟ ଅବୟବୀମାନେ ତହିଁରେ ବିଲୀନ ହୋଇଅଛନ୍ତି । ଆଖି ବୁଜିଦେଲେ ସୁଦ୍ଧା ଠିକ୍ ତଦ୍ରୂପ ଅନ୍ଧକାର ଭିନ୍ନ ଆଉ କିଛି ଦେଖିବା ନାହିଁ । ଆଖିରେ ଆଲୁଅ ବା ଅନ୍ଧକାର ସବୁ ଦିଶେ । କିନ୍ତୁ ଏ ସ୍ଥଳେ ଆଖି ବୁଜିଲେ ମଧ୍ୟ ସେହି ଅନ୍ଧକାରର ଅନୁଭୂତି ପରି ହୋଇଥାଏ । ଏ ଅନୁଭୂତି ଯେଉଁ ଚକ୍ଷୁରେ ହେଲା, ତାହାର ନାମ ମାନସ-ଚକ୍ଷୁ ।

ଯେଉଁ ମାନସ-ଚକ୍ଷୁରେ ଭୌତିକ ମହଦାକାଶକୁ ଜ୍ଞାନଦୃଷ୍ଟି ସାହାଯ୍ୟରେ ତାମସ ବୋଲି ଉପରେ ଉଲ୍ଲେଖ କରାଗଲା, ତାହାକୁ ମୁଖମଣ୍ଡଳସ୍ଥ ଚକ୍ଷୁ ସାହାଯ୍ୟରେ ମଧ୍ୟ ତଦ୍ରୂପ ତାମସ ବା ଅନ୍ଧକାର ବୋଲି ନିଷ୍ଟୟ କରାଗଲା । ଏହାର କାରଣ ଏହି ଯେ, ଯେତେବେଳେ ଅନ୍ୟ ଚାରି ଭୂତ ଅପ୍ରକାଶ ଥାଇ ଆକାଶ ମାତ୍ର ଉଦିତ ଥିବାରୁ ତନ୍ମୟ ଅନ୍ଧତା ଉପଲବ୍ଧି ହେଲା । ଏ ରହସ୍ୟ ଏହିଠାରେ ବିଶ୍ରାମଲାଭ କରୁ ।

## ୧୫ଶ ପାଠ—ମନ ଓ ତାହାର କାର୍ଯ୍ୟ

ବର୍ତ୍ତମାନ ମନଠାରୁ ବିଚାର କରିବା । ମନ କିପରି ପଦାର୍ଥ ? ଦେଖ, ଜଣେ ଲୋକକୁ କହିବା ସୂର୍ଯ୍ୟଙ୍କୁ ଚାହିଁ 'ନମଃ ଶ୍ରୀ ସୂର୍ଯ୍ୟାୟ' କହିବାକୁ । ତଦନୁସାରେ ସେ ସୂର୍ଯ୍ୟଙ୍କୁ ଚକ୍ଷୁ ସାହାଯ୍ୟରେ ଚାହିଁଲା, ଆଉ ଉଚ୍ଚ ସ୍ୱରରେ ମୁଖ ସାହାଯ୍ୟରେ କହିଲା, 'ନମଃ ଶ୍ରୀ ସୂର୍ଯ୍ୟାୟ' । ସେ ଲୋକର ସୂର୍ଯ୍ୟଙ୍କୁ ଦେଖିବା ଏବଂ ନମଃ ଶ୍ରୀ ସୂର୍ଯ୍ୟାୟ ବୋଲି କହିବା ଆମ୍ଭେ ଦେଖିଲେଉଁ ଏବଂ ଶୁଣିଲେଉଁ । ତା'ପରେ ତାକୁ କହିବା 'ବାବା ରେ, ତଳକୁ ମୁହଁ କର, ଆଖି ଆଉ ପାଟି ବୁଜିଦେ,—ଖାଲି ଭିତରେ ଭିତରେ ସ୍ମରଣକର ଯେପରି କି ସୂର୍ଯ୍ୟଙ୍କୁ ଦେଖୁଚୁ ଆଉ ନମଃ ଶ୍ରୀ ସୂର୍ଯ୍ୟାୟ ବୋଲି କହୁଚୁ' । ତା' ପରେ ତାକୁ ପଚାରିଲେ ସେ ଅବଶ୍ୟ କହିବ—'ହଁ', ସୂର୍ଯ୍ୟଙ୍କ ଆକାର ଠିକ୍ ଦେଖିବାକୁ ପାଇଲି, ଆଉ କହିଚି 'ନମଃ ଶ୍ରୀ ସୂର୍ଯ୍ୟାୟ' । ଏଥିରୁ ଆମେ ବୁଝିବା ଚକ୍ଷୁ ଓ ମୁଖ ତ ବନ୍ଦ,—ଦେଖିବା କହିବା ଇନ୍ଦ୍ରିୟ ଦ୍ୱାର ତ ରୁଦ୍ଧ, କାହାଦ୍ୱାରା ସୂର୍ଯ୍ୟଙ୍କୁ ଦେଖିବା ଓ ନମଃ ଶ୍ରୀ ସୂର୍ଯ୍ୟାୟ ବୋଲି କହିବା ସମ୍ପାଦିତ ହେଲା ? ଏଇମାତ୍ର ଆମ୍ଭଙ୍କୁ ବୁଝିବାକୁ ହେବ ଯେ ଯାହାଦ୍ୱାରା ଏପରି ଦେଖିବା ଓ କହିବା ସଂଘଟିତ ହେଲା ବୋଲି ସେ ଲୋକ ଜାଣିଲା, ତାହାର ନାମ 'ମନ' ।

ମନକୁ ଆମ୍ଭେ କୌଣସି ଇନ୍ଦ୍ରିୟ ସାହାଯ୍ୟରେ ଉପଲବ୍ଧି କରି ପାରିବାନାହିଁ । କାରଣ ସେ ଇନ୍ଦ୍ରିୟର ଅବିଷୟ । ମନକୁ ମନଦ୍ୱାରା ଓ ତାହାର କାର୍ଯ୍ୟାଦିଦ୍ୱାରା ବା ଆନୁମାନିକ ପ୍ରମାଣଦ୍ୱାରା ନିଷ୍ଟୟ କରିବା । ଏକା ମନକୁ କାହିଁକି ? ଯାହା କିଛି ସ୍ଥୂଳେନ୍ଦ୍ରିୟର ଅବିଷୟ, ତତ୍ସମସ୍ତ ଅନୁମାନଦ୍ୱାରା ଉପଲବ୍ଧ ହୋଇଥାନ୍ତି । ଏବେ ଏହି ମନ ଆମ୍ଭର ଅଛି ଜାଣି ପାରିଲେଉଁ । ସ୍ଥୂଳେନ୍ଦ୍ରିୟାଦି ସହିତ ସେହି ମନର କିପରି ସମ୍ବନ୍ଧ ଓ ମନ ସହଯୋଗରେ କର୍ଣ୍ଣ, ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟଦ୍ୱାରା କିପରି ଶ୍ରବଣ ଦର୍ଶନାଦି ସମ୍ପନ୍ନ ହେଉଅଛି, ଏଥିର ବିଚାର କର୍ତ୍ତବ୍ୟ । ପୂର୍ବରୁ କହିରଖୁଁ, ମନ ସଂଯୋଗ ନ ହେଲେ ସମସ୍ତ ଇନ୍ଦ୍ରିୟ ଅକର୍ମଣ୍ୟ, କାହିଁରେ କାହାର କାର୍ଯ୍ୟ କିଛିମାତ୍ର ହୋଇ ପାରିବ ନାହିଁ । ଦେଖ, ଯେତେବେଳେ ଆମ୍ଭର ମନ କୌଣସି ପ୍ରଗାଢ଼ ଚିନ୍ତାରେ ନିମଗ୍ନ ଅଛି, ସେତିକିବେଳେ ଆମ୍ଭ ଆଗରେ କିଏ ଚାଲିଗଲା ବା କିଏ କଅଣ କହି-ଦେଲା, ତାହା ଆମ୍ଭର ଗୋଚର ବା ଜ୍ଞାତ ହେବ ନାହିଁ । ନିଦ୍ରା ବା ମୂର୍ଚ୍ଛା ବେଳେ ମନ

ଇନ୍ଦ୍ରିୟରେ ସଂଯୁକ୍ତ ନ ଥାଇ ତହିଁରୁ ଅଲଗା ଥିବାରୁ ଆମ୍ଭେ ବାହ୍ୟଜ୍ଞାନବର୍ଜିତ ରହୁଥାଉଁ; ଅଥଚ ଇନ୍ଦ୍ରିୟମାନେ ଦେହରେ ଯଥାସ୍ଥାନରେ ଅବସ୍ଥିତ ଅଛନ୍ତି । ହସ୍ତ ସାହାଯ୍ୟ ବିନା ଯେପରି କେବଳ ଲେଖନୀଦ୍ୱାରା ଲେଖାଯାଇ ନ ପାରେ, ଠିକ୍ ତଦ୍ରୂପ ମନ ସାହାଯ୍ୟ ନ କଲେ କୌଣସି ଇନ୍ଦ୍ରିୟରେ କିଛି ହୋଇପାରିବ ନାହିଁ । ମନ କୌଣସି ଇନ୍ଦ୍ରିୟ ସମ୍ବନ୍ଧୀୟ କାର୍ଯ୍ୟର ବା ଜ୍ଞାନର ସଂସ୍କାରସମ୍ପନ୍ନ ହେଲରୁ ସଂସ୍କାର ସହିତ ମନ ପ୍ରାଣବାୟୁରେ ଆରୂଢ଼ ବା ଯୋଗହୁଏ । ତହୁଁ ମନ ସଂସ୍କାର ଓ ପ୍ରାଣବାୟୁର ଯଥା ଅଂଶ (ପ୍ରାଣ ସ୍ଥୂଳତଃ ପଞ୍ଚଧା—ଯେଉଁ ଭାଗରେ ଯେଉଁ କାର୍ଯ୍ୟ ହେବ, ତାହା ନିର୍ଦ୍ଦିଷ୍ଟ ଅଛି) ନାଡ଼ୀରେ ପ୍ରବେଶ କରି, ଅନନ୍ତର ଏ ସମସ୍ତେ ଏକତ୍ରିତ ହୋଇ ଇନ୍ଦ୍ରିୟରେ ମିଶି ଯଥାଯଥ ଇନ୍ଦ୍ରିୟଦ୍ୱାରା ଯଥାଯଥ କାର୍ଯ୍ୟ ସାଧନ କରନ୍ତି । ମନେକର, ଯଷ୍ଟିରେ ପ୍ରହାର କରିବା,—ପ୍ରଥମରେ ମନ ପ୍ରହାର କରଣ କ୍ରିୟା ସଂସ୍କାରଯୁକ୍ତ ହୋଇ ପ୍ରାଣପବନକୁ ଚଳାଇ ନାଡ଼ୀସହ ହସ୍ତକୁ ଚାଳନାବିଶିଷ୍ଟ କରି ଯଷ୍ଟିକୁ ଧରିଲେଇଁ, ତହିଁରେ ପ୍ରହାର କରିବାକୁ ହେଲା ଇତ୍ୟାଦି ଇତ୍ୟାଦି । ଏହିପରି ଦଶେନ୍ଦ୍ରିୟଯାକ ମନର ଅଧିଷ୍ଠାନଦ୍ୱାରା କାର୍ଯ୍ୟକାରୀ ହେଉଅଛନ୍ତି । ମନ ସହିତ ଇନ୍ଦ୍ରିୟମାନଙ୍କର ଏହିପରି ଘନିଷ୍ଠ ସମ୍ବନ୍ଧ । ସୁତରାଂ ମନ ଇନ୍ଦ୍ରିୟମାନଙ୍କର ନେତା । ମନ ଏହିପରି ଇନ୍ଦ୍ରିୟମାନଙ୍କ ସଙ୍ଗେ ସର୍ବଦା ଯୁକ୍ତ ହୋଇ ଇନ୍ଦ୍ରିୟଗଣଙ୍କ କାର୍ଯ୍ୟରେ ତନ୍ମୟ ହୋଇ ରହିଅଛି । ଅର୍ଥାତ୍ ସର୍ବଦା ଦେଖିବା, ଶୁଣିବା ବା କହିବା ବୋଲିବା ଇତ୍ୟାଦି ଇନ୍ଦ୍ରିୟଗ୍ରାହ୍ୟ ବିଷୟମାନଙ୍କୁ ସବୁବେଳେ ଭଜୁଅଛି । ମନର ଧର୍ମ ସଙ୍କଳ୍ପ ଓ ବିକଳ୍ପ । ପ୍ରାଣର ନିଃଶ୍ୱାସ ପ୍ରଶ୍ୱାସ ଯେପରି ସର୍ବଦା ଅବିଶ୍ରାନ୍ତ ପ୍ରବାହିତ ହେଉଅଛି, ଅଥଚ ଉଭୟେ ପରସ୍ପର ସାପେକ୍ଷ, ଅର୍ଥାତ୍ ନିଃଶ୍ୱାସ ନାସିକାଗ୍ରରୁ ବାହାର ପଡ଼ିଲାମାତ୍ର ପୁଣି ପ୍ରଶ୍ୱାସ ଉଦିତ ହୋଇ ଭିତରକୁ ପ୍ରବେଶ କରୁଅଛି ଓ ପ୍ରଶ୍ୱାସ ତା'ର ନିର୍ଦ୍ଦିଷ୍ଟ ସ୍ଥାନ ଛୁଉଁ ଛୁଉଁ ପୁନର୍ବାର ନିଃଶ୍ୱାସ ଉଦିତ-ହୋଇ ବାହାରକୁ ଦଉଡ଼ୁଅଛି । ଏହିପରି ମନର ସଙ୍କଳ୍ପ ଗୋଟିଏ କଥା କରୁ କରୁ ବିକଳ୍ପ ତାହାକୁ ଲୟ କରୁଅଛି । ପୁଣି ସେହି ଲୟ ସଙ୍ଗେ ସଙ୍ଗେ ଅନ୍ୟ ବିଷୟର ସଙ୍କଳ୍ପ ଜାତ ହେଉଅଛି । ମନ ଓ ପ୍ରାଣ ଉଭୟ ଏହିରୂପେ ପିଙ୍ଗଳାବେଶ୍ୟାପରି ସର୍ବଦା ଇତସ୍ତତଃ ହେଉଅଛନ୍ତି । ମନ ଓ ପ୍ରାଣର ଏପରି ସମ୍ବନ୍ଧ ଯେ ଉଭୟ ଯେପରି ଏକାସନସ୍ଥ; ଅର୍ଥାତ୍ ମନ ଚଳିଲେ ପ୍ରାଣ ଚଳିବ, ଆଉ ପ୍ରାଣ ଚଳିଲେ ମନ ଚଳିବ । ଦୁଇରୁ ଗୋଟିକର ନିରୁଦ୍ଧ ହେଲେ ଉଭୟ ସ୍ଥିର ହେବେ (ଏ କଥା ପରକୁ ଆଉ) ।

ମନର ଆଉ ଗୋଟିଏ ଅଧିକା ଗୁଣ ବା ଶକ୍ତି ଅଥବା ଧର୍ମ ଅଛି । ମନ ବାହ୍ୟେନ୍ଦ୍ରିୟ ସଂଯୋଗରେ ଇନ୍ଦ୍ରିୟଦ୍ୱାରସ୍ଥ ବିଷୟକୁ ପ୍ରକାଶକରେ; ଅଥଚ ବାହ୍ୟେନ୍ଦ୍ରିୟ ସଂଯୋଗ ବିନା ସଂସ୍କାର ମାତ୍ରର ସହଯୋଗରେ ଆନ୍ତରିକ କଳ୍ପନାକ୍ରମେ ଠିକ୍ (ବାହ୍ୟେନ୍ଦ୍ରିୟ ସଂଯୋଗରେ ବିଷୟ ପ୍ରକାଶକଲା ପରି ମଧ୍ୟ) ସ୍ମରଣ ଶକ୍ତି ସାହାଯ୍ୟରେ ସ୍ମରଣାତ୍ମକ ଆକାରରେ ଯଥାଯଥ ବିଷୟମାନ ସତ୍ୟ ପରି ପ୍ରକାଶ କରିଥାଏ । ଏହା ତ

ସମସ୍ତଙ୍କର ସର୍ବଦା ଅନୁଭୂତ ହେଉଅଛି । ମନୁଷ୍ୟ ଚକ୍ଷୁ ବୁଜି ବା ମେଲି କରି ସୁଦ୍ଧା ତା' ପାଖରେ ନ ଥିବା ବହୁତ ବହୁତ ବିଷୟମାନ କଳ୍ପନା କରୁଥାଏ । ସେ ସମସ୍ତ ତାକୁ ସତ୍ୟ ପରି ମଧ୍ୟ ଜଣାଯାଉଥାଏ । ଆଉ ମଧ୍ୟ ନିଦ୍ରାବସ୍ଥାରେ ତ ଇନ୍ଦ୍ରିୟବର୍ଗ ବନ୍ଦ ଥାଆନ୍ତି, ଅଥଚ ମନ ସ୍ୱପ୍ନରେ ଯାହା ଯାହା ଦେଖୁଥାଏ, ତଦବସ୍ଥାରେ ସେ ସବୁକୁ ସତ୍ୟ ବୋଲି ମଣୁଥାଏ । ସେତେବେଳେ ମନ ଏକା ଥାଇ ମଧ୍ୟ ସ୍ୱୟଂ ବିଶ୍ୱମୟ ହୋଇ ତତ୍ସମସ୍ତକୁ ସତ୍ୟ ବୋଲି ବୋଧ କରାଉଥାଏ । ମନର ଏହି ଲୀଳା ବର୍ଣ୍ଣନାତୀତ ।

ଚକ୍ଷୁକର୍ଣ୍ଣାଦି ଇନ୍ଦ୍ରିୟମାନଙ୍କ ବିଷୟ ଏତତ୍ପୂର୍ବେ ବର୍ଣ୍ଣନା କଲାବେଳେ ଚକ୍ଷୁରେ ଦର୍ଶନ ଓ କର୍ଣ୍ଣରେ ଶ୍ରବଣ କରାଯାଏ ବୋଲି ଲେଖାଗଲା । ପ୍ରକୃତରେ ମନଃସଂଯୋଗରେ ଚକ୍ଷୁରେ ଦର୍ଶନ, କର୍ଣ୍ଣରେ ଶ୍ରବଣ କରାଯାଏ ବୋଲି ଲେଖା ଯାଇ ନ ଥିଲା, କିନ୍ତୁ ଯେତେବେଳେ ମନର ବର୍ଣ୍ଣନା ଆରମ୍ଭ ହେଲା, ସେତେବେଳେ ଦେଖାଇ ଦିଆଗଲା ଯେ ମନ ବିନା ଚକ୍ଷୁକର୍ଣ୍ଣାଦି, ଦର୍ଶନଶ୍ରବଣାଦି ବିଷୟସବୁ ଅକର୍ମଣ୍ୟ । ସେହିପରି ମନର—ଧର୍ମ ଉପରେ ବର୍ଣ୍ଣନା କରାଯାଇଅଛି ମାତ୍ର; ବୁଦ୍ଧି, ଅହଂକାର ଓ ଚିତ୍ତ—ଏ ତିନିଙ୍କ ସଂଯୋଗ ବିନା ମନ କିଛି ନୁହେ ବା କିଛି କରି ନ ପାରେ । ବୁଦ୍ଧି, ଅହଂକାର, ଚିତ୍ତ ଓ ମନ ଏ ଚାରିହେଁ ଏକତ୍ରିତ ହେଲେ ସମୁଦାୟ ବିଷୟ ସଙ୍ଘଟିତ ହୁଏ । ଏବେ ଏ କଥାର ବର୍ଣ୍ଣନା ଆରବ୍ଧ ହେବ ।

## ୧୭ଶ ପାଠ—ଅନ୍ତଃକରଣ

ବୁଦ୍ଧି, ଅହଂକାର, ଚିତ୍ତ ଓ ମନ ଏ ଚାରିଙ୍କର ମିଶ୍ରିତାବସ୍ଥାର ନାମ ଅନ୍ତଃକରଣ । ବୃତ୍ତିଭେଦରେ କାର୍ଯ୍ୟଭେଦରେ ଏହି ଏକ ଅନ୍ତଃକରଣ । ବୁଦ୍ଧି, ଅହଂକାର, ଚିତ୍ତ ଓ ମନ ଚାରିଭାଗରେ ବିଭକ୍ତ । ଏ ଚାରି ପ୍ରକାର ବୃତ୍ତି ପରସ୍ପର ସମ୍ମିଳିତ ଭାବରେ ଯେଉଁ କାର୍ଯ୍ୟ କରିବା ଦ୍ୱାରା ଯେ କୌଣସି ଗୋଟିଏ ବିଷୟର ଜ୍ଞାନ ବା କାର୍ଯ୍ୟ ସାଧିତ ହେଉଅଛି । ବୁଦ୍ଧି, ଅଧ୍ୟବସାୟାତ୍ମିକା ବା ନିଶ୍ଚୟକରଣାତ୍ମିକା ବୃତ୍ତି । ଅହଂକାର, ଅହଂକାରଣାତ୍ମିକା ବୃତ୍ତି । ଚିତ୍ତ, ସ୍ମରଣାତ୍ମିକା ବୃତ୍ତି ଓ ମନ, ମନନକରଣାତ୍ମିକା ବା ସଂକଳ୍ପବିକଳ୍ପାତ୍ମିକା ଚଞ୍ଚଳସ୍ୱଭାବାପନ୍ନ ବୃତ୍ତି । ଏହିରୂପେ ଏକ ଅନ୍ତଃକରଣରେହିଁ ଯେପରି ନିଶ୍ଚୟକରଣାତ୍ମିକା, ଅହଂକରଣାତ୍ମିକା, ସ୍ମରଣାତ୍ମିକା ଓ ସଂକଳ୍ପ ବିକଳ୍ପ ବା ମନନାତ୍ମିକାଦି ଚାରିପ୍ରକାର ବୃତ୍ତି ନିହିତ ଥାଇ ତଦ୍ଦ୍ୱାରା ମନୁଷ୍ୟର ସର୍ବପ୍ରକାର ଜ୍ଞାନ ଓ କର୍ମସାଧନାଦି ନିର୍ବାହିତ ହେଉଅଛି । ଆପଣାଠାରେ ଧୀରଭାବେ ଏସବୁ ଅନୁଭବ କରି ଏଥିର ସତ୍ୟତା ବୁଝିନେବା ଦରକାର । ଖାଲି ପଢ଼ାଶୁଣା ବା ତର୍କବିତର୍କରେ ଜିଗୀଷା ପୋଷଣ କରି ଚଳିଲେ ଆତ୍ମପ୍ରବଞ୍ଚକ ହେବାକୁ ହେବ । ତାହା ନିଷ୍ଫଳ । ଏ ସମ୍ବନ୍ଧେ ସ୍ଥିର ଜ୍ଞାନ ନ ହେବାଯାଏ ଶାସ୍ତ୍ରାଲୋଚନା ଦ୍ୱାରେ କି ବିବେକୀ ସହିତ ଆଳାପ ଦ୍ୱାରା ଏଥିର ସତ୍ୟତା ପଦେ ପଦେ ପ୍ରମାଣ କରିବାକୁ ହେଉଥିବ ।

## ୧୭ଶ ପାଠ—ବୁଦ୍ଧିବୃତ୍ତିର ଲକ୍ଷଣ

ବୁଦ୍ଧିର ଯେ ନିଶ୍ଚୟାତ୍ମିକା ବୃତ୍ତି, ସେ କିପରି ? ଏହି ଦେହାକାରିତ ପିଣ୍ଡର ଯେଉଁ ଚିହ୍ନ ରୂପାତ୍ମକ ଜ୍ଞାନବୃତ୍ତିଦ୍ୱାରା ଅନ୍ତଃ-କରଣରେ ସର୍ବଦା ପ୍ରତିବିମ୍ବିତ ଅଛି, ସେହି ରୂପ ଆତ୍ମରୂପ ବୋଲି ଯେ ବୃତ୍ତି ନିଶ୍ଚୟ କରି ରଖିଅଛି, ଏବଂ ସେହି ରୂପକୁ ଲକ୍ଷ୍ୟକରି ଯେଉଁ ନାମ ବା ଆଧି ଉପାଧି ପ୍ରଭୃତି ସଂସାରରେ ବ୍ୟବହୃତ ହେଉଅଛି, ସେ ସବୁରେ ଯେଉଁ ବୃତ୍ତି ଆତ୍ମଭାବ ସ୍ଥାପନ କରି ଦେଉଅଛି ଓ ତଦନୁସାରେ ଦୈହିକ ବା ସାଂସାରିକ କର୍ତ୍ତବ୍ୟାଦି ନିରୂପଣ କରୁଅଛି; ପୁଣି ଅହଂକାର, ଚିତ୍ତ ଓ ମନ—ଏହି ବୃତ୍ତିତ୍ରୟର ବିଷୟମାନଙ୍କୁ ଆତ୍ମଭାବାପନ୍ନ କରି ତଦୁପରେ ଦୃଢ଼ ପ୍ରତ୍ୟୟ ଜନ୍ମାଉଅଛି, ତାହାହିଁ ବୁଦ୍ଧିବୃତ୍ତି । ଏହା ଏକପ୍ରକାର ବଡ଼ ନିୟାମକ ବୃତ୍ତି । ଏହାଦ୍ୱାରା ଦେହାଭିମାନ ସୁଦୃଢ଼ ଓ ସୁନିଶ୍ଚିତ ରହିଅଛି ।

## ୧୮ଶ ପାଠ—ଅହଂକାର ବୃତ୍ତିର ଲକ୍ଷଣ

ଅହଂକାର ବୃତ୍ତି କିପରି ? ଦେହସ୍ଥ ବାହ୍ୟ ଦଶେନ୍ଦ୍ରିୟଦ୍ୱାରା ଅର୍ଥାତ୍ ଜ୍ଞାନେନ୍ଦ୍ରିୟ-ଦ୍ୱାରା ପ୍ରଦର୍ଶିତ ବିଷୟାଦିର ମୁଁ ଦ୍ରଷ୍ଟା ଓ କର୍ମେନ୍ଦ୍ରିୟଦ୍ୱାରା ସାଧିତ କର୍ମର ମୁଁ କର୍ତ୍ତା ବୋଲି ଯେଉଁ ବୃତ୍ତି ଭୋକ୍ତୃତ୍ୱ ଓ କର୍ତ୍ତୃତ୍ୱାଦିର ଅଭିମାନ ସମ୍ପାଦନ କରୁଅଛି, ତାହା ଅହଂକାରବୃତ୍ତି ।

## ୧୯ଶ ପାଠ—ଚିତ୍ତବୃତ୍ତିର ଲକ୍ଷଣ

ଚିତ୍ତବୃତ୍ତି କିପରି ? ଅନ୍ତଃକରଣଦ୍ୱାରା ଅତୀତର ଅନୁଭୂତ ସମସ୍ତ ବୈଷୟିକ ବ୍ୟାପାରାଦିକୁ ଜ୍ଞାନାକାରରେ ଆପଣାଠାରେ ଅଙ୍କନ କରି ରଖି ଏହା ଏପରି ବୋଲି ଯେଉଁ ବୃତ୍ତି ସ୍ମରଣ କରାଉଅଛି, ତାହା ଚିତ୍ତବୃତ୍ତି ।

## ୨୦ଶ ପାଠ—ମନୋବୃତ୍ତିର ଲକ୍ଷଣ

ମନୋବୃତ୍ତି ? ଆଗରୁ ଏ ସମ୍ବନ୍ଧରେ କିଛି ଉଲ୍ଲିଖିତ ହୋଇଅଛି । ତେବେ ବର୍ତ୍ତମାନ ପ୍ରସଙ୍ଗାଧୀନରେ କହିବାକୁ ଗଲେ ଯେଉଁ ବୃତ୍ତି ସର୍ବଦା ସର୍ବାବସ୍ଥାରେ ଅନ୍ତତଃ ସମସ୍ତ ଇନ୍ଦ୍ରିୟମାନଙ୍କର ଚର୍ଚ୍ଚା କରୁଅଛି, ପ୍ରତି କ୍ଷଣରେ ଜ୍ଞାନେନ୍ଦ୍ରିୟ ସଙ୍ଗେ ମିଶି ଜ୍ଞାନ-ସାଧନ ଓ କର୍ମେନ୍ଦ୍ରିୟ ସଙ୍ଗେ ମିଶି କର୍ମସାଧନ କରି କରି ଅନ୍ତଃକରଣକୁ ଚଳାଉଅଛି, ତାହାଇ ମନୋବୃତ୍ତି । ଉଦାହରଣ ସ୍ୱରୂପ ଦେଖ, ଆମ୍ଭେ ଏହି ବହି ଧରିଲେଇଁ,—ଦେହାକାରିତ ଯେଉଁ ଚିହ୍ନ "ଆମ୍ଭେ" ବୋଲିବା ଆତ୍ମରୂପ ବୋଲି ବୁଦ୍ଧିଦ୍ୱାରା ନିର୍ଦ୍ଦିଷ୍ଟ ହୋଇଅଛି, ପ୍ରଥମତଃ ଆମ୍ଭେ ସ୍ୱୟଂ ଯେ ବା ଯେପରି ବୋଲି ସେହି ବୁଦ୍ଧିଦ୍ୱାରା ନିରୂପିତ ହେଲେଇଁ, ତା'ପରେ ବହି ଧରିବା କ୍ରିୟାର କର୍ତ୍ତା ମୁଁ ବା ଆମ୍ଭେ ବୋଲି ଅହଂକାର ଆମ୍ଭଙ୍କୁ ଲକ୍ଷ୍ୟ କରିଦେଲା । ବହିର ଆକାର ଯେପରି ତାହା ଚିତ୍ତର ଆଗରୁ ଠିକ୍ ଥିବାରୁ

ସେହି ଚିତ୍ତ ହାତରେ ଧରିଥିବା ଜିନିଷକୁ ବହି ବୋଲି ସ୍ମରଣ କରାଇଦେଲା ଏବଂ ମନ ଧରିବା କ୍ରିୟାକୁ ହସ୍ତଦ୍ୱାରା ସମାପନ କରାଇଲା—ଏହି ପର୍ଯ୍ୟାୟକ୍ରମେ ଆମ୍ଭେ ବହି ଧରିଲେଇଁ ବୋଲି ଆମ୍ଭର ଜ୍ଞାନ ହେଲା, ଇତ୍ୟାଦି ଇତ୍ୟାଦି । ଏହି ବୃତ୍ତିଚତୁଷ୍ଟୟର ସମଷ୍ଟି ସ୍ୱରୂପ ଅନ୍ତଃକରଣ-ବୃତ୍ତିର ସାଧାରଣ ବର୍ଣ୍ଣନା ବର୍ତ୍ତମାନ କରାଯାଉ ।

## ୨୧ଶ ପାଠ—ଜୀବର ସୂକ୍ଷ୍ମ ବା ଲିଙ୍ଗଦେହର ନିରୂପଣ

ବର୍ତ୍ତମାନ ଦେଖାଯାଉ, ଅନ୍ତଃକରଣ (ବୁଦ୍ଧି, ଅହଂକାର, ଚିତ୍ତ ଓ ମନ) ଏବଂ ଦଶେନ୍ଦ୍ରିୟର ଶକ୍ତ୍ୟାତ୍ମକ ସୂକ୍ଷ୍ମରୂପ ଓ ପଞ୍ଚପ୍ରାଣ—ଏମାନେ ଏକତ୍ରରେ ସର୍ବଦା ଅବସ୍ଥିତ ରହି ଯେପରି ଏକ ସୂକ୍ଷ୍ମ କଳେବରବିଶିଷ୍ଟ ହୋଇଅଛନ୍ତି । ଏହି କଳେବର ସହିତ ଆମ୍ଭର ଅଭେଦ ବୃତ୍ତି ଜାତ ହୋଇଅଛି; ଆମ୍ଭେ ଏହାକୁ ଏହି ସୂକ୍ଷ୍ମ କଳେବରବିଶିଷ୍ଟ ବୋଲି ସ୍ଥିର କରି ସବୁବେଳେ ଏତତ୍ ସୂକ୍ଷ୍ମ କଳେବରମୟ ହୋଇ ଏତତ୍ ସଂଯୁକ୍ତ ସ୍ଥୂଳ ଭୌତିକ ଦେହକୁ ଏହି ସୂକ୍ଷ୍ମ କଳେବର ସଙ୍ଗେ ଅଭେଦ ଓ ଏକଭାବାପନ୍ନ କରି ଦେଖୁଥାଇଁ । ଏହିରୂପେ ଉକ୍ତ ସୂକ୍ଷ୍ମ ଓ ସ୍ଥୂଳ ପାଞ୍ଚଭୌତିକ ଦେହ ଏକ ହୋଇ ବ୍ୟବହୃତ ହେଉଅଛି । ଅଜ୍ଞାନବଶତଃ ଆମ୍ଭେ ଏତଦ୍ରୂପ ଯୌଗିକ କଳେବରକୁ କେବଳ ପଞ୍ଚଭୂତାତ୍ମକ ଜଡ଼ପିଣ୍ଡ ବୋଲି ଜାଣି ଏହି ଜଡ଼ଦେହର ନାମାନୁସାରେ ଆପଣାକୁ ଅମୁକ ବୋଲି ସଂସାରରେ ପରିଚୟ ଦେଉଥାଇଁ, ସମୁଦାୟ କର୍ମ କରୁଥାଇଁ । ଜ୍ଞାନାକାର-ଦେହୀ ଜଡ଼ାକାର ଦେହକୁ ଅଭେଦଭାବେ ମୁଁ ବୋଲି ନିଶ୍ଚୟ କରି ଜଡ଼ଦେହକୃତ କର୍ମାଦିରେ ସୁଖ ଦୁଃଖାଦି ଅନୁଭବ କରି କି ମୋହମୟ ଲୀଳାରେ ପ୍ରବୃତ୍ତ ରହିଅଛି ।

## ୨୨ଶ ପାଠ--ଅନ୍ତଃକରଣ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ-ସଂସାର ସଂଘଟନର ମୂଳ ଓ ତହିଁର ଚିଦାଧାର ସ୍ୱରୂପ ।

ଦେଖିବାକୁ ଗଲେ, ଏହି ପିଣ୍ଡ ଓ ବ୍ରହ୍ମାଣ୍ଡ ଏ ଉଭୟର ସମ୍ବନ୍ଧାତ୍ମକ ଚିତ୍ର ନାନାବିଧ ବୈଚିତ୍ର୍ୟିକ ଜ୍ଞାନାକାରରେ ଅନ୍ତଃକରଣ-ପଟ୍ଟରେ ଚିହ୍ନିତ ବା ଅଙ୍କିତ ଥାଇ ପ୍ରତିବିମ୍ବିତ ବସ୍ତୁରୂପେ ତହିଁରେ ତନ୍ନିଷ୍ଠ ଓ ତଦ୍‌ଗତଭାବେ ଶୋଭମାୟ ହୋଇଅଛି । ଏହି ଅନ୍ତଃକରଣସ୍ଥ ପ୍ରତିବିମ୍ବକୁ ଜୀବରୂପୀ ଆମ୍ଭେ ଅନ୍ତଃକରଣ ସହ ଦେଖୁଥାଇଁ । ସେହି ଦର୍ଶନ ଆମ୍ଭର ସଂସାରଦର୍ଶନ । ଅତଏବ ଆମ୍ଭେ ଯାହା କିଛି ଦେଖୁଥାଇଁ ବା ଜାଣୁଥାଇଁ, ସେ ସମସ୍ତ ଅନ୍ତଃକରଣସ୍ଥ ତନ୍ମୟ ପ୍ରତିବିମ୍ବାକାର ବସ୍ତୁର ଦୃଶ୍ୟ ମାତ୍ର । ସେହି ପ୍ରତିବିମ୍ବରେ ଆମ୍ଭର ସତ୍ୟ ଜଗଦାକାର ଓ ସତ୍ୟ ଜଡ଼ଦେହାକାର ଜ୍ଞାନ ହେଉଅଛି ମାତ୍ର । ଏତଦ୍ରୂପ ପ୍ରତିବିମ୍ବାଧାର ଅନ୍ତଃକରଣକୁ ବାଦ୍ ଦେଲେ ପିଣ୍ଡବ୍ରହ୍ମାଣ୍ଡାତ୍ମକ-ବସ୍ତୁର ଅସ୍ତିତ୍ୱବୋଧ ହେବନାହିଁ । ସୁତରାଂ ଅନ୍ତଃକରଣ ସହିତ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ-ଚିତ୍ରମୟ-ଜ୍ଞାନର ଅନ୍ୱୟ ସ୍ଥିର କଲାବେଳେ, ଏ ସଂସାର ଓ ଏ ଦେହ ଅଛି, ମାତ୍ର ବ୍ୟତିରେକବେଳେ ଏ

ଦେହ ଓ ଏ ସଂସାର ନାହିଁ । ସ୍ୱଭାବ-କୃତ-ମୂର୍ଚ୍ଛା ବା ସୁଷୁପ୍ତି ଅବସ୍ଥାରେ କିମ୍ବା ଜ୍ଞାନକୃତ ସମାଧିଦଶାରେ ଏହା ଅନୁଭବନୀୟ ।

ଅନ୍ତଃକରଣ ସୂକ୍ଷ୍ମ ନିର୍ମଳ ବସ୍ତୁ । ଜଡ଼ୀୟ ଉଦାହରଣ ଅନୁସାରେ ତାହା ନିର୍ମଳ, ସ୍ୱଚ୍ଛ ଦର୍ପଣ ସଦୃଶ । ତହିଁରେ ତଦୀୟ ବୁଦ୍ଧ୍ୟାଦି ବୃତ୍ତି ସମ୍ପାଦିତ ଇନ୍ଦ୍ରିୟଜନ୍ୟଜ୍ଞାନାଦି ତଥାକଥିତ ଜ୍ଞାନାକାରରୂପେ ପ୍ରତିବିମ୍ବିତ ହୁଏ । ଦର୍ପଣରେ ଯେପରି ମୁଖର ପ୍ରତିବିମ୍ବ ଅବିକଳ ମୁଖାକାରରେ ଦର୍ପଣଗତ ହୋଇ ପ୍ରତିବିମ୍ବିତ ହୋଇଥାଏ ।

ତେବେ ଆମ୍ଭ ଦେହ-ସଂସାର ସମ୍ବନ୍ଧୀୟ-ଜ୍ଞାନ ବା ତଦୀୟ ଅସ୍ତିତ୍ୱ ପ୍ରତିପାଦନ-ପ୍ରତି ଅନ୍ତଃକରଣ ଏକମାତ୍ର କାରଣ । ମୁଖ ଓ ଦର୍ପଣ ଉଦାହରଣସ୍ଥଳେ ଦର୍ପଣ ଅଭାବରେ ମଧ୍ୟ ଆମ୍ଭେ ମୁଖର ଅସ୍ତିତ୍ୱ ନିରୂପଣ କରିପାରୁଥାଇଁ କିନ୍ତୁ ପ୍ରତିବିମ୍ବର ନୁହେଁ । ମାତ୍ର ଅନ୍ତଃକରଣର ସାହାଯ୍ୟ ଅଭାବରେ ଦେହ-ସଂସାର-ସମ୍ବନ୍ଧୀୟ ଜ୍ଞାନ କଦାପି ନିରୂପିତ ହୋଇପାରିବ ନାହିଁ । କାରଣ ଦେହ-ସଂସାର ଆଧିଭୌତିକ ବସ୍ତୁ, ମାତ୍ରହିଁ ସ୍ୱୟଂ କୌଣସିମତେ ପ୍ରକାଶିତ ହୋଇ ନ ପାରେ । ଜଡ଼ର ସେ ଗୁଣ ନାହିଁ, ସୁତରାଂ ଜଡ଼ ଜ୍ଞେୟ ମାତ୍ର । ଜ୍ଞାନର ସତ୍ତା ତହିଁରେ ଲେଶ ନାହିଁ । ତାହା ଜ୍ଞାନ ଅର୍ଥାତ୍ ଅନ୍ତଃକରଣଦ୍ୱାରା ଅନ୍ତଃକରଣର ତଦାକାର ପରିଣାମ କ୍ରମେ ସେହି ଅନ୍ତଃକରଣରେ ପ୍ରତିବିମ୍ବାକାରରେ ପ୍ରକଟିତ ହେବା ଭିନ୍ନ ଅନ୍ୟ କୌଣସି ପ୍ରକାରରେ ବା ଅନ୍ୟ କୌଣସି କାରଣବଶତଃ ପ୍ରକାଶିତ ହୋଇ ପାରିବ ନାହିଁ । ଅନାଲୋକ ପଦାର୍ଥ ମାତ୍ରଇ ଯେପରି ସ୍ୱୟଂ କୌଣସିମତେ ଆଲୋକ ସାହାଯ୍ୟ ବିନା ପ୍ରକାଶିତ ହୋଇପାରେନାହିଁ । ଆଲୋକ ସ୍ୱୟଂ ପ୍ରକାଶ ପାଏ, ଏବଂ ତନ୍ନିକଟସ୍ଥ ଅନ୍ୟ ଅନାଲୋକ ଓ ଜଡ଼ ବସ୍ତୁକୁ ମଧ୍ୟ ପ୍ରକାଶ କରେ । ତାହାର ଯେପରି ସ୍ୱପ୍ରକାଶ ଗୁଣ ଅଛି, ସେହିପରି ଅନ୍ତଃକରଣ ନିଜେ ପ୍ରକାଶିତ ଥାଇ କି ଆଲୋକ କି ଅନାଲୋକ ସର୍ବପ୍ରକାର ପଦାର୍ଥକୁ ତତ୍ତଦାକାରରେ ତାହାଠାରେ ପ୍ରକାଶ କରେ । ଏ ସ୍ଥଳରେ ଅନ୍ତଃକରଣର ମଧ୍ୟ ସ୍ୱ-ପର-ପ୍ରକାଶ ଗୁଣ ଥିବା ଅନୁମେୟ । ପ୍ରକାଶ ଥାଉ, ଅନ୍ତଃକରଣ ସ୍ୱତଃ ପ୍ରକାଶମାନ ବସ୍ତୁ ନୁହେ, ଏହା ପୁଣି ଆତ୍ମାଦ୍ୱାରା ତଦ୍ରୂପେ ପ୍ରକାଶିତ ହୋଇଥାଏ ।

ଆଲୋକରେ ପ୍ରକାଶିତ ବସ୍ତୁ ସମ୍ବନ୍ଧୀୟ ଉଦାହରଣରେ ଆଲୋକଠାରୁ ପ୍ରକାଶିତ ବସ୍ତୁ ଯେପରି ଦୂରସ୍ଥ ଥାଇ ପୃଥକ୍ ରୂପରେ ପ୍ରକାଶିତ ହୁଏ, ଆଲୋକ ସୁଦ୍ଧା ଆଲୋକାକାରରେ ଥାଏ—ତାହା ପ୍ରକାଶିତ ବସ୍ତୁରୂପରେ ପରିଣତ ହୋଇଯାଏ ନାହିଁ ! ଅନ୍ତଃକରଣ ସେପରି ନୁହେ । ଅନ୍ତଃକରଣରେ ଯେଉଁ ବସ୍ତୁର ଜ୍ଞାନ ପ୍ରକାଶିତ ହୁଏ, ସେ ପ୍ରକାଶର ଅର୍ଥ ଅନ୍ତଃକରଣର ତଦ୍ରୂପ ପଦାର୍ଥାକାରର ପରିଣାମ ମାତ୍ର । ଅନ୍ତଃକରଣରୁ ଅନ୍ତଃକରଣ ପ୍ରକାଶିତ ବସ୍ତୁର ଯେଉଁ ପାର୍ଥକ୍ୟ ପ୍ରତୀତ ହୁଏ, ତାହା ମଧ୍ୟ ସେହି ଅନ୍ତଃକରଣର ତଦ୍ରୂପ ପାର୍ଥକ୍ୟାକାର ପରିଣାମ ବିଶେଷ ଭିନ୍ନ ଆଉ କିଛି ନୁହେ । ଏହିରୂପେ ଅନ୍ତଃକରଣ ସ୍ୱୟଂ ବାହ୍ୟାନ୍ତରମୟ ହୋଇ ସ୍ୱରୂପତଃ ବିରାଜମାନ ରହିଅଛି । ଏହା ତାହାର ସ୍ୱାଭାବିକ ଧର୍ମ । ବାହ୍ୟାନ୍ତର ନିରୂପଣ କରିବା ତାହାର ଧର୍ମ ଭିନ୍ନ ଆଉ

କିଛି ନୁହେ । ମଧ୍ୟ ବାହ୍ୟାନ୍ତର ଏ ସମସ୍ତ ନାନାବିଧ ଭାବ ତାହାର ବିକାଶ । ସଂଜ୍ଞା ସ୍ୱରୂପେ ସ୍ମରଣ ରଖିବା ଉଚିତ ଯେ ସ୍ୱୟଂ ବିକାଶିତ ବା ପ୍ରକାଶିତ ହେବା ଜଡ଼ର ଧର୍ମ ନୁହେ । ସେ ଜାଣୁନାହିଁ ସେ ଅଛି କି ନା, ଆଉ ଜ୍ଞାନ ସ୍ୱୟଂ ଜଡ଼ାକାରରେ ବିବର୍ତ୍ତିତ ହୋଇଥାଏ । ଜ୍ଞାନ ଅର୍ଥାତ୍ ଅନ୍ତଃକରଣ ଏହି ପ୍ରକାରେ ବହୁରୂପା ବାରାଙ୍ଗନାପରି ମୁହୁର୍ମୁହୁ ନାନାବିଧ ଅଳଂକାରାଳଂକୃତ କଳେବର ହୋଇ ମହାମୋହିନୀ ମୂର୍ତ୍ତି ଧାରଣକରି ବିରାଜିତ ରହିଅଛି । ଫଳତଃ ଅନ୍ତଃକରଣହିଁ ବାହ୍ୟାନ୍ତର ଉଭୟାତ୍ମକ । ତାହାକୁହିଁ ଆମ୍ଭେମାନେ ବାହ୍ୟାଭ୍ୟନ୍ତରମୟ କରି ଦେଖୁଥାଉଁ । ଏ ବୈଚିତ୍ର୍ୟ ତାହାଠାରେ ଥିବାର ହେତୁ ଏହି ଯେ ଆମ୍ଭମାନଙ୍କର ଯେପରି ଦେହ-ସଂସାର ରୂପ ବାହ୍ୟ ଆସକ୍ତି ଦୃଢ଼ୀଭୂତ ହୋଇ ରହିଥିବ, ଚିନ୍ତା ପଡ଼ିଗଲେ ତ ତାହାର ମାହାତ୍ମ୍ୟ କମିଯିବ । ଆମ୍ଭେମାନେ ଏପରି ମାୟୀ ବସ୍ତୁର ଫାନ୍ଦରେ ନ ପଡ଼ିବାକୁ ଚେଷ୍ଟାକରି କାଳେ ତାକୁ ପରିତ୍ୟାଗ କରି ଆତ୍ମଶକ୍ତି ଲାଭ କରିଯିବା, ଏଥିପାଇଁ ମାୟାଦେବୀଙ୍କ ନାତୁଣୀ (ମହାମାୟାଙ୍କ ୧ମ କନ୍ୟା ବିଦ୍ୟା ଓ ୨ୟ କନ୍ୟା ଅବିଦ୍ୟା, ଅବିଦ୍ୟାର କନ୍ୟା ଅନ୍ତଃକରଣ, ତେଣୁ ସେ ମହାମାୟାଙ୍କ ନାତୁଣୀ) ଅସୁବାଦ ଅଜ୍ଞମାନଙ୍କୁ ମୋହିତ କରିବାରୁ ଦେହ-ସଂସାରମୟ ବାହ୍ୟ ଜଗରେ ଆମ୍ଭେମାନେ ସର୍ବଦା ରତ ଥାଉଁ—"ଆମ୍ଭେମାନେ" ଏହି ବାକ୍ୟ ଉଚ୍ଚାରଣ କରିବାଦ୍ୱାରା ଜଡ଼ାକାରପିଣ୍ଡ ଅଭିଲକ୍ଷିତ ନୁହେ । ଅନ୍ତଃକରଣ ଉପାଧିରେ ଉପହିତ ହୋଇ ଅନ୍ତଃକରଣ ସହିତ ଆପଣାକୁ ଅଭେଦ ଜ୍ଞାନ କରି ଯେଉଁ ଅହଂକାରଶୂନ୍ୟ ଅହଂମାତ୍ର ବୋଧାକାର ପୁରୁଷ ସର୍ବତଃ ପ୍ରସିଦ୍ଧ ଅଛି, ସେ 'ଆମ୍ଭେ' ବା ବହୁ ହେବା ଦ୍ୱାରା ଆମ୍ଭେମାନେ ବୋଲି ଲକ୍ଷିତ ହେଉଅଛି । ପରେ ଏହାଙ୍କର ସେବା ହେବ; ବର୍ତ୍ତମାନ ସ୍ଥୂଳ ଓ ସୂକ୍ଷ୍ମ ଦେହ ନିର୍ଣ୍ଣୟ କରାଯାଉ । ତଦ୍ଦ୍ୱାରାହିଁ ଉପରୋକ୍ତ ବିଷୟ ଅଧିକ ସ୍ପଷ୍ଟ ହେବ ।

## ୨୩ଶ ପାଠ—ସ୍ଥୂଳଦେହସ୍ଥ ଦଶେନ୍ଦ୍ରିୟ-ସ୍ଥାନର ନାମ ଇନ୍ଦ୍ରିୟ-ଗୋଲକ ବା ଇନ୍ଦ୍ରିୟାଧାର, ଯଥାର୍ଥତଃ ଇନ୍ଦ୍ରିୟମାନେ ଅଦୃଶ୍ୟ ଓ ସୂକ୍ଷ୍ମ

ପୂର୍ବବର୍ଣ୍ଣିତ ଅନ୍ତଃକରଣ ସୂକ୍ଷ୍ମ ଦଶେନ୍ଦ୍ରିୟ ଓ ପଞ୍ଚପ୍ରାଣ; ଏମାନେ ଅତି ସୂକ୍ଷ୍ମ ଥିବାରୁ ଏମାନେ ପରସ୍ପର ମିଶି ଏକ ବିଚିତ୍ରାକାର ଧାରଣ କରିଅଛନ୍ତି । ଏହି ଆକାରର ନାମ ସୂକ୍ଷ୍ମଦେହ । ପଞ୍ଚଭୂତାତ୍ମକ ଦେହ, ସ୍ଥୂଳ ଦେହ ଓ ତହିଁରେ ଥିବା ଦଶ ସ୍ଥୂଳେନ୍ଦ୍ରିୟ-ମାନଙ୍କୁ ଇନ୍ଦ୍ରିୟଗୋଲକ କୁହାଯାଏ । ଏହି ସ୍ଥୂଳେନ୍ଦ୍ରିୟ ଗୋଲକମାନଙ୍କରେ ମନ ସନ୍ନିବିଷ୍ଟ ହେତୁ ଦଶ ସୂକ୍ଷ୍ମେନ୍ଦ୍ରିୟମାନେ ନିଜ ନିଜ କାର୍ଯ୍ୟ ପ୍ରକାଶ କରନ୍ତି । ଚୂଳଶା ଧରିବା ଲୋକର ଚକ୍ଷୁ ଯେପରି ପ୍ରକୃତଚକ୍ଷୁର ଗୋଲକ ଦେଇ ଦେଖିପାରେ, ସେହିପରି ଏହି ସୂକ୍ଷ୍ମ ଦଶେନ୍ଦ୍ରିୟ ନିଜ ନିଜ ସ୍ଥୂଳଦେହସ୍ଥ ଇନ୍ଦ୍ରିୟଗୋଲକ ସାହାଯ୍ୟରେ ନିଜ ନିଜ କାର୍ଯ୍ୟ ସମାଧାନ କରିଥାନ୍ତି, ଯେପରି ସୂକ୍ଷ୍ମ ଦର୍ଶନେନ୍ଦ୍ରିୟ, ବାହ୍ୟ ବା ସ୍ଥୂଳ ଦର୍ଶନେନ୍ଦ୍ରିୟ

ଗୋଲକ ଅର୍ଥାତ୍ ମୁଖମଣ୍ଡଳସ୍ଥିତ ଚକ୍ଷୁ ସାହାଯ୍ୟରେ ଦେଖୁଅଛୁ । ଏହିପରି ସମସ୍ତ ଦଶ ସ୍ଥୂଳେନ୍ଦ୍ରିୟ ଗୋଲକ ଦେହରେ ସନ୍ନିବିଷ୍ଟ ଅଛନ୍ତି ସତ୍ୟ, ମାତ୍ର ସେମାନଙ୍କରେ ସୂକ୍ଷ୍ମେନ୍ଦ୍ରିୟମାନେ ମନସହିତ ସଂଯୁକ୍ତ ଥାଇ ଆପଣା ଆପଣା କାର୍ଯ୍ୟ ବିସ୍ତାର କରୁଅଛନ୍ତି । (ଉପରୋକ୍ତ ସୂକ୍ଷ୍ମ ଦେହର ପରିଚୟ କରିବାକୁ ଗଲେ ଦେଖାଯାଏ ତାହା ଅନ୍ତଃକରଣ, ଦଶ ସୂକ୍ଷ୍ମେନ୍ଦ୍ରିୟ ଓ ପଞ୍ଚପ୍ରାଣର ସମଷ୍ଟି) ପୃଥ୍ୱୀ, ଜଳ, ତେଜ, ବାୟୁ ଓ ଆକାଶ—ଏହି ପଞ୍ଚଭୂତ ସମଷ୍ଟିରେ ଯେଉଁ ଦୃଶ୍ୟମାନ ଦେହ ଓ ତହିଁରେ ଥିବା ବାହ୍ୟ ଦଶେନ୍ଦ୍ରିୟ ଏକତ୍ରେ ସ୍ଥୂଳ ଦେହ (ପୂର୍ବେ କେବଳ ଇନ୍ଦ୍ରିୟନାମରେ ଯେଉଁ ବାହ୍ୟେନ୍ଦ୍ରିୟମାନେ କଥିତ ହୋଇଥିଲେ ତାହା ପ୍ରକୃତରେ ଇନ୍ଦ୍ରିୟଗୋଲକ) । ଏତତ୍ ଦଶେନ୍ଦ୍ରିୟଗୋଲକସମନ୍ୱିତ ସ୍ଥୂଳ ଦେହ ଓ ସୂକ୍ଷ୍ମ ଦେହ ଅଙ୍ଗାଙ୍ଗୀଭାବଶତଃ ଏକତ୍ର ମିଶି ଏକ ପଦାର୍ଥରୂପେ ବ୍ୟବହାର କରାଯାଉଅଛି, ମାତ୍ର ସ୍ଥୂଳ ଦେହ ସୂକ୍ଷ୍ମ ଦେହର ଆଶ୍ରୟରେ ଥାଇ ଜୀବିତ ଅଛି ।

## ୨୪ଶ ପାଠ—ସ୍ଥୂଳଦେହ ସୂକ୍ଷ୍ମଦେହର ଆଶ୍ରୟରେ ଏବଂ ସୂକ୍ଷ୍ମଦେହ ଆତ୍ମାର ଆଶ୍ରୟରେ ଅଛି, ଅଥଚ ଆତ୍ମା ଉଭୟ ଦେହର ମୂଳାଶ୍ରୟ ହୋଇ ଉକ୍ତ ଦେହଦ୍ୱୟର ସଂଯୋଗକୁ ସ୍ୱୟଂ ଆତ୍ମା ବୋଲି ଭ୍ରମରେ ମଣୁଅଛି ।

ମାୟିକ ପଦାର୍ଥର ଧର୍ମ 'ସ୍ୱାଶ୍ରୟ ବ୍ୟାମୋହକତା' ଅର୍ଥାତ୍ ସେ ଯାହା ଆଶ୍ରୟରେ ଥାଏ ତାହାକୁ ମୋହିତ କରି ତାହାର ନିଜ ସ୍ୱରୂପ ବିସ୍ମରଣ ବା ଆବରଣ କରାଇ ଆପଣା ରୂପରେ ତାକୁ ତନ୍ମୟ କରାଏ । ଏହିହେତୁ ଆମ୍ଭେ ଆମ୍ଭର ନିଜାତ୍ମରୂପ ବିସ୍ମରଣ କରିଥାଉଁ ଏବଂ ଆମ୍ଭ ଆଶ୍ରୟରେ ଥିବା ସୂକ୍ଷ୍ମଦେହ ଆମ୍ଭଙ୍କୁ ମୋହିତକରି ଆମ୍ଭର ନିଜାତ୍ମରୂପକୁ ବିସ୍ମରଣ କରାଇ ତଦୀୟ ରୂପରେ ଆମ୍ଭଙ୍କୁ ତନ୍ମୟ କରାଇଅଛି । ଏହିପରି ସୂକ୍ଷ୍ମଦେହ ଆଶ୍ରୟରେ ଥିବା ସ୍ଥୂଳଦେହ ସୂକ୍ଷ୍ମଦେହକୁ ମୋହିତ କରି ତାହାର ନିଜତ୍ୱକୁ ବିସ୍ମରଣ ବା ଆବରଣ କରାଇ ସେହି ସ୍ଥୂଳଦେହର ରୂପରେ ସୂକ୍ଷ୍ମଦେହକୁ ତନ୍ମୟ କରାଇଅଛି । ଫଳତଃ ଆମ୍ଭେ ଆମ୍ଭର ନିଜାତ୍ମରୂପକୁ ତଥା ସୂକ୍ଷ୍ମ ଶରୀରକୁ ମଧ୍ୟ ବିସ୍ମରଣ କରି କେବଳ ସ୍ଥୂଳଦେହରେ ତନ୍ମୟ ହୋଇଥାଉଁ । ସେହିହେତୁ ସ୍ଥୂଳଦେହକୁ ଲକ୍ଷ୍ୟ କରି ଆମ୍ଭେମାନେ କହୁଁ, ଏ ସ୍ଥୂଳଦେହଇ ଆମ୍ଭେ; ଅର୍ଥାତ୍ ଆମ୍ଭେ ଅମୁକ ବା ଆମ୍ଭେ ସ୍ଥୂଳ ବା କୃଶ, ଗୌର ବା କୃଷ୍ଣବର୍ଣ୍ଣ ବିଶିଷ୍ଟ ଇତ୍ୟାଦି । ଏହିରୂପେ ଜ୍ଞାନାବିର୍ଭୂତସମ୍ପନ୍ନ, ଅଥଚ ଜ୍ଞାନସ୍ୱରୂପଦେହୀ ଜଡ଼ାକାର ମୃତପିଣ୍ଡକୁ 'ମୁଁ' ବୋଲି ଭ୍ରମ ସହକାରେ ସ୍ଥିର କରି ସଂସାରପଥରେ କ୍ଳିଷ୍ଟ ପଥିକ ହୋଇଅଛି ।

## ୨୫ଶ ପାଠ—ଦେହାତ୍ମ-ଭ୍ରମର ଉତ୍ପତ୍ତି ଓ ନିବାରଣର ହେତୁନିର୍ଣ୍ଣୟ

ବର୍ତ୍ତମାନ ଏହା ସ୍ପଷ୍ଟ ନିଶ୍ଚୟ କରାଯାଉଅଛି ଯେ ଅଜ୍ଞାନ ବା ମୂଢ଼ାବସ୍ଥାରେ ସ୍ଥୂଳ ପାଞ୍ଚଭୌତିକ ଓ ପରିଦୃଶ୍ୟମାନ ଏହି ଜଡ଼ପିଣ୍ଡକୁ 'ମୁଁ' ବୋଲି ପ୍ରତୀତି ହେଉଥିବା

ପର୍ଯ୍ୟନ୍ତ ଏ ଦେହ ଓ ଏହି ଭୌତିକ ସଂସାରସମନ୍ୱିତ ଜାଗତିକ ସାବୟବ ସର୍ବପ୍ରକାର ନାମଚିହ୍ନିତ ବା ଅଚିହ୍ନିତ ବସ୍ତୁମାନେ ସତ୍ତ୍ୱାକାରରେ ସ୍ୱକୀୟ ସତ୍ତ୍ୱଦ୍ୱାରା ଅବସ୍ଥିତ ବା ପ୍ରକାଶିତ ଥିଲା ପରି ବୋଧ ହେଉଥାଆନ୍ତି, ମାତ୍ର ଯେତେବେଳେ ବିବେକଦ୍ୱାରା ଏତଦତିରିକ୍ତ ସୂକ୍ଷ୍ମଦେହର ଅସ୍ତିତ୍ୱାନୁଭୂତ ହୁଏ, ସେତେବେଳେ ସ୍ପଷ୍ଟ ନିଶ୍ଚିତ ହୁଏ ଯେ ସ୍ଥୂଳଦେହ ସୂକ୍ଷ୍ମଦେହର ଆଶ୍ରୟରେ ଓ ତତ୍‌ସାହାଯ୍ୟରେ ରହିଅଛି ବୋଲି (ମାୟିକ ବସ୍ତୁର ସ୍ୱାଶ୍ରୟ ବ୍ୟାମୋହକତା ଗୁଣଦ୍ୱାରା) ସୂକ୍ଷ୍ମ ଦେହର ଅସ୍ତିତ୍ୱକୁ ମୋହିତ ଓ ଆବୃତ କରି ନିଜେ ସେହି ସୂକ୍ଷ୍ମ ଶରୀର ଦ୍ୱାରାଇ ସ୍ଥୂଳାକାରରେ ପ୍ରକାଶିତ ହୋଇଅଛି; ନଚେତ୍ ସ୍ଥୂଳଦେହର ଅସ୍ତିତ୍ୱ କେଉଁଠାରେ ? ପୁଣି ଯେତେବେଳେ ସୂକ୍ଷ୍ମଦେହ ଦେହୀ ଆତ୍ମାର ଆଶ୍ରୟରେ ପ୍ରକାଶିତ ହେଉଅଛି ବୋଲି ନିଶ୍ଚୟ କରାଯାଏ ଓ ଦେହୀ ଆତ୍ମା ଆତ୍ମ-ସଂସ୍ଥ ହୁଅନ୍ତି, ସେତେବେଳେ ସୂକ୍ଷ୍ମ ଦେହର ଅସ୍ତିତ୍ୱ ଆତ୍ମ-ସତ୍ତ୍ୱରେ ଅବଭାସିତ ହେଉଅଛି ବୋଲି ସ୍ପଷ୍ଟ ଦେଖାଯାଏ; ନୋହିଲେ ବା ତାହାର ସ୍ଥାନ କେଉଁଠାରେ ? ଏହିରୂପେ ଜ୍ଞାନ ବିବେକ ଦ୍ୱାରା ସ୍ଥୂଳ ଓ ସୂକ୍ଷ୍ମ ଦେହାଦିର 'ସ୍ୱାଶ୍ରୟ ବ୍ୟାମୋହକତା' ଗୁଣ ବିନଷ୍ଟ ହୋଇ ଆତ୍ମା ତତ୍‌କୃତ ଅବିଦ୍ୟା ବା ଅଜ୍ଞାନାବରଣରୁ ମୁକ୍ତ ହେଲେ ଏହି ସ୍ଥୂଳ ଦେହ ସୂକ୍ଷ୍ମଦେହରେ ଓ ସୂକ୍ଷ୍ମଦେହ ତଦୀୟ କାରଣୀଭୂତ ଅବିଦ୍ୟାମୟ କାରଣ ଦେହରେ ଅଭେଦଭାବେ ମିଶିଯାଏ । ସର୍ବଦା ତ ମିଶିକରି ଅଛି । ଅଜ୍ଞାନ ଏ ମିଶ୍ରଣ ବା ବିଲୟକୁ ଜଣାଇଦିଏ ନାହିଁ; ମାତ୍ର ଜ୍ଞାନ ଉଦୟରେ ଏ ସୂକ୍ଷ୍ମ ଓ ସ୍ଥୂଳଦେହର ପାର୍ଥକ୍ୟ ନିରୂପଣ ରହିତ ହୋଇ ଏ ଉଭୟ ସେହି ଏକ ଅବିଦ୍ୟାମୟ ବସ୍ତୁ ବୋଲି ଅବିଦ୍ୟା ବା ଅଜ୍ଞାନ ସହିତ ମିଶିଯାଇ ଏକ ଅବିଦ୍ୟାକାରରେ ଆତ୍ମାଦ୍ୱାରା ନିର୍ଣ୍ଣୀତ ହୁଅନ୍ତି । ଏହା ସମ୍ବନ୍ଧରେ କିଛି ବିଶେଷ ବର୍ଣ୍ଣନା କରାଯାଉଅଛି ।

ଏ ସବୁ ଆଲୋଚନାର କାରଣ ଓ ଫଳ ଏହି ଯେ ଏତଦ୍ରୂପେ ପ୍ରକୃତିତତ୍ତ୍ୱ ତଥା ଦେହାଦିତତ୍ତ୍ୱ ପ୍ରଭୃତି ଅବଗତ ହେଲେ ଆତ୍ମାରେ ଏ ସବୁ ଅଧ୍ୟାସିତ ଥାଇ ଆତ୍ମଜ୍ଞାନକୁ ଯାହା ଆବରଣ କରିଅଛି ସେହି ଆବରଣରୁ ମୁକ୍ତ ମିଳିବ ଓ ଆତ୍ମଜ୍ଞାନ ନିର୍ମଳଭାବେ ପ୍ରକାଶିତ ହେଲେ ଚରିତାର୍ଥ ହେବାକୁ ହେବ । ତତ୍ପରେ ଆତ୍ମକର୍ତ୍ତବ୍ୟ ଓ ଧର୍ମାଦି ସହଜରେ ଉପଲବ୍‌ଧି ହେବ । ଏ ହେତୁ ଶାନ୍ତ ସଂଯତଭାବରେ ଏ ପ୍ରବନ୍ଧାଦିରେ ଯାହା ଯାହା ପାଠ କରିବାକୁ ହେଉଥିବ, ପାଠ ସଙ୍ଗେ ସଙ୍ଗେ ସେହି ଉଲ୍ଲିଖିତ ବିଷୟାଦିକୁ ଦେଖି ଦେଖି ଯାଉଥିବାକୁ ହେଉଥିବ । ତାହା ନ କରି ଖବରକାଗଜ ପରି ପଢ଼ିଲେ ଏହାର ଅର୍ଥ କିଛିମାତ୍ର ହୃଦୟଙ୍ଗମ ହେବନାହିଁ । ଅତଏବ ଶାସ୍ତ୍ରୀୟ ବିଧାନାନୁଯାୟୀ ଶମଦମାଦି ସାଧନପରାୟଣ ନ ହେଲେ ଏ ସବୁ ବିଷୟ ପଢ଼ିଲେ ସୁଦ୍ଧା ବୁଝିହେବ ନାହିଁ । ଏ ସବୁ ବିଷୟର ଉପପାଦ୍ୟ ପ୍ରତିପାଦ୍ୟ ସାମଗ୍ରୀମାନ ପାଖେ ପାଖେ ଜ୍ଞାନର ନିକଟରେ ରହିଅଛି ।

## ୨୭ଶ ପାଠ—ଅନ୍ତଃକରଣର ସ୍ୱାଭାବିକ ଅବସ୍ଥାତ୍ରୟ ଦର୍ଶନ

ଧୀର ଭାବରେ ବିଚାର କରି ଦେଖିଲେ ଦେଖାଯାଏ, ଏହି ଅନ୍ତଃକରଣର ତିନଗୋଟି ଅବସ୍ଥା ସ୍ୱତଃ ଅକୃତ୍ରିମ ଭାବେ ବିଦ୍ୟମାନ ରହିଅଛି । ଆମ୍ଭେ ଏ ଅବସ୍ଥା-ତ୍ରୟର ପୂର୍ଣ୍ଣମାତ୍ରାରେ ଅଧୀନ । ଯେଉଁ ଅବସ୍ଥାରେ ଜଡ଼ ଦେହ ସଚେଷ୍ଟ ଦେଖାଯାଏ ଏବଂ ସେହି ଦେହସ୍ଥ ଜ୍ଞାନ କର୍ମେନ୍ଦ୍ରିୟର ଦ୍ୱାର ବା ସ୍ଥାନମାନ ଉନ୍ମୁକ୍ତ ଥାଏ, ଅଥଚ ସେହି ସେହି ଇନ୍ଦ୍ରିୟଦ୍ୱାରମାନଙ୍କରେ ଅନ୍ତଃକରଣସ୍ଥ ମନୋବୃତ୍ତି ସଂଯୁକ୍ତ ଭାବରେ ବିରାଜିତ ରହି ଶବ୍ଦସ୍ପର୍ଶାଦି ବୈଷୟିକ ଜ୍ଞାନ ଆହରଣାର୍ଥେ କ୍ରୀଡ଼ୋନ୍ମୁଖ ହୋଇ ପିଣ୍ଡ-ବ୍ରହ୍ମାଣ୍ଡ ସମ୍ବନ୍ଧଜାତ ବୈଷୟିକ ଜ୍ଞାନକୁ ଓ ଆଦାନପ୍ରଦାନାଦି କ୍ରିୟାକୁ ସଂପାଦନ କରୁଥାଏ । ଏତଦ୍‌କ୍ରମେ ଅନ୍ତଃକରଣ ଜାଗ୍ରତ ଥାଇ ମନ ସମ୍ପାଦିତ ସେହି ସେହି ବୈଷୟିକ ଜ୍ଞାନାଦି ଓ କର୍ମାଦିକୁ ଉପଭୋଗ କରି ନାନାବିଧ ଭାବାପନ୍ନ ହେଉଥାଏ, ସେହି ଅବସ୍ଥା ଅନ୍ତଃକରଣର ଜାଗରଣ ଦଶା । ଏହା ସବୁବେଳେ ସମସ୍ତେ ଉପଲବ୍‌ଧି କରୁଥାଉଁ । ଏହି ଦଶାରେ ଆମ୍ଭର ଦୈହିକ ଜ୍ଞାନ ମମତାସ୍ପଦ ସର୍ବପ୍ରାଣିସମ୍ବନ୍ଧୀୟ ଓ ବିଷୟସମ୍ବନ୍ଧୀୟ ଜ୍ଞାନ ନିର୍ମଳ ଭାବରେ ପ୍ରକଟିତ ଥାଏ । ଏହି ଦଶାରେ ଆମ୍ଭେମାନେ ସାଂସାରିକ ଓ ପରମାର୍ଥିକ ସମସ୍ତ କ୍ରିୟା ସମ୍ପାଦନ କରୁ ଓ ବର୍ତ୍ତମାନ, ଅତୀତ, ଅନାଗତ କାଳ ସମ୍ବନ୍ଧୀୟ ସର୍ବପ୍ରକାର ଆବଶ୍ୟକ ବିଷୟମାନ ସ୍ଥିର କରୁଁ ଓ ଆଲୋଚନା କରୁଁ । ବିଶେଷତଃ ଏହି ଦଶାରେ ସ୍ୱପ୍ନଦଶାରେ ଅନୁଭୂତ ହୋଇଥିବା ବୃତ୍ତାନ୍ତାଦିକୁ ସ୍ମରଣ କରି ତାହା ସବୁ ମିଥ୍ୟା ବୋଲି ଅବଧାରଣ କରୁଁ । ଆମ୍ଭେ ଏତଦ୍ରୂପ ସଂସାରୀ ବୋଲି ଯଥାର୍ଥ ଭାବେ ଏହି ଦଶାରେ ଆପଣାକୁ ଜାଣୁଥାଉଁ । ଆଉ ଅଧିକ କହିବା ବାହୁଲ୍ୟ ମାତ୍ର । ଏହି ଦଶାରେ ଦେହ ଓ ସଂସାର ଏବଂ ସଂସାରୀୟ ସମସ୍ତ ବିଷୟ ସତ୍ୟ ବୋଲି ପ୍ରତୀତି ଜନ୍ମିଥାଏ । ଆଉ ମଧ୍ୟ ସଂସାରୀୟ ସମସ୍ତ ବିଷୟରେ ପ୍ରବୃତ୍ତି ଜନ୍ମେ ।

ଏବେ ସ୍ୱପ୍ନ ଦଶାର ବିବରଣ ପ୍ରତି ଅବଧାନ କରାଯାଉ । ଯେଉଁ ଅବସ୍ଥାରେ ଜଡ଼ ଦେହ ଚେଷ୍ଟାଶୂନ୍ୟ ଥାଏ ଓ ସେହି ଦେହସ୍ଥ ଦଶଟିଯାକ ସ୍ଥୂଳେନ୍ଦ୍ରିୟ ଦ୍ୱାର ବା ଗୋଲକମାନେ ବନ୍ଦ ଥାଆନ୍ତି; ଅର୍ଥାତ୍ ଜାଗରଣ ଦଶାର ଦେହ ଓ ସଂସାର ଏବଂ ଏ ଉଭୟ ସମ୍ବନ୍ଧାଦିଜାତ ବିଷୟମାନେ ଏକପ୍ରକାର ଅଜ୍ଞାନାନ୍ଧକାରରେ ବୁଡ଼ି ଅଦୃଶ୍ୟ ହୋଇଥାଆନ୍ତି; ଅର୍ଥାତ୍ ଏତତ୍‌ସମ୍ବନ୍ଧୀୟ ସତ୍ୟଜ୍ଞାନ ବିସ୍ମୃତ ହୋଇ ଯାଇଥାଏ, ଅଥଚ ଅନ୍ତଃକରଣ ଦଶ ସୂକ୍ଷ୍ମେନ୍ଦ୍ରିୟ ଓ ପଞ୍ଚପ୍ରାଣ—ଏହିମାନେ କେବଳ ସମଷ୍ଟିଭୂତ ସୂକ୍ଷ୍ମ ଦେହାକାରରେ ଜାଗରିତ ଓ ସଚେଷ୍ଟ ସଜୀବବତ୍ ଥାଇ ଏହାଙ୍କର ଗର୍ଭ ମଧ୍ୟରେ ବା ସୀମା ମଧ୍ୟରେ ଜାଗରଣ ଦଶାର ପ୍ରତୀତ ସତ୍ୟ ସଂସାର ଓ ଦେହ ଏବଂ ଜାଗତିକବସ୍ତୁ ସହ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚିତ୍ରବତ୍ ଏକ କାଳ୍ପନିକ ବା ତଦବସ୍ଥାପନ୍ନ ସତ୍ୟ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଜଗନ୍ମୟ ଚିତ୍ର ଜାଜ୍ୱଲ୍ୟମାନ ଭାବରେ ସମୁଦିତ ଥାଏ; (ଏ ବ୍ରହ୍ମାଣ୍ଡଟିର

ବଧାରା କଏ ? ଆଉ ଏହି ସ୍ୱପ୍ନଦୃଷ୍ଟ ଜଗଦାଦିର ଉପାଦାନ କଣ ବା କାହିଁରୁ ଆସିଲ ?) ସେହି ଦଶାର ନାମ ସ୍ୱପ୍ନାବସ୍ଥା । ଏ ଦଶାରେ ସମସ୍ତେ ତ ଦେଖିଥାଇଁ ଯେ ଧୁଏ ତ ଆମ୍ଭେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଏକ ଗୃହରେ ଶୋଇଥାଇଁ, ଆଉ ସ୍ୱପ୍ନରେ ଦେଖିଥାଇଁ ବହୁଦୂରସ୍ଥ କୌଣସି ନଗରରେ ଆମ୍ଭେ କାହା ସହିତ କଳହ ଓ ମାରପିଟ କରି କ୍ରନ୍ଦନ କରୁଥାଇଁ ବା ଅନ୍ୟ ପ୍ରକାରରେ ଆମୋଦ କରୁଥାଇଁ, ଅଥବା ଅନ୍ୟ କୌଣସି ସ୍ଥାନରେ କୌଣସି ଭୀଷଣ ଜୀବ ଆମ୍ଭଙ୍କୁ ଆକ୍ରମଣ କରିବାକୁ ଦୌଡ଼ିବାରେ ଆମ୍ଭେ ପ୍ରାଣ ବିକଳରେ ଉଠିପଡ଼ି ଏଆଡ଼େ ସେଆଡ଼େ ପଳାଇବାର ଚେଷ୍ଟା କରୁଥାଇଁ; ଅର୍ଥାତ୍ ଠିକ୍ ଜାଗରଣ ଦଶା ପରି ସବୁ ଅନୁଭବ କରୁଥାଇଁ ଆଉ ତାହାକୁ ସତ୍ୟ ମଣୁଥାଇଁ ।

ଏଥିରୁ ସ୍ପଷ୍ଟ ଦେଖାଯାଉଅଛି ଯେ ଏ ଅବସ୍ଥାରେ ମଧ୍ୟ ଆମ୍ଭର ଜ୍ଞାନ ହେଉନାହିଁ ଯେ ସତେକି ଆଉ ଗୋଟାଏ ସତ୍ୟ ଜାଗରଣ ଦଶା ଅଛି ଓ ଏଇଟା ମିଥ୍ୟା । ଏପରି ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଏହି ଯେ ପ୍ରତିଦିନ ରାତିରେ ବା ଶୋଇବା ଅବସ୍ଥାରେ ଆମ୍ଭେ ଏପରି ସ୍ୱପ୍ନ ଦେଖୁଥାଇଁ ଓ ସତ୍ୟ ମଣୁଥାଇଁ, ପୁଣି ନିଦ୍ରାବସାନରେ କହୁଥାଇଁ, ଓହୋ ! ଆମ୍ଭେ ତ ପୁରୀର ଗୃହରେ ଅନ୍ୟ ନଗରରେ ବା ଅନ୍ୟ ସ୍ଥାନରେ ନ ଥିଲୁ; କାହା ସହିତ କଳହ ବା ପ୍ରେମ କରି ନ ଥିଲୁ କି କୌଣସି ହିଂସ୍ର ଜୀବ ଆମ୍ଭଙ୍କୁ ଆକ୍ରମଣ କରିନାହିଁ । ଏ ସବୁ ମିଥ୍ୟା ଦୃଶ୍ୟ ମାତ୍ର, ପୁଣି ଶୋଇଲେ ଏହିପରି ମିଥ୍ୟା ବିଷୟ ସ୍ୱପ୍ନରେ ଦେଖି ସତ୍ୟ ମଣୁଥାଇଁ, ଅଥଚ ମିଥ୍ୟା ବୋଲି ଜାଣିବାକୁ ଆମ୍ଭେ ସମ୍ପୂର୍ଣ୍ଣ ଅକ୍ଷମ । ଅତଏବ ସତ୍ୟ ମିଥ୍ୟା ବୁଝିବାକୁ ଆମ୍ଭର ସ୍ୱତଃ ଜ୍ଞାନ ବା ଅଧିକାର କିଛି ନାହିଁ; ତାହା ଦଶାର ଅଧୀନ ।

ଅନ୍ତଃକରଣ ବୃତ୍ତି ଜାଗରଣ ଦଶା ହେଉ ବା ସ୍ୱପ୍ନଦଶା ହେଉ, ଯେ କୌଣସି ଅବାସ୍ଥାଧୀନରେ ଆମ୍ଭଙ୍କୁ ଯେପରି ରଖି ଯାହା ଯାହା ସତ୍ୟ ବୋଲି ବା ଯାହା ଯାହା ମିଥ୍ୟା ବୋଲି ମଣାଇ ଦେଉଅଛି, ମହାମୂଢ଼ ଆମ୍ଭେ ତଦନୁସାରେ ତାହା ସବୁ ସତ୍ୟ ବା ମିଥ୍ୟା ବୋଲି ସତ୍ୟବିଶ୍ୱାସ କରୁଥାଇଁ ଓ ମଣୁଥାଇଁ । ଏ ଅବସ୍ଥାରେ ଓ ଏ ରୂପ ପ୍ରମାଣ ସମ୍ମୁଖରେ ଆମ୍ଭଙ୍କୁ ନିରପେକ୍ଷ ଭାବରେ ସ୍ୱୀକାର କରିବାକୁ ହେଉଅଛି ଯେ ଆମ୍ଭେ ସର୍ବଦା ଅନ୍ତଃକରଣ ସହ ସୂକ୍ଷ୍ମଦେହ ସଙ୍ଗେ ସଙ୍ଗୀ ହୋଇଥାଇଁ, ତାହାର ଗର୍ଭ ବା ସୀମା ମଧ୍ୟରେ ଯେତେବେଳେ ଯାହା ଦେଖିଥାଇଁ ବା ସେ ଦେଖାଉଅଛି, ତାହାଇ ଆମ୍ଭର ସତ୍ୟ ଦର୍ଶନ । ଆଉ ଏ ଦେହ ସତ୍ୟ, ଏ ଚରାଚର ଜଗତ ସତ୍ୟ, ଏ ମିଥ୍ୟା, ସେ ମିଥ୍ୟା, ଏଭଳି କହିବା ବା ନିଷ୍ପତ୍ତି କରିବା ଆମ୍ଭର ପୂର୍ଣ୍ଣ ଭ୍ରମ ପ୍ରମାଦଭିନ୍ନ ଆଉ କିଛି ହୋଇ ନ ପାରେ । ଅତଏବ ପୂର୍ବ ନିର୍ଦ୍ଦେଶ ଅନୁଯାୟୀ ବର୍ତ୍ତମାନ ସ୍ଥିର ହେଲା ଯେ ସ୍ଥୂଳ ଦେହ, ସଂସାର ଓ ତତ୍ସମ୍ବନ୍ଧୀୟ ସମସ୍ତ ଜାଗତିକ ଦୃଶ୍ୟ କେବଳ ଅନ୍ତଃକରଣର ତଦ୍ରୂପାତ୍ମକ ବିବର୍ତ୍ତିତ ପରିଣତ ଅବସ୍ଥା ମାତ୍ର । ବୁଝିବାକୁ ହେଲା, ଅନ୍ତଃକରଣ ସମନ୍ୱିତ ସୂକ୍ଷ୍ମ ଦେହକୁ ଦେଖିବା ମାତ୍ର ତାହାର

ଧର୍ମାନୁସାରେ ସେ ଆତ୍ମଙ୍କୁ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଏକ ସ୍ଥୂଳ ଚକ୍ଷୁ ତାହାଙ୍କଠାରେ ଦେଖାଇ ଏବଂ ତାହାଙ୍କଠାରେ ସ୍ଥୂଳ, ସୂକ୍ଷ୍ମ ଓ ବାହ୍ୟ ବା ଅନ୍ତର ଇତ୍ୟାଦି ନାନାବିଧ କଳ୍ପନାକୁ ସତ୍ୟ ଆକାରରେ ଜ୍ଞାନ କରାଇ ବିମୋହିତ କରି ରଖିଅଛି । ସ୍ମରଣ ରଖିବାକୁ ହେବ ଯେ ମାୟିକ ବସ୍ତୁର ସ୍ୱାଭାବିକ ବ୍ୟାମୋହକତା ଗୁଣ କେଡ଼େ ପ୍ରବଳ !

ସ୍ଥୂଳଦେହ ଜାଗରଣର ନାମ ଜାଗରଣାବସ୍ଥା, ସ୍ଥୂଳ ଦେହର ନିଦ୍ରାରେ ସୂକ୍ଷ୍ମ ଦେହର ଯେଉଁ ଜାଗରଣ ତାହାର ନାମ ସ୍ୱପ୍ନାବସ୍ଥା । ଆଉ ସ୍ଥୂଳ ଓ ସୂକ୍ଷ୍ମ ଉଭୟ ଦେହର ନିଦ୍ରାରେ ଯେତେବେଳେ କି କୌଣସି ପ୍ରକାର ବାହ୍ୟିକ ବା ଆନ୍ତରିକ ଜ୍ଞାନ ନାହିଁ, ସ୍ଥୂଳ ସୂକ୍ଷ୍ମ ସମସ୍ତ ପ୍ରକାର ଇନ୍ଦ୍ରିୟବୃତ୍ତି ବିଲୀନ, ତାହାର ନାମ ସୁଷୁପ୍ତି ବା ସୁପ୍ତାବସ୍ଥା । ଏ ଅବସ୍ଥାପନ୍ନ ଦେହର ନାମ କାରଣଦେହ । ଏହି କାରଣ-ଶରୀର-ସଂସ୍ଥିତ ଅବସ୍ଥାରେ ଆମ୍ଭେ ଅନ୍ତଃକରଣଗତ ସର୍ବପ୍ରକାର ଭାବଶୂନ୍ୟ ଓ ସୁଖଦୁଃଖାଦିର ଅଭାବ ଅନୁଭବ କଲାପ୍ରାୟ ବୋଧହୁଏ । ତେବେ ସେ ଅବସ୍ଥାରେ ଆନନ୍ଦାଭାଷ ମାତ୍ର ଆମ୍ଭେମାନେ ଉପଭୋଗ କରୁଁ । କାରଣ ସୁଖଦୁଃଖାଦିର ଅଭାବ ଅବସ୍ଥାର ନାମ ଆନନ୍ଦ । ସୁଖଦୁଃଖାଦି ବାହ୍ୟ ପ୍ରପଞ୍ଚ ସମ୍ବନ୍ଧରୁ ଉତ୍ପନ୍ନ । ସୁତରାଂ ତାହାର ଅଭାବଇ ଆନନ୍ଦ । ଏହା ପ୍ରପଞ୍ଚବିରହିତ ଆତ୍ମାର ନିଜାନନ୍ଦ ଉପଭୋଗ ଅବସ୍ଥା ମାତ୍ର । ତେବେ ସୁଷୁପ୍ତିରେ ସେହି ଆନନ୍ଦ ସ୍ପଷ୍ଟ ଅନୁଭୂତ ସ୍ମରଣ ନ ହେଉଥିବା ଓ ସୁଖଦୁଃଖାଦିର ଅଭାବ ସ୍ମରଣ ହେଉଥିବାରୁ ସେହି ସୁଷୁପ୍ତିକୁ ଆନନ୍ଦାଭାଷ ଉପଭୋଗର ଅବସ୍ଥା କୁହାଯାଉଅଛି । ଏ ଅବସ୍ଥାରେ ଆତ୍ମର ବିଶ୍ରାମ ଯେଉଁଠାରେ, ତାହାର ନାମ କାରଣ-ଶରୀର; ଏହାର ବର୍ଣ୍ଣନା ଦେଖ ଅର୍ଥାତ୍ ଏହି କାରଣ-ଶରୀରର ଅନ୍ୟ ନାମ ଅବିଦ୍ୟା । ସ୍ଥୂଳ ସୂକ୍ଷ୍ମ ଦେହାତ୍ମକ କର୍ମମୟ ଓ ଭୋଗମୟ ବାସନା, ଅନାଦି ସଂସ୍କାର ରୂପେ ବୀଜମୂଳ ଥାଇ ଜୀବଭାବଯୁକ୍ତ ଏତତ୍ କାରଣ-ଶରୀରାକାର ଧାରଣ କରି ଅବ୍ୟକ୍ତ ଅବସ୍ଥାରେ ମହାପ୍ରକୃତିରେ ସଂସ୍ଥାପିତ ଅଛି । ଏଥିରୁ ବାସନା ସହକାରେ ସୂକ୍ଷ୍ମ ଦେହର ଓ ସୂକ୍ଷ୍ମ ଦେହରୁ ସଂସ୍କାର ସହକାରେ ସ୍ଥୂଳ ଦେହର ସ୍ଫୂର୍ତ୍ତି ହୋଇଥାଏ । ଏହିପରି ଅହରହ ଜାଗରଣ, ସ୍ୱପ୍ନ ଓ ସୁଷୁପ୍ତ୍ୟାଦି ଅବସ୍ଥାତ୍ରୟ ଆତ୍ମର ସର୍ବଦା ଅନୁଭୂତ ହେଉଅଛି । ତେବେ ଏଥିରୁ ଆତ୍ମର ମୁକ୍ତି କେତେବେଳେ ? ଏହି ଅବସ୍ଥାତ୍ରୟରୁ ମୁକ୍ତ ଅବସ୍ଥାର ନାମ ପ୍ରକୃତ ମୁକ୍ତାବସ୍ଥା ଓ ନିଜାନନ୍ଦରସ ସମ୍ଭୋଗାପନ୍ନ ଆତ୍ମାବସ୍ଥା (ଏହା ଆତ୍ମସମାଧି ସିଦ୍ଧାବସ୍ଥା) ।

## ୨୬ଶ ପାଠ—ଅବସ୍ଥାତ୍ରୟ ଅଧୀନରେ ଦେହତ୍ରୟର ଦ୍ରଷ୍ଟା ବା ଜ୍ଞାତାରୂପକ ଆତ୍ମା ଓ ଆତ୍ମାର ତୁରୀୟ ଦଶା

ବର୍ତ୍ତମାନ ବିଚାର କରିବାକୁ ସମୟ ଆସିଲା ଯେ ଆମ୍ଭେ ତେବେ କିଏ ? କିଣ ? ଦେଖିବାକୁ ହେବ ଯେଉଁ ସୂକ୍ଷ୍ମଶରୀରକୁ ଦେଖି ଆମ୍ଭେ ତର୍କରେ ତତ୍କୃତ ବ୍ୟବସ୍ଥାନୁଯାୟୀ

ଜାଗରଣ ଓ ସ୍ୱପ୍ନାବସ୍ଥାଦ୍ୱୟ କଳ୍ପନା କରୁଁ, ପୁଣି ଏକର ଉଦୟବେଳେ ଅନ୍ୟର ଅବସ୍ଥାକୁ ମିଥ୍ୟାବୋଲି ଦେଖୁଁ, ପୁଣି ସୂକ୍ଷ୍ମ ଶରୀର ନିଦ୍ରା ଗଲେ ସବୁ ଭୁଲିଯାଇ ଆନନ୍ଦାଭାସ ମାତ୍ର ଉପଭୋଗ କରୁଁ, ଆଉ ସେହି ଅବସ୍ଥାକୁ ସୁଷୁପ୍ତି ବୋଲି କହୁଁ, ସେହି ଆମ୍ଭେ ସର୍ବଦା ଅହଂବୋଧାକାର ମାତ୍ର ବୋଲି ପ୍ରମାଣିତ ହେଉଅଛୁ । ଆତ୍ମର ଅହଂବୋଧାକାର ରୂପର ତ କାହିଁ କେତେବେଳେ ବିଲୟ ବା ପରିବର୍ତ୍ତନାଦି କିଛି ନାହିଁ । ଏହା ସଦାନନ୍ଦମୟ ସାକ୍ଷୀ ସର୍ବଦା ଅହଂବୋଧାକାର ରୂପେ ସ୍ଫୁରିତ ହେଉଅଛି । ଏହାର ସହିତ ଅନ୍ୱିତ ହେଲାବେଳେ ଅବସ୍ଥାତ୍ରୟ ତଦ୍ରୂପାକାରରେ ପ୍ରତିପନ୍ନ ହେଉଅଛନ୍ତି । ଆଉ ବ୍ୟତିରେକରେ ଏହି ଅହଂବୋଧ ରୂପ ପ୍ରସିଦ୍ଧ ରହି ଉକ୍ତ ଅବସ୍ଥାତ୍ରୟର ଉଦୟ-ଲୟାଦି ଦର୍ଶନ କରୁଅଛି; ଅର୍ଥାତ୍ ସ୍ଫୁରିତ ହେଉଅଛି ଯେ ଆମ୍ଭେ ଜାଗରଣ ଦେଖୁଥିଲୁଁ । ତା ପରେ ଯେ ଆମ୍ଭେ ସ୍ୱପ୍ନ ଦେଖିଲୁଁ ଏବଂ ଯେ ସୁଷୁପ୍ତି ଅନୁଭବ କଲୁଁ, ସେହି ଆମ୍ଭେ ଅବସ୍ଥାଦିଶୂନ୍ୟ ଏକ ଓ ଅବସ୍ଥାତ୍ରୟର ଦ୍ରଷ୍ଟା, ଅଥଚ ଦ୍ରଷ୍ଟା ଦୃଶ୍ୟର ପାର୍ଥକ୍ୟ ସିଦ୍ଧି ଥିବା ସ୍ଥଳେ ଆମ୍ଭେ ଉକ୍ତ ଅବସ୍ଥାତ୍ରୟରୁ ପୃଥକ୍ ଓ ସ୍ୱୟଂ ସିଦ୍ଧ ଅହଂ-ବୋଧାକାର ସ୍ୱରୂପ ମାତ୍ର । ଏହିରୂପେ ନିଜ ବୋଧରୂପ ଆତ୍ମାର ଉକ୍ତି ଏପରି ଯେ ସେ କହୁଅଛନ୍ତି । ସେ ଯେପରି ଅବସ୍ଥାତ୍ରୟର ଦ୍ରଷ୍ଟା, ସେହିପରି ଜାଗରଣାବସ୍ଥାସିଦ୍ଧ ସ୍ଥୂଳଦେହର ଓ ସ୍ୱପ୍ନଦଶାସିଦ୍ଧ ସୂକ୍ଷ୍ମଦେହର ଓ ସୁଷୁପ୍ତି ଅବସ୍ଥାସିଦ୍ଧ କାରଣ-ଦେହର ଅର୍ଥାତ୍ ଏହି ଦେହତ୍ରୟର ମଧ୍ୟ ଦ୍ରଷ୍ଟା । ସୁତରାଂ ଦେହତ୍ରୟରୁ ପୃଥକ୍ ଓ ମୁକ୍ତ । ଏହିରୂପେ ଆତ୍ମା ଦେହତ୍ରୟରୁ ଓ ଅବସ୍ଥାତ୍ରୟରୁ ପୃଥକ୍ ଓ ମୁକ୍ତ । ସର୍ବଦା ନିରବଚ୍ଛିନ୍ନ ଭାବେ ନିଜବୋଧରୂପ ଆତ୍ମାରୂପେ ସଂସ୍ଥିତ ରହି ଅବସ୍ଥାତ୍ରୟ ପ୍ରକଳ୍ପିତ ଦେହତ୍ରୟର ଲୀଳା ସନ୍ଧିରେ ଦର୍ଶନ କରୁଅଛନ୍ତି, ତାହାର ନାମ ତୁରୀୟ ପରମାଚିତ୍ ବା ବିଦ୍ୟାଶକ୍ତି । ଆତ୍ମାର ଏତଦ୍ରୂପ ଶୁଦ୍ଧ ଆତ୍ମସଂସ୍ଥ ଅବସ୍ଥାର ନାମ ତୁରୀୟାବସ୍ଥା । ମହାପ୍ରଭୋ ! ଭଗବାନ୍ ହରି କୋଟି ବ୍ରହ୍ମାଣ୍ଡନାଥ ! ଏହିଠାରେ ଅବସ୍ଥାଦିଶୂନ୍ୟ ସର୍ବଦ୍ୱନ୍ଦ୍ୱବର୍ଜ୍ଜିତ ଆତ୍ମାନନ୍ଦମୟ କୈବଲ୍ୟ ରସାସ୍ୱାଦନତତ୍ପର ଥାଇ ମହାଯୋଗନିଦ୍ରାରେ ଅବଧାନ କରି-ଥାଆନ୍ତି । ପରେ ପାଦସେବା କଲାବେଳେ ଟିକିଏ ଉଦ୍‌ବୋଧିତ ହୋଇ କଟାକ୍ଷପାତ କରିବାକୁ ଆଜ୍ଞା ହେବେ ।

## ୨୮ଶ ପାଠ—ଅବସ୍ଥାତ୍ରୟ ଓ ଦେହତ୍ରୟ ସହଯୋଗରୁ ଆତ୍ମାର ନିତ୍ୟବଦ୍ଧ ସ୍ୱରୂପ ବର୍ଣ୍ଣନ

ପୂର୍ବେ କୁହାଯାଇଅଛି, ଜାଗରଣ, ସ୍ୱପ୍ନ ଓ ସୁଷୁପ୍ତି ଅବସ୍ଥାତ୍ରୟ, ଏବଂ ତଦ୍ରୂପଦବସ୍ଥା ଦୃଷ୍ଟ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଦେହତ୍ରୟ ସଙ୍ଗେ ସଙ୍ଗେ ଆମ୍ଭେ ସର୍ବଦା ଲାଗି ରହିଥାଉଁ । ଏଥିରୁ ବିଯୁକ୍ତ ହେବା ବ୍ୟାବହାରିକ ଦୃଷ୍ଟିରେ କୌଣସି ସମୟରେ ଘଟୁନାହିଁ । ସୁତରାଂ ଆମ୍ଭେ ଏହି ଅବସ୍ଥାତ୍ରୟ ଓ ଦେହତ୍ରୟ ସହିତ ନିତ୍ୟବଦ୍ଧ, ଓ ଜ୍ଞାନ, ବିବେକ, ବୈରାଗ୍ୟ ଦ୍ୱାରା ଏଥିରୁ ମୁକ୍ତ ନ ହେବା ଯାଏ ଆତ୍ମର ଏହି ଦେହତ୍ରୟ ଓ ଅବସ୍ଥାତ୍ରୟ ସହିତ ନିତ୍ୟ

ସଂବନ୍ଧ । ଏଥିରୁ ମୁକ୍ତ ହେବା ନିମିତ୍ତ ଶାସ୍ତ୍ରୀୟ ଉପଦେଶାଦି ସେବନୀୟ, ପାଳନୀୟ, ଏକାନ୍ତ କରଣୀୟ, ଆଦରଣୀୟ ଏବଂ ମାନନୀୟ ଅଟେ ।

ଉକ୍ତ ଅବସ୍ଥାତ୍ରୟ ତ ପ୍ରକୃତିଦେବୀ—ଆଦ୍ୟା ସନାତନୀ ଭଗବତୀଙ୍କ ସ୍ୱକୀୟ ମାୟିକ ଲୀଳାରୁ ସଦା ସଂଘଟିତ ରହିଅଛି ଓ ହେଉଅଛି । ତେବେ ଏ ଅବସ୍ଥାତ୍ରୟ ଏହି ଜାଗରଣଦଶାର ପବିତ୍ର ମୁହୂର୍ତ୍ତରେ ଅଭ୍ୟାସ ବିଶେଷ ଦ୍ୱାରା ନିର୍ଣ୍ଣୟ କରି ଅନୁଭବ ସହକାରେ ଟିକିଏ ଦେଖିବାକୁ ଚେଷ୍ଟା କରାଯାଉ ।

ଜାଗରଣ ଦଶାରେ ଏହି ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଦୃଶ୍ୟ ଜାଗ୍ରତ ଭାବେ ସ୍ପଷ୍ଟ ଉପଲବ୍ଧି ହେଉଅଛି । ତେବେ ଜାଗରଣରେ ସ୍ୱପ୍ନାବସ୍ଥା ଓ ତତ୍ସମ୍ପାଦିତ ସୂକ୍ଷ୍ମଦେହର ଉପଲବ୍ଧି କିପରି ? ଏ ସମ୍ବନ୍ଧୀୟ ଅଭ୍ୟାସ ବା ଅନୁଷ୍ଠାନହିଁ କିପରି ?

## ୨୯ଶ ପାଠ—ଜାଗ୍ରତାବସ୍ଥାରେ ସୂକ୍ଷ୍ମ ଦେହର ଅସ୍ତିତ୍ୱ ଉପଲବ୍ଧି କରିବା ଅଭ୍ୟାସ

ନିରୁପଦ୍ରବ ସ୍ଥାନରେ ଓ ଅବକାଶ ମୁହୂର୍ତ୍ତରେ ଧୀର ସମାସନରେ ଉପବିଷ୍ଟ ହେବାକୁ ହେଉ । ତତ୍ପରେ କର୍ଣ୍ଣଦ୍ୱାର ବନ୍ଦ ରଖାଯାଉ । ଚକ୍ଷୁଦ୍ୱୟ ମଧ୍ୟ ବନ୍ଦ କରାଯାଉ, ବା ଅର୍ଦ୍ଧ ନିମିଳିତ କରି ରଖାଯାଉ, ଯେପରିକି ତଳ ବା ଉପରେ ଅଥବା କୌଣସି ଦିଗ୍-ବିଦିଗରେ ଦୃଷ୍ଟି ଚାଳିତ ନ ହେବାରୁ ବାହ୍ୟ ଦର୍ଶନ ଏକବାରେ ନ ଘଟି ବନ୍ଦ ହେବ । ନାସାବାୟୁର ଗମନାଗମନ ଓ ଶୃଙ୍ଖଳା ଯଥାଶକ୍ତି ସ୍ଥିର କରାଯାଉ । ଅଧର ଓଷ୍ଠଦ୍ୱୟ ଏକତ୍ର ଚାପି ବନ୍ଦ କରାଯାଉ । ଜିହ୍ୱାର ଚାଳନା ବନ୍ଦ କରି ସ୍ଥିର ରଖାଯାଉ । ଆଉ ଦୈହିକ ଚର୍ମାବରଣ ଶୀତ ଗ୍ରୀଷ୍ମାଦିରୁ ସୁରକ୍ଷିତ କରାଯାଉ । ଏ ଗଲା ପଞ୍ଚ ବାହ୍ୟ ଜ୍ଞାନେନ୍ଦ୍ରିୟ-ଦ୍ୱାର ନିରୋଧ । ପରେ ଏହିପରି ହସ୍ତପଦାଦି ପଞ୍ଚ କର୍ମେନ୍ଦ୍ରିୟକୁ ନିଜ ନିଜ କ୍ରିୟାରୁ ବନ୍ଦ କରି ନିଶ୍ଚଳ ରଖାଯାଉ । ପରେ ଏହିରୂପେ ସର୍ବ ବାହ୍ୟେନ୍ଦ୍ରିୟ ଦମନ ବା ନିଗ୍ରହ ହେଲା ଉତ୍ତାରୁ ଅନ୍ତଃକରଣକୁ ଦେଖ, ସେ ସଂଯତ ଓ ସୁସମାହିତାବସ୍ଥା ପ୍ରାପ୍ତ ହୋଇ-ଅଛି । ତଦବସ୍ଥାରେ ଦେଖ ଅନ୍ତଃକରଣ ତ ଅଛି । ସଙ୍ଗେ ସଙ୍ଗେ ଟିକିଏ ଦଶେନ୍ଦ୍ରିୟ ଓ ପ୍ରାଣକୁ ସଙ୍ଖୋଳି ନିଅ । ଏମାନଙ୍କର ଅସ୍ତିତ୍ୱ ଲୋପ ପାଇନାହିଁ । କାର୍ଯ୍ୟରୁ ଏହା ସ୍ଥିର କରାଯାଉ । ଉପରୋକ୍ତ ପ୍ରକାରେ ସଂଯତାବସ୍ଥାରେ ମନେ ମନେ ସ୍ମରଣକରି ଦେଖିଥାଅ ଯେପରି କିଛି ଦେଖୁଅଛୁ ବା କାହାକୁ ମନେ ପକାଇ ତା ସହିତ ଆଳାପ କରୁଅଛୁ ଅଥବା କିଛି ଦିଆ ନିଆ କରୁଅଛୁ । ବାହାରେ ସେ ସବୁ କିଛି ଅବଶ୍ୟ ହେଉନାହିଁ, ମାତ୍ର ତୁମ୍ଭେ ତାହାସବୁ ସ୍ମରଣାତ୍ମକ ଭାବରେ ଦେଖୁଅଛ, ଜାଣୁଅଛ ବା କରୁଅଛ ବୋଲି ମନେ କରାଯାଉଅଛି । ତଦବସ୍ଥାରେ ସ୍ଥୂଳଦେହ ଦିଶୁନାହିଁ, ମାତ୍ର ବୁଦ୍ଧି ବୃତ୍ତି ଅନ୍ତଃ-କରଣରେ ଆପଣାର ସ୍ଥୂଳଦେହାକାରିତ ଚିତ୍ର ରୂପେ ପରିଣତ ହୋଇ ଯେପରି ସ୍ଥୂଳକୁ ସେହିଠାରେ ଦେଖାଉଅଛି, ତଦ୍ରୂପ ସ୍ମରଣାତ୍ମକ ଇନ୍ଦ୍ରିୟଜ୍ଞାନାଦି ଓ କର୍ମାଦିରେ ମୁଁ ଜାଣୁଛି ବା କରୁଛି ବୋଲି ଅହଂକାର ବୃତ୍ତି ଅଭିମାନ କରୁଅଛି । ସେହି ସ୍ଥୂଳଦେହା-

କାରଣ ଶରୀରରେ ମୁଁ ଲକ୍ଷ୍ୟକୁ ଲକ୍ଷିତ କରୁଅଛୁ, ମନ ଯେପରି ସେହି କଳ୍ପିତ ଦେହରେ ଇନ୍ଦ୍ରିୟାଦିର ଜ୍ଞାନ ବା କ୍ରିୟା ଅର୍ଥାତ୍ ଦର୍ଶନ ବା କଥନାଦି ସମାପନ କରାଉଅଛୁ । ଚିତ୍ତବୃତ୍ତି ଏ ସବୁ ସ୍ମରଣର ସାହାଯ୍ୟ କରୁଅଛୁ । ସେଠାରେ ବାହ୍ୟ ଚକ୍ଷୁ ପ୍ରଭୃତି ନ ଥିଲେ ବା ବାହ୍ୟ କର୍ମେନ୍ଦ୍ରିୟ ଅର୍ଥାତ୍ ବାଗିନ୍ଦ୍ରିୟ ପ୍ରଭୃତି ନ ଥିଲେ ମଧ୍ୟ ସେହି ସେହି ଇନ୍ଦ୍ରିୟମାନେ ସୂକ୍ଷ୍ମାକାରରେ ଅନ୍ତଃକରଣରେ ନିହିତ ଥିବାରୁ ସତେ କି ଇନ୍ଦ୍ରିୟ ଦ୍ୱାରା ଦେଖିବା, କହିବାଦି କ୍ରିୟା ହୋଇ ପଡ଼ୁଅଛୁ, ଏହିପରି ଜଣାଯାଉଅଛୁ । ଅନ୍ତଃକରଣର ବୃତ୍ତିମାନେ ସୂକ୍ଷ୍ମେନ୍ଦ୍ରିୟ ସଙ୍ଗେ ସଙ୍ଗେ ମିଶି ଏ ସବୁ ଦର୍ଶନ, କଥନାଦି ସମାପନ କରୁଥିବା ବେଳେ ସେମାନଙ୍କର ଯେଉଁ କାଳ୍ପନିକ ସୂକ୍ଷ୍ମଚଳନା ହେଉଅଛୁ, ତାହା ପ୍ରାଣର ଧର୍ମ । ସୂକ୍ଷ୍ମ ପ୍ରାଣବାୟୁମାନେ ସେହିପରି ଚଳନା ସାଙ୍ଗ କରୁଅଛନ୍ତି । ଏହି ପର୍ଯ୍ୟାୟ କ୍ରମେ ଅନ୍ତଃକରଣରେ ସ୍ମରଣାତ୍ମକ ବା କାଳ୍ପନିକଭାବେ ସମୁଦାୟ କାର୍ଯ୍ୟ ହେଉଅଛୁ । ସ୍ପଷ୍ଟତଃ ଦେଖାଯାଉଅଛୁ, ହିମାଳୟ ପର୍ବତ ଦେଖିବା ଲୋକ ଏହିପରି ଅବସ୍ଥାରେ ବହୁଦୂରରେ ଥାଇ ମଧ୍ୟ ସ୍ମରଣାତ୍ମକଭାବେ ହିମାଳୟର ଆକାର ମନେ ମନେ ଉପଲବ୍ଧି କରୁଅଛୁ । ସେଠାରେ ଦେଖାଗଲା ଅନ୍ତଃକରଣର ବୃତ୍ତିଚତୁଷ୍ଟୟ । ସୂକ୍ଷ୍ମ ଦଶେନ୍ଦ୍ରିୟ ଓ ପ୍ରାଣାଦି ଏକତ୍ର ଥାଇ ଅନ୍ତରେ ଅନ୍ତରେ ସବୁ କରୁଅଛନ୍ତି । ଏହି କେତୋଟି ପଦାର୍ଥ ବା ଅଙ୍ଗ ସୂକ୍ଷ୍ମ-ଦେହର ଅବୟବ ଏବଂ ଏମାନଙ୍କର ସମଷ୍ଟିର ନାମ ସୂକ୍ଷ୍ମଦେହ । ବୁଝାଗଲା, ସୂକ୍ଷ୍ମଦେହ ନିଜେ ପ୍ରକାଶିତ ଥାଇ ତା'ଠାରେ ବାହ୍ୟଦେହ-ସଂସାରାକାରକୁ ମଧ୍ୟ ପ୍ରକାଶ କରିବାରେ ନିପୁଣ ଅଟେ । ଆଉ ସେହି ସୂକ୍ଷ୍ମଦେହର ସୂକ୍ଷ୍ମ ଓ ସ୍ଥୂଳ ଉଭୟମୟ ହେବାର ଗୁଣ ଅଛୁ ବୋଲି ମଧ୍ୟ ବୁଝାଗଲା, ଅର୍ଥାତ୍ ସେହି ସୂକ୍ଷ୍ମଦେହ ଅଭାବରେ ସ୍ଥୂଳ ପ୍ରପଞ୍ଚାଦିର ଅଭାବ । କିନ୍ତୁ ସ୍ଥୂଳ ପ୍ରପଞ୍ଚାଦିର ଅଭାବରେ ସେହି ସୂକ୍ଷ୍ମ ଦେହ ସ୍ଥୂଳ-ସୂକ୍ଷ୍ମ ଉଭୟମୟ ହୋଇ ପ୍ରକାଶିତ ହେବାର ଗୁଣ ବା ଧର୍ମ ତାହାର ଅଛୁ । ଏହିପରି ଦେଖ, ଏହି ସୂକ୍ଷ୍ମ ଦେହ କେବଳ ଯେ ଅବସ୍ଥାରେ ଜାଗରୂକ ଥାଏ, ତାହାର ନାମ ସ୍ୱପ୍ନାବସ୍ଥା—ଏ କଥା ପୂର୍ବେ କୁହାଯାଇଅଛୁ । ବର୍ତ୍ତମାନ ଦେଖାଗଲା ଜାଗରଣାବସ୍ଥାରେ ମଧ୍ୟ ଉପରୋକ୍ତମତେ ଅଭ୍ୟାସ ବିଶେଷଦ୍ୱାରା ସେହି ସ୍ୱପ୍ନାବସ୍ଥାର ଓ ସୂକ୍ଷ୍ମ ଶରୀରର ଦର୍ଶନ ନିରୂପଣ କରାଗଲା ।

ବାହ୍ୟେନ୍ଦ୍ରିୟାଦି ଅଭିଭୂତ ହୋଇ ବିଶ୍ରାମଲାଭ କରିବାକୁ ନିଦ୍ରା ଗଲା ମାତ୍ର ଏହି ସୂକ୍ଷ୍ମ ଶରୀର ଉପରୋକ୍ତମତେ ସ୍ମରଣାତ୍ମକ ବା କଳ୍ପନାତ୍ମକ ଅନୁଭୂତ ବିଷୟାଦିକୁ ବାହ୍ୟେନ୍ଦ୍ରିୟାଦି ସାକ୍ଷୀମାନଙ୍କ ଅଭାବରେ ଏକତରଫାରେ ସତ୍ୟ ବୋଲି ପ୍ରମାଣ କରାଇ ଦେଉଅଛୁ । ଏହାହିଁ ସୂକ୍ଷ୍ମ-ଶରୀରର ବିଶେଷତ୍ୱ । ଏହି ବିଶେଷତ୍ୱର ସ୍ୱପ୍ନକୁ ତଦବସ୍ଥାରେ ସତ୍ୟ ବୋଲି ବିଚାରିବାର ଏକମାତ୍ର କାରଣ ।

## ୩୦ଶ ପାଠ—ଜାଗରଣ ବା ସ୍ୱପ୍ନରେ ପୂର୍ବାପର ଦୁଇଟି ଜ୍ଞାନର ମଧ୍ୟସନ୍ଧିରେ ସୁଷୁପ୍ତିର ସ୍ଥାନ ନିର୍ଣ୍ଣୟ

ଉପରୋକ୍ତମତେ ସଂଯତ ଓ ସୁସମାହିତାବସ୍ଥାରେ ବିଚାରି ଦେଖ, ବିଷୟଜ୍ଞାନ ଗୋଟିକ ପରେ ଆଉ ଗୋଟିଏ ହେଉଅଛୁ । ଏ ବିଷୟଜ୍ଞାନ (ଅର୍ଥାତ୍ ଇନ୍ଦ୍ରିୟଜନିତ

ଜ୍ଞାନ) ର ପ୍ରବାହ ସ୍ୱପ୍ନ ଜାଗରଣାଦ ଅବସ୍ଥାରେ ଅନବରତ ବହୁଅଛି । ଯେତେବେଳେ ଗୋଟିଏ ଜ୍ଞାନ ଉଦୟ ହୋଇ ବିଲୟ ହେଲା, ତା ପରବର୍ତ୍ତୀଟିର ଉଦୟ ହୋଇନାହିଁ; ଏହି ମଧ୍ୟସନ୍ଧି ମୁହୂର୍ତ୍ତ ନଗଣ୍ୟ କ୍ଷୁଦ୍ର କାଳାବୟବଟିକକୁ ଲକ୍ଷ୍ୟକର । ଏହାହିଁ ସୁଷୁପ୍ତି-ଲକ୍ଷଣ-ବିଶିଷ୍ଟ କାଳ, ଅର୍ଥାତ୍ ସୁଷୁପ୍ତି-ସଂଜ୍ଞା-ବିଶିଷ୍ଟ, ଏଥିରେ ବିଷୟଜ୍ଞାନର ଅଭାବ ଦର୍ଶନ ହେଉଅଛି; ମାତ୍ର ପରବର୍ତ୍ତୀ ବିଷୟଜ୍ଞାନର ସଂସ୍କାର ମାତ୍ର ଏଥିରେ ଅବ୍ୟକ୍ତ ଭାବେ କେବଳ ନିହିତ ଅଛି । ସେହି ସଂସ୍କାର ପରବର୍ତ୍ତୀ ବିଷୟକୁ ପ୍ରକାଶ କରୁଅଛି । ଯେତେବେଳେ ସୂକ୍ଷ୍ମ ଦେହସ୍ଥ ସୂକ୍ଷ୍ମେନ୍ଦ୍ରିୟମାନେ ଅଭିଭୂତ ହୋଇ ବିଶ୍ରାମ କରିବାକୁ ନିଦ୍ରା ଯାଆନ୍ତି, ସେତେବେଳେ ଉକ୍ତ ସନ୍ଧିକାଳର କଳେବର ଟିକିଏ ବଢ଼ିଯାଏ, ସୁତରାଂ ତାହା ସୁଷୁପ୍ତି ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ପଇସାଏ ପଇସାଏ ହୋଇ ଗୋଟିଏ ଟଙ୍କା, ମାତ୍ର ସମସ୍ତେ ତ ସେହି ଧନପଦବାଚ୍ୟ ।

## ୩୧ଶ ପାଠ—ମନୁଷ୍ୟର ଆୟୁସୂତ୍ର

କ୍ଷୁଦ୍ର ଦିବାରାତ୍ର ପରବର୍ତ୍ତିମାୟଭାବେ ଉଦୟ ବିଲୟ ହୋଇ ଯୁଗକଳ୍ପର ସୃଷ୍ଟି ହେଲା ପରି ଉପରୋକ୍ତ ଅବସ୍ଥାତ୍ରୟ ପରବର୍ତ୍ତିମାୟଭାବେ ଉଦିତ ବିଲୟ ହୋଇ ଜୀବନର ଆୟୁକୁ ପାଞ୍ଚ ପଚିଶ ବା ଶତବର୍ଷାତ୍ମକ ସଂଜ୍ଞା ପ୍ରଦାନ କରି କ୍ରୀଡ଼ା କରୁଅଛନ୍ତି । ଏହି ଅବସ୍ଥା-ତ୍ରୟ ନିର୍ଦ୍ଦିଷ୍ଟ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଦେହତ୍ରୟର ସ୍ୱାମୀ ବା ଦ୍ରଷ୍ଟା ଅଥବା ଅଧିକାରୀ; କମ୍ବା ଭୋକ୍ତା ରୂପରେ ଜୀବାତ୍ମା ଏହି ଦେହରେ ତଦାତ୍ମାଧ୍ୟାସ-ବଶତଃ ଦେହାକାରରେ ଆପେ ପରିଣତ ହେଲପ୍ରାୟ ଆପଣାକୁ ଜ୍ଞାନ କରି ସ୍ୱୟଂ ଜ୍ଞାନାକାରଦେହୀ ଜଡ଼ାକାର ଦେହ ରୂପରେ ସଂସାରରେ ପରିଚିତ ହୋଇ ସଂସାରୀ ପଦବାଚ୍ୟ ହୋଇଅଛି । ଏତତ୍-କ୍ରମେ ଅପାର ସୁଖ ଦୁଃଖ ମୋହମୟ ଭାବ ଅନୁଭବ କରି ସୁଖୀ, ଦୁଃଖୀ ଓ ମୁଗ୍‌ଧ ହୋଇ ଦୁରତିକ୍ରମଣୀୟ ସଂସାରପଥରେ ସର୍ବଦା ଭ୍ରମଣ କରୁଅଛି । ଜ୍ଞାନହୀନ ଏଥିରୁ ଉପଶମ ଲାଭ କରିବା ଭିନ୍ନ ଉପାୟାନ୍ତର କିଛି ନାହିଁ ।

ଏହିପରି ଜ୍ଞାନ କି ପଦାର୍ଥ ଓ ତାହା କି ପ୍ରକାରେ ଲାଭ କରାଯିବ, ଏ ସମ୍ବନ୍ଧରେ ମନୁଷ୍ୟର ଶ୍ରଦ୍ଧା ଜନ୍ମିବା ଏକାନ୍ତ ବାଞ୍ଛନୀୟ । ସେ ନିମିତ୍ତ ପୂଜ୍ୟ ପଦରେଣୁ ମହର୍ଷିମାନେ ନାନାପ୍ରକାର ପୁରାଣାଦି, ଦର୍ଶନଶାସ୍ତ୍ରାଦି ଓ ଯୋଗଶାସ୍ତ୍ରାଦି କେତେ କେତେ ଗ୍ରନ୍ଥ ମନୁଷ୍ୟବର୍ଗର ଉପକାର ଲାଗି ରଚନା କରି ରଖିଯାଇଅଛନ୍ତି ତହିଁର ସଂଖ୍ୟା ନାହିଁ । ଆମ୍ଭମାନଙ୍କର ନମ୍ର ଓ ଶାନ୍ତ ସଂଯତ ଭାବାପନ୍ନ ହୋଇ ଗର୍ବମୋହାଡ଼ମ୍ବରାଦି ପରିତ୍ୟାଗ ପୂର୍ବକ ଯଥାସାଧ୍ୟ ସେ ସବୁର କିଛି କିଛି ଚର୍ଚ୍ଚା କରି ବୁଝିବା ଉଚିତ । ଆଜକାଲି ଶିକ୍ଷାରେ ବୃଥା କାଳହରଣ କରି ମନୁଷ୍ୟ ମୋହ, ଗର୍ବ, ବର୍ତ୍ତମାନ ଓ ବିଳାସାଦି ନାରକୀୟ ଗୁଣସମୂହ ସଂଗ୍ରହ କରି ଆତ୍ମତତ୍ତ୍ୱ ଭୁଲିଯାଉଅଛି । ଏହା ଯୁଗଧର୍ମ । ପରେ ଏଥିର ଆଲୋଚନା ହେବ ।

## ୩୨ଶ ପାଠ—ଆଧ୍ୟାତ୍ମିକ ଜ୍ଞାନ-ଚକ୍ଷୁରେ ଆକାଶାଦିର ବିଶାଳତ୍ୱ ଦର୍ଶନ

ବର୍ତ୍ତମାନ ଦେଖାଯାଉଅଛି ଯେ ଏ ପର୍ଯ୍ୟନ୍ତ ଆଲୋଚନା କରି ବୁଝାଗଲା, ମାନବୀୟ ଆତ୍ମାକୁ ଭ୍ରମ ପ୍ରମାଦାଦି କୌଣସି ଅଲୌକିକ କାରଣ ଭୁଲାଇ ରଖିଥିବାରୁ ସେ ନିଜ ତତ୍ତ୍ୱ ଜାଣିବାକୁ ଅକ୍ଷମ ହୋଇ ଦେହମାତ୍ରରେ ଆବଦ୍ଧ ଅଛି । ପୂର୍ବେ ବୁଝାଯାଇଅଛି ଯେ ପିଣ୍ଡ ଓ ବ୍ରହ୍ମାଣ୍ଡାତ୍ମକ ପାଞ୍ଚଭୌତିକ ଜଡ଼ ସମଷ୍ଟିର ଦୃଶ୍ୟ ଯେତେ ବିଶାଳ ହେଲେ ସୁଦ୍ଧା ତାହା ଭୌତିକ ମହଦାକାଶର ଆକାର ତୁଳନାରେ ନଗଣ୍ୟ ପରମାଣୁଠାରୁ କ୍ଷୁଦ୍ର । ତେବେ ଏହି ବିରାଟ ବିଶ୍ୱପରି ଅସଂଖ୍ୟ ଅସଂଖ୍ୟ ବ୍ରହ୍ମାଣ୍ଡ ସେହି ମହଦାକାଶଗର୍ଭରେ ଅତି ନଗଣ୍ୟ ପରିମିତ ସ୍ଥାନ ଅଧିକାର କରି ରହିପାରିବେ, ତାହା ସ୍ପଷ୍ଟ ଜଣାଯାଉଅଛି । ଏ ବ୍ରହ୍ମାଣ୍ଡ ଯେତେ ବଡ଼ ହେଉ ବା ଏହାର ସଂଖ୍ୟା ଯେତେ ଅଧିକ ହେଉ, ଏ ସମସ୍ତ ମିଶି ସସୀମ ସଂଜ୍ଞାର ଅନ୍ତର୍ଗତ । ଆଉ ମହଦାକାଶ ଅସୀମ, ଆଦିଅନ୍ତବିରହିତ ବୋଲି ସସୀମ ବସ୍ତୁ ଯେତେ ବଡ ହେଉ ନା କାହିଁକି, ତାହା ଅସୀମ ବସ୍ତୁର କୌଣସି ଅଂଶାଂଶ ହୋଇପାରିବ ନାହିଁ । ତାହାହେଲେ ଅନୁପାତ ହିସାବରେ ଅସୀମ ମହଦାକାଶକୁ କୌଣସି ପ୍ରକାରର ସସୀମ ସଂଜ୍ଞା ଭିତରକୁ ଟାଣିବାକୁ ହେବ । ମାତ୍ର ଆକାଶର ସ୍ୱଭାବ ଆଲୋଚନା କଲେ ତାହା ଅସୀମ, କଦାଚ ସସୀମ ହୋଇପାରିବ ନାହିଁ ।

ତେବେ ଏପରି ଅସୀମର କଳ୍ପନା ଯେତେବେଳେ ମନ ଭିତରେ ସ୍ଥାନ ପାଉଅଛି, ମନ ଯେତେବେଳେ କେତେ ବଡ଼, ଏ କଥା କାହିଁରେ ଠିକ୍ ସ୍ଥାନ ପାଇବ ? ମନ ସ୍ଥାନ ପାଇଅଛି ଅନ୍ତଃକରଣରେ, ତେବେ ଅନ୍ତଃକରଣ ଭୌତିକାକାର ତୁଳନାରେ ଯେ କେତେ ବଡ଼, ତାହା ଭାବିଲାବେଳକୁ ଏବଂ ସେହି ଅନ୍ତଃକରଣ ଆତ୍ମାର ଅଧିକାରଭୁକ୍ତ ପଦାର୍ଥ, ଚିନ୍ତା କଲାବେଳକୁ ବଡ଼ ବିସ୍ମୟଜନକ ଭାବ ଉପସ୍ଥିତ ହୁଏ । ପୁନର୍ବି ସେହି ଅନ୍ତଃକରଣର ସ୍ୱାମୀ ଜୀବାତ୍ମା ଆମ୍ଭେ, ଅଥଚ ମୂଢ଼ ଆମ୍ଭେ ଦେହାକାର ସୀମାରେ ଆବଦ୍ଧ !!!

ଅନ୍ତଃକରଣସମନ୍ୱିତ ଲିଙ୍ଗ ବା ସୂକ୍ଷ୍ମ ଶରୀରାଦିରୂପ ଉପାଧି ଯାହାର ଏବଂ ଏଇ ଏଇ ଉପାଧିରେ ଯେଉଁ ଆତ୍ମା ଉପହିତ, ସେହି ଆତ୍ମା ଜୀବାତ୍ମା ନାମରେ ଅଭିହିତ ଅଟନ୍ତି । ଦେଖାଯାଉଅଛି, ସଂସାରରେ ଅସଂଖ୍ୟ ମନୁଷ୍ୟ ତ ଅଛନ୍ତି । ଏପରି ପଶୁ, ପକ୍ଷୀ, କୀଟ ପତଙ୍ଗାଦି ଚତୁର୍ବିଧ ଅର୍ଥାତ୍ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍ଭିଜ୍ଜାଦି ବହୁବିଧ ଅସଂଖ୍ୟ ଅସଂଖ୍ୟ ପ୍ରାଣୀରେ ଭୌତିକ ମହଦାକାଶର କଳେବର ପରିପୂର୍ଣ୍ଣ ଓ ସୁଶୋଭିତ ହୋଇ ରହିଅଛି । ଏହି ପ୍ରାଣିବର୍ଗ ସହ ଭୌତିକ ମହଦାକାଶର ଆକାରକୁ ଦେଖ, ଏ କେତେ ସୁନ୍ଦରଭାବେ ଅନନ୍ତମୟ ମହିମାମୟ ମହାପୁରୁଷରେ ଗୁଣକୀର୍ତ୍ତନ ଓ ସ୍ମରଣ କରାଇ ଦେଉଅଛି । ଏହିରୂପେ ଅସଂଖ୍ୟ ଅସଂଖ୍ୟ ପ୍ରାଣିସନ୍ଦର୍ଶନରେ ଅସଂଖ୍ୟ

ଅସଂଖ୍ୟ ଅନ୍ତଃକରଣର ଅସ୍ତିତ୍ୱ ପ୍ରମାଣ କରାଯାଉଅଛି । ସମସ୍ତ ପ୍ରାଣିମାତ୍ରଇ ଅନ୍ତଃକରଣ-ବିଶିଷ୍ଟ ଜୀବାତ୍ମା ଉପାଧିର ଅଧିକାରୀ, ଏ ବିଷୟ ପରେ ବିବେଚ୍ୟ ।

ଉଲ୍ଲିଖିତ ବର୍ଣ୍ଣନାକୁ କାଳ୍ପନିକ ମନେ କରିବା ମହାପାପ । ଏହା ବାସ୍ତବରେ ଦାର୍ଶନିକ ତତ୍ତ୍ୱ । ଉଦାହରଣ ସ୍ୱରୂପ ଦେଖାଯାଉ ।

ଜଣେ ମୂର୍ଖକୁ ପଚାରିବା, ବାବାରେ କହିଲୁ, ତୁ ସବୁଠାରୁ ବଡ଼ କରି କେଉଁ ପଦାର୍ଥକୁ ଜାଣୁ ? ହୁଏତ ସେ କହିବ, ମୁଁ ଦେଖୁଛି ଏ ପୃଥିବୀ ସବୁଠାରୁ ବଡ଼ । କାରଣ ଏ ସର୍ବାଧାର, ଅଥଚ କେତେବର୍ଷ ଗଲେ ଏହାର ସୀମା ପାଇବା କଠିନ । ଏ ସ୍ଥଳେ ଭୌତିକ ମହାକାଶ ଭୌତିକ ସୃଷ୍ଟିରେ ସବୁଠାରୁ ବଡ଼ ବୋଲି ସେ କହିବା କଠିନ, ଅଥଚ ମହାକାଶ ତା ପାଖେ ପାଖେ ଯେପରି ବାହ୍ୟାନ୍ତର ପୂର୍ଣ୍ଣ ଭେଦକରି ରହିଅଛି, ସେହିପରି ସର୍ବ ଜଗତକୁ ଭେଦ ପୂର୍ଣ୍ଣ କରି ସର୍ବଦାଗରେ ଅନାଦି ଅସୀମ କଳେବର ବିସ୍ତାର କରି ଅନନ୍ତାଦି ବୃହତ୍ତମ ଔପାଧିକ ସଂଜ୍ଞାକୁ ସାର୍ଥକ କରୁଅଛି ।

ଆହୁରି ଦେଖାଯାଉ । ଗୋଟିଏ ମାଟିଘଟ ଜଣକ ଆଗରେ ଥୋଇବା, ପଚାରିବା—ତୁ କଣ ଦେଖୁଚୁ ? ସେ ଘଟାକୃଷ୍ଟ-ଦୃଷ୍ଟି-ସମ୍ପନ୍ନ ହୋଇ ଜାଣିବ—ଆଉ କହିବ ଯେ ସେ ଘଟ ଦେଖୁଅଛି । ପ୍ରକୃତପକ୍ଷେ ବିଚାର କରିବାକୁ ଗଲେ ମହାକାଶ ତନ୍ମିଶ୍ରିତ ବାୟୁମଣ୍ଡଳ ଓ ଏ ଉଭୟ ମିଶ୍ରିତ ଆଲୋକ ବା ସୂର୍ଯ୍ୟକିରଣ ଏକତ୍ର ମିଶି ଅଭେଦଭାବରେ ଏକ ମହାକାଶମୟ ବସ୍ତୁ ହୋଇ ରହିଅଛନ୍ତି । ଆଉ ତନ୍ମଧ୍ୟରେ ମୃଦାକାର ଜଗନ୍ମଣ୍ଡଳ, ଏପରି ଏହି ଚାରି ବିରାଟ ମହତ୍‌ବସ୍ତୁ-ମିଶ୍ରିତ ଏକ ମହାଦୃଶ୍ୟ-ମଧ୍ୟରେ ଯେ ଘଟ ଅଛି, ସେହି ଲୋକ ଏହା ଦେଖି ଦେଖି ଜାଣି ନ ପାରି ଏହି ତତ୍ତ୍ୱର ଅଜ୍ଞତା ଏବଂ ଘଟାକୃଷ୍ଟ-ଦୃଷ୍ଟି ହେତୁ କହିଲା, ସେ ଖାଲି ଘଟ ଦେଖୁଅଛି । ମାତ୍ର ଏଇତକ ବୁଝିଲାପରେ ସେ ଟିକିଏ ବୁଝିବା ଲୋକ ହୋଇଥିଲେ ଜାଣିପାରିବ ଯେ ଉପରୋକ୍ତମତେ ମହାକାଶାଦି ଚାରିଗୋଟି ବିଶାଳ ବସ୍ତୁର ସମିଶ୍ରଣ ସହିତ ସେ ଘଟଟି ଦେଖୁଅଛି । ଠିକ୍ ଏହିପରି ବ୍ରହ୍ମ-ମହଦାକାଶ, ଚିନ୍ମୟ ମହଦାକାଶ, ବିଜ୍ଞାନାକାଶ ବା ଅନ୍ତରାକାଶ, ଅନ୍ତଃକରଣ, ମନ ଓ ଭୌତିକ ମହଦାକାଶ ଏକତ୍ର ଏକ ସମୟରେ ଏକାଧାରରେ ମିଶ୍ରିତ ଥାଇ ଏକ ବିଚିତ୍ରମୟ ମହତବସ୍ତୁ ଆକାରରେ ବିରାଜମାନ ଥିବାରୁ ତନ୍ମଧ୍ୟରେ ମହା ବାୟୁମଣ୍ଡଳ, ତୈଜସ୍-କିରଣମଣ୍ଡଳ ଏବଂ ପରିଦୃଶ୍ୟମାନ ସ୍ଥୂଳ ଭୌତିକ ଜଗନ୍ମଣ୍ଡଳ—ଏ ସମସ୍ତ ଏକତ୍ର ମିଶି ଏହି ସମିଶ୍ରିତ ଅଥଚ ଅଭେଦ ଏକାକାରବିଶିଷ୍ଟ ବିଚିତ୍ର ମହାଦୃଶ୍ୟ ମଧ୍ୟରେ ଦ୍ରଷ୍ଟା ପୁରୁଷ ଦେହାତ୍ମ-ଭ୍ରମ-ଦୃଷ୍ଟିରେ କେବଳ ଦେହରୂପ-ଘଟ-ଦର୍ଶନ କରୁଅଛି ବୋଲି ଜାଣୁଛି ଏବଂ କହୁଅଛି । କିନ୍ତୁ ଜ୍ଞାନୋଦ୍‌ବୋଧିତ ହେଲେ ସେ କହିବ, ବ୍ରହ୍ମ ମହଦାକାଶଠାରୁ ଆରମ୍ଭ କରି ଭୌତିକ ଜଗନ୍ମଣ୍ଡଳ ସହିତ ଏହି ସ୍ଥୂଳଦେହକୁ ଦେଖୁଅଛି ।

ଏ ସ୍ଥଳରେ ଘଟାକୃଷ୍ଟ-ଦୃଷ୍ଟି-ଲୋକ ସବୁ ସ୍ଥାନ ଖାଲି ଘଟ ଦେଖିବାର ଯେପରି ଜାଣିଲା ଓ କହିଲା, ଅବିକଳ ସେହିପରି ଦେହାତ୍ମଭ୍ରମାବଦ୍ଧ ଦ୍ରଷ୍ଟା-ପୁରୁଷ ତଦ୍ରୂପ ଦେହାତ୍ମଭ୍ରମାବଦ୍ଧ ଦୃଷ୍ଟିବଳରେ ବ୍ରହ୍ମ-ମହଦାକାଶଠାରୁ ଆରମ୍ଭ କରି ଜଗନ୍ମଣ୍ଡଳାଦି ସମସ୍ତ ମହାଦୃଶ୍ୟର ସମଷ୍ଟିଭୂତ ଦୃଶ୍ୟକୁ ପରିତ୍ୟାଗ କରି କେବଳ ମୁଁ ଏହି ଦେହକୁ ଦେଖୁଅଛି ଓ ଜାଣୁଅଛି, ଅତଏବ ଜ୍ଞାନଲାଭ ସକାଶେ ପୂଜ୍ୟପାଦରେଣୁ ମହର୍ଷିମାନଙ୍କ ଅନୁଗ୍ରହକୃତ ଶାସ୍ତ୍ର, ପୁରାଣ ଓ ଦର୍ଶନାଦିର ଆଲୋଚନା, ସତ୍ସଙ୍ଗ ସେବା କରିବା, ଏବଂ ସାତ୍ତ୍ୱିକଭାବାପନ୍ନ ହୃଦୟରେ, ରାଗ ମୋହ ଆଡ଼ମ୍ବର ଓ ବିଳାସ, ଏବଂ ବିଷୟଲାମ୍ପଟ୍ୟ ପରିତ୍ୟାଗ କରି, ଶାନ୍ତ ସଂଯତଭାବରେ ଅବସ୍ଥାନ କରି ସର୍ବଦା ତତ୍ତ୍ୱ ଚିନ୍ତାକଲେ ବହୁ ଆୟାସରେ ବା ଭଗବତ୍ କୃପାରୁ ଅତି ସହଜରେ ଜ୍ଞାନଲାଭ ସମ୍ଭବ ହୁଏ। ଖାଲି ଦେଖାଣିରେ ମାତିଲେ କିଛି ନୁହେ।

ପୂର୍ବେ ଉକ୍ତ ହୋଇଅଛି ଯେ ଅସଂଖ୍ୟ ଅସଂଖ୍ୟ ପ୍ରାଣୀଦର୍ଶନରେ ଅନ୍ତଃକରଣ ସଂଖ୍ୟା ଅସଂଖ୍ୟ। ଏ ସମୁଦାୟ ଅନ୍ତଃକରଣର ଆଧାରଭୂତ ବସ୍ତୁ କଅଣ ? ପୂର୍ବେ ନିରୂପଣ କରାଯାଇଅଛି ଯେ ଅନ୍ତଃକରଣ ଅବିଦ୍ୟାରେ ଲୀନ ହୁଏ। ତେଣୁ ସେହି ଅବିଦ୍ୟା ତାହାର ଆଧାର। ସେହି ଅବିଦ୍ୟାର ନାମାନ୍ତର ଅନ୍ତରାକାଶ ବା ବିଜ୍ଞାନାକାଶ।

ବର୍ତ୍ତମାନ ଭୌତିକ ଜଗଦାକାର ଦୃଶ୍ୟରୁ ନିବାଣ ହୋଇ ଜ୍ଞାନାକାରିତ ବସ୍ତୁ ଓ ତାହାର ଆଧାର ନିରୂପ ବିଜ୍ଞାନାକାଶ ବା ଅନ୍ତରାକାଶ ଆଡ଼କୁ ଲକ୍ଷ୍ୟ ରଖିବାକୁ ହେବ। ଜଡ଼ାକାର ବସ୍ତୁ ଓ ଜ୍ଞାନାକାର ବସ୍ତୁର ସ୍ୱରୂପ ବା ସଂଜ୍ଞା ହୃଦୟଙ୍ଗମ କରିବାକୁ ହେବ।

## ୩୩ଶ ପାଠ—ଜଡ଼ାତ୍ମକ ବିଶାଳତମ ବସ୍ତୁଠାରୁ ଜ୍ଞାନସଂଜ୍ଞକ ମନ ପ୍ରଭୃତି ବୃହତ୍, ଓ ଜ୍ଞାନସଂଜ୍ଞକ ସାନ ବଡ଼ ବସ୍ତୁମାନଙ୍କ ମଧ୍ୟରେ ବ୍ରହ୍ମ ପଦାର୍ଥ ନିରତିଶୟ ବୃହତ୍ତମ।

ଯାହା ଜଡ଼ ତାହା ଜ୍ଞେୟ। ଯାହାଦ୍ୱାରା ତାହା ଜଣାଯାଏ, ତାହା ଜ୍ଞାନସଂଜ୍ଞକ ବସ୍ତୁ। ଜ୍ଞାନାକାର ପଦାର୍ଥ ମଧ୍ୟରେ ଯେଉଁ ଜ୍ଞାନାକାରିତ ପଦାର୍ଥ ଅନ୍ୟ ଯେଉଁ ଜ୍ଞାନାତ୍ମକ ବସ୍ତୁର ଉଦୟ ବିଲୟ ସ୍ଥାନ ଓ ତାହାର ମୂଳ ଭୂମିକା ସ୍ୱରୂପ, ସେହି ମୂଳ ଜ୍ଞାନାକାରିତ ବସ୍ତୁ ତଦ୍ରୂପ ଉଦିତ ଓ ବିଲୁପ୍ତ ଜ୍ଞାନାତ୍ମକ ବସ୍ତୁଠାରୁ ବଡ଼। ଜ୍ଞାନସଂଜ୍ଞକ ବସ୍ତୁମାନଙ୍କର ବଡ଼ ସାନ ସଂଜ୍ଞା ଏହି ହିସାବରେ ନିରୂପିତ ହୁଏ। ଜଡ଼ବସ୍ତୁ ପରି ଆକାର ଅନୁସାରେ ବଡ଼ ସାନ ସଂଜ୍ଞା ଜ୍ଞାନବସ୍ତୁର ହୁଏ ନାହିଁ ବା ହୋଇ ନ ପାରେ। ଯେହେତୁ ଜଡ଼ବସ୍ତୁ ଚକ୍ଷୁଗ୍ରହଣୀୟ ଆକାରବାନ୍, ଆଉ ଜ୍ଞାନବସ୍ତୁ ଚକ୍ଷୁଗ୍ରହଣୀୟ ନୁହେ, ବରଂ ତାହା ଚକ୍ଷୁର ପ୍ରକାଶକ ଏବଂ ଅନୁମାନ ବା ବିବେକ ଦ୍ୱାରା ଗ୍ରାହ୍ୟ; ଏହି ଆଦର୍ଶର ଅନୁକରଣରେ ମନରୁ ଅନ୍ତଃକରଣ ବଡ଼ ଓ ଅନ୍ତଃକରଣରୁ ଅବିଦ୍ୟା

ବଡ଼ । ପୁନର୍ପି ଅବିଦ୍ୟାରୁ ବିଦ୍ୟାରୂପ ଉପାଧି ବଡ଼, କାରଣ ଏହି ବିଦ୍ୟାରେ ଅବିଦ୍ୟା ଲୀନ ହୁଏ । ଏହି ବିଦ୍ୟା ଉପାଧିର ନାମ ଚିତ୍, ଏହିରୂପେ ଚିନ୍ମୟ ମହଦାକାଶ ସବୁଠାରୁ ବଡ଼ । ଚିତ୍‌ଶକ୍ତି ପରମବ୍ରହ୍ମଙ୍କ ଆଶ୍ରୟରେ ଥିବାରୁ ତଦାଶ୍ରୟ ଆଶ୍ରୟୀଭୂତ ଅଥଚ ତଦାଧାର ପରଂବ୍ରହ୍ମାକାଶ ସବୁଠାରୁ ମହତୋ ମହୀୟାନ୍ । ପରଂ ବ୍ରହ୍ମଣେ ନମୋନମଃ ।

## ୩୪ଶ ପାଠ—ବୃହତ୍ତମତ୍ୱର ତୁଳନା

ମହଦାକାଶଠାରୁ ଆରମ୍ଭ କରି ପରଂବ୍ରହ୍ମାକାଶ ପର୍ଯ୍ୟନ୍ତ ବୃହତ୍ତମତ୍ୱର ମହତ୍ତ୍ୱ ଉପଲବ୍ଧି କରିବା ଅଜ୍ଞତାର କାର୍ଯ୍ୟ ନୁହେ । ମହଦାକାଶକୁ ମନ ଦେଖୁଅଛି । ସୁତରାଂ ସେ ମନର ଗର୍ଭରେ । ମନକୁ ଅନ୍ତଃକରଣ ଏକ ଅଙ୍ଗ ରୂପେ ଗ୍ରହଣ କରିଅଛି, ସୁତରାଂ ମନଠାରୁ ଅନ୍ତଃକରଣ ବଡ଼ । ଅନ୍ତଃକରଣ ଅବିଦ୍ୟୋପାଧିରୁ ଉତ୍ପନ୍ନ ; ତହିଁରେ ପରିସ୍ଥିତ ଓ ତହିଁରେ ବିଲୁପ୍ତ ହୁଏ । ଅତଏବ ତା'ଠାରୁ ଅବିଦ୍ୟୋପାଧି ବା ଅନ୍ତରୀକାଶ ଅର୍ଥାତ୍ ବିଜ୍ଞାନାକାଶ ବଡ଼ । ଏହି ଅବିଦ୍ୟୋପାଧି ବିଦ୍ୟାମୟ ବା ଚିନ୍ମୟୋପାଧିରେ ଲୀନ ହୁଏ । ଅତଏବ ତା'ଠାରୁ ଚିଦାକାଶ ବଡ଼ । ଏହି ଚିଦାକାଶ ପରଂବ୍ରହ୍ମାକାଶରେ ପ୍ରକାଶିତ ଓ ସ୍ଥିତ ଅଟେ । ଏ ହେତୁ ପରଂବ୍ରହ୍ମ ଏକମାତ୍ର ସର୍ବପ୍ରକାର ବୃହଦନ୍ମୟ ବୋଲି ଅବଧାରିତ ।

## ୩୫ଶ ପାଠ—ପରଂବ୍ରହ୍ମଗର୍ଭରେ କ୍ଷୁଦ୍ର ବୃହତ୍ତମାଦି ସବୁଇ ନଗଣ୍ୟ ।

ଆକାଶର ଏକାଂଶରେ ବିଜୁଳି ଖେଳିଲାପରି ପରଂବ୍ରହ୍ମଙ୍କର ଏକ ଦେଶରେ ଏହି ଚିତ୍‌ଶକ୍ତି ବା ଚିଦାକାଶର ବିକାଶ । ଚିଦାକାଶର ଏକ ଦେଶରେ ଅବିଦ୍ୟା ବା ବିଜ୍ଞାନାକାଶର ସ୍ଥାନ । ଏହି ବିଜ୍ଞାନାକାଶର ଏକ ନଗଣ୍ୟ କାଳ୍ପନିକ ଅଂଶରେ ଅନ୍ତଃକରଣର ସ୍ଥାନ । ଅନ୍ତଃକରଣର ଏକାଂଶରେ ମନର, ମନର ଏକାଂଶରେ ଭୌତିକ ମହଦାକାଶର, ମହଦାକାଶର ଏକ ନଗଣ୍ୟ ଅଂଶରେ ବିଶ୍ୱବ୍ରହ୍ମାଣ୍ଡର, ବିଶ୍ୱବ୍ରହ୍ମାଣ୍ଡରେ ନିରାକାର ପିଣ୍ଡ ବା ଯେ କୌଣସି ପ୍ରାଣୀ ଦେହ ନଗଣ୍ୟ କ୍ଷୁଦ୍ରତମ ପରମାଣୁ ପରି ରହିଅଛି । ଜୀବାତ୍ମା ବିଜ୍ଞାନରାଜ୍ୟର ବା ଜ୍ଞାନଦଶାରେ ଚିନ୍ମୟରାଜ୍ୟର ପଦାର୍ଥ, ସେ ଏହି ନଗଣ୍ୟ କ୍ଷୁଦ୍ରାଦପି କ୍ଷୁଦ୍ରତମ ପରମାଣୁ ତୁଲ୍ୟ ପାଞ୍ଚଭୌତିକ ନିରାକାର ମୃତ୍ପିଣ୍ଡକୁ ମୁଁ ବୋଲି ଜ୍ଞାନ କରି ତହିଁରେ ଆବଦ୍ଧ ରହିଥିବା କିପରି କଥା ! ବର୍ଣ୍ଣନା କରିବାକୁ ବିଶେଷଣ ନାହିଁ କି ହୃଦୟରେ ଭାବ ବିଶେଷ ନାହିଁ ଅଥବା ଏପରି ଅବସ୍ଥାରେ ବାକ୍‌ଦେବୀଙ୍କ ଭଣ୍ଡାରରେ ଶବ୍ଦଟିଏ ବା କାହୁଁ ମିଳିବ ? ହେ ଜୀବାତ୍ମନ୍ ! ଏ ସଂସାରରେ ମୋହ, ମାନ, ଗର୍ବ ଆଡ଼ମ୍ବରାଦିର ବଡ଼ିମାରେ ଭ୍ରାନ୍ତ-ବିମୁଗ୍ଧ ହୋଇ ତୁମ୍ଭେ କିପରି ସଂସାରୀ ହୋଇଅଛ ତାହା ଜାଣୁଛ ତ ? ଏବେ ନିଜାତ୍ମ-ତତ୍ତ୍ୱ ଚିନ୍ତାକର । ଏ ସଂସାରରେ ପିଷ୍ଟପେଷଣ ବା ଚର୍ବିତ-ଚର୍ବଣ କଲାପରି ଅହରହ ଏହି ଦୈହିକ-କ୍ରିୟା ଦୈହିକ-ଭାବନାରେ ତ ଦିନ ଗଲା ଗଲା ଆୟୁ ଶେଷ-ସୀମାରେ ଅଜ୍ଞାତ ଭାବରେ ଯାଇ

ଉପସ୍ଥିତ ହୋଇ ଯାଉଅଛି ! ଭଜ ଗୋବିନ୍ଦଂ ସ୍ମର ଗୋବିନ୍ଦଂ ଗୋବିନ୍ଦଂ ଭଜ ମୂଢ଼ମତେ ।

## ୩୭ଶ ପାଠ—ମନୁଷ୍ୟର ବିଶେଷତ୍ୱ

ମାନବୀୟ ଜୀବାତ୍ମାର ଧର୍ମ, ନିଜାତ୍ମତତ୍ତ୍ୱ-ଅନ୍ୱେଷଣ ଓ ଆଲୋଚନା କରି ତଦନୁସାରେ କର୍ତ୍ତବ୍ୟ ନିଶ୍ଚୟ କରଣାନନ୍ତର ଯଥାବିହିତ ମାର୍ଗରେ ପଥିକ ହେବା ମନୁଷ୍ୟର ଏତିକ ବିଶେଷତ୍ୱ । ଭୋଗ-ସାଧନ ଓ କର୍ମ-ସାଧନ ସର୍ବ-ଦେହରେ ସର୍ବ-ପ୍ରକାର ପ୍ରାଣୀମାନେ ପ୍ରବୃତ୍ତି ସହିତ ନିଷ୍ପାଦନ କରୁଅଛନ୍ତି । ସେତିକରେ ମନୁଷ୍ୟର ମନୁଷ୍ୟତା ନାହିଁ । ବର୍ତ୍ତମାନ ସର୍ବପ୍ରକାର ପ୍ରାଣୀ ଜୀବାତ୍ମା ପଦବାଚ୍ୟ, ଏହା ବିବେଚିତ ହେଉ ।

ପୂର୍ବେ ନିରୂପିତ ହୋଇଅଛି, ଅନ୍ତଃକରଣ-ସମନ୍ୱିତ ଲିଙ୍ଗ ବା ସୂକ୍ଷ୍ମ ଦେହ ଯାହାର ଉପାଧି ଏବଂ ସେହି ଦେହର ଯେ ଅଧିକାରୀ ଅଥଚ ଲିଙ୍ଗଦେହ ସଙ୍ଗେ ସଙ୍ଗେ ସ୍ଥୂଳ ଦେହ ସଂଯୁକ୍ତ ସେହି ସୂକ୍ଷ୍ମ ଓ ସ୍ଥୂଳ ଦେହ-ଭାବାପନ୍ନ ତଦ୍ରୂପ ଦେହାଭିମାନୀ ଯେ ସେହି ଜୀବାତ୍ମା ଏବେ ଦେଖାଯାଉ, ସବୁପ୍ରକାର ପ୍ରାଣୀର ସ୍ଥୂଳ ପାଞ୍ଚଭୌତିକ ଦେହ ଏବଂ ଅନ୍ତଃକରଣ ; ଦଶବିଧ ସୂକ୍ଷ୍ମେନ୍ଦ୍ରିୟ ଓ ପଞ୍ଚପ୍ରାଣବିଶିଷ୍ଟ ଲିଙ୍ଗଶରୀର ଅଛି କି ନା ? "ଅଛି" ଏହି ଦୁଇ ଅକ୍ଷରରେ ଏ ଉଭୟର ସମାଧାନ କରି ଅଧିକ ବର୍ଣ୍ଣନା କରିବା ମନୁଷ୍ୟ ସଂସାରରେ ଲଜ୍ଜାଜନକ ବ୍ୟାପାର ନୁହେଁ କି ?

## ୩୮ଶ ପାଠ—ପବିତ୍ର ଭାରତରେ ପୈଶାଚିକତା

ଏହି ଦେଶର ନାମ ଭାରତଖଣ୍ଡ ବା ଭାରତବର୍ଷ । ମହର୍ଷିପ୍ରବର ଶ୍ରୀମନ୍ ଭରତ ଏ ଦେଶର ଆଦି ରାଜା । ତାହାଙ୍କର ପବିତ୍ର ନାମାନୁସାରେ ଏ ଦେଶର ନାମ ଭାରତବର୍ଷ । ସେ ପୂଜ୍ୟପଦ ମହାରାଜାଧିରାଜ ଭରତ ରାଷ୍ଟ୍ରୀୟ-ରାଜଦଣ୍ଡ ଧାରଣ କରି ପ୍ରଜାମାନଙ୍କୁ ଜ୍ଞାନରେ ଜ୍ଞାନୀ, ଧର୍ମରେ ଧର୍ମୀ, ବିଦ୍ୟାରେ ବିଦ୍ୱାନ୍, ଧନରେ ଧନୀ, ଭୋଗରେ ଭୋଗୀ, ଯୋଗରେ ଯୋଗୀ ଓ ସୁଖରେ ସୁଖୀ କରାଇବା ଭଳି ଯଥୋପଯୁକ୍ତ ବ୍ୟବସ୍ଥା (ବୈଦିକ ଓ ଶାସ୍ତ୍ରୀୟ ବିଧାନାନୁଶାସିତ) ବିଧାନାନୁଯାୟୀ ପାଳନ ଶାସନ କରି ଭାରତକୁ ସ୍ୱର୍ଗରାଜ୍ୟ ଆଦର୍ଶରେ ଗଠନ କରି ଅନନ୍ତର ସ୍ୱୟଂ ତପସ୍ୟାନୁଷ୍ଠାନ ସକାଶେ ଗୃହ-ସଂସାରାଦି ପରିତ୍ୟାଗ ପୂର୍ବକ ବାନପ୍ରସ୍ଥାଶ୍ରମ ଗ୍ରହଣ କରିଥିଲେ । ଆଜି ସେହି ନାମ ଏ ସ୍ଥାନକୁ ଓ ଏ ଗ୍ରନ୍ଥକୁ ପବିତ୍ର କରୁଅଛି । ସେହି ପବିତ୍ର ନାମ ଓ ବିଶୁଦ୍ଧ ଚରିତ୍ର ସର୍ବଶାସ୍ତ୍ରପୁରାଣାଦିର ଅଂଗ ଶୋଭା ବର୍ଦ୍ଧନ କରୁଅଛି । ତଦନୁସାରେ ଏ ଦେଶ ବୈଦିକ ଧର୍ମଜ୍ଞାନ ଓ ବୈଦିକ କ୍ରିୟାସାଧନର ପୁଣ୍ୟଭୂମି । ଆମ୍ଭେମାନେ ଆଜି ଏଥିରେ ସାଧାରଣ ପଶୁପକ୍ଷ୍ୟାଦି ପ୍ରାଣିବର୍ଗ ଜୀବାତ୍ମାପଦବାଚ୍ୟ କି ନା ବିଚାର କରିବାକୁ ତର୍କର ଦାସତ୍ୱ ସ୍ୱୀକାର କରୁଥାଇଁ । ଯେ ଦେଶର ଚଣ୍ଡାଳ ପର୍ଯ୍ୟନ୍ତ କହିଥାଏ, "କାଷ୍ଠ ପାଷାଣ

ତରୁ ତୃଣେ, ବସନ୍ତ ଶରୀର ପ୍ରମାଣେ"; "ସକଳ ଦେହେ ନାରାୟଣ, ବସନ୍ତ ଅନାଦି-କାରଣ" ଇତ୍ୟାଦି । ଏସବୁ କୁସଂସ୍କାର ଢାଓଆ କେଉଁ ଆଡ଼ରୁ ଆସି ଆମ୍ଭ ପ୍ରାଣରେ ମିଶି ଅନ୍ତର୍ଦେଶକୁ ଏପରି ଜଡ଼ବାଦଦ୍ୱାରେ ଅପବିତ୍ର କରୁଅଛି ? ଏହା ବିଶ୍ୱର ଦୁଃଖ ପ୍ରକାଶ କରିବା ଏବଂ ଉପଯୁକ୍ତ ଆଲୋଚନା ଆଡ଼କୁ ଅଗ୍ରସର ହେବା ।

## ୩୮ଶ ପାଠ—ଜୀବତତ୍ତ୍ୱ ନିରୂପଣ ଏବଂ ସର୍ବବିଧ ପ୍ରାଣୀଯନ୍ତ୍ରରେ ଜୀବାତ୍ମା ଦର୍ଶନ

ଜୀବାତ୍ମା କିଏ ? ଏହି ସ୍ୱରୂପ ଲକ୍ଷଣ ଓ ସଂଜ୍ଞା ଠିକ୍ ମନେ ରଖି ବିଚାର କରାଯାଉ । ପ୍ରଥମତଃ ସ୍ଥୂଳ-ଦଶେନ୍ଦ୍ରିୟ ଗୋଲକ ସମ୍ବଳିତ ସ୍ଥୂଳ ପାଞ୍ଚଭୌତିକ ଦେହ, ଦ୍ୱିତୀୟତଃ ଅନ୍ତଃକରଣସମନ୍ୱିତ ଦଶ ସୂକ୍ଷ୍ମେନ୍ଦ୍ରିୟ ଏବଂ ପଞ୍ଚପ୍ରାଣାଦିଯୁକ୍ତ ଲିଙ୍ଗଦେହ, ଏହି ଦେହଦ୍ୱୟ ଏକତ୍ରାବସ୍ଥା ପ୍ରାପ୍ତ ହେଲେ ତହିଁରେ ପୁରୁଷର "ଏଇ ମୁଁ" ବୋଲି ଯେଉଁ ଦେହାତ୍ମାଭିମାନ ତାହା ହିଁ ଜୀବତ୍ୱ । ଏଠାରେ କାରଣ ଦେହକୁ ସୂକ୍ଷ୍ମ ଦେହର ଅନ୍ତର୍ଗତ କରି ଦେଖିବାକୁ ହେବ । ଏହି ଜୀବତ୍ୱ ଯାହାର ଅଛି ସେ ଜୀବାତ୍ମା । ପଶୁ-ପକ୍ଷ୍ୟାଦି ଏହିପରି କି ନା ? ଅର୍ଥାତ୍ ସେମାନେ ଏହିପରି ଦେହଦ୍ୱୟ-ବିଶିଷ୍ଟ ଜୀବାତ୍ମା ପଦବାଚ୍ୟ କି ନା ?

ସ୍ପଷ୍ଟ ଦେଖାଯାଉଅଛି, ସମସ୍ତ ଦୃଶ୍ୟମାନ ବସ୍ତୁ ପାଞ୍ଚଭୌତିକ; ମାଟି ଖଣ୍ଡେ ଦେଖ, ସ୍ଥୂଳରେ କୁହାଯାଏ ସେ ମୃତ୍ତିକା; ମାତ୍ର ପ୍ରକୃତରେ ତାହା ପଞ୍ଚଭୂତର ସମଷ୍ଟି । ଖାଲି ମାଟି ବୋଲି କହିବାର କାରଣ ଏହି ଯେ ତହିଁରେ ପୃଥ୍ୱୀତତ୍ତ୍ୱର ପରିମାଣ ବେଶୀ, ଆଉ ଅନ୍ୟାନ୍ୟ ତତ୍ତ୍ୱର ପରିମାଣ, ଯଥାପରିମାଣେ କମ୍ । ପଞ୍ଚଭୂତମାନଙ୍କର ଯେ ବିଶୁଦ୍ଧାବସ୍ଥା, ତାହା ଅଦୃଶ୍ୟ ଓ ଅନୁଭବାତୀତ । ସେମାନେ ପରସ୍ପର ଏପରି ଗୁଣ-ସମ୍ପନ୍ନ ଯେ ପରସ୍ପର ମିଶିଯିବା ତାଙ୍କର ଧର୍ମ । ତଦନୁସାରେ ଯହିଁରେ ପୃଥ୍ୱୀଭାଗ ବେଶୀ ଓ ଅନ୍ୟାନ୍ୟ ଭାଗ ଯଥାପରିମାଣେ କମ୍, ତାହା ମୃତ୍ତିକା ବୋଲି ବ୍ୟାବହାରିକ କଥାରେ କୁହାଯାଏ । ଏହିପରି ଜଳ, ତେଜ, ବାୟୁ ଓ ଆକାଶରେ ନିଜ ନିଜ ଭାଗ ବେଶୀ ଏବଂ ଅନ୍ୟାନ୍ୟ ଭାଗ ଯଥାପରିମାଣେ କମ୍ । ସୁତରାଂ ଯାହା ଦେଖ, ସେ ପାଞ୍ଚଭୌତିକ । ଏ ସମ୍ବନ୍ଧରେ ଶାସ୍ତ୍ରୀୟ ପଞ୍ଚୀକରଣ ପ୍ରଣାଳୀ ଦ୍ରଷ୍ଟବ୍ୟ ।

ଏହି ହିସାବରେ ପଶୁପକ୍ଷ୍ୟାଦି ଦୃଶ୍ୟମାନ ସର୍ବପ୍ରକାର ପ୍ରାଣୀ ଶରୀର ( କୀଟ ପତଙ୍ଗାଦି ପର୍ଯ୍ୟନ୍ତ ) ପାଞ୍ଚଭୌତିକ, ଏହା ନିଃସନ୍ଦେହ । ତତ୍ପରେ ସେହି ସବୁ ଶରୀରରେ ଲିଙ୍ଗଦେହର ସମାବେଶ ଅଛି କି ନା ?

ଦେଖ, ମୋଟରେ ସମସ୍ତଙ୍କୁ ପ୍ରାଣୀ କୁହାଯାଏ, ଅର୍ଥାତ୍ ସମସ୍ତଙ୍କର ପ୍ରାଣ ଅଛି । ଦେଖା ତ ଯାଉଛି, ନାକବାଟରେ ସବୁ ବଡ଼ ବଡ଼ ପଶୁପକ୍ଷ୍ୟାଦିଙ୍କର ମନୁଷ୍ୟପରି ପବନ ବହୁଅଛି । ସାଁ ସାଁ ତ ଶୁଭୁଚି, ପେଟ ତ ପଡ଼ିବା ଉଠିବା ପଶୁପକ୍ଷ୍ୟାଦିଙ୍କର ସୁଦ୍ଧା

ଦେଖାଯାଏ । ସମସ୍ତେ ତ ପ୍ରାଣ ଥିବା କାଳରେ ଗତିଶୀଳ ( କୀଟପତଙ୍ଗାଦି ପ୍ରାଣବଳରେ ଗତିଶୀଳ ) ଏବଂ ପାନାହାରାଦି କରୁଅଛନ୍ତି । ତେବେ ବୁଝାଯାଏ, ପ୍ରାଣ ସବୁ ପ୍ରାଣୀ-ଯନ୍ତ୍ରରେ ଅଛି । ପ୍ରାଣ ମନୁଷ୍ୟଠାରେ ପଞ୍ଚଧା ହୋଇ, ପ୍ରାଣ, ଅପାନ, ସମାନ, ଉଦାନ, ଓ ବ୍ୟାନ ପଞ୍ଚ ପ୍ରକାର ଚେଷ୍ଟାବାନ୍ ହୋଇ ଯଥାଯଥ ସ୍ଥାନରେ ଯଥାଯଥ ଭାବରେ ଥିବାପରି ଠିକ୍ ପଶୁପକ୍ଷ୍ୟାଦି ଯନ୍ତ୍ରରେ ଥିବାର ଆଖିରେ ବା କୌଣସି ପ୍ରକାରେ ଦେଖା ଯାଉ କି ନ ଯାଉ, ପ୍ରାଣର କ୍ରିୟା ସର୍ବତ୍ର ହେଉଅଛି—ଏହା ସ୍ପଷ୍ଟ ବୋଧ ହେଉଅଛି । ତେବେ ତାହା ପଞ୍ଚଧା ହେଉ ବା ଚତୁର୍ଦ୍ଧା, ତ୍ରିଧା, ଦ୍ୱିଧା, ଅଥବା ଏକ ହେଉ, ପଞ୍ଚପ୍ରାଣ ସଂସ୍କାର ସମଷ୍ଟିଭାବରେ ସେହି ପଞ୍ଚଧାବାୟୁରେ ଯେପରି ଅଛି, ଦ୍ୱିଧା, ତ୍ରିଧାରେ ମଧ୍ୟ ସେହିପରି ଅଛି । ପକ୍ଷୀର ଦୁଇଟି ମାତ୍ର ଗୋଡ଼, କିନ୍ତୁ ତହିଁରେ ସେ ଚଲାଫେରା କରେ; ହାତରେ ଯାହା କରନ୍ତି ତାହା ସେହି ଗୋଡ଼ରେ ବା ଥଣ୍ଟରେ କରେ ଇତ୍ୟାଦି ଇତ୍ୟାଦି । ପତଙ୍ଗମାନେ ପଡ଼ାଉଡ଼ା କରନ୍ତି । ତେବେ ପଞ୍ଚପ୍ରାଣ ସର୍ବପ୍ରାଣୀଯନ୍ତ୍ରରେ ଅଛି । ସେହି କାରଣରୁ ସମସ୍ତେ ପ୍ରାଣୀପଦବାଚ୍ୟ । ଏବେ ସ୍ଥୂଳ ବା ସୂକ୍ଷ୍ମ ଦଶେନ୍ଦ୍ରିୟ ଅଛି କି ନା ? ସ୍ଥୂଳ ଦଶେନ୍ଦ୍ରିୟ ଦେହରେ ଥିବା ଜଣାଯାଏ, ତାହା ଯେତେଦୂର ଯେଉଁ ଦେହରେ ଥିବାର ଦେଖୁଥାଉଁ । ଏବେ ସୂକ୍ଷ୍ମ ଦଶେନ୍ଦ୍ରିୟ । ପଶୁପକ୍ଷ୍ୟାଦିଙ୍କଠାରେ ସୂକ୍ଷ୍ମେନ୍ଦ୍ରିୟମାନେ ଥିବାର ପ୍ରମାଣ ପାଉଥାଉଁ,— ସେମାନେ ଦେଖନ୍ତି, ଶୁଣନ୍ତି, ଗନ୍ଧ ବାରନ୍ତି, ସ୍ୱାଦୁ ଅସ୍ୱାଦୁ ବୁଝନ୍ତି, ଶୈତ୍ୟ ଓ ଉତ୍ତାପ ଅନୁଭବ କରନ୍ତି । ଏଥିରେ କିଛିମାତ୍ର ସନ୍ଦେହ ନାହିଁ । ଏ ଗଲା ପଞ୍ଚ ସୂକ୍ଷ୍ମ ଜ୍ଞାନେନ୍ଦ୍ରିୟର କଥା । ପଞ୍ଚକର୍ମେନ୍ଦ୍ରିୟ ତ ଦେଖୁଥାଉଁ, ଶବ୍ଦ କରନ୍ତି, ଚାଲନ୍ତି, ହଁଆନାଆ କରନ୍ତି ( ବାଗିନ୍ଦ୍ରିୟ ଓ ହସ୍ତଗତ କ୍ରିୟାର ସଂସ୍କାର ତେବେ ଅଛି); ମଳମୂତ୍ର ତ୍ୟାଗ ଏବଂ ରେତ ପତନାଦି ହେବା ସୁନିଶ୍ଚିତ । ପଞ୍ଚକର୍ମେନ୍ଦ୍ରିୟ ସଂସ୍କାର ସେମାନଙ୍କର ଦୈହିକ କ୍ରିୟାଦିରୁ ଦେଖାଯାଉଅଛି ।

ତେବେ ଦଶ ସୂକ୍ଷ୍ମେନ୍ଦ୍ରିୟର ଅସ୍ତିତ୍ୱ ପଶୁପକ୍ଷ୍ୟାଦିଙ୍କଠାରେ ଅଛି । ବାକି ରହିଲା ଅନ୍ତଃକରଣ, ବୁଦ୍ଧି, ଅହଂକାର, ଚିତ୍ତ ଓ ମନ । ଏଇ ଦେହାଦି "ମୋର" ବୋଲି ଓ ଦେହ ସମ୍ବନ୍ଧୀୟ ମମତାସ୍ପଦ ବସ୍ତୁ ସବୁ ନିଜର ବୋଲି ନିର୍ଦ୍ଦିଷ୍ଟ ଜ୍ଞାନ ତାଙ୍କର ଅଛି । ଖାଇବାକୁ ଦେଖାଅ, ଦଉଡ଼ି ଆସି ଖାଇବ, ମାରିବାକୁ ଠେଙ୍ଗା ଉଁଚାଇଲେ ଅନ୍ତରିତ ହେବ, ଆତ୍ମୀୟମାନଙ୍କୁ ଆଘାତ କଲେ ତ ବାକି ନାହିଁ, ଯେତେଦୂର ଲଢ଼ିବ । ତେବେ ଏ ସବୁ ସମ୍ବନ୍ଧରେ ନିଶ୍ଚୟ କରଣାତ୍ମିକା ବୃତ୍ତି ଅର୍ଥାତ୍ ବୁଦ୍ଧି ତାଙ୍କର ଅଛି । ଅହଂକାର ଅଛି—ମୁଁ କର୍ମ କରୁଛି, ମୁଁ ସୁଖଦୁଃଖାଦି ଅନୁଭବ କରୁଛି । ଏହିପରି ଅହଂକାର ସେମାନଙ୍କର ଥିବାର ତ କ୍ରିୟାଦିରୁ ଜଣା ପଡ଼ୁଅଛି । ବସା ନିର୍ମାଣରେ ସେମାନଙ୍କର ପଟୁତା ବେଶ୍ ଜଣାପଡ଼େ । ସ୍ମରଣାତ୍ମିକା ଚିତ୍ତବୃତ୍ତି ବି ଅଛି । କେହି କେହି ପଶୁପକ୍ଷୀ ସେମାନଙ୍କୁ ଆହାର ଦେଇ ପୋଷି ରଖିଥିବା ସ୍ୱାମୀକୁ ଦେଖିଲେ ବହୁଦିନ ଅଦର୍ଶନ ପରେ ମଧ୍ୟ ଏଇ ମୋର ସ୍ୱାମୀ ବୋଲି ସ୍ମରଣ କରି ପରିଚିତ ଥିବା ଭାବ ଦେଖାନ୍ତି । ବାକି ମନର କଥା । ସବୁ କର୍ମ କଲାବେଳେ ପ୍ରାଣଚାଳନାଦିରେ ଓ ଦର୍ଶନାଦିରେ ମନଃସଂଯୋଗ ନ

ଥିଲେ କିଛି ହୋଇ ପାରନ୍ତା ନାହିଁ । ତେବେ ଦେଖାଗଲା, ସେମାନଙ୍କର ବୃତ୍ତିଚତୁଷ୍ଟୟ-ବିଶିଷ୍ଟ ଅନ୍ତଃକରଣ ଅଛି । ଅନ୍ତଃକରଣ, ଦଶ ସୂକ୍ଷ୍ମେନ୍ଦ୍ରିୟ, ପଞ୍ଚପ୍ରାଣ, ଏମାନଙ୍କର ସମଷ୍ଟିଭୂତ ଲିଙ୍ଗ ବା ସୂକ୍ଷ୍ମ ଶରୀର ସେହି ପଶୁପକ୍ଷ୍ୟାଦିଙ୍କର ଅଛି । ବିଶେଷତଃ କାମ, କ୍ରୋଧାଦି ଥିବାର ତ ସ୍ପଷ୍ଟ ଦେଖାଯାଏ । ଆଉ ମଧ୍ୟ ନିଜ ଦେହ ରକ୍ଷା ନିମନ୍ତେ ସର୍ବବିଶେଷ ଯତ୍ନ ଓ ଚେଷ୍ଟା ଏବଂ ଅପତ୍ୟ ଲାଳନପାଳନ ଓ ସନ୍ତାନବାତ୍ସଲ୍ୟ ଦେଖାଯାଏ ।

ପୂର୍ବକୁ ସ୍ମରଣ କରାଯାଉ । ସ୍ଥୂଳେନ୍ଦ୍ରିୟ ଗୋଲକ ସହିତ ସ୍ଥୂଳ ପାଞ୍ଚଭୌତିକ ଦେହ ଏବଂ ଅନ୍ତଃକରଣ ସମନ୍ୱିତ ଦଶ ସୂକ୍ଷ୍ମେନ୍ଦ୍ରିୟ ଓ ପଞ୍ଚପ୍ରାଣ ବିଶିଷ୍ଟ ସୂକ୍ଷ୍ମଶରୀର ଏ ଉଭୟ-ସ୍ଥୂଳ-ସୂକ୍ଷ୍ମ-ଦେହର ସମ୍ମିଳିତାବସ୍ଥାରେ ତହିଁରେ ପୁରୁଷର ଯେଉଁ ଦେହାଭିମାନ ତାହାର ନାମ ଜୀବତ୍ୱ । ଏହି ଜୀବତ୍ୱ ପଶୁପକ୍ଷ୍ୟାଦିଠାରେ ବିଦ୍ୟମାନ ଅଛି । ସୁତରାଂ ସେମାନେ ତଦ୍ରୂପ ଜୀବତ୍ୱ-ବିଶିଷ୍ଟ ବୋଲି ଜୀବାତ୍ମାପଦବାଚ୍ୟ ଅଟନ୍ତି ।

## ୩୪ଶ ପାଠ—ଧର୍ମ ଓ ନୈତିକତା

ତେବେ ସେମାନଙ୍କର ଧର୍ମତତ୍ତ୍ୱଜ୍ଞାନ, ଆତ୍ମତତ୍ତ୍ୱଜ୍ଞାନ ଓ ତଦନୁସାରେ ନୈତିକତା ବା କର୍ତ୍ତବ୍ୟବୋଧାଦି ବିବେକ ଅଛି କି ନା – ବିବେଚନା କରିବା ବିଧେୟ; ତହିଁ ସଙ୍ଗେ ସଙ୍ଗେ ମନୁଷ୍ୟବୋଲି ଗର୍ବମୋହମୁଗ୍ଧ ଆତ୍ମମ୍ଭରିପ୍ରିୟ ଓ ବିଳାସୀମାନଙ୍କୁ ନ ଟାଣି ଛାଡ଼ିବା ଉଚିତ ନୁହେ । ସର୍ବମାଂସଭୁକ୍ ବହୁଜନ୍ମସଞ୍ଚିତ ପାପମୟ ସଂସ୍କାରବିଚିତ୍ର ଦ୍ୱିପଦ ପାଶବପିଣ୍ଡ ଯଦି ବ୍ୟବସ୍ଥା କରେ ଯେ ମଦ୍ୟମାଂସାଦି ବିନା ତ ପ୍ରାଣରକ୍ଷା ଓ ପୁଷ୍ଟି-ବର୍ଦ୍ଧନ ଅସମ୍ଭବ, ଅତଏବ ଜଡ଼ବୈଜ୍ଞାନିକ ବିତଣ୍ଡା ତର୍କାଦିଦ୍ୱାରା ପ୍ରମାଣିତ କରି ବ୍ୟବସ୍ଥା କରାଯାଉ ଯେ ପଶୁପକ୍ଷ୍ୟାଦି ଅନାତ୍ମ ଜୀବ ଅଥଚ ଆହାର ନିମିତ୍ତ ସୃଷ୍ଟ; ତେବେ କହିବାକୁ ହେବ ଭରତ ପକ୍ଷରେ ଓ ବକପକ୍ଷରେ ଏହା ବାଣବିଦ୍ଧ ବ୍ୟବସ୍ଥା । ଏହା ପୋଚ୍ଛ ହେବାର ଦିନ ବଡ଼ ନିକଟବର୍ତ୍ତୀ ।

ଏବେ ଧର୍ମତତ୍ତ୍ୱ ଓ ଆତ୍ମତତ୍ତ୍ୱ, ନୈତିକତା ଓ କର୍ତ୍ତବ୍ୟବୋଧାଦି ପଶୁପକ୍ଷୀ-ମାନଙ୍କର ଅଛି କି ନା ? ଧର୍ମତତ୍ତ୍ୱରୁ ଆତ୍ମତତ୍ତ୍ୱଜ୍ଞାନ ଏବଂ ଏ ଉଭୟର ସଂଯୋଗରୁ ଯେଉଁ ନୈତିକତା ଓ କର୍ତ୍ତବ୍ୟବୋଧାଦି ତାହା ଯଥାର୍ଥ ନୈତିକତା ଓ କର୍ତ୍ତବ୍ୟବୋଧ-ପଦବାଚ୍ୟ । ଦେହ ଓ ସଂସାର ବିଷୟର ଆଲୋଚନାରୁ ସତ୍ ଆଧ୍ୟାତ୍ମିକ, ଶାସ୍ତ୍ରାଦି ଓ ଗୁରୁପଦବାଚ୍ୟ ମହାତ୍ମାମାନଙ୍କ ଉପଦେଶରୁ ବିଶେଷତଃ ଭଗବତ୍ କୃପାରୁ ଧର୍ମତତ୍ତ୍ୱାଦି ଜ୍ଞାନ ହେବା ଅବଶ୍ୟ କଷ୍ଟସାଧ୍ୟ; ଏହା ମଧ୍ୟ ପଶୁପକ୍ଷ୍ୟାଦିମାନଙ୍କଠାରେ ଏକବାରେ ଅସମ୍ଭବ । ତେବେ ମନୁଷ୍ୟପକ୍ଷରେ ଏହା ସମ୍ଭବପର ଅଟେ । ଏହି ଧର୍ମତତ୍ତ୍ୱ ଜ୍ଞାନାଦିରେ ଅଧିକାର ଥିବାରୁ ମନୁଷ୍ୟ ସର୍ବଜୀବଠାରୁ ଶ୍ରେଷ୍ଠ । ଏହାହିଁ ମନୁଷ୍ୟତ୍ୱର ବିଶେଷତ୍ୱ । ଏ ଅଭାବରେ କେବଳ ବିଷୟସମ୍ଭୋଗ ଏବଂ ସାଂସାରିକ କୁଟିଳନୀତ୍ୟାଦିରେ ନିପୁଣତା ଥିଲେ

ଯେ ମନୁଷ୍ୟ ଧର୍ମୀ ବା ଜ୍ଞାନୀ ଅଥବା କର୍ତ୍ତବ୍ୟବୋଧପରିପୂର୍ଣ ବୋଲି ବୁଝାଯିବ ତାହା କଦାଚ ନୁହେ । ଉପସ୍ଥିତ-ଦିନର ମନୁଷ୍ୟଙ୍କୁ ଦେଖିଲେ (ବାଦ୍ ଯିବା ମହାପୁରୁଷ ଅବଶ୍ୟ ଅଛନ୍ତି) ବୋଧହୁଏ, ଜାତି ଯଦି ବ୍ୟକ୍ତିଗତ, ଜାତିଗତ ବା ସମାଜଗତଭାବରେ ଦଳବଦ୍ଧ ହୋଇ ସର୍ବମାଂସାହାରୀ, ମଦ୍ୟପାୟୀ, କପଟକୁଟିଳାଗ୍ରହୀ, ପରଧନାପହାରୀ, ଆତ୍ମମ୍ଭରୀ ବା ଉଦରମ୍ଭରୀ, ସ୍ୱେଚ୍ଛାଗ୍ରହୀ ଓ ବିଳାସୀ ଅଥଚ ବହୁଆଡ଼ମ୍ବର ପ୍ରଦର୍ଶନକାରୀ ହୋଇ ବ୍ୟକ୍ତି-ବିଶେଷର, ଜାତି ବା ସମାଜବିଶେଷର ଧନ, ମାନ, ଧର୍ମଜ୍ଞାନାଦି ଏବଂ ନୈତିକାଦି ଗୁଣମାନ ନାଶ କରିବାଭଳି କୁତ୍ସିତ ଜଡ଼ବାଦିତା ପ୍ରବର୍ତ୍ତାଇ ନାନାବିଧ ଆଡ଼ମ୍ବର ଦେଖାଇବାରେ ତଦ୍ରୂପ ନିଗ୍ରହ ପ୍ରାଣୀ ବା ସମାଜର ସର୍ବସ୍ୱାନ୍ତର ପ୍ରୟାସ ପାଏ; ତେବେ ଆଜିକାଲି ଦିନରେ କହିବାକୁ ହେବ ଧର୍ମତତ୍ତ୍ୱାଦି ଆଲୋଚନା ସମ୍ବନ୍ଧରେ ପଶୁପକ୍ଷ୍ୟାଦି ତିର୍ଯ୍ୟକ୍ ଜୀବରେ ତାହା ଅଛି କି ନା ବିଚାର କରିବା ତ ଦୂରର କଥା, ମନୁଷ୍ୟ ଆଜି ସେ ସମ୍ବନ୍ଧରେ ପଶୁପକ୍ଷୀଠାରୁ ହୀନ ହୋଇଅଛି । ପଶୁପକ୍ଷୀ ତ ନିଜ ନିଜ ପ୍ରକୃତିଦତ୍ତ ସୀମାମଧ୍ୟରେ ବିଚରଣ କରୁଅଛନ୍ତି, ମାତ୍ର ମନୁଷ୍ୟ ତଦୀୟ ସ୍ୱାଭାବିକ ଜ୍ଞାନଧର୍ମାଦି ଅନୁଷ୍ଠାନରୁ ବିଚଳିତ ହୋଇ ଆଜି ଯଦି କେବଳ ଇନ୍ଦ୍ରିୟପରିପୂର୍ଣତା, ସ୍ୱାର୍ଥପରତା ଓ ବିଳାସିତା ଇତ୍ୟାଦି ଅମତ୍ତ ଗୁଣରେ ଆବଦ୍ଧ, ତେବେ ପଶୁପକ୍ଷ୍ୟାଦି ଜ୍ଞାନ, ଧର୍ମ ଓ ନୈତିକାଦି ଚର୍ଚ୍ଚା ସମ୍ବନ୍ଧରେ ମନୁଷ୍ୟ ତ ଅନଧିକାର ଚର୍ଚ୍ଚା କରୁଅଛି ।

ଆଜିକାଲି ଜ୍ଞାନ, ଧର୍ମ, ନୈତିକାଦି ସଭ୍ୟତା ସଂଜ୍ଞା ସଂପୂର୍ଣ୍ଣ ବିପରୀତ ଭାବରେ ନିରୂପଣ କରି ଯେଉଁ ଜଡ଼ବାଦ ସ୍ରୋତ କେଜାଣି କାହିଁକି କେଉଁ ଆଡ଼ରୁ ବହିଆସି ଚିରପବିତ୍ର-ଭାରତକୁ କଳୁଷିତ କରିଅଛି, ବୋଧହୁଏ କାଳର ମାହାତ୍ମ୍ୟ ନ ହୋଇଥିଲେ ଯେଉଁ ଭାରତ ପବିତ୍ର ପୂଜ୍ୟପଦ-ରେଣୁ ମହାତ୍ମା ଶ୍ରୀ ବ୍ୟାସଦେବ ପ୍ରଭୃତିଙ୍କ ଲୀଳାକ୍ଷେତ୍ର, ଆଜି ତହିଁରେ ଏଇ ଦୃଶ୍ୟ ? ମାତ୍ର ଏପରି ଧର୍ମଜ୍ଞାନାଦି ବିପ୍ଲବ ସମୟରେ ପରମେଶ୍ୱରଙ୍କର ସ୍ୱର୍ଗୀୟ ଆସନ ଟଳିଥାଏ, ଏହା ଶ୍ରୀ ଭଗବଦାଜ୍ଞା ବୋଲି ନିର୍ଦ୍ଦିଷ୍ଟ ଅଛି, ଦେଖାଯାଉ; ପରେ ଏ ସମ୍ବନ୍ଧରେ;—ବର୍ତ୍ତମାନ ଏ ବିଷୟ ଅର୍ଦ୍ଧନିବୃତ୍ତି ଭାବରେ ଏହିଠାରେ ବିଶ୍ରାମ କରିଥାଉ ।

## ୪୦ଶ ପାଠ—ବ୍ରହ୍ମତତ୍ତ୍ୱ ନିରୂପଣର ସୂଚନା

ପୂର୍ବେ ବୁଝାଯାଇଅଛି ଯେ, ଏହି ଭୌତିକ ବିଶ୍ୱବ୍ରହ୍ମାଣ୍ଡ ଭୌତିକ ମହଦାକାଶଠାରୁ ଆରମ୍ଭ କରି ବ୍ରହ୍ମାକାଶ ପର୍ଯ୍ୟନ୍ତ କ୍ରମେ କ୍ରମେ ଜଡ଼ବସ୍ତୁ—ଏହା ଆକାରଗତ ଆଲୋଚନାଧୀନ ସ୍ଥୂଳ ଚକ୍ଷୁରେ ଅବଶ୍ୟ ନିରୂପିତ ହେବାର କଥା, ମାତ୍ର ଜଡ଼ାକାରଠାରୁ ଜ୍ଞାନାକାର ପଦାର୍ଥ ସୂକ୍ଷ୍ମତର, ଏରୂପ ଦେଖି ଦେଖି ବୁଝାଯିବ ଜଡ଼ାକାର ପରି ଜ୍ଞାନାକାର ବସ୍ତୁ ଚକ୍ଷୁର ଗ୍ରହଣୀୟ ଆକାର ବିଶିଷ୍ଟ ନୁହେ । ସୁତରାଂ ଏହା ସୂକ୍ଷ୍ମ ଦୃଷ୍ଟି ବା ଜ୍ଞାନଦୃଷ୍ଟିରେ ନିରୂପିତ ହେବାର ବିଷୟ । ତେବେ ତଦନୁସାରେ

ଦେଖିବାକୁ ଗଲେ କହିବାକୁ ହେବ ଭୌତିକ ଜଗଦାକାରଠାରୁ ଭୌତିକାକାଶ ସୂକ୍ଷ୍ମ, ତାହାଠାରୁ ଆରମ୍ଭ କରି କ୍ରମେ କ୍ରମେ ବ୍ରହ୍ମ ମହଦାକାଶ ପର୍ଯ୍ୟନ୍ତ ଅତୀବ ସୂକ୍ଷ୍ମତମ । ( ଏସବୁ ଆଲୋଚନା ଯେତେଦୂର ହେଲାଣି ଏଥିରୁ ଏବେ ବହୁତ ସାହାଯ୍ୟ ମିଳିବ, ଯଦ୍ଦ୍ୱାରା ଆତ୍ମତତ୍ତ୍ୱ ନିରୂପଣ କରିବାକୁ ସମର୍ଥ ହୋଇଅଛୁ ବୋଲି କୁହାଯିବ, ମାତ୍ର ଏସବୁ ବିଷୟ ଉପନ୍ୟାସ କି ନାଟକ କିମ୍ବା ଖବରକାଗଜ ପଢ଼ିଲାପରି ପାଠକଲେ ହେବନାହିଁ । ଏହା କ୍ଷେତ୍ରତତ୍ତ୍ୱ ବା ବୀଜଗଣିତାଦି ଗଣିତ ବିଦ୍ୟା ଅଭ୍ୟାସ କଲାପରି ପ୍ରଥମରୁ ଯାହା ଯାହା ଅଭ୍ୟାସ କରାଯାଉଥିବ ତହିଁରେ ଦୃଢ଼ତା ଜନ୍ମୁଥିଲେ ଆଗକୁ ଯେପରି ଚଳିବାକୁ ହେଉଥିବ ) ।

ଏବେ ଦେଖାଯାଉ । ଯେଉଁ ବ୍ରହ୍ମବସ୍ତୁ ଏକ ଦୃଷ୍ଟିରେ ସବୁଠାରୁ ବଡ଼ (୧), ସୁତରାଂ ସୂକ୍ଷ୍ମ ନୁହେଁ (୨); ଅନ୍ୟ ଦୃଷ୍ଟିରେ ସବୁଠାରୁ ସୂକ୍ଷ୍ମ (୩), ସୁତରାଂ ବଡ଼ ନୁହେ (୪), ତେବେ କୁହାଯିବ ଉକ୍ତ ଉଭୟ-ମିଶ୍ରଦୃଷ୍ଟିରେ ତାହା ସବୁଠାରୁ ବଡ଼ (୫), ଅଥଚ ସବୁଠାରୁ ସୂକ୍ଷ୍ମ (୬); ପୁଣି ସୂକ୍ଷ୍ମ ବି ନୁହେ କି ବଡ଼ ବି ନୁହେ ଅର୍ଥାତ୍ ଅସୂକ୍ଷ୍ମ , ଅବୃହତ୍ ଇତ୍ୟାନୁଭୟ ପ୍ରକାର ଅଟେ । ଏହିପରି ତିନି ପ୍ରକାର ଦୃଷ୍ଟିରେ ଯାହାଙ୍କୁ ଆଠ ପ୍ରକାର ବାକ୍ୟରେ କୁହାଗଲା ସେହି ସେହି ପ୍ରକାର ଦୃଷ୍ଟିର ଦର୍ଶନକୁ ବାଦ୍ ହେଲେ ସେ ସ୍ୱରୂପ ଦୃଷ୍ଟିରେ ଅର୍ଥାତ୍ ଆତ୍ମଦୃଷ୍ଟିରେ ବଡ଼ ସୂକ୍ଷ୍ମ, କି ବଡ଼-ସୂକ୍ଷ୍ମ-ଉଭୟାତ୍ମକ ବା ଅବଡ଼-ଅସୂକ୍ଷ୍ମ ଅନୁଭୟାତ୍ମକ କିଛି ନୁହନ୍ତି । ସୁତରାଂ ସେ ଅପରିମେୟ ଅଥଚ ସର୍ବପ୍ରକାରାତ୍ମକ ଓ ସର୍ବପ୍ରକାର ଭାବାତ୍ମକ ଅଟନ୍ତି । ଯାହାଙ୍କଠାରେ ଉପରୋକ୍ତ ମତେ ଐକ୍ୟ ଅଥବା ବିଭିନ୍ନ ପ୍ରକାର ଭେଦ ଓ ଅନୈକ୍ୟ ଦୃଷ୍ଟିମାନେ ଅବନତ ହୋଇ ସାମଞ୍ଜସ୍ୟ ଆକାରରେ ସାନନ୍ଦରେ କ୍ରୀଡ଼ା କରୁଅଛନ୍ତି, ସେ ବାସ୍ତବରେ ମନ, ବଚନ ଓ ତର୍କାଦିର ଅତୀତ । ଏହି ଦେହସ୍ଥ ଜୀବାତ୍ମାର ପଞ୍ଚଭୂତାତ୍ମକ ଦେହଠାରୁ ଆରମ୍ଭକରି କ୍ରମେ ଅର୍ଥାତ୍ ପଞ୍ଚଭୂତ, ପ୍ରାଣ, ଦଶେନ୍ଦ୍ରିୟ, ମନ ଅହଂକାରାଦି ଅନ୍ତଃକରଣଚତୁଷ୍ଟୟ, ଅନ୍ତରାକାଶ, ଚିଦାକାଶ, ଏବଂ ବ୍ରହ୍ମାକାଶ (ପୂର୍ବ ନିରୂପିତ ଲେଖାନୁସାରେ ଏ ସମସ୍ତ ଦେଖିଯିବାକୁ ହେବ ) ପର୍ଯ୍ୟନ୍ତ ସମସ୍ତଙ୍କ ସଙ୍ଗେ କି ପ୍ରକାର ସମ୍ବନ୍ଧ ଅଥଚ ଏମାନଙ୍କ ମଧ୍ୟରେ ପରସ୍ପର କିପରି ସମ୍ବନ୍ଧ ବିଚାର କରାଯାଉ ।

## ୪୧ଶ ପାଠ—

ପ୍ରଥମ — ଏହି ଜୀବାତ୍ମା ଜାଗରଣ ଦଶାରେ ସ୍ଥୂଳ ଶରୀରସ୍ଥ ପଞ୍ଚକର୍ମେନ୍ଦ୍ରିୟରେ କର୍ମ କରାଗଲାବେଳେ ଓ ପଞ୍ଚଜ୍ଞାନେନ୍ଦ୍ରିୟରେ ଶବ୍ଦସ୍ପର୍ଶାଦି ପଞ୍ଚ ବିଷୟର ଜ୍ଞାନାନୁଭବ କରାଗଲାବେଳେ ଅନ୍ତଃକରଣ ସହକାରେ ଆପଣାକୁ ତତ୍ତତ୍ କର୍ମ ଓ ବିଷୟଜ୍ଞାନାଦିର କର୍ତ୍ତା, ଜ୍ଞାତା ବା ଭୋକ୍ତାରୂପରେ ଅଭିମାନ କରୁଅଛୁ, ଏ ଅବସ୍ଥାରେ ସ୍ଥୂଳଦେହକୁ ମୁଁ ବୋଲି ଦେଖୁଅଛୁ ଓ ମାନୁଅଛୁ ।

ଦ୍ୱିତୀୟ—ଏହି ଜୀବାତ୍ମା ସ୍ୱପ୍ନଦଶାରେ ସୂକ୍ଷ୍ମ ଶରୀରର ଘଟକ ଦଶଇନ୍ଦ୍ରିୟ ଓ ଅନ୍ତଃକରଣ ପ୍ରାଣାଦି ସହକାରେ ଆପଣାକୁ ଅନ୍ତଃକରଣକୃତ ସ୍ମରଣାତ୍ମକ ଜଗତ ଓ ସ୍ଥୂଳ ଦେହାକାରରେ ନିଶ୍ଚୟ କରି ତତ୍‌ପ୍ରଦର୍ଶିତ ସଂସାର ଓ ଦେହ ସମ୍ବନ୍ଧ ଜାତ କର୍ମାଦିରେ ଏବଂ ବିଷୟ ଜ୍ଞାନାଦିରେ କର୍ତ୍ତା ବା ଜ୍ଞାତା ଅଥବା ଦ୍ରଷ୍ଟା ରୂପରେ ଅଭିମାନ କରୁଅଛି ! ଅଥଚ ବାସ୍ତବରେ ବାହ୍ୟ ଜଗତ ବା ଦେହ ସେତେବେଳେ ସେ ଦେଖୁନାହିଁ ବା ଜାଣୁନାହିଁ । ସେତେବେଳେ ସୂକ୍ଷ୍ମ ଦେହକୁ ମୁଁ ବୋଲି ଦେଖୁଛି ବା ଜାଣୁଅଛି ।

ତୃତୀୟ—ଏହି ଜୀବାତ୍ମା ଧ୍ୟାନାବସ୍ଥାରେ (ଯାହା ଅର୍ଦ୍ଧଜାଗରଣ ଅଥଚ ଅର୍ଦ୍ଧସ୍ୱପ୍ନମିଶ୍ରିତ ଦଶାପରି) ଠିକ୍ ସ୍ୱପ୍ନଦଶାର ଅନୁଭବ ପରି ଅନୁଭବ କରୁଅଛି । ଏତେବେଳେ ଏ ଆତ୍ମା ମଧ୍ୟ ସୂକ୍ଷ୍ମଦେହସ୍ଥ; ଅର୍ଥାତ୍ ତାହାକୁହିଁ ଜାଣୁଅଛି ଓ ଦେଖୁଅଛି ।

ଚତୁର୍ଥ—ଏହି ଜୀବାତ୍ମା ସୁଷୁପ୍ତି ଦଶାରେ ସ୍ଥୂଳ, ସୂକ୍ଷ୍ମ ଦେହ ଓ ବାହ୍ୟ ଜଗତକୁ ବିସ୍ମରଣ କରି, 'ମୁଁ' କିଏ ବା କିଣ, କର୍ତ୍ତା ବା ଭୋକ୍ତା ଇତ୍ୟାଦିର ସ୍ମରଣକୁ ଭୁଲିଯାଇ ମୁଁ କିଛି ଜାଣୁନାହିଁ ବୋଲି ଆପଣାକୁ ଅନୁଭବ କରି ଦେହାଦି ତତ୍‌ସମ୍ବନ୍ଧୀୟ କର୍ମ ବା ଭୋଗାଦିର ସୁପ୍ତ ସଂସ୍କାର ସହିତ ପ୍ରସୁପ୍ତାବସ୍ଥାରେ ରହୁଅଛି । ଏତେ-ବେଳେ ଏହି ଜୀବାତ୍ମା କାରଣ ଦେହସ୍ଥ ଅର୍ଥାତ୍ ସେହି କାରଣ ଦେହକୁ ଦେଖୁଅଛି ଓ ଜାଣୁଅଛି ।

ପଞ୍ଚମ—ଏହି ଜୀବାତ୍ମା ସବିକଳ୍ପ ବିବେକଦଶା ବା ଆତ୍ମାନାତ୍ମଜ୍ଞାନଦଶାରେ (ଯାହା ବିବେକ ଓ ଅର୍ଦ୍ଧ ସୁଷୁପ୍ତି ମିଶ୍ରିତ ଦଶାପରି) ଏହି ସୁଷୁପ୍ତିକାଳୀନ ଅନୁଭବ ଭଳି ଅନୁଭବ କରୁଅଛି; ଅଥଚ ଆତ୍ମାକୁ ସ୍ପଷ୍ଟଭାବରେ ଏହି ଦେହତ୍ରୟର ଓ ଅବସ୍ଥାତ୍ରୟର ଦ୍ରଷ୍ଟା ବା ସାକ୍ଷୀ ରୂପରେ ଉପଲବ୍‌ଧି କରୁଅଛି । ଧ୍ୟାନଦଶା ଓ ସବିକଳ୍ପ ବିବେକଦଶା ଅଭ୍ୟାସ ନ ଥିବାସ୍ଥଳେ କେବଳ ଉକ୍ତ ସ୍ୱପ୍ନ, ସୁଷୁପ୍ତି ଓ ଜାଗରଣ ଦଶାତ୍ରୟ ଭୋଗ କରି ସୂକ୍ଷ୍ମ, କାରଣ ଓ ସ୍ଥୂଳ ଦେହରେ ଅଭିମାନ ପ୍ରକାଶ କରି ତତ୍ତତ୍ ଦଶାରେ ଓ ତତ୍ତତ୍ ଶରୀରରେ ଆପଣକୁ 'ମୁଁ' ବୋଲି ଜାଣୁଅଛି ।

## ୪୨ଶ ପାଠ—ଜାଗ୍ରତାବସ୍ଥାରେ ସ୍ଥୂଳଦେହର ଦର୍ଶନ ଓ ବ୍ୟବହାର

ପ୍ରଥମତଃ— ଜାଗରଣ ଦଶାରେ ଆତ୍ମା କେବଳ ସ୍ଥୂଳଦେହକୁ ମୁଁ ବୋଲି ସ୍ଥିର କରିବାରୁ ସେତେବେଳେ ସୂକ୍ଷ୍ମ ଓ କାରଣ ଦେହଦ୍ୱୟ ଅନ୍ତରାକାଶରେ (ପାଣି ଗଡ଼ିଆରେ ଦୁଧ ପୂରି ମାଠିଆ ଗଉଡ଼ ଲୁଚାଇ ରଖିଥିଲା ପରି) ଲୁଚି ରହୁଅଛି ।

## ୪୩ଶ ପାଠ—ସ୍ୱପ୍ନଦଶାରେ ସୂକ୍ଷ୍ମଦେହର ଜ୍ଞାନ

ଦ୍ୱିତୀୟତଃ—ସ୍ୱପ୍ନ ଦଶାରେ, ଆତ୍ମା କେବଳ ସୂକ୍ଷ୍ମ ଦେହକୁ ମୁଁ ବୋଲି ନିଶ୍ଚୟ କରି ତହିଁରେ ଅଭିନିବିଷ୍ଟ ଥିବାରୁ ସେତେବେଳେ ସ୍ଥୂଳଦେହ ତତ୍‌କାରଣୀଭୂତ ଭୌତିକ ଜଗତରେ ଓ କାରଣଦେହ ତତ୍‌କାରଣୀଭୂତ ଅନ୍ତରିକାଶ ବା ଚିଦ୍ଜ୍ଞାନାକାଶରେ ସେହି ଦୁଧ ମାଠିଆପରି ଲୁଚିରହିଅଛି ।

## ୪୪ଶ ପାଠ—ସୁଷୁପ୍ତିରେ କାରଣଦେହର ଅଭିନିବିଷ୍ଟତା

ତୃତୀୟତଃ—ସୁଷୁପ୍ତି ଦଶାରେ ଆତ୍ମା କେବଳ କାରଣ ଦେହକୁ 'ମୁଁ' ବୋଲି ଜାଣୁଥିବାରୁ ତାହା ସ୍ୱକୀୟ ଧର୍ମାନୁସାରେ ଆତ୍ମାଠାରୁ ବିସ୍ମୃତ ବା ଅଜ୍ଞାନାବସ୍ଥାରେ ରହି ତତ୍‌କାରଣୀଭୂତ ଅନ୍ତରିକାଶରେ ସୂକ୍ଷ୍ମ ଦେହକୁ ସଙ୍ଗେ ନେଇ ସେହି ଦୁଧପୂରି ମାଠିଆପରି ଲୁଚିରହିଅଛି । ଆଉ ମଧ୍ୟ ସ୍ଥୂଳଦେହ ଭୌତିକ ଜଗତରେ ପଡ଼ିରହି ଆତ୍ମାର ଅଦୃଶ୍ୟ ହୋଇଅଛି ।

## ୪୫ଶ ପାଠ—ଦେହାଦିରେ ଆତ୍ମାର ସମ୍ବନ୍ଧ ବିଚାର

ଏହିପରି ଜୀବାତ୍ମାର ଜାଗରଣ ଦଶାରେ ସ୍ଥୂଳ ଦେହ ସହିତ ଓ ବାହ୍ୟ ଜଗତ ସହିତ ସମ୍ବନ୍ଧ; ଏବଂ ସ୍ଥୂଳ ଦେହର ବାହ୍ୟ ଜଗତ ସହିତ ସମ୍ବନ୍ଧ ।

ଠିକ୍ ଏହିପରି ଜୀବାତ୍ମା ସ୍ୱପ୍ନଦଶାରେ ସୂକ୍ଷ୍ମ ଦେହ ସହିତ ଓ ସୂକ୍ଷ୍ମ ଦେହର ଅନ୍ତରିକାଶ ସହିତ ସମ୍ବନ୍ଧ ।

ଏହିପରି ମଧ୍ୟ ଜୀବାତ୍ମାର ସୁଷୁପ୍ତିଦଶାରେ କାରଣ ଦେହ ସହିତ ଓ କାରଣଦେହାଦିର ଅନ୍ତରିକାଶ ସହିତ ସମ୍ବନ୍ଧ ।

## ୪୬ଶ ପାଠ—ଦେହାଦି ସହିତ ଆତ୍ମାର ଓ ଆତ୍ମା ସହିତ ଦେହାଦିର ତନ୍ମୟତ୍ୱ

ଏହିରୂପେ ଦେହାଦିରେ ଓ ଅବସ୍ଥାଦିରେ ସମ୍ବନ୍ଧବିଶିଷ୍ଟ ଜୀବ ନିଜ ତତ୍ତ୍ୱ ଭୁଲି ସେହି ଦେହାଦିରେ ତନ୍ମୟ ହୋଇଅଛି । ଏଥିର କାରଣ ଏହି ଯେ ମାୟିକ ପଦାର୍ଥର ଦର୍ଶନରୁ ତହିଁରେ ମୁଗ୍ଧ ହେବାର ଗୁଣ ଜୀବାତ୍ମାର ଯେପରି ସ୍ୱତଃ ନିର୍ଦ୍ଦିଷ୍ଟ ଅଛି, ତଦ୍ରୂପ ମାୟିକ ବସ୍ତୁ ସ୍ୱକୀୟ ସ୍ୱାଶ୍ରୟ ବ୍ୟାମୋହକତା ଗୁଣଦ୍ୱାରା ଆତ୍ମାକୁ ଆକର୍ଷଣ କରି ଆପଣାଠାରେ ତନ୍ମୟ କରାଇଅଛି ।

## ୪୭ଶ ପାଠ—ଆତ୍ମସ୍ମରଣ ଓ ତୁରୀୟ ଦଶା

ଜୀବାତ୍ମା ଏହିପରି ଦେହାଦିରେ ଓ ଅବସ୍ଥାଦିରେ ତନ୍ମୟ ହୋଇ ସ୍ମରଣକରୁଅଛି ଯେ 'ମୁଁ' ଜାଗରଣ ଦଶାରେ ଜାଗରଣର ଜ୍ଞାନ ଅନୁଭବ କରେଁ । ସେହି

'ମୁଁ' ସ୍ୱପ୍ନ ଦଶାରେ ତାକୁ ଭୁଲ ସ୍ୱପ୍ନକୁ ସତ୍ୟକରି ମଣେ; ପୁଣି ସେହି 'ମୁଁ' ସୁଷୁପ୍ତି ଦଶାରେ ସବୁ ଭୁଲିଯାଇ 'ମୁଁ' କିଏ ବୋଲି ଜାଣିପାରି ନ ଥାଏ । ସେହି 'ମୁଁ' ଏକ, ଅଥଚ ଅବସ୍ଥାତ୍ରୟର ଓ ଦେହତ୍ରୟର ଦ୍ରଷ୍ଟା, ସୁତରାଂ ତହିଁରୁ ପୃଥକ୍ । ଆତ୍ମାର ଏହି ଯେଉଁ ସାଧାରଣ ଅପରିବର୍ତ୍ତନୀୟ ଅବସ୍ଥାରେ ଆତ୍ମା ସ୍ୱତଃ ସ୍ୱରୂପେ ବିରାଜମାନ ରହି ଦ୍ରଷ୍ଟାରୂପରେ ଉପରୋକ୍ତ ଅବସ୍ଥାଦି ଓ ତନ୍ନିର୍ଦ୍ଦିଷ୍ଟ ଦେହାଦି ଦର୍ଶନ କରୁଅଛି, ସେହି ଆତ୍ମଦଶାର ନାମ ତୁରୀୟାବସ୍ଥା ।

ଆତ୍ମା ସର୍ବଦା ଅର୍ଥାତ୍ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନାଦି କାଳାତୀତ ନିତ୍ୟ ବର୍ତ୍ତମାନ ଦଶାରେ ତୁରୀୟାବସ୍ଥାପନ୍ନ ଅଛନ୍ତି । ସ୍ୱାମିନ୍ ! ଏହିଠାରେ ଟିକିଏ ବିରାମ କରି କୃପାଦୃଷ୍ଟିରେ ଚାହିଁଥାଆନ୍ତୁ । ଦାସ ଆପଣଙ୍କର ଆଉ ଟିକିଏ ଭୌତିକ ଜଗତ୍ ବୁଲିଆସୁ ।

## ୪୮ଶ ପାଠ—ଦେହାଦି ବିଶ୍ୱବୈଚିତ୍ର୍ୟ ଦର୍ଶନ ଜୀବାତ୍ମାର ପ୍ରବୃତ୍ତି-ବିଶେଷମାତ୍ର—ଐନ୍ଦ୍ରଜାଲିକ ଲୀଳାପରି ତାହା ପରମାର୍ଥତଃ କିଛି ନୁହେଁ ।

ଆମ୍ଭେମାନେ ଦୈହିକ କର୍ମେନ୍ଦ୍ରିୟରେ ଯେତେ କାର୍ଯ୍ୟ କରୁଥାଉଁ, କଲାବେଳେ ଆମ୍ଭେ ତହିଁରେ କେତେଦୂର ନିବିଷ୍ଟ—ସତେ କି ଏ ଆମ୍ଭର ଏକାନ୍ତ କର୍ତ୍ତବ୍ୟ, ଏହାର ଲବମାତ୍ର ଅବହେଳା କରାଯାଇ ନ ପାରେ; ଏମନ୍ତ କି ଖେଳ ଖେଳିବାବେଳେ ପର୍ଯ୍ୟନ୍ତ ଭୋଖ ଶୋଷ ପାଶୋରି ତହିଁରେ ମାତିବାକୁ ହୋଇଥାଏ । ଏହିପରି ସମୁଦାୟ ଦୈହିକ କର୍ମର ଗତି କଅଣ ? ଦେଖନ୍ତୁ, ତଦ୍ୱାରା ଦୈହିକ ନାନାପ୍ରକାର ଚେଷ୍ଟା ସାଧିତ ହୋଇଥାଏ । ଏହି ଦେହ ତ ଯଥାତଥା ନାଚୁଆ ପିଲା,—କେତେ ପ୍ରକାରେ ଦୈହିକ କ୍ରିୟା ଦେଖାଇ ନୃତ୍ୟ କରେ । ଶେଷରେ ତା' ଦେହ ଯେଉଁ ଦେହ ସେହି ଦେହ । ଏହିପରି ସବୁପ୍ରକାର କ୍ରିୟାଜନିତ ଚେଷ୍ଟାରେ ଦେହ ଯଥା ତଥା । ବରଂ ଦେହର ତହିଁରେ କୌଣସି ପ୍ରକାର ବିକାର ଘଟିଥିବାର ସମ୍ଭାବନା । ମାତ୍ର କ୍ରିୟା ସମସ୍ତ କାହିଁ ରହିଲା ? ନା, କାହିଁ ସେ ନାହିଁ, ସେ ସଙ୍ଗେ ସଙ୍ଗେ ବିଲୁପ୍ତ; ତାର ରହିବାର କୌଣସି ସ୍ଥାନ ନାହିଁ । ତେବେ ତଦ୍ରୂପ କ୍ରିୟାଦି ଦ୍ୱାରା ବାହ୍ୟ ଜଗତର ବା ଜାଗତିକ ବସ୍ତୁ ବିଶେଷର ଯଦି କିଛି ପରିବର୍ତ୍ତନ ଘଟିଥାଏ ତ ସେତିକି ମାତ୍ର, ହେଲେ ସେହି ପରିବର୍ତ୍ତନ ଦ୍ୱାରା ଜଗତର ପରମାଣୁ ସମଷ୍ଟି ଭଣ୍ଡାରର କିଛି କ୍ଷୟବୃଦ୍ଧି ଘଟିଛି କି ? ନା, ତାହା ନୁହେ । ମୋଟ ଉପରେ ଭୌତିକ ଜଗତର ପରମାଣୁ ଭଣ୍ଡାର ମଧ୍ୟ ଯଥାତଥା । ତେବେ ଏ ପ୍ରବୃତ୍ତିଜନିତ କ୍ରିୟାରେ ଆତ୍ମାର କାହିଁ କଅଣ ? ଆତ୍ମା ସେହି ମତାଣିରେ ମାତିପିବାଇ ସାର । ତେବେ ସେହି ସବୁ ଦୈହିକ କ୍ରିୟାରେ ଯଦି କିଛି ଭୋଗସାଧନର ସମ୍ଭାବନା ଥିବା ଦେଖାଯାଏ ସେ ସବୁ ଭୋଗ ବା କଅଣ ? ତାହାସବୁ ଅନ୍ତଃକରଣର କ୍ଷଣିକ ତୃପ୍ତି କର ବା ହର୍ଷବିଷାଦାଦି ଜନ୍ମାଇଥାଏ । ଏପରି ଅନ୍ତଃକରଣରେ ଏହିପରି ବାହ୍ୟଜ୍ଞାନେନ୍ଦ୍ରିୟ ଦ୍ୱାରା ବା ଅନ୍ତରେନ୍ଦ୍ରିୟ ଦ୍ୱାରା ଯେଉଁସବୁ ବୈଷୟିକ ଜ୍ଞାନର ଅନୁଭୂତି

ହୁଏ, ତାହା କେଉଁଆଡ଼େ ରହେ ? ତାହା ସବୁ ଚିଦାଧାର ଅନ୍ତରାକାଶ ବା ବିଜ୍ଞାନାକାଶରେ ରହେ । ଯାହାର କିଛି ବିଶିଷ୍ଟତା ଥାଏ ତାହା ତ ଚିତ୍ତ ପୁନଃ ସ୍ମରଣ କଲାବେଳେ ହେଲେ ଟିକିଏ ପାଇଥାଏ, ମାତ୍ର ଯେଉଁ ସବୁଗୁଡ଼ିକର ଟିକିଏ ବିଶେଷତ୍ୱ ନାହିଁ, ତାହା ସବୁ ସେହି ଅନ୍ତରାକାଶରେ ବିଲୁପ୍ତ ହୋଇଥାଏ । ପ୍ରବୃତ୍ତିକାଳୀନ ମତାଣିବେଳେ ସେ ସବୁ ଭୋଗିବାକୁ କେତେ ଆଗ୍ରହ ? ଦେଖ, ଦିନଟି ମଧ୍ୟରେ କେତେ କେତେ ବିଷୟଜ୍ଞାନ ମନୋମୟ ପଟରେ ଅଙ୍କିତ ହୋଇ ଯାଉଅଛି । ଆଉ ସେହି କାଳରେ କେତେ ନିବିଷ୍ଟ ରହିବାକୁ ହେଉଅଛି, ଅଥଚ ତହିଁ ମଧ୍ୟରେ ଯେଉଁ ସବୁର କିଛି ବିଶିଷ୍ଟତା ଅଛି ବୋଲି ଅନ୍ତଃକରଣ ସ୍ଥିର କରେ, ସେଗୁଡ଼ିକ ଅନ୍ତରାକାଶରେ ଥିଲେ ମଧ୍ୟ ତାକୁ ଚିତ୍ତ ପୁନଃ ସ୍ମରଣ କରିବାକୁ ପାଇଥାଏ, ବାକିଗୁଡ଼ିକ ସେହି ଅନ୍ତରାକାଶରେ ବିଲୁପ୍ତ ହୋଇଥାଏ । ଏ ସବୁରେ ମତାଣି ମାତ୍ର ଶେଷ ସାର ବସ୍ତୁ, ଅଥଚ ଅନ୍ତରାକାଶ ଯଥାତଥା । ତାହାର ଆମ୍ଭର ଏ ସବୁ ବିଷୟଜ୍ଞାନମାନେ କୌଣସି ଅଂଶ ପୂରଣ କରି ପାରିଲେ କି ? ସମୁଦ୍ରରେ କେତେ ନଦ ନଦୀର ଜଳ ବା ବର୍ଷାଜଳ ମିଶିଲେ ସୁଦ୍ଧା ସେ ଯଥାତଥା । ଏହିପରି ଆମ୍ଭ ଜଣକର ଦିନକର କର୍ମରେ ବା ବୈଷୟିକ ଜ୍ଞାନାଦିରେ ବାହ୍ୟ ଜଗତ ବା ଅନ୍ତରାକାଶ ଯଥାତଥା ରହିଅଛି, ତାହାର କୌଣସି ଅଂଶରେ କିଛି ହେଉନାହିଁ, ଏହା ଦେଖିବା ଆମ୍ଭର କ୍ରୀଡ଼ା ମାତ୍ର । ଆତ୍ମାର କି ଏଥିରେ କିଛି ନାହିଁ । ସେ ଯଦ୍ରୂପ—ତଦ୍ରୂପ ।

ଏହିପରି ଆମ୍ଭ ଜଣକର ଦୈନିକ କର୍ମ ଓ ବୈଷୟିକ ଜ୍ଞାନର ସମଷ୍ଟି ଯେତେ ଯାହା ହେଲା, ଆମ୍ଭ ଜନ୍ମଠାରୁ ଆଜଯାଏ ଆମ୍ଭର ସମୁଦୟ ଦୈହିକ କର୍ମ ବା ମାନସିକ ଭୋଗାଦି ସମଷ୍ଟି ଦର୍ଶନରେ ଭୌତିକ ଜଗତର ବା ବିଜ୍ଞାନାକାଶର ବା ଏତତ୍ ଦ୍ରଷ୍ଟା ଆତ୍ମାର କାହାର କିଛି ହୋଇନାହିଁ । ଏହିପରି ସମୁଦୟ ପ୍ରାଣୀସୃଷ୍ଟିର, ସମୁଦୟ ପ୍ରାଣୀମାନଙ୍କର ସମୁଦୟ ଦୈହିକ କର୍ମ ସମଷ୍ଟି ବା ବୈଷୟିକ ଜ୍ଞାନର ସମଷ୍ଟିକୁ ଏକ ମହା ସମଷ୍ଟିରେ ପରିଣତ କଲେ ମଧ୍ୟ ତହିଁର ମୋଟ ସମଷ୍ଟି ଫଳରେ ଏ ବାହ୍ୟ ଜଗତ ବା ଅନ୍ତରାକାଶ କିମ୍ବା ଆତ୍ମଦେବ ଯଥା ତଥା ରହିଅଛନ୍ତି, କାହାରି କିଛି କ୍ଷୟ ବୃଦ୍ଧି ନାହିଁ । ଏସବୁରେ ପ୍ରବୃତ୍ତି ମାତ୍ରହିଁ ସାର । ତେବେ ବୈଷୟିକ ଜ୍ଞାନମାନଙ୍କର ଯେ ବିଶିଷ୍ଟତା ତାହାସବୁ ଏକତ୍ର ମିଶି ସଂସ୍କାର ରୂପରେ ପରିଣତ ହୋଇ ଅନ୍ତରାକାଶରେ ନିହିତ ଥିଲେ ମଧ୍ୟ ଚିତ୍ତବୃତ୍ତିକୁ ତାହା ସଂଗେ ବାନ୍ଧି ରଖିଥାଏ; ସେହି ସେହି ସଂସ୍କାର ଭବିଷ୍ୟତ୍ ପ୍ରବୃତ୍ତିର ବା ତଦାତ୍ମକ ସଂସାରର କାରଣ ହୁଏ । ଏହିପରି କ୍ରମେ କ୍ରମେ ଆମ୍ଭର ସଂସାର ପ୍ରବୃତ୍ତି ଧାରାବାହିକ ଜଳପ୍ରବାହ ରୂପରେ ସର୍ବଦା ଲାଗିରହିଅଛି । କ୍ଷଣେ ହେଲେ ସ୍ୱପ୍ନରେ ମଧ୍ୟ ଏଥିରୁ ବିଶ୍ରାମ ନାହିଁ, କିମ୍ବା କେତେବେଳେ ହେଲେ କେହି ଭାବିବାକୁ ଅବସର ପାଉନାହିଁ ଯେ ଏଥିରୁ ବିଶ୍ରାମ ଲାଭକଲେ ଶାନ୍ତି ମିଳିବ କି ନା ?

ଧନ୍ୟ ପ୍ରବୃତ୍ତି ! ଏସବୁ ପ୍ରବୃତ୍ତିର ମୂର୍ତ୍ତିଦର୍ଶନ କଲାପରେ ଏବେ ପୁଣି ସେହି ଆଧ୍ୟାତ୍ମିକ ଜଗତର ଆତ୍ମଦେବଙ୍କୁ ଫେରି ସେଠାରେ ଟିକକ ସକାଶେ ଠିଆକରି ଆସିଥାଇଁ, ଚାଲ ପୁଣି ସେହିଠାକୁ ଯିବା ।

## ୪୯ଶ ପାଠ—ଆତ୍ମାର ଦେହ-ସଂସାର ସମ୍ବନ୍ଧୀୟ ମାୟିକ ଲୀଳା-ମୁଗ୍ଧତାର କାରଣ ସ୍ୱରୂପ ପ୍ରକୃତିଗତ ଆବରଣ ଓ ବିକ୍ଷେପଶକ୍ତି-ଦ୍ୱୟର ବର୍ଣ୍ଣନ ଏବଂ ଭ୍ରାନ୍ତିନିରୂପଣ

ଆତ୍ମା ଏହିପରି ସର୍ବଦ୍ରଷ୍ଟା ଓ ଅବିକାର ଭାବରେ ସର୍ବଦା ବିରାଜମାନ ଅଛନ୍ତି । ତେବେ ଜୀବର ସେ ସମ୍ବନ୍ଧୀୟ ସତ୍‌ଜ୍ଞାନ ଉଦୟ ନ ହୋଇ ସେ ସର୍ବଦା ମାୟିକ ଜଗଦାକାର ଚିତ୍ର ପୂର୍ବ ବର୍ଣ୍ଣନାନୁଯାୟୀ ଦର୍ଶନ କରି ଆତ୍ମ ବିସ୍ମରଣ କରୁଅଛି କାହିଁକି ? ଯାହା ସତ୍ୟ ଅଥଚ ଆତ୍ମଦଶା ସମ୍ପନ୍ନ, ତଦ୍ରୂପ ଜ୍ଞାନ ଜୀବର ବିସ୍ମୃତ ପ୍ରାପ୍ତ ହୋଇ ଯେଉଁ ମାୟିକ ଚିତ୍ରଦର୍ଶନର ଜ୍ଞାନ ତା ପାଖରେ ସତ୍ୟ ନୁହେ, ସେ ଯେହି ଅସତ୍ୟକୁ ସତ୍ୟ ମଣି ତହିଁରେ କାହିଁକି ସର୍ବଦା ଲିପ୍ତ ଅଛି ? ଏହାର କାରଣ ଅଜ୍ଞାନଜନିତ ଭ୍ରମ (ଆତ୍ମଜ୍ଞାନ ସମ୍ବନ୍ଧୀୟ ଜ୍ଞାନର ଯାହା ବିପରୀତ ତାହାହିଁ ଏଠାରେ ଅଜ୍ଞାନ ପଦବାଚ୍ୟ) ସେ ଅଜ୍ଞାନ-ଜନିତ-ଭ୍ରମର ଏତେ ବଳ? ହଁ, ସେ ଅଜ୍ଞାନର ଦୁଇଟି ଶକ୍ତି ବଡ଼ ପ୍ରବଳ, ଆବରଣ ଓ ବିକ୍ଷେପଶକ୍ତି । ଆବରଣ ଶକ୍ତି ଆତ୍ମାର ଆତ୍ମଜ୍ଞାନକୁ ଘୋଡ଼ାଇ ରଖି ତାକୁ ବିସ୍ମରଣ କରାଇବାର ପ୍ରୟାସ ପାଉଁ ପାଉଁ ବିକ୍ଷେପଶକ୍ତି ମାୟାର ବିକାର ରାଜ୍ୟକୁ ଆତ୍ମାକୁ ଟାଣି ଆଣି ନାନାଦିଗକୁ ଚଳାଇନେଉଅଛି । ଭ୍ରମ ସେହି ସବୁ ନାନା ଦିଗକୁ ବାଟ ଦେଖାଉଅଛି । ସେହି ପଥ ପ୍ରଦର୍ଶନର ନାମ ଉପରୋକ୍ତ ପ୍ରବୃତ୍ତି ବା ମତାଣି । ଏହାର ସତ୍ତ୍ୱ ବା ଅସତ୍ତ୍ୱ କିଛି ନାହିଁ । ଏହା ବିଲକ୍ଷଣ ପ୍ରକାର ଅଟେ । ଯାହା ସ୍ୱରୂପତଃ ଯଦ୍ରୂପ ତାକୁ ତଦ୍ରୂପ ଠିକ୍ ନ ଜାଣିବାର ନାମ ଭ୍ରମ । ଉଦାହରଣ ସ୍ୱରୂପ ଦେଖାଯାଉ । ବଡ଼ ଖରାରେ ପ୍ରଶସ୍ତ ବାଲୁକାମୟ ମରୁଭୂମିରେ ଉତ୍ତପ୍ତ ଆକାଶ ମଧ୍ୟରେ ବହୁଦୂର ସ୍ଥିତ ନଗରାଦିର ପ୍ରତିବିମ୍ବ ମୃଗତୃଷ୍ଣାକାରରେ ଠିକ୍ ନଗରପରି ଦେଖାଯାଉଅଛି । ପଥିକ ତାହା ଦେଖି ନଗରଜ୍ଞାନରେ ସେହି ଆଡ଼କୁ ବିଶ୍ରାମ ଲାଭ ସକାଶେ ଯେତିକି ଦଉଡ଼ୁଅଛି, ସେ ମିଥ୍ୟାନଗର କ୍ରମେ କ୍ରମେ ସେତିକି ଅନ୍ତରିତ ହେଉଅଛି । ପଥିକର କଷ୍ଟ କ୍ରମେ ବଢ଼ୁଛି । ବିଚାରି ଦେଖିଲେ ମିଥ୍ୟାନଗର ଦୃଶ୍ୟଟି ସମ୍ପୂର୍ଣ୍ଣ ଭ୍ରମାତ୍ମକ । ସେ ନଗର ନୁହେ, ସେ ସ୍ଥାନ କେବଳ ଆକାଶ ।

## ୫୦ଶ ପାଠ – ଭ୍ରାନ୍ତି ଉପଲବ୍ଧିନିମନ୍ତେ ମୃଗତୃଷ୍ଣାର ଉଦାହରଣ

ପ୍ରଥମରେ ପ୍ରଖର ସୂର୍ଯ୍ୟକିରଣ, ଦ୍ୱିତୀୟରେ ଉତ୍ତପ୍ତ ବାୟୁ, ତୃତୀୟରେ ଆକାଶଗର୍ଭସ୍ଥିତ ସ୍ଥାନ, ଚତୁର୍ଥରେ ବହୁଦୂରସ୍ଥ ସତ୍ୟ ନଗର, ପଞ୍ଚମରେ ପଥିକର ଦୃଷ୍ଟି, ଏ ପାଞ୍ଚଟି ଯେପରି ସେ ସେହିପରି, ମାତ୍ର ଏମାନଙ୍କର ପରସ୍ପର-ସମ୍ବନ୍ଧ କୌଣସି

ଏକ ପଦାର୍ଥ ବିଶେଷ ନୁହେ । ତାହାର ସତ୍ତ୍ୱାଦି କିଛି ନାହିଁ । କେବଳ ଉକ୍ତ ସମ୍ବନ୍ଧରୁ ଗୋଟିଏ ମିଥ୍ୟା କଳ୍ପିତ ସତ୍ୟାକାରବିକାରିତ ଭ୍ରମମୟ ନଗର ପରିଦୃଷ୍ଟ ହେଲା । ତହିଁରେ ଭ୍ରମବଶତଃ ସତ୍ୟଜ୍ଞାନ ଆରୋପ କରିବାରେ ବୃଥା ଦୌଡ଼ିବା କଷ୍ଟ ଭିନ୍ନ ଆଉ କିଛି ଲାଭ ନାହିଁ । ଠିକ୍ ସେହିପରି ପୂର୍ବନିର୍ଦ୍ଧାରଣାନୁଯାୟୀ ଚିଦାକାଶ, ଅଜ୍ଞାନାକାଶ ବା ଅବିଦ୍ୟାଦି, ଅନ୍ତଃକରଣ, ଇନ୍ଦ୍ରିୟ, ପ୍ରାଣାଦି, ଦେହ ଏବଂ ବ୍ରହ୍ମାଣ୍ଡାଦିର ପରସ୍ପର ସମ୍ବନ୍ଧରୁ ସଂସାରପଥ-ଭ୍ରମଣକାରୀ ସାକ୍ଷୀ ପୁରୁଷ ମୁକ୍ତ ଆତ୍ମାର 'ମୁଁ ଜ୍ଞାତା' କର୍ତ୍ତା ବା ଭୋକ୍ତା ଇତ୍ୟାଦି ଭ୍ରମାତ୍ମକ ଦେହାତ୍ମଭ୍ରମମୟ ଜ୍ଞାନ ସତ୍ୟାକାରରେ ଅନୁଭୂତ ହୋଇ ସଂସାରୀୟ ସର୍ବପ୍ରକାର ମୋହମୟ ସୁଖ ଦୁଃଖ ମୋହାଦି ତାପରେ ପରିତାପିତ ହେବାର କାରଣ ହୋଇଅଛି । ସୁତରାଂ ଏ ଭ୍ରମାତ୍ମକ ମିଥ୍ୟାନୁଭୂତି । ଆତ୍ମ ଦୃଷ୍ଟିରେ ଅନାତ୍ମବସ୍ତୁ ପୂର୍ବ ଉଦାହରଣରୁ ମୃଗତୃଷ୍ଣା ବୋଲି ଜାଣିଥିବା ଲୋକ ଯେପରି ମିଥ୍ୟା ନଗରଟିକୁ ଦେଖୁଥାଏ, ମାତ୍ର ତହିଁରେ ତାହାର ସତ୍ୟଜ୍ଞାନ ନ ଥିବାରୁ ସେ ସେହି-ଆଡ଼େ ଦୌଡ଼ିବାକୁ ଚେଷ୍ଟା ନ କରିବା ସଙ୍ଗୀମାନଙ୍କର ବ୍ୟବହାରାନୁରୋଧରେ ଟିକିଏ ଟିକିଏ କୌତୁକରେ ଦୌଡ଼ିଥିଲେ ମଧ୍ୟ ସେହି ଦୌଡ଼ ବା ମିଥ୍ୟାନଗର ଦୃଶ୍ୟ ତା' ପକ୍ଷରେ ଦୁଃଖମୋହାଦି ଉତ୍ପନ୍ନ କରି ନ ପାରିବାରୁ ବରଂ ସେ ତହିଁରେ ଏକ ପ୍ରକାର କୌତୂହଳ ଅନୁଭବ କରୁଥାଏ, ସେହିପରି ଏସବୁ ବିଷୟର ତତ୍ତ୍ୱ ପ୍ରତ୍ୟକ୍ଷାନୁଭବ କରିବା ପୁରୁଷ ଏ ସଂସାର ଦର୍ଶନ ସମ୍ବନ୍ଧୀୟ ଅହଂକାର ମମାକାର କଳ୍ପିତ ବିଷୟାଦିରେ ବିମୁଗ୍ଧ ହୋଇ ସ୍ୱରୂପତଃ ସାକ୍ଷୀରୂପରେ ନିର୍ଲିପ୍ତ ଥିବାରୁ ତଦ୍ରୂପ ଭ୍ରମାତ୍ମକ ବିଷୟଜ୍ଞାନାଦିମୟ ଦେହ ଓ ସଂସାରପ୍ରତି ଅନାସ୍ଥାବାନ୍ ରହିଥାଏ ବୋଲି ଏହି ମିଥ୍ୟା କଳ୍ପିତ ଦେହ ସଂସାରମୟ ମିଥ୍ୟାଦୃଶ୍ୟ ତା'ପକ୍ଷରେ ସୁଖ ଦୁଃଖ-ମୋହାଦିର କାରଣ ହୁଏ ନାହିଁ । ବରଂ ସେ ଏଥିରେ ସଂସାର ସଙ୍ଗୀମାନଙ୍କ ସହିତ ପ୍ରବର୍ତ୍ତିଥିବା ସଂସାର ଯାତ୍ରାଦିରେ ଏକପ୍ରକାର ବିଳାସମୟ କୌତୁକାନୁଭବ କରୁଥାଏ । ମୃଗତୃଷ୍ଣା ଦେଖିବା ସ୍ଥଳେ ଜ୍ଞାନୀ-ଦ୍ରଷ୍ଟା ଯେପରି ବିଶୁଦ୍ଧ ନିର୍ମଳାକାଶ ମାତ୍ର ଦେଖୁଥାଏ, ଅଥଚ କହୁଥାଏ ଯେ ଏ ଆକାଶରେ କି ବିଚିତ୍ର ଗୁଣ ଅଛି, ଏହା ଏକ ଅପୂର୍ବ ନଗରାକାରିତ ଚିତ୍ର ସହିତ ଚିତ୍ରିତାକାଶପରି ଦୃଷ୍ଟ ହେଉଅଛି । ଅଥଚ ସେ ଦୃଶ୍ୟ ଏତେ ମୁଗ୍ଧକର ଯେ ତାହା ମିଥ୍ୟାମୟ ବୋଲି କାହାକୁ ଜଣାଇ ନ ଦେଇ ସମସ୍ତଙ୍କୁ କେବଳ ତାହାର ଆଡ଼କୁ ଆକର୍ଷଣ କରି ଦଉଡ଼ାଇ ମାରୁଅଛି । ସଂସାର ଦର୍ଶନ ସ୍ଥଳେ ତତ୍ତ୍ୱଜ୍ଞ ଆତ୍ମା କେବଳ ବିଶୁଦ୍ଧ ନିର୍ମଳ ଚିଦା-କାଶ ସର୍ବଦା ଦର୍ଶନ କରୁଅଛନ୍ତି; ଅଥଚ ପୂର୍ବ ପୂର୍ବ ନିର୍ଦ୍ଧାରଣାନୁଯାୟୀ କହିବାକୁ ହେଉଅଛି ଯେ ଏହି ଚିନ୍ମୟ ମହଦାକାଶ ତନ୍ମୟ ବିଶୁଦ୍ଧ କଳେବରରେ ଅଜ୍ଞାନା-କାଶଠାରୁ ଆରମ୍ଭ କରି ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ସୁଖଦୁଃଖାଦି ନାନାଭାବସମ୍ବଳିତ ଏହି ବିଚିତ୍ର ଜଗଦାକାର ଚିତ୍ରରେ ଚିତ୍ରିତ ଥିଲାପରି ପରିଦୃଷ୍ଟ ହେଉଅଛି, ଅଥଚ ଏ ବିଶ୍ୱାଡ଼ମ୍ବରଚିତ୍ର ଏତେ ମୁଗ୍ଧକର ଯେ ତାହା ମାୟିକ ଅଘଟନ ଘଟନା ନୈପୁଣ୍ୟ

ବୈଚିତ୍ର୍ୟର ବଶିଷ୍ଟତା ଦ୍ୱାରା ମିଥ୍ୟାମୟ ବୋଲି ସଂସାରୀ ପ୍ରାଣୀଙ୍କୁ ଜଣାଇ ନ ଦେଇ ସେମାନଙ୍କୁ ତହିଁରେ ଜଡ଼ାଇ ରଖିଅଛି । ହାୟ ନାରାୟଣ ।

## ୫୧ଶ ପାଠ—ଭ୍ରାନ୍ତ ଉପଲବ୍ଧି ନିମିତ୍ତ ରଜ୍ଜୁ-ସର୍ପର ଉଦାହରଣ

ଏହି ଭ୍ରାନ୍ତିର ଆଉ ଏକ ଉଦାହରଣ ଦେଖାଯାଉ । ଦଉଡ଼ିକୁ ସାପ ବୋଲି ଭୟ କରିବା ସ୍ଥଳେ ସେଠାରେ ସାପର ଅସ୍ତିତ୍ୱ ନ ଥାଏ; ଅଥଚ ସାପ ଦେଖିଲା ପରି ଭ୍ରମ ଜାତ ହୋଇ ଭୟ ଉତ୍ପାଦନ କରେ । ପରେ ଜ୍ଞାନଦ୍ୱାରା ସେ ଭ୍ରମ ଦୂର ହେଲେ ଯେଉଁ ଦଉଡ଼ି ସେହି ଦଉଡ଼ି । ସାପ ନ ଥିଲା କି କେଉଁଆଡ଼େ ନ ଗଲା; ଭ୍ରମ ମାତ୍ର ଭୟର କାରଣ । ଅତଏବ ଉପରୋକ୍ତ ମତେ ଜ୍ଞାନଲାଭ କରିବା ମନୁଷ୍ୟର ପୌରୁଷର ପରିଚାୟକ । ସଂସାର ଭ୍ରମ ନିବାରିତ ନ ହୋଇ ଯଥାର୍ଥ ଆତ୍ମତତ୍ତ୍ୱଜ୍ଞାନ ଉଦିତ ନ ହେବାଯାଏ ମନୁଷ୍ୟ ଏହି ବୃଥାଡ଼ମ୍ବରକୁ ଯଥାସର୍ବସ୍ୱ କରି ଦେଖୁଅଛି । ପୁନର୍ଶ୍ଚ ଏତଦ୍ରୂପ ଜ୍ଞାନଲାଭ ଶିକ୍ଷା ଆଜକାଲି ଅନ୍ଧାରରେ ନିକ୍ଷିପ୍ତ ହୋଇ ଏହି ମିଥ୍ୟା ପ୍ରବୃତ୍ତିର ଉତ୍ତେଜନା ମାତ୍ର ଯହିଁରୁ ହୁଏ ସେହିପରି ଶିକ୍ଷାଦୀକ୍ଷା ଓ ଆଦର୍ଶ ଅନୁକରଣରେ ସଂସାର ପୂର୍ଣ୍ଣ ହୋଇ ରହିଅଛି ।

ଏ ଧରଣର ଉଦାହରଣର ତାତ୍ପର୍ଯ୍ୟ ଏହି ଯେ ଭ୍ରମ ଏପରି ଏକ ଅନିର୍ବଚନୀୟ ଅନିର୍ଦ୍ଦିଷ୍ଟ ପଦାର୍ଥ ସଙ୍କାର ବିପରୀତ ପଦାର୍ଥ ଯେ ଏହା ଅବସ୍ତୁକୁ ବସ୍ତୁ ରୂପରେ ପ୍ରଖ୍ୟାତ କରାଏ, ଅର୍ଥାତ୍ ଯାହା ବାସ୍ତବରେ ଯାହା ନୁହେଁ ତାକୁ ତଦ୍ରୂପ ବ୍ୟକ୍ତ କରାଏ । ଯେପରି ମୃଗତୃଷ୍ଣା ନଗରାଦି କୌଣସି ବସ୍ତୁ ନୁହେ, ତେବେ ତାହାକୁ ନଗରାକାରରେ ଯେ ଦେଖାଗଲା, ତଦ୍ରୂପ ନଗରଶୂନ୍ୟ ନଗର ଭ୍ରମାତ୍ମକ । ଏହିପରି ଦଉଡ଼ି ସର୍ପପରି ଦିଶିବାଦ୍ୱାରା ସର୍ପଶୂନ୍ୟ ଏକ ପଦାର୍ଥକୁ (ଦଉଡ଼ିକୁ) ସର୍ପ ବୋଲି ମନେକରି ଖିନ୍ନ ହେବାକୁ ହେଲା, ନଚେତ୍ ଭ୍ରମମାତ୍ର ଭିନ୍ନ ସେଠାରେ ଭୟର କାରଣ କିଛି ନାହିଁ । ଏ ସ୍ଥଳେ ଏ ଭ୍ରମାଦିର କାରଣ ଯାହା ତାହା ଥାଉ କି ହେଉ, ସେ ସବୁ ଉତ୍ଥାପନ କରିବା ଏ କ୍ଷେତ୍ରରେ ପ୍ରସଙ୍ଗାଧୀନ ନୁହେ । ତାହା ସବୁ ବିତଣ୍ଡାବାଦ ହୋଇପାରେ । ଏ ଉଦାହରଣରୁ ଏତିକି ଗ୍ରହଣ କରିବା ଉଚିତ ଯେ, ଯାହାଦ୍ୱାରା ଭ୍ରମରୂପ ପଦାର୍ଥର ସ୍ୱରୂପନଷ୍ଟପ୍ରାତ୍ମକ ଜ୍ଞାନ ଉଦିତ ହେବ, ସେତିକି ହେଲେ ଉଦ୍ଦେଶ୍ୟ ସିଦ୍ଧ ହେଲା । ବିତଣ୍ଡା ନିଷ୍ପ୍ରୟୋଜନ । ଏ ସ୍ଥଳେ ଭ୍ରମ ଯଥାର୍ଥରେ କଅଣ ଯଦି ବୁଝା ନ ଯାଏ, ତେବେ କି ବିତଣ୍ଡା, କି ବିଗ୍ରହର ଉଭୟେ ନିଷ୍ଫଳ; ପରନ୍ତୁ ବିତଣ୍ଡା ସର୍ବଦା ନିଷ୍ଫଳ । କାରଣ ବୁଝାଯାଉ ବା ନ ଯାଉ ବିଗ୍ରହର କର୍ତ୍ତବ୍ୟ; ଆଉ ବିଗ୍ରହର ବୁଝିବାର ପନ୍ଥା କିନ୍ତୁ ବିତଣ୍ଡା ନୁହେ, ତାହା କଳୀଣ୍ଡା ମାତ୍ର ।

## ୫୨ଶ ପାଠ—ଭ୍ରାନ୍ତିର ସ୍ୱରୂପ ଜାଣିବା ନିମନ୍ତେ ଦର୍ପଣ ଓ ପ୍ରତିବିମ୍ବର ଉଦାହରଣ

ମୁଖ ଦର୍ପଣରେ ଦେଖିଥାଇଁ, ମୁଖାକାର ପଦାର୍ଥ ଦର୍ପଣରେ ପ୍ରତିବିମ୍ବିତ ହୋଇ ମୁଖପରି ଦେଖାଗଲା; ମାତ୍ର ତାହା ବାସ୍ତବରେ ମୁଖ ନୁହେ ବା କୌଣସି ଭୌତିକ ପଦାର୍ଥ ନୁହେ । ଯାହାକି ଆକାରବାନ୍ ଆମ୍ଭେ ବିଶୁଦ୍ଧ ସ୍ୱଚ୍ଛ ନିର୍ମଳ ଦର୍ପଣ ମାତ୍ର ଦେଖୁଥାଇଁ ଅଥଚ ସେ ମୁଖାକାରରେ ଯେପରି ରଚିତ ପୁଣି ଏକ ନିବିଷ୍ଟ ଦୃଷ୍ଟିରେ ଗୃହିଁଲେ ଦର୍ପଣକୁ ଦେଖିଥିବାର ଲକ୍ଷ୍ୟ ତ୍ୟାଗ କରି ଯେପରି କେବଳ ମୁଖ ଦିଶୁଅଛି ଅଥଚ ଏହା ଯେପରିକି ପ୍ରତିବିମ୍ବ ନୁହେ, ଖାଲି ଠିକ୍ ଯେପରି ମୁଖ, ଏହି ରୂପେ ମଧ୍ୟ ଅନୁଭୂତ ହୋଇଥାଏ । ଏ ସ୍ଥଳେ ଏ ମୁଖାକାର ବସ୍ତୁ ମୁଖ ନୁହେ, ସୁତରାଂ ଏହାକୁ ମୁଖ ମନେ କରିବା ଭ୍ରମ । ଦୃଷ୍ଟିସଂଯୋଗ, ମୁଖ ଓ ଦର୍ପଣ—ଏ ତିନି ପଦାର୍ଥ ସମ୍ବନ୍ଧ ବିଶେଷଦ୍ୱାରା ଏ ଭ୍ରମାତ୍ମକ ମୁଖ ସତ୍ୟ ମୁଖ ବୋଲି ଜଣାଗଲା । କାରଣ ଏହିପରି ହେଉ ବା ଯାହା ହେଉ, ଏ ସବୁ ଉପେକ୍ଷା କରି ଭ୍ରମଦ୍ୱାରା ମିଥ୍ୟା ସତ୍ୟ ପରି ପ୍ରତୀତ ହୁଏ, ଏତିକି ନିଶ୍ଚୟ କରିବାକୁ ହେବ ।

## ୫୩ଶ ପାଠ—ଗଣନାଭିଜ୍ଞତାର ଉଦାହରଣ

ଅଜ୍ଞ ଲୋକ ଦଶଜଣ ନଦୀ ଭିତରେ ପଶି ପାରି ହୋଇ ଅନ୍ୟ ପାର୍ଶ୍ୱରେ ପହଞ୍ଚି ମନେ ମନେ ପାଞ୍ଚିଲେ, ଭାଇ ଏ ନଈ ତ କୁମ୍ଭୀରିଆ; କୁମ୍ଭୀର କାହାକୁ ଖାଇନାହିଁ ତ; ଆଚ୍ଛା ଗଣି ହେବା । ଯେ ଗଣନା କଲେ ସେ ଆପଣାକୁ ଛାଡ଼ି ବାକି ନଅଜଣ ଗଣିଦିଏ । ଏହିପରି ସମସ୍ତେ ଗଣି ଗଣି ସେହି ନଅଟି ଥିବା ଠିକ୍ କରି ବାକି ଗୋଟିକୁ କୁମ୍ଭୀର ଖାଇଅଛି ବୋଲି ସମସ୍ତେ କାନ୍ଦିଲେ । ଏ ସ୍ଥଳେ ଏ କ୍ରନ୍ଦନର କାରଣ କିଛି ନାହିଁ; ଭ୍ରମ ମାତ୍ର । କୁମ୍ଭୀର କାହାକୁ ଖାଇନାହିଁ । ଆଶ୍ଚର୍ଯ୍ୟର କଥା, ଏହି ଭ୍ରମର କାର୍ଯ୍ୟ ବଡ଼ ଭୟଙ୍କର, ଅଥଚ ଭ୍ରମ ହୋଇ କିଛି ନିର୍ଦ୍ଦିଷ୍ଟ ବସ୍ତୁର ଅସ୍ତିତ୍ୱ ନାହିଁ । ଏ ଯେପରି ବନ୍ଧ୍ୟା ପୁତ୍ର ବିଶ୍ୱବ୍ରହ୍ମାଣ୍ଡ ଘଡ଼କେ ଜିଣି ଆସିବା କଥା ।

## ୫୪ଶ ପାଠ—କାରଣ ଓ କାର୍ଯ୍ୟର ଅଭେଦ ସ୍ଥଳେ କାର୍ଯ୍ୟ ସମ୍ବନ୍ଧୀୟ ବିଭିନ୍ନତା

ଜଳାଶୟରେ ଫେଣ, ଫୋଟକା ଓ ଲହରୀ ପ୍ରଭୃତି ଭିନ୍ନ ଭିନ୍ନ ନାମ ଓ ରୂପବିଶିଷ୍ଟ ପଦାର୍ଥ ଦେଖାଯାଏ; ମାତ୍ର ତାହା ଜଳ ଭିନ୍ନ ଆଉ କିଛି ନୁହେ । ସୁବର୍ଣ୍ଣ ଯେପରି ନାନାବିଧ ଅଳଙ୍କାରାକାରରେ ପରିଣତ ହୋଇ ନାନା ନାମରେ କଥିତ ଓ ବିଭିନ୍ନାକାରରେ ପରିଦୃଷ୍ଟ ହେଉଥିଲେ ମଧ୍ୟ ସେ ସବୁ ସୁବର୍ଣ୍ଣ ଭିନ୍ନ ଆଉ କିଛି ନୁହେ । ତେବେ ଦେଖାଯାଉ, ଏ ସବୁକୁ ନାମ ଓ ରୂପାନୁସାରେ ସତ୍ୟ ବୋଲି ବ୍ୟବହାର କରାଯାଏ, ଏ ତ ପ୍ରତ୍ୟକ୍ଷ ଭ୍ରମ ।

## ୫୫ଶ ପାଠ—ସ୍ୱପ୍ନ ପ୍ରପଞ୍ଚ ବିଚାର

ଆମ୍ଭେ ସ୍ୱପ୍ନ ପ୍ରତିଦିନ ଦେଖୁଥାଉଁ । ପରେ ନିଦ ଭାଙ୍ଗିଗଲାରୁ ସେ ସବୁ ସ୍ୱପ୍ନ-ଦୃଷ୍ଟ ବିଷୟ ମିଥ୍ୟା ବୋଲି ହେୟ କରୁଥାଉଁ; ଅଥଚ ପୁଣି ନିଦ୍ରା ଗଲେ ସେହି ପର୍ବନିର୍ଣ୍ଣୀତ ମିଥ୍ୟା ସ୍ୱପ୍ନାବସ୍ଥାକୁ ସତ୍ୟ ବୋଲି ଜ୍ଞାନ କରୁଥାଉଁ, ଏହା ମୂର୍ତ୍ତିମାନ ଭ୍ରମ । ଏଥିରେ ଜ୍ଞାନର ପର୍ଯ୍ୟନ୍ତ କୌଣସି ସ୍ୱାଧୀନତା ନାହିଁ । ଏହିପରି ପୂର୍ବ ନିର୍ଦ୍ଧାରଣାନୁଯାୟୀ ଆତ୍ମା କେବଳ ସାକ୍ଷୀ । ସେ ଆପଣାକୁ ନ ଜାଣି ଆପଣାଠାରେ ବିରାଜିତ ଥିବା ସୁଖଦୁଃଖ ବିଜଡ଼ିତ ଅହଂକାରାତ୍ମକ ପିଣ୍ଡ-ବ୍ରହ୍ମାଣ୍ଡ ସମ୍ବନ୍ଧୀୟ ଭାବକୁ ସତ୍ୟ ଜ୍ଞାନ କରି ତହିଁରେ ତନ୍ମୟ ହୋଇଯିବା କାର୍ଯ୍ୟତଃ ଭ୍ରମ । କେତେକ ପଦାର୍ଥର ସମ୍ବନ୍ଧ ବିଶେଷରେ ଆତ୍ମାର ଏକ ଜଗଦାକାର ଦର୍ଶନ ସତ୍ୟ ବୋଲି ପ୍ରତୀତ ହେଉଅଛି । ଆଉ ମଧ୍ୟ ଆତ୍ମା ଯେତେବେଳେ ଯାହା ସହିତ ସମ୍ବନ୍ଧ କଲା ସେତେବେଳେ ତହିଁରେ ତନ୍ମୟ ହୋଇ ଆପଣାକୁ ତଦାକାର ବିଶିଷ୍ଟ, କର୍ତ୍ତା ବା ଜ୍ଞାତା ବୋଲି ନିଶ୍ଚୟ କରି ସଙ୍ଗେ ସଙ୍ଗେ ଆପଣାର ନିଜ ସ୍ୱରୂପକୁ ବିସ୍ମରଣ କରିପକାଉଅଛି । ଏହା ଏକପ୍ରକାର କ୍ରୀଡ଼ା ମଧ୍ୟ ଅଟେ ।

## ୫୬ଶ ପାଠ—କ୍ରୀଡ଼ାତ୍ମକ ମୋହ

କ୍ରୀଡ଼ା ସମୟରେ ସାଧାରଣତଃ ଦେଖାଯାଇଥାଏ ପଶା ବା ନ୍ୟାୟବଳ ପ୍ରଭୃତି ଖେଳ ଖେଳିବା ସମୟରେ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର କାଷ୍ଠ ଖଣ୍ଡର ନାମ ରାଜା, ମନ୍ତ୍ରୀ, ପାଇକ ଇତ୍ୟାଦି ଦିଆଯାଇଥାଏ । ସେ ଅନୁସାରେ ରାଜାଚିହ୍ନିତ କାଷ୍ଠ ଟିକିକ ଖେଳର ନିୟମାନୁଯାୟୀ ଆବଦ୍ଧ ଓ ଅଚଳ ହେଲେ ଖେଳ ହାର ହୁଏ । ଏହି ହାରଜିତ୍ ସକାଶେ ପାଇକମାନେ ମରୁଥାଆନ୍ତି । ଏ ମରଣରେ ଓ ଆତ୍ମରକ୍ଷାରେ ନାନାପ୍ରକାର ଚାଲ୍ ମଧ୍ୟ ଅଛି । ଏସବୁ ଚାଲ୍ ଏତେ ସାବଧାନରେ କରାଯାଉଥାଏ ଯେ ସେଥିସକାଶେ ପୁଣି ଶେଷରେ ହାରଜିତ୍ ହେଲେ ତା' ପାଇଁ କି ଭୟାନକ ଦୁଃଖ-ସୁଖାଦି ଓ ହର୍ଷ-ବିଷାଦାଦିର ଅନୁଭୂତି ଜନ୍ମେ । ସତେକି ଯେପରି ତହିଁରେ ବିଶେଷ କିଛି ହାନିଲାଭ ହୋଇଗଲା । ଖେଳ ଆମୋଦରେ କାଳହରଣ ପାଇଁ କରାଯାଏ; ଅଥଚ ଜାଣି ଶୁଣି ସେ ଆମୋଦ ପାଇଁ ଖେଳୁ ଖେଳୁ ଶେଷକୁ ତହିଁରୁ ସତ୍ୟ ସତ୍ୟ ବିଷାଦ, ସୁଖ ଦୁଃଖ ଜାତ ହୁଏ । ପୁଣି ସମୟରେ ଘୋର କଳହ, ମନାନ୍ତର, ଏପରିକି ମାରପିଟ୍ ପର୍ଯ୍ୟନ୍ତ ଘଟିଥାଏ । ଏଥିରୁ ଏତିକି ବୁଝାଗଲା, ଯେଉଁ କାଠ ଖଣ୍ଡିମାନଙ୍କୁ କଳ୍ପନାକ୍ରମେ ରାଜାଦି ନାମ ଦିଆଯାଇଅଛି ଓ କାଳ୍ପନିକ ନିୟମାଧୀନରେ ହାରିବା ଜିଣିବାର ସଂଜ୍ଞା ମାତ୍ର ନିର୍ଦ୍ଦିଷ୍ଟ କରାଯାଇଅଛି, ସେହି କଳ୍ପନାକୁ ସତ୍ୟ ମଣି ଖେଳୁ ଖେଳୁ ତାହା ଏପରି ଭ୍ରମର କାରଣ ହୁଏ ଯେ ସତ୍ୟରେ କିଛି ହାନିଲାଭ ଘଟିଲାପରି ଦୁଃଖସୁଖାଦି ପର୍ଯ୍ୟନ୍ତ ଅନୁଭବ କରିବାକୁ ହୁଏ । ଭ୍ରମର ବଳ ଏପରି ।

ପୂର୍ବ ବର୍ଣ୍ଣନାନୁସାରେ ଅଜ୍ଞାନ-ଜନିତ ଭ୍ରମର ଯେ ଆବରଣ, ବିକ୍ଷେପ ଦୁଇଟି ଶକ୍ତି ଅଛି — ତହିଁରୁ ବୁଝିବାକୁ ହେବ ଜ୍ଞାନ ଆବୃତ ହେଲା ମାତ୍ର ବିକ୍ଷେପ ଦ୍ୱାରା ପଥଭ୍ରଷ୍ଟ

ପୃଥକ ପରି ଜୀବାତ୍ମା ମାୟା ବୈକାରିକ ଜଗତର ନାନା ବିଗରେ ପରିଚାଳିତ ହେଉ-
ଅଛି । ସେ ସକାଶେ ପ୍ରକୃତିର ନାନାବିଧ ବିକାରରେ ପରିଣତ ହେବା ସ୍ୱଭାବ ମଧ୍ୟ
ସ୍ୱତଃ ନିର୍ଦ୍ଦିଷ୍ଟ ଅଛି ।

## ୫୭ଶ ପାଠ—ଆତ୍ମାର ବୈଲକ୍ଷଣ୍ୟ ଓ ଉଦାହରଣାଦିର ମୀମାଂସା

ଏ ସବୁ କାରଣରୁ ପୂର୍ବଲିଖିତ ଲୁପ୍ତପ୍ରାୟଦଶାପନ୍ନ ଏକାତ୍ମପ୍ରତିଷ୍ଠିତ ଜ୍ଞାନାକାଶଗତ ମୂର୍ତ୍ତି ଆତ୍ମା ଭ୍ରମବଶତଃ ହେଉ କିମ୍ବା ତଦୀୟ ଆତ୍ମକ୍ରୀଡ଼ା ଛଳରେ ହେଉ, ମାୟିକ ଜଗଦାକାର ଚିତ୍ର ଦେଖି ତହିଁରେ ଆକୃଷ୍ଟ-ଦୃଷ୍ଟି ହୋଇ ରହିଅଛନ୍ତି । ମାତ୍ର ଉଦାହରଣ ସଙ୍ଗେ ପ୍ରଭେଦ ଏହି ଯେ ଉଦାହରଣରେ ମନୁଷ୍ୟଠାରୁ ଉଦାହୃତ ବସ୍ତୁମାନେ ପୃଥକ୍ । କିନ୍ତୁ ଆତ୍ମା ଆପଣାଠାରେ ସତତ ସ୍ୱକୀୟ ନିର୍ମଳ ଚିଦାକାଶ ଦର୍ଶନ କରୁଅଛନ୍ତି; ଅଥଚ ସେହି ଚିଦାକାଶ ମୃଗତୃଷ୍ଣାଦ୍ୱାରା ଚିତ୍ରିତାକାଶପରି ଅବିଦ୍ୟାଜନିତ ଜଗଦାକାର ଚିତ୍ରରେ ଚିତ୍ରିତ ହେଲା ପ୍ରାୟ ଏକ ଅପୂର୍ବ ବିଶ୍ୱସଂସାର ଚିତ୍ରମୟ ଶୋଭା ଧାରଣକରି ତାଙ୍କୁ ଦର୍ଶନ ଦେଇ ମୋହିତ କରି ରଖି ନିଜାତ୍ମ ରୂପ ସ୍ମରଣ କରିବାକୁ ଅବସର ପର୍ଯ୍ୟନ୍ତ ଦେଉନାହିଁ । ସୁନ୍ଦର ନୃତ୍ୟ ଦର୍ଶନାଦିରୁ ଯେପରି ଆଖି ଫେରିବାକୁ ଇଚ୍ଛେ ନାହିଁ, ଏବଂ ଅନିମେଷରୂପେ ରହିଥାଏ ।

## ୫୮ଶ ପାଠ—ଆତ୍ମାର ସ୍ୱଭାବସିଦ୍ଧ ସର୍ବମୟତ୍ୱ ଓ ମାୟାର ତଦୁପଯୋଗିତା

ଆକାଶ ଜାତୀୟ ବସ୍ତୁମାନେ ଏକତ୍ର ମିଶି ବାରି ହୁଅନ୍ତି ନାହିଁ । ଆତ୍ମାର ଚିଦାକାଶରେ ଅଜ୍ଞାନାକାଶ ଅନାହୂତଭାବରେ (ଆକାଶରେ ସୂର୍ଯ୍ୟକିରଣ ମିଶିଥିଲା ପରି) ସମୁଦିତ ଥାଏ । ସୁତରାଂ ଆତ୍ମା ଜ୍ଞାନମୟ ଥାଇଁ ଥାଇଁ ସେହି ଅବିଦ୍ୟାକାର ଦର୍ଶନ କରନ୍ତି । ସେହି ଦର୍ଶନ ସଙ୍ଗେ ସଙ୍ଗେ ଅବିଦ୍ୟାରୁ ବାସନାଦି ସହ ଅନ୍ତଃକରଣ ସୃଷ୍ଟି ହୁଏ । ସେହି ଅନ୍ତଃକରଣ ପୁଣି ନିଜ ଧର୍ମାନୁସାରେ ଦେହ ଓ ବ୍ରହ୍ମାଣ୍ଡ ସମ୍ବନ୍ଧ ବିଶିଷ୍ଟ (କର୍ତ୍ତୃତ୍ୱ, ଭୋକ୍ତୃତ୍ୱ, ସୁଖଦୁଃଖାଦିସମନ୍ୱିତ ଏକ ପ୍ରକାର ଅଜ୍ଞାନଚିତ୍ରବିଶିଷ୍ଟ), ସୁତରାଂ ଆତ୍ମା ଚିଦାକାଶରେ ଏହି ଦେହାଦି ସଂସାର ଦର୍ଶନ କରନ୍ତି । ଆବରଣ-ଶକ୍ତି ଆତ୍ମାର ସ୍ୱକୀୟ ଜ୍ଞାନ ବିଦ୍ୟାକୁ ଆବରଣ କଲାରୁ ବିକ୍ଷେପଶକ୍ତି ଏହିପରି ଅବିଦ୍ୟାରେ ଆତ୍ମାକୁ ଜଡ଼ାଇ ତହିଁରେ କ୍ରମେ କ୍ରମେ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚିତ୍ର ଦର୍ଶାଇଦିଏ । ଅଜ୍ଞାନାକାଶଠାରୁ ଆରମ୍ଭ କରି ଭୌତିକ ଦେହ ଓ ଜଗତ ପର୍ଯ୍ୟନ୍ତ କିପରି ସୃଷ୍ଟି ହୋଇ ଆସେ ଆତ୍ମା ତାହା ଜାଣିବାର ଅବକାଶ ପାଆନ୍ତି ନାହିଁ । ମାତ୍ର ପ୍ରକୃତିର କ୍ରମବିକାର ପରିଣତ ସ୍ୱାଭାବିକ ଧର୍ମାନୁସାରେ ପ୍ରକୃତି ସେ ସମ୍ବନ୍ଧରେ ସ୍ୱୟଂ କର୍ତ୍ତ୍ରୀରୂପରେ ନିର୍ଦ୍ଦିଷ୍ଟ ଥାଇ ଏ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚିତ୍ରକୁ ସମ୍ପାଦନ କରେ ।

ଏତତ୍‌କ୍ରମରେ ଆତ୍ମା ସ୍ୱକୀୟ ଚିଦାକାଶରେ ଏହି ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚିତ୍ର ଦର୍ଶନ କରନ୍ତି । ମାତ୍ର ଅହେତୁକ ଭଗବତ୍ କୃପାରୁ ଏହି ଅଜ୍ଞାନାବରଣ ବିମୋଚିତ

ହେଲେ ଜ୍ଞାନୀ ବ୍ୟକ୍ତି ବିଶୁଦ୍ଧାକାଶକୁ ମୃଗତୃଷ୍ଣାମୟ ଦେଖି ତହିଁରେ ମୁଗ୍‌ଧ ନ ହେଲା-ପରି ଆତ୍ମା ସ୍ୱକୀୟ ବିଶୁଦ୍ଧ ଚିଦାକାଶକୁ ଅବିଦ୍ୟାକଳ୍ପିତ, ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ, ଓ ସୁଖଦୁଃଖାଦିସମନ୍ୱିତ ବିଶ୍ୱଚିତ୍ରମୟ ଦେଖି ସୁଦ୍ଧା ତହିଁରେ ବିମୁଗ୍‌ଧ ହେବାର କାରଣ ଦେଖେନାହିଁ, ଏହି ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ବିଶ୍ୱଚିତ୍ର ସମ୍ବନ୍ଧେ କାର୍ଯ୍ୟ-କାରଣଭାବେ ପ୍ରକୃତିତତ୍ତ୍ୱ ସମ୍ୟକ୍ ଅବଗତ ନ ହେଲେ ଏଥିରୁ ଆତ୍ମାକୁ ପୃଥକ୍ ସାକ୍ଷୀ ରୂପରେ ନିରୂପଣ କରିବା ଅସାଧ୍ୟ । ଏହି ହେତୁରୁ ପ୍ରକୃତିତତ୍ତ୍ୱ ସମ୍ୟକ୍ ଆଲୋଚନୀୟ । ଏ ସମ୍ବନ୍ଧରେ ପୂର୍ବରୁ କେତେକ ବର୍ଣ୍ଣନା ଦିଆ ଅଛି । ଏବେ ଆଉ ଅଳ୍ପ ଟିକିଏ ଆଲୋଚନା କରିଯାଉ ।

## ୫୯ଶ ପାଠ—ପଞ୍ଚକୋଷ ବିବେକ

ପ୍ରଥମତଃ, ପୂର୍ବେ କୁହାଯାଇଅଛି ଯେ ପଞ୍ଚଭୂତାତ୍ମକ ପରିଦୃଶ୍ୟମାନ ଏହି ବାହ୍ୟ ଜଗତ, ପଞ୍ଚଭୂତାତ୍ମକ ଦେହ ଓ ଏହି ସ୍ଥୂଳ ଦେହସ୍ଥ ଦଶେନ୍ଦ୍ରିୟ; ପଞ୍ଚପ୍ରାଣ ଏକ ମହା-ବାୟୁର ପଞ୍ଚାଙ୍ଗ, ଅନ୍ତଃକରଣ ଓ ଅନ୍ତରାକାଶ—ଏ ସମସ୍ତ ଦୃଶ୍ୟମାନ୍ ଓ ଅନୁଭବନୀୟ ପଦାର୍ଥ ମଧ୍ୟରୁ ଦେହସ୍ଥ ପଞ୍ଚଭୂତାତ୍ମକ ସ୍ଥୂଳ ଶରୀର ଏହାକୁହିଁ ଅନ୍ନମୟ କୋଷ କୁହାଯାଏ । କାରଣ, ଏ ସ୍ଥୂଳ ଦେହ ଅନ୍ନରସଦ୍ୱାରା ପୁଷ୍ଟ ଓ ଅନ୍ନରେ ରକ୍ଷିତ, ସୁତରାଂ ଅନ୍ନର ପରିମାଣ ବିଶେଷ ବୋଲି ଏହି ସ୍ଥୂଳ ଦେହ ଅନ୍ନମୟ କୋଷ ନାମରେ କଥିତ । ଦ୍ୱିତୀୟତଃ—ପଞ୍ଚପ୍ରାଣର ନାମ ଏହିପରି ପ୍ରାଣମୟ କୋଷ । ତୃତୀୟତଃ—ମନର ଅଧିଷ୍ଠାନ ଓ ଅଧିନାୟକତ୍ୱ ଦଶେନ୍ଦ୍ରିୟ ସମଷ୍ଟିରେ ବୈଷୟିକ ଜ୍ଞାନ ଓ କର୍ମ ସମ୍ପାଦିତ ହେଉଥିବାରୁ ଏ ଏଗାରଟି ସମଷ୍ଟି ନାମ ମନୋମୟ କୋଷ । ଚତୁର୍ଥତଃ—ବୁଦ୍ଧ୍ୟହଂକାର, ଚିତ୍ତାଦି କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱାଦି ଭାବ ସମଷ୍ଟିମୟ ବସ୍ତୁ ଜ୍ଞାନାତ୍ମକ ବୋଲି ତାହାର ନାମ ବିଜ୍ଞାନ-ମୟ କୋଷ । ପଞ୍ଚମରେ—ଅଜ୍ଞାନାକାଶ ବା ଅନ୍ତରାକାଶ ଆନନ୍ଦର ଆଶ୍ରୟମୟ ବସ୍ତୁ-ବିଶେଷ ବୋଲି ତାହାର ନାମ ଆନନ୍ଦମୟ କୋଷ ।

ଅନ୍ତରାକାଶ ସୁଷୁପ୍ତିଦଶାର ଅନୁଭବନୀୟ । ଏଥିରେ ସୁଖଦୁଃଖର ଅଭାବ ବୋଲି ଏହା ଆନନ୍ଦମୟ କୋଷ ନାମରେ ଅଭିହିତ ।

ଏହିରୂପେ ଅନ୍ତରାକାଶଠାରୁ ପଞ୍ଚମହାଭୂତ ପର୍ଯ୍ୟନ୍ତ ଯେତେ ପ୍ରକାର ମୌଳିକ ପଦାର୍ଥମାନଙ୍କର ସଂଖ୍ୟା ନିରୂପିତ ହେଲା, ତାହା ସବୁ ପଞ୍ଚକୋଷରେ ବିଭକ୍ତ ଅଥଚ ପୂର୍ବ ବର୍ଣ୍ଣନାନୁସାରେ କାରଣ, ସୂକ୍ଷ୍ମ ଓ ସ୍ଥୂଳାଦି ଶରୀରତ୍ରୟରେ ବିଭକ୍ତ ଅଟେ ।

## ୬୦ଶ ପାଠ—କେବଳ କାର୍ଯ୍ୟ ବା ବିକୃତ ନାମକ ଷୋଡ଼ଶ ପଦାର୍ଥର ପରିଚୟ

ଏଥିରୁ ଆମ୍ଭେ ସ୍ପଷ୍ଟ ଦେଖିପାରି ଚହିଁଥାଇ ଯେ ପଞ୍ଚଭୂତ, ଦଶଇନ୍ଦ୍ରିୟ, ଅନ୍ତଃ-କରଣ ମଧ୍ୟରୁ ମନ ଏହି ଷୋଳଗୋଟି ପଦାର୍ଥ ପରିଷ୍କାର ଜଣା ପଡ଼ୁଅଛି । ଏମାନେ କାହିଁରୁ ହୋଇଅଛନ୍ତି ? ଏମାନଙ୍କର ଉପାଦାନ କାରଣ କଣ ?

## ୭୧ଶ ପାଠ—ଏହି ଷୋଳଟିରେ ଗୁଣତ୍ରୟର ବିଭାଗ ଦର୍ଶନ

ଦେଖିବାକୁ ଗଲେ ଏ ଷୋଳଟି ପଦାର୍ଥକୁ ତିନି ପ୍ରକାରରେ ବିଭକ୍ତ କରାଯାଇ-ପାରେ । ପଞ୍ଚଭୂତ, ପାଞ୍ଚଗୋଟି କେବଳ ତାମସ ଅର୍ଥାତ୍ ଅଚଳ ନିଶ୍ଚେଷ୍ଟ ଓ ଜ୍ଞେୟମାତ୍ର । ଏଥିରେ କ୍ରିୟା ବା ଜ୍ଞାନଶକ୍ତିର ଆଭାସ ନାହିଁ । ଏପରି ଅନ୍ୟ ଦଶେନ୍ଦ୍ରିୟ ଦୁଇଭାଗରେ ବିଭକ୍ତ । କର୍ମେନ୍ଦ୍ରିୟ ପଞ୍ଚ କେବଳ କ୍ରିୟାତ୍ମକ ବା କ୍ରିୟାଶକ୍ତିସମ୍ପନ୍ନ । ତହିଁରେ ଜ୍ଞାନର ଆଭାସମାତ୍ର ନାହିଁ । ତାହା ସଚେଷ୍ଟ ଅର୍ଥାତ୍ ଭୋଗାଦିର ସହାୟକାରୀ, ଅତଏବ ତାହା ରାଜସ । ଅପର ଜ୍ଞାନେନ୍ଦ୍ରିୟ ପଞ୍ଚ ଓ ମନ ସାତ୍ତ୍ୱିକ । ତାହା ସତ୍ତ୍ୱ-ବିଶିଷ୍ଟ ବୋଲି ତହିଁରେ ଜ୍ଞାନର ଆଭାସ ଦେଖାଯାଏ । ସ୍ଥୂଳ ପଦାର୍ଥ ଇନ୍ଦ୍ରିୟଦ୍ୱାରା ଅନୁଭୂତ ହୁଏ, ମାତ୍ର ସୂକ୍ଷ୍ମ ଅଥଚ ଅତୀନ୍ଦ୍ରିୟ ବସ୍ତୁମାନେ ଅନୁମାନଦ୍ୱାରା ନିର୍ଣ୍ଣୀତ ହୁଅନ୍ତି । ଏହି ଉପରୋକ୍ତ ଷୋଳଟି ପଦାର୍ଥକୁ ଆମ୍ଭେ ତିନିପ୍ରକାର ଗୁଣବିଶିଷ୍ଟ ବୋଲି ଉପଲବ୍ଧି କରିବାରୁ ଏଥିରେ ସତ୍ତ୍ୱ, ରଜ ଓ ତମ—ଏହି ଗୁଣ ତିନିଗୋଟିର ଅସ୍ତିତ୍ୱ ଜଣାପଡ଼ିଲା । ତେବେ ଏହି ତ୍ରିଗୁଣଜଡ଼ିତ ବସ୍ତୁ ବିଶେଷ ଏ ଷୋଳଟିର ଉପାଦାନ କାରଣ । କାରଣର ଗୁଣ କାର୍ଯ୍ୟରେ ସାଧାରଣତଃ ସଂକ୍ରମଣ କରେ । ଏ ଷୋଳଟିରେ ତ୍ରିଗୁଣର ସଞ୍ଚାର ଦେଖାଯାଉଥିବାରୁ ଏହାର ଉପାଦାନ ମଧ୍ୟ ତ୍ରିଗୁଣାତ୍ମକ—ଏକ ପ୍ରକାର ବସ୍ତୁ-ବିଶେଷ ।

## ୭୨ଶ ପାଠ—ପୂର୍ବୋକ୍ତ ଷୋଳଟିର କାରଣ ବା ଉପାଦାନ ତ୍ରିଗୁଣାତ୍ମକ ପଞ୍ଚତନ୍ମାତ୍ରର ନିର୍ଣ୍ଣୟ

ଯାହା ଜ୍ଞାନାଭାସାତ୍ମକ ଏତତ୍ ସାଧକ କ୍ରିୟାତ୍ମକ, ଏବଂ କ୍ରିୟାସାଧନର ଭୂମି ପଞ୍ଚଭୂତାତ୍ମକ—ଏଥିରେ ପାଞ୍ଚପ୍ରକାରର ମାତ୍ରା ଅଛି । ଯାହା ଇନ୍ଦ୍ରିୟାନୁଭବରୁ ଅଜ୍ଞାତ ଅଥଚ ପୂର୍ବୋକ୍ତ ତ୍ରିପଞ୍ଚର କାରଣ ତାହା ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ—ଏହି ପଞ୍ଚଜ୍ଞାନାଭାସମୟ ବସ୍ତୁ ପଞ୍ଚତନ୍ମାତ୍ର । ଏହାର ସତ୍ତ୍ୱାଂଶରୁ ପଞ୍ଚଜ୍ଞାନେନ୍ଦ୍ରିୟ । ତହିଁରେ ଶବ୍ଦର ଜ୍ଞାନ, ସ୍ପର୍ଶର ଜ୍ଞାନ, ରୂପର ଜ୍ଞାନ, ରସର ଜ୍ଞାନ ଓ ଗନ୍ଧର ଜ୍ଞାନ ହୁଏ । କାରଣ ଜ୍ଞାନ ସତ୍ତ୍ୱଗୁଣର କାର୍ଯ୍ୟ, ଏହି ପଞ୍ଚତନ୍ମାତ୍ରର ରାଜସାଂଶରୁ ପଞ୍ଚକର୍ମେନ୍ଦ୍ରିୟ, ଯେହେତୁ ତାହାର ଗୁଣ, ଚେଷ୍ଟା ବା କ୍ରିୟାର ସାଧନସ୍ଥାନ ଅଟେ । ସେହି ପଞ୍ଚତନ୍ମାତ୍ରର ତାମସାଂଶରୁ ଅର୍ଥାତ୍ ଜାଡ଼୍ୟାଂଶରୁ ପଞ୍ଚଭୂତର, ଏହି ପଞ୍ଚଭୂତ, ପଞ୍ଚକର୍ମେନ୍ଦ୍ରିୟ ଓ ପଞ୍ଚଜ୍ଞାନେନ୍ଦ୍ରିୟକୁ ଦେଖି ଆଉ ଏହାକୁ କାର୍ଯ୍ୟରୂପରେ ସ୍ଥିର କରି ଏହାର ଉପାଦାନ କାରଣ ସ୍ଥିର କରିବାକୁ ଗଲେ ଦେଖାଯାଏ ଏହି ପଞ୍ଚତନ୍ମାତ୍ର ପନ୍ଦର ବା ମନ ମିଶି ଷୋଳର ଉପାଦାନ କାରଣ । ଏହି ପଞ୍ଚତନ୍ମାତ୍ର, ଜ୍ଞାନଶକ୍ତି ଓ କ୍ରିୟାଶକ୍ତି । ପୁଣି ଜ୍ଞାନ କ୍ରିୟାର ଆଧାର । ଅଥଚ ତଦିୟ ସାଧନ କ୍ଷେତ୍ରରୂପ ପଞ୍ଚ ମହାଭୂତରେ ଏ ସମସ୍ତ ପନ୍ଦରଟିର ମୂଳଭୂମି ସ୍ୱରୂପ, ଅର୍ଥାତ୍ ଏ ପନ୍ଦର ଓ ମନ ମିଶି ଷୋଳଟିର

ଉପାଦାନ ସମଷ୍ଟିଭୂତ ଏକ ପଦାର୍ଥ ବୋଲି ଯାହା ନିରୂପଣଯୋଗ୍ୟ ତାହାହିଁ ପଞ୍ଚତନ୍ମାତ୍ର ।

## ୭୩ଶ ପାଠ—ପଞ୍ଚତନ୍ମାତ୍ରର ଉପାଦାନ କାରଣ—ଅହଂକାର ତତ୍ତ୍ୱର ନିରୂପଣ

ଏ ପଞ୍ଚତନ୍ମାତ୍ରର ମୂଳ କଣ ? ଦେଖାଗଲା ଯେ ଏ ପଞ୍ଚତନ୍ମାତ୍ରରେ ଜ୍ଞାନର (ଏହି ପଞ୍ଚତନ୍ମାତ୍ର ବିବୃତିରେ 'ଜ୍ଞାନ' ଶବ୍ଦର ବ୍ୟବହାର ଅର୍ଥ ଇନ୍ଦ୍ରିୟଜନିତ ଜ୍ଞାନ) ଓ କ୍ରିୟା ଏତଦୁଭୟର ଆଧାର ଭୌତିକ ଉପାଦାନର ସତ୍ତ୍ୱ ବିଦ୍ୟମାନ ଅଛି । ତେବେ ଜ୍ଞାନର ବିକାଶ କାହିଁରୁ ? ଜ୍ଞାତୃତ୍ୱରୁ । କ୍ରିୟାର ବିକାଶ କାହିଁରୁ ? କର୍ତ୍ତୃତ୍ୱରୁ । ଏହି ଜ୍ଞାତୃତ୍ୱ ଓ କର୍ତ୍ତୃତ୍ୱର ଅଧିଷ୍ଠାନ ଭୌତିକ ସତ୍ତ୍ୱରେ ବିଦ୍ୟମାନ । ଏହା ଜ୍ଞେୟ ବା କୃତ ହେବାର ସାମଗ୍ରୀ । ତେବେ ଜ୍ଞାତୃତ୍ୱ ବା କର୍ତ୍ତୃତ୍ୱ କାହିଁରୁ ? ମୁଁ କର୍ତ୍ତା ବା ମୁଁ ଜ୍ଞାତା ଅଥବା ମୁଁ ଭୋକ୍ତା ଏତଦ୍ରୂପ ଅଭିମାନାତ୍ମକ ଅହଂକାରରୁ, ଅର୍ଥାତ୍ ଅହଂକାର ପଞ୍ଚତନ୍ମାତ୍ରର ମୂଳ । ଏତଦ୍ରୂପ ଅହଂକାରର ମୂଳ କଣ ?

## ୭୪ଶ ପାଠ —ଅହଂକାରର ମୂଳ ମହତତ୍ତ୍ୱ ଓ ମହତତ୍ତ୍ୱର ମୂଳ ଆଦ୍ୟାପ୍ରକୃତି

ଅହଂକାର, ପଞ୍ଚତନ୍ମାତ୍ର, ଦଶେନ୍ଦ୍ରିୟ, ମନ ଏବଂ ପଞ୍ଚମହାଭୂତ—ଏ ସମସ୍ତର ଔପାଦାନିକ ସମଷ୍ଟିରେ ମୁଁ ଏବଂ ମୋର ଏ ଉଭୟ ମିଶ୍ରିତାତ୍ମକ ଅର୍ଥ ଏ ସମସ୍ତର ଆଧାରଭୂତ ଓ ନିୟାମକ ଯେଉଁ ଏକମାତ୍ର ନିଶ୍ଚୟାତ୍ମକ ବା ଅଧ୍ୟବସାୟାତ୍ମକ ଜ୍ଞାନତତ୍ତ୍ୱ, ତାହାହିଁ ଅହଂକାରର ମୂଳ, ଅର୍ଥାତ୍ ଏହାର ନାମ ମହତତ୍ତ୍ୱ । ଏହି ମହତତ୍ତ୍ୱର ମୂଳ ସୃଷ୍ଟି ବିଷୟକ ଅନାଦି ବାସନା ସଂସ୍କାରାଦି ସମ୍ବଳିତ ଜୀବୋପାଧିମୟ ସର୍ବସୂକ୍ଷ୍ମତମ ଓ ସର୍ବକାର୍ଯ୍ୟକାରଣାତ୍ମକ ଏକମାତ୍ର ମୂଳଭୂମି ସ୍ୱରୂପ ମୂଳପ୍ରକୃତି । ଏହି ମୂଳପ୍ରକୃତିଠାରୁ ଆରମ୍ଭ କରି କାର୍ଯ୍ୟକାରଣଭାବେ ପଞ୍ଚମହାଭୂତ ପର୍ଯ୍ୟନ୍ତ ସମସ୍ତ ବସ୍ତୁ ସର୍ବବିଧ ଭୁବନରୂପେ ଓ ସର୍ବବିଧ ପ୍ରାଣୀଯନ୍ତ୍ରରୂପରେ ବିରାଜମାନ । ଏ ମହାଦୃଶ୍ୟର ଯେ ଜ୍ଞାତା ବା ଅଧିଷ୍ଠାତା, ସେ ସ୍ୱୟଂ ଏତଦାତ୍ମକ ଆତ୍ମପୁରୁଷ । ଏହି ପୁରୁଷ ଓ ପ୍ରକୃତି ଉଭୟେ ଏକାତ୍ମକ । ପୁରୁଷ କହିଲେଇ ପ୍ରକୃତିର ପୁରୁଷ ଓ ପ୍ରକୃତି କହିଲେଇ ପୁରୁଷର ପ୍ରକୃତି । ଏତଦୁଭୟ ଶକ୍ତି ଓ ଶକ୍ତିମାନ ରୂପରେ ଏକ ଓ ଅଭେଦ । ଶକ୍ତିକୁ ବାଦ୍ ଦେଲେ ଶକ୍ତିମାନ କେହି ନାହିଁ, ଶକ୍ତିମାନ ଅଭାବରେ ଶକ୍ତିର ସ୍ଥାନ ବା କାହିଁ ? ସୁତରାଂ ତୈଜସ ବସ୍ତୁ ଯେପରି ତେଜାଲୋକ ବିଶିଷ୍ଟ ଅର୍ଥାତ୍ ଉଭୟର ଛଡ଼ାଛଡ଼ି ନାହିଁ, ପୁରୁଷ ପ୍ରକୃତି ସେହିପରି ।

## ୭୫ଶ ପାଠ — ପ୍ରକୃତିର ଅଭାବନୀୟ ସୃଷ୍ଟିବୈଚିତ୍ର୍ୟପଟୁତା ଓ ତଦ୍ଦ୍ୱାରା ପୁରୁଷର ମୋହପାଶ ବନ୍ଧନ

ଆତ୍ମା ପୁରୁଷ ଦେଖି ଯେପରି ମୋହିତ ନ ହୋଇ ରହି ନ ପାରିବ, ସେହିପରି ଦୃଶ୍ୟମାନ କାର୍ଯ୍ୟକାରଣାତ୍ମକ ଭାବରେ ପ୍ରକୃତି, ବିଶ୍ୱସଂସାର ଓ ପ୍ରାଣୀପନ୍ତାଦି ନିର୍ମାଣ-କୌଶଳଯୁକ୍ତ ହୋଇ ଏତତ୍ ସର୍ବ ସ୍ଥୂଳ ସୂକ୍ଷ୍ମାତ୍ମକ କାର୍ଯ୍ୟକାରଣ ରୂପରେ ବିରାଜମାନ ରହିଅଛି । ପୁରୁଷ ଏକକାଳେ ପ୍ରକୃତିର ଏହି ସର୍ବମୟ କଳେବରକୁ ପ୍ରକାଶ କରି-ଅଛି । ପୁରୁଷ ଏହି ଦର୍ଶନରେ ପ୍ରକୃତିର ସ୍ୱାଶ୍ରୟବ୍ୟାମୋହକତା ଗୁଣରେ ଆକୃଷ୍ଟ ଓ ଆବଦ୍ଧ ରହି ପ୍ରକୃତିକୁ ମୋର ମୋର କରୁ କରୁ ବିଶେଷ ଅଭିନିବେଶ ସହକାରେ ଶେଷକୁ ସେହି ପ୍ରକୃତିରେ ତନ୍ମୟ ହୋଇ ଆତ୍ମବିଶୁଦ୍ଧ ଜ୍ଞାନକୁ ଭୁଲି ପ୍ରାକୃତଜ୍ଞାନରେ ଅର୍ଥାତ୍ ଦେହାଦି ଅଭିମାନରେ ଯୁକ୍ତ ହେଉଅଛି । ଏହିପରି ପୁରୁଷର ପ୍ରାକୃତିକ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ସଂସାରଜ୍ଞାନର ସୂତ୍ରପାତ ।

## ୭୭ଶ ପାଠ – ଅସଂଖ୍ୟ ଅନନ୍ତ ଜୀବ ସମଷ୍ଟ୍ୟାତ୍ମକ ଚୈତନ୍ୟ ଯେ ସେ ପରମେଶ୍ୱର ।

ଏହିପରି ନିର୍ଦ୍ଦିଷ୍ଟ ଦେହାଭିମାନବଦ୍ଧ ପୁରୁଷ ସଂଖ୍ୟା ଅସଂଖ୍ୟ ଓ ଅନନ୍ତ । ଏହା ତ ନାନାବିଧ ଦୈହିକ ଉପାଧିଭେଦରେ ପରିଲକ୍ଷିତ ହେଉଅଛି । ପୁଣି ବ୍ୟଷ୍ଟି ସମଷ୍ଟି ଭାବରେ ଅର୍ଥାତ୍ ସମୁଦାୟ ଓ ତଦଙ୍ଗୀଭୂତ ଅଂଶସମୂହର ସମଷ୍ଟି ସେହି ସମୁଦାୟ ଅଟେ । ଏପରି ହିସାବରେ ଏ ସମସ୍ତ ପୁରୁଷ ସମଷ୍ଟି ମହାପୁରୁଷରୂପେ ନିର୍ଦ୍ଦିଷ୍ଟ, ଅଥଚ ପ୍ରତ୍ୟେକ ପୁରୁଷ ତଦଙ୍ଗୀଭୂତ ଅଂଶବିଶେଷ । ପୂର୍ବ ବର୍ଣ୍ଣନାନୁସାରେ ଦେହତ୍ରୟର ସମଷ୍ଟିକୃତ ଦେହକୁ ଲକ୍ଷ୍ୟ କରାଯାଉ । ତହିଁରେ ଜ୍ଞାନାଂଶରେ ଅନ୍ତଃକରଣହିଁ ପ୍ରଧାନ । ଏହିପରି ନାନାବିଧ ଅନ୍ତଃକରଣରୂପ ଉପାଧିରେ ଉପହିତ ଆତ୍ମା ନାନାବିଧ ପୁରୁଷରୂପରେ ବିଖ୍ୟାତ ଅଟନ୍ତି—ଏହି ଅନ୍ତଃକରଣ ସମନ୍ୱିତ-ଦେହତ୍ରୟର ଆଧାରଭୂତ ପଦାର୍ଥ ଅନ୍ତରାକାଶ ବା ଅବିଦ୍ୟାପ୍ରକୃତିର ତାମସାଂଶ ଓ ସେହି ପ୍ରକୃତିର ସତ୍ତ୍ୱାଂଶ ବିଦ୍ୟା ନାମରେ ଖ୍ୟାତ ଅଟେ । ଏହିରୂପେ ବିଦ୍ୟା ଓ ଅବିଦ୍ୟା ଉଭୟ ସମଷ୍ଟିର ଆଧାର ପ୍ରକୃତି; ଅର୍ଥାତ୍ ପ୍ରକୃତି ବିଦ୍ୟା ଓ ଅବିଦ୍ୟା ଉଭୟାତ୍ମିକା । ଏହି ପ୍ରକୃତି ସର୍ବବିଧ ଅନ୍ତଃକରଣ ଓ ସର୍ବବିଧ ଦେହରୂପ ଉପାଧି ସମୂହର ସମଷ୍ଟିଭୂତ ଆଧାର ପଦାର୍ଥ ବିଶେଷ । ଏହି ପ୍ରକୃତି ଉପାଧି ଯାହାଙ୍କର ଅର୍ଥାତ୍ ଏହି ପ୍ରକୃତିରେ ଉପହିତ ଯେଉଁ ଆତ୍ମ ପୁରୁଷ, ସେ ମହାପ୍ରଭୁ ମହାପୁରୁଷ ସ୍ୱୟଂ ଭଗବାନ ପରମେଶ୍ୱର ଅଟନ୍ତି । ଏତଦୁଭୟ କାର୍ଯ୍ୟ କାରଣୋପାଧିରେ ଉପହିତ ପୁରୁଷ ଓ ମହାପୁରୁଷ ସ୍ୱରୂପତଃ ଅଭିନ୍ନ ।

## ୭୭ଶ ପାଠ—ଜୀବାତ୍ମା ଓ ପରମାତ୍ମାର ଅଭେଦସିଦ୍ଧି ବର୍ଣ୍ଣନ

ଯେପରି ଏକ ମହଦାକାଶ ଉପାଧିଭେଦରେ ଅର୍ଥାତ୍ ଗୃହରୂପ ଉପାଧିରେ ଭବନାକାଶ ଏବଂ ଗୃହ ମଧ୍ୟସ୍ଥ ବହୁ ବହୁ ଘଟରେ ଘଟାକାଶ ନାମରେ ବ୍ୟବହୃତ ହୁଏ, ତଦ୍ରୂପ ଏକ ପରଂବ୍ରହ୍ମ ପ୍ରକୃତିର ଉପାଧିରେ ପରମେଶ୍ୱର ଓ ପ୍ରକୃତି ଗର୍ଭସ୍ଥ ବହୁ ବହୁ ଅନ୍ତଃକରଣରୂପ ଉପାଧିରେ ଜୀବାତ୍ମପୁରୁଷ-ରୂପରେ ବିରାଜମାନ ।

ପରଂବ୍ରହ୍ମ ଶୁଦ୍ଧ ଆତ୍ମବୋଧ ସ୍ୱରୂପ—ଏହା ବିଶୁଦ୍ଧ ଅହଂବୋଧାକାର । ଏହା ନିରୂପାଧିକ । ପ୍ରକୃତିରୂପ ଉପାଧିରେ ଏହି ପରଂବ୍ରହ୍ମ ପ୍ରକୃତ୍ୟାତ୍ମକ ଅର୍ଥାତ୍ ସର୍ବଶକ୍ତ୍ୟାତ୍ମକ ଓ ସର୍ବକାରଣାତ୍ମକ । ଆଉ ପ୍ରକୃତିର ବୈକାରିକ ବା କାର୍ଯ୍ୟରୂପ ଅନ୍ତଃକରଣରୂପ-ଉପାଧିରେ ଏହି ପ୍ରଭୁ କର୍ତ୍ତା ବା ଅହଂଭୋକ୍ତା ଅଥବା ଜ୍ଞାତାଦି ଅଭିମାନବିଶିଷ୍ଟ ଜୀବାତ୍ମା ପୁରୁଷ ।

## ୭୮ଶ ପାଠ—ପରମେଶ୍ୱର ସଚ୍ଚିଦାନନ୍ଦ ବିଗ୍ରହ

ବିଶୁଦ୍ଧ ପରଂବ୍ରହ୍ମ ଈଶ ଓ ଜୀବରୂପ ଉପାଧିସହ ବିଭୂଷିତ ଥାଇ (ବିଶୁଦ୍ଧାକାଶ ମୃଗତୃଷ୍ଣା କଳ୍ପିତ ନଗର ଓ ଗୃହାଦି ଚିତ୍ରରେ ଚିତ୍ରିତ ପ୍ରାପ୍ତ ଦୃଶ୍ୟ ହୋଇ ସୁଶୋଭିତ ଦେଖାଗଲାପରି) ଅନିର୍ବଚନୀୟ ଓ ଅଚିନ୍ତ୍ୟ ଶୋଭା ଧାରଣ କରି ନିତ୍ୟ ଜ୍ଞାନାନନ୍ଦ ସ୍ୱରୂପରେ ବିରାଜମାନ ରହିଅଛନ୍ତି । ଏହିରୂପ ସଚ୍ଚିଦାନନ୍ଦ ମୂର୍ତ୍ତି । ସତ୍‌ର ଅର୍ଥ, ଯାହା ନିତ୍ୟ ଅର୍ଥାତ୍ କାଳାଦି ବା ଦେଶାଦି ସର୍ବପ୍ରକାର ଉପାଧିରେ ବାଧିତ ନ ହୋଇ ଏକ ଅପରିବର୍ତ୍ତନୀୟରୂପେ ସମାନ ଭାବରେ ସର୍ବଦା ବିରାଜମାନ; ଚିତ୍ ଶବ୍ଦ ଏଠାରେ କର୍ମ୍ମ ନକାଳେ ନାହିଁ, ଏହା ଚିନ୍ମୟ ଅଟନ୍ତି; ଅର୍ଥାତ୍ ପ୍ରକାଶମାନ ଜ୍ଞାନ ସ୍ୱରୂପ, ଅଥଚ ଏହି ଜ୍ଞାନ ଉପାଧି ବିରହିତ ବିଶୁଦ୍ଧାନନ୍ଦ ବିଶିଷ୍ଟ । ବିଡ଼ୟଜ୍ଞାନପରି ଶବ୍ଦ-ଜ୍ଞାନ ବା ସ୍ପର୍ଶଜ୍ଞାନ ଏହିପରି ଉପାଧିଶୂନ୍ୟ ; ଅର୍ଥାତ୍ ଯାହା ସୁଖ-ଦୁଃଖାଦି ବିଶିଷ୍ଟ ପ୍ରକାର ଜ୍ଞାନର ଅନ୍ୟତମ, ସୁତରାଂ ଆନନ୍ଦ ସ୍ୱରୂପ । ଏହିରୂପେ ଏକ ପରଂବ୍ରହ୍ମସତ୍ତ୍ୱ ଚିତ୍ତ ଓ ଆନନ୍ଦ ଅର୍ଥାତ୍ ସଚ୍ଚିଦାନନ୍ଦ ସ୍ୱରୂପ ।

ଏକା ଚନ୍ଦନରେ ଯେପରି ତିକ୍ତ, ଶୀତଳ ଓ ସୁଗନ୍ଧ ଥାଏ, ସେହିପରି ପରଂବ୍ରହ୍ମ ସଚ୍ଚିଦାନନ୍ଦ ବିଗ୍ରହମାନ ।

## ୭୯ଶ ପାଠ—ମାୟା ଓ ପରମେଶ୍ୱର, ସୂର୍ଯ୍ୟ ଓ ତଦୀୟ କିରଣପରି ଅଭିନ୍ନ ଓ ନିତ୍ୟ ।

ସୂର୍ଯ୍ୟଦେବ ସର୍ବଦା କିରଣ ବିଶିଷ୍ଟ ଥିଲାପରି ଏହି ପ୍ରଭୁ ପରଂବ୍ରହ୍ମ ସର୍ବଦା ସ୍ୱକୀୟ ମାୟାଶକ୍ତିଯୁକ୍ତ ଅଛନ୍ତି ।

ଏହି ମହାମାୟା, ପ୍ରକୃତି ନାମରେ ବିଖ୍ୟାତ, ଏହି ପ୍ରକୃତିଦେବୀ ସ୍ୱୟଂ ନାରାୟଣୀ ସନାତନୀ ବ୍ରହ୍ମରୂପା ସର୍ବମାତୃକା ଭଗବତୀରୂପା । ଏହା ସର୍ବସୃଷ୍ଟି

ସ୍ଥୂଳାତ୍ମକ ବ୍ରହ୍ମାଣ୍ଡାଦି, ପିଣ୍ଡାଦି, ସର୍ବଦେବ ଓ ସର୍ବଜୀବୋପାଧିର ସୃଷ୍ଟି, ସ୍ଥିତି ଲୟାଦିର ମୂଳଭୂମି । ଏହିଠାରେ ପୁଣି କୀଟାଦପି କୀଟାଣୁଠାରୁ ଅତି ହୀନ କ୍ଷୁଦ୍ରତମ ଜୀବ ଆମ୍ଭେ ମନୁଷ୍ୟ କେଡ଼େ ଗର୍ବ, ମୋହ, ଆଡ଼ମ୍ବର, ଆତ୍ମମ୍ଭରିତା, ଓ ସ୍ୱେଚ୍ଛାଚାରିତା ଦେଖାଇ ଏହି ପରମେଶ୍ୱରୀ ଭଗବତୀର ସଂସାରରେ କି ପ୍ରମାଦ ଘଟାଉଥାଉଁ । କ୍ଷମ୍ୟତାମ୍ ଜଗତୋଽମ୍ବିତାଃ ।

ପରଂବ୍ରହ୍ମ ସତ୍ୟଜ୍ଞାନାନନ୍ଦରୂପରେ ସଦା ବିରାଜମାନ । ଶକ୍ତିରୂପା ମହାମାୟା ତାହାଙ୍କରେ ଏପରି ଅନିର୍ବଚନୀୟଭାବରେ ବିରାଜମାନ ଅଛନ୍ତି ଯେ କାରଣରୂପରେ ସେ ପରଂବ୍ରହ୍ମ ଅଙ୍ଗରେ ଅବ୍ୟକ୍ତ ଅଥଚ କାର୍ଯ୍ୟରୂପେ ସଂସାରାଦିରୂପରେ ବ୍ୟକ୍ତ; ଏହି ବ୍ୟକ୍ତାବ୍ୟକ୍ତ ଉଭୟଭାବରେ ବିରାଜମାନ ରହି ସ୍ୱକୀୟ ସତ୍ତ୍ୱ ଓ ଅସତ୍ତ୍ୱ ଉଭୟ ପ୍ରକାରକୁ ପ୍ରମାଣ କରୁଅଛନ୍ତି । ଦେଖାଯାଉ— ଯେପରି ଅଗ୍ନି ଦେଖିଲେ ଜଣାପଡିବ ନାହିଁ ଯେ ଏଥିରେ ଦାହିକା ଶକ୍ତି ଅଛି, ସେହି ହେତୁରୁ ଅଜ୍ଞାନ ଦୋଷରେ ସୁନ୍ଦର ଦିଶିବାରୁ ପତଙ୍ଗ ଏଥିରେ ପଡ଼ିଯାଏ ଓ କ୍ରୀଡ଼ାସକ୍ତ ବାଳକ ଏ ଅଗ୍ନିକୁ ଧରିପକାଏ; ମାତ୍ର ଅଗ୍ନିର ଦାହିକା ଶକ୍ତି ଅଛି ବୋଲି ଦାହନ କ୍ରିୟା ସଂଘଟନରୁ ଜଣାପଡ଼େ—ତହିଁରେ ଖୋଟ ପୁଳାଏ ଥୋଇ ଦେଲି ମାତ୍ର ପୋଡ଼ିଯାଏ । ହାତ ପକାଇଦେଲେ ଫୋଟକା ହୁଏ, ଅଥଚ ସେହି ଭସ୍ମ ଓ ଫୋଟକାରେ ଦାହିକା ଶକ୍ତି ଥାଏ ବୋଲି ଦେଖାଯାଏ ନାହିଁ । ତେବେ ଏହି ଅଗ୍ନିରେ ଦାହିକା ଶକ୍ତି ଥାଏ ବୋଲି ଯେପରି ଦେଖିଲେ ଜଣା ନ ଯାଏ, ସେହିପରି ତଦୀୟ କାର୍ଯ୍ୟ ଭସ୍ମ ବା ଫୋଟକାରେ ଥାଏ ବୋଲି ଦେଖାଯାଏ ନାହିଁ; ଅର୍ଥାତ୍ ଏହି ଦାହିକା ଶକ୍ତି ଅଗ୍ନିରେ ଅଦୃଶ୍ୟଭାବରେ ଥାଏ । ମାତ୍ର ଅଗ୍ନିର ଅପର ଆଲୋକଶକ୍ତି ଅଗ୍ନିରେ ପରିଷ୍କାର ରୂପରେ ଥାଇ ଯେପରି ଅଗ୍ନିକୁ ସେହିପରି ଅନ୍ୟ ପଦାର୍ଥାଦିକୁ ସେମାନଙ୍କ ନିଜ ନିଜ ଆକାର ବିଶିଷ୍ଟଭାବରେ ପ୍ରକାଶ କରେ, ମାତ୍ର ପଦାର୍ଥ ନ ଥିଲେ ସେହି ଆଲୋକଶକ୍ତି ଅଗ୍ନିରେ ମିଶିଯାଇ ଯେପରି ଅଗ୍ନି ସ୍ୱୟଂ ପ୍ରକାଶମାନ ଏପରି ବୁଝା ଯାଇଥାଏ, ଏହିରୂପେ ପରଂବ୍ରହ୍ମରେ ପରମାତ୍ମା ଶକ୍ତି ଦୁଇଟି ପ୍ରକାରରେ ବିରାଜମାନ ।

## ୭୦ଶ ପାଠ—

ପ୍ରଥମତଃ ଚିତ୍‌ଶକ୍ତି ବା ବିଦ୍ୟାଶକ୍ତି, ଏହା ପ୍ରକାଶାତ୍ମକ ଆଭାବିଶିଷ୍ଟ ଥିବାରୁ ପରମେଶ୍ୱରଙ୍କୁ ତଦୀୟ ବିଶୁଦ୍ଧ ଜ୍ଞାନାନନ୍ଦ ରୂପରେ ଏବଂ ଅବିଦ୍ୟା ଓ ତତ୍କାର୍ଯ୍ୟ ସଂସାର ଦେହାଦିକୁ ଚିଦାକାରରେ ପ୍ରକାଶ କରେ; ମାତ୍ର ଅବିଦ୍ୟା ଦାହିକାପରି ପ୍ରକାଶ ସ୍ୱଭାବବିଶିଷ୍ଟ ନ ହୋଇଥିବାରୁ ଅଥଚ କେବଳ କାର୍ଯ୍ୟାତ୍ମିକା ବୋଲି ପିଣ୍ଡ-ବ୍ରହ୍ମାଣ୍ଡରୂପରେ ମାୟାର ତାମସାଂଶକୁ ପରିଣତ କରିଦିଏ । କିନ୍ତୁ ଦେଖିଲାବେଳକୁ ନା ପରଂବ୍ରହ୍ମରେ ନା କାର୍ଯ୍ୟାଦିରେ ଅର୍ଥାତ୍ ପିଣ୍ଡ-ବ୍ରହ୍ମାଣ୍ଡାଦିରେ କାହିଁରେହିଁ ଥିଲାପରି ଜଣାପଡ଼େ ନାହିଁ । ପୁଣି ଏହି ଅବିଦ୍ୟା ଓ ତତ୍କାର୍ଯ୍ୟ ଦେହସଂସାରାଦି ଅଭାବରେ ଚିତ୍ ବା ବିଦ୍ୟାଶକ୍ତି ଆଉ କାହାକୁ ପ୍ରକାଶ କରି ନିଜ ପ୍ରକାଶକତା ଗୁଣର ପରିଚୟ

ହେବ ? ସେ ସ୍ୱୟଂ ଶକ୍ତିମାନ ପରମେଶ୍ୱରଙ୍କ ଅଙ୍ଗରେ ମିଶିଯାଏ । ସେ ଅବସ୍ଥାରେ ପରଂବ୍ରହ୍ମ ଯେପରି ସ୍ୱୟଂ ଆତ୍ମତଃ ପ୍ରକାଶମାନ ଏପରି ନିଶ୍ଚୟ କରଯାଏ । ଅତଏବ ବ୍ରହ୍ମଶକ୍ତି ମାୟା କାର୍ଯ୍ୟାନୁମେୟା – କାର୍ଯ୍ୟରୁ ତାହାର ଅନୁମାନ କରାଯାଏ । ସୁତରାଂ ତାହା କାର୍ଯ୍ୟ ବିସ୍ତାରର କାରଣ ହୁଏ ବୋଲି ତାହାର ସତ୍ତା ସ୍ୱୀକାର୍ଯ୍ୟ । ପକ୍ଷାନ୍ତରେ ସେ ନା କାର୍ଯ୍ୟରେ ନା ପରଂବ୍ରହ୍ମରେ କାହିଁରେ ଥିବାର ଜଣା ନ ପଡ଼ୁଥିବାରୁ ତାହାର ଅସତ୍ତା ମଧ୍ୟ ସ୍ୱୀକାର୍ଯ୍ୟ । ଅତଏବ ଏହା ଅଘଟନ-ଘଟନା-ପଟିୟସୀ ବିଲକ୍ଷଣ ପ୍ରକାର ବିଶିଷ୍ଟ ଅଟେ । ଭଗବତି ! ପରମେଶ୍ୱରି ! ମା ଜଗଧାତ୍ରି ଆଦ୍ୟା ! ତୋଠାରେ ଶରଣ ମାତ୍ର ସାର ।

ଶକ୍ତି ଯେ ଶକ୍ତିମାନଠାରେ ଅଭେଦ ଓ ଅଜ୍ଞାତଭାବରେ ଥାଏ ତାହା କେବଳ କାର୍ଯ୍ୟବେଳେ ଜଣାପଡ଼େ । ଏହା ଲୌକିକ ବ୍ୟବହାରରେ ମଧ୍ୟ ଦେଖାଯାଏ । ଦେଖାଯାଉ ଜଣେ ଭଲ ଗାୟକ କମ୍ବା ତରବାରି ଖେଳିବା ଲୋକ ଯେତେବେଳେ ନିଷ୍କ୍ରିୟାବସ୍ଥାରେ ଥାଏ, ସେତେବେଳେ ସେ ଗାୟକ ବା ଖେଳୁଆଡ଼ ବୋଲି ଜାଣିବାର ଉପାୟ ନାହିଁ । କିନ୍ତୁ ସେ ଯେତେବେଳେ ଗାନ କରେ ବା ତରବାରି ଧରି ନାନା ପ୍ରକାର ଖେଳ କରେ, ସେତେବେଳେ ସ୍ପଷ୍ଟ ଦେଖାଯାଏ ସେ ଭଲ ଗାଇବା ଶକ୍ତିବିଶିଷ୍ଟ ବା ଭଲରୂପେ ତରବାରି ବୁଲାଇବା ଲୋକ; ଅର୍ଥାତ୍ ଗାଇବାଶକ୍ତି ବା ତରବାରି ବୁଲାଇବା ଶକ୍ତି ତାଠାରେ ସବୁବେଳେ ଅଭେଦ ଓ ଅଜ୍ଞାତ ଭାବରେ ଅଛି ।

ଉପରୋକ୍ତ ଉଦାହରଣ ମାନଙ୍କରେ—ଅଗ୍ନିରେ ଯେପରି ଦାହିକାଶକ୍ତି ଅଛି, ଅଥଚ ତାହା ବାହାରର ଅନ୍ୟ ପଦାର୍ଥ ସହିତ ଯୋଗହୋଇ ସେହି ପଦାର୍ଥକୁ ଭସ୍ମ କରି-ଦିଏ ମାତ୍ର ବ୍ରହ୍ମଶକ୍ତି ମାୟା ସବୁତକ ଯେମିତି ଆପଣାଠାରେ କାରଣ ଭାବେ ଲୁଚାଇ ରଖି-ଅଛନ୍ତି, ଅଥଚ କାର୍ଯ୍ୟବିସ୍ତାର ଆପଣାଠାରେ କରି ପୁଣି କାର୍ଯ୍ୟକାରଣାତ୍ମକ ସର୍ବବିଷୟକୁ ଆପଣାଠାରେ ବିଲୟ କରୁଅଛନ୍ତି—ଚିତ୍‌ଶକ୍ତି ସମୁଦୟ ପ୍ରକାଶ କରୁଅଛନ୍ତି ଏବଂ ଅବିଦ୍ୟାଶକ୍ତି ବିଶ୍ୱ-ବ୍ରହ୍ମାଣ୍ଡାଦି ଓ ପ୍ରାଣୀପିଣ୍ଡାଦି ସର୍ବପ୍ରକାର ସୃଷ୍ଟି ବୈଚିତ୍ର୍ୟ-ରୂପେ ଆପେ ପରିଣତ ହେଉଅଛି, ପୁଣି ସେହି ବିଚିତ୍ର ଦୃଶ୍ୟ ଆପଣାଠାରେ ସଂହରଣ କରୁଅଛି, ଏହିରୂପେ ଚିତ୍‌ଶକ୍ତି ଜ୍ଞାନରୂପରେ ଓ ଅବିଦ୍ୟାଶକ୍ତି ଜ୍ଞେୟରୂପରେ ପ୍ରକାଶିତ ଥିବାରୁ ଏକ ମାୟାରେ ଜ୍ଞାନ ଓ ଜ୍ଞେୟ ଉଭୟପ୍ରକାର ଭାବ ପରିଲକ୍ଷିତ ହେଉଅଛି । ଏ ଉଭୟ ଜ୍ଞାନାତ୍ମକ ଓ ଜ୍ଞେୟାତ୍ମକ – ଚିତ୍ ଓ ଅବିଦ୍ୟା ଏକାଧାରରେ ମାୟା ସହିତ ବିଜଡ଼ିତ ଥାଇ ପ୍ରଧାନପକ୍ଷେ ମାୟା ମାତ୍ର ଭଗବତ୍ ମହାଶକ୍ତିରୂପେ ପରମେଶ୍ୱର ସହିତ ଅଭେଦଭାବେ ବିରାଜିତ ରହିଅଛି । ଏକଇ ମାୟା ବିଦ୍ୟା ଓ ଅବିଦ୍ୟା ଉଭୟମୟୀ । ମାୟାର ସତ୍ତ୍ୱାଂଶ ବିଦ୍ୟାମୟ ଓ ରଜସ ତାମସାଂଶ ଅବିଦ୍ୟାମୟ । ଏହି ଅବିଦ୍ୟା ବା ପୂର୍ବବର୍ଣ୍ଣିତ ଅନ୍ତରାକାଶ ବା ବିଜ୍ଞାନାକାଶ ସ୍ୱକୀୟ ଶକ୍ତି ଓ ଗୁଣାନୁସାରେ ଆପଣାଠାରେ କାର୍ଯ୍ୟକାରଣକ୍ରମେ (ଦୁଧରୁ ଦହି ଓ

ଦେହରୁ ଲହୁଣୀ ହେଲପରି) ଅନ୍ତଃକରଣଠାରୁ ଆରମ୍ଭ କରି ମହାଭୂତ ପର୍ଯ୍ୟନ୍ତ ସର୍ବପ୍ରକାର ସୂକ୍ଷ୍ମ ଓ ସ୍ଥୂଳ ଭୂତମୟ ସୃଷ୍ଟି ବୈଚିତ୍ର୍ୟର ମହା ପ୍ରଦର୍ଶନୀ ଖୋଲି ଦେଇଅଛି । ଏଠାରେ ଏକ ମହାମାୟା ବିଦ୍ୟା ଓ ଅବିଦ୍ୟା ଉଭୟଶକ୍ତିବିଶିଷ୍ଟ ହୋଇ ବିଦ୍ୟା ବା ଚିତ୍‌ରୂପେ ଜ୍ଞାନରୂପା, ଓ ଅବିଦ୍ୟାରୂପେ ବିଶ୍ୱବ୍ରହ୍ମାଣ୍ଡମୟ ଚରାଚରମୂକ ମହାଜଡ଼ ରୂପରେ ଜ୍ଞେୟରୂପା ହୋଇ ବିରାଜ କରିଅଛି । ଏତଦ୍ରୂପ ମହାମାୟାଧର ଭଗବାନ୍ ହରିଙ୍କ ମହିମା ଓ ଗୁଣକୀର୍ତ୍ତନ କରିବାକୁ ଶବ୍ଦ ପରାଭୂତ ଓ ମନ ବିମ୍ଳାନ ହେଉଅଛି । ଲୌକିକ ଦୃଷ୍ଟିରେ ଓ ଯୁକ୍ତିରେ ଜ୍ଞାନ ଓ ଜ୍ଞେୟ ପଦାର୍ଥରେ ଅସମ୍ଭବ ଅର୍ଥାତ୍ ଜ୍ଞାନଠାରୁ ବା ଜ୍ଞାନବିଶିଷ୍ଟ ଜ୍ଞାନୀଠାରୁ ଜ୍ଞେୟ ସ୍ୱତଃ ପୃଥକ୍ ପଦାର୍ଥ । ଆମ୍ଭେ ଗଛଟି ଦେଖୁଥାଇଁ, ଅଥଚ ଆମ୍ଭେ ଗଛ ନୋହୁଁ । କିନ୍ତୁ ଏ ଲୌକିକ ସମ୍ଭବାସମ୍ଭବ ଯେଉଁ ମାୟିକ ଜଗତର ଆଦର୍ଶରୁ ଗ୍ରହଣ କରାଯାଇଅଛି ଓ ତଦନୁସାରେ ଯୁକ୍ତି ସ୍ଥିର ହୋଇଅଛି ସେହି ଆଦର୍ଶାନୁକରଣୀୟ ସମ୍ଭବାସମ୍ଭବ ବା ଯୁକ୍ତି ଏଠାରେ ପରାଭୂତ ଓ ମୂଲ୍ୟଶୂନ୍ୟ । ଅତଏବ ଏ ମାୟାର ନାମ ଅଘଟନ-ଘଟନ-ପଟୀୟସୀ ଓ ସର୍ବ ବୈଚିତ୍ର୍ୟର ବିଶିଷ୍ଟରୂପା । ଏ ମାୟା ଯାହାଙ୍କର ଶକ୍ତି ସେ ମହାପ୍ରଭୁଙ୍କ ରାଜ୍ୟରେ କ୍ଷୁଦ୍ର ମାନବ କିଏ ? ସେଠାରେ ଯାଚଞା ଶରଣ ଓ ଦେୟ ଦଣ୍ଡ ପ୍ରଣାମ ।

## ୭୧ଶ ପାଠ—ଶୁଦ୍ଧାତ୍ମଦର୍ଶନ ଓ ଅପରୋକ୍ଷାନୁଭୂତି

ଆତ୍ମା ସ୍ୱରୂପତଃ ଓ ସ୍ୱଭାବତଃ ନିଜାତ୍ମବୋଧ ମୂର୍ତ୍ତି । ଏହା ଇନ୍ଦ୍ରିୟ-ଜନିତ ଜ୍ଞାନପରି ନୁହେ, ବା ଅନ୍ତଃକରଣ ସମୁଦିତ ଜ୍ଞାନପରି ନୁହେ । ଅନ୍ତଃକରଣାଦିରେ ଯେତେପ୍ରକାର ଜ୍ଞାନ ଓ ଜ୍ଞାନ ସମ୍ବନ୍ଧୀୟ ସମାଲୋଚନା ହୋଇପାରେ, ଆତ୍ମଜ୍ଞାନ ସେପରି ମଧ୍ୟ ନୁହେ । ତେବେ ଏହା କିପରି ? ଏହା ନୁହେ ତାହା ନୁହେ, ଏହିପରି କ୍ରମେ ଚିନ୍ତି ଚିନ୍ତି କରି ଓ ନେତି ନେତି ଇତ୍ୟାଦି ବିଚାର କରି କରି ସର୍ବଶେଷରେ ନିରତିଶୟ ସୀମାରେ ସର୍ବସାକ୍ଷୀରୂପେ ବିଶୁଦ୍ଧ । ଜ୍ଞାନାକାରରେ ଯେଉଁ ନିଜବୋଧରୂପ 'ମୁଁ' ମାତ୍ର ପରିଶିଷ୍ଟ ରହିଅଛି ସେହି ଜ୍ଞାନରୂପ ଆତ୍ମମୂର୍ତ୍ତି ବା ମୂର୍ତ୍ତିମାନ୍ ଆତ୍ମା ପୂର୍ବ ବିଚାରାନୁସାରେ ଏବଂ ନାନାବିଧ ଶାସ୍ତ୍ରସେବା ଓ ସାଧୁସଙ୍ଗ ଜନିତ ଚର୍ଚ୍ଚାଦିରେ ବିଶେଷତଃ ଭଗବତ୍ କୃପା ବା ଆତ୍ମ ପ୍ରସାଦରେ ବହୁ ବହୁ ଅନୁଶୀଳନ ଓ ସଦା ପ୍ରଣିଧାନ ବଳରେ ଏହି ଆତ୍ମବୋଧ ସମୁଦିତ ହେବାର କଥା । ଏହା ଏହିପରି ଆତ୍ମକୃପାଦ୍ୱାରା ଅତି ସହଜ ଅଥଚ ମୁଁ ଜାଣୁଛି, ମୁଁ ଜାଣିବି, ମୁଁ ଜାଣିପାରେ—ଏଭଳି ଅହଂକାରାତ୍ମକ ଜ୍ଞାନଦ୍ୱାରା ଅତି ଅସାଧ୍ୟ । ଏହି ଆତ୍ମବୋଧ ଦେହେନ୍ଦ୍ରିୟାଦିଠାରୁ ବହୁଦୂରରେ ଅଥଚ ତତ୍ତତ୍ ଦେହେନ୍ଦ୍ରିୟାଦିର ଅତି ନିକଟରେ । ଦେଖାଯାଉ ଅନ୍ତଃକରଣରେ କେତେ କେତେ ପ୍ରକାର ଜ୍ଞାନାତ୍ମକ ଭାବ (ପାଣିରେ ଢେଉ ଫୋଟକାଦି ମୁହୂର୍ମୁହୁ ଜାତ ଓ ବିଲୟ, ପୁଣି ଜାତ ଓ ପୁଣି ବିଲୟ ହେଉଥିଲେ ସୁଦ୍ଧା ଜଳ ସେହି ଜଳା-କାରରେ ରହିଥିଲାପରି) ପୁନଃ ପୁନଃ ଉଦୟ ବିଲୟ ହେଉଥିଲେ ସୁଦ୍ଧା ଅନ୍ତଃକରଣର

ସାକ୍ଷୀ ଯେଉଁ ଶୁଦ୍ଧ ଅହଂବୋଧ ମାତ୍ର ତଦ୍ରୂପ ବିଶୁଦ୍ଧ ବୋଧାକାରରେ ବିରାଜମାନ ଅଛନ୍ତି, ସେ ସର୍ବଦା ତଦ୍ରୂପ । ପ୍ରଣିଧାନ ସହକାରେ ଶମଦମାଦି ସେବନ ବଳରେ ଏହି ଆତ୍ମବୋଧ ମୂର୍ତ୍ତି ସ୍ୱୟଂ ପ୍ରକଟିତ ହୋଇଥିବାର ପ୍ରମାଣ କରି ବିତୃଷ୍ଣ ରହିବାର ଏ ସମ୍ବନ୍ଧୀୟ ପ୍ରଧାନ ପନ୍ଥା । ଆହୁରି ଦେଖାଯାଉ ନାନାବିଧ ବୈଷୟିକ ଜ୍ଞାନ କଲ୍ଲୋଳରେ ଅନ୍ତଃକରଣ ସର୍ବଦା ଚକ୍ରବତ୍ ଭ୍ରାମ୍ୟମାନ ହେଉଅଛି । ଏରୂପ ଅନ୍ତଃକରଣ ସଙ୍ଗେ ସଙ୍ଗେ ଦେହ ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟାଦି ଦଶାରେ ପରିବର୍ତ୍ତନ କରୁଅଛି । ଏମନ୍ତ କି ଅନ୍ତଃକରଣର ପରିଣାମ ବିଶେଷ ଦ୍ୱାରା ଆଜର ମୂର୍ଖ କାଲି ପଣ୍ଡିତ ହେଉଅଛି । ଆଜର କଦାଚାରୀ କାଲି ସାଧୁ ମହାତ୍ମା ହେଉଅଛି । ଅନ୍ୟର ବାଲ୍ୟାବସ୍ଥାର ଦେହକୁ ଦେଖିଥିବା ଅପର ଲୋକ ବହୁଦିନ ଅସାକ୍ଷାତ୍ ପରେ ଯୌବନାଦି ଅବସ୍ଥାବେଳରେ ସେହି ଲୋକକୁ ଦେଖିଲେ ଚିହ୍ନି ପାରୁନାହିଁ । ଆଜର କଦାଚାରୀ କିଛିଦିନ ପରେ ତପସ୍ୱୀ ହୋଇଯିବା ମଧ୍ୟ ସେହିଭଳି ଚିହ୍ନିବାରୁ ଅଜ୍ଞାତ । ତେବେ ଏହିପରି ଦୈହିକ ବା ମାନସିକ ପରିବର୍ତ୍ତନ ଯାହାର ଘଟୁଛି ସେ ଆପଣାକୁ ତଦ୍ରୂପ ଦୈହିକ ବା ମାନସ ପରିବର୍ତ୍ତନଶୀଳ ବୋଲି ଜାଣୁଥିଲେ ସୁଦ୍ଧା ତଦୀୟ 'ମୁଁ ବୋଧାତ୍ମକ' ବିଶୁଦ୍ଧ ଆତ୍ମବୋଧର କିଛି ପରିବର୍ତ୍ତନ ପରିଲକ୍ଷିତ ହେଉନାହିଁ । ଅର୍ଥାତ୍ ସେ ଆତ୍ମରୂପେ ଦେଖୁଅଛି ଯେ, ମୁଁ ବାଲ୍ୟ ଯୌବନାଦି ଅବସ୍ଥାର ପରିବର୍ତ୍ତନ ଦେଖୁଅଛି, ମାତ୍ର କି ସୂତ୍ରରେ ତାହା ସଂଘଟିତ ହେଉଅଛି ଜାଣିପାରୁନାହିଁ ଏବଂ ମୁଁ ସ୍ୱପ୍ନ ଜାଗରଣାଦି ଦଶାରେ ଅନ୍ତଃକରଣାଦିର ନାନାବିଧ ପରିବର୍ତ୍ତନଲୀଳା କ୍ଷଣକୁ କ୍ଷଣ ଦେଖୁଅଛି ଅଥଚ ତଦ୍ରୂପ ଦେହାଦି ଓ ଅନ୍ତଃକରଣାଦି ସେହିପରି ପରିବର୍ତ୍ତିତ ହେଉଥିଲେ ମଧ୍ୟ ମୁଁ 'ଯେ ମୁଁ', 'ସେଇ ମୁଁ' ରୂପେ ଅପରିବର୍ତ୍ତମାୟ ଆତ୍ମବୋଧ ମୂର୍ତ୍ତି ଧରି ବିରାଜମାନ ରହିଅଛି ।

ପରିଷ୍କାର ରୂପେ ଦେଖିବାକୁ ଗଲେ ଏହି ଆତ୍ମବୋଧ ମୂର୍ତ୍ତି ସର୍ବ ଦେହାଦିର, ଅବସ୍ଥାଦିର ଓ ଜ୍ଞାନାଜ୍ଞାନାଦିର ସାକ୍ଷୀ ରୂପରେ ବିରାଜମାନ ଅଛି ବୋଲି ଆପଣାକୁ ଉପଲବ୍‌ଧି କରୁଅଛି । ଏବେ ଦେଖାଗଲା, ଆତ୍ମା ଅସଙ୍ଗ ଅପରିବର୍ତ୍ତମାୟ ଓ ସର୍ବଦା ଏକବୋଧାକାର ରୂପ । ପୂର୍ବ ବର୍ଣ୍ଣନାନୁଯାୟୀ ଅବିଦ୍ୟାଠାରୁ ଆରମ୍ଭ କରି କ୍ରମେ ମହାଭୂତ ପର୍ଯ୍ୟନ୍ତ ସମସ୍ତ ବସ୍ତୁ ଜ୍ଞେୟ ଓ ଜ୍ଞାନଶୂନ୍ୟ । ଦେଖିବାକୁ ଗଲେ ଆତ୍ମା ତ ଆତ୍ମରୂପେ ନିଜବୋଧାକାରରେ ସଦା ବିରାଜମାନ । ଆଉ ଅବିଦ୍ୟାଠାରୁ ମହାଭୂତ ପର୍ଯ୍ୟନ୍ତ ସମୁଦାୟ ବସ୍ତୁ ଜ୍ଞାନଶୂନ୍ୟ ଜଡ଼ ପ୍ରାୟ ପଡ଼ି ରହିଅଛି; ତେବେ ମୁଁ ଦୁଃଖୀ, ମୁଁ ସୁଖୀ, ମୁଁ ଜ୍ଞାନୀ ବା ମୁଁ ଅଜ୍ଞ ଇତ୍ୟାଦି ଇତ୍ୟାଦି ସଂସାରୀୟ ମାୟିକ ଜ୍ଞାନ କାହୁଁ ଆସିଲା ? ସଜାତୀୟ ବା ବିଜାତୀୟ ପଦାର୍ଥମାନଙ୍କର ପରସ୍ପର ସାନ୍ନିଧ୍ୟ, ସମ୍ବନ୍ଧ ବା ସଂମିଶ୍ରଣରେ ଏପରି ନୂତନ ନୂତନ ପଦାର୍ଥର ସୃଷ୍ଟି ହୋଇପଡ଼େ ଯେ ତାହା ଦେଖି ଭାବିଲେ ସେସବୁ ସଂପୂର୍ଣ୍ଣ ନୂତନ ବସ୍ତୁପରି ବୋଧହୁଏ । କି କି ଉପାଦାନରୁ ବା କି କି ପ୍ରକାରରେ ସେହି

ସେହି ନୂତନ ବସ୍ତୁ ପରିଦୃଷ୍ଟ ହେଲା ଏହା ଭାବି ଚମତ୍କୃତ ହେବାକୁ ହୁଏ । ପଦାର୍ଥ-ମାନଙ୍କର ଏହା ନିତ୍ୟ ଧର୍ମ ବା ସ୍ୱଭାବ ।

ଏହି ଧର୍ମ ବା ସ୍ୱଭାବାଧୀନରେ ଆତ୍ମାର ମୁଁ ସୁଖୀ, ମୁଁ ଦୁଃଖୀ ଇତ୍ୟାଦି ଜ୍ଞାନ ହେଉଅଛି, ଅର୍ଥାତ୍ ଆତ୍ମା ଓ ଅବିଦ୍ୟାର ସମ୍ବନ୍ଧରୁ ଅବିଦ୍ୟା – ଅନ୍ତଃକରଣ ଇନ୍ଦ୍ରିୟ ଓ ଦେହାଦି ସମନ୍ୱିତ ଜଗଦାକାର ମୂର୍ତ୍ତି ଧାରଣ କରିଅଛି ଏବଂ ଏତଦ୍ଦର୍ଶନରେ ନିର୍ବିକଳ୍ପ ଆତ୍ମାର ସବିକଳ୍ପକ ଜ୍ଞାନ ସୁଖଦୁଃଖାଦି ଭ୍ରମ ଜାତ ହେଉଅଛି । ଯେପରି ମୁଖ ଓ ଦର୍ପଣର ସାନ୍ନିଧିରୁ ପ୍ରତିବିମ୍ବର ପ୍ରତୀତି, ବିଶାଳ ମରୁଭୂମି, – ସୂର୍ଯ୍ୟ ଉତ୍ତାପ—ଉତ୍ତପ୍ତ ତରଳ ବାୟୁ ଓ ଦୂରସ୍ଥ ନଗରାଦିର ସମ୍ବନ୍ଧରୁ ମୃଗତୃଷ୍ଣା ବା ମରୀଚିକାର ଦର୍ଶନ ।

ପ୍ରତିବିମ୍ବ ନା ମୁଖ ନା ଦର୍ପଣ—ଦର୍ପଣ ଓ ମୁଖ ଭିନ୍ନ ସେଠାରେ ଆଉ କିଛି ନାହିଁ, ଏ ଦୁଇଟି ନିର୍ଦ୍ଦିଷ୍ଟ ବସ୍ତୁ । ତେବେ ପ୍ରତିବିମ୍ବ ଗୋଟିଏ ତୃତୀୟ ଦୃଶ୍ୟ ; ଅଥଚ ଦେଖାଗଲା ମୃଗତୃଷ୍ଣା—ନା ମରୁଭୂମି,—ନା ସୂର୍ଯ୍ୟକିରଣ, – ନା ବାୟୁ, – ନା ନଗରାଦି ଏହି ଚାରିଟି ଅଥଚ ନିର୍ଦ୍ଦିଷ୍ଟ ବସ୍ତୁ, ତେବେ ମୃଗତୃଷ୍ଣା ଗୋଟିଏ ଅନ୍ୟତମ ନୂତନ ଦୃଶ୍ୟ ଏମାନଙ୍କ ସମ୍ବନ୍ଧରୁ ପ୍ରକଟିତ ହେଲା । ଏହିପରି ଭଗବାନ ହରି ମାୟାଶକ୍ତି ସହିତ ଅଭେଦ ଓ ଏକ ପରଂବ୍ରହ୍ମ ସ୍ୱରୂପ; ଅଥଚ ମାୟିକ ସମ୍ବନ୍ଧରୁ ଚିତ୍ ବା ବିଦ୍ୟା ଓ ଅବିଦ୍ୟା; ଏହି ଚିତ୍‌ଶକ୍ତି ସମଷ୍ଟିରେ ସ୍ୱୟଂ ପରଂବ୍ରହ୍ମ – ପରମେଶ୍ୱର ସ୍ୱରୂପ ଓ ବ୍ୟଷ୍ଟିରେ ନାନାବିଧ ଦେବରୂପ ଓ ଅବିଦ୍ୟା ସମଷ୍ଟିରେ ସୃଷ୍ଟିକାରକ ଦେବାଦିରୂପ ଓ ଅବିଦ୍ୟା ବ୍ୟଷ୍ଟିରେ ସୃଷ୍ଟ ନାନାଦି ଜୀବରୂପ ହୋଇ ଏକ ଅପୂର୍ବ ଲୀଳାମୟ ବିଶ୍ୱମୂର୍ତ୍ତି ଧାରଣ କରି ନିତ୍ୟ ବିରାଜମାନ ରହିଅଛନ୍ତି । ଏ ସମୁଦାୟ ସୂକ୍ଷ୍ମ ସ୍ଥୂଳାତ୍ମକ ବିଶ୍ୱବ୍ରହ୍ମାଣ୍ଡ ସେହି ବିରାଟ ଅଙ୍ଗରେ ମୃଗତୃଷ୍ଣା ବା ପ୍ରତିବିମ୍ବାକାର ଦୃଶ୍ୟ ରୂପରେ ଶୋଭା ପାଉଅଛି । ଓଁ ନମୋ ଭଗବତେ ବାସୁଦେବାୟ ।

## ୨୨ଶ ପାଠ—ଜୀବାତ୍ମାର ଦେହ-ସଂସାର କଳ୍ପନା ଓ ଆସକ୍ତି

ଏହି ଜୀବାତ୍ମା ଏକକାଳେ ଚିଦାକାଶ, ଅନ୍ତରାକାଶ, ଅନ୍ତଃକରଣ, ଦଶେନ୍ଦ୍ରିୟ, ଶରୀର ଏବଂ ପଞ୍ଚ ମହାଭୂତ ପଞ୍ଚଭୂତାତ୍ମକ-ବ୍ରହ୍ମାଣ୍ଡ ସମୁଦୟ ଭେଦକରି ଓ ସମୁଦୟର ସମ୍ବନ୍ଧରୁ ପରିଭ୍ରାନ୍ତ ରୂପରେ ସୁଖଦୁଃଖାଦି ଭୋଗରେ ଅଭିଭୂତ ହୋଇ ସଂସାରୀ ପଦବାଚ୍ୟ ହୋଇଅଛି । ଏହି ଜୀବାତ୍ମାର ଜୈବ ଚିଚ୍ଛକ୍ତି ଚିଦାକାଶରେ, ଅନ୍ତଃକରଣାଦି ସୂକ୍ଷ୍ମେନ୍ଦ୍ରିୟ ଅନ୍ତରାକାଶରେ, ସ୍ଥୂଳେନ୍ଦ୍ରିୟ ସମନ୍ୱିତ ଦେହ ପଞ୍ଚଭୂତାତ୍ମକ ବ୍ରହ୍ମାଣ୍ଡରେ ଆଶ୍ରୟ ଗ୍ରହଣ କରି ରହିଅଛି । ଏ ସବୁର ମିଶ୍ର ସମ୍ବନ୍ଧ ହିଁ ଜୀବାତ୍ମାର ସଂସାର ଓ ଏଇ ସଂସାର ଉପଲକ୍ଷରେ ଆତ୍ମା ଜୀବୋପାଧି ଧାରଣ ପୂର୍ବକ ସଂସାରୀ ପଦବାଚ୍ୟ ହୋଇ ମାତୃ, ପିତୃ, ପୁତ୍ର, କଳତ୍ର, ବନ୍ଧୁବାନ୍ଧବ ଓ ଶତ୍ରୁ ମିତ୍ରାଦି ସମ୍ବନ୍ଧମୟ ସଂସାରରେ କ୍ରୀଡ଼ାଚ୍ଛଳରେ ନୃତ୍ୟ

କରୁଅଛୁ ଓ ସେହି ନୃତ୍ୟ ସୁଖ ଦୁଃଖ, ମୋହ ଓ ଜ୍ଞାନାଜ୍ଞାନାଦି ନାନାବିଧ ଭାବମୟ ଦୃଶ୍ୟରେ ରଞ୍ଜିତ ହୋଇ ଆବଦ୍ଧ କରି ରଖିଅଛୁ । ଅଜ୍ଞାନାତ୍ମକ ଭ୍ରମ ବିଶେଷ ଏହି କ୍ରୀଡ଼ାମୟ ସଂସାରରେ ଦୁଃଖତାପାଦିର କାରଣ ହୋଇଅଛୁ । ମନେକର ଗୋଟିଏ ଲୋକ ଜଳକ୍ରୀଡ଼ା କରିବାକୁ ଗଙ୍ଗାରେ ପ୍ରବେଶ କଲା । ଦପଦପିଆ ବଡ଼ ଖରାରେ ସେ ଗଙ୍ଗା ମଧ୍ୟରେ ବହୁକ୍ଷଣ ଠିଆହୋଇଅଛି । ତାକୁ ବୁଡ଼ାବୁଡ଼ି ଜଣାନାହିଁ, ମନେକରୁଛି ବୁଡ଼ିଗଲେ କାଳେ ଉଠି ନ ପାରି ମରିଯିବ । ତାହାର ମୁଣ୍ଡ ଖରାରେ ଉତ୍ତପ୍ତ ହୋଇ କଷ୍ଟ ହେବାରୁ ସେ କାନ୍ଦୁଛି । ଜଣେ ବିଜ୍ଞ ଲୋକ କ୍ରନ୍ଦନର କାରଣ ପଚାରିବାରୁ ଖରାରେ ତାର ମୁଣ୍ଡ ପୋଡ଼ିଗଲା ପରି ହୋଇ ତାକୁ କଷ୍ଟ ହେଉଛି ବୋଲି ସେ କହିଲା । ବିଜ୍ଞ ଲୋକଟି କହିଲେ, "ତୁ ଗଙ୍ଗା ଗର୍ଭରେ ଅଥଚ ଅଜ୍ଞତା ଦୋଷରୁ ପୋଡ଼ି ମରୁଚୁ । ମୁଁ ଠିଆ ହୋଇଛି, ପରିଏ ନାହିଁ । ତୁ ଥରେ ବୁଡ଼ପଡ଼, ପୁଣି ଉଠିବୁ, ଏହିପରି ପୁଣି ବୁଡ଼ିବୁ, ମହା ଆନନ୍ଦରେ ଜଳକ୍ରୀଡ଼ା ସାଙ୍ଗ ହେବ ।" ସେ ସେହିପରି କରି ତାପରୁ ରକ୍ଷାପାଇଲା ଓ ସେ କଷ୍ଟ ତାର କ୍ରୀଡ଼ାରେ ପରିଣତ ହେଲା । ଠିକ୍ ଏହିପରି ଏ ଜୀବାତ୍ମା ଚିଦାକାଶମୟ ଜ୍ଞାନଗଙ୍ଗା ମଧ୍ୟରେ ଅଛି, ଅଥଚ ଅବିଦ୍ୟାକଳ୍ପିତ ଅନ୍ତଃକରଣ ଓ ଇନ୍ଦ୍ରିୟାଦିସମନ୍ୱିତ ଦେହ ଓ ସଂସାର ଏତତ୍ ସମ୍ବନ୍ଧୀୟ ଦୁଃଖସୁଖମୋହାଦି ତାପରେ ପରିତାପିତ ହୋଇ ସର୍ବଦା କ୍ରନ୍ଦନ କରୁଅଛି । ତେଣୁ ଗଙ୍ଗାରେ ଥାଇଁ ଥାଇଁ ବୁଡ଼ି ଜାଣିବା ଶିଖି ନ ଥିବାରୁ ଏହି କ୍ରୀଡ଼ାମୟ ଜଗତ୍ ସଂସାର ତାପର କାରଣ ହୋଇଅଛି । ଅଜ୍ଞତାର ଫଳ ଏହିପରି ।

ଏ ପର୍ଯ୍ୟନ୍ତ ଯେତେଦୂର ଆଲୋଚନା କରାଗଲାଣି, ସେ ସମସ୍ତ ବିଷୟର ବିବରଣମାନ ପୁଷ୍ପଗୁଡ଼ିଏ ଗୋଟି ଗୋଟି କରି ଏକତ୍ରେ ଗୋଟିଏ ମାଳା ପ୍ରସ୍ତୁତ କରି ଦେଖିଲା ପରି ଏକତ୍ରେ ସମଷ୍ଟି ଆକାରରେ ପରିଦର୍ଶନ କରି ବର୍ତ୍ତମାନ ଦେଖାଯାଉ ଯେ ଆତ୍ମା ଜୀବୋପାଧିକ ଶରୀରତ୍ରୟ ଅର୍ଥାତ୍ କାରଣ, ସୂକ୍ଷ୍ମ ଓ ସ୍ଥୂଳ ଶରୀରରେ ଏପରି ଆବଦ୍ଧ ଯେ ଏହି ଶରୀର ତ୍ରୟ ସୁଷୁପ୍ତି, ସ୍ୱପ୍ନ ଓ ଜାଗରଣ ଦଶାପନ୍ନ ଭୋଗାଦିରେ ଆତ୍ମାକୁ ଧରି ରଖିଅଛି । ଆତ୍ମଦେବ ଲୀଳା ଦର୍ଶନରେ ବିମୋହିତ ହୋଇଗଲା ପରେ ଏହି ଦଶାତ୍ରୟ ଭୋଗ କରିବାକୁ ବାଧ୍ୟ । ମୃଗତୃଷ୍ଣାକୁ ମିଥ୍ୟା ବୋଲି ଜାଣିଥିବା ଦ୍ରଷ୍ଟାକୁ ମଧ୍ୟ ସେହି ମୃଗତୃଷ୍ଣା ଦର୍ଶନ ଦେବାରୁ ଛାଡ଼ୁଏ ନାହିଁ । ସେହି ଦୃଶ୍ୟରେ ଭୟଙ୍କର ବା ମୋହକର ଦୃଶ୍ୟ ଦେଖିଲେ ଟିକିଏ ହେଲେ ବିହ୍ୱଳିତ ହୋଇ ଯିବାକୁ ପଡ଼ିଥାଏ । ସ୍ୱପ୍ନକୁ ବାରମ୍ବାର ମିଥ୍ୟା ବୋଲି ନିଶ୍ଚୟ କରିଥିଲେ ମଧ୍ୟ ତଦ୍ଦଶାରେ ବାଧ୍ୟ ହୋଇ ମୁଗ୍ଧ ହେବାକୁ ହୋଇଥାଏ । ଏହା ମାୟିକ ଦର୍ଶନର ବ୍ୟାମୋହକତାର ବିଶିଷ୍ଟତା ।

ଏଥିଯୋଗୁଁ ମୂଢ଼ର ତ କଥାହିଁ ନାହିଁ, ଜ୍ଞାନୀ ପକ୍ଷରେ ମଧ୍ୟ ଭାବିବାକୁ ହୁଏ ଯେ ଏ ମାୟା ସଂସାର ଯେପରି ସେପରି ଖାମଖିଆଲି କ୍ରୀଡ଼ାଭୂମି ନୁହେ । ଏ ବଡ଼ ଶକ୍ତ ପରୀକ୍ଷାର ସ୍ଥଳ । ଏଥିରେ ଆତ୍ମ୍ୟଶାଠ୍ୟ, ବିଳାସିତାଦିର ଦାସତ୍ୱ ସ୍ୱୀକାର

ପୂର୍ବକ "ସବୁ ବ୍ରହ୍ମମୟ, କର୍ତ୍ତବ୍ୟାକର୍ତ୍ତବ୍ୟ ବା ଧର୍ମାଧର୍ମାଦି କଣ ଅଛି ?" ଅଥବା ଜଡ଼ବାଦିତାର ଅଜ୍ଞାନ ମୋହ କବଳରେ ପଡ଼ି ସ୍ୱେଚ୍ଛାଚାରିତା ଓ ଆତ୍ମମ୍ଭରିତାଦି କୁପ୍ରବୃତ୍ତିର ବଶବର୍ତ୍ତୀ ହୋଇ "ମରିଗଲେ ମାଟି ତ ମାଟିରେ ମିଶିଯିବ, ଅତଏବ ସୁଖ-ଭୋଗହିଁ ସାର" ବୋଲି କହି ଯାହା ଇଚ୍ଛା ତାହା କରିଗଲେ ପାପଭାରରେ ଦେହିବା ଭୋଗ ବଡ଼ି କଷ୍ଟ ଦେବାପରି ଭୟଙ୍କର ଦୁର୍ଗତିରେ ପଡ଼ିବାର କଥା । ପୁଣି ମନୁଷ୍ୟ ପ୍ରାଣରକ୍ଷା ବା ସୁଖଶାନ୍ତିର ଚିରକାଳ ରକ୍ଷାପାଇଁ କେତେ ଧନ ଅର୍ଜନକରି ଥୋଇଲେ ମଧ୍ୟ ତହିଁରେ ତାହାର ମନବୋଧ ନ ହୋଇ ପୁଣି ପୁଣି ଅଧିକ ଧନ ସଞ୍ଚୟ ଚେଷ୍ଟା ଲାଗିରହିଅଛି । ମାତ୍ର ଏହି ଦେହ ଅନ୍ତେ କାଳ ମୁଁ କଣ ହେବି ? କିପରି ଦେହ ମୋତେ ମିଳିବ କି ନା ? ସୁଖ ଦୁଃଖାଦି ସମ୍ବନ୍ଧରେ ବ୍ୟବସ୍ଥା ବା କଅଣ ? ଐହିକ ଧନ ସମ୍ପତ୍ତ୍ୟାଦି ତ ଏହିଠାରେ, ଦେହ ତ ମାଟିରେ ମାଟି ହେବ, ମୋର ଗତି ମୁଁ ଠିକଏ ଠିକ କରେଁ, ଏସବୁ କିଛି ଭାବୁନାହିଁ । ଯେ ସବୁ ପରୀକ୍ଷା ମନ୍ଦିରକୁ ଯିବା ସମ୍ବନ୍ଧେ ମୂଳରୁ ପଥଭ୍ରମର ବ୍ୟବସ୍ଥା, ଏବେ ପ୍ରକୃତ ଚିନ୍ତା ଭୂମିରେ ପଡ଼ିଅଛିଲେ ଭାବିବାକୁ ହେବ ଆତ୍ମା ସ୍ୱରୂପତଃ ମୁକ୍ତ ବା ବନ୍ଧନରୁ ଅତୀତ ହେଲେ ସୁଦ୍ଧା କ୍ରୀଡ଼ାଚ୍ଛଳରେ ମାୟିକ ଲୀଳାକୁ ଦେଖି ଦେଖି ତହିଁରେ ବିମୁଗ୍‌ଧ ହୋଇ ମାୟିକ ସୁଖଦୁଃଖାଦିର ଗ୍ରସ୍ତାକୁ ଦେଖି ଡରି ମରୁଅଛି, ତେବେ ଏହା ନିଶ୍ଚୟ ବଡ଼ ଶକ୍ତ ପରୀକ୍ଷାର କେନ୍ଦ୍ରସ୍ଥଳ । ଏ ସକାଶ ଏ ଜୀବାତ୍ମାର ସାତ୍ତ୍ୱିକ-ଭାବାପନ୍ନ କ୍ରୀଡ଼ାଚରଣ କରିବା କର୍ତ୍ତବ୍ୟ । ତାହା କିପରି ? ଯୁକ୍ତି ଓ ବିବେକ ଦ୍ୱାରା ନିଶ୍ଚିତ ହେଲା ଯେ ଆତ୍ମାର ଏ ସଂସାର ଯାହା ଦର୍ଶନ ଅଳୀକ, ତଥାଚ ସ୍ୱପ୍ନ-କାଳୀନ କ୍ରନ୍ଦନପରି ସୁଖଦୁଃଖାଦିର ତ ବିରାମ ନାହିଁ । ଅତଏବ ମାୟାର କାରଣ, ଅଥଚ ମାୟିକ ଦେହାଦି, ଅବସ୍ଥାଦି ଓ ତଦ୍ଦ୍ୱାରା ରଚିତ ସୁଖଦୁଃଖାଦି ଅନୁଭବମୟ ସର୍ବସଂସାରର କାରଣ ଅର୍ଥାତ୍ ସର୍ବକାରଣର କାରଣସ୍ୱରୂପ ମାୟାଧୀଶ୍ୱର ପରମେଶ୍ୱରଙ୍କୁ ଉପାସ୍ୟ ମହାପ୍ରଭୁ ବୋଲି ସ୍ଥିର କରି ତତ୍‌ସମ୍ବନ୍ଧୀୟ ଉପାସନା କ୍ଷେତ୍ରରେ ଉପସ୍ଥିତ ହୋଇ ସେ ସ୍ଥାନର ଲୀଳା ପରିଦର୍ଶନ କରିବାକୁ ପ୍ରଭୁଙ୍କଠାରେ ଶରଣାପନ୍ନ ହେବା ଏହି ଉପାସନା ଯୋଗାଦିର ସାପେକ୍ଷ ।

## ୭୩ଶ ପାଠ—ସଂସାର କଳ୍ପନାରୁ ମୁକ୍ତ ଲଭିବାର ଉପାୟ ସ୍ୱରୂପ ଯୋଗାଶ୍ରୟ ବର୍ଣ୍ଣନା

ଯୋଗ ତିନି ପ୍ରକାର—ଜ୍ଞାନଯୋଗ, ଭକ୍ତିଯୋଗ ଓ କ୍ରିୟାଯୋଗ । ଏହି ଯୋଗତ୍ରୟ ଗୋଟି ଗୋଟିକିଆ ହୋଇ ପରସ୍ପର ପୃଥକ୍ ନୁହନ୍ତି । ଏକ ଯୋଗ ଶବ୍ଦ-ବାଚ୍ୟ ପଦାର୍ଥର ଏ ତିନିହେଁ ତିନିଗୋଟି ଅଙ୍ଗ ମାତ୍ର । ଯୋଗାବଲମ୍ବନରେ ଏହି ଯୋଗ-ତ୍ରୟ ଏକ ସମୟରେ ସହାୟତା କରିଥାଆନ୍ତି । ଜ୍ଞାନଯୋଗର ଅର୍ଥ ଆତ୍ମାନାତ୍ମ ବିବେକ ଦ୍ୱାରା ଜୀବାତ୍ମାର ପରମାତ୍ମା ସହିତ ଯୋଗ ବା ଐକ୍ୟ ପ୍ରତିପାଦନ । ଭକ୍ତିଯୋଗର ଅର୍ଥ ଭଜିବାର ଅର୍ଥାତ୍ ପୂର୍ବବର୍ଣ୍ଣିତ ପ୍ରକୃତିତତ୍ତ୍ୱ ସଂଖ୍ୟାନୁସାରେ ସେହି ସେହି ତତ୍ତ୍ୱର

ପରିମିତ ଅଂଶ ସମଷ୍ଟିରେ ଜୀବାତ୍ମାର ଯେଉଁ ଔପାଧିକ ଦେହତ୍ରୟ ନିର୍ମିତ, ସେହି ଦେହସ୍ଥ ଯଥାଯଥ ଭାଗକୁ ତଦୀୟ ପ୍ରକୃତିତତ୍ତ୍ୱମାନଙ୍କରେ ଯୋଗ ବା ବିଲୟ ଅଥବା ଐକ୍ୟ ପ୍ରତିପାଦନ କରି ତତ୍ସର୍ବର କାରଣୀଭୂତ ମାୟା ସହିତ ପରମେଶ୍ୱରଠାରେ ଅର୍ପଣ କରିବାର ନାମ ଭକ୍ତିଯୋଗ । ଆଉ ଏତଦ୍ରୂପ ଲକ୍ଷ୍ୟ ସାଧନର ଉପଯୋଗୀ ଯେଉଁ କୌଶଳ, ଚେଷ୍ଟା ବା କ୍ରିୟା ତାହାର ନାମ କର୍ମଯୋଗ ।

ଏତଦ୍ରୂପ କର୍ମଯୋଗ ଦ୍ୱାରା ଜୀବୋପାଧିକ ଦେହମାନଙ୍କ ମଧ୍ୟରୁ ପାଞ୍ଚଭୌତିକ ସ୍ଥୂଳଦେହକୁ ବିରାଟମୂର୍ତ୍ତିର ପଞ୍ଚଭୂତରେ, ଲିଙ୍ଗ ଦେହକୁ ତତ୍କାରଣୀଭୂତ ପଞ୍ଚତନ୍ମାତ୍ରା-ତ୍ମକ ହିରଣ୍ୟ ଗର୍ଭରେ ଓ କାରଣଦେହକୁ ତତ୍କାରଣୀଭୂତ ସୃଷ୍ଟିତତ୍ତ୍ୱାଧୀଶ୍ୱର ବିଧାତାଙ୍କଠାରେ ଅର୍ପଣ କରିବାର ଯେ କ୍ରିୟା ତାହା ସାଧନ କରାଯାଏ । ତହିଁ ଉତ୍ତାରୁ ଏହି ଅର୍ପିତ ଦେହତ୍ରୟରୁ ଆତ୍ମାଭିମାନ ପରିତ୍ୟାଗ କରି ସେହି ସେହି ଦେହର କାରଣ ଆପଣ, ସେ ହେତୁରୁ ସେହି ସେହି ଦେହାଦିର କ୍ରିୟା ବା ଭୋଗ ଅବା ଜ୍ଞାନାଦି ଆପଣଙ୍କର, ଏରୂପଭାବରେ ପରମେଶ୍ୱରଙ୍କୁ ଭଜନା କରିବା ଭକ୍ତିଯୋଗ । ଏଥି ଉତ୍ତାରୁ ଏତଦ୍ରୂପ ଭକ୍ତିଯୋଗଦ୍ୱାରା ଜୀବୋପାଧି ପରମେଶ୍ୱରଙ୍କ ମାୟିକ ଅଙ୍ଗରେ ବିଲୀନ ହେଲାରୁ ଭଗ୍ନଘଟସ୍ଥ ଘଟାକାଶ ମହଦାକାଶ ସହିତ ଏକ ହେଲପରି ଆତ୍ମା ଉପାଧିଶୂନ୍ୟ ହୋଇ ସ୍ୱତଃ ପରମେଶ୍ୱରଙ୍କ ସହିତ ଅଭେଦ ବୋଲି ଆପଣାକୁ ଆତ୍ମବିବେକ ସହକାରେ ସ୍ଥିର କରନ୍ତି; ଏହା ଜ୍ଞାନଯୋଗର ଲକ୍ଷଣ— ଜ୍ଞାନଯୋଗଦ୍ୱାରା ଆତ୍ମା ପରମେଶ୍ୱର ସହିତ ଅଭେଦ । ଭକ୍ତିଯୋଗଦ୍ୱାରା ସେହି ଅଭେଦ ସିଦ୍ଧି ସକାଶେ ଜୀବୋପାଧି ପରମେଶ୍ୱରଙ୍କ-ଠାରେ ଅର୍ପଣ, ସେହି ଅର୍ପଣର ଉପଯୋଗୀ ଚେଷ୍ଟା ବା କୌଶଳାଦି କ୍ରିୟାଯୋଗ । ଏହିପରି କ୍ରିୟା ବା କର୍ମଯୋଗ ଅଭାବରେ ଭକ୍ତିଯୋଗ ହୋଇ ନ ପାରେ । ଆଉ ଭକ୍ତି-ଯୋଗ ବ୍ୟତୀତ ଜ୍ଞାନଯୋଗ ହୋଇ ନ ପାରେ, ଏବଂ ଜ୍ଞାନଯୋଗ ଅଭାବରେ ଆତ୍ମବ୍ରହ୍ମ ଐକ୍ୟ ପ୍ରତିପାଦନ ବା ମୁକ୍ତି ଅସମ୍ଭବ । ଅତଏବ ଜ୍ଞାନ, ଭକ୍ତି ଓ କର୍ମଯୋଗ ଏ ତିନହେଁ ଏକତ୍ର ମିଶି ପ୍ରକୃତ ଯୋଗପଦବାଚ୍ୟ । ଏବେ ଏ ଯୋଗତ୍ରୟର ବିବରଣ ଟିକଏ ବିଶେଷ ଭାବରେ ଆଲୋଚିତ ହେଉ । ମହାଯୋଗେଶ୍ୱର ହରି ! ସର୍ବଯୋଗ ଧାରଣ କରି ଏହିଠାରେ ଟିକଏ ଯୋଗାସନରେ ଆସୀନ କରନ୍ତୁ । ଆପଣଙ୍କ ଯୌଗିକ ବିଭୂତି ନିର୍ମିତ ନାନାବିଧ ଉପାସ୍ୟ ଦେବ ଗନ୍ଧର୍ବାଦି ସୃଷ୍ଟି ଦର୍ଶନ କରିବାକୁ କୃପା-ବିତରିତ ହେଉ ।

ଆମ୍ଭେ କୀଟାଦପି ପରମକ୍ଷୁଦ୍ରାଣୁଠାରୁ ହୀନତମ ଜୀବ – ମାନବ । ଅନୁଗ୍ରହ କରି ମହାପୁରୁଷର ଉପାସନା କରିବାକୁ ଯାଉ ନ ଥାଇଁ । ଉପାସନା ଆମ୍ଭର ମନୁଷ୍ୟତ୍ୱ-ବୋଧରେ ଏକାନ୍ତ କର୍ତ୍ତବ୍ୟ ବୋଲି କରିବା ବିଧେୟ ।

ମନୁଷ୍ୟର ସ୍ୱଭାବ ଏପରି ଯେ ସେ ଉପକାରୀବର୍ଗ ଅର୍ଥାତ୍ ଜ୍ଞାନଗୁରୁ, ଧର୍ମଗୁରୁ, ଶିକ୍ଷା-ଗୁରୁ, ପୋଷକ, ଶାସକାଦି ଗୁରୁବର୍ଗଙ୍କୁ ସର୍ବଦା ଭୟଭକ୍ତିରେ ଦଣ୍ଡବତ୍ କରିଅଛୁ । ଏପରିକି

ଆପଣାଠାରୁ ଟିକିଏ ଅଧିକ କ୍ଷମତାଶାଳୀ ବା ଧନଶାଳୀ ଦୁଷ୍ଟ ଦୁର୍ଜ୍ଜନଙ୍କୁ ଦେଖିଲେ ମଧ୍ୟ ଶତହେ ହାତ ଆଗରୁ ହାତ ଯୋଡ଼ି ଠିଆ ହୋଇ ଓଳଗ ପକାଉଅଛୁ । ନ କଲେ ତ ତାର ଧନ୍ତସ ସହଣୀୟ ନୁହେ । ତେବେ ଏପରି ସଂକୀର୍ଣ୍ଣ ସ୍ୱଭାବାଧୀନ ଜୀବ ଯେ ମହାଯୋଗେଶ୍ୱର ସର୍ବନିୟନ୍ତା, ସର୍ବପାଳକ, ଶାସକ ଓ ଅହେତୁକ ଦୟା ପ୍ରେମର ମୂର୍ତ୍ତିମାନ ମହାବିଗ୍ରହଙ୍କ ପଦତଳରେ ଶରଣାପନ୍ନ ରହି ତାଙ୍କର ପବିତ୍ର ଉପାସନାରେ ନିୟୋଜିତ ହେବ, ଏଥିରୁ ବଳି ତା ପକ୍ଷରେ ଉତ୍ତମ ମହାସୌଭାଗ୍ୟର ବିଷୟ ଆଉ ଅଧିକ କଣ ଥାଇପାରେ ?

## ୭୪ଶ ପାଠ—

ଏହି ଭୌତିକ ମହତାକାଶଗର୍ଭସ୍ଥ ପରିଦୃଶ୍ୟମାନ ଏହି ଭୌତିକ ଜଗତରେ ଆମ୍ଭେ ମନୁଷ୍ୟ ଜାତିକୁ ଚାହିଁ ଥାଇଁ, ମନୁଷ୍ୟ ସଂଖ୍ୟା କେତେ ? ଯେଉଁ ଆଡ଼କୁ ଯିବା, କି ଜଳ, କି ସ୍ଥଳ, କିବା ଆକାଶପର୍ଯ୍ୟନ୍ତ ସବୁଠାରେ ମନୁଷ୍ୟ ପରିପୂର୍ଣ୍ଣ । ପଶୁ, ପକ୍ଷୀ, କୀଟ, ପତଙ୍ଗାଦିର ତ ଇୟତ୍ତା ନାହିଁ । ପୃଥିବୀରେ ଦେଖାଯାଏ, ପାର୍ଥିବ ଦେହ ବିଶିଷ୍ଟ ପ୍ରାଣୀ କୀଟପତଙ୍ଗାଦି ଦେହକୁ ଦେହ ଲାଗି ଯେପରି ରହିଅଛନ୍ତି, ଜଳରେ ଜଳୀୟ କୀଟାଣୁଠାରୁ ଆରମ୍ଭ କରି ବାଘବ ପର୍ଯ୍ୟନ୍ତ ସମୁଦାୟ ଜଳମୟ ସ୍ଥାନ ଯେପରି ଜଳୀୟ କୀଟାଣୁ ଆଦି ଜୀବ ସମଷ୍ଟିରେ ସମାଚ୍ଛନ୍ନ, ତୈଜସ ବସ୍ତୁରେ ଓ କାରଣାଦିରେ ତୈଜସ-ଜୀବ, ବାୟୁରେ ବାୟବୀୟ ଜୀବ, ଏପରି ନାନାବିଧ ପ୍ରାଣୀ ଯନ୍ତ୍ର ସାହାଯ୍ୟରେ ମଧ୍ୟ ଦେଖାଯାଇଥାଏ । ଆକାଶର ସବୁଠାରେ ନାନାବିଧ ଜୀବ ଓ କୀଟାଣୁ ଆଦି ପରିବ୍ୟାପ୍ତ । ଏ ସବୁ କେଉଁଠାରୁ ସୃଷ୍ଟି ? କିପରି ? ଆମ୍ଭେମାନେ ଆମ୍ଭମାନଙ୍କର ଆଦିସୃଷ୍ଟିଠାରୁ ଆରମ୍ଭ କରି ଦେହ କିପରି ବଢ଼ିଅଛୁ ଓ କ୍ରମେ କ୍ଷୀଣ ଭାବ ଧରି ଜରାଜୀର୍ଣ୍ଣ ହାଡ଼ମାଳ ଶେଷାବସ୍ଥାରେ ଉପନୀତ ହେଉଅଛୁ, ରୋଗ, ବ୍ୟାଧି କେତେ କେଉଁଆଡ଼ରୁ ଆସି କି ଅଜ୍ଞାତ ସୂତ୍ରରେ କି କି ବିକାର ଘଟାଉଅଛୁ, ଜାଣିପାରୁ ନ ଥାଇଁ । ଆଉ ମଧ୍ୟ ଆମ୍ଭେମାନେ ଏ ସମାବେଶ ଦେଖିବାକୁ କିମ୍ବା ଭାବିବାକୁ ଅକ୍ଷମ, ଆଉ ସେ ସବୁ ସୃଷ୍ଟି, ରକ୍ଷଣ ଓ ପାଳନ ବିଷୟରେ ବା କାହୁଁ କଣ ଜାଣିପାରିବା ? ତେବେ ଏହିଠାରେ ଏହି ଜୈବ ସୃଷ୍ଟିମୟ ବିଚିତ୍ର ଚିତାଧାରି ଭଗବତୀ ପ୍ରକୃତି ଦେବୀଙ୍କୁ ନମସ୍କାର କରି ସୂକ୍ଷ୍ମ ସୃଷ୍ଟି-ଆଡ଼କୁ ଆନୁମାନିକ ଜ୍ଞାନ ସାହାଯ୍ୟରେ ଅଗ୍ରସର ହେବାକୁ ଚେଷ୍ଟା କରିଯାଉ ।

ଭୂତ ପ୍ରେତାଦିମାନଙ୍କର ସ୍ଥୂଳଭୌତିକ ଦେହ ନୁହେଁ । ଆମ୍ଭର ସ୍ଥୂଳ ଦେହକୁ ଛାଡ଼ି ଲିଙ୍ଗ ବା ସୂକ୍ଷ୍ମ ଦେହକୁ ପୂର୍ବ ବର୍ଣ୍ଣନାନୁସାରେ ଲକ୍ଷ୍ୟକଲେ ଦେଖିବା ଏ ସୂକ୍ଷ୍ମ ଦେହ ବଡ଼ ସୂକ୍ଷ୍ମହେତୁ ଇନ୍ଦ୍ରିୟବୋଧଗମ୍ୟ ନୁହେ । ଏହା ଶୂନ୍ୟ ସଂଜ୍ଞାରୁ ଆହୁରି ସୂକ୍ଷ୍ମ-ସଂଜ୍ଞକ ପାର୍ଥିବ ବା ଜଳୀୟାଦି ଭୌତିକ ଦେହ ବିଶିଷ୍ଟ ପ୍ରାଣିମାନଙ୍କର ସୂକ୍ଷ୍ମ ଦେହ ସେହି ସେହି ଭୌତିକ ଦେହସୀମାରେ ଆବଦ୍ଧ । ମାତ୍ର କେବଳ ତଦ୍ରୂପ ସୂକ୍ଷ୍ମ ଦେହମୟ ପ୍ରାଣୀ ଭୂତାତ୍ମା ପ୍ରେତାତ୍ମାଦିମାନଙ୍କର ଶରୀର ଅନ୍ତରୀକ୍ଷର ଅଂଶାଂଶ ବିଶିଷ୍ଟାକାଶର

ଦେହବିଶେଷ । ଏଭଳି ଦେହରୁ ଆଜ ଭୌତିକ ଜଗତ ତୁଳନାରେ ଭୌତିକ ପ୍ରାଣିମୟ ସୃଷ୍ଟିର ଅସଂଖ୍ୟ ଅସଂଖ୍ୟ ବହୁଳତାରୁ ଆମ୍ଭମାନଙ୍କୁ ବୁଝିବାକୁ ହେବ – ଅନ୍ତରୀକାଶ, ଭୌତିକ ଜଗତ ବା ତଦାଧାର ଭୌତିକ ମହାକାଶଠାରୁ ପୂର୍ବ ବର୍ଣ୍ଣନାନୁସାରେ କେତେ ବଡ଼ । ତେବେ ସେହି ବୃହତ୍ତମ ଅନ୍ତରୀକାଶରେ ସୂକ୍ଷ୍ମଶରୀରଧାରୀ କେତେ କେତେ ଭୂତ ପ୍ରେତାଦିର ସୃଷ୍ଟି ଥିବା ସମ୍ଭବ । ଏହିପରି ଚିନ୍ମୟ ମହଦାକାଶ ସବୁଠାରୁ ବୃହତ୍ତମ ଅଟେ । ତହିଁରେ ଦେବଗନ୍ଧର୍ବାଦି ସୃଷ୍ଟିମୟ ଆମ୍ଭମନ୍ଦର ଯେ କେତେ କଣ ଥିବ ଏହା ଅନୁମାନ ବା ଜ୍ଞାନର ଅଜ୍ଞାତ । ଜନଲୋକ, ତପଲୋକ, ଦେବଲୋକ ଓ ମହର୍ଲୋକାଦି ଚତୁର୍ଦ୍ଦଶ ଭୁବନ ବର୍ଣ୍ଣନାଦିର ନିମନ୍ତ୍ରଣ ଏହିଠାରେ ! ସେ ସବୁରେ ଅବିଶ୍ୱାସ କରି କେବଳ ଏସିଆ, ୟୁରୋପ ଘୋଷିବା ଆମ୍ଭମାନଙ୍କର ନିତାନ୍ତ ଅଜ୍ଞତା ଓ ସଂକୀର୍ଣ୍ଣତା ମାତ୍ର । ଏହିପରି ଏ ଚତୁର୍ଦ୍ଦଶ ଭୁବନ, ଦେବ-ଗନ୍ଧର୍ବ-ଭୂତ-ପ୍ରେତ-ମନୁଷ୍ୟାଦି ଅସଂଖ୍ୟ ପ୍ରାଣୀଦ୍ୱାରା ପରିପୂର୍ଣ୍ଣ କାହିଁକି ? ଆମ୍ଭେମାନେ ଏହି ଭୌତିକ ଜଗତ ଦର୍ଶନରୁ ଶିକ୍ଷା ପାଉଥାଉଁ । ଏ ବିଶାଳ ସୃଷ୍ଟି ଜଣକପାଇଁ ନୁହେ କି ଏକ ଜାତୀୟ ପ୍ରାଣୀ ନିମନ୍ତେ ନୁହେ । ଏହା ଅସଂଖ୍ୟ ଅସଂଖ୍ୟ ଜାତୀୟ ପ୍ରାଣିମାନଙ୍କ ନିମନ୍ତେ । ଏଥିରୁ ଦେଖୁଥାଉଁ, ଭଗବତୀ ଆଦି ମାତୃକା ଦେବୀଙ୍କର ସମୁଦାୟ ସୃଷ୍ଟି ଅନନ୍ତ ଓ ପ୍ରତ୍ୟେକ ସୃଷ୍ଟିର ଜୀବସଂଖ୍ୟା ଅନନ୍ତ, ଏବଂ ତାହାଙ୍କର କାର୍ଯ୍ୟକଳାପାଦି ଅନନ୍ତମୟ, ଏବଂ ସେ ସ୍ୱଭାବତଃ ଅନନ୍ତମୟୀ, ବିଶୁଦ୍ଧ ସତ୍ତ୍ୱଗୁଣରୁ ଦେବଲୋକ, ତପଲୋକ ଓ ମହର୍ଲୋକାଦି ସତ୍ତ୍ୱସୃଷ୍ଟି । ଏ ସୃଷ୍ଟି ଚିଦାକାଶ ଗର୍ଭରେ । ସତ୍ତ୍ୱମିଶ୍ରିତ ରଜସ ଓ ତାମସ, ରଜସ, ସତ୍ତ୍ୱାଦିର ନ୍ୟୂନାଧିକ ପରିମାଣର ମିଶ୍ରଣରେ ନାନାଜାତୀୟ ଭୂତ, ପ୍ରେତ, ରାକ୍ଷସ, ପଶୁପକ୍ଷୀ ଓ ନରାଦି ସୃଷ୍ଟି ଅପାରୁଁ ଅପାର ଅନନ୍ତମୟ ହୋଇ ବିଜ୍ଞାନାକାଶ ବା ଅନ୍ତରୀକାଶ ଗର୍ଭରେ ଅଥବା ଭୌତିକାକାଶ ଗର୍ଭରେ ବିରାଜମାନ ହୋଇଅଛନ୍ତି । ଭଗବାନ୍ ହରିଙ୍କର ବେଦବାକ୍ୟ ମଧ୍ୟ ଏହିପରି ଯେ (ବହୁସ୍ୟାମହମେବୈକଃ) ଅର୍ଥାତ୍ ଏକ ଏବ ମୁଁ ବହୁ ହୁଏଁ ବା ହେବି ଇତ୍ୟାଦି ଇତ୍ୟାଦି ।

ଏହିପରି ବହୁ ବହୁ ପ୍ରାଣୀ ସୃଷ୍ଟିମୟ ଅନନ୍ତ କୋଟି ବ୍ରହ୍ମାଣ୍ଡ ମାଳ ମାଳ ହୋଇ ଯା ଲୋମକୂପେ ବିରାଜଇ, ସେହି ମହାପୁରୁଷ ମୁକୁନ୍ଦ ବିଶ୍ୱମୂର୍ତ୍ତିର ମୂର୍ତ୍ତିମାନ୍, ସର୍ବନିୟନ୍ତା, ସର୍ବବ୍ୟାପୀ, ସର୍ବତୋଽନନ୍ତରୂପ ହରିଙ୍କୁ ଏହି କୀଟାଦପି କୀଟାଣୁଠାରୁ ହୀନତମ ମାନବର ଏହିଠାରେ ସତତ ସାଷ୍ଟାଙ୍ଗ ଦଣ୍ଡ ପ୍ରଣାମ ଓ ମାଗୁଣି, ଅଭୟ ପଦାରବିନ୍ଦ ଧୂଳି କଣାତଳରେ ଶରଣ । ଶରଣ ଗଲି ଦେବ ହରି, ତୋ ଇଚ୍ଛା ଯାହା ପାରୁ କରି ; ଶରଣ ଶରଣ ଶରଣ, ଶରଣ ସର୍ବ ଶ୍ରେଷ୍ଠ ଧର୍ମ । ଶରଣ ମାତ୍ର ମୋର ସାର, ଆପଣ ଶରଣ ପଞ୍ଜର । ତୋଳିଅଛ ବେନି ଭୁଜ ଯାଚିଅଛ ଶରଣ, ଆହେ ଦେବ ମହାପ୍ରଭୁ ସିନ୍ଧୁସୁତାରମଣ । ଶ୍ରୀ ହରୟେ ନମଃ ।

## ୭୫ଶ ପାଠ—ଯୋଗର ଅଷ୍ଟାଙ୍ଗ ବର୍ଣ୍ଣନା

ଯୋଗର ରୂପ ସାଧାରଣତଃ ଆଠଟି ଅଙ୍ଗରେ ବିଭକ୍ତ, ଯଥା—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା ଓ ସମାଧି । ଏ ମଧ୍ୟରୁ ଯମ ନାମକ ଏବଂ ନିୟମ, ଆସନାଦି ପ୍ରାଣାୟାମ ଏ ଗୁଚ୍ଛିଗୋଟି କର୍ମ ଯୋଗାନ୍ତର୍ଗତ । ପ୍ରତ୍ୟାହାର, ଧ୍ୟାନ ଓ ଧାରଣା ଭକ୍ତିଯୋଗାନ୍ତର୍ଗତ, ଏବଂ ସମାଧି ପ୍ରତ୍ୟକ୍ଷ ଜ୍ଞାନଯୋଗ । ଏହିପରି ଅଷ୍ଟାଙ୍ଗ ପୂର୍ବୋକ୍ତ କର୍ମ, ଭକ୍ତି ଓ ଜ୍ଞାନଯୋଗର ସମଷ୍ଟିରୂପ ଯୋଗଶବ୍ଦବାଚ୍ୟ ଅଟେ ।

ଯଥାର୍ଥ କହିବାକୁ ଗଲେ ଏ ଗ୍ରନ୍ଥର କଳେବର ଓ ପ୍ରାଣ ନଗଣ୍ୟ କ୍ଷୁଦ୍ର, ଅଥଚ ଯୋଗଶାସ୍ତ୍ରର ନାମ ଲେଖିବାକୁ ଗଲେ ଏହିପରି ଏକ ବୃହତ୍ ଗ୍ରନ୍ଥ ହୋଇପଡ଼ିବ । ଏ ଅବସ୍ଥାରେ ଦେବ ମହର୍ଷି ପ୍ରବରାଦି-ଦୁର୍ଲ୍ଲଭ ଯେଉଁ ଯୋଗାସନ, ତାହାର ତଳର ଧୂଳିକଣା ଧାରଣ କରିବାକୁ ଏ ଗ୍ରନ୍ଥ କ୍ଷୁଦ୍ର ଓ ଅନୁପଯୁକ୍ତ । ତେବେ ପ୍ରସଙ୍ଗାନୁରୋଧରେ ଏ ପବିତ୍ର ଭାରତର ପୂଜ୍ୟ ପଦରେଣୁ ମହର୍ଷିମାନଙ୍କ ବିରଚିତ ଓ ସେବ୍ୟ ଯୋଗବିବରଣ ନାମମାତ୍ର ଏଥିରେ ଉଲ୍ଲେଖ କରାଯିବାର ହେତୁ ଏହି ଯେ ଆମ୍ଭେମାନେ ଏହି ଜଡ଼ବାଦିତାଧୀନ ଯୁଗରେ ସେହି ପବିତ୍ରନାମା ମହର୍ଷି ସାଂଖ୍ୟଯୋଗୀ କପିଳଦେବ, ମହାପ୍ରଭୁ ଶଙ୍କରାବତାର ଶ୍ରୀ ଶଙ୍କରାଚାର୍ଯ୍ୟ, ପୂଜ୍ୟପାଦ ବେଦମୂର୍ତ୍ତି ଶ୍ରୀ ବ୍ୟାସଦେବ, ଦେବର୍ଷି ନାରଦ ଏବଂ ଋଷିଶ୍ରେଷ୍ଠ ବଶିଷ୍ଠାଦିଙ୍କ ପୁଣ୍ୟଶ୍ଳୋକ ନାମ ସ୍ମରଣକରି ଏବଂ ସେମାନଙ୍କ ପ୍ରଣୀତ ଯୋଗଗ୍ରନ୍ଥାଦି ପାଠ-କରି ଭାରତରେ ଜନ୍ମ ଲଭିବା ଦାୟିତ୍ୱରୁ କଥଞ୍ଚିତ୍ ପରିମାଣରେ ମୁକ୍ତି ଲଭିପାରିବା । ଅତଏବ ସେହି ଦୟାମୟ ମହାତ୍ମା ମହର୍ଷିମାନଙ୍କୁ ସ୍ମରଣ କରି ଆନ୍ତରିକ ଭକ୍ତି ପ୍ରେମ-ସହିକାରେ କଳ୍ପନା-କରରେ ସେମାନଙ୍କ ଯୋଗାସନ ତଳ ପବିତ୍ର ରେଣୁ ମୁଣ୍ଡରେ ଲଗାଇ ଏବେ ଉକ୍ତ ଯୋଗାଙ୍ଗର ବର୍ଣ୍ଣନା ଆତ୍ମସମାଧାରେ ପ୍ରକାଶ କରାଯାଉ ।

୧ମ ନିୟମ— ଯମ, ବାହ୍ୟ ଓ ଅନ୍ତରିନ୍ଦ୍ରିୟର ସଂଯମ । ସଂଯମର ଅର୍ଥ ଏକା-ବେଳକେ ବନ୍ଦ କରିଦେବା ନୁହେ । ଇନ୍ଦ୍ରିୟମାନଙ୍କଦ୍ୱାରା ଯାହା କରାଯିବ, ତଦ୍ଦ୍ୱାରା ନିଜ ଦେହର ସୁଖଶାନ୍ତି ସହିତ ସୁରକ୍ଷା, ପାରିବାରିକ ଓ ସାଂସାରିକ ପ୍ରାଣୀମାନଙ୍କର ଉପକାର ଏବଂ ସେବା ସୁସାଧିତ ହେବ; ଅଥଚ କାହାରି ବା ନିଜର ଦୈହିକ କି ମାନସିକ ଅଶାନ୍ତିର କାରଣ ରହିବ ନାହିଁ । ପୁନଶ୍ଚ ତାହା ହିଂସାଦ୍ୱେଷାଦି କୌଣସି ପ୍ରକାରରେ କୁପ୍ରବୃତ୍ତି ପରିଚାଳନାର ପ୍ରଶ୍ରୟ ହେବ ନାହିଁ । ବିଶେଷତଃ ତଦ୍ଦ୍ୱାରା କେବଳ ନିଜର ବା ପରିବାରବର୍ଗର ଏକ ସାଂସାରିକ ପ୍ରାଣୀମାନଙ୍କ ଧର୍ମର ସହାୟତା ସଂପାଦିତ ହେବ; ଇତ୍ୟାଦି । କେବଳ ଏହି ଗୋଟିକ ଅଙ୍ଗ ସମ୍ବନ୍ଧରେ ଲେଖିବାକୁ ବା ଭାବିବାକୁ ଗଲେ ତାହା ପୂରଣ କରିବାକୁ କେତେଖଣ୍ଡ ପୁସ୍ତକ ଅନଟନ ହୋଇପଡ଼ିବ । ଏ ସମ୍ବନ୍ଧରେ ବିଶେଷାନୁଲୋଚନା ଓ ବହୁ ଶାସ୍ତ୍ରଚର୍ଚ୍ଚା ବାଞ୍ଛନୀୟ ।

୨ୟ ନିୟମ— ସଂଯମ-ସେବା ନିୟମର ବଡ ପୋଷକ ଓ ସହାୟକାରୀ । ଅର୍ଥାତ୍ ସତ୍ୟ, ସନ୍ତୋଷ, ଦୟା, କ୍ଷମା, ନ୍ୟାୟପରତା, ବ୍ରହ୍ମଚର୍ଯ୍ୟ (ଅର୍ଥାତ୍ ସନ୍ତାନ ଉତ୍ପାଦନ ବ୍ୟତୀତ କାୟମନୋବାକ୍ୟରେ ମୈଥୁନତ୍ୟାଗ ), ଶୌଚ ( ଅର୍ଥାତ୍ ବାହ୍ୟ ଓ ଅନ୍ତରିନ୍ଦ୍ରିୟର ଶୁଦ୍ଧତା ସମ୍ପାଦନ ), ବ୍ରତ ନିୟମାଦିଦ୍ୱାରା ମନ ଓ ଇନ୍ଦ୍ରିୟାଦିର ଏକାଗ୍ରତା ସମ୍ପାଦନରୂପ ତପସ୍ୟା, ସ୍ୱାଧ୍ୟାୟ ( ଅର୍ଥାତ୍ ବେଦ ବେଦାନ୍ତାଦି ଧର୍ମଗ୍ରନ୍ଥ ପଠନ ଓ ସ୍ମରଣ ପ୍ରଭୃତି ) ଏବଂ ଈଶ୍ୱର ଚିନ୍ତନ ଇତ୍ୟାଦି ଇତ୍ୟାଦି । ଏହା ବର୍ଣ୍ଣନା କରିବା ସାଧ୍ୟାତୀତ ।

୩ୟ ନିୟମ— ଆସନ, ସ୍ୱସ୍ତିକାସନ, ପଦ୍ମାସନ ପ୍ରଭୃତି ଯଦ୍ୱାରା ଶରୀର ସୁସ୍ଥିର ରହେ ଏବଂ କୌଣସି ଦିଗକୁ ଦୃଷ୍ଟି ଗୃହୀତ ନ ହୋଇ ସ୍ଥିର ରହେ । ଏହି ଆସନ ସମ୍ବନ୍ଧରେ କେତେ ପ୍ରକାର ବ୍ୟବସ୍ଥା ଓ ନିୟମ ପ୍ରଭୃତି ରହିଅଛି । ଏ ସବୁ ଜୀବନର ଅମୂଲ୍ୟ ଓ ଉପାଦେୟ ରତ୍ନ ସ୍ୱରୂପ ।

୪ର୍ଥ ନିୟମ— ପ୍ରାଣାୟାମ, ପ୍ରାଣବାୟୁ ଯେ କି ସର୍ବଦା ନାସାରନ୍ଧ୍ରରେ ଯାତାୟାତ କରି ଦେହରକ୍ଷା କରିଅଛି, ଯାହା ଥିବାରୁ ଆମ୍ଭେମାନେ ପ୍ରାଣୀ ପଦବାଚ୍ୟ, ସେହି ପ୍ରାଣ ସମ୍ବନ୍ଧୀୟ କ୍ରିୟା ଯଦ୍ୱାରା କି ଏହି ଯାତାୟାତ ସ୍ଥିରତାକୁ ପ୍ରାପ୍ତ ହୁଏ । ଏହି ପ୍ରାଣାୟାମ ସମ୍ବନ୍ଧରେ ଭୂରି ଭୂରି ଗ୍ରନ୍ଥ ବିଦ୍ୟମାନ ଓ ତହିଁରେ କେତେ କେତେ ପ୍ରକାରର ବିଭିନ୍ନ ପ୍ରଣାଳୀରେ ପ୍ରାଣଶୋଧନ କରିବାର ବିଧାନ ନିର୍ଦ୍ଦିଷ୍ଟ ଅଛି, ତାହା ଆଲୋଚନା କରିବାକୁ ବହୁ ସମୟସାପେକ୍ଷ । ଏହି ପ୍ରାଣାୟାମ ରେଚକ, ପୂରକ ଓ କୁମ୍ଭକ—ଏହି କ୍ରିୟାତ୍ରୟାତ୍ମକ ଅର୍ଥାତ୍ ଘ୍ରାଣପବନକୁ ଭିତରକୁ ନେବା ପୂରକ, ବାହାରକୁ ଛାଡ଼ିବା ରେଚକ, ଏବଂ ମଧ୍ୟରେ ସ୍ଥିର କରି ନାସାଠାରୁ ନାଭି ପର୍ଯ୍ୟନ୍ତ ନିସ୍ପନ୍ଦ ଦଣ୍ଡାକାରରେ ଧାରଣ କରିବାର ନାମ କୁମ୍ଭକ । ଏହା ନିର୍ଦ୍ଦିଷ୍ଟ ପ୍ରଣାଳୀରେ ସାଧନ କଲେ ପ୍ରାଣ ସ୍ଥିର ହୁଏ ଓ ତତ୍ସହକାରେ ମନ ମଧ୍ୟ ସ୍ଥିର ହୁଏ । ଏ ଉଭୟଂ ସ୍ଥିର ହେବାଦ୍ୱାରା ଇନ୍ଦ୍ରିୟାଦି ସଂଯତ ହୁଅନ୍ତି । ମନର ସ୍ଥିରତା ସମ୍ପାଦିତ ହେଲେ ପ୍ରତ୍ୟାହାର ଆଡ଼କୁ ସୁବିଧା ହୁଏ । ମନ ଓ ପ୍ରାଣ ଉଭୟେ ପରସ୍ପର ଏପରି ଜଡ଼ାଜଡ଼ି ଓ ଧରାଧରି ଯେ ଏକର ସ୍ଥିରତାରେ ଉଭୟର ସ୍ଥିରତା ଓ ଗୋଟିକର ଚଳନରେ ଉଭୟର ଚଳନ ସଂଘଟିତ ହୋଇଥାଏ ।

ଏହିସବୁ ଜ୍ଞାନଧନରେ ମନୁଷ୍ୟର କେବଳ ଅଧିକାର ସମ୍ଭବ ଥିବାରୁ ସେ ପ୍ରାଣୀଶ୍ରେଷ୍ଠ ମାତ୍ର, ଆଜକାଲି ଏସବୁ ବିସ୍ମୃତିର ଅତଳ ଗର୍ଭରେ ବୁଡ଼ିଗଲଣି; ଟଙ୍କା ମୋହର ପ୍ରଭୃତିକୁ ଏକମାତ୍ର ଧନ ବୋଲି ଚିହ୍ନି ଏ ଯୁଗର ମନୁଷ୍ୟଜାତି ତଥା ଭାରତୀୟ ମଧ୍ୟ ସେହି ସ୍ୱର୍ଣ୍ଣରୌପ୍ୟଧନ ସଞ୍ଚୟରେ ବ୍ୟସ୍ତ ।

ଯାହା କିଛି ଶିକ୍ଷା ଦୀକ୍ଷା ଓ ପରିଶ୍ରମ ସେ ସମସ୍ତ କେବଳ ତାହାର ନିମନ୍ତେ । ତାହା ଧର୍ମ କର୍ମରେ କି ପରୋପକାର ବା ସଂସାର କର୍ମରେ ଲାଗିବା ବଡ଼ ବିରଳ । ନାହିଁ କହିବା କେବଳ ଦେଶନିନ୍ଦା ଉପରେ । ତଦ୍ଦ୍ୱାରା ପୁଣି ପିତାପୁତ୍ରର ବିରୋଧ, ଆତ୍ମୀୟ ସ୍ୱଜନ ମଧ୍ୟରେ ମନାନ୍ତର ଓ ଗୁରୁ ଶିଷ୍ୟ ମଧ୍ୟରେ ବିଯୋଗ ଘଟୁଅଛି । ଥାଉ ସେ କଥା । ଏବେ ପ୍ରତ୍ୟାହାର ଆଡ଼କୁ ଯିବାକୁ ହେବ । ଏହି ପ୍ରାଣାୟାମଠାରୁ ଯୋଗାଙ୍ଗ ସମ୍ବନ୍ଧୀୟ କର୍ମଯୋଗ ସମାପ୍ତ ହେଲା । ଏବେ ଯୌଗିକ ଭକ୍ତି-ଯୋଗ ଅର୍ଥାତ୍ ପ୍ରତ୍ୟାହାର କଣ ବୁଝାଯାଉ ।

ପୂର୍ବୋକ୍ତ ପ୍ରକାରେ ଦୈହିକ କ୍ରିୟାନୁଷ୍ଠାନ ଦ୍ୱାରା ଯମ ନିୟମ ଆସନ ଓ ପ୍ରାଣର କ୍ରିୟା ରେଚକ, ପୂରକ, କୁମ୍ଭକାଦିଦ୍ୱାରା ପ୍ରାଣାୟାମ ଯଥାକ୍ରମେ ସାଧିତ ହେଲେ ଦେହ ସ୍ଥିର, ଇନ୍ଦ୍ରିୟବୃତ୍ତି ଓ ପ୍ରାଣ ସ୍ଥିର ହୁଏ । ଏ ସଙ୍ଗେ ସଙ୍ଗେ ମନ ମଧ୍ୟ କାର୍ଯ୍ୟତଃ ସ୍ଥିର ହେବାକୁ ବସିଲାଣି । ଏ ସମସ୍ତେ ସ୍ଥିର ହେଲେ ବାହ୍ୟ ଓ ଅନ୍ତରେନ୍ଦ୍ରିୟ ସଂଶ୍ଳେଷଣ ଦ୍ୱାରା ସଂଘଟିତ ବୈଷୟିକ ଜ୍ଞାନର ସ୍ଫୁରଣ ରହିତ ହୁଏ । ଅନ୍ତଃକରଣର ଏହି ଅବସ୍ଥାର ନାମ ପ୍ରାଣାୟାମ ସିଦ୍ଧାବସ୍ଥା । ଏଥି ସଙ୍ଗେ ସଙ୍ଗେ ଅନ୍ତଃକରଣ ନିଷ୍କଳ ଓ ଶାନ୍ତ ହେଲାରୁ ଅନବଧାନତା କ୍ରମେ ହେବାତ୍ ମନର ଯଦି ସାମାନ୍ୟ ଚଳନ ଆରମ୍ଭ ହୋଇ ବୈଷୟିକ ଜ୍ଞାନ ବା କୌଣସି ପ୍ରକାର ମାନସିକ ବିକ୍ଷେପ ଆଡ଼କୁ ଉନ୍ମୁଖୀନ ହୁଏ, ତେବେ ତାହା ସଙ୍ଗେ ସଙ୍ଗେ ଠିକ୍ ସେହି କାଳରେ ତାହା ତ୍ୟାଗ ବା ଅଗ୍ରହଣ ଅଥବା ପ୍ରତ୍ୟାହରଣ କରିବାର ଯେଉଁ ସସାବଧାନ ଜାଗରଣ, ତାହାର ନାମ ପ୍ରତ୍ୟାହାର । ଏହା ମନ ପ୍ରଭୃତିରେ ଶାନ୍ତ ଓ ଅନ୍ତଃକରଣର ନିର୍ବିକ୍ଷେପ ବା ପାରମାର୍ଥିକ ଅବସ୍ଥା । ଏହିଠାରୁ ଜୀବାତ୍ମା ପୁରୁଷ, ଭୌତିକାତ୍ମକ ଓ ବିଷତୁଲ୍ୟ ବୈଷୟିକ ଭ୍ରମ ଜ୍ଞାନମୟ ଅନ୍ତର୍ଜଗତରୁ ଦୃଷ୍ଟିପ୍ରତିନିବୃତ୍ତ କରି ସ୍ୱୀୟ ଜ୍ଞାନ ରାଜ୍ୟରେ ପ୍ରବେଶ କରିବାକୁ ଭଗବତ୍ କୃପା ଭିକ୍ଷା କରିବାର ଉପଯୁକ୍ତ ଅଭ୍ୟାଗତ ହେଲେ । ଭିକ୍ଷା ନ ଦେଇ ଥାଳ ଭାଙ୍ଗିବା ବ୍ୟବସ୍ଥା ସେ ରାଜ୍ୟରେ ନାହିଁ, ସେ ରାଜ୍ୟର ଜଳ ଏବଂ ବାୟୁ ଦୟା ଓ କ୍ଷମା ଅଟେ । ଏସବୁ ପ୍ରତ୍ୟକ୍ଷ ପ୍ରମାଣିତ ନିତ୍ୟ ସତ୍ୟ ବିଷୟ । ଏଥିରେ ପାଷଣ୍ଡାଚାର ଦାସତ୍ୱ ସ୍ୱୀକାର କରି ବାକ୍ ଭଙ୍ଗୀଚାତୁର୍ଯ୍ୟସୁଲଭ ମୁନ୍‌ସିୟାନା-ପୂର୍ଣ୍ଣ କୁତର୍କାଦି ବିତଣ୍ଡା ଆରମ୍ଭ କଲେ ଆତ୍ମପ୍ରବଞ୍ଚନା ଜାଲରେ ଆପେ ପଡ଼ି ପଥଭ୍ରଷ୍ଟ ହେବ । ଏତିକି ମାତ୍ର ସେ ସବୁ ତର୍କାଦିର ଉତ୍ତର, କର୍ପୂର-କସ୍ତୁରି-ରଜାଚ୍ଛାଦିତ ଦେବାଳୟ ମାର୍ଗରେ ଆଉ କଣ୍ଟକ ନିକ୍ଷେପ କରିବା ଉଚିତ ନୁହେ । ଏବେ ଧ୍ୟାନ ଧାରଣା ଆଡ଼କୁ ଅଗ୍ରସର ହେବାର ଅବସର ଉପସ୍ଥିତ ହେଲା । ଏହିଠାରୁ ଅବିଦ୍ୟୋପାଧିଦ୍ୱାରା ସଂଦୃଷ୍ଟ ଅଜ୍ଞାନ ବା ଅନ୍ତରାକାଶ ଓ ତଦନ୍ତର୍ବର୍ତ୍ତୀ ଅନ୍ତଃକରଣେନ୍ଦ୍ରିୟ-ସମନ୍ୱିତ ପିଣ୍ଡ ବ୍ରହ୍ମାଣ୍ଡାତ୍ମକ ଜଗଦାକାର ଚିତ୍ର ବିସ୍ମୃତ ଓ ଅଦୃଶ୍ୟ ହେବାରୁ ଆତ୍ମା ତୁରୀୟଦଶାପନ୍ନ ଶାନ୍ତ ଜ୍ଞାନାନନ୍ଦ ମୂର୍ତ୍ତି ପରମେଶ୍ୱରଙ୍କୁ ଭଗବତୀ ପରମେଶ୍ୱରୀର ଯଥାଦତ୍ତ

କୃପାଦ୍ୱାରା ଏକାଗ୍ର ଧ୍ୟାନରେ ଧ୍ୟାଇବାର ଯେ ଅବସ୍ଥା, ତାହାର ନାମ ଧ୍ୟାନ । ଏହି ଧ୍ୟାନର ଯେ ଅଟଳ, ଅଚଳ, ଦୃଢ଼ ଓ ଏକାଗ୍ର ସଂସ୍ଥିତ, ତାହାର ନାମ ଧାରଣା । ଏହି ଅବସ୍ଥାରେ ଜୀବାତ୍ମା ଜୀବୋପାଧିଶୂନ୍ୟ ଚିତ୍‌ସଂବିତ୍ ସହିତ ସଂଯୁକ୍ତ ହୋଇ ଚିନ୍ମୟ ମହଦାକାଶରେ ଘଟମୁକ୍ତ ଆକାଶ ମହଦାକାଶରେ ମିଶିବାକୁ ଯିବା ସନ୍ଧିକ୍ଷଣ ପରି ଅବସ୍ଥା ପ୍ରାପ୍ତ ହେବାର ଲକ୍ଷଣଯୁକ୍ତ ହେଉଅଛନ୍ତି । ଏଥି ସଙ୍ଗେ ସଙ୍ଗେ ଆତ୍ମାର ଚିନ୍ମୟତ୍ୱ ଏବଂ ଆତ୍ମ ବ୍ରହ୍ମର ଅଭେଦ ସିଦ୍ଧି, ଏହାର ନାମ ସମାଧି । ଏଠାରେ ଅବିଦ୍ୟା ବିଳୟ ଅଥଚ ବିଦ୍ୟାମୟ ଚିତ୍ ସମ୍ବିତ୍‌ର ମଧ୍ୟ ତ୍ୟାଗ ଘଟେ । ଆଲୋକଧାରୀ ଯେପରି ବାଟଚାଲି ସରିଗଲେ ଗୃହରେ ପ୍ରବେଶକରି ଆଲୋକର ଅପେକ୍ଷା ଓ ଆଶ୍ରୟ ତ୍ୟାଗ କରେ, ସେହିପରି ଆତ୍ମା ଚିଦାନନ୍ଦ ମୂର୍ତ୍ତିରେ ଅଭେଦ ହୋଇ ସର୍ବୋପାଧିଶୂନ୍ୟ ହୁଅନ୍ତି ।

ଏଠାରେ ଚିନ୍ମୟ ମହାଦାକାଶରେ ଅବିଦ୍ୟା ବା ଅନ୍ତରୀକାଶ କଳ୍ପିତ ଜୀବୋପାଧି ମୃଗତୃଷ୍ଣାତ୍ମକ ମିଥ୍ୟା ଦୃଶ୍ୟ ପରି ପ୍ରତୀତ ହେଲେ, ତାହାର ନାମ ସବିକଳ୍ପକ ସମାଧି, ଏବଂ ସେହି ମୃଗତୃଷ୍ଣା ଦୃଷ୍ଟ ନ ହେବାର ନାମ ନିର୍ବିକଳ୍ପକ ସମାଧି । ଏସବୁ ଆଧ୍ୟାତ୍ମିକ ରାଜ୍ୟର ପବିତ୍ର ପୀଠସ୍ଥିତ ଅମୂଲ୍ୟ ରତ୍ନାଦି । ଏହାର ବର୍ଣ୍ଣନା ଓ ଅନୁଭବ ଯେଉଁ ଯେଉଁ ପବିତ୍ର ପୂଜ୍ୟପାଦ ମହର୍ଷି ପ୍ରବରମାନେ କରିବାକୁ ଯାଇ ଅସଂଖ୍ୟ ଅସଂଖ୍ୟ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି ଓ ସେହିସବୁ ସ୍ୱର୍ଗରାଜ୍ୟ ଦୁର୍ଲ୍ଲଭ ଅମୂଲ୍ୟ ରତ୍ନରାଜି ବର୍ତ୍ତମାନ ଏ ଦେଶରେ ବିରାଜିତ ଅଛି, ସେହି ଆଡ଼କୁ ପ୍ରଲୋଭିତ କରାଇବା ଉଦ୍ଦେଶ୍ୟରେ ଏ କ୍ଷୁଦ୍ର ଗ୍ରନ୍ଥ ସବିନୟ ନିବେଦନ ଓ ନିମନ୍ତ୍ରଣ କରୁଅଛି, ଆଉ ସେ ଚିତ୍ର ଦେଖାଇବା ସାଧ୍ୟ ଏ ନଗଣ୍ୟ ଗ୍ରନ୍ଥର କାହିଁ ହୋଇପାରେ ! ତେବେ ପାଞ୍ଚ ସାଙ୍ଗୀରେ ପାଞ୍ଚକଥା ହୋଇଥାଏ । ଏବେ ଆଜିକାଲି ରଙ୍ଗବଦଳା ମାଟିର ବ୍ୟବହାର ରୂପ ଏକାନ୍ତ ଅର୍ଥଲୋଭରେ ଯେ ଶିକ୍ଷା-ଦୀକ୍ଷାରେ କେବଳ ଆମ୍ଭେମାନେ ମାତିଥାଇଁ, ତହିଁ ସଙ୍ଗେ ମାଟିକୁ ମାଟି ବୋଲି ଚିହ୍ନିବା କଥା ଟିକିଏ ପଢ଼ିଲେ ଭଲ ଭିନ୍ନ ମନ୍ଦ ତ ନୁହେ । ଏବେ ଜୀବାତ୍ମାରୂପ ପୁରୁଷର ଏହି ମାର୍ଗ ଅନୁସରଣ ସଙ୍ଗେ ସଙ୍ଗେ ପ୍ରାସଙ୍ଗିକ ଓ ଆନୁସଙ୍ଗିକ ଆଉ କିଛି ନିତାନ୍ତ ଆଲୋଚ୍ୟ ବିଷୟର ଅବତାରଣା କରାଯାଉ ।

## ୭୭ଶ ପାଠ—ଯୋଗାଦିପକ୍ଷରେ ସାଧାରଣ ଜୀବ ଅକ୍ଷମ ଥିବାରୁ ଉପାସନା ପ୍ରଣାଳୀର ନାନାପ୍ରକାର ହେତୁ ପ୍ରଦର୍ଶନ ଓ ଅଧିକାରୀ ଭେଦ ବର୍ଣ୍ଣନା—

ଏହି ଯୌଗିକ ଅଷ୍ଟାଙ୍ଗ ବର୍ଣ୍ଣନାରୁ ବୁଝାଯାଏ, ଏହା ଅତ୍ୟନ୍ତ ପବିତ୍ର ଓ ଆତ୍ମାର ସର୍ବସାର ଆତ୍ମଧର୍ମ, ଅଥଚ ଏହାର ଅନୁଷ୍ଠାନ ଓ ଅଭ୍ୟାସାଦି ଅସାଧ୍ୟ ବା ବଡ଼ କଷ୍ଟ-ସାଧ୍ୟ । ଏତଦ୍ଦ୍ୱାରା ବର୍ଣ୍ଣିତ ବିକଳ୍ପ ରହିତ ପରମେଶ୍ୱରତତ୍ତ୍ୱ ପ୍ରତି ମନୁଷ୍ୟ ବିଶେଷତଃ ଆଜିର ଆତ୍ମବିସ୍ମୃତ, ସ୍ୱେଚ୍ଛାଚାରୀ, ବିଳାସୀ, ଲୋଭୀ ଓ ଗର୍ବଆଡ଼ମ୍ବରପ୍ରିୟ ମୋହମୁଗ୍ଧ

ଆମ୍ଭେମାନେ ଯେ କେତେଦୂର ଅନୁପଯୁକ୍ତ, ଏହା କହିବା ବାହୁଲ୍ୟ ମାତ୍ର । ତେବେ ମନୁଷ୍ୟ ନିଜ ଅହଂକାରପୂର୍ଣ୍ଣ ଚେଷ୍ଟାରେ ସୁଖ ଶାନ୍ତି ଲାଭ ସକାଶେ ଯେତେ ଯେଆଡ଼େ ଚେଷ୍ଟା-କରି ସୁଦ୍ଧା କେହି ତାହା ପାଇ ନ ଥିବାରୁ ଅଭାବ ପକ୍ଷରେ ଦୁଃଖ କଷ୍ଟ ବେଳେ କେହି କେହି 'ମାଲୋ' 'ବାପଲୋ' କହିବା ଠାକୁ ଯେପରି ଶ୍ରାନ୍ତିଦୂର ଓ ଶାନ୍ତିଲାଭର ଭରସାସ୍ଥଳ ବୋଲି ମନେକରନ୍ତି, କେହି କେହି ଭଗବାନ୍ ହରି ଇତ୍ୟାଦି ପରମେଶ୍ୱର ନାମ ନିଅନ୍ତି । କିଏ ଠିକଏ 'ହୁଁ' 'ଉଁ' ହେଲେ ହୋଇଥାଏ । ତେବେ ଆତ୍ମା ଭିତରେ ଭିତରେ ଜାଣିଅଛି ଯେ ସେ ଅକ୍ଷମ । ତାହାର କେହି ତ୍ରାଣକର୍ତ୍ତା ଭରସାସ୍ଥଳ ନିଶ୍ଚୟ ଅଛି । ଜାଣୁ ନ ଥିଲେ ସୁଦ୍ଧା ସେହି ଭକ୍ତିଆ ଭାବଟିକିକ ଗୁପ୍ତଭାବରେ ହୃଦୟରେ ସଦା ସଞ୍ଜୀବିତ ଓ ଜାଗ୍ରତ ଅଛି । ସେହି ଭାବ ପରିସ୍ଫୁଟ ଅବସ୍ଥାକୁ ପାଇଲେ ଆତ୍ମା ସାକ୍ଷାତ ଭାବେ ପରମେଶ୍ୱରଙ୍କୁ ଜାଣିବାକୁ ଚେଷ୍ଟାକରେ । ସେହି ଚେଷ୍ଟାର ବଶବର୍ତ୍ତୀ ହୋଇ ଧର୍ମ-କାର୍ଯ୍ୟ-କ୍ଷେତ୍ରରେ ପ୍ରବେଶ କରିବା ସ୍ୱାଭାବିକ, ମାତ୍ର ସେ ପ୍ରଭୁ ପରମେଶ୍ୱର କିପରି ଦୁର୍ଜ୍ଞେୟ, ଅଥଚ ଅନୁଗ୍ରାହକ, ପୁଣି ମାୟାବୀ, ତାହା ଆଲୋଚନା କରି ବୁଝାଯାଇଅଛି । ତେବେ ସେହି ଉଦ୍ଦେଶ୍ୟରେ ଏ ଗ୍ରନ୍ଥରେ ଯେପରି ଅଷ୍ଟାଙ୍ଗ ବର୍ଣ୍ଣନା ଶୁଣି କିଛି ଦୂର ଯାଇ କିଏ ଅଗ୍ରସର ହେବାର କଥା, କିଏ ବା ଲକ୍ଷ୍ୟରେ ପହଞ୍ଚିବାର କଥା, କିଏ ବା ପଶ୍ଚାତ୍‌ପଦ ହେବା, ବା ନାସ୍ତିକବାଦାଦି ଅବଲମ୍ବନ କରିବା ସମ୍ଭବ, ଏ ଆଜି ନୂଆ କଥା ନୁହେ । ଏହା ଏକ ପ୍ରକାର ବଡ଼ ପୁରାତନ ଅଥଚ ସଦା ଅନୁଭବନୀୟ । ଏହି ହେତୁରୁ ଭଗବାନ ପରମେଶ୍ୱରଙ୍କ ସମ୍ବନ୍ଧରେ ଏହିଠାରେ ସ୍ୱଭାବ ଓ ବୁଦ୍ଧିର ତାରତମ୍ୟ ଭେଦରେ ନାନାବିଧ ଉପାସନା ପ୍ରଣାଳୀର ସୃଷ୍ଟି ।

• ଭଗବତ୍‌ସାକ୍ଷାତ୍‌କାର ପ୍ରଣାଳୀ ସର୍ବଶ୍ରେଷ୍ଠ ପବିତ୍ର ଓ ସୂକ୍ଷ୍ମବୁଦ୍ଧିରେ ଆଦରଣୀୟ । କିନ୍ତୁ ବୁଦ୍ଧି, ସ୍ୱଭାବ ଓ ରୁଚି ନାନା ପ୍ରକାର । ତଦନୁସାରେ ଧର୍ମ ମାର୍ଗର ଦୂରଗାମୀ ସମ୍ପ୍ରଦାୟ ମଧ୍ୟରେ କି କି ତର୍କର ପଡିବା ସ୍ୱାଭାବିକ, ଏବଂ କିଏ କି ପ୍ରକାରେ ଭଗବାନ ହରିଙ୍କୁ ଉପାସନା କରନ୍ତି, ସେ ସମ୍ବନ୍ଧେ କହିବା ଅସମ୍ଭବ ହେଲେ ମଧ୍ୟ ଠିକଏ ଭିନ୍ନ ବାକ୍‌ବିନୋଦ କରାଯାଇଥାଉ । ମନୁଷ୍ୟ ପ୍ରାଣୀ ମାତ୍ରଇ ପ୍ରକୃତିଗତ ସ୍ୱଭାବର ଅଧୀନ । ସ୍ୱଭାବର ନିୟମ ମନୁଷ୍ୟର ଦେହ (ସ୍ଥୂଳରେ) ଆତ୍ମବୁଦ୍ଧି ଦୃଢ଼ ନିଶ୍ଚିତ ଥିବା ପର୍ଯ୍ୟନ୍ତ ସେ ଯେପରି ଆପଣାକୁ ଦେହମାତ୍ର କରି ଦେଖେ ଏବଂ ବୁଝିଥାଏ, ସେହିପରି ଚତୁଃପାର୍ଶ୍ୱ-ବର୍ତ୍ତୀ ମନୁଷ୍ୟମାନଙ୍କୁ ଦେହାତ୍ମସମ୍ପନ୍ନ କରି ମଣେ ଓ ଦେଖେ । ସୁତରାଂ ସେହିମାନେ ଯାହା ଯାହା ଆଚରଣ କରନ୍ତି ଏବଂ ଉକ୍ତ ଆଚରଣ ମଧ୍ୟରେ ଯାହା ଶ୍ରେଷ୍ଠ ବୋଲି ସେମାନେ ମଣନ୍ତି, ସେ ତଦନୁବର୍ତ୍ତୀ ହୋଇଥାଏ । କାରଣ ନୂତନ ଯେ କିଛି ଥିବା ସମ୍ଭବ ଏପରି ସେ କିଛି ଦେଖିପାରେ ନାହିଁ । ସେହି ହେତୁରୁ 'ସେ' ସେହିପରି ପାର୍ଶ୍ୱିକମାନ-ଙ୍କର ଯେଉଁ ବ୍ୟବହାରକୁ ଆପଣା ସୁସାଧ୍ୟ ଏବଂ କ୍ଷମତାଧୀନ ବୋଲି ଧରିନିଏ, ଅଥଚ ବୁଝେ ଯେ ଏହା ସମାଜରେ ମୋ ପକ୍ଷରେ ଚଳିଯାଇପାରେ, ସେ ତଦନୁରୂପ ଆଚରଣ

କରେ ବା ବ୍ୟବହାରପରାୟଣ ହୁଏ । ଲୌକିକ-ବ୍ୟବହାରଠାରୁ ଧର୍ମାନୁଷ୍ଠାନ ପର୍ଯ୍ୟନ୍ତ ସେ ଏହି ନିୟମରେ ପରିଚାଳିତ ହୁଏ । ଏହା ଦେହାଭିମାନୀ ମାନବର ସୀମାବଦ୍ଧ ନିର୍ଦ୍ଧାରଣ । ଏହି କାରଣରୁ ସଂସାରରେ ଦେଖିବାକୁ ମିଳେ, ଯେ ଯେଉଁ ଜାତି ବା ସମାଜରେ ଜନ୍ମ, ସେ ପ୍ରାୟ ତଦନୁରୂପ ଲୌକିକ ବା ଧର୍ମକ୍ରିୟାଦି ଅନୁଷ୍ଠାନ କରିଥାଏ । ଏହି ହେତୁରୁ ପୃଥିବୀରେ ଦେଖାଯାଏ ଯେ, ଯେ କେହି ବଡ଼ ବଡ଼ ପିଆଣିଆ ହୋଇଛନ୍ତି ବା ଭିନ୍ନ ଧର୍ମ କି ଉକ୍ତ ସମାଜର ଆଦର୍ଶାନୁଯାୟୀ ବଡ଼ ଶିକ୍ଷିତ ହୁଅନ୍ତି, ସେ ସ୍ୱୀୟ ସମାଜଗତ ଧର୍ମ ଓ ଲୌକିକ ବ୍ୟବହାରାଦି କରିଥାଆନ୍ତି । କ୍ୱଚିତ୍ କେହି ପ୍ରଲୋଭନାଦି ବା ପୀଡ଼ନାଦିବଶାତ୍ ପତନଦୋଷରେ କିଛି ଅନ୍ୟଥା କରିପାରିଥିବାର ଦେଖାଯାଏ । କିନ୍ତୁ କଦାଚିତ୍ ଜଣେ ମିଳିବା ବିରଳ, ଯେ କି ଏକାବେଳକେ ସେହି ନିଜ ଜାତି ବା ସମାଜଗତ ଯଥାର୍ଥ ଦୋଷଯୁକ୍ତ ବା ଅନର୍ଥକ ପ୍ରସଙ୍ଗଗୁଡ଼ିକ ବାଛି ଚିହ୍ନି ଦେଇ ସମାଜକୁ ହିତମତ ବୁଝାଇ ସେଗୁଡ଼ିକ ପରିତ୍ୟାଗ କରିବ, ଏବଂ ତତ୍ପରିବର୍ତ୍ତରେ କି କି କର୍ତ୍ତବ୍ୟ ଇତ୍ୟାଦି ଇତ୍ୟାଦି ନିଶ୍ଚୟ କରି ତଦ୍ରୂପ ସତ୍ୟପଥରେ ଲୋକଙ୍କୁ ପ୍ରବର୍ତ୍ତାଇବାକୁ ଉପଯୁକ୍ତ ବୋଲି ବିବେଚିତ ହେବ । ଏହା ଅସାଧାରଣ ମହାପୁରୁଷ ଲକ୍ଷଣ । ସେପରି ଲୋକର ସହଜସିଦ୍ଧ ସ୍ୱାଭାବିକ ଜ୍ଞାନ ବଳରେ ସେ ସମାଜ ନିଶ୍ଚିତ ବିଶିଷ୍ଟ ପ୍ରକାରର ହେବ । ଏହି ସମାଜ ମଧ୍ୟ ତାହାଙ୍କ ମହତ୍ତ୍ୱ ହୃଦୟଙ୍ଗମ କରିବା ପର୍ଯ୍ୟନ୍ତ ମଧ୍ୟେ ମଧ୍ୟେ ସ୍ୱକୀୟ ପୂର୍ବ କୁସଂସ୍କାର ବଳନାରେ ନାନାପ୍ରକାର ନୈତିକ ବା ପାଶବ ଯୁଦ୍ଧ ସେ ମହାପୁରୁଷ ମର୍ଦ୍ଦିତ କରିବାକୁ ଛାଡ଼ିବ ନାହିଁ । ଶେଷରେ ନ୍ୟାୟଧର୍ମର ଜୟବିଧି ନିର୍ଦ୍ଦିଷ୍ଟ ଥିବାରୁ ସେହି ମହାପୁରୁଷର ମତି ସମାଜକୁ ଧର୍ମ ବା ଲୌକିକ କ୍ରିୟାଦିରେ ସୁସଂସ୍କାରପନ୍ନ କରି ସମାଜର ଗୌରବ ଓ ପବିତ୍ରତା ବୃଦ୍ଧି କରିବ । ଏହାର ବିଧି-ନିର୍ଦ୍ଦିଷ୍ଟ ନିୟମ—ସମାଜର ବା ଜାତିର ବା ଦେଶର ନୈତିକ, ଲୌକିକ ବା ଆଧ୍ୟାତ୍ମିକ ଜୀବନର ଘୋର କଳଙ୍କିତ ବିପ୍ଳବ ଉପସ୍ଥିତ ହେଲାବେଳେ ଭଗବତୀ ପ୍ରକୃତିଦେବୀ ଏହିପରି ସୁସନ୍ତାନ ପ୍ରସବ କରିଥାଆନ୍ତି । ଏହା ତାଙ୍କର ସୃଷ୍ଟି ନିୟମ ।

ଏପରି ପୂର୍ବ ସମାଜବନ୍ଧନ ସଂସ୍କାର ଅନୁସାରେ ଯେ କେହି ସାଧାରଣତଃ ବଡ଼ ପ୍ରତିଭାଶାଳୀ ସୁଶିକ୍ଷିତ ହୁଅନ୍ତି, ସେ ପୂର୍ବ ପ୍ରଚଳିତ ପ୍ରଥାନୁଯାୟୀ ସମାଜକୁ ନିୟମାବଦ୍ଧ ରଖିବାକୁ ପ୍ରୟାସ ପାଆନ୍ତି । କାହାର କୌଣସି ସନ୍ଦେହ ମୋଚନ ବା ମୀମାଂସା ଆବଶ୍ୟକ ହେଲେ, ସେହିପରି ବ୍ୟକ୍ତିଙ୍କୁ ଏକ ପ୍ରକାର ବ୍ୟବସ୍ଥାପକ ଜ୍ଞାନ କରି ତାହାଙ୍କ ମୀମାଂସା-ନୁଯାୟୀ ଚଳିବାକୁ ଇଚ୍ଛା କରନ୍ତି ।

ଏହିପରି ସଂସାର ସର୍ବଦା ଭଲ ଲୋଡ଼ୁଥାଏ । ମାତ୍ର ସେ ପଥ ସର୍ବଦା ଏକ ପ୍ରକାର ଦୁର୍ଜ୍ଞେୟ । ଯେ ହେତୁ ଏହି ନିୟମାନୁଯାୟୀ ସଂସାରରେ ସର୍ବଦା ବହୁ ବହୁ ପ୍ରକାର ସମାଜ ଓ ରୀତିନୀତି ଏବଂ ଧର୍ମର ବ୍ୟବସ୍ଥା ପ୍ରଣାଳୀ ଓ ଭଗବଦାରାଧନାର

ନିୟମାଦି ଅନୁଷ୍ଠିତ ହେବାର ଦେଖାଯାଏ । ନିରକ୍ଷର କଚ୍ଛପଡ଼ାରେ କାଠଖଣ୍ଡ ହିଁ ଅଁ କୁ ପରମେଶ୍ୱରଜ୍ଞାନରେ ପୂଜା କରାଯାଇଥାଏ । କେତେବେଳେ ବଡ଼ ବଡ଼ ଗଛ ବା ପର୍ବତ ଇତ୍ୟାଦିରେ ଈଶ୍ୱରଜ୍ଞାନ ଆରୋପିତ ହୋଇ କୌଣସି କୌଣସି ସମାଜ ତାହା ଗ୍ରହଣ କରିବାର ମଧ୍ୟ ଶୁଣା ଯାଇଥାଏ । ପଢ଼ାଶୁଣା ଶ୍ରେଣୀରେ ଭଗବତ୍‌ତତ୍ତ୍ୱ ନିରୂପଣର ପନ୍ଥା ଦେଶପ୍ରଚଳିତ ଧର୍ମଗ୍ରନ୍ଥାନୁଯାୟୀ ହେଉ ବା ତର୍କିରେ ସୁଯୋଗ୍ୟ ଲୋକର ମତାନୁଯାୟୀ କିଛି କିଛି ମାର୍ଜିତ ବିଧାନ ମିଶିକରି ସେହି ମିଶ୍ରିତ ପନ୍ଥାନୁଯାୟୀ ହେଉ, ନାନାବିଧ ଭାବରେ ଦେଖାଯାଏ । ସେ ପନ୍ଥାଦିର ନାମ କରିବାକୁ ଗଲେ ଗୋଟିଏ ଗୋଟିଏ ଧର୍ମ ମଧ୍ୟରେ ଯେ କେତେ କେତେ ପ୍ରକାର ମତାନୈକ୍ୟ ପନ୍ଥା ବିଦ୍ୟମାନ, ତାହାର ସଂଖ୍ୟା ନାହିଁ । ସେ ସବୁର ନାମ ଲେଖିବାକୁ ଗଲେ କେତେ ବହି ଦରକାର କରିବ ଆଉ ତାହାର ବିବରଣର କଥା ବା କେଉଁଠାରେ ? ଧନ୍ୟ ମା ବାଗ୍‌ଦେବୀ ! ଧନ୍ୟ ତୁମ୍ଭ ଭଣ୍ଡାର, ଧନ୍ୟ ସେ ଭଣ୍ଡାରର ଅକ୍ଷୟ ଅବ୍ୟୟ ସୀମା !

ସେହି ଅପରିସୀମ ବାକ୍ୟାମୃତ-ସାଗରର ଆଭାସମାତ୍ର ଏଠାରେ ଉପସ୍ଥାପନ କରି ସାମାନ୍ୟ କଣିକାମାତ୍ର ଗ୍ରହଣ କରିବାକୁ ହେଉଅଛି । ବଡ଼ ଆଶ୍ଚର୍ଯ୍ୟ ବୋଧ କରିବାକୁ ହେବ, ସେହି ପ୍ରଭୁ ପରମେଶ୍ୱରଙ୍କି ଏପରି ସର୍ବମୟ ମାୟାଧର ମୂର୍ତ୍ତି ବୋଲି ସିନା ବିଭିନ୍ନ ମତବାଦୀ ଅଥଚ ସମସ୍ତେ ସବୁ ସମ୍ପ୍ରଦାୟର ବିଦ୍ୱାନ୍ ଲୋକମାନେ ନିଜ ନିଜ ବୁଦ୍ଧି ଓ ଯୁକ୍ତି ବଳରେ ସୁଦ୍ଧା ତାହାଙ୍କୁ ନାନା ରୂପେ ବର୍ଣ୍ଣନା କରି ତଦନୁଯାୟୀ ନାନା ପ୍ରକାର ଉପାସନାପ୍ରଣାଳୀ ସ୍ଥିର କରିଅଛନ୍ତି ! ସୂର୍ଯ୍ୟଦେବଙ୍କୁ ହଜାର ଲୋକ ଦେଖିଲେ ମୋଟ ଉପରେ ସମସ୍ତେ ଏକ ବାକ୍ୟରେ କହିବେ, ସେ ଗୋଲାକୃତି, ତେଜୋମୟ ଓ ଜ୍ୟୋତିବିଶିଷ୍ଟ ଅଟନ୍ତି । ତେବେ ପରମେଶ୍ୱରଙ୍କ ସମ୍ବନ୍ଧରେ ଏପରି ବିଭିନ୍ନ ମତ ଓ ବିଭିନ୍ନ ଉପାସନାର କାରଣ ବେଶ ବୁଝାଯାଉଅଛି । ସେ ଅନୁପମ ରୂପର ଯଥାର୍ଥ ସତ୍ତା ଉପଲବ୍‌ଧି କରାଯାଇପାରୁନାହିଁ । ଅନ୍ଧ ହସ୍ତୀ-ଦର୍ଶନ ନ୍ୟାୟ ସେହିଠାରେ ଖଟିବାକୁ ହୋଇଅଛି; ଅଥଚ ବିଭିନ୍ନ ସମ୍ପ୍ରଦାୟର ସର୍ବପ୍ରଥମ ବିଜ୍ଞ ପଦବାଚ୍ୟ ଲୋକ-ମାନେ ଆପଣା ଆପଣା ମତସ୍ଥାପନରେ ଏତେ ବ୍ୟସ୍ତ ଯେ, ଅନ୍ୟାନ୍ୟ ମତ ଏକବାରେ ଭ୍ରମ ବୋଲି ସ୍ଥିର କରନ୍ତି । ଏଥିର ସର୍ବପ୍ରଧାନ କାରଣ ଏହି ଯେ, ଭଗବାନ୍ ହରି ମନଇନ୍ଦ୍ରିୟର ଅଗୋଚର, କେବଳ ଅନୁମାନଦ୍ୱାରା ବା ଏକ ପ୍ରଗାଢ଼ ବିଶ୍ୱାସଦ୍ୱାରା ବା ଯେଉଁ ଯେଉଁ ପ୍ରକାରେ ପରମେଶ୍ୱର ସତ୍ତା ଉପଲବ୍‌ଧି କରିବାକୁ ପନ୍ଥା ବୋଲି ନିର୍ଦ୍ଦେଶ କରନ୍ତି, ସେ ସେହିରୂପଙ୍କି କରନ୍ତି । ସାର କଥା, ମନୁଷ୍ୟର ବୁଦ୍ଧି ସେ ସମ୍ବନ୍ଧେ ନିଶ୍ଚୟ ଭ୍ରାନ୍ତିଯୁକ୍ତ । ଦେହଟିକୁ 'ମୁଁ' ବୋଲି ବୁଝିବା ସମସ୍ତଙ୍କ ପକ୍ଷରେ ବଡ଼ ସହଜ । ମନ ବୋଲି ଲୋକେ କହନ୍ତି, ଜୀବ ବୋଲି ଲୋକେ କହନ୍ତି, ମାତ୍ର ତାହା ସ୍ୱରୂପତଃ ଉପଲବ୍‌ଧି କରିବା ବଡ଼ କଠିନ । ଆଉ ଯେଉଁ ପରମେଶ୍ୱର ମନ-ବୁଦ୍ଧିର ଅଗୋଚର, ତାହାଙ୍କ ସମ୍ବନ୍ଧରେ ଅନ୍ଧମାନଙ୍କର ହସ୍ତୀ ଦର୍ଶନ ନ୍ୟାୟ ତ ନିଶ୍ଚୟ

ଘଟିବ । ଜୀବ ବୋଲି ତ ଲୋକେ ଦେହକୁ ମାତ୍ର ମୋଟ ଉପରେ ବୁଝନ୍ତି, ଆଉ ଆପଣାକୁ ଜୀବ ବୋଲି ପୁଣି କହନ୍ତି । ସୁତରାଂ ଜୀବରୂପୀ ଆପଣାକୁ ଦେହ ବୋଲି ସାଧାରଣତଃ ମନେ କରା ଯାଇଥାଏ । ଏହି ହେତୁ ଦୈହିକ କିଛି କ୍ରିୟା ନିଷ୍ପନ୍ନ କରି ତାହାଦ୍ୱାରା ପରମେଶ୍ୱର ହରି ସନ୍ତୁଷ୍ଟ ହେଲେ ବୋଲି ମନେ ମନେ ବୁଝିନେବାକୁ ହୁଏ । ଏହିପରି ସଂସ୍କାର ହେତୁରୁ ମଧ୍ୟ ସେହିଭଳି କ୍ରିୟାର ସ୍ଥାନ, ଉପାସନା ବା ତୀର୍ଥାଦିକୁ ନିର୍ଣ୍ଣୟ କରିବାକୁ ହୋଇଥାଏ । ମାତ୍ର ଦେହ ତ ଦେହ, ତାହା ପୃଥିବୀରେ; କ୍ରିୟାକଳାପ ତ ଦେହର ଚେଷ୍ଟା ବିଶେଷ, ଦେବାଳୟାଦି ସ୍ଥାନ ତ ଯେଉଁପରି ସେହିପରି, ଯେଉଁଠାରେ ସେହିଠାରେ—ହରିଙ୍କ ସତ୍ତା ସେ ସବୁରେ ଅଛି ବୋଲି ବିଶ୍ୱାସ କରି-ନେବାକୁ ହୁଏ । ଖାଲି ତା' ନୁହେଁ, ତଦ୍ରୂପ ବିଶ୍ୱାସର ବଡ଼ ସାଙ୍ଗ ପୁଣି ସେହି ସମାଜଗତ ପ୍ରାଚୀନ ସଂସ୍କାରର ଅନୁକରଣ ବା ଆଦର୍ଶ—ଏଥିରେ ସମାଜଗତ ବା ସମ୍ପ୍ରଦାୟଗତ ଭେଦ ରହିବା ସ୍ୱାଭାବିକ । ଯେହେତୁ ଏଭଳି ବିଶ୍ୱାସ ଓ ଅନୁକରଣମୟ ଉପାସନାରେ ମନର ଯେଉଁ ଏକାଗ୍ରତା—ଅର୍ଥାତ୍ ଜଣେ ସର୍ବନିୟନ୍ତା ଅଛନ୍ତି ବୋଲି ଯେଉଁ ଆନୁମାନିକ ଦୃଢ଼ ଧାରଣା, ତହିଁରେ ପୁଣି ଏକାଗ୍ରତା ଓ ଅନନ୍ୟଭାବନାଶୂନ୍ୟ ମନର ନୈଷ୍ଠିକ୍ୟ ଓ ସଂଯୋଗ ଏ ସବୁର ସମଷ୍ଟିଫଳ "କହିବା ବଡ଼ କଠିନ" । ଏକ ପ୍ରକାର ଯୋଗାଙ୍ଗ ଜାତୀୟ ଅବସ୍ଥାପନ୍ନ ଭାବ ସଙ୍ଗେ ସମାନ ହୋଇ ପଡ଼େ । ସୁତରାଂ ଭଗବାନ ହରି ଅଜ୍ଞାତସାରରେ ସେ ସ୍ଥାନ ତାଙ୍କର ବୈକୁଣ୍ଠଧାମ ନ ହେଉ ପଛକେ, ଅନ୍ୟ ସ୍ଥାନ ହେଲେ ମଧ୍ୟ ପ୍ରକୃତିଗତ ମନ ଓ ବୁଦ୍ଧ୍ୟହଂକାରାଦି ଭଳି ଜଗୁଆଳି ବା ପ୍ରହରୀର ଅଭାବ ବା ପ୍ରସୁପ୍ତ ଭାବ ଦେଖି ଅନଧିକାର ପ୍ରବେଶ କ୍ରମେ ସେହିଠାରେ ଉପସ୍ଥିତ ହୋଇପଡ଼ନ୍ତି । ଅତଏବ ପ୍ରଗାଢ଼ ବିଶ୍ୱାସୀ ଉପାସକର ତଦ୍ରୂପ ବିଶ୍ୱାସ-କ୍ଷଣମଧ୍ୟରେ ମନ ଲୟ ହୋଇଯିବାରୁ ଆଉ "ଭଗବାନ୍ ହରି" ମନ ଲୟ ସ୍ଥାନକୁ ସର୍ବଦା ତାଙ୍କର ନିଜ ସ୍ଥାନ ରୂପରେ ବ୍ୟବହାର କରିବା କିମ୍ବା ତଦ୍ରୂପ ନିର୍ବିକଳ୍ପ ସ୍ଥାନ ଥିବା ତାଙ୍କର ନିଜ ଧର୍ମ ଥିବାରୁ ଉପାସକ ଓ ଭଗବାନ୍ ହରି ଏକସ୍ଥାନସ୍ଥ ହୋଇଯାଆନ୍ତି । ଏହିରୂପେ ସେହି ଟିକକରେ ମଧ୍ୟ ପରମେଶ୍ୱର ସତ୍ତା ଅଜ୍ଞାତସାରେ ଅନୁଭବ ହୋଇପଡ଼େ । ଏହି ହେତୁରୁ ପ୍ରଗାଢ଼ ବିଶ୍ୱାସରେ, ଭାବରେ ବା କ୍ରିୟାରେ ମନ ଲୟ ହୋଇଗଲେ ତଦବସ୍ଥାରେ ଜୀବୋପାଧି ଯେପରି ଲୁଚି ରହିଥାଏ, ଯୋଗରେ ମଧ୍ୟ ସେହି ଜାତୀୟ ସର୍ବ ଲୟ ଜୀବୋପାଧିରେ ଘଟିଥାଏ ।

ଏହି ହେତୁରୁ ତଦ୍ରୂପ ପ୍ରଗାଢ଼ ବିଶ୍ୱାସୀ ଓ ତତ୍କ୍ରମେ ମନଲୟକାରୀ ଉପାସକର ଜୀବୋପାଧି ଅଜ୍ଞାତସାରେ ଲୁଚିଯିବାରୁ ସେ ଯେଉଁ ଆତ୍ମପଦରେ କ୍ଷଣକ ପାଇଁ ପ୍ରତିଷ୍ଠିତ ହୁଏ, ଯୋଗାବଲମ୍ବୀ ପୁରୁଷର ଜୀବୋପାଧି ଜ୍ଞାନଦ୍ୱାରା ମଧ୍ୟ ସେହିପରି ଲୁଚିଯିବାରୁ ସେ ବି ସେହି ଆତ୍ମପଦରେ ଜ୍ଞାନ ସହିତ ଅଧିଷ୍ଠିତ ହୁଏ । ଯେ କୌଣସି ପ୍ରକାରେ ହେଉ, ମନର ଏକାଗ୍ରତାରେ ମନର ଲୟ ସାଧିତ ହୁଏ, ଏହା ମନର ଧର୍ମ । ସେହି ଲୟଭୂମି ହିଁ

ଜ୍ଞାନଭୂମି । ଏହିପରି କୌଣସି ପ୍ରକାର ଭାବରେ ପ୍ରଗାଢ଼ ବିଶ୍ୱାସ ସହକାରେ ଉପାସନା କାଳରେ ଉପାସକ ବୁଡ଼ିଯାଇ ଅର୍ଥାତ୍ ମନକୁ ଭୁଲିଯାଇ ଆତ୍ମଶାନ୍ତି ଉପଭୋଗ କରିବାରୁ, ସେହି ପ୍ରକାର ଭାବକୁ ବା ବିଶ୍ୱାସକୁ କମ୍ବା କ୍ରିୟାକୁ ବା ଯେ କୌଣସି ପ୍ରକାରର ଉପାସନାକୁ ବଡ଼ ମୋକ୍ଷପ୍ରଦ କରି ଧରନ୍ତିଏ । ଏହିହେତୁ ପରମେଶ୍ୱର ଉପାସନା ସମ୍ବନ୍ଧେ ମତଭେଦ ଘଟେ । ମାତ୍ର ଯେଉଁ ଦୃଢ଼ତା ଅନୁସାରେ ତା'ର ଫଳ ଘଟିଥାଏ, ଅଥଚ କାହା କଥା କେହି ଜାଣିବାର ଉପାୟ ନାହିଁ । ଭଗବାନ ହରି ଦୁର୍ଜ୍ଞେୟ; ଅଥଚ ଯୋଗଗମ୍ୟ, ଜ୍ଞାନଗମ୍ୟ ଏବଂ ନିରହଂକାର ଭାବଗମ୍ୟ ଇତ୍ୟାଦି ଅଟନ୍ତି—ଇତ୍ୟାଦି । ପୁଣି ଏହି ଯୋଗ, ଜ୍ଞାନ ଏବଂ ନିରହଂକାର ଭାବ ଇତ୍ୟାଦି ମଧ୍ୟ ଅଗମ୍ୟ ଅଟେ । ଏହିରୂପେ ହରିପଦ ଅଗମ୍ୟ ପଦବାଚ୍ୟ । ପୁଣି ଜୀବ ଆପଣାକୁ ଦେହ ବୋଲି ମାନିଥିବାରୁ ଦୈହିକ କ୍ରିୟା ଓ ଦୈହିକ ସୁଖସମ୍ଭୋଗାଦି ବ୍ୟତୀତ ଆଉ ଦୈହିକ ବ୍ୟବହାରଜନିତ ନାନାବିଧ ଭାବ ଉପଲବ୍ଧି କରିବା ଭିନ୍ନ ଆଉ କିଛି ଜାଣେ ନାହିଁ । ଆଉ ମଧ୍ୟ ଯୋଗରେ ଏ ସବୁର ତ୍ୟାଗ ବିଧିବଦ୍ଧ ହୋଇଅଛି । ସୁତରାଂ ଏଆଡେ ପ୍ରବୃତ୍ତି ଯାଏ ନାହିଁ । ଏହି ହେତୁ ସେପରି ଅବସ୍ଥାରେ ବିଶେଷତଃ ତଦବସ୍ଥାପନ୍ନ ଯୋଗାନଧିକାରୀ ପକ୍ଷରେ ଦୈହିକ କ ମାନସିକ ଭୋଗ ଉପଭୋଗ ସମ୍ବନ୍ଧୀୟ ଯେ କୌଣସି ଭାବରେ ଭାବୁକ ହୋଇ ତଦ୍ରୂପ ଲୌକିକ ଭାବକୁ ପରମେଶ୍ୱରଠାରେ ଅର୍ପଣ କରି ତଦ୍ଭାବ ହିଁ ତାହାଙ୍କୁ ସେପରି ଉପଲବ୍ଧି କରିବାକୁ ହେବ, ଏଭଳି ବିଶ୍ୱାସକୁ ମୂଳ କରି ଧରିବା ସେ ଭଳି ଅଧିକାରୀ-ପକ୍ଷେ ସ୍ୱତଃ ସମ୍ଭବ । ଏହି କାରଣରୁ ପରମେଶ୍ୱରଙ୍କଠାରେ ବିଶ୍ୱାସ ଓ ପ୍ରୀତି ସହକାରେ କେହି କେହି ଉପାସକ, ନିଜେ ପୁତ୍ର ତାଙ୍କୁ ପିତା ରୂପରେ, କେହି କେହି ଆପେ ପ୍ରଜା ଓ ତାଙ୍କୁ ରାଜା ରୂପରେ, କେହି କେହି ଆପେ ଶିଷ୍ୟ ଓ ପରମେଶ୍ୱରଙ୍କୁ ଗୁରୁରୂପେ, କେହି ଆପଣାକୁ ସ୍ତ୍ରୀ ଓ ତାଙ୍କୁ ସ୍ୱାମୀ ରୂପେ, ପୁଣି କେହି କେହି ଆପେ ଉପପତ୍ନୀ ଓ ତାହାଙ୍କୁ ଉପପତି ରୂପେ, କେହି କେହି ବା ଦାସ ଓ ତାଙ୍କୁ ପ୍ରଭୁ ରୂପେ, ଏହିପରି ନାନାଭାବରେ ଭଗବାନ୍ ହରିଙ୍କୁ ଉପାସନା କରନ୍ତି । ଅର୍ଥାତ୍ ନିଜ ନିଜ ସ୍ୱଭାବାନୁସାରେ ଲୌକିକ ବ୍ୟବହାର ସଂସାର ଉପଭୋଗରୁ ଯେଉଁ ଭୋଗଟିକୁ ଯେ ଅତ୍ୟନ୍ତ ପ୍ରୀତିକର, ସୁସାଧ୍ୟ ଏବଂ ଶ୍ରେଷ୍ଠ ବୋଲି ସ୍ଥିର କରିଥାଆନ୍ତି, ତଦ୍ରୂପ ଭାବଟିକୁ ସେ ପରମେଶ୍ୱରଙ୍କଠାରେ ଲଗାଇ ଉପାସନା କରିବାକୁ ତାଙ୍କର ସ୍ୱତଃ ପ୍ରବୃତ୍ତି ହୋଇଥାଏ; ଏବଂ ସେହି ଉପାସନା ତାଙ୍କ ପକ୍ଷରେ ସହଜସାଧ୍ୟ ହୁଏ । ଏହିପରି ସଂସାରରେ ନାନାବିଧ ଭାବୁକ ଭେଦରେ ଉପାସନାର ଭେଦ ଲକ୍ଷିତ ହୋଇଥାଏ । ମାତ୍ର ଏହି ଭାବର ଦୃଢ଼ତା—ପରିମାଣା-ନୁସାରେ ମନର ଲଘୁତା ଓ ସ୍ଥିରତା ଯଥାପରିମାଣେ ସମ୍ପାଦିତ ହେବା ସ୍ୱାଭାବିକ ।

ସଂସାରରେ ଯେପରି ଲୌକିକ ବ୍ୟବହାରରେ ସ୍ୱକୀୟ ସୁଖଦୁଃଖାଦି ସମ୍ଭୋଗ-ସାଧନକୁ ଲକ୍ଷ୍ୟ କରି ତାହା ପ୍ରାପ୍ତ୍ୟର୍ଥେ ମନୁଷ୍ୟ ଯଥାବିହିତ କର୍ମରେ ପ୍ରବୃତ୍ତ ହୋଇଥାଏ, ଆଉ ସୁଖ ସମ୍ଭୋଗାଦି ସାଧନର ଲକ୍ଷ୍ୟର ପାର୍ଥକ୍ୟାନୁସାରେ ମନୁଷ୍ୟମାନଙ୍କ ମଧ୍ୟରେ

ଯେପରି କର୍ମର ପାର୍ଥକ୍ୟ ଘଟେ, ସେହିପରି ଏତଦ୍ରୂପ ଉପାସନାର ପାର୍ଥକ୍ୟ ମଧ୍ୟ ସେହିସବୁ ବିଭିନ୍ନ ପ୍ରକାର ଭାବମୟ ପୃଥକ୍ ପୃଥକ୍ ଉପାସନା ପ୍ରଣାଳୀରୁ ହୋଇଥାଏ ।

ସାଂସାରିକ କାର୍ଯ୍ୟରେ ମନୋଯୋଗ ସହିତ କାର୍ଯ୍ୟ କରିବାର ତାରତମ୍ୟାନୁସାରେ ଯେପରି ଫଳର ତାରତମ୍ୟ, ଉପାସନାର ଦୃଢ଼ତାର ତାରତମ୍ୟାନୁସାରେ ସେହିପରି ଜ୍ଞାନ ବିବେକାଦିର ତାରତମ୍ୟ ଘଟିଥାଏ ।

ମୋଟ ଉପରେ କହିବାକୁ ଗଲେ, ଏଭଳି ଉପାସନାରେ ଦୁର୍ଜ୍ଞେୟ ଓ ମନ-ଇନ୍ଦ୍ରିୟାତୀତ ଭଗବାନ୍ ହରି କିପରି ପ୍ରସନ୍ନ ହୁଅନ୍ତି ଓ କଣ କରନ୍ତି, ମାୟାଧର ନଟବର ଚୂଡ଼ାମଣିଙ୍କୁ ଏଭଳି କୌଣସି ବ୍ୟବସ୍ଥାସମ୍ମତ ବା ଯୁକ୍ତିସଙ୍ଗତ ରଜ୍ଜୁରେ କଦାଚ ଆବଦ୍ଧ କରାଯାଇ ନ ପାରେ । ଯେ ସ୍ୱରୂପତଃ ସଚ୍ଚିଦାନନ୍ଦରୂପେ ସବୁରେ ସବୁ, ଅଥଚ କାହିଁରେ ନାହାନ୍ତି, ଯେ ସର୍ବମୟ ଅଥଚ ସର୍ବତନ୍ମୟ ନୁହେ, ଯେ ଭାବଗ୍ରାହୀ ମାତ୍ର ଭାବ ଯାହାଙ୍କୁ ଗ୍ରହଣ କରିପାରୁନାହିଁ—ତାଙ୍କ ସମ୍ବନ୍ଧେ ବ୍ୟବସ୍ଥା ବା କାହୁଁ ସମ୍ଭବ ? ସଂସାର-ତପ-ପରିକ୍ଳିଷ୍ଟ ଅଥଚ ଅନନ୍ୟୋପାୟ ହୋଇ ଜଳମଜ୍ଜନ ବେଳେ ଭାସମାନ ତୃଣକୁ ହାତ ବଢ଼ାଇଲା ପରି ଏ ଭବସାଗରମଗ୍ନ ଅର୍ଥାତ୍ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଚକ୍ରରେ ଆତ୍ମବୁଦ୍ଧିସମ୍ପନ୍ନ ଏହି ଜୀବ ଏଥିରୁ ଉତ୍ତୀର୍ଣ୍ଣ ହେବାପାଇଁ ତୃଣ ସ୍ୱରୂପ ନାନାବିଧ ଉପାୟ ଅବଲମ୍ବନ କରୁଅଛି ;—ମାତ୍ର ଏ ନାବେ ଗୁରୁ କର୍ଣ୍ଣଧାର, ହରି ଅନୁକୂଳ ସମୀର । ଏ ଦେହ ନାବ ରୂପ ହୋଇ, ସଂସାର ସାଗରେ ଭ୍ରମଇ । ଏ ଶୁଭ ପବନ କୁମ୍ଭକ, ସେଠାରେ ବ୍ରହ୍ମାଣ୍ଡ ନାୟକ । ଭାବକୁ ଅଛନ୍ତି ନିକଟ, ଅଭାବେ କଲେ ନାହିଁ ଭେଟ ।

ଯେ ହେଉ, ଯେ କୌଣସି ଭାବରେ ହେଲେ ଟିକିଏ, ଲବେ, ନିମିଷେ ବା ଦଣ୍ଡେ ସେହି ସନାତନ ହରିଙ୍କୁ ସ୍ମରଣ କରିବା ଏ କ୍ଳିଷ୍ଟ ଜୀବନର ସାର୍ଥକତା । ଏବେ ଉପାସନା ସମ୍ବନ୍ଧୀୟ ମତଭେଦର ବର୍ଣ୍ଣନା ଆଉ ଆଉ ଟିକିଏ ସେବା କରାଯାଉ । ଭଗବାନ୍ ହରି ବାସ୍ତବରେ ଉପମା ବା ବିଶେଷଣାଦିର ଅତୀତ । ମନବଚନର ଅଗୋଚର ଅଥଚ ସେ ସର୍ବଶ୍ରେଷ୍ଠ, ସର୍ବଶକ୍ତିମାନ୍, ଅଜ୍ଞାତ, ଅହେତୁକ, ଦୟାମୟ, ଉପକାରୀ ଓ ଦୁଃଖ ତ୍ରାଣ-କର୍ତ୍ତା ବୋଲି ପ୍ରାଣୀମାତ୍ରର ଗୋଟିଏ ଭିତିରିଆ ବିଶ୍ୱାସ ଓ ଅଟଳ ଭରସା ରହିଅଛି । ଏହା ରହିବାର କାରଣ—ନିଜର ଦୁଃଖ କଷ୍ଟ ନିବାରଣର ଅକ୍ଷମତା, ଆଉ ପ୍ରାଣୀ ଉପରେ ଦୁଃଖକଷ୍ଟାଦିର ସ୍ୱଭାବସିଦ୍ଧ ଆଧିପତ୍ୟ ବିସ୍ତାର । କେତେ ଧନଗର୍ବୀ, କେତେ ଜ୍ଞାନ ବା ମାନଗର୍ବୀ ହେଲେ ସୁଦ୍ଧା ମାନବ ଭାଇ ଉପରେ ସିନା ଶତମସ୍ତକ ସିଂହାବତାର, କିନ୍ତୁ ସାଂସାରିକ ପ୍ରକୃତିସୃଷ୍ଟ ଦୁଃଖତାପର ଜବରଦସ୍ତି ଚୋଡ଼ ବାହାରିଲା ବେଳକୁ ତ ସମସ୍ତେ ଏକଶ୍ରେଣୀୟ କୀଟାଣୁ । ଏ ହେତୁରୁ ହେଉ ବା ଅନ୍ୟ ଯେ କୌଣସି ଅକଥନୀୟ ଅଭାବ୍ୟ କାରଣରୁ ହେଉ, ହରି ସର୍ବଶ୍ରେଷ୍ଠ, ସର୍ବଶକ୍ତିମାନ୍ ଇତ୍ୟାଦି ଇତ୍ୟାଦି ସର୍ବସମ୍ପନ୍ନ ଅଥଚ ତ୍ରାଣକର୍ତ୍ତା ବୋଲି ସର୍ବବାଦୀସମ୍ମତ ।

## ୭୭ ଶ ପାଠ—ପରମେଶ୍ୱରଙ୍କ ପ୍ରତି ଜୀବର ଆଧ୍ୟାତ୍ମିକ ଭାବରେ ପିତା-ପୁତ୍ର ସମ୍ବନ୍ଧାତ୍ମକ ଉପାସନା

ଯେଉଁ ଉପାସନାଦ୍ୱାରା ଉପାସକ ଆପଣାକୁ ପୁତ୍ର ଏବଂ ପ୍ରଭୁଙ୍କୁ ପିତା ଜ୍ଞାନ କରି ଉପାସନା କରେ, ସେ ଦେଖି ବୁଝିପାରେ ଯେ ମୁଁ କେଉଁଠାରୁ କି ଅଜ୍ଞାତ କାରଣରେ, କେଉଁ ଦୁର୍ଜ୍ଞେୟ ସୂକ୍ଷ୍ମ ମାର୍ଗରେ ବା କାହାଦ୍ୱାରା କିପରି ଭାବରେ ମାତୃଗର୍ଭରେ ସଂସ୍ଥାପିତ ହେଲି ; ପୁଣି ସେଠାରେ ମୋ ଦେହଯନ୍ତ୍ର କିଏ ଗଢ଼ିଲା, ଗଠନପ୍ରଣାଳୀ ତ ଭାବନାତୀତ ଓ ବର୍ଣ୍ଣନାତୀତ । ଏହି ଦେହ ଯନ୍ତ୍ର ବାସ୍ତବିକ ହଜାର ନାଡ଼ୀଦ୍ୱାରା ଜାଲପରି ଛନ୍ଦମୟ । ପୁଣି କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟାଦି ବିଶିଷ୍ଟ ଲୋମଚର୍ମାଦି ସପ୍ତାବରଣଯୁକ୍ତ; ପୁଣି ଏଥିରେ ପ୍ରାଣ ସଞ୍ଚାଳନ-କ୍ରିୟା ଅତି ଅଦ୍ଭୁତ ବ୍ୟାପାର । ମଳମୂତ୍ର, ରକ୍ତ, ମଜ୍ଜାଦିର ନିର୍ମାଣ-କୌଶଳ ଏଥିରୁ ବଳି କରି; ଅଥଚ ଅସାର ଭାଗମାନଙ୍କର ବହିଷ୍କରଣ ମାର୍ଗ ଓ କ୍ରିୟା କି ଚମତ୍କାର ! ସମସ୍ତଙ୍କ ଉପରେ ମନ ବୁଦ୍ଧିର ସ୍ଥାନ ଅଜଣା ; କିନ୍ତୁ ତାହାର କ୍ରିୟା-କୌଶଳ ଆଶ୍ଚର୍ଯ୍ୟମୟ ବୈଚିତ୍ର୍ୟ ବିଶିଷ୍ଟତାର ସୀମାଠାରୁ ବହୁଦୂରରେ ଅବସ୍ଥିତ କି କିଏ କେଜାଣି । ଏହିପରି ଦେହଯନ୍ତ୍ରର ବର୍ଣ୍ଣନା ବୋଧହୁଏ ସ୍ୱୟଂ ବିଧାତାଙ୍କ ପୁରୁଷ ପକ୍ଷରେ ଅସମ୍ଭବ । ତେବେ ମନୁଷ୍ୟ ଏ ସମ୍ବନ୍ଧରେ ଆଲୋଚନା କରି ବହୁ ଅସଂଖ୍ୟ ଅସଂଖ୍ୟ ଗ୍ରନ୍ଥ ରଚନା କରିଅଛି । ପୁଣି ପୂଜ୍ୟପାଦ ମହର୍ଷିପ୍ରବରଙ୍କ ବର୍ଣ୍ଣନାସଂଯୁକ୍ତ ଗ୍ରନ୍ଥାଦିର ଇୟତ୍ତା ନାହିଁ । ସେ ସବୁ ବିଷୟ ଥରେ ଆଲୋଚନା କରିବାକୁ ବ୍ରହ୍ମାଙ୍କ ପରମାୟୁ ନଅଣ୍ଟ । ସେ ଗ୍ରନ୍ଥାଦି ନାମ ପୂରଣ କରିବାକୁ ମନୁଷ୍ୟର ଆୟୁ ବା କେତେ ? ଏପରି ଯେଉଁ ଦେହଯନ୍ତ୍ର କଥା ତାହା ମୋତେ ଜଣାନାହିଁ, ଅଥଚ ମୁଁ ସେହି ଯନ୍ତ୍ରକୁ ମୋର ଓ ମୁଁ ବୋଲି ଆସ୍ଥା ସ୍ଥାପନ କରି ସଂସାରରେ ବଡ଼ ଜଣେ କିଏ ହେ ? ମୁଁ ତ କାଷ୍ଠାଦପି କାଷ୍ଠାଣୁଠାରୁ ହୀନ ଓ ହେୟତମ । ଅତଏବ ଏଥି ସଙ୍ଗେ ସଙ୍ଗେ ବ୍ରହ୍ମାଣ୍ଡକୁ ଅବଲୋକନ କଲାବେଳକୁ ତ ତାହା ମୁଁ 'ମୁଁ' ନୁହେ କି କିଛି ନୁହେ । ମୋହରି ପରି ତ କୋଟି କୋଟି ଅସଂଖ୍ୟ ଅସଂଖ୍ୟ ପ୍ରାଣୀ ଅଛନ୍ତି, ତେବେ ଏସବୁର ଜନକ କିଏ ? ତାହାଙ୍କୁ ମୁଁ ଭକ୍ତିଭାବରେ ବା ନାନାବିଧ ଅଭାବ୍ୟ ପ୍ରକାର ଭାବରେ ତାଙ୍କରି ବାପପରି ତାଙ୍କୁ ନାମ ଦେଲେ ତ ସେହି ନାମ ଧରି ଡାକିବି ? ତେବେ ନାମ ତ ଗୁଣାନୁସାରେ ହେବା ଉଚିତ । ଅତଏବ ଏ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଅନାଲୋଚ୍ୟ, ଅଭାବ୍ୟ ଓ ଅକଥନୀୟ ସୃଷ୍ଟିର ଯେ ଜନକ ତାଙ୍କ ନାମ ଦିଆଯାଇପାରେ ଶ୍ରୀ ପରମେଶ୍ୱର ଜଗତ୍‌ପିତା 'ଅନନ୍ତ ନାମେ ଅନ୍ତ ନାହିଁ, ଅଣ ଅକ୍ଷରେ ଯାର ଦେହି ।' ଏଭଳିଆ ପୁଣି ସହସ୍ର ସହସ୍ର ନାମ ଭକ୍ତର ଜପାମାଳା ହୋଇଅଛନ୍ତି । ତେବେ ଏହିପରି ନାମ ଓ ଅଭାବ୍ୟ ରୂପ ଓ ଗୁଣବିଶିଷ୍ଟ କରି ଭଗବାନ୍ ହରିଙ୍କୁ ପିତାରୂପେ ସ୍ଥିର କରିବା ଏବଂ ଉପାସନା କରିବା । ଏପରି ଭାବ ସପକ୍ଷରେ ସବୁ ପ୍ରକାରର ଯୁକ୍ତିତର୍କାଦି ବିଦ୍ୟମାନ । ସେ ସବୁ ଆଲୋଚନା ବା ଅବଧାରଣାର ସମୟ କାହିଁ ? ବା ସ୍ଥାନ କେଉଁଠାରେ ? ଏହି କ୍ଷୁଦ୍ର ଗ୍ରନ୍ଥରେ ?

ନା, ପ୍ରେମୀ ସହୃଦୟ ପାଠକମାନେ ସେ ଭାବ ଆପେ ଆପେ ବର୍ଦ୍ଧନ କରି ହବାହବ ତାହା ଭାବ ଭାବ ଆନନ୍ଦରେ ନୃତ୍ୟ କରୁଥାଆନ୍ତି । ଆଉ ତହିଁର ପବିତ୍ର ଆଦର୍ଶ ଦେଖାଇ ସଂସାରକୁ ପବିତ୍ର କରୁଥାଆନ୍ତି । ଏହିପରି ନିବେଦନ କରି ଏବେ ଅନ୍ୟାନ୍ୟ ଭାବ ଆଡ଼କୁ ଯିବା ଆବଶ୍ୟକ ।

## ୭୮ଶ ପାଠ—ପରମେଶ୍ୱରଙ୍କ ପ୍ରତି ଜୀବର ଆଧ୍ୟାତ୍ମିକ ଭାବରେ ରାଜା-ପ୍ରଜା ସମ୍ବନ୍ଧାତ୍ମକ ଉପାସନା

ରାଜା-ପ୍ରଜା ସମ୍ବନ୍ଧର ତ କଥାଇ ନାହିଁ । ପ୍ରଭୁ ପରମେଶ୍ୱର ଉପରୋକ୍ତ ମତେ ବା ଏହି ଗ୍ରନ୍ଥର ପୂର୍ବ ବର୍ଣ୍ଣନାନୁସାରେ ଏହି ପିଣ୍ଡ-ବ୍ରହ୍ମାଣ୍ଡ ରଚନା କରି ତହିଁରେ ଯେଉଁ ଶାସନ ଓ ପାଳନ ବିଧି ପରିଲକ୍ଷିତରୂପେ ନିର୍ଦ୍ଦିଷ୍ଟ କରିଅଛନ୍ତି, ତାହା ଦେଖି ତାଙ୍କୁ ଅନନ୍ତ କୋଟି ବ୍ରହ୍ମାଣ୍ଡର ଓ ଅସଂଖ୍ୟ କୋଟି ସୃଷ୍ଟି-ପ୍ରାଣୀର ମହାରାଜ, ରାଜାଧିରାଜ, ସାର୍ବଭୌମ ଏକମାତ୍ର ପ୍ରଭୁ ବୋଲି ଉପାସନା ନ କରି କେଉଁ କୃତଘ୍ନ ସ୍ଥିର ରହିବ ? ଯେ କୋମଳ ଦେହ ସୃଷ୍ଟି କରି ତାହାକୁ ପୃଥିବୀର ଅଙ୍କର କୋମଳମୟ ଶଯ୍ୟାରେ ଥୋଇଅଛି ଓ ଚଳନାଚଳନ ପାଇଁ ପୃଥିବୀକୁ ବର୍ତ୍ତୁଳାକାରରେ ଗଢ଼ିଅଛି, ଯାହାର ଆଜ୍ଞା ଏତେ ଅପ୍ରତିହତ ଓ ନିତ୍ୟ ଦୃଢ଼ ଯେ ବାୟୁ ଚିରକାଳ ସର୍ବତ୍ର ବହୁଅଛି ଓ ସବୁ ଜୀବମାନଙ୍କୁ ଜୀବନୀୟ ପ୍ରାଣରୂପେ ରକ୍ଷା କରିଅଛି, ମେଘ ବୃଷ୍ଟି କରିବାରେ, ସୂର୍ଯ୍ୟ ଚନ୍ଦ୍ର ଆଲୋକ ଦେବାରେ, ଆକାଶ ସ୍ଥାନ ଖାଲି ରଖିବାରେ ସଦା ନିଯୁକ୍ତ ।' ପୃଥିବୀ ନାନାବିଧ ଫଳମୂଳାଦି ପ୍ରସବ କରିଭଳି ସଦା ଉତ୍ପାଦିକା ଶକ୍ତିଯୁକ୍ତ ହୋଇ ସବୁବେଳେ ଖାଦ୍ୟପେୟ ଦାନ କରୁଅଛି । ପ୍ରାଣୀ-ସୃଷ୍ଟି-ପ୍ରବାହରକ୍ଷାର୍ଥରେ ସବୁ ପ୍ରାଣିମାନେ ଋତୁକାଳରେ ଗର୍ଭଧାରଣ କରିବାକୁ ତିଳେ ମାତ୍ର ସମୟର ବ୍ୟତିକ୍ରମ କରିପାରୁ-ନାହାନ୍ତି, ଇତ୍ୟାଦି ଇତ୍ୟାଦି ପ୍ରକାରରେ ପ୍ରକୃତିଦେବୀ ଯାହାଙ୍କର ପ୍ରତ୍ୟକ୍ଷ ଆଜ୍ଞା ପାଳନ କରି ପ୍ରାଣିସୃଷ୍ଟିର ରକ୍ଷାପାଳନର ବିଧାନ ଯେପରି ସର୍ବଦା କରିବାରେ ନିଯୁକ୍ତ, ସେଥିରୁ ଦେଖାଯାଏ ଏପରି ଶାସନ ପାଳନ ଉଭୟବିଧ ନିୟମ ଯାହାଙ୍କର ସର୍ବଦା ଅପ୍ରତିହତ ଓ ଅଲଂଘ୍ୟ ଭାବରେ କାର୍ଯ୍ୟ କରୁଅଛି, ସେ କେଡ଼େ ବଡ଼ ଶାସକ ଓ ପାଳକ । ଏହି ଦେହସ୍ଥ ଜୀବ ଏହି ଦେହ ଓ ଏଇ ସଂସାରକୁ ଦେଖି ସର୍ବଦା ଶାସନ ଏବଂ ପାଳନମାତ୍ରକୁ ପ୍ରତ୍ୟକ୍ଷ କରୁଅଛି । ପ୍ରାଣୀଠାରେ ଦୟା ଓ ପରୋପକାର ବୃତ୍ତି ଦେଖି ପ୍ରତ୍ୟକ୍ଷ କରିବାକୁ ହେବ ପ୍ରାଣୀ ପୋଷଣ ପାଇଁ ଏହି ଦୁଇ ବୃତ୍ତି ଯେଉଁ ପ୍ରଭୁଙ୍କର ଦାନଶୀଳ ହସ୍ତପରି ପୃଥିବୀରେ ସଦା ମୁକ୍ତ ରହିଅଛି, ଅନ୍ୟାୟ ଉପଶମ ପାଇଁ ପ୍ରତିଆକ୍ରମଣ ବୃତ୍ତି ସଶସ୍ତ୍ର ଶାସନଦଣ୍ଡଠାରୁ ବଳି କାର୍ଯ୍ୟ କରୁଅଛି, ନ୍ୟାୟପରତା ବୃତ୍ତି ଯାହାଙ୍କର ପିଆଦାପରି ଚୋରର ପର୍ଯ୍ୟନ୍ତ ଚୌର୍ଯ୍ୟବୃତ୍ତି ନିଷିଦ୍ଧ ଅଟେ ବୋଲି ଭିତରେ ଭିତରେ ଶିକ୍ଷା ଦେଉଅଛି—ଚୋରେ କହୁଥାଏ ଚୋରି ଖରାପ କାର୍ଯ୍ୟ, ପାପୀ କହୁଥାଏ ପାପ ମନ୍ଦ କାର୍ଯ୍ୟ,—ଏତଦ୍ରୂପ ନ୍ୟାୟପରତା ଯାହାଙ୍କର ସର୍ବତ୍ର ପିଆଦାର କାର୍ଯ୍ୟ କରୁଅଛି, ପୁଣି ଏ ପ୍ରଭୁଙ୍କୁ

କେହି କାଠପଥର କରି ଜ୍ଞାନ କଲେ ବା କେହି ନାସ୍ତିକତା ସହକାରେ ଈଶ୍ୱର ନାହାନ୍ତି, ଆମ୍ଭେମାନେ ଓ ଏ ନିୟମହିଁ ସବୁ ବୋଲି କହିଲେ ବା ଯେ ଯେଉଁରୂପେ ନିର୍ଦ୍ଦେଶ କଲେ କାହିଁରେ ବିଚଳିତ ନ ହୁଅନ୍ତି ବୋଲି ସିନା ସମସ୍ତେ ଏହିପରି କହି କହି ସୁଦ୍ଧା ସୁରକ୍ଷିତ ରହିଅଛନ୍ତି, ପ୍ରତିପାଳନରେ ଯେ ପ୍ରଭୁ ଏତେ ଦୟାଳୁ ସେ ପାଳକ ଓ ଶାସକର ସ୍ଥାନ ଅଧିକାର କରି ସବୁବେଳେ ବିରାଜ କରିଅଛନ୍ତି । ଜୀବ ଜାଣିବାକୁ ଯୋଗ୍ୟ ହେଲେ ବୁଝିପାରୁଅଛି ଯେ ସେହି ଆଜ୍ଞା ଲଙ୍ଘନ କରି ରାଜସ ତାମସ ପ୍ରକୃତିର ବଶବର୍ତ୍ତୀ ହୋଇ ତନ୍ମୟ ପ୍ରାପ୍ତିମାର୍ଗ ଯମନିୟମାଦି ସେବା ନ କରି ଇନ୍ଦ୍ରିୟପରାୟଣ ଓ ଅସଂଯତ ହେବାରୁ ସେହି ଜୀବ ପୁନଃ ପୁନଃ ସଂସାର-କୂପରେ ପଡ଼ାଉଠା କରୁଅଛି । ଯେଉଁ ପ୍ରଭୁ ପରୀକ୍ଷା ସକାଶ ରାଜସ ତାମସ ସେବୋପହାର ସଂସାରରେ ମୃଗତୃଷ୍ଣା ସଦୃଶ ଦେଖାଇ ପରୀକ୍ଷୋତ୍ତୀର୍ଣ୍ଣ ହେଲେ ଜୀବକୁ ଆତ୍ମପଦବୀ ପ୍ରଦାନ କରୁଅଛନ୍ତି, ସେ ମହାପ୍ରଭୁ କେବଳ ଶାସକ ଓ ପାଳକ, ପୁଣି କାହାଠାରୁ କିଛି ମଧ୍ୟ ଗ୍ରହଣ କରିବା ପାଇଁ ଜୋର ଜବରଦସ୍ତି କିଛି ନାହିଁ;—ପ୍ରୀତିସହକାରେ ପତ୍ର-ପୁଷ୍ପ-ଫଳ ଓ ଜଳ ପର୍ଯ୍ୟନ୍ତ ଦେଲେ ତ ଖୁସିର ସୀମା ରହେ ନାହିଁ । ଏପରି ଶାସକ ଓ ପାଳକ ଆଉ କିଏ ? ଅତଏବ ଏ ପ୍ରଭୁଙ୍କୁ ରାଜାଧିରାଜେଶ୍ୱର ରୂପେ ଏ ଜୀବ ଦର୍ଶନ କରି ପ୍ରକୃତିର ପ୍ରବୃତ୍ତିମୟ ମାର୍ଗରେ ନ ଯାଇ ସେହି ପ୍ରଭୁଙ୍କର ନାମକୁ ହେଲେ ପ୍ରୀତିସହକାରେ ଭଜନ ସ୍ମରଣ କରୁଅଛି । ତନ୍ମୟ ଆଦେଶ ଓ ଉପଦେଶ ସ୍ୱରୂପ ବେଦାଜ୍ଞା ଓ ଶାସ୍ତ୍ର ପୁରାଣାଦି ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ-ପାଳନୋପଦେଶାଦି ଗ୍ରହଣ କରି ତଦନୁରୂପ ଅନୁଷ୍ଠାନ କରିବା ବିଧେୟ । ନିତାନ୍ତ ପକ୍ଷେ ପ୍ରଭୁ ବୋଲି ଭୟଭକ୍ତି ସହକାରେ 'ପାପୋଽହଂ ପାପକର୍ମାଽହଂ' କହି କିଏ ଅନୁତାପ କରିବା ଉଚିତ । ଦେଖ, ଏହି ମହାରାଜ ସର୍ବଦା ଅନ୍ତଃକରଣ ପୀଠରେ ସ୍ୱତ୍ତ୍ୱମୟ ସିଂହାସନରେ ଜ୍ଞାନ-ବିଜ୍ଞାନ-ବୈରାଗ୍ୟାଦି ରତ୍ନଖଚିତ ଆସନ ଉପରେ ସର୍ବୈଶ୍ୱର୍ଯ୍ୟ-ସମନ୍ୱିତ ମହାଯୋଗେଶ୍ୱର ରୂପେ ବିରାଜ କରି ଏ ଦେହାଦି ସଂସାରକୁ ଉପରି ଜ୍ଞାନାଲୋକ ସ୍ୱରୂପ ତନ୍ମୟ କିରଣମାଳାରେ ବିଭୂଷିତ ଓ ଶୋଭାମୟ କରି ରଖିଅଛନ୍ତି ; ନୋହିଲେ ଏ ମୃଣ୍ମୟ ଦେହ ସଂସାରରେ ଖାଲି ବୁଡ଼ା ଚିବୁ ଚେର୍ବାଇ ଚେର୍ବାଇ ହଡ଼ା-ବଳଦ ମଲାପରି ଏ ଜୀବତୟର କେବଳ ଦୁଃଖତାପର ପରିସୀମା ରହନ୍ତା ନ ଥାନ୍ତା । ଅତଏବ ଭଗବାନ ହରି ଜୀବରୂପ ପ୍ରଜାର ଏକମାତ୍ର ପୂଜନୀୟ ଓ ବନ୍ଦନୀୟ ପ୍ରଭୁ ଅଟନ୍ତି ।

## ୭୯ଶ ପାଠ—ପରମେଶ୍ୱରଙ୍କଠାରେ ଗୁରୁଶିଷ୍ୟ ସମ୍ବନ୍ଧ

ମହାପ୍ରଭୁ ପରମେଶ୍ୱରଙ୍କୁ ଶ୍ରୀଗୁରୁ ରୂପରେ ଦର୍ଶନ ଓ ଆପଣାକୁ ଶିଷ୍ୟ ରୂପେ ସ୍ଥିର କରି ତନ୍ମୟ ଜ୍ଞାନୋପଦେଶାଦିରେ ଏକମନ ହେବା ଏ ଜୀବ ପକ୍ଷରେ ଯେ କେତେ ମହାଭାଗ୍ୟର ବିଷୟ ତାହା ବର୍ଣ୍ଣନା କରିବା ମାନବ ଶକ୍ତିର ଅତୀତ । ଯେଉଁ ପ୍ରଭୁ ବିରାଟ ବିଶ୍ୱମୂର୍ତ୍ତି ଧାରଣ କରି କ୍ଷୁଦ୍ର ଦେହଧାରୀ ଜୀବକୁ ସ୍ୱତଃ ଗୁରୁଶିଷ୍ୟ ଭାବ ଶିକ୍ଷା ଦେଉ-

ଅଛନ୍ତି, ସେହି ପ୍ରଭୁ ଏହି ବିରାଟ ରୂପ ଧରି କ୍ଷୁଦ୍ର ଦେହଧାରୀ ଜୀବକୁ ସୃଷ୍ଟି କରି ଶିଖାଉ- ଅଛନ୍ତି,—ସେ ଯେପରି କୀଟାଣୁଠାରୁ ବୃହଦାକାର ବିରାଟ ମୂର୍ତ୍ତି ଧାରଣ କରି କାହାକୁ ତୁଚ୍ଛ କରୁନାହାନ୍ତି ; ଶିଷ୍ୟର ତଦନୁରୂପ ଦୃଷ୍ଟି ପ୍ରାଣୀମାତ୍ରଠାରେ ଆଶ୍ୱାସ ଓ ଶ୍ରଦ୍ଧା କରି କାହାକୁ ତୁଚ୍ଛ ତାଚ୍ଛଲ୍ୟ କରିବା ଉଚିତ ନୁହେ । ପ୍ରଭୁ ଯେପରି ବାୟୁ ରୂପରେ ସର୍ବତ୍ର ବିଚରଣ କରି ସର୍ବ ପ୍ରାଣୀର ନିଃଶ୍ୱାସ ପ୍ରଶ୍ୱାସ ସଙ୍ଗେ ମିଶି ଭେଦାଭେଦ ତ୍ୟାଗ କରି ସମସ୍ତଙ୍କୁ ସମଭାବରେ ରକ୍ଷା କରୁଅଛନ୍ତି, ଶିଷ୍ୟ ସେହି ରୂପ ସାଧ୍ୟାନୁସାରେ ଦେଶ ପ୍ରଦେଶ, ନାନାତୀର୍ଥ ଭ୍ରମଣ କରି ନିକଟସ୍ଥ ପ୍ରାଣୀବର୍ଗଙ୍କୁ ଉପକାର କରିବା ବିଷୟରେ କୃତସଙ୍କଳ୍ପ ହେଉ । ପ୍ରଭୁ ଯେପରି ସୂର୍ଯ୍ୟରୂପେ ସର୍ବ ଜଗତର ଅନ୍ଧକାର ନାଶ କରି ଆଲୋକ ପ୍ରଦାନ କରିବାଦ୍ୱାରା ସମସ୍ତଙ୍କୁ କାର୍ଯ୍ୟକ୍ଷମ କରାଉଅଛନ୍ତି, ଶିଷ୍ୟ ସେହିପରି ଧର୍ମଜ୍ଞାନାଲୋକ ସଂସାରରେ ବିତରଣ କରି ସାଧାରଣ ଅଜ୍ଞାନମୋହକୁ ସଂସ୍କାର ଓ କଦାଗ୍ରହାଦି ନିବାରଣ ବିଷୟରେ ଯତ୍ନପର ହେବା ବିଧେୟ । ପ୍ରଭୁ ଯେପରି ଜଳ ରୂପରେ ସାଧାରଣ ପ୍ରାଣୀର ପ୍ରାଣରକ୍ଷାବ୍ରତ ଧାରଣ କରିଅଛନ୍ତି, ଶିଷ୍ୟ ତଦନୁରୂପ ସାଧାରଣ ପ୍ରାଣୀକୁ ସାଧ୍ୟାନୁସାରେ ଅନ୍ନଜଳଦାନରେ କଷ୍ଟବୋଧ ନ କରି ଦେବାର ସାଧ୍ୟ ନ ଥିଲେ କହି ବୋଲି ଅନ୍ୟଦ୍ୱାରା ସେପରି କରାଇବା ଉଚିତ ।

କ୍ଷୁଧା-ପିପାସା ପୀଡ଼ାର ମହତ୍ତ୍ୱ ବୁଝିଥିବାରୁ ଭଗବାନ୍ ହରି ଜଳରୂପରେ ବିରାଜମାନ । ତେବେ ମନୁଷ୍ୟ ଯେ ନିଜ ଜାତିର କ୍ଷୁଧାପିପାସାର କାତରତାରେ ସାହାଯ୍ୟ ନ କରିବ ବା ଅଧିକନ୍ତୁ ସାଧାରଣର କ୍ଷୁଧାପିପାସା ନିବାରଣ ଉପାୟକୁ ବରଂ ନଷ୍ଟ କରି ସେମାନଙ୍କ କଷ୍ଟ, ଯନ୍ତ୍ରଣା ଦର୍ଶନରେ ଆମୋଦ କରିବ, ଏହା ପ୍ରଭୁଙ୍କର ଗୁରୁ ଉପଦେଶ ନୁହେ । ଏ ସ୍ଥୂଳ ସଂସାରଚିତ୍ରରୁ ଏହା ବୁଝା ଯାଉଅଛି । ପୁଣି ଭଗବାନ୍ ହରି ନାଦରୂପେ 'ହେ' ଗୁରୁମୂର୍ତ୍ତି ଧାରଣ କରି ଶବ୍ଦବ୍ରହ୍ମ ବୋଲାଉଅଛନ୍ତି । ପିଣ୍ଡଧାରୀ ଜୀବର ପ୍ରାଣବାୟୁ ଗମନାଗମନରେ ଅର୍ଥାତ୍ ପ୍ରାଣ ବହିର୍ଗମନବେଳେ 'ସ' କାର ନାଦମୂର୍ତ୍ତି ଧାରଣ ଓ ଅନ୍ତଃପ୍ରବେଶକାଳେ 'ହ' କାର ନାଦ ସହିତ ସଂଯୋଗଦ୍ୱାରା ବାହ୍ୟାନ୍ତର ବିଚରଣ କରି ପ୍ରାଣକ୍ରୀଡ଼ାନିରତ ଅଛନ୍ତି । ପ୍ରଭୁଙ୍କର ଏହି କ୍ରୀଡ଼ା ଜୀବରୂପେ ପ୍ରାଣୀଆକାରରେ ଶିଷ୍ୟରୂପ ଧାରଣ କରି ମୁହୂର୍ମୂହୁ ଗୁରୁମନ୍ତ୍ର ଦୀକ୍ଷା ପାଇଅଛି; ଏବଂ ଏହି ଦୀକ୍ଷାହିଁ ଜୀବନର ନାମାନ୍ତର ମାତ୍ର ।

ଏହି ପ୍ରାଣ ଯେଉଁ ସ୍ଥାନରୁ ଉଦ୍ଗତ ହୋଇ ଆସି ନାସାରନ୍ଧ୍ରର ବାହାରକୁ ସ୍ପର୍ଶ କଲାମାତ୍ର 'ମରିଗଲି କି ?' ଏହି ଭୟରେ ପୁଣି ପଳାଇଯାଇ ସେହି ଉଦୟ ସ୍ଥାନରେ ମୁଣ୍ଡ ଲଗାଇ ସଞ୍ଜିବନୀ ମନ୍ତ୍ର ଗ୍ରହଣ କରି ପୁଣି ବାହ୍ୟସ୍ପର୍ଶ ଲୀଳା ଦର୍ଶନକୁ ଧାବମାନ ହେଉଅଛି । ଏହାହିଁ ଶିଷ୍ୟରୂପୀ ଜୀବର ପ୍ରକୃତ ସଂସାରଯାତ୍ରା । ଏହିପରି ସେହି ଯେଉଁ ଆଦିସ୍ଥାନ , ଯହିଁରୁ କି 'ସ' କାର ନାଦର ବହିର୍ଗମନ ଏବଂ ଯେଉଁଠାରେ 'ହ' କାର

ନାଦର ବଳୟ, ଏହି ଉଦୟ ବଳୟର ଯେଉଁ ମୂଳୀଭୂତ ପଦ, ତାହା ପ୍ରଣବାତ୍ମକ ସାକ୍ଷାତ୍ ଗୁରୁ ରୂପ । ସ୍ୱୟଂ ଗୁରୁଦେବ ପ୍ରଣବମୂର୍ତ୍ତି ଧାରଣ କରି କୁମ୍ଭକାକାରେ ସ୍ଥିରଭାବେ ନିତ୍ୟ ବିରାଜମାନ । ସେହିଠାରୁ କ୍ରୀଡ଼ାନୁରୋଧରେ ଶିଷ୍ୟରୂପ, ରେଚକ, ପୂରକାତ୍ମକ ସକାର ହକାର ନାଦ ଅର୍ଥାତ୍ ଜୀବର ବିକାଶ । ହଂସଃ ସୋଽହଂ ଭବେଜ୍ଜୀବଃ, ଓଁକାରେ ବ୍ରହ୍ମବାଚକଃ; ଜୀବ ଏହି ଗୁରୁଶିଷ୍ୟଭାବ ବା ସମ୍ବନ୍ଧ ବିସ୍ମରଣ କରି ଜଡ଼ଦେହକୁ 'ମୁଁ' ବୋଲି ଜ୍ଞାନ କରିବା ଶ୍ରୀଗୁରୁମନ୍ତ୍ର ଦୀକ୍ଷାର ବିପରୀତ ଧର୍ମ । ଏ ଜୀବ ସ୍ୱରୂପତଃ, ସ୍ୱଭାବତଃ, ସ୍ୱତଃ ଶ୍ରୀ ଭଗବାନ ହରିଙ୍କର ନିତ୍ୟ ଶିଷ୍ୟ । ସେହି ଶ୍ରୀ ଗୁରୁଚରଣାରବିନ୍ଦ ସେବାରେ ଏ ଜୀବ 'ନିତ୍ୟମୁକ୍ତ' ଉପାଧିର ଅଧିକାରୀ । ଆଉ ସେହି ଦୁର୍ଲ୍ଲଭ ପଦ ବିସ୍ମରଣ ଜନ୍ୟରୁ ଚନ୍ଦ୍ରାୟଣ ଓ ସୂର୍ଯ୍ୟାୟଣ ମାର୍ଗରେ ଭ୍ରମଣ କରି ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚକ୍ର ଦର୍ଶନରେ ବିଭ୍ରାନ୍ତ ଓ ବିମୋହିତ ହୋଇ ଦେହାଦି ସଂସାରକୁ ମୋର ଅର୍ଥାତ୍ ତହିଁରେ 'ମମକାର' ସ୍ଥାପନ ପୂର୍ବକ ସ୍ୱୟଂ ଅଜ୍ଞାନମୟ ଜୀବ ଜଡ଼ଦେହାକାରମୟ ହୋଇଅଛି; ଏହାହିଁ ଜୀବର ନିତ୍ୟବଦ୍ଧ ସ୍ୱରୂପ ଓ ଉପାଧି ।

ଜୀବ ଶିଷ୍ୟତ୍ୱ ବିସ୍ମରଣ କରି ଏହି ସଂସାରରେ କିପରି ତାପ ଓ କଷ୍ଟ ବରଣ କରିଅଛି ତାହା ପ୍ରତ୍ୟକ୍ଷାନୁଭୂତ ହେଉଅଛି । ଆଉ ଶିଷ୍ୟତ୍ୱ ଉପଲବ୍ଧିରେ ତାହାର ନିତ୍ୟ ମୁକ୍ତ ସ୍ୱରୂପ, ଏହି ନିତ୍ୟମୁକ୍ତାବସ୍ଥାରେ ଗୁରୁ ଶିଷ୍ୟ ପରସ୍ପର କଥାବାର୍ତ୍ତା ହେଉଅଛନ୍ତି ଓ ସେ ଏପରି କଥାବାର୍ତ୍ତା ନୁହେ, ତାହା ପ୍ରେମାଳାପ । ଯେପରି—ମୋ ଠାରେ ଦେଖି ତୁ ଉଦେ ହୋଇଅଛୁ, ତୋହଠାରେ ଦେଖି ମୁହିଁ ; ତୋର ମୋର ଦୁହେଁ ଚିହ୍ନାଚିହ୍ନି ହେଲେ ଏକାଜଣେ ସବୁଠାଇଁ । ଶିଷ୍ୟର ଶେଷୋକ୍ତି—ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁଦେବୋ ମହେଶ୍ୱରଃ । ଗୁରୁ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ । ଏହି ଗୁରୁ ଶିଷ୍ୟ ସମ୍ବନ୍ଧରୁ ଆଉ କିଛି ବିଶେଷ ଶିକ୍ଷା ସଂସାରକୁ ମିଳୁଛି । ଶ୍ରୀଗୁରୁଦେବ ଭେଦାଭେଦ ତ୍ୟାଗକରି କି ମୂଢ଼, କି ଜ୍ଞାନୀ, କି ପବିତ୍ର, କି ଅପବିତ୍ର, ସବୁପ୍ରକାର ଜୀବୋପାଧିକ ଶିଷ୍ୟମାନଙ୍କୁ ଜ୍ଞାନାଲୋକ ସମଭାବେ ପ୍ରଦାନ କରି ସମସ୍ତଙ୍କ ଅନ୍ତଃକରଣକୁ ଓ ଇନ୍ଦ୍ରିୟାଦିକୁ ପ୍ରକାଶିତ ଓ କାର୍ଯ୍ୟକ୍ଷମ କରାଇଅଛନ୍ତି, ମାତ୍ର ଜୀବମାନେ ନିଜ ନିଜ ଭାବ ଅନୁଯାୟୀ ନାନା ସୁପଥ ଓ କୁପଥର ଆଶ୍ରୟ ନେଉଅଛନ୍ତି । ତଥାପି କାହାରିଠାରେ ତାଙ୍କର ବୈଷମ୍ୟଭାବ ନାହିଁ । ଯେତେ ନର୍ତ୍ତକୀ ଯେତେ ଯେତେ ପ୍ରକାର ନୃତ୍ୟାଦି କରୁଥାଆନ୍ତୁ ନା କାହିଁକି, ମାତ୍ର ପ୍ରଦୀପଧାରୀ ସମସ୍ତଙ୍କୁ ସମଭାବେ ଆଲୋକ ପ୍ରଦାନରେ ସାହାଯ୍ୟ କରୁଥାଏ । ଶ୍ରୀଗୁରୁଙ୍କର ଜ୍ଞାନାଲୋକଦାନ ସେହିପରି, ସୁତରାଂ ସଂସାରୀୟ ଜୀବର ଧର୍ମ ଯଥାସାଧ୍ୟ ଜ୍ଞାନଦାନ କରିବ ଓ ସବୁପ୍ରକାର ଦୁଃଖ କଷ୍ଟରେ ସଂସାରର ସମସ୍ତଙ୍କ ସହିତ ସମ ସହାନୁଭୂତି ଦେଖାଇବ ।

ଶ୍ରୀଗୁରୁଦେବଙ୍କ ଗୁଣ ସୁମରି ସୁମରି ଶେଷ ହେବାର ନୁହେ । ପ୍ରଭୁ ସର୍ବତ୍ର ସମଜ୍ଞାନଦାତା, ଦୁଃଖକଷ୍ଟର ସମାନ ପରିତ୍ରାତା ଅଟନ୍ତି । ସମସ୍ତଙ୍କ ପାଇଁ ସବୁ

ରଖିଛନ୍ତି, ଅଥଚ ନଜେ ତହିଁରୁ ଟିକିଏ ହେଲେ ଗ୍ରହଣ କରିବାକୁ ନାହାନ୍ତି । ବିଶେଷତଃ ଏପରି ଉପକାର କରି ସୁଦ୍ଧା ମୁଁ ଏପରି କଲି ବୋଲି ଟିକିଏ ହେଲେ ଅହଂକାର ନାହିଁ । କାହାରିଠାରୁ କିଛି ପାଇବା ଆଶା ବି ନାହିଁ । ଅଥଚ କେହି ଉପକାରୀ ବୋଲି ବା ଆମ୍ଭରୁ ବଳି ଅଧିକ ବୋଲି ଜାଣେ ତାଙ୍କ ପ୍ରତି ଟିକିଏ ହେଲେ ଭକ୍ତିଶ୍ରଦ୍ଧା ଦେଖାଇବାକୁ ବ୍ୟସ୍ତ ହେବ ସେ ବ୍ୟଗ୍ରତା ଟିକିକ ଯାହାଙ୍କ ପକ୍ଷେ ଅସହ୍ୟ ବୋଲି ସ୍ୱୟଂ ଆପଣ ଅବ୍ୟକ୍ତ, ଅଚିନ୍ତ୍ୟ ଓ ଅଶ୍ରବ୍ୟ ବା ସୂକ୍ଷ୍ମରୁ ସୂକ୍ଷ୍ମତମ ଆକାର ଧାରଣ କରି ନିଗମ ସ୍ଥାନରେ ରହିଅଛନ୍ତି । ଶିଷ୍ୟପଦବାଚ୍ୟ ଜୀବର ଏ ମାୟା ସଂସାରରେ ବା ଜାଗତିକ ବସ୍ତୁଜାତ ସମୂହରେ କୌଣସି ଭଗବନ୍ନିର୍ମିତ ମାୟିକ ବସ୍ତୁକୁ 'ମୁଁ' 'ମୋର' କରିବାର ଦାବି ନାହିଁ । ସେ ସବୁକୁ ସବୁ ପ୍ରାଣୀର ସମାନ ଉପକାରରେ ଲଗାଇ ତଦ୍ଦ୍ୱାରା ତାହାର ନିରହଂକାର ଓ ନିର୍ମମ ରହିବାର ଧର୍ମ, କିଛି ମୁଁ କରିନାହିଁ, ମୋର କିଛି ନାହିଁ, ସମସ୍ତ ଭଗବତ୍‌ସୃଷ୍ଟ । ଯଦି କେହି କହେ ଘୃତ କିଏ ଈଶ୍ୱରସୃଷ୍ଟ ?- ଗୃହଜଳକୁ ଜଳ ଅଗ୍ନି ସାହାଯ୍ୟରେ ବା ଦୈହିକ ଯତ୍ନ ବା ଚେଷ୍ଟା ଦ୍ୱାରା ଘୃତରେ ପରିଣତ କରାଗଲା । ପରିଷ୍କାର କହିବାକୁ ଗଲେ ଧାନରୁ ଗୃହଜଳ, ଧାନ ବା ଗୃହଜଳ, ଜଳ, ଅଗ୍ନି, ଦେହ କିମ୍ବା ଦୈହିକ ଯତ୍ନ ଚେଷ୍ଟାଦି, ଯେଉଁ ଶକ୍ତିରୁ ସେ ସବୁର ମୂଳ ସେହି ଆପଣ । ତାଙ୍କର ସଂସାର ପାଳନ ରକ୍ଷଣବୃତ୍ତାନୁସାରେ ସେ ଯେଉଁ ଜଗତ ବା ଜାଗତିକ ବସ୍ତୁ-ସମୂହ ସୃଷ୍ଟି କରିଅଛନ୍ତି ବା ତଦ୍ରୂପ ସୃଷ୍ଟ ହେବା ସକାଶେ ମୌଳିକ ପଦାର୍ଥମାନଙ୍କଠାରେ ପରିଣାମୀ କାରଣ ନିହିତ କରି ରଖିଅଛନ୍ତି ତଦନୁସାରେ ତାଙ୍କର ମହତ୍ ଉଦ୍ଦେଶ୍ୟ ସାଧନାର୍ଥ ଏକ ମୂଳକାରଣରୁ ଏ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ବିଶ୍ୱସଂସାର ବହୁଧା ହୋଇଅଛି ଏବଂ ବହୁଧା ପରିଦୃଷ୍ଟ ହେଉଅଛି । 'ମୁଁ' 'ମୋର' ଏ ଦୁଇଟି ସଂସାର-କ୍ଷେତ୍ରରେ କାର୍ଯ୍ୟ ସାଧନ କରିବା ନିମିତ୍ତ ତାଙ୍କର ଅପ୍ରଶସ୍ତ ସ୍ୱରୂପ ବ୍ୟବହୃତ ହେଉଅଛି ମାତ୍ର ।

ଜୀବରୂପୀ ଶିଷ୍ୟ ନିମିତ୍ତମାତ୍ର ହୋଇ ତାଙ୍କର ସେହି ସଂସାର-ରକ୍ଷଣ-ପାଳନ-ଧର୍ମ-ସଂରକ୍ଷଣାର୍ଥ ତାଙ୍କର ସୃଷ୍ଟ ଅହଂକାର, ମମକାରାଦି ଇନ୍ଦ୍ରିୟବୃତ୍ତ୍ୟାଦି ଓ ଦେହାଦି ଦ୍ୱାରା ଯଥାବିହିତ କାର୍ଯ୍ୟ ସମ୍ପାଦନ କରୁଅଛି । ତେବେ ଏ ସମୁଦୟ ଜଗତ ଓ ଜାଗତିକ ବସ୍ତ୍ୱାଦି ଏବଂ ସଂସାରୀୟ କର୍ମ ଓ ଭୋଗାଦି ତାଙ୍କର ବିଶ୍ୱମୟ ଉଦର ମଧ୍ୟରେ । ଜଳାଶୟରେ ପାଣିଫୋଟକା ଜାତ ହୋଇ କିଛିକ୍ଷଣ ରହି ଦେଖାମାତ୍ର ଦେଇ ପୁଣି ସେହି ଜଳରେ ମିଶି ଜଳ ହେଲା ପରି ତାଙ୍କର ଉଦ୍ଦେଶ୍ୟ ସାଧନାର୍ଥ ତାଙ୍କର ଦତ୍ତ ଉପକରଣାଦି ଦ୍ୱାରା ସାଧିତ ହୋଇ କର୍ମ ଓ ଭୋଗାଦି ନାନା ଆକାରରେ ପରିଦୃଷ୍ଟ ହୋଇ କିଛିକ୍ଷଣ ରହି ଏବଂ ପୁଣି ସେହି ବିଶ୍ୱଉଦରରେ ମିଶି ବିଶ୍ୱମୟ ହୋଇ ଯାଉଅଛି । ପ୍ରଭୁଙ୍କର ଏହି ମାୟିକକଳ୍ପନା-ପ୍ରସାରଣ-ବୃତ୍ତି ବାଜିକର କୁହୁକର କାର୍ଯ୍ୟ ଭଳି ଠିକ୍ ଅଟେ । ଜୀବରୂପୀ ଶିଷ୍ୟ ଏହା ଦେଖି ଏଥିରେ ଆଉ କିଏ ମୋହିତ ହେବାକୁ ତାର ଅବସର ଅଛି ? ନା, ସେ କେବଳ କହୁଛି 'ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପଂ' ।

ଏବେ ଜୀବାତ୍ମା ସଂସାରରେ ଏହି ପାଞ୍ଚଭୌତିକ ଜଗତରେ ପିଣ୍ଡବ୍ରହ୍ମାଣ୍ଡାତ୍ମକ ମାୟାନିର୍ମିତ ଚିତ୍ର ଦେଖି ଆଉ ଭ୍ରମିବାର ଉଚିତ ନୁହେ । ପରୋପକାର ତଥା ଜଗତର ମଙ୍ଗଳ ନିମିତ୍ତ କର୍ମେନ୍ଦ୍ରିୟ ଦ୍ୱାରା ଜ୍ଞାନସାଧନ କରି ଏବଂ ତତ୍ସମୁଦାୟ ଫଳ ଜଗତାର୍ଥରେ ବିଶ୍ୱକାରଣ ପରମେଶ୍ୱରଙ୍କଠାରେ ଅର୍ପଣ କରି ଗୁରୁଧର୍ମ ପାଳନ ସମାପନକରଣାନନ୍ତର ଏହି ଶିଷ୍ୟ ଗୁରୁଦକ୍ଷିଣା ସ୍ୱରୂପ ସ୍ୱୀୟ ଆତ୍ମାକୁ ଜୀବୋପାଧି ସହିତ ସେହି ଅକ୍ଷୟ-ଅବ୍ୟୟ-ପଦାରବିନ୍ଦ-ଧୂଳିକଣାନିଭ-ସର୍ବୈଶ୍ୱର୍ଯ୍ୟ-ସମନ୍ୱିତ ଚିନ୍ମୟ ମହାଦାକାଶରେ ବିଲୟ କରିଦେଇ 'ଶ୍ରୀ ହରୟେ ନମଃ' ଉଚ୍ଚାରଣ ପୂର୍ବକ ଶାନ୍ତିଲାଭ କରୁ । ଏବେ ସେବ୍ୟସେବକଭାବ ସମ୍ବନ୍ଧରେ ଫୁଲ ପାଖୁଡ଼ାଏ ସ୍ୱରୂପ ଦୁଇପଦର କଥାମାତ୍ର ଶ୍ରୀଚରଣ-ତଳେ ଅର୍ପଣ କରାଯାଉ ।

## ୮୦ଶ ପାଠ—ସେବ୍ୟ-ସେବକ ସମ୍ବନ୍ଧ

ଶିଷ୍ୟତ୍ୱ ଏବଂ ସେବକତ୍ୱ ପ୍ରାୟ ଏକଶ୍ରେଣୀର ଉପାସନା । ତେବେ ଗୁରୁଧର୍ମ ମାର୍ଗାନୁସରଣ ଏବଂ ଗୁରୁବ୍ରତାନୁକରଣ ଶିଷ୍ୟତ୍ୱର ପ୍ରଧାନ ଅଙ୍ଗ । ମାତ୍ର ସେବକତ୍ୱ କି ଧର୍ମ ଓ କି ବ୍ରତ ଇତ୍ୟାଦି ଆଡ଼େ ଲକ୍ଷ୍ୟ ନ ରଖି କେବଳ ଶ୍ରୀଗୁରୁଦେବ ପ୍ରଭୁଙ୍କର ସେବାକୁ ଧର୍ମ, ବ୍ରତ ବା କର୍ମାଦି ବୋଲି ତାହାର ଏକମାତ୍ର ଧାରଣା । ଶିଷ୍ୟ କହେ, ଶ୍ରୀଗୁରୁ ପରମେଶ୍ୱର ସର୍ବାଙ୍ଗ ବିଶିଷ୍ଟ 'ଦେହ' ଆଉ ଶିଷ୍ୟ କହିଲେ ଯେପରି ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ; ଅଥଚ ଅଙ୍ଗପ୍ରତ୍ୟଙ୍ଗ ସମଷ୍ଟି ଦେହ, ଅର୍ଥାତ୍ ଜୀବ ସମଷ୍ଟି ଗୁରୁରୂପ ପରମେଶ୍ୱର ଓ ବ୍ୟଷ୍ଟିତ ଜୀବନିଚୟ । ଜୀବତ୍ୱ ହିଁ ଶିଷ୍ୟତ୍ୱର ନାମାନ୍ତର ମାତ୍ର । ସେ ଲକ୍ଷ୍ୟରେ ଜୀବ ପରମେଶ୍ୱରଙ୍କର ଅଙ୍ଗ ବା ପ୍ରତିବିମ୍ବ କିମ୍ବା ଆଭାସ ଚୈତନ୍ୟ ଇତ୍ୟାଦି ଇତ୍ୟାଦି । କିନ୍ତୁ ସେହି ଜୀବର ଦାସତ୍ୱ ବା ସେବକତ୍ୱ ଉପାଧିଟି କେବଳ ଲୀଳାମୟ ପରମେଶ୍ୱରଙ୍କର ଦାସ ବା ସେବକ ମାତ୍ର । ପରଂବ୍ରହ୍ମଙ୍କର ଐଶ୍ୱର୍ଯ୍ୟାଦି ସର୍ବବିଧ ଶକ୍ତି ସହିତ ସଂଯୋଗରୁ ଲୀଳାର ବିକାଶ । ସେହି ଲୀଳାରୁ ସର୍ବବିଧ ଦେବ, ଗନ୍ଧର୍ବ, ଯକ୍ଷ, ଅପ୍ସର, କିନ୍ନର, ସୁର, ଅସୁର ଏବଂ ନରାଦି ସର୍ବଜୀବ ପୁରୁଷରୂପୀ ଆତ୍ମାର କଳ୍ପନା । ଅତଏବ ଯେଉଁ ଯେଉଁ ଲୀଳାଂଶରେ ପରଂବ୍ରହ୍ମ ଭଗବାନ ପରମେଶ୍ୱରଙ୍କର ଯେଉଁ ଯେଉଁ ଜୀବୋପାଧିର କଳ୍ପନା, ସେହି ସେହି ଉପାଧିମୟ ଆତ୍ମା ଭଗବାନ ହରିଙ୍କର ସେହି ସେହି ଲୀଳା ସମ୍ପାଦନ କରିବାର ଉପଯୋଗୀ ସେବକମାତ୍ର । ଏହି ରୂପେ ଜୀବୋପାଧିରେ ଅନ୍ତଃକରଣେନ୍ଦ୍ରିୟାଦି ଓ ଦେହାଦି ଦ୍ୱାରା ଯେତେ ଯେତେ ପ୍ରକାର କର୍ମାଦି ଓ ବୈଷୟିକ ଭୋଗାଦି ସମ୍ପାଦିତ ହେଉଅଛି, ତହିଁରେ 'ମୁଁ କର୍ତ୍ତା' ବା 'ମୁଁ ଭୋକ୍ତା' ଇତ୍ୟାଦି ଇତ୍ୟାଦି ଧାରଣା ଅମୂଳକ ଥିବା ସତ୍ତ୍ୱେ ସେ ସବୁ ସେହି ପରମେଶ୍ୱରଙ୍କ ଲୀଳାଙ୍ଗର କ୍ରୀଡ଼ାମୟ ଚେଷ୍ଟା, ଚଳନ ବା ଦୋଳାୟମାନ ଅବସ୍ଥାଭିନ୍ନ ଆଉ କିଛି ନୁହେ । ଅତଏବ ମୁଁ କର୍ତ୍ତା ବା ମୁଁ ଜ୍ଞାତା ଅଥବା ମୁଁ ଭୋକ୍ତା ବୋଲି ଯାହା ସଂସାରରେ ଉପଲବ୍ଧି ହେଉଅଛି, ସେ ସବୁକୁ ମୁଁ ସେବକରୂପେ

ସେହି ଲୀଳାଧାରୀଙ୍କ ଲୀଳାମୟ ଉଦ୍ଦେଶ୍ୟ ସାଧନାର୍ଥ ସେବାମାତ୍ରରୂପେ କରୁଅଛି; ତହିଁରେ 'ମୁଁ' ବା 'ମୋର' ବୋଲି ଏପରି ଲିପ୍ତଭାବାତ୍ମକ ଲକ୍ଷ୍ୟ କିଛି ନାହିଁ। ଦାସତ୍ୱ ବା ସେବକତ୍ୱର ଏହାହିଁ ପାରମାର୍ଥିକ ଅର୍ଥ। ଏହିପରି ପ୍ରକୃତପକ୍ଷରେ ସେ ସେବକ ଯେ ଦେଖୁଅଛି, ପ୍ରଭୁଙ୍କ ଲୀଳା ସର୍ବତ୍ର ପରିବ୍ୟାପ୍ତ। ଏହି ଲୀଳାକୁ ଅବଲମ୍ବନ କରି ଏହି ପିଣ୍ଡ ବ୍ରହ୍ମାଣ୍ଡାତ୍ମକ ଜଗଦାକାର ଚିତ୍ର ସୁଶୋଭିତ ଓ ସୁରଞ୍ଜିତ ହୋଇଅଛି। ଚନ୍ଦ୍ରସୂର୍ଯ୍ୟାଦିଙ୍କର ଉଦୟ, ଅନୁଦୟ, ବାୟୁର ଚଳନ, ଜଳର ବର୍ଷଣ ଇତ୍ୟାଦି ଇତ୍ୟାଦି ଏତତ୍ ଫଳେ ପ୍ରାଣିସୃଷ୍ଟିର ଅବସ୍ଥାନ। ପ୍ରାଣିମାନଙ୍କର ଲୀଳାଖେଳା, ବୃକ୍ଷଲତାଦିଙ୍କର ଫଳପୁଷ୍ପପଲ୍ଲବାଦି ଧାରଣ ଇତ୍ୟାଦି ସର୍ବମୟ ସର୍ବପ୍ରକାର ଦୃଶ୍ୟ ସେହି ପ୍ରଭୁଙ୍କ ଅବ୍ୟକ୍ତ ପ୍ରକୃତି ପୁରୁଷ ଯୋଗାତ୍ମକ ଲୀଳାର ବିକାଶ ମାତ୍ର। ଏହା ଦେଖି ଏଥିରେ ପ୍ରେମୋଦ୍‌ଗମ ସହିତ ଗଦ୍‌ଗଦ ହୋଇ କେତେବେଳେ ମୌନ, କେତେବେଳେ ହାସ୍ୟ, କେତେବେଳେ ନୃତ୍ୟଗାନାଦିରେ ମତ୍ତ ହୋଇ ବାହ୍ୟଜ୍ଞାନଶୂନ୍ୟପ୍ରାୟ ସଂସାରରେ ବିଚରଣ କରୁଅଛି। ଆଉ ଦେଖୁଅଛି ଯେ ପ୍ରାଣୀମାତ୍ରର ଦୈହିକ କି ମାନସିକ କି ବାଚନିକ ଯେ କୌଣସି ପ୍ରକାରର ଯହିଁରେ ହେବା ସମ୍ଭବ ତାହା ଶ୍ରୀ ମହାପ୍ରଭୁଙ୍କ ଲୀଳା-ବିକାଶର ବିଘ୍ନସ୍ୱରୂପ, ସେ ସବୁ ହିଂସାଦି ବା ଚିନ୍ତାଦି ଏକାବେଳକେ ପରିବର୍ଜନୀୟ ଓ ପରିହାରଯୋଗ୍ୟ। ଏପରି ସଦାଶୟ ସେବକ ସର୍ବଦା ପ୍ରାଣୀର ସୁଖ ସମ୍ପାଦନରେ ବ୍ୟସ୍ତ। ତିଳେ ମାତ୍ର କୌଣସି ଦୁଃଖ କଷ୍ଟ ବା ବେଦନାଦି ଅଥବା ପ୍ରାଣୀର ଅମର୍ଷ ବିମର୍ଷାଦି ଦେଖିଲେ ତାହା ମୋଚନର ଉପାୟକୁ ଭଗବତ୍‌ସେବା ବୋଲି ଜ୍ଞାନ କରେ। କୌଣସି ପ୍ରତ୍ୟୁପକାର ଆଶା ନ ରଖି କର୍ତ୍ତବ୍ୟ ବୋଧରେ ସେ ସର୍ବଦା ପ୍ରାଣୀର ଉପକାର ଓ ହିତକର କାର୍ଯ୍ୟ କରି ତଦ୍ୱାରା ପ୍ରଭୁଙ୍କ ସେବା କରୁଅଛି ବୋଲି ସନ୍ତୁଷ୍ଟ ଥାଏ।

ପ୍ରାଣୀ ସଂସାର ଦର୍ଶନ କରି ଭଗବତ୍ ଲୀଳାମାତ୍ର ଦେଖୁଅଛି। ଆଉ ଲୀଳ! ଯେଉଁଠାରେ, ସେହି ଲୀଳାମୟ ଦୃଶ୍ୟ ସଙ୍ଗେ ସଙ୍ଗେ ଲୀଳାବିହାରୀ ହରି ସେହିଠାରେ ବିରାଜମାନ କରିଅଛନ୍ତି ବୋଲି ଦେଖୁଥାଏ। ଏହି ହେତୁରୁ ପ୍ରାଣୀମାତ୍ର ଦର୍ଶନରେ ସେ ଅନ୍ତରୁ ନମ୍ର ଓ ଗୁରୁ ପ୍ରେମ ସ୍ନେହ ସହିତ ସାଷ୍ଟାଙ୍ଗ ଦଣ୍ଡବତ କରୁଥାଏ। ତା ଭାବ ଆଉ କିଏ କାହୁଁ ଜାଣିବ ? ସେ ପବିତ୍ର ଭାବ ସେ ଭାବୁକକୁ ମଧ୍ୟ ଅଗୋଚର। ଏହି ସେବ୍ୟ-ସେବକଭାବ-ପୂର୍ଣ୍ଣ ଉପାସନା ଅକୃତ୍ରିମ। ଏହା ଏକମାତ୍ର ହୃଦୟର ତନ୍ମୟତା ସହିତ ବିଜଡ଼ିତ। ଭିତରେ ବୈଷୟିକ ଜଟିଳ କୁଟିଳତା ଲୁଚାଇ ରଖି ବାହାରରେ ଉପରୋକ୍ତ ନିର୍ଦ୍ଦିଷ୍ଟ ଆଦର୍ଶ ଦେଖାଇ ଫମ୍ପା ବାହାଦୁରି ନେବା ଘୋର ପାପ। ଏହା ଆତ୍ମ ପ୍ରବଞ୍ଚନା। ଏ ପବିତ୍ର ଭାରତ ଆଜି କି ପାପମୟ ବିଦେଶୀ କୁସଂସ୍କାରରେ କଳୁଷିତ, ତଥାପି ଏହା ପ୍ରଭୁଙ୍କ ଏକ ପ୍ରକାର ତାମସୀ ଲୀଳାର କ୍ଷଣସ୍ଥାୟୀ ଶେଷାଙ୍କର ଶେଷ ମୁହୂର୍ତ୍ତ ମାତ୍ର। ଆହା ! ଯୁଗେ ଯୁଗେ ପରମେଶ୍ୱରଙ୍କ ଅବତାର-ଲୀଳାଭୂମି ପବିତ୍ର ପୁଷ୍ପ-ଚନ୍ଦନ-ବିଲେପିତ ତଳ୍ପକଳ୍ପ ଭାରତ ଆଜି କାଲି ପାପ କୁତ୍ସିତ ଆଦର୍ଶ-ପଙ୍କରେ ବିଲେପିତ

ହୋଇଅଛି । 'ଯଦା ଯଦାହି ଧର୍ମସ୍ୟ'...... ସ୍ମରଣ ଏକମାତ୍ର ସମ୍ବଳ । ଏବେ ପତି ପତ୍ନୀ ସମ୍ବନ୍ଧୀୟ ଉପାସନା ପ୍ରଣାଳୀ ଟିକଏ ସ୍ମରଣ କରିବାକୁ ଅବଧାନ ହେଉ ।

## ୮୧ଶ ପାଠ— ଜୀବର ପରମେଶ୍ୱରଠାରେ ପତ୍ନୀତ୍ୱ

ପ୍ରଭୁ, ତ୍ରୈଲୋକ୍ୟଚନ୍ତାମଣି ଘନାବଧାନ ଶରଣପଞ୍ଜର ! କୋଟିବ୍ରହ୍ମାଣ୍ଡନାଥ ! ପତି-ପତ୍ନୀତ୍ୱବିଷୟ ଉପାସନାରେ ଆପଣଙ୍କର ମହତ୍ତ୍ୱ ମର୍ଯ୍ୟାଦା ପ୍ରତି କଣ ଲଘୁତା ପ୍ରଦର୍ଶିତ ହେବ ନାହିଁ ତ ? ଗୀତାଦିରେ ଜୀବାତ୍ମାକୁ ସ୍ୱୟଂ ଆପଣ ଆପଣଙ୍କର ଅପରା ପ୍ରକୃତିରୂପେ ବର୍ଣ୍ଣନା କରିଅଛନ୍ତି ; କେଉଁ ଗୁଣ ଆପଣଙ୍କଠାରେ ନାହିଁ ?

ରୂପ ବା ଆକାରଇ ସ୍ତ୍ରୀ, ଆଉ ରୂପବାନ୍ ବା ଆକାରୀ ଯେ ସେ ପୁରୁଷ । ପୁରୁଷଠାରେ ଏପରି ଅନିର୍ବଚନୀୟ ସ୍ୱଭାବସିଦ୍ଧ ପ୍ରେମଲକ୍ଷଣ ବିଦ୍ୟମାନ ଅଛି ଯେ 'ସେ' ସ୍ତ୍ରୀ ଅର୍ଥାତ୍ ରୂପ ବା ଆକାର ଦର୍ଶନରେ ଅତ୍ୟନ୍ତ ଅବଶ ଓ ବିମୋହିତ ହୋଇଯାଏ । ତାହା ଏତେଦୂର ଯେ ନିଜ ପୁରୁଷକାର ଏକାବେଳକେ ଭୁଲିଯାଇ ସେହି ସ୍ତ୍ରୀରୂପରେ ଅଭେଦତା ସହିତ ଯୋଗ ହୋଇ 'ସେ' ସ୍ୱୟଂ ଯେପରି ସ୍ତ୍ରୀ ରୂପମୟ ଅଟେ ବୋଲି ସ୍ୱକୀୟ ପୁରୁଷକାର ସହିତ ସେହି ସ୍ତ୍ରୀ ମୂର୍ତ୍ତିକୁ 'ମୁଁ ଏହି ଓ ଏହି ମୁଁ' ଜ୍ଞାନ କରେ । ଏହାଇ ପ୍ରେମର ଲକ୍ଷଣ । ଆଉ ରୂପର ଏପରି ଆତ୍ମରତି ଲକ୍ଷଣ ବିଦ୍ୟମାନ ଅଛି ଯେ ସେ ଯେପରି ପୁରୁଷର ତଦନୁରୂପ ପ୍ରେମଲକ୍ଷଣକୁ ପୂର୍ଣ୍ଣ ସ୍ଥାନ ଦେଇ ତଦୀୟ ଇଚ୍ଛାନୁସାରେ ତାହାକୁ ନିଜ ଆକାରରେ ଆକାରିତ କରାଇବାଦ୍ୱାରା ଆପେ ସେ ଯେପରି ପୁରୁଷକାର ଲାଭ କରିଅଛି । ଏହି ପ୍ରେମ ଓ ଆତ୍ମରତି ଉଭୟର ମିଶ୍ରଫଳର ନାମ ପତି-ପତ୍ନୀ-ଭାବାତ୍ମକ ଉପାସନାର ଉପାସକସ୍ୱରୂପ ଆତ୍ମା-ପରମାତ୍ମା ଉପାଧି । ଏହି ପ୍ରେମ ସଂସାରରେ ରଜୋଗୁଣାତ୍ମକ ହେବାରୁ ଏହା କାମରୂପେ ଅପଭ୍ରଷ୍ଟାକାରରେ ପରିଣତ ହୋଇଅଛି ଏବଂ ଏହି ଆତ୍ମରତି ସେହି ରଜୋଗୁଣାତ୍ମକ ହେବାଦ୍ୱାରା କେବଳ ରତି ସ୍ୱରୂପରେ ଅପଭ୍ରଷ୍ଟାକାରରେ ବିକାଶିତ ହୋଇଅଛି । ଏହି କାମ ଓ ରତି ଉଭୟର ଯୋଗଫଳ ଦେହାକାରିତ ଭୌତିକ ଜଡ଼ପିଣ୍ଡ ।

ପ୍ରଥମରୁ ରୂପ ବୋଲି ଯାହା ଉଲ୍ଲିଖିତ ହୋଇଅଛି, ତାହା ସ୍ୱରୂପତଃ ସର୍ବମୂଳ-କାରଣାତ୍ମିକା । ଆଦ୍ୟା ଭଗବତୀ ପରମେଶ୍ୱରୀ ଯୋଗମାୟା ଆଉ 'ରୂପବାନ୍' ସ୍ୱୟଂ ଭଗବାନ ପରମେଶ୍ୱର ଗୋଲୋକପତି ହରି, ଏ ଉଭୟର ପ୍ରେମ ଓ ଆତ୍ମରତି ସମ୍ବନ୍ଧରୁ ଆତ୍ମପୁରୁଷରୂପୀ ସର୍ବଦେବ, ଅସୁର ଓ ନରାଦି ଆତ୍ମା ବିରାଜମାନ । ଏହି ଆତ୍ମା ସ୍ୱୟଂ ସ୍ୱରୂପତଃ ମାୟାପ୍ରାଧାନ୍ୟରୁ ପ୍ରକଟିତ ହେବାରୁ ଉପାସନା ସମ୍ବନ୍ଧେ ସେହି ଆତ୍ମା, ଭଗବାନ ପରମେଶ୍ୱରଙ୍କର ଉପାସିକା ନାୟିକା ସ୍ୱରୂପ ଅଟେ । ମାତ୍ର ଅବିଦ୍ୟା ବା ଅଜ୍ଞାନାବରଣାତ୍ମକ ରଜୋଗୁଣାକ୍ରାନ୍ତ ହୋଇ ସେହି ପବିତ୍ର ଉପାସନା ଭୁଲିଯାଇ ଅବିଦ୍ୟା-ନିର୍ମିତ ଦେହତ୍ରୟର ଏକତ୍ର ସମାବେଶପ୍ରାପ୍ତ ଆକାରରେ ଅଭିନିବେଶ ସହକାରେ 'ମୁଁ'

ଏଇ ଦେହ ବୋଲି ଜଡ଼ତ୍ୱ ପ୍ରାପ୍ତ ହୋଇଅଛୁ । ଏବେ ପୁଣି ମହାଘୋର କଳିଯୁଗର ଦୂତବର୍ଗ ସେହି ଜଡ଼ଭାବକୁ ଜଡ଼ବିଜ୍ଞାନ ବିଦ୍ୟାନାମଧେୟ ଅବିଦ୍ୟାରେ ମୋହିତ କରି ବହୁଗୁଣିତ କରିଅଛନ୍ତି । ତହିଁ ସଙ୍ଗକୁ ପୁଣି ପୁରୁଣା ଦୁର୍ଭାଗ୍ୟବଶତଃ ସବୁଆଡ଼େ ସେହି ଜଡ଼ବାଦୀମାନଙ୍କ ସଙ୍ଗ ଓ ସେହି ଜଡ଼ୀୟ ପ୍ରଦର୍ଶନୀର ଅନୁକରଣ ଏବଂ ଆଦର୍ଶାଦିର ବଳପ୍ରୟୋଗରେ ପବିତ୍ର ଭାରତ କି ଦୁର୍ଦ୍ଦଶା ପ୍ରାପ୍ତ ହୋଇଅଛି, ତାହା ସେହି ଅଷ୍ଟାଦଶ-ପର୍ବୀୟ ମହାଭାରତାଧିନାୟକ ଭଗବାନ୍ ଶ୍ରୀକୃଷ୍ଣ ଠିକିଏ ମନେ ପକାଇଲେ ଏ ଦୁଃଖ ଗଲାଣି ବୋଲି କହିବାକୁ ହେବ ।

ଏବେ ଏହି ଦୁର୍ଦ୍ଦଶା ଭିତରେ ଥାଇ ସେହି ସର୍ବମୟ ସ୍ୱାମୀ ମହାପ୍ରଭୁଙ୍କୁ ସେବିକା ପତ୍ନୀ-ରୂପରେ ଉପାସନା କରିଯାଉ । ସେହି ପ୍ରଭୁ-ସ୍ୱାମୀ ଏହି ସେବିକାର ସୂକ୍ଷ୍ମ ସ୍ଥୂଳ ସବୁ ଉପା-ଧିକୁ ଓ ତନ୍ମୟ ଦେହାଦିକୁ ଏବଂ ଦେହନାମାନ୍ତର୍ଗତ ପଞ୍ଚକୋଷାଦିକୁ ସର୍ବତୋଭାବେ ଆଲିଙ୍ଗନ କରି ରହିଅଛନ୍ତି । ଅନୁଭବ କରି ଦେଖିବାକୁ ହେବ ସେହି ପ୍ରଭୁ ସ୍ୱକୀୟ ଶୁଦ୍ଧ, ଅହଂମାତ୍ର ବୋଧାତ୍ମକ ଚିନ୍ମୂର୍ତ୍ତି ଧାରଣପୂର୍ବକ ଜୀବାତ୍ମାର ସବୁଠାରେ, ଅର୍ଥାତ୍ ଅନ୍ତଃକରଣରେ ଅନ୍ତଃକରଣମୟ, ଇନ୍ଦ୍ରିୟରେ ଇନ୍ଦ୍ରିୟମୟ, ପ୍ରାଣରେ ପ୍ରାଣମୟ, ଦେହରେ ଦେହମୟ, ଆନନ୍ଦମୟ କୋଷରେ ଆନନ୍ଦମୟ, ବିଜ୍ଞାନମୟ କୋଷରେ ବିଜ୍ଞାନମୟ, ମନୋମୟ କୋଷରେ ମନୋମୟ, ପ୍ରାଣରେ ପ୍ରାଣମୟ ଏବଂ ଅନ୍ନମୟ କୋଷରେ ଅନ୍ନମୟ ହୋଇ ଏ ସମସ୍ତ ମାୟିକ ଉପାଧିକୁ ଜୀବିତ ପ୍ରକାରେ ଓ ତଦ୍ରୂପାକାରରେ ବାହ୍ୟାନ୍ତରବ୍ୟାପୀ ସୁରକ୍ଷିତ କରିଅଛନ୍ତି; ଏହା ସ୍ୱାମୀଙ୍କର ସର୍ବାଙ୍ଗୀନବ୍ୟାପୀ ଆଲିଙ୍ଗନର ଲକ୍ଷଣ ଅଟେ । ଏହି ଜୀବନର ଜୀବନ ଓ ଆତ୍ମାର ପରମାତ୍ମା ପ୍ରଭୁ ସ୍ୱାମୀ-ଦେବଙ୍କୁ ସେବ୍ୟ-ସ୍ୱାମୀ ବୋଲି କହିବା, ତାଙ୍କ ନାମ ସର୍ବଦା ଅନ୍ତରେ ବାହାରେ ସ୍ମରଣ କରିବା, କାୟମନୋବାକ୍ୟରେ ତାଙ୍କର ସେବା ଓ ଗୁଣ କୀର୍ତ୍ତନ କରିବା ଏ ସେବିକାର ଜନ୍ମଗତ କର୍ତ୍ତବ୍ୟ ଏବଂ ଜୀବନଗତ ଏକାନ୍ତ ଧର୍ମ ଅଟେ ।

ହୃଦୟରୁ ରାଜସ ତାମସ ଗୁଣ ପରିହାର ପୂର୍ବକ ଶୁଦ୍ଧ-ସତ୍ତ୍ୱ, ନିର୍ମଳ, ପବିତ୍ରଭାବ ଆଶ୍ରୟ କରି ଆନନ୍ଦ ସହକାରେ ଯେ କୌଣସି ପ୍ରତିମାଦି ରୂପରେ ଲୀଳାକ୍ରମେ ତାଙ୍କର ସେବା କଲେ ସେ ସବୁପ୍ରକାର ସେବା ସ୍ୱାମୀ ପ୍ରଭୁଙ୍କର ଗ୍ରହଣୀୟ । ପ୍ରଭୁ ସ୍ୱାମୀ ପବିତ୍ର ଭାବର ଭାବଗ୍ରାହୀ । ଦେଶ-କାଳ ବା ରୂପ ଅରୂପାଦିର ଭେଦାଭେଦ ସେଠାରେ ନାହିଁ । ଭାବାଧୀନ ସ୍ୱାମୀଭାବ ଅନୁସାରେ ସର୍ବମୟ ହୁଅନ୍ତି;—'କାଷ୍ଠ ପାଷାଣ ତରୁ ତୃଣେ, ବସନ୍ତି ଶରୀର ପ୍ରମାଣେ' । ଜଡ଼ଦେହାବଦ୍ଧ ଜୀବର ସାତ୍ତ୍ୱିକ ଭାବମୟ ଦୈହିକ ସେବା ଗ୍ରହଣ କରିବା ପାଇଁ (ପ୍ରଭୁ ସ୍ୱାମୀଙ୍କୁ ସେବାର୍ଥରେ ଜଡ଼ାକାର ମୂର୍ତ୍ତ୍ୟାଦି ପର୍ଯ୍ୟନ୍ତ କଳ୍ପନା କରି ପୂଜା କଲେ ଦୟାମୟ ସ୍ୱାମୀ ତଦ୍ରୂପ ମୂର୍ତ୍ତ୍ୟାଦିରେ ଶ୍ରୀଲକ୍ଷ୍ମୀଦେବୀଙ୍କୁ କୋଳରେ ଧେନି) ଶ୍ରୀ ଲକ୍ଷ୍ମୀନାରାୟଣ ରୂପେ ସର୍ବତ୍ର ବିରାଜ କରିଅଛନ୍ତି, ଅଥଚ ଜୀବରୂପ-ପତ୍ନୀ ଦେହୋପାଧ୍ୟାଦି ସବୁପ୍ରକାର ମାୟିକ ଆବରଣ ପରିତ୍ୟାଗ ପୂର୍ବକ ଯୋଗାବଲମ୍ବନ-କ୍ରମେ ପରମାତ୍ମାରୂପେ ତାଙ୍କର ସେବା କଲେ ତହିଁରେ ମଧ୍ୟ ସ୍ୱାମୀ ପ୍ରଭୁ ସମାନ ତୁଷ୍ଟ

ହୋଇ ତଦ୍ରୂପ ଯୌଗିକ ସେବାକୁ ସାଦରେ ଗ୍ରହଣ କରନ୍ତ । ସାତ୍ତ୍ୱିକଭାବ ଯନ୍ତ୍ରିରେ ମିଶୁ ନା କାହିଁକି ତାହା ସ୍ୱାମୀଙ୍କର ଗ୍ରାହ୍ୟ । ମଧୁର ରସ, ଛେନା, ନଡ଼ିଆ, ଗୁଡ଼ ଓ ମଇଦା ଯନ୍ତ୍ରିରେ ମିଶୁ, ସେ ସବୁ ମିଷ୍ଟାନ୍ନରୂପରେ ଆଦରଣୀୟ ହୋଇଥାଏ । ଅତଏବ ଏଭଳି ସ୍ୱାମୀ କି ଦୁର୍ଲ୍ଲଭ ! ସେବକା ସେ ବେଶଧାରଣୀ ହେଉ ବା ଯାହା ତାହା ହେଉ ପଛକେ, ଭାବ ସହିତ ସେବା କଲେ ସବୁପ୍ରକାର ସେବା ତାଙ୍କର ଗ୍ରହଣୀୟ । ଜୟ କୃଷ୍ଣ ଗୋବିନ୍ଦ ଗୋପାଳ ହରେ, ଜୟ ରାମ ହରେ, ଜୟ କୃଷ୍ଣ ହରେ ।

## ୮୨ଶ ପାଠ— ଜୀବର ପରମେଶ୍ୱରଠାରେ ଉପପତ୍ନୀ ଭାବ

ଉପପତ୍ନୀ ଭାବାତ୍ମକ ଉପାସନା ବର୍ଣ୍ଣନାତୀତ । ମୋଟ ଉପରେ ପତ୍ନୀଭାବ ଓ ଉପପତ୍ନୀ ଭାବର ସେବା ଏକଇ ପ୍ରକାର । ମାତ୍ର ଉପପତ୍ନୀ-ଭାବର ସେବା ବଡ଼ ଗୋପନୀୟ । ଏଥିରେ ଭଗବାନ୍ ପରମେଶ୍ୱରଙ୍କ ସହିତ ଉପାସନା ସମ୍ବନ୍ଧୀୟ ଯେ ସମ୍ପର୍କ ତାହା ଏକାନ୍ତ ଗୋପନୀୟ । ଏହା ନା କର୍ମ, ନା ଭକ୍ତି, ନା ଜ୍ଞାନଯୋଗାଦି କୌଣସି ପ୍ରକାର ସଂଜ୍ଞାର ଅନ୍ତର୍ଗତ ନା କୌଣସି ପ୍ରକାରର ସାଧନାଦି ନା ଭଜନ ସ୍ମରଣାଦିର ସମକକ୍ଷୀୟ । ଏଥିରେ ଜୀବର ସ୍ୱାତନ୍ତ୍ର୍ୟ ବା ଐକ୍ୟ କିଛି କଳ୍ପନାଭଳି ଭାବ ନାହିଁ । ଅଥଚ ଏ ଉପାସନାରେ ଜୀବର ଭଗବତ୍ ପ୍ରେମର ଉପଭୋଗ ନିମିତ୍ତ ଯାହା ଟିକିଏ ସ୍ୱାତନ୍ତ୍ର୍ୟ । କାରଣ ଐକ୍ୟରେ ଉପଭୋଗ ନାହିଁ । ପୁଣି ଜୀବ ଏଥିରେ ଭଗବତ୍‌ପ୍ରେମରେ ଏପରି ଦୃଢ଼ ଆତ୍ମରତିଶୀଳ ଯେ ସେ ଲବେ ହେଲେ ସେଥିରୁ ଅନ୍ତର ନାହିଁ । ଗାଈ ଯେଉଁଠାରେ ଆହାର କରୁଥିଲେହେଁ ଯେପରି ସର୍ବଦା ବତ୍ସକୁ ପାଖରେ ଦେଖୁଥିଲାପରି ହୁଁ ହୁଁ କରୁଥାଏ, ଏ ଉପାସନାରେ ଜୀବାତ୍ମା ସେହିପରି ସଦା ହରିପ୍ରେମରେ ହରିମୟ, ଆପଣାର ନିଜତ୍ୱ କିଛି ଉପଲବ୍ଧି କରିବାର ଅବସର ପାଉନାହିଁ ଯେ ଯେତେବେଳେ ସେ କିଛି ଭଜନ ସାଧନାଦି କରିବ । ଏହା ଏକ ପ୍ରକାର ଅଣସାଧନ ଧର୍ମର ଉପାସନା । ଏଥିରେ ଜୀବର ଜୀବୋପାଧି ନାହିଁ; ଅଥଚ କି ପ୍ରକାରେ ଆତ୍ମା ଭଗବତ୍ ପ୍ରେମରେ ତନ୍ମୟ ହୋଇ ରହିଅଛି ଏହା ଅକଥନୀୟ । ମାୟିକ ବା ଜାଗତିକ କୌଣସି ପଦାର୍ଥର ଉପଲବ୍ଧି ଅନ୍ୟକୁ କରାଇବା ନିମିତ୍ତ ସିନା 'ଶବ୍ଦ' ଏକ ପ୍ରକାର ସଙ୍କେତରୂପେ ବ୍ୟବହୃତ ହେଉଅଛି । ଏଥିରେ ଅନ୍ୟକୁ ଉପଲବ୍ଧି କରାଇବା ଭଳି କୌଣସି ଭାବ ବା କ୍ରିୟାଦି କିଛି ନାହିଁ । ସୁତରାଂ ଏଥିରେ ଶବ୍ଦବିନ୍ୟାସର ସ୍ଥାନ ନାହିଁ । ଏଥିରେ କିଛି ନାହିଁ; ଅଥଚ ଏପରି ସବୁ ଅଛି ଯାହା ଅନ୍ୟ କାହିଁରେ ନାହିଁ, ଏତିକି ମାତ୍ର କହିଲେ କହିବା ପକ୍ଷେ ଯଥେଷ୍ଟ ହେଲା । ଏଥିରେ ବଦ୍ଧ ମୁକ୍ତାତୀତ ଜୀବାତ୍ମା ଓ ପରମାତ୍ମାର 'ପ୍ରେମ' ଓ 'ଆତ୍ମରତି'ର ଯୋଗ ନିତ୍ୟ । ପ୍ରେମ ଓ ଆତ୍ମରତିର ମଧ୍ୟସ୍ଥା ଯୌଗିକା ଶକ୍ତି ନିତ୍ୟା; ଅର୍ଥାତ୍ ଭଗବାନ୍ ହରିଙ୍କ ସଙ୍ଗେ ଆଦ୍ୟା ସ୍ୱାତ୍ମପ୍ରକୃତି ରାଧିକା ଦେବୀଙ୍କର ଯୌଗିକ ନିତ୍ୟ ସମ୍ବନ୍ଧ । ଅଥଚ ଯୌଗିକା ଶକ୍ତିରୂପା ଦୂତିକାଦେବୀଙ୍କର ଦୌତ୍ୟଗିରି ସେବା ମଧ୍ୟ

ନିତ୍ୟ । ଯେତେବେଳେ ତଦ୍ରୂପ ନିତ୍ୟବଦ୍ଧ ବା ନିତ୍ୟମୁକ୍ତ ଶିବାଖ୍ୟାତ ଜୀବାତ୍ମା ଓ ପରମାତ୍ମାଙ୍କର ସଂଯୋଗ ନିତ୍ୟ, ସେତେବେଳେ ଯୌଗିକ ଶକ୍ତିର ସ୍ଥାନ କାହିଁ ? ଦୁଇ ବସ୍ତୁ ପୃଥକ୍ ଥିଲାବେଳେ ସିନା ସେମାନଙ୍କର ଐକ୍ୟ ଯୋଗକୁ ଅପେକ୍ଷା କରିବ ? ମାତ୍ର ସେ ଉଭୟଙ୍କର ଯୋଗ ଯଦି ନିତ୍ୟ ତେବେ ଆଉ ଯୌଗିକ ଶକ୍ତିର ରହିବା ସ୍ଥାନ ନାହିଁ । ଏହା କହିଲେ ମଧ୍ୟ ଚଳିବ ନାହିଁ । ଯୋଗ ଶବ୍ଦକୁ ବା ଯୋଗକୁ ବାଦ୍ ଦେଲେ ଦୁଇର ଐକ୍ୟ ଅସମ୍ଭବ । ଦୁଇର ଐକ୍ୟବେଳେ ଯୋଗ ବିଦ୍ୟମାନ ଥାଇ ତଦ୍ରୂପ ଐକ୍ୟ ଘଟଣା ସ୍ଥିର ରଖିଛି । ତେବେ ପରମାତ୍ମା ଓ ବଦ୍ଧ ମୁକ୍ତାଖ୍ୟାତ ଜୀବାତ୍ମା ଏବଂ ଯୌଗିକ ଶକ୍ତି ଏ ତିନିହେଁ ସେଠାରେ ଏକତ୍ର ସମାବିଷ୍ଟ, ଅଥଚ ଯୌଗିକ ଶକ୍ତି ଦ୍ୱାରା ପ୍ରେମ ଓ ଆତ୍ମରତିର ଐକ୍ୟ ନିତ୍ୟତ୍ୱରୂପେ ନୂତନ ନୂତନ ହୋଇ ସର୍ବଦା ସୁସମ୍ପାଦିତ ହେଉଅଛି । ଏହାର ଉଦାହରଣ ବା ଉପମା ଅଥବା ଯୁକ୍ତିଯୁକ୍ତତାଦି କିଛିମାତ୍ର ନାହିଁ । ଏହା ବୋଧାକାର ମାତ୍ର, 'ଯଃ ପଶ୍ୟତି ସ ପଶ୍ୟତି' ଏପରି ସ୍ଥଳରେ ପରମାତ୍ମା ଏବଂ ଜୀବାତ୍ମା ଏ ଦୁଇଙ୍କର ନିତ୍ୟ ଯୋଗାବଦ୍ଧାବସ୍ଥାରେ ସଂଯୋଗଜନିତ ପ୍ରେମ ଓ ଆତ୍ମରତିର ଯୋଗ ନୂତନ ନୂତନ କିପରି ହେବା ସମ୍ଭବ ? ତାହା ତ ଗୋଟିଏ ମାତ୍ର ଅବସ୍ଥାରେ "ନିତ୍ୟ ଯୋଗ ଦ୍ୱାରା" ପରିଣତ ହେଲା । ନା, ଏହାହିଁ ତହିଁର ବିଶେଷତ୍ୱ । ଏହି ବିଶେଷତ୍ୱ ସେଠାରେ ଯୁକ୍ତିତର୍କ ବା ସନ୍ଦେହ ଅସନ୍ଦେହ କାହାକୁ ସ୍ଥାନ ଦେଉନାହିଁ । ପ୍ରେମର ଆତ୍ୟନ୍ତିକ ସୀମା ବାହାରରେ ଯେପରି ନୂତନତ୍ୱର ଆବିର୍ଭାବ ସେ ରାଜ୍ୟରେ ଏକା ଏଇ ନୂତନ ନୂତନ ପ୍ରେମାତ୍ମରତିର ନୂତନତ୍ୱ ବିଦ୍ୟମାନ ଭିନ୍ନ ଯୁକ୍ତି-ତର୍କ ପ୍ରଶ୍ନ ବା ଉତ୍ତରାଦି କିଛି ନାହିଁ ।

ଏହି ଉପାସନାରେ ଜୀବପଦବାଚ୍ୟ ଯେଉଁ ଆତ୍ମାର ଉଲ୍ଲେଖ କରାଗଲା ତାହା ନା ନିତ୍ୟବଦ୍ଧ ନା ନିତ୍ୟମୁକ୍ତ, ଏ ଉଭୟ ସଂଜ୍ଞାର ଅନ୍ୟତମ । ଏହା ପରମେଶ୍ୱରଙ୍କର ଏକ ସ୍ୱାତ୍ମରୂପା ପ୍ରକୃତ୍ୟନ୍ତର୍ଗତ ଚୈତନ୍ୟ ସତ୍ତ୍ୱ । ଏଥିରୁ କିଛି ବିକୃତ ହୁଏ ନାହିଁ ବା ପ୍ରକୃତି ବା ବିକୃତି ନୁହନ୍ତି । ସଂସାରୀ ଜୀବର ଏ ଆଦର୍ଶର ଉପାସନା ଅତୀବ ଗୋପନୀୟ ଓ ସାଧନାତୀତ । ଏହା ବଦ୍ଧ ମୁକ୍ତାଖ୍ୟାତ ଅବସ୍ଥାର ଅନୁକରଣୀୟ ପ୍ରକାର ବିଶେଷର ଆଦର୍ଶ ମାତ୍ର । ଏହା ଦିଗମ୍ବର ପରମହଂସ ବା ସର୍ବତ୍ୟାଗୀ ବିଧିନିଷେଧବର୍ଜିତ ପରମ ବୈଷ୍ଣବାଦି ମହାତ୍ମାମାନଙ୍କଠାରେ କଦାଚିତ୍ ପରିଲକ୍ଷିତ ହୋଇପାରେ । ଏଥିରେ ମହା ଔଦାସୀନ୍ୟ ମାନାପମାନ ଓ ସୁଖଦୁଃଖାଦିର ଶୂନ୍ୟତା, ସର୍ବସହିଷ୍ଣୁତା, ସମ୍ୟକ୍ ପ୍ରକାର ତିତିକ୍ଷା, ସର୍ବଯୋଗ ବୈରାଗ୍ୟ, ଆନ୍ତରପ୍ରେମ, ଦୟା, ଶାନ୍ତି, କ୍ଷମା ଓ ହର୍ଷଂବିଗୁଣ୍ୟ ଇତ୍ୟାଦି ଇତ୍ୟାଦି ଭୁବନଦୁର୍ଲ୍ଲଭ ଭାବ ସଦା ପରିପୂର୍ଣ୍ଣ ।

## ୮୩ ଶ ପାଠ—ଉପାସନାର ଉପସଂହାର

ଉପରୋକ୍ତ ସର୍ବବିଧ ଉପାସନାମୟ ଅମୃତପୂର୍ଣ୍ଣ ଭାବସମଷ୍ଟିକୁ ପାରିଜାତ-ପୁଷ୍ପମାଳ ରୂପେ ଶ୍ରୀହରିଙ୍କ ଶ୍ରୀ ଅଭୟ ପଦାରବିନ୍ଦରେ ଅର୍ପଣ କରି କମ୍ବୁଭୂଷଣ ଶ୍ରୀପଦ-ତଳେ ଅବନତ ରହି ଯଥାତଥା ଟିକିଏ ବିଶ୍ରାମ ଲାଭ କରିପାଉ

ଶ୍ରୀ ନାରାୟଣ ଭଗବାନ୍ ହରି ତ୍ରୈଲୋକ୍ୟଚନ୍ତାମଣି କୋଟିବ୍ରହ୍ମାଣ୍ଡୈକନାଥ ମହାପ୍ରଭୁ ! ଆବ୍ରହ୍ମ ସ୍ତମ୍ଭ ପର୍ଯ୍ୟନ୍ତ ଜଗଦେବ ଚରାଚର ସମେତ ସର୍ବପ୍ରକାର ସର୍ବପ୍ରାଣୀ ଯନ୍ତ୍ରାରୂଢ଼ ଆତ୍ମା ଆତ୍ମତଃ ଆପଣଙ୍କ ସତ୍ତାମାତ୍ର ଉପଲବ୍ଧି କରୁଅଛୁ ! ଅଥଚ ଆପଣଙ୍କ ମାୟିକ ଅଘଟନଘଟନାପଟୁତାଯୋଗୁଁ ବିଶିଷ୍ଟଭାବଗତଃ ସେହି ସତ୍ତ୍ୱ ପ୍ରକୃତିଯୁକ୍ତ ହୋଇ ପ୍ରକୃତିର କାର୍ଯ୍ୟକାରଣ ଭେଦ ବିଭେଦାତ୍ମକ ସ୍ୱଭାବାନୁସାରେ ନାନାବିଧ ପ୍ରାକୃତ ଜ୍ଞାନରେ ବିମୁଗ୍ଧ ହେବାଦ୍ୱାରା 'ମୁଁ ଜ୍ଞାନୀ', 'ମୁଁ ଅଜ୍ଞ', 'ମୁଁ ସୁଖୀ', 'ମୁଁ ଦୁଃଖୀ', 'ମୁଁ ମୂଢ଼', 'ମୁଁ ପଣ୍ଡିତ' ଓ 'ମୁଁ ମୂର୍ଖ' ଇତ୍ୟାଦି ଇତ୍ୟାଦି ନାନାପ୍ରକାରରେ ଆପଣାକୁ ଉପରଞ୍ଜିତ କରି ଦେଖୁଅଛୁ । ଫଳତଃ ଜ୍ଞାନୀ, କି ସୁଖୀ ବା ଦୁଃଖୀ ଇତ୍ୟାଦି ପ୍ରକାରର ଏହିସବୁ ପ୍ରାକୃତ ବିଶେଷଣଗୁଡ଼ିକ ବିୟୋଗ କରିଦେଲେ ସେହି ଏକ ସ୍ୱାତ୍ମାନୁଭୂତିସମ୍ପନ୍ନ ଆତ୍ମସତ୍ତା ଅହଂବୋଧମାତ୍ର ଆକାରରେ ସର୍ବତ୍ର ସର୍ବପ୍ରାଣୀଯନ୍ତ୍ରରେ ବିଦ୍ୟମାନ । ପ୍ରକୃତିର କ୍ଷୋଭ-ରହିତ୍ୟ ବା ଶୃଙ୍ଖଳାଶୂନ୍ୟାବସ୍ଥାରେ ଆତ୍ମଦେବ ଆପଣାକୁ ବିଶୁଦ୍ଧ ଆତ୍ମବୋଧ ରୂପରେ ଅନୁଭବ କରି ଆତ୍ମତୃପ୍ତି ଉପଭୋଗ କରୁଅଛନ୍ତି । ପ୍ରକୃତିର ଶୃଙ୍ଖଳାରେ, ସତ୍ତ୍ୱରଜୋତମ-ତ୍ରିଗୁଣାତ୍ମକ ଅବସ୍ଥାରେ ସେହି ଆତ୍ମା ଆପଣାକୁ ସୁଖୀ ବା ଜ୍ଞାନୀ, ଦୁଃଖୀ ବା ଅଜ୍ଞାନୀ ଏବଂ ମୂଢ଼ ବା ମୁଗ୍ଧ ବୋଲି ମଣୁଅଛନ୍ତି । ମାୟାଦେବୀଙ୍କର ପ୍ରଥମ ବିକାଶ ଚିନ୍ମୟ-ମହାକାଶରୂପରେ, ଦ୍ୱିତୀୟ ବିକାଶ ଅବିଦ୍ୟାକାଶରୂପରେ, ତହିଁରୁ ଅନ୍ତଃକରଣାଦି ଭୌତିକ ମହାକାଶରୂପରେ ଏବଂ ତହିଁ ସଙ୍ଗେ ପିଣ୍ଡବ୍ରହ୍ମାଣ୍ଡାତ୍ମକ, ଏହିପରି ଦୃଶ୍ୟମାନ ଜଗଦାକାର ଶରୀରରୂପରେ ।

ଆତ୍ମା ଆପଣାଠାରେ ଆତ୍ମତତ୍ତ୍ୱ ସହିତ ଚିନ୍ମୟ ମହଦାକାଶଠାରୁ ଆରମ୍ଭ କରି ଭୌତିକ ଜଡ଼ଦେହ ପର୍ଯ୍ୟନ୍ତ ସମଷ୍ଟିଚିତ୍ରକୁ ଏକ ସମୟରେ ଏକାଧାର ବିଶିଷ୍ଟ କରି ଦର୍ଶନ କରୁଅଛନ୍ତି; ମାତ୍ର ପ୍ରକୃତିର ସ୍ୱାଭାବିକ ବିକ୍ଷେପଦ୍ୱାରା ଏହି ଦର୍ଶନ ବିକାରପ୍ରାପ୍ତ ହେବାରୁ ସେହି ଏକମାତ୍ର ଦ୍ରଷ୍ଟା ସୁଖୀ ବା ଦୁଃଖୀ ଅଥବା ମୂଢ଼ ଇତ୍ୟାଦି ନାନାପ୍ରକାରରେ ଅନୁଭୂତ ହେଉଅଛି । ସେହି ହେତୁରୁ 'ମୁଁ ଜ୍ଞାନୀ', 'ମୁଁ ପଣ୍ଡିତ', 'ମୁଁ ମୂର୍ଖ', 'ମୁଁ ସୁଖୀ', 'ମୁଁ ଦୁଃଖୀ', ବା 'ମୁଁ ମୂଢ଼', ଇତ୍ୟାଦି ନାନାବିଧ ଭାବଯୁକ୍ତ ହୋଇ ଆମ୍ଭେମାନେ ସଂସାରରେ ପରିଭ୍ରମଣ କରି କାଳାତିପାତ କରୁଥାଉଁ । ଅଥଚ କେହି କାହାର ଭାବକୁ ତୈହିକାକାର ଦର୍ଶନଦ୍ୱାରା ବୁଝିପାରୁ ନ ଥାଉଁ ।

ଦୁଇ-ଏକ-ବର୍ଷ ବାଳକ ହସୁଥାଏ, ଗୋଡ଼ ହାତ ନାନାପ୍ରକାରରେ ହଲାଇ ଖେଳୁଥାଏ, କେତେ କେତେବେଳେ ବା କ୍ରନ୍ଦନ କରେ । ତାର ହୃଦୟର ଭାବ ସେ ଅବଶ୍ୟ ଅନୁଭବ କରୁଥାଏ । ତା ନୋହିଲେ ଦେହରେ ଏସବୁ ନାନାପ୍ରକାର ଭଙ୍ଗୀ କାହିଁ ପରିଲକ୍ଷିତ ହୁଅନ୍ତା ? ମାତ୍ର ଅନ୍ୟ ସେ ଭାବ ଜାଣିବାକୁ ଅକ୍ଷମ ।

ବିଦ୍ୟାଧ୍ୟୟନାବସ୍ଥାରେ ଅନେକ ବାଳକ ଏକ ଶ୍ରେଣୀରେ ଏକ ପାଠ୍ୟ ଅଭ୍ୟାସ କରୁଥାଆନ୍ତି । କିନ୍ତୁ ସେଇ ପାଠ୍ୟ ସମ୍ବନ୍ଧରେ କିଏ କେତେବେଳେ କଣ ଭାବୁଥାଏ ତାହା ତାହାର ମନ ଜାଣେ, ଅନ୍ୟ ବୁଝିବା ସହଜ ନୁହେଁ । ସଂସାରୀ ଅବସ୍ଥାରେ କିଏ କେଉଁ-

ଆଡ଼କୁ କେତେବେଳେ ଯାଉଛି, କଣ ବା କେତେବେଳେ ଭାବୁଛି, କି କି କାର୍ଯ୍ୟ ବା କରୁଛି, କି ପ୍ରକାର ଭାବରୁ ସେ ସେପରି ହୁଏ ତାହା ସେ ଜାଣେ ।

ଚିନ୍ତାଶୀଳ ଶ୍ରେଣୀମଧ୍ୟରେ ଏକ ଶ୍ରେଣୀର ଭାବୁକ ଏହି ଭୌତିକ ଜଗତର ଜାଗତିକ ବସ୍ତୁର ନାନାପ୍ରକାର ସଂଖ୍ୟା ଓ ପ୍ରତ୍ୟେକ ପ୍ରକାରର କାର୍ଯ୍ୟ ବା ଗୁଣାଦି ନିରୂପଣ କରି ଆପଣାକୁ କୃତାର୍ଥ ଜ୍ଞାନ କରନ୍ତି ।

କେହି କେହି ଆବହମାନ କାଳରୁ ଏ ପର୍ଯ୍ୟନ୍ତ ମାନବସମାଜର ରୀତିନୀତି ଓ ପତନ ଉତ୍‌ଥାନାଦିର କାରଣ ଆଲୋଚନା କରି ବହୁଦର୍ଶୀବୋଲି ଆପଣାକୁ ସମ୍ମାନିତ ବୋଧ କରନ୍ତି । କେହି କେହି ଭାଗ୍ୟବାନ୍ ଆପଣାକୁ ବହୁ ଧନରତ୍ନାଦିର ଅଧିପତି ବୋଲି ସବୁବେଳେ ମନେ ମନେ ଫୁଲି ରହିଥାଆନ୍ତି ।

କୌଣସି କୌଣସି ମହାତ୍ମା ଏ ସଂସାରର ଦୁଃଖ କ୍ଲେଶ ବର୍ବରତାବସ୍ଥା ପରି-ଦର୍ଶନ ଓ ଅନୁଭବ କରି ଏଥିରୁ ବିତୃଷ୍ଣ ହୋଇ ଆତ୍ମପଦବୀ ଇଚ୍ଛା କରନ୍ତି । ଏ ସ୍ଥଳରେ ଏ ସବୁ ଶ୍ରେଣୀରୁ ଗୋଟିଏ ଗୋଟିଏ ଲୋକ ଏକ ସ୍ଥାନରେ ହଜାର ହଜାର ସଂଖ୍ୟାରେ ମେଳ କରାଇ ଦେଲେ, ଦେଖିଲାବେଳକୁ ସମସ୍ତେ ମନୁଷ୍ୟ । ତାହା ମନରେ କି ପ୍ରକାର ଭାବ ଏବଂ ତଦ୍ରୂପ ଭାବାନୁସାରେ କିଏ କି ପ୍ରକାର ପ୍ରଫୁଲ୍ଲିତ, ସହର୍ଷ ବା ବିମର୍ଷ ସେ ସମ୍ବନ୍ଧରେ ଅନ୍ୟର କିଛି ଜାଣିବା ଉପାୟ ନାହିଁ । ଏଥିର କାରଣ ଆଲୋଚନାର ଅଭାବ ବା ଆଲୋଚନା ସମ୍ବନ୍ଧୀୟ ପ୍ରକାରର ବିଭିନ୍ନତା ।

ମନୁଷ୍ୟ ପ୍ରଥମରେ ଆପଣାର ଜଡ ଦେହ ଓ ଜଡ଼ାକାର ଭୌତିକ ଜଗତକୁ ଦେଖିବାକୁ ପାଏ । ସେହି ଧର୍ମାନୁସାରେ କ୍ଷୁଧା ପିପାସା କଷ୍ଟ ବୁଝେ ଓ ତାହାର ନିବୃତ୍ତିରେ ସୁଖାନୁଭବ କରେ । ଏହି ହେତୁରୁ ମନୁଷ୍ୟ-ସମାଜ ସାଧାରଣତଃ ସଂସାରୀୟ କର୍ମରେ ବ୍ୟସ୍ତ । ବିଦ୍ୟାଧ୍ୟୟନାଦି ମଧ୍ୟ ଏହି ସଂସାରୀୟ ଦୈହିକ ସୁଖ ସମ୍ପାଦନାର୍ଥ କରାଯାଇଥାଏ ।

ଖାଲି ସଂସାରୀୟ କାର୍ଯ୍ୟରେ ବା ସେହି ସଂସାରୀୟ ସୁଖସମ୍ଭୋଗାଦି ସାଧିତ ହେଲା ଭଳି ବିଦ୍ୟାଧ୍ୟୟନାଦିରେ ମନୁଷ୍ୟ ମାତି ମାତି ଶେଷକୁ କିମ୍ଭୂତକିମାକାର ହୋଇ-ପଡ଼େ ଓ ଆପଣାକୁ ଆପେ ଜାଣିପାରେ ନାହିଁ । ଏହି ମାୟିକ ଜଗଦାକାର ଶରୀର ଏଭଳି ଗୁଣ ଅଛି ଯେ ଏହାକୁ କିଏ କି ପ୍ରକାର ବିଶିଷ୍ଟ କରି ଦେଖୁଅଛି ଏବଂ ତହିଁରେ ସମ୍ପୂର୍ଣ୍ଣ ବିମୁଗ୍ଧ ରହିଅଛି । କେବଳ ଦେହକୁ ଜାଣିବା ମୂର୍ଖ ଲୋକ ଦେହ ସୁଖ ଥିଲେ ସେ ସୁଖୀ ଏବଂ ଦେହ ଅସୁସ୍ଥ ଥିଲେ ସେ ଦୁଃଖୀ ବୋଲି ଜାଣେ, ଆଉ କିଛି ଜାଣେ ନାହିଁ । ସେହି ହେତୁରୁ ଦେହୋପଯୋଗୀ ଖାଦ୍ୟପେୟ ଓ ଗୃହାଦି ସଂସ୍ଥାନରେ ସେ ବ୍ୟସ୍ତ । ସେ ଜାଣେ ନାହିଁ ପ୍ରାଣ କଅଣ, ମନ କଅଣ, ମୁଁ ବା କଅଣ ଏବଂ ବିଶ୍ୱସଂସାର ବା କଣ ? କେବଳ ଆଖିଦ୍ୱାରା ବା ଯନ୍ତ୍ରବିଶେଷ ସାହାଯ୍ୟ ଚକ୍ଷୁଦ୍ୱାରା ଯାହା ଦେଖା-ଯାଏ, ସେହି ପର୍ଯ୍ୟନ୍ତ ଜାଣିବାକୁ ସେଇ ଶ୍ରେଣୀ ଲୋକର ଇଚ୍ଛା । ସେହି ରୂପ ଦ୍ରଷ୍ଟବ୍ୟ ସୂକ୍ଷ୍ମ ବା ସ୍ଥୂଳ ବସ୍ତୁ ଛଡ଼ା ଆପେ ସେ ସମସ୍ତର ଦ୍ରଷ୍ଟା କି ଜ୍ଞାତା ବା ସାକ୍ଷୀ ଚୈତନ୍ୟ

ବୋଲି ଆପଣାକୁ ସ୍ମରଣ କରେ ନାହିଁ । ଏତଦ୍ରୂପ ଘୋର ବିମୂଢ଼ତା ଯୋଗରୁ ସେ ଭବୁଥାଏ, ଦେଖି ଦେଖି ଯେଉଁପାଏ ଗଲି, ସେଥିମଧ୍ୟରୁ କୌଣସି କୌଣସି ସୂକ୍ଷ୍ମ ବସ୍ତୁର ଅର୍ଥାତ୍ ମସ୍ତିଷ୍କ ପ୍ରଭୃତିର ଗୁଣ ବା ଧର୍ମ କିମ୍ବା କ୍ରିୟାଦିର ପରିଣାମ ଆମ୍ଭମାନଙ୍କର ଏଇ ଉପସ୍ଥିତ ଜ୍ଞାନ । ଏ ସ୍ଥଳରେ ଜ୍ଞାନର ଅର୍ଥ ବୈଷୟିକ ଚିନ୍ତା ବା ମାନସିକ ବ୍ୟାପାରାଦି । ଏତିକି ମାତ୍ରରେ ଜ୍ଞାନପଦାର୍ଥର ସୀମା ସ୍ପର୍ଶ କରାଗଲା । ମାତ୍ର ଅଙ୍କ ଚାଳୀ ଆପଣାକୁ ଛାଡ଼ି ଗଣନା କରି ଗୋଟିଏ ଊଣାରେ ସଂଖ୍ୟା ନିର୍ଣ୍ଣୟ କଲାପରି ଏ ନିର୍ଣ୍ଣୟ ସିନା ? ଏ ମଧ୍ୟରେ ଅହଂବୋଧାକାର ରୂପରେ ଯେଉଁ ସାକ୍ଷୀ ଚୈତନ୍ୟ ଉପରେକ୍ତ ସବୁ ପଦାର୍ଥାଦିକୁ ମନବୁଦ୍ଧ୍ୟାଦି ଦ୍ୱାରା ଏପରି ବା ସେପରି ବୋଲି ନିର୍ଣ୍ଣୟ କରି ଏହିପରି କେତେ କେତେ ନିର୍ଣ୍ଣୀତ ବିଷୟାଦିକୁ ଉଦୟ ବିଳୟ କରୁଅଛି, ଏହିପରି ଉଦୟ ବିଳୟ-କ୍ରମେ କେତେ କେତେ ବିଷୟର କେତେ କେତେ ଚିନ୍ତା, କେତେ କେତେ ଜ୍ଞାନ ବା କେତେ କେତେ ମାନସିକ ବ୍ୟାପାରାଦି ସେହି ସାକ୍ଷୀ ସହିତ ଅନ୍ୱିତ ହେବା ମାତ୍ର ପ୍ରକାଶିତ ହୋଇ ପରକ୍ଷଣକୁ ଅଜ୍ଞାତ ଗର୍ଭରେ ବିଲୀନ ହେଉଅଛନ୍ତି ଏବଂ ସମୁଦ୍ର ଲହରୀ ପରି ତାହାର ସଂଖ୍ୟା ନାହିଁ ବା ବିରାମ ନାହିଁ । କିନ୍ତୁ ଦ୍ରଷ୍ଟା ଅବିକୃତ ଭାବରେ ଏକ ହୋଇ ବିରାଜିତ ଅଛି । ଏ ସ୍ଥଳରେ ଯେଉଁ ସାକ୍ଷୀପୁରୁଷ ସୂକ୍ଷ୍ମ ଜଡ଼ ପଦାର୍ଥକୁ ଯଥାତ୍ମ-ସର୍ବସ୍ୱରୂପରେ ଜାଣୁଅଛନ୍ତି, ସେ ଅଙ୍କ ଚାଳୀ ପରି ହେଉଅଛନ୍ତି ବୋଲି କହିବାର ଅପରାଧ ତାହାଙ୍କୁ ଅଜ୍ଞତା କ୍ଷମା କରିପାରେ ।

ଯେଉଁ ଶିକ୍ଷାଦ୍ୱାରା ମନୁଷ୍ୟ କେବେ ଭୌତିକ ଜଗତକୁ ବା ଜାଗତିକ ବସ୍ତୁ-ସମୂହକୁ ଚିନ୍ନ ଚିନ୍ନ କରି ଦେଖିବାକୁ ବା ବୁଝିବାକୁ ଚେଷ୍ଟା ପାଏ, ସେହି ଶିକ୍ଷା ମନୁଷ୍ୟ ଆତ୍ମାକୁ ଜଡ଼ଜଗତରେ ଜଡ଼ମୟ କରି ଆବଦ୍ଧ ରଖେ । ତଦ୍ୱାରା ସଂସାରକୁ ମାନବାତ୍ମା ଆତ୍ମା ଆତ୍ମସର୍ବସ୍ୱ କରି ଦେଖେ । ଆଉ ତଦ୍ରୂପ ଜଡ଼ ବସ୍ତୁମାନଙ୍କର ପରିବର୍ତ୍ତନ ସମ୍ବନ୍ଧୀୟ ନୂତନ ନୂତନ ପ୍ରକାର ଦେଖି କୃତାର୍ଥ ହୁଏ । ଏହା ସବୁବେଳେ ସବୁଠାରେ ପରିଦୃଷ୍ଟ ହେଉଅଛି । ଏହି ସବୁପ୍ରକାର ଜଡ଼ୀୟତତ୍ତ୍ୱ ଅନୁସନ୍ଧାନ କରିବାକୁ ଗଲେ ଏହା ଯେପରି ଅସୀମ ବ୍ୟାପାର, ତାହାଁକି ମନୁଷ୍ୟର ସ୍ଥିତିକାଳ କିଛି ନୁହେ । ଏହା ଦେଖି ଚର୍ବିତଚର୍ବଣ ବା ପିଷ୍ଟପେଷଣ ପରି ଏଥିରୁ ନିବୃତ୍ତ ରହି ଆତ୍ମଜ୍ଞାନଲାଭରେ ପରିତୃପ୍ତ ହେବାକୁ କେହି କେହି ଇଚ୍ଛା କରନ୍ତି । ଅନ୍ତଃକରଣର, କି ପ୍ରାଣର, କି ଦେହାଦିର ଶୃଙ୍ଖଳା ଦ୍ୱାରା ଭୌତିକ ଜଗତର ଯେଉଁ ଅନୁଭୂତି, ତାହା ଅନ୍ତଃକରଣାଦିର ସ୍ଥିରତାରେ କଥଞ୍ଚିତ୍ ଉପଶମିତ ହୁଏ । ତେବେ ଦେହର ସ୍ଥିରତା ତ ସହଜରେ ହେଉଅଛି । ପ୍ରାଣ ଏବଂ ଅନ୍ତଃକରଣ ସ୍ଥିରତା ସମ୍ପାଦନ ନିମିତ୍ତ ଟିକିଏ ପୁରୁଷ ପ୍ରଯତ୍ନ ଦରକାର । ଦେଖାଯାଉ ଆମ୍ଭେ ଗୋଟିଏ ଶବ୍ଦ ମାତ୍ର ମନେ ମନେ ଗୁଣିହେବା, ଆଉ ସେହି ଶବ୍ଦ ଯେଉଁ ପଦାର୍ଥକୁ ବୁଝାଏ ସେହି ପଦାର୍ଥ ମନେ ମନେ ଦେଖୁଥିବା । ଏହିରୂପେ ନାମ ଓ ନାମୀ ଏକାବେଳେକେ ଆମ୍ଭ ମନକୁ ଅଧିକାର କରି ବସନ୍ତି । ଆଉ କିଛି ଯେପରି ଆମ୍ଭେ

ମନରେ ନ କହିବା କି ନ ଦେଖିବା । ଏହି ନାମ ଓ ନାମୀ କଣ ହେଲେ ଭଲ ହେବ ଅର୍ଥାତ୍ ଆମ୍ଭ ମନ ପ୍ରୀତି ସହକାରେ ଚହିଁରେ ନିବଷ୍ଟ ରହିବ, ତାହା ଜଣକେ ପ୍ରକାରେ ପ୍ରକାରେ ନ ଭାବି ଗୋଟିଏ ନିର୍ଦ୍ଦିଷ୍ଟ ନାମ ଏବଂ ରୂପ ସାଧାରଣତଃ ସ୍ଥିର କରିବା ଉଚିତ ।

## ୮୪ଶ ପାଠ—ସାଧାରଣ ଧ୍ୟାନଯୋଗ ଓ ଆତ୍ମସଂଯମ

ପୃଥିବୀରେ ନାନାପ୍ରକାର ସମାଜ ଏବଂ ପ୍ରତ୍ୟେକ ସମାଜରେ ନାନାପ୍ରକାର ଉପାସ୍ୟ ମହାପୁରୁଷଙ୍କର ନାମ ଓ ରୂପ ନିର୍ଦ୍ଦିଷ୍ଟ ଅଛି । ଯେଉଁ ସମାଜରେ ଯେଉଁ ମହା-ପୁରୁଷଙ୍କୁ ପ୍ରଭୁ ବୋଲି ଭକ୍ତି କରି ଯାଇଥାଏ, ସେହି ସମାଜ ଲୋକ ପକ୍ଷରେ ସେହି ମହା-ପୁରୁଷଙ୍କର ରୂପ ଓ ନାମ ଉପରୋକ୍ତମତେ ଧ୍ୟାନ କରିବା ବିଧେୟ । ବୈଦିକମାନଙ୍କ ମତରେ ଶ୍ରୀବିଷ୍ଣୁମୂର୍ତ୍ତି ଧ୍ୟାନ ଓ ବିଷ୍ଣୁମନ୍ତ୍ରର ଜପବିଧାନ ରହିଅଛି । ବର୍ତ୍ତମାନ ବାବୁ-ସମାଜରୁ ଏକ ଏକ ଉପାସକ ମହାଶୟଙ୍କୁ ପବିତ୍ର ଭାବରେ ନିମନ୍ତ୍ରଣ କରି ଯାଉଅଛି । ସ୍ଥିର ଓ ସମାସନରେ ନିରୁଦ୍‌ବେଗ ସ୍ଥାନରେ ଉପବେଶନ କରନ୍ତୁ । କୌଣସି ଦିଗକୁ ଦୃଷ୍ଟି ନ ରହିବା ଭଳି ଚକ୍ଷୁ ସ୍ଥିର ରଖାଯାଉ । ମନରୁ ସବୁ ପ୍ରକାର ଚିନ୍ତା ଅଳ୍ପକ୍ଷଣ ସକାଶେ ବିଦାୟ ଦିଆଯାଉ । ଏଥିରେ ମଧ୍ୟ ପ୍ରାଣ କିୟତ୍ ପରିମାଣରେ ସ୍ଥିର ହେବା ସ୍ୱାଭାବିକ । ପ୍ରାଣ ସ୍ଥିର ହେଲେ ମନ ମଧ୍ୟ ନିଶ୍ଚଳ ହେବାପରେ କେବଳ ସେହି ଉପାସ୍ୟ ମହାପୁରୁଷଙ୍କର ରୂପ ଏବଂ ନାମ ସ୍ଥିର ମନ ମଧ୍ୟରେ ଦେଖା ଯାଉଥାଉ, ଏବଂ ସ୍ମରଣ କରି ଯାଉଥାଉ । ଏପରି ଅଳ୍ପକ୍ଷଣପରେ ଉକ୍ତ ରୂପରେ ଓ ନାମରେ ମନର ଏକାଗ୍ରତା ହେଲେ ମନ ଏବଂ ପ୍ରାଣ ସ୍ଥିର ହେବାର କଥା । ଏହି ସ୍ଥିରତା ସମ୍ପାଦିତ ହେଲା ପରେ ମନ ଉପରୋକ୍ତ ରୂପ ଦର୍ଶନ ଓ ନାମ ସ୍ମରଣରୁ ବିଶ୍ରାମ ଲଭିବାକୁ ଇଚ୍ଛା କରିବ । ମନର ଏହା ସ୍ୱାଭାବିକ ଧର୍ମ । ମନ ଏକ ବିଷୟରେ କିଛିକ୍ଷଣ ଲାଗି ରହିଲେ ତହିଁରୁ ଟିକିଏ ବିଶ୍ରାମ ନେବାକୁ ଲୋଡ଼େ; ଅଥବା ଅନ୍ୟାନ୍ୟ ଦିଗରେ ଦୌଡ଼ିବାକୁ ଓଲଟା ଗାଈପରି ଉଦ୍‌ବିଗ୍ନ ହୁଏ । ମାତ୍ର ଏ ସ୍ଥଳରେ ମନକୁ ବିଶ୍ରାମ ବା ଅନ୍ୟଦିଗରେ ଚଞ୍ଚଳ ହେବାକୁ ନ ଦେଇ ଭାବିବାକୁ ହେବ 'ମୁଁ' ଏହି ସ୍ଥିର ମନ ସହଯୋଗରେ ଯେଉଁ ରୂପ ଓ ନାମକୁ ଧ୍ୟାନ କରୁଅଛି, ଏ ତିନିଙ୍କୁ ଅର୍ଥାତ୍ ମନ, ରୂପ ଏବଂ ନାମକୁ ଏକତ୍ର କରି ଏକ ସମୟରେ ମୋଠାରୁ ଅଲଗା କରିଦେବି । ମୁଁ ମାତ୍ର ଅବଶିଷ୍ଟ ରହିବି । ଏହି 'ମୁଁ ମାତ୍ର' ଅନୁଭୂତି ସ୍ଥିର ହେବା ସମୟରେ ଏହା ସ୍ୱାଭାବିକ ଯେ ଏକ ଅଶ୍ରାବ୍ୟ ଅନୁପମ ଅନାହତ ଧ୍ୱନି କୌଣସି ଅନିର୍ଦ୍ଦିଷ୍ଟ ସ୍ଥାନରୁ ବା ସ୍ଥାନରେ, ଅଥଚ ଯେପରି ସେହି 'ମୁଁ' ମାତ୍ରଠାରେ ଶ୍ରୁତ ହେଉଅଛି । ଏ ଧ୍ୱନି ବଡ଼ ସ୍ଥିର, ସୁଲଳିତ ଓ ଅପରିଚ୍ଛିନ୍ନ ବଂଶୀ, ଘଣ୍ଟା ନାଦାଦି ମିଶ୍ରିତ ନାଦ ପରି ଅନୁଭୂତ ହେଉଥିବ । ଏଥିରେ କିଛିକ୍ଷଣ ସ୍ଥିର ରହିଲେ ଶ୍ରୋତା ବା ଶ୍ରବଣ ଅଥବା ଶ୍ରାବ୍ୟ ଏକିତ୍ରୟଭାବ ସେହି 'ମୁଁ ମାତ୍ର' ବୋଧାକାର ରୂପରେ ବିଶ୍ରାମଲାଭ

କଲରୁ ଆତ୍ମା ସ୍ୱୟଂ ଆତ୍ମବୋଧାକାର ମୂର୍ତ୍ତିରୂପରେ ଅବଶିଷ୍ଟ ରହିବେ । ଏତେବେଳେ ଆତ୍ମଦେବ ଚନ୍ମୟାନନ୍ଦ ଉପଲବ୍ଧି କରୁଅଛନ୍ତି । ଅବିଦ୍ୟାକୃତ ଅନ୍ତଃକରଣ, ଇନ୍ଦ୍ରିୟ, ପ୍ରାଣ ଓ ଦେହାଦିର ଚଳନସମ୍ଭୂତ ଶବ୍ଦସ୍ପର୍ଶାଦି ବୈଷୟିକ ଜ୍ଞାନ ଲେଶମାତ୍ର ସମ୍ପୃକ୍ତ ନାହିଁ । ଏହି ସ୍ଥିର ଆତ୍ମ ବୋଧାବସ୍ଥାପରେ ଅନ୍ତଃକରଣ ସମୁଦିତ ହୋଇ ବାହ୍ୟ ବୈଷୟିକ କ୍ରୀଡ଼ାରମ୍ଭରେ ପ୍ରବୃତ୍ତ ହେଲାବେଳେ ଆତ୍ମା ଯେପରି ହଠାତ୍ ଏକ ଭୌତିକ ଜଗତରେ ଅତୀନ୍ଦ୍ରିୟ ରାଜ୍ୟରୁ ଆସି ଉପନୀତ ହୋଇଗଲେ ଏପରି ଭାବିବାକୁ ପାଆନ୍ତି, ଆଉ ସେତିକବେଳେ ବୋଧ କରିଥାଆନ୍ତି ଯେ ଅନ୍ତଃକରଣଦ୍ୱାରା ପରିଦୃଷ୍ଟ ଶବ୍ଦ, ସ୍ପର୍ଶାଦି ଆକାରରେ ଆକାରିତ ଏହି ଭୌତିକ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଚିତ୍ର ଯେପରି ତାଙ୍କରିଠାରେ ବିମଳାକାଶରେ ମୃଗତୃଷ୍ଣାନିଭ ନଗରାଦି ପରିଦୃଷ୍ଟ ହେଲାପରି ଗନ୍ଧର୍ବବାଜି ଚିତ୍ରବତ୍ ପ୍ରତିଭାସମାନ ହେଉଅଛି । ଏହି ଭାବ କ୍ରମେ ଦୃଢ଼ ହେବାକୁ ଲାଗିଥାଏ । ଏତଦ୍ଦ୍ୱାରା ସଂସାରୀୟ ମୋହ ଆଉ ଦୃଢ଼-ଅଧିକାର କରିବାକୁ ପାଏନାହିଁ । ଭୌତିକ ଜଗତ ଓ ଜାଗତିକ ବସ୍ତୁ-ସମୂହ ସ୍ଥୂଳ, ସୂକ୍ଷ୍ମ କିମ୍ବା ସୂକ୍ଷ୍ମାତ୍ ସୂକ୍ଷ୍ମତର ହେଉ, ସେ ସବୁ ଦୃଶ୍ୟ ବା ଜ୍ଞେୟରୂପେ ଉପଲବ୍ଧି ହୋଇଥାଆନ୍ତି । ଆତ୍ମାପୁରୁଷ ଆପଣାକୁ କେତେବେଳେ ଲୀଳାକ୍ରମେ ଏ ମହାଦୃଶ୍ୟର ଜ୍ଞାତାରୂପେ ବା ଇଚ୍ଛା କରି କେତେବେଳେ କିମ୍ବା ଏଥିରୁ ଦୃଷ୍ଟି-ପ୍ରତିନିବୃତ୍ତ କଲେ ସ୍ୱୟଂ ଆତ୍ମବୋଧାକାରରୂପେ ଆପଣାକୁ ଅନୁଭବ କରନ୍ତି ।

## ୮୫ଶ ପାଠ—ସଂସାରୀୟ ମୋହ

ଏହିରୂପେ ବର୍ତ୍ତମାନ ଦେଖାଯାଉଅଛି, ବାଲ୍ୟାବସ୍ଥାର ଅଜ୍ଞତାଠାରୁ ଆରମ୍ଭ କରି କ୍ରମେ ପଠନାବସ୍ଥା, ଯୌବନାବସ୍ଥା, ସଂସାରୀୟ ଭାବାପନ୍ନ ଅବସ୍ଥାକୃତ ବିଦ୍ୟାବସ୍ଥା ( ଅବଶ୍ୟ ଜଡ଼ବିଜ୍ଞାନ ବିଦ୍ୟାର କୃତବିଦ୍ୟତା ) ଏବଂ ସେ ଜର୍ଡୀୟ ତତ୍ତ୍ୱ ସମ୍ବନ୍ଧୀୟ ଚିନ୍ତାଶୀଳ-ଅବସ୍ଥା, ଅଥବା ଧନକତାର ଗର୍ବାବସ୍ଥା ଇତ୍ୟାଦି ଇତ୍ୟାଦି ନାନାପ୍ରକାର ଅବସ୍ଥାରେ ତଦ୍ରୂପାବସ୍ଥାପନ୍ନ ଲୋକ ଆପଣାକୁ ମନେ ମନେ ଯେପରି ବିଶିଷ୍ଟ ପ୍ରକାର କରି ଦେଖେ, ତାହା ଯେପରି ସେ ସ୍ୱୟଂ ଭଲରୂପେ ହୃଦୟଙ୍ଗମ କରି ହୃଷ୍ଟ ବା ସୁଖୀ ଦୁଃଖୀ କିମ୍ବା ମୁଗ୍ଧ ଥାଏ, ସେଭାବ ଠିକ୍ ସେହିରୂପେ ଅନ୍ୟର ଉପଲବ୍ଧି ହେବା କଠିନ । ତେବେ ଆତ୍ମଜ୍ଞାନାନୁଭବ-ଜନିତ ଆନନ୍ଦାବସ୍ଥା ଯେ ଅନୁଭବ କରନ୍ତି, ସେହି ଜାଣନ୍ତି ଅନ୍ୟର ତାହା ଉପଲବ୍ଧି ହେବା ଏକବାରେ ସହଜ ନୁହେ । ସତ୍ୟ ଉପରେ ନିର୍ଭର କରି ଯଥାର୍ଥ କହିବାକୁ ଗଲେ ଆତ୍ମାନନ୍ଦ ସମ୍ଭୋଗ ସୁଖର ବିଷୟାନନ୍ଦ-ସୁଖ କୌଣସି ଅଂଶାଂଶ ସଙ୍ଗେ ତୁଳିତ ହେବା ଯୋଗ୍ୟ ନୁହେ । ଦେହୀ ଆତ୍ମା ସ୍ୱରୂପତଃ ସୁଖମୟ ବା ଆନନ୍ଦମୟ ପଦାର୍ଥ । ସୁତରାଂ ସେ ସର୍ବଦା ସୁଖଶାନ୍ତିହିଁ ଲୋଡ଼ୁଅଛି । କିନ୍ତୁ ମୃଗନାଭି କସ୍ତୂରୀ ଯେଉଁ ମୃଗଠାରେ ଉଦିତ ହୁଏ, ସେ ବଡ଼ ପ୍ରମୋଦିତ ହୋଇ ସେହି ସୁବାସ ଗ୍ରହଣ କରିବାକୁ ଏକାନ୍ତ ଇଚ୍ଛା କରି ସବୁ ଦିଗରେ ସବୁଆଡ଼େ ଅଧୀର

ହୋଇ ଦୌଡ଼ାଦୌଡ଼ି କରେ । କେଉଁଠାରେ ସେ ସୁବାସିତ ବସ୍ତୁ ସେ ପ୍ରାପ୍ତ ହେବ ? ମାତ୍ର ଆପଣାଠାରେ ଅଛି ବୋଲି ଅଜ୍ଞତା ହେତୁରୁ ଜାଣି ନ ପାରି ସୁବାସମୟ କସ୍ତୁରୀ ଅନ୍ୱେଷଣରେ ବୁଲି ବୁଲି ମରେ । ସେହିପରି ଆନନ୍ଦମୟ ଆତ୍ମା ସ୍ୱୟଂ ଚିଦାନନ୍ଦ ରୂପେ ଅଥଚ ତଦ୍ରୂପ ଚିଦ୍ରୂପତା ସେ ଅଜ୍ଞତା ହେତୁରୁ ଉପଲବ୍ଧି କରିବାକୁ ଅକ୍ଷମ ହୋଇ ଅବିଦ୍ୟାକୃତ ଅନ୍ତଃକରଣ ଜନିତ ଶବ୍ଦସ୍ପର୍ଶାଦି ଅନୁଭବକୁ ସୁଖରେ ପରିଣତ କରାଇ ତଦ୍ୱାରା ସୁଖୀ ହେବାର ପ୍ରୟାସ ପାଉଅଛନ୍ତି । ଏହା ଆତ୍ମାନନ୍ଦ ସମ୍ଭୋଗ ପକ୍ଷରେ ବାସ୍ତବିକ ବିଡ଼ମ୍ବନା ଅଟେ ବୋଲି ଅଜ୍ଞତା ଜଣାଇ ଦେଉନାହିଁ । ସେହି ହେତୁ ଅବିଦ୍ୟାକୃତ ମୋହମୟ ବୈଷୟିକ ସୁଖକୁ ପ୍ରକୃତ ସୁଖ ମନେକରି ସଂସାରୀୟ ଜୀବ ତହିଁରେ ଆକୃଷ୍ଟ ହୋଇ ରହିଅଛି । ଏଥିରୁ ଦେଖାଯାଉଅଛି ମାୟାର ବିଦ୍ୟା ଏବଂ ଅବିଦ୍ୟା ଦୁଇଟି ଶକ୍ତି ଏକ ସମୟରେ ଆତ୍ମାକୁ ଦୁଇପ୍ରକାରରେ ବିଭକ୍ତ କରିଅଛନ୍ତି,— ବିଦ୍ୟା ଦ୍ୱାରା ଆତ୍ମାନନ୍ଦ ଉପଭୋଗ ଓ ଅବିଦ୍ୟା ଦ୍ୱାରା ବିଷୟାନନ୍ଦ ଉପଭୋଗ । ପୁଣି ବିଷୟାନନ୍ଦ ବିକାରୀ ଜଡ଼ବସ୍ତୁ ଉପରେ ନିର୍ଭର କରୁଥିବାରୁ ସେହି ବିଷୟାନନ୍ଦ ଜଡ଼-ବସ୍ତୁର ବିକାରାନୁଯାୟୀ ସୁଖ ଓ ଦୁଃଖ ଉଭୟ ଭାବାପନ୍ନ ହେଉଅଛି । ଏହି ରୂପରେ ବିଷୟ ଅର୍ଥାତ୍ ଇନ୍ଦ୍ରିୟଜନିତ ଭୋଗ ଆତ୍ମାପକ୍ଷରେ ମୋଟ ଉପରେ ଦୁଃଖର କାରଣ ମାତ୍ର ହୋଇଅଛି । ସଂସାରୀୟ ମନୁଷ୍ୟ ଆମ୍ଭେମାନେ ଏହି ବୈଷୟିକ ଦୁଃଖ ମୋଚନାର୍ଥ ସବୁପ୍ରକାର ଶିକ୍ଷା ଦୀକ୍ଷା ବା ଯତ୍ନଚେଷ୍ଟା ଓ କ୍ରିୟାକଳାପାଦିରେ ମାତିଥାଇଁ, ମାତ୍ର ଯେତିକି ଏ ଦୁଃଖ ନିବାରଣ ପାଇଁ ସଂସାରର ବିଷୟ-ମୃଗତୃଷ୍ଣାଆଡ଼େ ଆମ୍ଭେମାନେ ଦୌଡ଼ୁଥାଇଁ, ସେତିକି ଆମ୍ଭେମାନେ ବଞ୍ଚିତ ହେଉଥାଇଁ । ସୁଖ କ୍ରମେ କ୍ରମେ ସେତିକି ଦୂରକୁ ଦୂରକୁ ଘୁଞ୍ଚି ଘୁଞ୍ଚି ଯାଉଅଛି ।

ତେବେ ଏହି ଘୁଞ୍ଚାର ସୀମା କେଉଁଠାରେ ? ଭୌତିକ ଜଗତ ଓ ଭୌତିକ ଦେହସମ୍ବନ୍ଧୀୟ ଆତ୍ମଜ୍ଞାନାରୋପର ନିଦାନଭୂତ ଅଜ୍ଞତାର ଆର ପାଖରେ – ସେହି ସ୍ଥାନର ନାମ ଚିଦ୍ରାଜ୍ୟ ବା ଆତ୍ମରାଜ୍ୟ କିମ୍ବା ଲୌକିକ ବ୍ୟବହାରରେ ଯାହାକୁ ସ୍ୱର୍ଗରାଜ୍ୟ କହନ୍ତି ।

ଆତ୍ମଦେବ ସେହି ଚିନ୍ମୟ ମହଦାକାଶନାମକ ରାଜ୍ୟର ପୁରୁଷ । ସେ ନିଜ ରାଜ୍ୟରେ ସ୍ୱକୀୟ ଚିଦାନନ୍ଦମୟ ଅବସ୍ଥାରେ ସର୍ବଦା ଅଧିଷ୍ଠିତ ଥାଇ ରାଜା ସ୍ୱପ୍ନରେ ଦୀନ ଭିକ୍ଷୁକ ଦଶା ଉପଭୋଗ କରୁଥିବାପରି ଅଜ୍ଞାନାକାଶ ବା ଅବିଦ୍ୟାମୟ ଉପାଧିନିର୍ମିତ କାରଣ, ସୂକ୍ଷ୍ମ ଓ ସ୍ଥୂଳ ଦେହତ୍ରୟ ସମଷ୍ଟିରେ ଆତ୍ମଜ୍ଞାନ ଆରୋପ କରି ଦୁଃଖମୟ ବିଷୟାନନ୍ଦ ଉପଭୋଗରେ ବିମୁଗ୍ଧ ହୋଇ ରହିଛନ୍ତି । ଏହି ଅଜ୍ଞାନ-ନିଦ୍ରାରୁ ଉତ୍ଥିତ ହେବାର ଉପାୟ ଏକମାତ୍ର ଆତ୍ମତତ୍ତ୍ୱ ଓ ପ୍ରକୃତିତତ୍ତ୍ୱଜ୍ଞାନ । ଭଗବାନ୍ ହରି ମାୟାଧର ସର୍ବଶକ୍ତିମାନ୍ ପରମେଶ୍ୱର ସ୍ୱରୂପତଃ ଏକ, ଏବଂ ମାୟିକ ଲୀଳାନୁରୋଧରେ ବହୁମୟ ହୋଇ କି ପ୍ରକାର ବିରାଜମାନ ଅଛନ୍ତି, ସେ ସମ୍ବନ୍ଧେ ସେହି ଆପଣାକୁ ସ୍ତୁତିବାଦ କରାଯାଉ ।

## ୮୭ଶ ପାଠ—ପରମେଶ୍ୱରସ୍ତବ

ଭଗବାନ ହରି, ତ୍ରୈଲୋକ୍ୟଚନ୍ତାମଣି, ଅନନ୍ତକୋଟିବ୍ରହ୍ମାଣ୍ଡୈକନାଥ ମହାପ୍ରଭୁ ! ଆପଣଙ୍କୁ ସଦା ସାଷ୍ଟାଙ୍ଗ ଭୂମିଷ୍ଠ ପ୍ରଣାମ ; ଆଜ ଶ୍ରୀ ଅଭୟ ପାଦପଦ୍ମତଳରେ ଶରଣ । ଅନନ୍ତଶେଷଦେବ ଅନନ୍ତମୁଖରେ ଆତ୍ୟନ୍ତବିରହିତ କାଳରେ ଅନନ୍ତମୟ ଭାବରେ ଆପଣଙ୍କର ସ୍ତବଗୁଣାନୁବାଦ କରି କରି ଯଧି ତହିଁର ଲବେମାତ୍ର ପାରିପାରିବାର ନୁହେଁ । କ୍ଷୁଦ୍ର କୀଟାଦପି କୀଟାଣୁଠାରୁ କ୍ଷୁଦ୍ରତମ ନଗଣ୍ୟ ମନୁଷ୍ୟ ଭଳି ଜୀବ ସେହି ଅପାର ଅମୀୟ ରସପୂର୍ଣ୍ଣ ମହିମା ବା ଗୁଣ କୀର୍ତ୍ତନ କରିବା ଏତେଦୂର ଅସମ୍ଭବ ଏବଂ ଅସାଧ୍ୟ ଯେ ଯାହାସକାଶ 'ବାମନ ଚନ୍ଦ୍ର ଧରିବା' ଆଦି ଶତସହସ୍ର ଲୌକିକ ଉପମା ଲଜ୍ଜାରେ ଅଥଚ ଭୟରେ ଭଗବତୀ ବାଗ୍‌ଦେବୀଙ୍କର ଅବ୍ୟକ୍ତ ସୂକ୍ଷ୍ମତମ ଗୁମ୍ଫାରୁ ବାହାରିବାକୁ ସାହସ କରି-ପାରିବେ ନାହିଁ । ତେବେହେଲେ ଭାବ ତ ବଡ଼ ନିର୍ଲଜ୍ଜତା ବସ୍ତୁ, ସେ ଯେ କୌଣସି କ୍ଷୁଦ୍ରତମ ଆଧାରରେ ଥାଉନା କାହିଁକି, ଆପଣଙ୍କର ସେହି ଅପାର ଗୁଣସାଗରରୁ କ୍ଷୁଦ୍ର କଣିକାଏ ନ ଆଣିପାରୁ ପଛକେ, ତଦ୍ରୂପ ଗୁଣର ବିନ୍ଦୁକ ପର୍ଯ୍ୟନ୍ତ କୌଣସିଆଡ଼ୁ ଟିକିଏ ହେଲେ ସ୍ପର୍ଶ କରି କୃତାର୍ଥ ହେବାକୁ ପ୍ରୟାସ ପାଇଥାଏ । ଏହା ତାହାର କିଛି ନୁହେ । କେବଳ ଆପଣଙ୍କର ବିଚିତ୍ର ମହିମାର ବିଶେଷତ୍ୱ ମାତ୍ର । ମହାପ୍ରଭୁ ! ଏହି ଦେହୀ ଆତ୍ମା ସର୍ବଦା ଆପଣଙ୍କୁହିଁ ଦର୍ଶନ କରୁଅଛି ! ଅଥବା ଆପଣ ସ୍ୱକୀୟ ଦର୍ଶନର ମହତ୍ତ୍ୱ ପ୍ରକାଶ କରିବାକୁ ସଦୟ ଇଚ୍ଛା କରି ସ୍ୱୟଂ ଅଂଶତଃ ବା ଅଧ୍ୟାସବଶରୁ ମାୟିକ ଜୀବାତ୍ମାରୂପ ଧାରଣପୂର୍ବକ ତଦ୍ୱାରା ଅର୍ଥାତ୍ ଆପେ ଆପଣଙ୍କ ମୂର୍ତ୍ତିମାନ୍ ଅନୁଗ୍ରହଦ୍ୱାରା ସ୍ତୁତ ବା କୀର୍ତ୍ତିତ ହେଉଅଛନ୍ତି ।

• ଆପଣ ସତ୍ ଅର୍ଥାତ୍ ନିତ୍ୟ ବର୍ତ୍ତମାନ ସଦା ନୂତନ ଅପରିବର୍ତ୍ତନୀୟସ୍ୱରୂପ । ପୁଣି ଚିତ୍ ଅର୍ଥାତ୍ ବିଶୁଦ୍ଧ ଆତ୍ମବୋଧଜ୍ଞାନରୂପ, ଅଥଚ ଆନନ୍ଦ ଅର୍ଥାତ୍ ପ୍ରେମମୟ ଅଟନ୍ତି । ଆପଣଙ୍କର ଏହି ସନ୍ମୟ ସତ୍ତ୍ୱରୁ ଦେହୀ ଆତ୍ମାର ଜୀବରୂପରେ ଅସ୍ତିତ୍ୱ ପୁଣି ଚିନ୍ମୟ ସତ୍ତ୍ୱରୁ ଜ୍ଞାନ (ବିବେକାତ୍ମକ ବା ଅହଂକାରାତ୍ମକ ଉଭୟେ) ଏବଂ ଆନନ୍ଦମୟ ସତ୍ତ୍ୱରୁ ପ୍ରେମ ବା ସୁଖ ଇତ୍ୟାଦି ବିଦ୍ୟମାନ ରହିଅଛି । ଏତଦ୍ୱାରା ଦେହୀ ଜୀବ ସଂସାରରେ ଆପଣାପରି ଅନନ୍ତକୋଟି ପ୍ରାଣୀସୃଷ୍ଟି ଦର୍ଶନ କରି ତତ୍ସମୁଦୟର ଅକ୍ଷୟ, ଅବ୍ୟୟ, ଅପରିସୀମ ମହାସମଷ୍ଟି ଭଣ୍ଡାରରୂପେ ଆପଣଙ୍କୁ ନିଶ୍ଚୟ କରିବାକୁ ସମର୍ଥ ହୋଇ ସତତ ଆପଣଙ୍କୁହିଁ ଦର୍ଶନ କରୁଅଛି କପରି ? ଜୀବ ଆପଣାକୁ ତ ଆପେ ସର୍ବଦା ସର୍ବାବସ୍ଥାରେ ଜାଣୁଅଛି । କେହି କେବେହେଲେ ଆପଣାର ନାସ୍ତିତ୍ୱ ସ୍ୱୀକାର କରି ନ ପାରେ । ତେବେ ଘଟାକାଶଦର୍ଶନରେ ସଙ୍ଗେ ସଙ୍ଗେ ମହଦାକାଶର ଦର୍ଶନ ସ୍ୱତଃସିଦ୍ଧ ବା ସ୍ୱତଃ ସ୍ୱୀକାର୍ଯ୍ୟ ଅଟେ ବୋଲି ଘଟାକାଶ ପରି ଅନ୍ତଃକରଣୋପହିତ ଜୀବ ଆପଣାକୁ ଦେଖିବା ସଙ୍ଗେ ସଙ୍ଗେ ସମଷ୍ଟିରୂପାତ୍ମକ ବା ଚିନ୍ମୟଭଣ୍ଡାର ଆପଣଙ୍କୁ କାର୍ଯ୍ୟତଃ ସବୁବେଳେ ଦର୍ଶନ କରୁଅଛି । ପୁଣି ରଶ୍ମିମାନ୍ ସୂର୍ଯ୍ୟଦେବଙ୍କ ପରି ଆପଣ ସର୍ବଶକ୍ତିମାନ୍

ପରମେଶ୍ୱର । ଆପଣଙ୍କୁ ନମସ୍କାର । ଶକ୍ତି କାର୍ଯ୍ୟାନୁମେୟ । କାର୍ଯ୍ୟଦ୍ୱାରା ଶକ୍ତିର ଅନୁମାନ କରାଯାଏ । କାର୍ଯ୍ୟ ସ୍ୱରୂପ ଏହି ଚରାଚରାତ୍ମକ ବିଶ୍ୱବ୍ରହ୍ମାଣ୍ଡ ଦର୍ଶନଦ୍ୱାରା କାରଣାତ୍ମିକା ମୂଳ ପ୍ରକୃତିରୂପ ଶକ୍ତିର ଅନୁମାନ କରାଯାଏ । ତହିଁରୁ ଶକ୍ତିମାନ୍ ତଦାଶ୍ରୟ ଆପଣଙ୍କର ଦର୍ଶନଲାଭ ହୋଇଥାଏ । ଆପଣ ସତ୍ୟ ପୁଣି ବିଜ୍ଞାନ । ସେହି ଜ୍ଞାନ ପୁଣି ଆନନ୍ଦମୟ; ଆପଣ ଏହିପରି ସତ୍ୟ ବିଜ୍ଞାନାନନ୍ଦ ଆତ୍ମବୋଧ ରୂପେ ନିତ୍ୟ ବିରାଜମାନ । ଆତ୍ମବୋଧରୂପା ଚିନ୍ମୟୀ ଶକ୍ତି ସ୍ୱତଃ ଆପଣଙ୍କର ଏହି ବ୍ରହ୍ମରୂପରେ ଅନ୍ତର୍ନିହିତ । ତଦ୍ୱାରହିଁ ଆପଣ ସ୍ୱାତ୍ମପର ପ୍ରକାଶକ । ଆପଣଙ୍କର ଏହି ସ୍ୱାତ୍ମପର-ପ୍ରକାଶକତା ଚିନ୍ମୟରୂପତା ଦ୍ୱାରା ଆପଣ ପରମେଶ୍ୱର ସର୍ବଦା ଶକ୍ତିମାନ୍ । ସର୍ବନିୟନ୍ତା-ରୂପେ ବିରାଜମାନ ଆପଣଙ୍କର ଅଧିଷ୍ଠାନ ବା ଅଧ୍ୟକ୍ଷତା ଦ୍ୱାରା ଆପଣଙ୍କର ଶକ୍ତି, ସତ୍ତ୍ୱ, ରଜ, ତମୋମୟ ହୋଇ ଆପଣଙ୍କୁ ନାନା ଉପାଧିମାନ୍ ରୂପେ ପ୍ରକାଶ କରିଅଛି । ଅଥବା ଆପଣ ସ୍ୱୟଂ ଲୀଳାନୁରୋଧରେ ତଦ୍ରୂପ ନାନା ଶକ୍ତି ବିକାଶ କରି ସେହି ସେହି ଶକ୍ତିରେ ନାନାବିଧ ପ୍ରତିଭାସିକ ଦେହାଦିରୂପ ଧାରଣ କରିଅଛନ୍ତି ।

ପୃଥିବୀକୁ ଦେଖିଲେ ତାହା ଯେପରି କେବଳ ମୃଣ୍ମୟ ମାତ୍ର, ଅଥଚ ତହିଁରେ ନିହିତ ଥିବା କେ କେ ବିଚିତ୍ର ଗୁଣଦ୍ୱାରା ସେ ନାନାବିଧ ବୃକ୍ଷଲତା ତୃଣ ଇତ୍ୟାଦିରେ ଫଳପୁଷ୍ପାଦି ଯୁକ୍ତ ହୋଇ ଅପୂର୍ବ ଶୋଭା ଧାରଣ କରିଅଛି । ଏହି ବୃକ୍ଷଲତାମାନେ ପୁଣି ଏହି ପୃଥିବୀପୃଷ୍ଠରେ କେତେ ଜାତ ହୋଇ କେତେ ବିଲୟ ହୋଇ ସେହି ମାଟିରେ ମାଟି ହେଉଅଛନ୍ତି । କେବଳ ଏମାନଙ୍କର ଧାରାବାହିକ କ୍ରମେ ଏଭଳି ଉଦୟ, ସ୍ଥିତି ଏବଂ ବିଲୟ ବି ସାଧିତ ହେଉଥିବାରୁ ପୃଥିବୀ ଯେପରି ସର୍ବଦା ତରୁଲତାଦିରେ ପୂର୍ଣ୍ଣ ହୋଇ ଶୋଭାଯୁକ୍ତ ହୋଇ ରହିଅଛି, ସେହିପରି ଆପଣ ସଚ୍ଚିଦାନନ୍ଦ ଅଦ୍ୱୟ, ପରଂବ୍ରହ୍ମ, ଅଥଚ ଆପଣଙ୍କର ସ୍ୱକୀୟ ଅକଥନୀୟ ଏବଂ ଅଭାବ୍ୟ ଶକ୍ତିଦ୍ୱାରା ଆପଣ ପରମେଶ୍ୱର ରୂପେ ଏବଂ ନାନାବିଧ ପ୍ରତିଭାସିକ ଚୈତନ୍ୟରୂପୀ ବହୁପ୍ରକାର ଦେହାଦି ରୂପେ ସ୍ୱୟଂ ବିରାଜିତ ହୋଇ ଅପୂର୍ବ ଶୋଭା ଧାରଣ କରିଅଛନ୍ତି । ଆପଣଙ୍କୁ ନମସ୍କାର । ଆପଣଙ୍କୁ ପ୍ରଣାମ । ଆପଣଙ୍କୁ ପ୍ରଣାମାଦି କରିବାର ପ୍ରଥା ଯେଉଁ ଭକ୍ତିଯୁକ୍ତ ଭାବରୁ ସୃଷ୍ଟ ହୋଇଅଛି, ତଦ୍ରୂପ ଭାବମୟ ପଦାର୍ଥକୁ ସମ୍ପୂର୍ଣ୍ଣ ରୂପେ ଆପଣଙ୍କ ପଦତଳେ ସମର୍ପଣ କଲେ ସୁଦ୍ଧା କିଛି ପରମାଣେ କରାଯାଇପାରିଲା ବୋଲି କୁହାଯିବ ନାହିଁ । ଯେପରି ଲୌହ ଏବଂ ଚୁମ୍ବକ ଉଭୟେ କ୍ରିୟାଶୂନ୍ୟ, ନିଶ୍ଚେଷ୍ଟ, ଜଡ଼ । ମାତ୍ର ଉଭୟର ସାନ୍ନିଧ୍ୟରୁ ଲୌହ ଚଳନକ୍ରିୟା ପ୍ରକାଶ କରେ । ତଦ୍ରୂପ ଆପଣଙ୍କ ଅଧ୍ୟକ୍ଷତା ବା ଅଧିଷ୍ଠାନ ସହଯୋଗରୁ ଆପଣଙ୍କର ଶକ୍ତି, କାରଣ କାର୍ଯ୍ୟାତ୍ମିକାଦି କ୍ରମେ ନାନାପ୍ରକାର ଦେହାଦିରୂପେ ପରିଣାମ ପ୍ରାପ୍ତ ହେଉଅଛି । ସେହି ସେହି ମାୟିକ ନାନାପ୍ରକାର ପରିଣତ ଦେହାଦିରୂପରେ ଆପଣ ନାନାବିଧ ପ୍ରତିଭାସିକ ଚୈତନ୍ୟରୂପ ଧାରଣ କରୁ-ଅଛନ୍ତି । ଏହି ପ୍ରକାରେ ଆପଣ ଏକ ଏବଂ ଅଦ୍ୱୟ ପରିପୂର୍ଣ୍ଣ ପରଂବ୍ରହ୍ମ ଅଥଚ ଆପଣ ମାୟାରେ ସର୍ବଶକ୍ତିମାନ୍ ପରମେଶ୍ୱର । ଆପଣ ସତ୍ତ୍ୱଗୁଣାତ୍ମିକା ଉପାଧିରେ ବିଷ୍ଣୁ,

ଆପଣ ରଜୋଗୁଣାତ୍ମିକା ପ୍ରକୃତିରେ ପ୍ରଜାପତି ବ୍ରହ୍ମା ଏବଂ ତମୋଗୁଣାତ୍ମିକା ପ୍ରକୃତିରେ ସ୍ୱୟମ୍ଭୁ ସଦାଶିବ । ପୁଣି ଆପଣ ଏହି ଗୁଣମାନଙ୍କର ଅଂଶ କଳ୍ପନାରେ ବିଷ୍ଣୁଲୋକ, ବ୍ରହ୍ମଲୋକ ଓ ଶିବଲୋକ ଆଦି ଅସଂଖ୍ୟ ଅସଂଖ୍ୟ ଦେବାଦିରୂପେ ବିରାଜମାନ । ଆପଣଙ୍କର ମାୟାଶକ୍ତି ପ୍ରଧାନତଃ ବିଦ୍ୟା ଏବଂ ଅବିଦ୍ୟା ଉଭୟାତ୍ମିକା ।

ଏହି ବିଦ୍ୟାଶକ୍ତି ଶୁଦ୍ଧ ସତ୍ତ୍ୱମୟୀ ଏବଂ ଅବିଦ୍ୟାଶକ୍ତି ରଜତମୋମୟୀ । ଏହି ଅବିଦ୍ୟାଶକ୍ତିନିର୍ମିତ ନାନାବିଧ ଦେହାଦିରେ ଆପଣ ନାନାବିଧ ଜୀବଚୈତନ୍ୟରୂପେ ବିରାଜମାନ । ଏହି ପ୍ରକାରେ ଆପଣ ସ୍ୱୟଂ ପରଂବ୍ରହ୍ମ । ମହାଶକ୍ତିମୟ ଉପାଧିରେ ଆପଣ ପରମେଶ୍ୱର ଏବଂ ଆଂଶିକ ଶକ୍ତିମୟ ଉପାଧିରେ ଆପଣ ନାନାବିଧ ଦେବାସୁର-ନରାଦି ଆଭାଷ ଚୈତନ୍ୟ ସ୍ୱରୂପ । ଏକ ସୁବର୍ଣ୍ଣ ଯେପରି ସୁବର୍ଣ୍ଣ ମାତ୍ର, ଅଥଚ କୁଣ୍ଡଳ, କଙ୍କଣାଦି ନାନାପ୍ରକାର ଆକାରରେ ପରିଣତ ହେଲାରୁ ତାହା ତଦ୍ରୂପ ନାନାବିଧ ନାମରେ ଏବଂ ଆକାରରେ ଯଥାଯଥ ପ୍ରକାରରେ ବ୍ୟବହୃତ ହୋଇଥାଏ । ଜଣେ ଲୋକ ଧଳା କଳାଦି ନାନା ପ୍ରକାର ଦର୍ପଣରେ ଦେଖିଲେ ତାହାର ଏକବର୍ଣ୍ଣର ମୁଖକୁ ସେ ଯେପରି ଦର୍ପଣର ବର୍ଣ୍ଣାନୁସାରେ ନାନାପ୍ରକାର ବର୍ଣ୍ଣବିଶିଷ୍ଟ କରି ଦେଖେ, ତଦ୍ରୂପ ଏକ ବ୍ରହ୍ମଚୈତନ୍ୟ ଆପଣ ନାନାବିଧ ଗୁଣମୟ ଉପାଧିରେ ନାନାପ୍ରକାର ହୋଇ ଶୋଭା ପାଉଅଛନ୍ତି । ମନୁଷ୍ୟ ଯେପରି ଦେହଯନ୍ତ୍ରର ନିର୍ମାଣ ପ୍ରସଙ୍ଗ କିଛି ଜାଣେ ନାହିଁ, ସେ ଯନ୍ତ୍ର ଜୀବର ଅଧିଷ୍ଠାନଯୋଗେ ପ୍ରକୃତିଦ୍ୱାରା ଯଥାନିର୍ଦ୍ଦିଷ୍ଟଭାବେ ନିର୍ମିତ ଓ ନିୟନ୍ତ୍ରିତ ରହିଅଛି, ଆଉ ମାନବୀୟ ଆତ୍ମା ତହିଁରେ ଇଚ୍ଛାନୁଯାୟୀ ସର୍ବପ୍ରକାର ବୈଷୟିକ ସୁଖ-ଦୁଃଖାଦି ନାନାବିଧ ଭାବାପନ୍ନ କରି ଆପଣାକୁ ଦେଖୁଅଛି, ସେହିପରି ଏହି ଆଦ୍ୟା ବ୍ରହ୍ମଶକ୍ତି ସନାତନୀ ପରମେଶ୍ୱରୀ ଭଗବତୀ ମାୟାଦେବୀ ଆପଣଙ୍କ ଅଧିଷ୍ଠାନରୁ ସ୍ୱକୀୟ ଅଘଟନ ଘଟନା ପଟୀୟସୀ ଗୁଣ ବା ଶକ୍ତିଦ୍ୱାରା ଚିନ୍ମୟରୂପ ଏବଂ ଅବିଦ୍ୟାମୟରୂପ ଧାରଣ କରି ତହିଁରୁ ବହୁବିଧ ମାୟିକ ସୃଷ୍ଟି ଓ ଦେବନରରକ୍ଷସାଦି ଉପାଧି ଏବଂ ତଦନୁରୂପ ସୂକ୍ଷ୍ମ-ସ୍ଥୂଳ-ଦେହାଦି ରୂପେ ପରିଣତ ହେଉଅଛି । ସେହି ସବୁ ନାନାବିଧ ଉପାଧିରେ ଉପହିତ ହୋଇ ଆପଣ ନାନାବିଧ ଆଭାଷଚୈତନ୍ୟରୂପ ଧାରଣ କରି ଆପଣଙ୍କର ସେହି ଏକ ପରିପୂର୍ଣ୍ଣ ବ୍ରହ୍ମରୂପର ଶୋଭା ବର୍ଦ୍ଧନ କରୁଅଛନ୍ତି । ଆପଣ ସ୍ୱୟଂ ସ୍ୱରୂପତଃ ଅସଙ୍ଗ ଓ ଅସମ୍ବନ୍ଧ ଶୁଦ୍ଧାତ୍ମବୋଧ ବ୍ରହ୍ମରୂପ ଏବଂ ବ୍ରହ୍ମଶକ୍ତି ମାୟା ସଦସତ୍‌ରୁ ବିଲକ୍ଷଣ ଓ ଅଭାବ୍ୟ ଅନିର୍ବଚନୀୟ । ଏହି ଉଭୟ ସମ୍ବନ୍ଧରୁ ମୁଖ ଓ ଦର୍ପଣ ସମ୍ବନ୍ଧରେ ପ୍ରତିବିମ୍ବ ପ୍ରକାଶ ହେଲାପରି ଆଭାଷଚୈତନ୍ୟ ବିକଶିତ ହୋଇଅଛନ୍ତି । ନାନାବିଧ ସୂକ୍ଷ୍ମ ବା ଅତିନ୍ଦ୍ରିୟ ଓ ସ୍ଥୂଳମୟ ପରିଦର୍ଶନୀୟ ବିଶ୍ୱଚିତ୍ର ମଧ୍ୟ ପ୍ରକଟିତ ହୋଇଅଛି । ଏହିରୂପେ ଦେହ ଓ ସଂସାର ସମ୍ବନ୍ଧ ବଶତଃ ଜଗଦାକାର ଚିତ୍ରରୂପେ ଅନ୍ତଃକରଣର ପରିଣତି, ଏବଂ ତଦ୍ରୂପ ପରିଣତ ଜଗଦାକାର-ଚିତ୍ର ସହିତ ଅନ୍ତଃକରଣ ଓ ଦେହୀ ଜୀବଚୈତନ୍ୟର ସମ୍ବନ୍ଧବଶତଃ ଜୀବାତ୍ମାର ଅନ୍ତଃକରଣଗତ ଭାବସମନ୍ୱିତ ସଂସାର ରଙ୍ଗ ଭଙ୍ଗିର

ଚନ୍ଦ୍ରାକାର ପରିଣତ, ଆଉ ଏତଦ୍ରୂପ ବିହିତ ଆତ୍ମିକଚୈତନ୍ୟମୟ ଅନନ୍ତରୂପଶୋଭିତ ପରମେଶ୍ୱର ଆପଣଙ୍କୁ ନମସ୍କାର । ପରଂବ୍ରହ୍ମରୂପେ ଆପଣ ସ୍ୱରୂପତଃ ଅବର୍ଣ୍ଣନୀୟ । ଭଗବତୀ ଆଦ୍ୟା ମାୟା ଶକ୍ତି ସହିତ ଆପଣଙ୍କ ସମ୍ବନ୍ଧ ଧରି ଆଧ୍ୟାତ୍ମିକ-ଶାସ୍ତ୍ରାଦିର ସୃଷ୍ଟି । ଉପାଖ୍ୟାନର ଅଭିବରୁ ତାହା ଏପରି ବିଚିତ୍ର କୌଶଳରେ ନିର୍ମିତ ଯେ ତହିଁରେ ମାୟାଦେବୀଙ୍କର ବର୍ଣ୍ଣନା ମୁଖ୍ୟଭାବରେ ରହିଅଛି; ଅଥଚ ତାହା ଭିନ୍ନ ଭିନ୍ନ ପ୍ରକାରରେ ନିରୂପଣ କରିପିବାଦ୍ୱାରା ଆପଣଙ୍କୁ ଲକ୍ଷିତ-ମାତ୍ର ରୂପେ ଅବ୍ୟକ୍ତ ଅଗମ୍ୟ ଭାବରେ ରଖି, ଶାସ୍ତ୍ରାଦି ସେହିଠାରୁ ପ୍ରତ୍ୟାବର୍ତ୍ତନ କରିଅଛନ୍ତି ।

ଆଦି ଦେବକଳ୍ପ ମହର୍ଷିବର୍ଗ ପୂଜ୍ୟପାଦ ବଶିଷ୍ଠ ଓ କପିଳଦେବ ପ୍ରଭୃତି ବହୁ ବହୁ ପୂତନାମା ମହର୍ଷିପ୍ରବର ଆଧ୍ୟାତ୍ମିକ ଧର୍ମଗ୍ରନ୍ଥାଦିର ପ୍ରକାଶକ । ଏଭଳି ବେଦ-ବେଦାନ୍ତ ଦର୍ଶନାଦିରେ ଯେଉଁ ଅଚିନ୍ତ୍ୟ ମହାପୁରୁଷଙ୍କ ବର୍ଣ୍ଣନା ଆଭାଷମାତ୍ର ଦିଆଯିବା ସଂସାର ପକ୍ଷେ ଯଥେଷ୍ଟ ହୋଇଅଛି, ଆଉ ବାଗ୍‌ଦେବୀଙ୍କ ଭଣ୍ଡାରରେ କିଛି କିଛି ଅନ୍ୟ ଅଧିକ ଅଛି କି ନା ବୋଲିଯାଇ ନ ପାରେ, ସେହି ସନାତନ ଆଦିଦେବ ପରଂବ୍ରହ୍ମ ଆପଣ; ଆପଣଙ୍କୁ ସତତ ଭୂମିଷ୍ଠ ସାଷ୍ଟାଙ୍ଗ ପ୍ରଣାମ ।

ଦେହୀ ଆତ୍ମା ଏବଂ ଦେହ ଓ ସଂସାର ଏତଦୁଭୟର କାରଣୀଭୂତ ପ୍ରକୃତିର ସମ୍ବନ୍ଧ ଧରି କେତେ କେତେ ପ୍ରକାର ଦାର୍ଶନିକ ଆଲୋଚନା ଦର୍ଶନଶାସ୍ତ୍ରାଦିରେ ପୂଜ୍ୟପାଦ ମହର୍ଷି ଗୌତମ ଓ କଣାଦଙ୍କ ଦ୍ୱାରା ହୋଇଯାଇଅଛି ତାହାର ଇୟତ୍ତା ନାହିଁ । ସେ ସବୁ ଯେଉଁ ଆପଣଙ୍କୁ ନିରୂପଣ କରିବା ଅର୍ଥରେ ହୋଇଅଛି, ସେହି ଭଗବାନ ହରି ଆପଣଙ୍କୁ ସତତ ନମସ୍କାର । ଆଉ ସେହି ସଦ୍ଧର୍ମ-ପୁସ୍ତକଦାତା ମହର୍ଷି ପ୍ରବରାଦିଙ୍କୁ ମଧ୍ୟ ନମସ୍କାର । ଅନ୍ତଃକରଣ ଏବଂ ଦେହ ଓ ସଂସାର ଏହି ସମ୍ବନ୍ଧରୁ ଏହି ଯେଉଁ ବିରାଟ ବିଶ୍ୱବ୍ରହ୍ମାଣ୍ଡାତ୍ମକ ଚିତ୍ର ପରିଦୃଷ୍ଟ ହେଉଅଛି, ଏଥିରୁ ନାନାବିଧ ସଂସାରୀୟ ଭାବ ସଂଗ୍ରହ କରି ଭୌତିକ ଜଗତ, ଦେହ ଓ ଜାଗତିକ ବସ୍ତ୍ୱାଦି ସମ୍ବନ୍ଧରେ ନାନାପ୍ରକାରର ରଚନା, କାବ୍ୟ, ନାଟକ, ଅଳଙ୍କାର ଓ ଉପନ୍ୟାସାଦି ଆକାରରେ ପ୍ରକୃତ କବିମାନେ ମଧ୍ୟ ପ୍ରଣୟନ କରିଅଛନ୍ତି ଓ କରୁଅଛନ୍ତି । ଯେଉଁ ଯେଉଁ ପ୍ରତିଭାଦ୍ୱାରା ଏବଂ ଯେ ଯେ ଅଭିପ୍ରାୟରେ ସେ ସବୁ ଗଳ୍ପାତ୍ମକ ଓ ମାନସିକ ଆନନ୍ଦଦାୟକ ଗ୍ରନ୍ଥାଦିର ସୃଷ୍ଟି, ସେହି ସବୁ ଗ୍ରନ୍ଥ ଓ ସେହି ସେହି ଗ୍ରନ୍ଥର ପ୍ରତିପାଦ୍ୟ ବିଷୟାଦିର ଆଦିର ଯେଉଁ ଜ୍ଞାନରୁ, ସେହିରୂପ ଜ୍ଞାନାଦିର ଜ୍ଞାତାରୂପେ ଯେଉଁ ଜୀବାତ୍ମା ପୁରୁଷକୁ ଲକ୍ଷ୍ୟ କରିଯାଏ, ତଦ୍ରୂପ ଜୀବଚୈତନ୍ୟାଧାର ଆପଣଙ୍କୁ ନମସ୍କାର ।

ଏହି ଜଗତ ଜ୍ଞାନ, ଜ୍ଞେୟ ଏବଂ ଜ୍ଞାତା ଏହି ତ୍ରିବିଧାତ୍ମକ । ଏହି ତିନିର ସମବାୟ ସମ୍ବନ୍ଧଦ୍ୱାରା ଏହି ଜଗତ ଓ ଜାଗତିକ ବସ୍ତ୍ୱାଦିର ଅସ୍ତିତ୍ୱ ଜଣାଯାଏ । ଅନ୍ତଃକରଣ ଓ ଇନ୍ଦ୍ରିୟ ପରିଗୃହୀତ ଦ୍ୱାରା ସ୍ଥୂଳ ଦେହ ଓ ଜଗତ ସଂସ୍କାର ସମୁଦୟ ଜଣା ପଡୁଅଛି । ସୁତରାଂ ଦେହ ଓ ଜଗତ ଜ୍ଞେୟ । ଇନ୍ଦ୍ରିୟସଂସ୍କାରସମନ୍ୱିତ ମନ ଏ ସ୍ଥଳେ ଜ୍ଞାନ ।

ଅହଂକାର ; ଏଠାରେ ଜ୍ଞାତା, ପୁଣି ଅହଂକାର ସଦ୍ଭାବ ଜଣାଯାଉଅଛି, ତାହା ବିବେକ ବା ବୁଦ୍ଧି । ଏଠାରେ ଅହଂକାର, ଜ୍ଞେୟ, ବୁଦ୍ଧି, ଜ୍ଞାନ ଓ ଜ୍ଞାତା ଜୀବାତ୍ମା ପୁରୁଷ । ଜୀବାତ୍ମା ପୁରୁଷ ଯେଉଁଠାରେ ଜ୍ଞେୟ, ତଦ୍ରୂପ ଆତ୍ମବିଦ୍ୟା ସେଠାରେ ଜ୍ଞାନ ଏବଂ ସ୍ୱୟଂ ପରମେଶ୍ୱର ସର୍ବୈଶ୍ୱର୍ଯ୍ୟଶାଳୀ ଭଗବାନ ସେ ପବିଷ ଜ୍ଞାନପୀଠର ଜ୍ଞାତା । ଏହିରୂପେ ସର୍ବ ଓ ସର୍ବମୟଜ୍ଞାତା ଆପଣ ଭଗବାନ ହରି; ଆପଣଙ୍କୁ ନମସ୍କାର ।

କାର୍ଯ୍ୟକାରଣାତ୍ମିକା ମାୟା ଲକ୍ଷ୍ୟରେ ଯେଉଁ ପ୍ରଭୁ ପରଂବ୍ରହ୍ମ ଜ୍ଞାତୃ-ଜ୍ଞାନ ଏବଂ ଜ୍ଞେୟାଦି ତ୍ରିବିଧ ଭାବର ସାକ୍ଷୀ ଏବଂ ପରିପୋଷକ ଅଥଚ ସ୍ୱରୂପତଃ ସେହି ଯେଉଁ ପ୍ରଭୁ ଅସଙ୍ଗ ବ୍ରହ୍ମଚୈତନ୍ୟ, ସେହି ଆତ୍ମବୋଧଶୀଳ ସଚ୍ଚିଦାନନ୍ଦ ପରଂବ୍ରହ୍ମଙ୍କୁ ସତତ ନମସ୍କାର ଏବଂ ସେହି ଅଭୟପଦତଳେ ଶରଣ । ଆବ୍ରହ୍ମସ୍ତମ୍ବ ଜଗଦେକ ଚରାଚର ସର୍ବତ୍ର ସର୍ବଦା ଯେଉଁ ଯେଉଁ ଦୈହିକ, ବାଚନିକ ବା ମାନସିକ କିମ୍ବା ଆଧ୍ୟାତ୍ମିକାଦି ସର୍ବପ୍ରକାରର ଯେଉଁ ଯେଉଁ ଭାବମାନ ବିଦ୍ୟମାନ, ସେହି ଭାବସମଷ୍ଟିମୟ ମହାସାଗର ସଦୃଶ ଅନନ୍ତପାର ଜ୍ଞାନରତ୍ନଭଣ୍ଡାରର ଧନପତି କୁବେରରୂପୀ ଆପଣଙ୍କୁ ନମସ୍କାର ।

ଏହି ଯେଉଁ ଜୀବାତ୍ମା ପୁରୁଷ ସର୍ବଦା ବିଶ୍ୱବ୍ରହ୍ମାଣ୍ଡାତ୍ମକ-ତତ୍ତ୍ୱ ଦର୍ଶନ କରୁଅଛି, ଅଥଚ ଜ୍ଞାନୋଦୟ କ୍ଷଣରେ ପରମାତ୍ମ ତତ୍ତ୍ୱ ତନ୍ମାତ୍ରେ ଆତ୍ମହିତ ହୋଇଯାଉଅଛି, ଆଉ ଟିକିଏ ତାହାର ନିଜ ତତ୍ତ୍ୱ ଆଲୋଚନା କରିଯାଉ; ଏବଂ ତହିଁ ସଙ୍ଗେ ସଙ୍ଗେ ପରମାତ୍ମ-ତତ୍ତ୍ୱ ଓ ପ୍ରକୃତିତତ୍ତ୍ୱାଦି କାର୍ଯ୍ୟ-କାରଣାତ୍ମକଭାବରେ ବିଚାର କରିଯାଉ ।

## ୮୭ଶ ପାଠ—ଦେହତ୍ରୟ ସହିତ ଅପରୋକ୍ଷ ଆତ୍ମଦର୍ଶନ

୧—'ଏହି ଆତ୍ମା' ହେଉଛି ଏହିଠାରେ, ଏହି ଦେହତ୍ରୟର ଅଦୂର ଓ ଅବ୍ୟବହିତ ନିକଟରେ ବିରାଜମାନ ଥାଇ ଏଇ ଦେହତ୍ରୟର ସମଷ୍ଟିକୁ ଆତ୍ମଦେହାକାରରେ ନିଶ୍ଚୟ କରି ତଦ୍ରୂପ ଆକାରକୁ ସର୍ବଦା ଆତ୍ମା ବୋଲି ସ୍ଥିର କରି ଦେହାତ୍ମବୁଦ୍ଧିବିଶିଷ୍ଟ ହୋଇ ରହିଅଛି । ଦେହ କହିବାଦ୍ୱାରା ଦେହତ୍ରୟର ସମଷ୍ଟିକୁ ବୁଝିବାକୁ ହେଉଥିବ ।

୨—'ଏହି ଆତ୍ମା' ଏଇ ଦେହଦ୍ୱାରା ସାଧିତ କର୍ମ ଓ ଭୋଗାଦିକୁ ଲକ୍ଷ୍ୟ କରି ସେହି କର୍ମର ମୁଁ କର୍ତ୍ତା ଏବଂ ଭୋଗାଦିର ମୁଁ ଭୋକ୍ତା ବୋଲି ଆପଣଙ୍କୁ ଅହଂକାର କରି ସର୍ବଦା ଦେହାଭିମାନୀ ହୋଇ ରହିଅଛି ।

୩—'ଏହି ଆତ୍ମା' ଦେହ ସମ୍ବନ୍ଧୀୟ ପୂର୍ବକୃତ କର୍ମ ଓ ଭୋଗାଦିକୁ ଚିତ୍ତଦ୍ୱାରା ସ୍ମରଣ କରି ସର୍ବଦା ତତ୍ତଦ୍ରୂପ ସଂଗୃହୀତ ବାସନା ଓ ସଂସ୍କାରପନ୍ନ ହୋଇ ରହିଅଛି ।

୪—'ଏହି ଆତ୍ମା' ଦେହସ୍ଥ ଇନ୍ଦ୍ରିୟ ଓ ପ୍ରାଣକୁ ସର୍ବଦା ଗ୍ରହଣମାନ କରୁଥିବା ମନୋବୃତ୍ତି ସହିତ ନାନାବିଧ କର୍ମ ଓ ଭୋଗାଦିର କଳ୍ପନା ବା ମନନ କରୁଅଛି ।

୫—'ଏହି ଆତ୍ମା' ଅନ୍ତଃକରଣ ସହିତ ବିଦ୍ୟମାନ ରହି କର୍ଣ୍ଣରେ ଶ୍ରବଣ କରୁଅଛି ।

୬—'ଏହି ଆତ୍ମା' ଚକ୍ଷୁରେ ଦର୍ଶନ କରୁଅଛନ୍ତି ।

୭—'ଏହି ଆତ୍ମା' ଚର୍ମରେ ସ୍ପର୍ଶାନୁଭବ କରୁଅଛନ୍ତି ।

୮—'ଏହି ଆତ୍ମା' ଜିହ୍ୱାରେ ରସାସ୍ୱାଦନ କରୁଅଛନ୍ତି ।

୯—'ଏହି ଆତ୍ମା' ନାସିକାରେ ଗନ୍ଧ ବାରୁଅଛନ୍ତି ।

୧୦—'ଏହି ଆତ୍ମା' ମୁଖସ୍ଥ ବାଗିନ୍ଦ୍ରିୟରେ ବଚନ କହୁଅଛନ୍ତି ।

୧୧—'ଏହି ଆତ୍ମା' ପାଦରେ ଗମନାଗମନ କରୁଅଛନ୍ତି ।

୧୨—'ଏହି ଆତ୍ମା' ହସ୍ତରେ ଆଦାନ ପ୍ରଦାନାଦି ବହୁବିଧ କର୍ମ ସମ୍ପାଦନ କରୁଅଛନ୍ତି ।

୧୩—'ଏହି ଆତ୍ମା' ଗୁହ୍ୟେନ୍ଦ୍ରିୟରେ ମଳ ନିଃସାରଣ କରୁଅଛନ୍ତି ।

୧୪—'ଏହି ଆତ୍ମା' ଉପସ୍ଥଦ୍ୱାରା ମୂତ୍ରାଦି ତ୍ୟାଗ କରୁଅଛନ୍ତି ।

୧୫—'ଏହି ଆତ୍ମା' ଅନାଦି ଦେହାତ୍ମବାସନା ଓ ଦେହାତ୍ମା ସଂସ୍କାରପନ୍ନ ଅବିଦ୍ୟାମୟୋପାଧିରେ ଅଭିଭୂତ ରହିବାବେଳେ 'ମୁଁ' କିଏ ବା କଣ ବୋଲି ନ ଜାଣି ସୁଷୁପ୍ତି ଅନୁଭବ କରୁଅଛନ୍ତି ।

ଆତ୍ମାନାତ୍ମ ବିବେକ ଦ୍ୱାରା 'ମୁଁ' ଏହା ନୁହେଁ 'ମୁଁ' ତାହା ନୁହେ ବୋଲି ସର୍ବ-ପ୍ରକାର ଜ୍ଞେୟ ବା ଜ୍ଞାତବ୍ୟ ଅବିଦ୍ୟା ପରିଦୃଷ୍ଟ ମାୟିକ ବସ୍ତୁକୁ ପରିତ୍ୟାଗ କରି ଅର୍ଥାତ୍ ଆପଣାଠାରୁ ଅଲଗା କରି ଦେଖି ଏତଦ୍ରୂପ ସର୍ବପ୍ରକାର ଦୃଶ୍ୟର ବା ଜ୍ଞେୟର ନିରନ୍ତରଣରୁ ଶେଷାନ୍ତସୀମାରେ 'ମୁଁ ମାତ୍ର' ବୋଧରୂପରେ ଯାହା ସୁନିଶ୍ଚିତ ରହେ ତାହାହିଁ ଆତ୍ମପଦ-ବାଚ୍ୟ ଆତ୍ମା । ଏହି ଆତ୍ମା ଉପରୋକ୍ତ ପଞ୍ଚଦଶର ସମଷ୍ଟିରେ ତନ୍ମୟ ରହିଥିବାର ନାମ ଆତ୍ମାର ସଂସାର ସଂସ୍ଥାନ ଦଶା । ଏହିରୂପେ ଆତ୍ମା ସଂସାରୀ ହୋଇ ଜୀବାତ୍ମାନାମରେ ଅଭିହିତ ହୋଇଅଛନ୍ତି । ଏହି ଆତ୍ମା ଆତ୍ମସଂସ୍ଥାନ ବିସ୍ମରଣ କରି ଦେହନିଚୟରେ ବିଜଡ଼ିତ ହୋଇ ଏଥିରେ ଆତ୍ମଭାବେ ବିମୋହିତ ହୋଇ ରହିଅଛନ୍ତି, ଏବଂ ଦେଖୁଅଛନ୍ତି ଓ ଭାବୁଅଛନ୍ତି ଯେ ଏହି ଦେହନିଚୟହିଁ 'ମୁଁ' ଓ ଏତଦ୍ଦ୍ୱାରା ସାଧିତ କର୍ମର କର୍ତ୍ତା ମୁଁ ଓ ଭୋଗାଦିର ଭୋକ୍ତା ମୁଁ ହିଁ; ଅର୍ଥାତ୍ 'ଏହି ଆତ୍ମା' ଚିତ୍ତ ବିକାଶ ସହକାରେ ଆତ୍ମ-ବିବେକ ଯୋଗଦ୍ୱାରା ସ୍ୱୟଂ ନିତ୍ୟୋପଲବ୍ଧି ସ୍ୱରୂପ ବିରାଜମାନ ପୁରୁଷ ଅଟନ୍ତି । ଆତ୍ମା-ଦ୍ୱାରା ପ୍ରକାଶିତ ବାହ୍ୟାନ୍ତରେନ୍ଦ୍ରିୟ ଦ୍ୱାରା (ଶବ୍ଦ ସ୍ପର୍ଶାଦି ଦର୍ଶନ ବିଷୟ ଜଣାଗଲା ପରେ) ଆତ୍ମ ପ୍ରକାଶିତ ବା ପରିଜ୍ଞାତ ହୋଇ ନ ପାରନ୍ତି, ମାତ୍ର ଇନ୍ଦ୍ରିୟାଦି ଉପକରଣଦ୍ୱାରା ସବୁ ବିଷୟ ଜାଣିବା ଅଭ୍ୟାସ ବଦ୍ଧମୂଳ ହୋଇଯାଇଥିବାରୁ ଆତ୍ମା ଆପଣାକୁ ଏହି ସବୁ ବାହ୍ୟାନ୍ତର ଇନ୍ଦ୍ରିୟଦ୍ୱାରା ଜାଣିବା ଆଶୟରେ ବା ଜଣାଇ ଦେବାକୁ ଅପେକ୍ଷାରେ ରହିଅଛନ୍ତି । କୁଆ କାନ ନେଇଗଲା ଶୁଣିବାମାତ୍ର ଅଜ୍ଞ ଲୋକ ଯେପରି ନିକଟସ୍ଥ ଆପଣା

କାନକୁ ଅନୁସନ୍ଧାନ ନ କରି କୁଆ ପଛରେ ବହୁ ଆୟାସ ସ୍ୱୀକାର କରି ଧାବମାନ ହୁଏ, ଅଥବା ନାସିକାକୁ ଆଖିରେ ନ ଦେଖି ଯେପରି କେହି ହାତର ଅଙ୍ଗୁଳିକୁ ମୁଣ୍ଡ ଘୂରି-ପାଖରେ ବୁଲାଇ ଆଣି ତଦ୍ଦ୍ୱାରା ନାସିକା ସ୍ପର୍ଶ କରି କହେ,—ହେଉଛି ଏ ମୋର ନାକ, ସେହିପରି ଆତ୍ମା ଆତ୍ମବୋଧାତ୍ମକ ଆତ୍ମବିବେକଯୋଗଦ୍ୱାରା ଆତ୍ମସ୍ୱରୂପାବବୋଧ ତ୍ୟାଗ କରି ବହୁବ୍ରୀହି ସମାସ ଦ୍ୱାରା ନିଷ୍ପନ୍ନ ହେଉଥିବା ବାକ୍ୟଦ୍ୱାରା ଅନାତ୍ମ ବସ୍ତୁର ନିର୍ଣ୍ଣୟ ସହକାରେ ଆପଣାକୁ ନିଶ୍ଚୟ କରିବାର ପ୍ରୟାସ ପାଉଅଛନ୍ତି । ଯେପରି—

୧—ଦେହାତ୍ମ ବୁଦ୍ଧି ସହକାରେ ଦେହାକାରକୁ ଆତ୍ମରୂପ ବୋଲି ନିଶ୍ଚୟ କରି ତହିଁରେ ଅଭେଦ ଭାବରେ 'ମୁଁ' ବୋଲି ଯେ ଅଭିଭୂତ ହୋଇ ରହିଅଛନ୍ତି ସେହି ମୁଁ' ଆତ୍ମବାଚକ ବୁଦ୍ଧ୍ୟାତୀତ ପଦାର୍ଥ 'ମୁଁ' ।

୨—ଦେହଦ୍ୱାରା ସାଧିତ କର୍ମ ଓ ଭୋଗାଦିକୁ ଲକ୍ଷ୍ୟ କରି ତହିଁରେ ମୁଁ କର୍ତ୍ତା ବା ଭୋକ୍ତା ବୋଲି ଯେ ଅଭିମାନଯୁକ୍ତ ହୋଇଅଛନ୍ତି, ସେହି ନିରହଙ୍କାର ଆତ୍ମବାଚକ ବସ୍ତୁ 'ମୁଁ' ।

୩—ଦେହସମ୍ବନ୍ଧୀୟ ବିଗତ ଅଥଚ ଅତୀତଗର୍ଭପତିତ କର୍ମ ଓ ଭୋଗାଦିକୁ ସ୍ମରଣ କରି ତଦ୍ଦ୍ୱାରା ବିଶିଷ୍ଟ ପ୍ରକାରର ଅବସ୍ଥାପନ୍ନ ବୋଲି ଯେ ଆପଣାକୁ ସ୍ମରଣ କରୁଅଛନ୍ତି, ସେହି ଆତ୍ମବାଚକ ଚିତ୍ତବୃତ୍ତିର ଅଗୋଚର ପଦାର୍ଥ 'ମୁଁ' ।

୪—ଯେ ମନନକ୍ରିୟା ଅର୍ଥାତ୍ ସଙ୍କଳ୍ପବିକଳ୍ପାଦିରେ ପ୍ରବୃତ୍ତ ହୋଇଅଛି, ସେହି ମନାତୀତକୁ ଆତ୍ମବୋଧକ ବସ୍ତୁ 'ମୁଁ' ।

୫—ଯେ କର୍ଣ୍ଣଦ୍ୱାରା ଶ୍ରବଣ କରୁଅଛି ବୋଲି ଆପଣାକୁ ଅଭିମାନ କରୁଅଛି ସେହି ଆତ୍ମବାଚକ ଅଶ୍ରୁତ ବସ୍ତୁ 'ମୁଁ' ।

୬—ଯେ ଚକ୍ଷୁରେ ଦର୍ଶନ କରି ଆପଣାକୁ ଦ୍ରଷ୍ଟା ବୋଲି ମଣୁଅଛି, ସେହି ଅଦର୍ଶନୀୟ ଜ୍ଞାନାକାର ବସ୍ତୁ 'ମୁଁ' ।

୭—ଯେ ସ୍ପର୍ଶାନୁଭବ ଦ୍ୱାରା ମୋର ସ୍ପର୍ଶାନୁଭବ ହେଉଅଛି ବୋଲି ଆପଣାକୁ ସ୍ଥିର କରୁଅଛି ସେହି ସ୍ପର୍ଶେନ୍ଦ୍ରିୟାତୀତ ଆତ୍ମବାଚକ ପଦାର୍ଥ 'ମୁଁ' ।

୮—ଯେ ରସାସ୍ୱାଦନରେ ଆପଣାକୁ ତଦ୍ରୂପ ରସଭୋଗୀ ବୋଲି ଲକ୍ଷ୍ୟ କରୁ-ଅଛି, ସେହି ଆତ୍ମବାଚକ ରସନେନ୍ଦ୍ରିୟ ଅପ୍ରକାଶିତ ବସ୍ତୁ 'ମୁଁ' ।

୯—ଯେ ନାସିକାରେ ଗନ୍ଧ ବାରୁଅଛି ସେହି ଅନାଘ୍ରାତ ଆତ୍ମବାଚକ ବସ୍ତୁ 'ମୁଁ' ।

୧୦—ଯେ ବକ୍ତା ବୋଲି ଆପଣାକୁ ପରିଚୟ ଦେଉଅଛି, ସେହି ଅବକ୍ତବ୍ୟ ଆତ୍ମବାଚକ ପଦାର୍ଥ 'ମୁଁ' ।

୧୧—ଯେ ଗମନାଗମନଶୀଳ ବୋଲି ଆପଣାକୁ ବୁଝୁଅଛି, ସେହି ଅଚଳ ଆତ୍ମବାଚକ ବସ୍ତୁ 'ମୁଁ' ।

୧୨—ଯେ ଆଦାନପ୍ରଦାନାଦିରେ ଆପଣାକୁ ଦାତା ବା ଗ୍ରହୀତା ବୋଲି ପ୍ରକାଶ କରୁଅଛି, ସେହି ଅଦାତବ୍ୟ ଓ ଅଗ୍ରହୀତବ୍ୟ ଆତ୍ମବାଚକ ପଦାର୍ଥ 'ମୁଁ' ।

୧୩, ୧୪ – ଯେ ମଳମୂତ୍ର ତ୍ୟାଗ ଦ୍ୱାରା ଆପଣାକୁ ତତ୍ରୂପ ତ୍ୟାଗୀ ବୋଲି ମନେ କରୁଅଛୁ ସେହି ଅତ୍ୟାଜ୍ୟ ଆତ୍ମବାଚକ ଆତ୍ମପଦାର୍ଥ 'ମୁଁ' ।

୧୫ । ଅବିଦ୍ୟାଭିଭୂତ ଅବସ୍ଥାରେ ଯେ ଆପଣାକୁ 'ମୁଁ' କିଏ ବା କିଣ ବୋଲି ବିସ୍ମୃତ ହେଉଅଛନ୍ତି, ସେହି ନିତ୍ୟୋପଲବ୍ଧି-ସ୍ୱରୂପ ଆତ୍ମା 'ମୁଁ' ।

ଆତ୍ମା ଏହି ଦେହ ସମ୍ବନ୍ଧୀୟ ଉପରବର୍ଣ୍ଣିତ ପଞ୍ଚଦଶଟି ବିଷୟ ଘଟିତ ଅବିଦ୍ୟା ଏବଂ ଅହଂକାରାଦି ଅନ୍ତଃକରଣ, ମନ ଓ ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟବର୍ଗ ସହିତ ଅନ୍ୱିତ ହୋଇ ଇହସଂସାରରେ ପ୍ରକାଶିତ ହୋଇଅଛନ୍ତି । ଆତ୍ମାର ସ୍ୱରୂପ ନିର୍ଣ୍ଣୟ କରିବାକୁ ଗଲେ କହିବାକୁ ହେଉଅଛି ଯେ 'ମୁଁ' ଏକାତ୍ମବାଚକ ବସ୍ତୁ ଆତ୍ମସ୍ୱରୂପ ନିଜ ବୋଧାକାରରେ ବିରାଜିତ ରହି ବୁଦ୍ଧିଦ୍ୱାରା ନିଶ୍ଚୟକରଣାଦି ବ୍ୟାପାରଠାରୁ ଆରମ୍ଭ କରି ଶ୍ରବଣଦର୍ଶନାଦି, ଗମନାଗମନ ଓ ଆଦାନପ୍ରଦାନାଦି ପର୍ଯ୍ୟନ୍ତ ପଞ୍ଚଦଶଟି ଦୈହିକ ବ୍ୟାପାରରେ ମିଶ୍ରିତ ଭାବରେ ରହିଅଛି । ସେହି 'ମୁଁ' ଏହି ପଞ୍ଚଦଶଟିରୁ ପୃଥକ୍, ଏ ପଞ୍ଚଦଶଟି ଜ୍ଞେୟରୂପରେ ଆତ୍ମାଦ୍ୱାରା ପରିଜ୍ଞାତ ହେଉଅଛନ୍ତି । ଜ୍ଞାତା ଜ୍ଞେୟର ପାର୍ଥକ୍ୟ ନିଶ୍ଚୟ ଥିବାହେତୁ ଆତ୍ମା ଏ ସମସ୍ତଙ୍କର ଜ୍ଞାତା । ଏହି ଜ୍ଞାତା ପୁରୁଷ ଆପଣାକୁ ଅଲଗା କରି ଦେଖି ଅନୁଭବ କରିବା ପରିବର୍ତ୍ତିରେ ଏହି ଦେହ ସମ୍ବନ୍ଧୀୟ ଉକ୍ତ ପଞ୍ଚଦଶଟି ପଦାର୍ଥକୁ ଜ୍ଞେୟରୂପେ ପ୍ରକାଶ କରି ତଦ୍ୱାରା ସ୍ୱୟଂ ଜ୍ଞାତାରୂପେ ପ୍ରକାଶିତ ହୋଇଥିଲେ ସୁଦ୍ଧା ଉକ୍ତ ଜ୍ଞେୟ ଓ ଜ୍ଞାତା ଏକତ୍ର ମିଶି ଏକାତ୍ମା-ରୂପ ହୋଇଅଛନ୍ତି, ଅର୍ଥାତ୍ ଜ୍ଞାତା ଏବଂ ଜ୍ଞେୟ ଏ ଉଭୟେ ସମବାୟୀ । ଏହାବୋଲି ଜ୍ଞାତା କଦାଚ ଜ୍ଞେୟ ବସ୍ତୁ ହୋଇ ନ ପାରେ । ଏହିରୂପେ ଏହିଠାରେ ଏହି ଦେହତ୍ରୟ ସହିତ ଆତ୍ମା ବିରାଜମାନ ଅଛନ୍ତି । ଏହାଇ ଅବଧାରଣୀୟ ।

## ୮୮ଶ ପାଠ—ଆତ୍ମାର ଦେହତ୍ରୟ ସହିତ ସଂଯୋଗ କ୍ରମବର୍ଣ୍ଣନ ଏବଂ ଆତ୍ମବିଜ୍ଞତା

ଆତ୍ମା ଜ୍ଞାନମୟ ଏବଂ ଦେହାଦି ଜଡ଼ ବସ୍ତୁ । ଏହି ବିରୁଦ୍ଧ ଧର୍ମାକ୍ରାନ୍ତ ଜ୍ଞାନ ଓ ଜଡ଼ ଏତଦୁଭୟର ସମ୍ବନ୍ଧ କିପରି କାହିଁକି ପ୍ରସିଦ୍ଧ ରହିଅଛି, ଏହା ପୁଣି ସଂସାରର ମୂଳଭିତ୍ତି, ଏ ବିଷୟରେ ଟିକିଏ ଅବଧାନ କରାଯାଉ । ମନେ କରାଯାଉ, ଯେପରି ରାଜା ସର୍ବଦା ରାଜସିଂହାସନ ଅଳଂକୃତ କରି ରହିଥାଆନ୍ତି, ରାଜଭବନରୁ ବାହାରି ଅଗମ୍ୟ ଅପରିଷ୍କୃତ ଘୃଣ୍ୟ ସ୍ଥାନରେ ବୁଲିବା ତାଙ୍କ ପକ୍ଷରେ ଅସାଧ୍ୟ ଓ ଅସୁନ୍ଦର ଅଟେ; ତେବେ ସାମ୍ରାଜ୍ୟସ୍ଥିତ ତାଙ୍କର ନାନାବିଧ କୃଷିକ୍ଷେତ୍ରାଦିର ଆବାଦ ଓ ଅନ୍ୟାନ୍ୟ ନାନାଦି କାର୍ଯ୍ୟ ସେ ସ୍ୱୟଂ କରିବା ଅସମ୍ଭବ । ତେବେ ସେ ସବୁ କିପରି ସୁସମ୍ପାଦିତ ହୁଏ ? ରାଜାଙ୍କର ରାଜକୀୟ କାର୍ଯ୍ୟ ନାନା ଶ୍ରେଣୀରେ ବିଭକ୍ତ କରାଯାଏ । ସେହିସବୁ କାର୍ଯ୍ୟ ନିର୍ବାହ ସକାଶେ ପ୍ରତ୍ୟେକ ଶ୍ରେଣୀରେ ନାନାପ୍ରକାର ଔପାଧିକ ଉପାଧିଧାରୀ ମନ୍ତ୍ରୀ ଓ ପାତ୍ର ଇତ୍ୟାଦି କାର୍ଯ୍ୟଗ୍ରାହୀ ନିଯୁକ୍ତ ହୋଇଥାଆନ୍ତି । ସାମାନ୍ୟ ମଜୁରି ଲଗିବାଠାରୁ ଯନ୍ତ୍ରଣା ଦେବା

ପର୍ଯ୍ୟନ୍ତ ସମୁଦାୟ ନାନାପ୍ରକାର କାର୍ଯ୍ୟ ସେହି ସମସ୍ତ ଭୃତ୍ୟମାନଙ୍କଦ୍ୱାରା ନିର୍ବାହ ହୁଏ । ମାତ୍ର ସେ ସମୁଦାୟ କର୍ମର ଫଳ ସ୍ୱରୂପ କୃଷିଜ ଶସ୍ୟାଦି ଏବଂ ସ୍ୱର୍ଣ୍ଣରୌପ୍ୟାଦି ରାଜ-ଭଣ୍ଡାରରେ ରଖାଯାଏ । ଚାକରମାନେ ସ୍ୱୀୟ ସ୍ୱୀୟ ସଂସାରଯାତ୍ରା ନିର୍ବାହ ସକାଶେ ବେତନମାତ୍ର ଗ୍ରହଣ କରିଥାଆନ୍ତି । ସେହିପରି ଜୀବାତ୍ମା ସର୍ବଦା ଆତ୍ମପଦରେ ଅଧିଷ୍ଠିତ ଅଛନ୍ତି ଓ ଆତ୍ମଶକ୍ତି କାର୍ଯ୍ୟକାରଣଭେଦରେ ବହୁବିଧ ସଂସାରୀୟ କାର୍ଯ୍ୟ ସମ୍ପନ୍ନ କରୁଅଛନ୍ତି । ଆତ୍ମଶକ୍ତି ଦୁଇଭାଗରେ ସ୍ୱତଃ ବିଭକ୍ତ ହୋଇଅଛି, ବିଦ୍ୟା ଓ ଅବିଦ୍ୟା । ବିଦ୍ୟାଶକ୍ତିଦ୍ୱାରା ଆତ୍ମା ଆପଣାକୁ ଅହଂ ବା ଅମିଶ୍ର ଓ କେବଳ 'ମୁଁ' ବୋଲି ବୋଧକରି ଆତ୍ମଭାବେ ରାଜାଧିରାଜରୂପେ ବିରାଜମାନ ଅଛନ୍ତି, କିନ୍ତୁ ଅବିଦ୍ୟାଶକ୍ତି ସେହିଠାରେ ତାଙ୍କୁ ତାହାର ଅଜ୍ଞାନବୃତ୍ତି ପିଣ୍ଡବ୍ରହ୍ମାଣ୍ଡାତ୍ମକ ଶରୀର ଦେଖାଇ ସେହି ଶରୀରରେ ଆତ୍ମଭାବାପନ୍ନ ଭ୍ରାନ୍ତିସ୍ଥାପନପୂର୍ବକ ଆତ୍ମାକୁ ବିମୋହିତ କରିବାଦ୍ୱାରା ଆତ୍ମା ସେହି ଶରୀରକୁ 'ମୁଁ' ବୋଲି କଳ୍ପନା କରୁଅଛନ୍ତି ଏବଂ ଏହିରୂପ ଅବିଦ୍ୟାଦ୍ୱାରା ବିଦ୍ୟାଶକ୍ତି ଆବୃତ ରହିଯିବାରୁ ସେହି କଳ୍ପନା ସତ୍ୟ ବୋଲି ପ୍ରତୀତ ହେଉଅଛି । ଏଠାରେ ଅବିଦ୍ୟାଶକ୍ତିର ନାମାନ୍ତର ଅଜ୍ଞାନ ବା ଅନ୍ତରବକାଶ ଇତ୍ୟାଦି । ଆଦି ଅନିଶ୍ଚିତ ଏବଂ ପ୍ରସୁପ୍ତ ଭାବାପନ୍ନ ଦେହାତ୍ମା ବାସନା ଓ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ସଂସ୍କାର ପୁନଃ ପୁନଃ ଅଭ୍ୟାସଦ୍ୱାରା ବଦ୍ଧମୂଳ ଭାବେ ଅବସ୍ଥିତ ରହି ଯେଉଁ ଜ୍ଞାନାଜ୍ଞାନମିଶ୍ରିତ ସଂସ୍କାରମୟ ବସ୍ତୁରୂପରେ ପରିଣତ ହୋଇଅଛି ଓ ସେହି ପରିଣତ ସଂସ୍କାର ଆତ୍ମାକୁ ତନ୍ମୟ ଅର୍ଥାତ୍ ତଦ୍ରୂପ ସଂସ୍କାରାପନ୍ନ କରି ରଖିଅଛି, ସେହି ସଂସ୍କାରକୁ ଅବିଦ୍ୟା ବା ଅଜ୍ଞାନର ରୂପ ବୋଲି ବୁଝିବାକୁ ହେବ । ଜୀବାତ୍ମା ପ୍ରଥମତଃ ଏହି ଅବିଦ୍ୟାଦ୍ୱାରା ଆକୃଷ୍ଟ ହୋଇ ମୁଁ କିଣ କିଏ ବୋଲି ବିକଳ୍ପଭାବାପନ୍ନ ହୁଅନ୍ତି, ତହିଁରୁ ଦେହାତ୍ମ ବୁଦ୍ଧି ତା ନିଜ ଗର୍ଭରେ ଉଦିତ ହୋଇପଡ଼େ । ସେହିଁ ଦେହାତ୍ମ ବୁଦ୍ଧିର ସ୍ୱରୂପ ଏହିପରି, ଅର୍ଥାତ୍ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦିର ଆଧାରଭୂତ ଦେହାକାରକାରିତ ଯେଉଁ ଶରୀରରେ ଆତ୍ମାର 'ମୁଁ' ଏହି ବୋଲି ନିଶ୍ଚିତ ଜ୍ଞାନ ହୁଏ ତାହାହିଁ ଦେହାତ୍ମବୁଦ୍ଧି । ଜୀବାତ୍ମାଙ୍କୁ ରାଜା ସ୍ଥିର କରିବା ସ୍ଥଳେ ଅବିଦ୍ୟା ତାଙ୍କର ରାଜଶକ୍ତି ଓ ବୁଦ୍ଧି ପ୍ରଧାନମନ୍ତ୍ରୀ ସ୍ୱରୂପ ଏବଂ ଅହଂକାରାଦି ଅଧସ୍ତନ କର୍ମଚାରୀ ସ୍ୱରୂପ । ବୁଦ୍ଧି କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦିକୁ ଅପେକ୍ଷା କରି ପ୍ରକାଶିତ ହେବାରୁ କର୍ତ୍ତା ଓ ଭୋକ୍ତାରୂପ ଅହଂକାର ସେହିଠାରେ ମୁଁ ହାଜର ବୋଲି କହି ଦଣ୍ଡାୟମାନ, କର୍ତ୍ତା କର୍ମକୁ ଅପେକ୍ଷା କରୁଥିବାରୁ କର୍ମେନ୍ଦ୍ରିୟର ଦର୍ଶନ ଓ ଭୋଗ ଅର୍ଥାତ୍ ଶବ୍ଦସ୍ପର୍ଶାଦିକୁ ଅପେକ୍ଷା କରୁଥିବାରୁ କର୍ମେନ୍ଦ୍ରିୟର ଦର୍ଶନ ସେହି ସଙ୍ଗେ ସଙ୍ଗେ ମିଳିଯାଏ । ଏହିରୂପେ କର୍ମ ଓ ଭୋଗ ଉଭୟେ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟଦ୍ୱାରା ସୁସମ୍ପାଦିତ ହୁଅନ୍ତି । ଏହିରୂପେ କର୍ମେନ୍ଦ୍ରିୟର ସଂସ୍କାର ପ୍ରାଣସହିତ ସଂଯୁକ୍ତ ଓ ଜ୍ଞାନେନ୍ଦ୍ରିୟର ସଂସ୍କାର ଅନ୍ତଃକରଣ ସହିତ ସଂଯୁକ୍ତ ହୋଇଯାଏ । ଇନ୍ଦ୍ରିୟମାନଙ୍କ ଉପରେ ଦୃଷ୍ଟି ପଡ଼ିଯିବା ମାତ୍ର ସେହି ସଙ୍ଗେ ସଙ୍ଗେ ଇନ୍ଦ୍ରିୟମାନଙ୍କ ଆଧାର ଦେହ ପରିଲକ୍ଷିତ ହୁଏ ଏବଂ ଦେହ ସଙ୍ଗେ ସଙ୍ଗେ ଓ ଦେହର

ଆଧାର ବିଶ୍ୱବ୍ରହ୍ମାଣ୍ଡାଦି ପରିଦୃଷ୍ଟ ହୁଏ ; ଏହି କ୍ରମେ ଜୀବାତ୍ମାର ସଂସାର ଦର୍ଶନ ସୁସାଧିତ ହେଉଅଛି ।

ସଂକ୍ଷେପତଃ ଦେଖିବାକୁ ଗଲେ ଆତ୍ମା କେବଳ ଓ ଏକ ଆତ୍ମବୋଧାକାରିତ ରୂପବାନ୍ ଅଟନ୍ତି । ଅବିଦ୍ୟାଯୁକ୍ତ ହେବାରୁ ଏହି ଆତ୍ମା ଦେହାତ୍ମବୁଦ୍ଧିବିଶିଷ୍ଟ । ଆତ୍ମା ଏହିରୂପେ ବୁଦ୍ଧିଯୁକ୍ତ ହେବାରୁ ବୁଦ୍ଧି ତନ୍ମୟ ସଙ୍ଗୀ ଅହଂକାର ସଙ୍ଗେ ସଙ୍ଗ କରିଦିଏ । ଅହଂକାର ସଙ୍ଗ ହେବାରୁ ସେ ତନ୍ମୟ ସଙ୍ଗୀ ମନ, ପ୍ରାଣ ଓ ଇନ୍ଦ୍ରିୟ ସଙ୍ଗେ ସଙ୍ଗୀ କରାଇଦିଏ ଏବଂ ମନ, ପ୍ରାଣ ଓ ଇନ୍ଦ୍ରିୟ ଦେହ ସଙ୍ଗେ, ଦେହୀ ପୁଣି ଦେହସଂସାର ସଙ୍ଗେ ଆତ୍ମାକୁ ସଂସାରୀ କରାଇଦିଏ । ଏହିରୂପେ ଅବିଦ୍ୟାଠାରୁ ଭୌତିକ ଜଗତ ପର୍ଯ୍ୟନ୍ତ ନିରୂପିତ ସମସ୍ତ ପଦାର୍ଥମାନଙ୍କର ପରସ୍ପର ସମ୍ବନ୍ଧ ସଂସୃଷ୍ଟ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଏହି ଜୀବାତ୍ମାର ସଂସାର । ରାଜାର ଆଦେଶ ଯେପରି କର୍ମଚାରୀମାନଙ୍କ ହୃଦୟକୁ ଅଧିକାର କରି ବସିବାରୁ ସେମାନେ ସେହି ଆଦେଶାନୁଯାୟୀ ନିଜ ନିଜ କର୍ତ୍ତବ୍ୟ ସାଧନ କରନ୍ତି, ଫଳରେ ଯେପରି ରାଜାଙ୍କ ସକଳ କାର୍ଯ୍ୟ କରୁଥାଏ, ସେହିପରି ଆତ୍ମା ବୁଦ୍ଧି, ଅହଂକାରାଦିରେ ତନ୍ମୟ ଥିବାରୁ ବୁଦ୍ଧିଦ୍ୱାରା ବୁଦ୍ଧିର କାର୍ଯ୍ୟ ଅଧ୍ୟବସାୟାଦି ଏବଂ ଅହଂକାର ଦ୍ୱାରା ଅହଂକରଣାଦି ସାଧିତ ହୁଏ, ଅର୍ଥାତ୍ ବୁଦ୍ଧି ଅନ୍ନଭୋଜନ କର୍ତ୍ତବ୍ୟ ବୋଲି ସ୍ଥିର କରିବା ସମୟରେ ତଦ୍ଦ୍ୱାରା ଅହଂକାର ମନରେ ପ୍ରବେଶ କରେ । ମନ ପ୍ରାଣରେ ପ୍ରବେଶ କରଣାନନ୍ତର ଅହଂକାର, ମନ ଓ ପ୍ରାଣ ଏକତ୍ରିତ ହୋଇ ହସ୍ତରେ ଅର୍ଥାତ୍ ହସ୍ତସ୍ଥ ପ୍ରାଣ ସଞ୍ଚାଳନ ନାଡ଼ୀଆଦି ମାର୍ଗରେ ପ୍ରବେଶପୂର୍ବକ ହସ୍ତସହ ଅନ୍ନାଦି ଧାରଣ କରି ମୁଖଗର୍ଭରେ ରଖି-ଦିଅନ୍ତି; ପରେ ଏହିପରି କ୍ରମରେ ମୁଖଜିହ୍ୱାଦି ଚାଳିତ ହୋଇ ଚର୍ବଣାଦିକ୍ରିୟା ଶେଷ କଲାରୁ ଚର୍ବିତ ସେହି ପ୍ରାଣବାୟୁର ଅଂଶବିଶେଷଦ୍ୱାରା ପେଟଭିତରକୁ ଠେଲାହୋଇ ଚାଲିଯାଏ । ଏହିପରି ଯେତେ ଯେତେ ପ୍ରକାରର ଯେତେ ଯେତେ କର୍ମ ଓ ଶବ୍ଦାଦିଭୋଗ ସାଧିତ ହେଉଅଛି, ତାହା ଏହି ଉପରୋକ୍ତ କଥିତମତେ ବୁଦ୍ଧିଠାରୁ ଇନ୍ଦ୍ରିୟ ଓ ଦେହାଦି ପର୍ଯ୍ୟନ୍ତ ଦ୍ୱାରା ସୁସମ୍ପନ୍ନ ହେଉଅଛି । ଆତ୍ମଦେବ ବୁଦ୍ଧି ନୁହନ୍ତି, ଅହଂକାର ବା ଇନ୍ଦ୍ରିୟବର୍ଗାଦି, ଦେହ ବା ଜାଗତିକ ବସ୍ତ୍ୱାଦି ସମନ୍ୱିତ ଜଗଦାକାର ନୁହନ୍ତି, ପୁଣି ଆତ୍ମା ବୁଦ୍ଧିରେ ବୁଦ୍ଧି, ଅହଂକାରରେ ଅହଂକାର ଓ ଇନ୍ଦ୍ରିୟାଦିରେ ଇନ୍ଦ୍ରିୟବର୍ଗ ଏବଂ ଦେହରେ ଦେହମୟ ହୋଇ ରହି ଏ ସମସ୍ତଙ୍କୁ ଏମାନଙ୍କ ନିଜ ନିଜ ଆକାର ପ୍ରକାରରେ ପ୍ରକାଶ କରି ଯାହାଦ୍ୱାରା ଯଥାଯଥ କାର୍ଯ୍ୟ ଓ ଭୋଗାଦି ସମାପନ କରାଇ ସ୍ୱୟଂ ଅଭୋକ୍ତା ଓ ଅକର୍ତ୍ତା ପୁରୁଷ ଅନାତ୍ମ ଦେହ ଓ ସଂସାରରେ ତନ୍ମୟ ହେବାରୁ ସଂସାରୀ ପଦବାଚ୍ୟ ହୋଇଅଛନ୍ତି । ଆତ୍ମା କିପରି ଜଡ଼ଜଗଦାଦି ସହିତ ସମ୍ପୃକ୍ତ ରହି ସଂସାରୀ ହୋଇଅଛନ୍ତି ?

ଦେଖାଯାଉ, ଆକାଶ ସୂକ୍ଷ୍ମ ଓ ଆଲୋକ ମଧ୍ୟ ସୂକ୍ଷ୍ମ ଜାତୀୟ । ସୁତରାଂ ଏତଦୁଭୟେ ସ୍ୱରୂପତଃ ପୃଥକ୍ ପୃଥକ୍ ହୋଇ ଏକାଧାରରେ ଅବସ୍ଥିତ ଥିଲେ ମଧ୍ୟ ଉଭୟ ସୂକ୍ଷ୍ମ ହେତୁରୁ ଉଭୟେ ମିଶି ଏକାଙ୍ଗ ପରି ଅନୁମିତ ବା ପରିଦୃଷ୍ଟ ହୋଇଥାଆନ୍ତି । ଏହିପରି ଆତ୍ମା ଅତୀବ ସୂକ୍ଷ୍ମତମ ଏବଂ ଅବିଦ୍ୟା ସଂସ୍କାର ଓ ବାସନା ଏ ମଧ୍ୟ ସୂକ୍ଷ୍ମ;

ସୁତରାଂ ଆତ୍ମା ଅବିଦ୍ୟା ବା ଅଜ୍ଞାନଯୁକ୍ତ ବୋଲି ଆପଣାକୁ କଳ୍ପନା କରନ୍ତି । ଅବିଦ୍ୟା ଯେପରି ସ୍ୱଭାବରେ ସୂକ୍ଷ୍ମ, ବୁଦ୍ଧି ମଧ୍ୟ ସେହି ଜାତୀୟ ସୂକ୍ଷ୍ମ; ଏଣୁ ଅଜ୍ଞାନ ବା ଅବିଦ୍ୟା ଓ ବୁଦ୍ଧି ଉଭୟେ ମିଶି ଏକ ହୋଇ ଯାଉଅଛନ୍ତି । ପରେ ଅବିଦ୍ୟା ଓ ବୁଦ୍ଧି ମିଶି ଅହଂକାରରେ, ତତ୍ପରେ ଅବିଦ୍ୟା, ବୁଦ୍ଧି, ଅହଂକାର ଏକତ୍ର ମିଶି ମନରେ, ଏହିରୂପେ ଅବିଦ୍ୟା+ବୁଦ୍ଧି+ଅହଂକାର+ମନ ଏକତ୍ରରେ ପ୍ରାଣ ସଙ୍ଗେ ମିଶି ଏ ସମସ୍ତେ ଏକପ୍ରକାର ପ୍ରାଣମୟ ଆକାର ଧାରଣ କରି ଗୋଟିଏ ସୂକ୍ଷ୍ମ ଗୋଲକମୟ ବସ୍ତୁରୂପେ ପ୍ରତିଷ୍ଠିତ ହେଉଅଛନ୍ତି । ଏହିପରି ସୂକ୍ଷ୍ମତର ସୂକ୍ଷ୍ମତମ ବସ୍ତୁମାନଙ୍କର ପରସ୍ପର ସଂଯୋଗ ଓ ଏକତା ଏହି ପ୍ରକାରରେ ସଂଘଟିତ ହେଉଅଛି । ପରେ ଏହି ଅବିଦ୍ୟା ଓ ପ୍ରାଣାଦିଯୁକ୍ତ ସୂକ୍ଷ୍ମ ଗୋଲକମୟ ପଦାର୍ଥ ନାଡ଼ୀମାର୍ଗରେ ଯଥାରୂପ ଇନ୍ଦ୍ରିୟ ଓ ଦୈହିକ ଅଙ୍ଗପ୍ରତ୍ୟଙ୍ଗାଦିରେ ବିରାଜିତ ରହି ତଦ୍ରୂପ ଇନ୍ଦ୍ରିୟ ଓ ଦୈହିକ ଅଙ୍ଗପ୍ରତ୍ୟଙ୍ଗାଦିକୁ ଚଳାଇବା ଦ୍ୱାରା ଇନ୍ଦ୍ରିୟ ସ୍ପର୍ଶାଦି ବିଷୟର ଜ୍ଞାନ ଆଦାନପ୍ରଦାନ ଏବଂ ପାନ ଭୋଜନାଦି କ୍ରିୟା ସୁସାଧିତ ହେଉଅଛି । ଏତଦ୍ରୂପ ଦୈହିକ କ୍ରିୟାଦ୍ୱାରା ଜାଗତିକ ବସ୍ତୁର ପରିଚାଳନା ପରେ ସଂସାଧିତ ହେଉଅଛି ।

ଏହିରୂପେ ଉପରବର୍ଣ୍ଣିତ ବୃତ୍ତାନ୍ତକୁ ହୃଦୟଙ୍ଗମ ଓ ସମ୍ୟକ୍ ଉପଲବ୍ଧି କରି ଦେଖିବାକୁ ହେବ, ଆତ୍ମା ଏହି ପ୍ରକାରରେ ସ୍ୱୟଂ ନିର୍ଲିପ୍ତ ଓ ଅବୟବାଦିଶୂନ୍ୟ ବୋଧମାତ୍ର ରୂପ ହୋଇ ସୁଦ୍ଧା ଅବିଦ୍ୟାଠାରୁ ଆରମ୍ଭ କରି ଜଡ଼ାକାର ଦେହରେ ଅର୍ଥାତ୍ ସ୍ଥୂଳସୂକ୍ଷ୍ମାଦି ବସ୍ତୁମାନଙ୍କରେ କିପରି ତନ୍ମୟଭାବେ ସଂଯୁକ୍ତପ୍ରାୟ ହୋଇ ରହିଅଛନ୍ତି, ପୁଣି ଦେହସ୍ଥ ହସ୍ତପଦାଦି ଅଙ୍ଗ ସ୍ଥୂଳ ଜଡ଼ ଥିବାରୁ ତଦ୍ୱାରା ସ୍ଥୂଳଜଡ଼ମୟ ଜାଗତିକ ବସ୍ତ୍ୱାଦି ସମନ୍ୱିତ ଜଗତକୁ କାର୍ଯ୍ୟସାଧନ କ୍ଷେତ୍ରରୂପେ ପ୍ରାପ୍ତ ହୋଇ ତହିଁରେ କିପରି ଭୌତିକ ବସ୍ତୁ ସମ୍ବନ୍ଧୀୟ ପରିବର୍ତ୍ତନ ଓ ରୂପାନ୍ତର ବା ସ୍ଥାନାନ୍ତରାଦି ବିଷୟକୁ ସମାଧାନ କରୁଅଛନ୍ତି । ଏହି ପ୍ରକାରରେ ସୂକ୍ଷ୍ମତମ, ଅଥଚ ଆକାରଶୂନ୍ୟ ଏବଂ ନିତ୍ୟ ବର୍ତ୍ତମାନ-ବୋଧ-ସ୍ୱରୂପ-ବିଶିଷ୍ଟ ଆତ୍ମା ସ୍ଥୂଳାକାରବିଶିଷ୍ଟ ଓ ଅନିତ୍ୟ ଅଥଚ ସ୍ୱୟଂ ଅପ୍ରକାଶିତ ଜଡ଼ମୟ ଦେହ ଓ ଜଗଦାଦିକୁ ତତ୍ତଦାକାରରେ ପ୍ରକାଶ କରି ପୁଣି ତହିଁରେ ତନ୍ମୟ ହୋଇ ସଂସାରଶ୍ରମ ସୁଲଭ ଦୁର୍ବହ ଭାର ବହନକରି ସଂସାରୀ ହୋଇଅଛନ୍ତି, ପରନ୍ତୁ ଜଡ଼ମୟ ଅପ୍ରକାଶିତ ଭୌତିକ ଜଗଦାକାରସ୍ଥ ଅଜ୍ଞାନ ସମଷ୍ଟିକୁ ସ୍ୱକୀୟ ଆତ୍ମାଲୋକଦ୍ୱାରା ଆଲୋକିତ ଓ ଦର୍ଶନଯୋଗ୍ୟ କରାଇ ପ୍ରକାରାନ୍ତରେ ନିଜ ବିଭୂତି ବା ଐଶ୍ୱର୍ଯ୍ୟକୁ ନିଜେ ଜଡ଼ସଙ୍ଗେ ମିଶ୍ରିତ କରି ତତ୍ସମ୍ବନ୍ଧେ ଉପଭୋଗ ପରାୟଣ ହୋଇଅଛନ୍ତି ।

ଜଡ଼ ବସ୍ତୁ ଆପଣାକୁ ଜାଣେନାହିଁ, ସ୍ପଷ୍ଟାର୍ଥତଃ ଜଡ଼ର ଜାଣିବା ଗୁଣ ବା ଶକ୍ତି ନାହିଁ; ତାହା କ୍ଷେତ୍ରରୂପରେ ଆତ୍ମାର କ୍ରୀଡ଼ା ସମ୍ପାଦନ କରିବା ନିମିତ୍ତ ଓ ଆତ୍ମାକୁ ତଦ୍ରୂପ ସଂସାରୀୟ କ୍ରୀଡ଼ାବିମୋହିତ କରି ରଖିବା ନିମିତ୍ତ ଅନିର୍ବଚନୀୟା ପ୍ରକୃତି କାର୍ଯ୍ୟ, କାରଣ ଓ କର୍ତ୍ତୃତ୍ୱାଦିର ଆଦି କାରଣରୂପେ ଆତ୍ମାଶ୍ରୟରେ ପ୍ରତିଷ୍ଠିତ ରହି ଅବିଦ୍ୟାଠାରୁ

ଦେହ ଓ ଜଡ଼ ସଂସାର ପର୍ଯ୍ୟନ୍ତ ସମୁଦାୟ ବାହ୍ୟ ଅନ୍ତର୍ପ୍ରପଞ୍ଚ ସୃଷ୍ଟି ବୈଚିତ୍ର୍ୟ ରଚନା କରିଅଛି ।

## ୮୪ଶ ପାଠ – ଆତ୍ମବୋଧ ଓ ଆତ୍ମସୂକ୍ତ

ଏହିଠାରେ ଆତ୍ମାର ଉପଦେଶବାଣୀ ପ୍ରଣିଧାନ ପୂର୍ବକ ହୃଦୟଙ୍ଗମ ଓ ଉପଲବ୍ଧି କରିଯାଉ । ଆତ୍ମଦେବ କହୁଅଛନ୍ତି—ପରିଦୃଶ୍ୟମାନ ପାଞ୍ଚଭୌତିକ ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ମୁଁ ନୁହେ, ମୁଁ ତହିଁର ପ୍ରକାଶକ, ଅଥଚ ଜ୍ଞାତା ବା ଦ୍ରଷ୍ଟା ସାକ୍ଷୀ ସ୍ୱରୂପ ନିତ୍ୟ ବିରାଜମାନ । ଏହି ପାଞ୍ଚଭୌତିକ ସ୍ଥୂଳ କଳେବର ମୁଁ ନୁହେ, ମୁଁ ତାହାର ପ୍ରକାଶକ, ପରି-ପୋଷକ ଓ ରକ୍ଷକ, କିନ୍ତୁ ଜ୍ଞାତା ବା ଦ୍ରଷ୍ଟା ସ୍ୱରୂପ ଦୈହିକ ସ୍ମରଣବେଳେ ମୁଁ ଦେହର ଅଦୂର ନିକଟବର୍ତ୍ତୀ ଆଉ ତାହାର ବିସ୍ମରଣବେଳେ ସେଇ ଦେହ ମୋଠାରୁ ଅସୀମ ଅପରିମିତ ଦୂରସ୍ଥ ଅଟେ ।

ଏହି ସମସ୍ତ ଇନ୍ଦ୍ରିୟ ଓ ପଞ୍ଚପ୍ରାଣ ମୁଁ ନୁହେ, ମୋର ଦୃଷ୍ଟିମାତ୍ରରେ ଏମାନେ ପରିଚାଳିତ, ଏମାନେ ମୋହର ଆତ୍ମସତ୍ତାଦ୍ୱାରା ଜଡ଼ ଦେହ ଓ ଜଡ଼ ଜଗତରୂପ ଲୀଳାମୟ କର୍ମକ୍ଷେତ୍ରରେ ସର୍ବଦା କ୍ରୀଡ଼ା କରୁଅଛନ୍ତି । ଏମାନେ ନିଜ ନିଜକୁ ବା ଜଗଦାଦି ସହିତ ଜାଗତିକ ପଦାର୍ଥାଦିକୁ ସ୍ୱତଃ ଜାଣିବାକୁ ଅକ୍ଷମ, ମୁଁ ଏମାନଙ୍କୁ ପ୍ରକାଶ କରିଅଛି, ଏମାନଙ୍କ ଅସ୍ତିତ୍ୱ ସ୍ଥିର କରୁଅଛି । ଏମାନେ ଜଡ଼ଧର୍ମୀ ଓ ମୁଁ ଆତ୍ମଜ୍ଞାନଧର୍ମୀ, ଅଥଚ ଏମାନଙ୍କର ପ୍ରକାଶକ ଏବଂ ଦ୍ରଷ୍ଟା, ଜ୍ଞାତା, ବା ସାକ୍ଷୀରୂପ ଚିଦାନନ୍ଦମୟ 'ଆତ୍ମା' । ବୁଦ୍ଧି ଓ ଅହଂକାରାଦି ଅନ୍ତଃକରଣଚତୁଷ୍ଟୟ ମୁଁ ନୁହେ, ଏମାନେ ସର୍ବଦା ଇନ୍ଦ୍ରିୟ ଓ ଦେହ-ସଂସାର-ସମ୍ବନ୍ଧଜନିତ ବିଷୟାଦିର ସଂଘଟକ, ଅଥଚ ଆତ୍ମସତ୍ତାରେ ସତ୍ତ୍ୱବାନ୍ । ମୁଁ ଏମାନଙ୍କୁ ଅନ୍ତରସ୍ଥ ଉପକରଣ ସ୍ୱରୂପ ଗ୍ରହଣ କରି ଏମାନଙ୍କଦ୍ୱାରା ଭୌତିକ ସଂସାରରେ ପରିଭ୍ରମଣ କରୁଅଛି । ଯଥାର୍ଥତଃ ମୁଁ ଅସଙ୍ଗ ଓ ସମସ୍ତଙ୍କର ଜ୍ଞାତା ବା ଦ୍ରଷ୍ଟା ସ୍ୱରୂପ । ଏପରି ଏମାନଙ୍କର ଅର୍ଥାତ୍ ଭୌତିକ ଜଗତ, ଦେହ, ପ୍ରାଣ, ଇନ୍ଦ୍ରିୟ ଓ ଅନ୍ତଃକରଣାଦିର ଆଦିଭୂମି, ଅର୍ଥାତ୍ ମୂଳାଜ୍ଞାନ ବା ଅବିଦ୍ୟା ମୁଁ ନୁହେ, ତାହା ମୋର ଆଶ୍ରିତ ମଧ୍ୟ ନିକୃଷ୍ଟ ଅନାଦି ଅଜ୍ଞାନ ସଂସ୍କାରବିଶେଷ ମାତ୍ର । ମୁଁ ତାହାର ତ୍ୟାଗ, ପ୍ରତ୍ୟାହାର, କି ବିସ୍ମରଣ କରି ଆତ୍ମଧ୍ୟାନ, ବା ଆତ୍ମଧାରଣାଦି ପରିପୂର୍ଣ୍ଣ ହେଲାବେଳେ ସେ କିଂଦୃଶ୍ୟ କିମାକାର ହୋଇ କଚ୍ଛପ ମୁହଁ ଲୁଚିଇଲା ପରି ପ୍ରସୁପ୍ତଭାବରେ ଲୁଚି ରହି ସ୍ୱକୀୟ ଅସ୍ତିତ୍ୱ ଗୋପନ କରେ । ମୁଁ ସାକ୍ଷୀ ବା ଜ୍ଞାତା ସ୍ୱରୂପରେ କୂଟସ୍ଥ ଆତ୍ମପଦବୀ ଧାରଣ କରି ତାହାର ମର୍ମଭେଦ କରିଅଛି; ଅତଏବ ମୁଁ ଅବିଦ୍ୟା ନୁହେ । ଏହିରୂପେ 'ଆତ୍ମା' ଅହଂମାତ୍ର ନିଜବୋଧାକାର ବିଶିଷ୍ଟ ସର୍ବସାକ୍ଷୀ ଓ ସର୍ବଜ୍ଞାତା, ଅଥଚ ସର୍ବ-ଗ୍ରହଣକାରୀ ଓ ସର୍ବତ୍ୟାଗୀ ଅସଙ୍ଗ ଚୈତନ୍ୟ ରୂପରେ ବିରାଜମାନ ଥାଇ ସର୍ବଜଗତ ଓ ପ୍ରାଣୀବର୍ଗକୁ ଆତ୍ମମୟ କରିଅଛନ୍ତି ।

## ୪୦ଶ ପାଠ—ପିଣ୍ଡବ୍ରହ୍ମାଣ୍ଡାତ୍ମକ କାଳ୍ପନିକ ଚିହ୍ନ ସହିତ ବିଶୁଦ୍ଧ ଆତ୍ମାନୁଭୂତ

ଅବିଦ୍ୟାକୃତ ସଂସାର ଓ ଦେହାଦି ବର୍ଣ୍ଣନା ଛଳରେ ଆତ୍ମଦେବ ଏହି ଭୌତିକ ଦେହ ଓ ସଂସାରରେ ଅର୍ଥାତ୍ ଏହିସବୁ ସ୍ଥୂଳ ଓ ଜଡ଼ମୟ ଦୃଶ୍ୟରେ ସଂଯୁକ୍ତ ଅଛନ୍ତି ବୋଲି ଯାହା ଉକ୍ତ ହେଲା ତାହା କଳ୍ପନାପୂର୍ଣ୍ଣ ସତ୍ୟ, ସେହି ଚିଦାନନ୍ଦପୂର୍ଣ୍ଣ ଆତ୍ମା ନିକଟରେ ଜଡ଼ ବା ସ୍ଥୂଳାଦିର ଚିହ୍ନ କିମ୍ବା ସମ୍ପର୍କ କିଛି ନାହିଁ । ଏହି ପ୍ରାଣୀବର୍ଗ ଓ ଜାଗତିକ ବସ୍ତ୍ୱାଦି ସମନ୍ୱିତ ବିଶ୍ୱବ୍ରହ୍ମାଣ୍ଡମୟ ଜଗଦାକାର ବିରାଟ ସାମଗ୍ରୀ (ଆକାଶରେ ମୃଗତୃଷ୍ଣାମୟ ନଗରାଦି ଚିହ୍ନିତ ଓ ଅବସ୍ଥିତ ଥିଲାପରି) ଆତ୍ମା ନିକଟରେ ବୈଜ୍ଞାନିକ ବା ଜ୍ଞାନଜାତୀୟ ଚିହ୍ନ-ବିଶେଷାକାରରେ ଆଭାସିତ ହେଉଅଛି । ଆଜି କାଲି ଯୁଗର ଜଡ଼ବାଦସମ୍ମତ ବିଜ୍ଞାନ ବା ବୈଜ୍ଞାନିକ ଶବ୍ଦର ଯେପରି ଅର୍ଥ, ଏଠାରେ ଲେଖା ଯାଇଥିବା ବୈଜ୍ଞାନିକ ଚିହ୍ନର ଅର୍ଥ ସେପରି ନୁହେ । ମନ ଓ ଚିତ୍ତ ପ୍ରଭୃତି ଯେପରି ଜ୍ଞାନଜାତୀୟ ବସ୍ତୁ ସେହିଭଳି ଜ୍ଞାନ-ସଂଜ୍ଞକ ବସ୍ତୁ ଏଠାରେ ବୈଜ୍ଞାନିକ ବା ବିଜ୍ଞାନ ସମ୍ବନ୍ଧୀୟ କିମ୍ବା ଜ୍ଞାନଜାତୀୟ ଚିହ୍ନ ନାମରେ ଅଭିହିତ ହେଉଅଛି । ପୂର୍ବେ ଅନ୍ତଃକରଣ ସମ୍ବନ୍ଧରେ ଏକ ରକମ ପରିଚୟ ଦିଆଯାଇଅଛି; ସେହି ଅନ୍ତଃକରଣରୂପ ଉପାଧିରେ ଭୂଷିତ ହୋଇଥିବାରୁ ନିରୁପାଧିକ ଆତ୍ମା ଜୀବାତ୍ମା ନାମରେ ବ୍ୟବହୃତ ହେଉଅଛନ୍ତି । ମହଦାକାଶ ଯେପରି ଅଂଶତଃ ଘଟସଂବୃତ୍ତ ହୋଇ ବ୍ୟବହାରତଃ ଘଟାକାଶ ନାମ ଧାରଣ କରିଅଛି, ଆତ୍ମଦେବ ସେହିପରି ଅଂଶତଃ ଅନ୍ତଃକରଣରୂପ ଘଟାବଚ୍ଛିନ୍ନ ହୋଇ ଅର୍ଥାତ୍ ଅନ୍ତଃକରଣ ଧର୍ମରେ ତଦ୍ଧର୍ମୀ ହୋଇ ଜୀବନାମ ଧାରଣ କରିଅଛନ୍ତି । ଏହି ଅନ୍ତଃକରଣ ସର୍ବଦା ଜୀବାତ୍ମାର ଅବ୍ୟବହିତ ନିକଟବର୍ତ୍ତୀ ହୋଇ ରହିଅଛି । ଏହି ଅନ୍ତଃକରଣକୁ ଆତ୍ମା ସର୍ବଦା ଗୃହିଁ ରହିଅଛନ୍ତି । ଏ ଗୃହାଣୀର ଲବେମାତ୍ର ଅନ୍ୟଥା ବା ବିରାମ ଘଟିବାର ନୁହେ । ଅନ୍ତଃକରଣର ୧-ମୂର୍ଚ୍ଛା, ୨-ପ୍ରସୁପ୍ତି, ୩-ଆତ୍ମସମାଧିଯୁକ୍ତାବସ୍ଥାରେ ଅନ୍ତଃକରଣ ଘଟ ଶରାବାଦସ୍ଥିତ ଜଳପରି ନିଶ୍ଚଳ, ନିଷ୍କମ୍ପ ବା ସ୍ଥିର ଥାଏ । ସେତେବେଳେ ପ୍ରଥମ ବା ଦ୍ୱିତୀୟ ଅର୍ଥାତ୍ ମୂର୍ଚ୍ଛା ବା ସୁଷୁପ୍ତି ଅବସ୍ଥାରେ ଆତ୍ମା ଜ୍ଞାନବିରହିତ ଶାନ୍ତି ଉପଭୋଗ କରନ୍ତି; ଆଉ ତୃତୀୟ ଅର୍ଥାତ୍ ଆତ୍ମ-ସମାଧି ବା ଆତ୍ମଲୟ ଯୋଗାବସ୍ଥାରେ ଆତ୍ମଦେବ ଆତ୍ମଶାନ୍ତି ବା ଆତ୍ମବିଶ୍ରାନ୍ତି ଉପଲବ୍ଧି କରନ୍ତି । ଏପରି ଅନ୍ତଃକରଣର ଶୃଙ୍ଖଳା ଦଶାର କେବଳ ଆତ୍ମାର ସଂସାରାଭାବାପନ୍ନ ଅବସ୍ଥା । ବିଶିଷ୍ଟାର୍ଥ ଏହି ଯେ ଅନ୍ତଃକରଣର ବିକ୍ଷେପ ବା ଶୃଙ୍ଖଳା ଅବସ୍ଥାର ନାମ ଆତ୍ମାର ସଂସାର । ମନେ ରଖିବାକୁ ହୋଇଥାଉ, ଏହି ଉଲ୍ଲିଖିତ ସଂସାରର ନାମ ବୈଜ୍ଞାନିକ ଚିହ୍ନ'ବିଶେଷ ଅଟେ । ଅର୍ଥାତ୍ ଏହା ଜ୍ଞାନାକାର ଚିହ୍ନାତ୍ମକ, ଆଉ ସ୍ଥୂଳ ଜଡ଼ାତ୍ମକ ନୁହେ । ଏହି ଅନ୍ତଃକରଣ ଶୃଙ୍ଖଳାର ସ୍ୱରୂପ କିପରି ? ମନ, ଜ୍ଞାନ ଓ କର୍ମେନ୍ଦ୍ରିୟ ଏବଂ ପ୍ରାଣ ସହିତ ଯୁକ୍ତ ହୋଇ

ସ୍ଥୂଳ ଦେହ ଆଉ ଭୌତିକ ବା ଜାଗତିକ ବସ୍ତୁ ସମନ୍ୱିତ ଜଗତ ସମ୍ବନ୍ଧ ଜାତ ଲୀଳା-କ୍ଷେତ୍ରରେ ଯେଉଁ କର୍ମ ଓ ଶବ୍ଦସ୍ପର୍ଶାଦି ଭୋଗର ସୃଷ୍ଟି କରେ, ତତ୍‌କାଳରେ ମନର ଓ ଇନ୍ଦ୍ରିୟାଦିର ଏବଂ ଦୈହିକ ଅଙ୍ଗପ୍ରତ୍ୟଙ୍ଗାଦିର ସେହି ଚଳନବଶରୁ ଉକ୍ତ କର୍ମ ଓ ଭୋଗାଦିଦ୍ୱାରା ଅନ୍ତଃକରଣ ସଂବୃଳିତ ହୋଇ ଯେଉଁ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଅଭିମାନଯୁକ୍ତ ହୁଏ ତାହାର ଅନ୍ତଃକରଣର ଶୃଙ୍ଖଳା ବା ବିକ୍ଷେପ, ଆଉ ଏହି ଶୃଙ୍ଖଳାର ନାମ ଜୀବାତ୍ମାର ସଂସାର ।

ଏଥିରୁ ଦେଖାଯାଉଅଛି, କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱ ଏକ ପ୍ରକାର ଜ୍ଞାନାତ୍ମକ-ଚିତ୍ର-ବିଶିଷ୍ଟ ବସ୍ତୁ । ଏହା ଅନ୍ତଃକରଣକୁ ସର୍ବଦା ଚିହ୍ନିତ ଓ ନାନାପ୍ରକାର ଭାବମୟ ରଙ୍ଗରେ ରଞ୍ଜିତ କରି ସୁଶୋଭିତ କରି ରଖିଅଛି । ଅନୁଭୂତି ଯେଉଁ ପଦାର୍ଥ ତାହା କାଠପଥର ପରି ସ୍ଥୂଳଜଡ଼ାତ୍ମକ ବସ୍ତୁ ନୁହେ । ତାହା ଉପରୋକ୍ତ ସଂଜ୍ଞକ ଜ୍ଞାନାକାର ଚିତ୍ରରୂପ ବସ୍ତୁ । କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱ ଅନ୍ତଃକରଣରେ ଅନୁଭୂତି ଆକାରରେ ଦେଦୀପ୍ୟମାନ ହୁଏ । ତେବେ ଦେଖିବାକୁ ହେଉ, ଏହି ପରିଦୃଶ୍ୟମାନ ବିଶାଳ ବିଶ୍ୱ ସଂସାର ଓ ଦେହ, ଏ ଉଭୟେ ପରସ୍ପର ସମ୍ବନ୍ଧଯୁକ୍ତ ହୋଇ ଶବ୍ଦସ୍ପର୍ଶାଦି ବୈଷୟିକ ଅନୁଭୂତି ବା ଜ୍ଞାନାକାରରେ ପ୍ରକାଶିତ ହେଉଅଛନ୍ତି । ସଂସାର ଓ ଦେହ ଉଭୟେ ସ୍ଥୂଳ ପଞ୍ଚଭୂତାତ୍ମକ । ଏହି ସ୍ଥୂଳ ପଞ୍ଚାଙ୍ଗ ସ୍ୱତଃ ପ୍ରକାଶିତ ହୋଇ ନ ପାରନ୍ତି; କିମ୍ବା ଏମାନେ ନିଜେ ପାଟିକରି ଜଣାଇ ହେଉନାହାନ୍ତି ଯେ ଏମାନେ ପଞ୍ଚଭୂତାତ୍ମକ ବା ଏପରି କି ସେପରି ପ୍ରକାରର ବୋଲି ! ମନହିଁ ଏମାନଙ୍କର ପ୍ରଥମ ବିକାଶକର୍ତ୍ତା । ସେହି ବିକାଶଦ୍ୱାରା ପଞ୍ଚଭୂତାଦି ବିକଶିତ ବା ପ୍ରକାଶିତ ହେଲେ ବୋଲି ସେମାନେ ନିଜେ ନିଜେ ଜାଣୁନାହାନ୍ତି । ମନ ହିଁ ଶବ୍ଦଦ୍ୱାରା ଶବ୍ଦଗୁଣବିଶିଷ୍ଟ ଆକାଶକୁ ଆକାଶରୂପେ, ସ୍ପର୍ଶଗୁଣସମ୍ପନ୍ନ ବାୟୁକୁ ସ୍ପର୍ଶଦ୍ୱାରା ବାୟୁରୂପେ, ରୂପଗୁଣବିଶିଷ୍ଟ ତେଜ ବା ଆଲୋକାଦିକୁ ରୂପାକାରିତ ବୃତ୍ତିଦ୍ୱାରା ରୂପ ବୋଲି, ରସଗୁଣମୟ ଜଳୀୟାଦି ବସ୍ତୁକୁ ସ୍ୱାଦୁଗୁଣଦ୍ୱାରା ଜଳାଦିରୂପେ ଏବଂ ଗନ୍ଧବତୀ ପୃଥିବ୍ୟାଦିକୁ ଗନ୍ଧଗୁଣଦ୍ୱାରା ପୃଥିବ୍ୟାଦିରୂପେ ଅବଧାରଣ କରୁଅଛି; ଏବଂ ସେମାନଙ୍କର ଯଥା ଯଥା ଆକାରମୟ ଚିତ୍ରକୁ ଶବ୍ଦସ୍ପର୍ଶରୂପରସଗନ୍ଧାଦି ଅନୁଭବାତ୍ମକ ବା ଉପ-ଲବ୍ଧାତ୍ମକ ବୈଜ୍ଞାନିକ ଚିତ୍ରାକାରରେ ଆପଣାଠାରେ ଅଙ୍କନ କରି ସ୍ୱୟଂ ତଦ୍ରୂପ ଚିତ୍ରବିଶିଷ୍ଟ ମନୋମୟ ଚିତ୍ରପଟରୂପେ ସୁରଞ୍ଜିତ ହେଉଅଛି । ସେହି ମନୋମୟ ଜ୍ଞାନାକାର ଚିତ୍ରପଟରେ ଅନ୍ତଃକରଣ ତନ୍ମୟ ହେଉଅଛି । ଏହିରୂପେ ଅନ୍ତଃକରଣ ଶବ୍ଦସ୍ପର୍ଶାଦିର ଅନୁଭୂତି ସହକାରେ ସେହି ସେହି ଅନୁଭୂତିକୁ ଭାବାତ୍ମକ ଜ୍ଞାନାକାରାକାରିତ ଚିତ୍ରରୂପେ ନିଜ ଅଙ୍ଗରେ ଧାରଣ କରିଅଛି; ସେହି ଚିତ୍ର ସ୍ୱୟଂ ସୂକ୍ଷ୍ମାକାର ବା ଜ୍ଞାନାକାର ବିଶିଷ୍ଟ ଅଟେ; ଅଥଚ ସ୍ଥୂଳ ପିଣ୍ଡ-ବ୍ରହ୍ମାଣ୍ଡ ସମ୍ବନ୍ଧୀୟ ସ୍ଥୂଳାତ୍ମକ ବୋଲି ପ୍ରତୀତ ହେଉଅଛି; ଯେହେତୁ ଏହି ଚିତ୍ର ପ୍ରତିବିମ୍ବ ପରି ଅନ୍ତଃ-କରଣରେ ଉଦିତ ହେଉଅଛି । ସୁନିର୍ମଳ ଓ ସ୍ୱଚ୍ଛ ଦର୍ପଣରେ ଅସ୍ୱଚ୍ଛ ଓ ଅନିର୍ମଳ ହସ୍ତୀଟିର ଆକାର ପ୍ରତିବିମ୍ବିତ ହେଲେ ଦର୍ପଣଟିକୁ ଦେଖ, ତାହା ଯେପରି ସ୍ୱକୀୟ ସ୍ୱଚ୍ଛତା

ଓ ନିର୍ମଳତାଦି ସ୍ୱାଭାବିକ ଗୁଣକୁ ଲୁଗ୍ରଇ ରଖି ଠିକ୍ ଅସ୍ୱଚ୍ଛ ଓ ଅନିର୍ମଳ ସ୍ଥୂଳକାୟ ହସ୍ତୀରୂପରେ ପରିଣତ ହୋଇଅଛି, ଅଥବା ତଦ୍ରୂପ ହସ୍ତୀରୂପକୁ ଧାରଣ କରି ତନ୍ମୟ ହୋଇ ହସ୍ତୀର ଆକାରବିଶିଷ୍ଟ ହୋଇ ଯାଇଅଛି । ଆହୁରି ଟିକିଏ ଦୃଢ଼ଭାବେ ମନେକରି ନିଆଯାଉ, ଆମ୍ଭେ ଯେପରି ନିଜେ କିଛି ଦେଖିବା ପ୍ରଣାଳୀ ଜାଣି ନ ଥାଉଁ, ବା ଆମ୍ଭଙ୍କୁ କୌଣସି ପଦାର୍ଥ ଦେଖାଯାଏ ନାହିଁ ସୁତରାଂ ନିଜେ କିଛି ଦେଖିବାକୁ ଅକ୍ଷମ, ତେବେ (୧) ଦ୍ରଷ୍ଟବ୍ୟ ପଦାର୍ଥର ଆକାର ଦେଖି ଜାଣିବା ସକାଶେ (୨) ଆମ୍ଭେ ଦର୍ପଣ ଖଣ୍ଡିଏ ସମ୍ମୁଖରେ ଧରି ବସିଥାଉଁ । ତହିଁରେ ଆମ୍ଭର ପଛପଟର ଯାହା କିଛି ପଦାର୍ଥ ବା ରୂପାତ୍ମକ ବସ୍ତୁର ପ୍ରତିବିମ୍ବ ପଡ଼ିବ, ସେହି ପ୍ରତିବିମ୍ବ ଦର୍ଶନ ହିଁ ଆମ୍ଭର ତଦ୍ରୂପ ପ୍ରତିବିମ୍ବିତ ବସ୍ତୁର ଦର୍ଶନ । ପୁଣି ପ୍ରତିବିମ୍ବ ସହିତ ପ୍ରତିବିମ୍ବିତ ବସ୍ତୁର ଆକାରଗତ ଭେଦ ସହଜରେ ଲକ୍ଷିତ ହୁଏ ନାହିଁ । ସୁତରାଂ ଆମ୍ଭର ହସ୍ତୀଦର୍ଶନ ହସ୍ତୀର ପ୍ରତିବିମ୍ବ ଦେଖିବାଦ୍ୱାରା ଦର୍ପଣ ସାହାଯ୍ୟରେ ସିଦ୍ଧ ହୋଇଗଲା । ଏହା ବୋଲି ଦର୍ପଣଗତ ହସ୍ତୀ-ରୂପାତ୍ମକ ପ୍ରତିବିମ୍ବକୁ ଦେଖି ସ୍ଥୂଳାକାର ହସ୍ତୀ ବୋଲି ଆମ୍ଭେ ମଣି ନେଲେ ସୁଦ୍ଧା ପ୍ରତି-ବିମ୍ବାକାର ହସ୍ତୀ ପ୍ରକୃତ ହସ୍ତୀପରି ସ୍ଥୂଳ ବସ୍ତୁ ନୁହେ ବା ଦର୍ପଣ ନୁହେ; ଅଥଚ ଦର୍ପଣ ତାହାର ନିଜ ଧର୍ମାନୁସାରେ ପ୍ରତିବିମ୍ବକୁ ଧାରଣ କରିବା ଦ୍ୱାରା ସେହି ପ୍ରତିବିମ୍ବାକାର ପ୍ରାପ୍ତ ହୋଇଅଛି; ଆଉ ନିଜ ସ୍ୱଚ୍ଛ ନିର୍ମଳ ଭାବକୁ ଲୁଗ୍ରଇ ଦେଇଅଛି ବୋଲି ଜ୍ଞାନ ହେଉଅଛି । ଯଥାର୍ଥତଃ ଦେଖିବାକୁ ଗଲେ ଅନ୍ତଃକରଣଭିନ୍ନ ଆତ୍ମାର ସଂସାରଦର୍ଶନ ନାହିଁ । ଆତ୍ମଦେବ ଅନ୍ତଃକରଣରୂପ ଦର୍ପଣରେ ସ୍ଥୂଳ ବିଶ୍ୱବ୍ରହ୍ମାଣ୍ଡ-ପିଣ୍ଡାତ୍ମକ ଶବ୍ଦସ୍ପର୍ଶରୂପାଦି ଅନୁଭୂତିର ଆକାରମୟ ଜଗଦାକାର ଚିତ୍ରକୁ ପ୍ରତିବିମ୍ବ ସ୍ୱରୂପେ ଦର୍ଶନ କରୁଅଛନ୍ତି । ସୁତରାଂ ଏତଦ୍ରୂପ ପରିଦୃଶ୍ୟମାନ ଅନ୍ତଃକରଣ ପ୍ରତିବିମ୍ବିତ ଜଗଦାକାର-ଚିତ୍ର ସ୍ଥୂଳବସ୍ତୁ ନୁହେ । ପୂର୍ବ ନିର୍ଦ୍ଦିଷ୍ଟମତେ ଏହା ଜ୍ଞାନାକାର ବିଶେଷମାତ୍ର । ଯେତେବେଳେ ଜଡ଼ାକାର ଏଇ ବୋଲି ପ୍ରତୀତି ଜାତ ହେଉଅଛି, ସେତେବେଳେ ଅନ୍ତଃକରଣ ତଦ୍ରୂପ ଜଡ଼ାକାରର ପ୍ରତିବିମ୍ବକୁ ମାତ୍ର ଧାରଣ କରି ନିଜ ରୂପ ଲୁଗ୍ରଇ ଦେଇ ପୁଣି ସେହି ପ୍ରତିବିମ୍ବାକାରରେ ସ୍ୱୟଂ ତଦାକାରାକାରିତ ହୋଇଗଲାପରି ଜଣାଯାଉଅଛି । ଏହିରୂପେ ଦେଖିବାକୁ ଗଲେ ଅନ୍ତଃକରଣ ସ୍ୱୟଂ ସ୍ୱଚ୍ଛ, ମାତ୍ର ମାନସିକ ଓ ଇନ୍ଦ୍ରିୟ, ପ୍ରାଣ, ଶରୀର ବା ସଂସାର ସମ୍ବନ୍ଧୀୟ ଶବ୍ଦସ୍ପର୍ଶାଦି ବିଷୟାନୁଭୂତିରୂପ ଜ୍ଞାନମୟ ଚିତ୍ରକୁ ଧାରଣ କରିବାରୁ ସେହି ଚିତ୍ର ଅନ୍ତଃକରଣକୁ ତଦ୍ରୂପ ଚିତ୍ରମୟ-ବସ୍ତୁରୂପେ ଦେଖାଉଅଛି । ଆତ୍ମା ଅନ୍ତଃକରଣର ଦ୍ରଷ୍ଟାରୂପେ ନିତ୍ୟ ପ୍ରସିଦ୍ଧ ହୋଇ ରହିଅଛନ୍ତି । ଏହି ଅନ୍ତଃକରଣ ଦର୍ପଣପରି ସ୍ୱତଃ ସ୍ୱଚ୍ଛ, ଆଉ ପ୍ରତିବିମ୍ବଯୁକ୍ତ କରି ଦେଖିଲାବେଳକୁ ପ୍ରତିବିମ୍ବଟି ଯେପରି ତାହା ସେହିପରି ବୋଲି ଜଣାଯାଉଅଛି । ଏହିରୂପେ ଅନ୍ତଃକରଣ ସ୍ୱତଃ ସ୍ୱଚ୍ଛ ଓ ତାକୁ ଜଗଦାକାର ଚିତ୍ରଯୁକ୍ତ କରି ଦେଖିଲେ ତାହା ଜଗଦାକାର-ବିଶିଷ୍ଟ ସ୍ଥୂଳାକାରମୟ ବୋଲି ଆତ୍ମା ମଣୁଅଛନ୍ତି । ଏଥିରୁ ଏହା ସ୍ପଷ୍ଟ ଉପଲବ୍ଧ ହେଉଅଛି ଯେ ଅନ୍ତଃକରଣ ସୂକ୍ଷ୍ମ ଏବଂ ସ୍ଥୂଳ ଏତଦୁଭୟାତ୍ମକ ଆକାର-ବିଶିଷ୍ଟ । ସୂକ୍ଷ୍ମତା ଏହାର ନିଜାକାର ଓ ସ୍ଥୂଳତା

ଏହାର କାଳ୍ପନିକାକାର । ଏହି ସ୍ଥୂଳ ଜଡ଼ାତ୍ମକ ପ୍ରପଞ୍ଚମୟ ଜଗତ ହୋଇଛି ଏହି ଆଖି ଆଗରେ ସ୍ୱତନ୍ତ୍ରରୂପେ ଅବସ୍ଥିତ ଅଛି ବୋଲି ଯେଉଁ ବ୍ୟାବହାରିକ ନିର୍ଦ୍ଧାରଣ ତାହା ଭ୍ରମାତ୍ମକ ମୂଢ଼ଦୃଷ୍ଟିର କାର୍ଯ୍ୟ । ଦାର୍ଶନିକ ସତ୍ୟଦୃଷ୍ଟିର କଥା ଉପରେ ବର୍ଣ୍ଣନା କରାଯାଇ, ବାହ୍ୟ ପ୍ରପଞ୍ଚକୁ ଅନ୍ତଃକରଣଗତ ବୈଷୟିକ ଜ୍ଞାନାକାର ସହିତ ପ୍ରତିବିମ୍ବରୂପେ ଉପଲବ୍ଧି କରିବାର ପ୍ରଣାଳୀ ନିର୍ଦ୍ଦେଶ କରାଯାଇଅଛି ।

ଜଡ଼ ଜଗତ ହୋଇଛି ଏଇ ଅଛି ବୋଲି କହିବାର ଅର୍ଥ—ଜଡ଼ ଜଗତ ତିମିପ୍ର ଆକାର-ବିଶିଷ୍ଟ ହୋଇ କରି ଅଛି, + ସେହି ଆକାର ଚକ୍ଷୁରିନ୍ଦ୍ରିୟ ସାହାଯ୍ୟରେ ମନୋମୟ ପଟରେ ଅଙ୍କିତ ହେଉଅଛି; + ମନ ସେହି ଅଙ୍କିତ ଚିତ୍ରକୁ ମନୋମୟ ଅର୍ଥାତ୍ ଜ୍ଞାନାକାରିତ ଚିତ୍ରରୂପେ ଧାରଣ କରି ଅନ୍ତଃକରଣକୁ ତଦ୍ରୂପ ଜ୍ଞାନାକାରିତ ଚିତ୍ରମୟ କରାଇଦେଉଅଛି; +ଅନ୍ତଃକରଣ ଏହିରୂପେ ଜଡ଼ ଜଗନ୍ମୟ ଜ୍ଞାନାକାରାକାରିତ ଚିତ୍ରରୂପେ ପରିଣତ ହେଲାପରେ ପ୍ରତିସ୍ଫୁରମାନ ହୋଇ ଆତ୍ମାକୁ ସେହି ମୋହିନୀ ମୂର୍ତ୍ତି ପ୍ରଦର୍ଶନ କରାଇ ତହିଁରେ ସ୍ୱୟଂ ମୁକ୍ତ ଆତ୍ମାକୁ ସୁଖଦୁଃଖ ବା ମୋହମୟ ଅଭିମାନାଦି ସହିତ ନିବନ୍ଧ କରୁଅଛି । ଏହାହିଁ ଆତ୍ମଦେବଙ୍କ ପକ୍ଷରେ ଜଡ଼ ଜଗତ ହୋଇଛି ଏଇ ଅଛି ବୋଲି ନିର୍ଦ୍ଧାରିତ ହେବାର କୁହାଯିବା କଥାର ଅର୍ଥ । ଆତ୍ମା ଅନ୍ତଃକରଣର ଦ୍ରଷ୍ଟା କୂଟସ୍ଥ ସାକ୍ଷୀ ପୁରୁଷ ନିଜାତ୍ମବୋଧ ମୂର୍ତ୍ତି ଅଟନ୍ତି । ସେ ଅନ୍ତଃକରଣ ନୁହନ୍ତି, ମାତ୍ର ଅନ୍ତଃକରଣକୁ ଗ୍ରହିବାମାତ୍ର ସେ ଅବିଦ୍ୟା ସଂସ୍କାର ଓ ବାସନାଦ୍ୱାରା ପରିଗ୍ରହିତ ହୋଇ ଆପଣାକୁ ବିସ୍ମରଣ କରି ସ୍ୱକୀୟ ଆତ୍ମପ୍ରେମଦ୍ୱାରା ସେହି ଅନ୍ତଃକରଣରେ ତଦାକାରାକାରିତ ହେଲା-ପ୍ରାୟ ନିଜକୁ ଦେଖିଅନ୍ତି ଓ ଅନ୍ତଃକରଣ ଦୃଶ୍ୟରୂପେ ତାଙ୍କଠାରୁ ପୃଥକ୍ ଏ ଜ୍ଞାନ ଆଉ ରହୁନାହିଁ । ଅନ୍ତଃକରଣ ସହିତ ଅଭେଦ କଳ୍ପନାକୁ ଆତ୍ମା ସତ୍ୟ ବୋଲି ମଣି ନେଉ-ଅଛନ୍ତି । ଏହିରୂପେ ଆତ୍ମା ଅନ୍ତଃକରଣଧର୍ମରେ ତଦ୍ଧର୍ମୀ ହୋଇ ସଂସାରପଦବାଚ୍ୟ ହେଉଅଛନ୍ତି । ଅନ୍ତଃକରଣ ସ୍ୱଚ୍ଛ ଦର୍ପଣପ୍ରାୟ ବସ୍ତୁ । ତାହା ସ୍ଥୂଳ ଜଡ଼ାକାର ନୁହେଁ । ତଥାପି ତହିଁରେ ମନ ବିଶ୍ୱପ୍ରପଞ୍ଚାତ୍ମକ ସ୍ଥୂଳ ଜଡ଼ମୟ ଚିତ୍ରକୁ ଧାରଣ କରି ଉଦିତ ହୋଇ ପଡ଼ିବାରୁ ଅନ୍ତଃକରଣ ତଦ୍ରୂପ ଚିତ୍ରମୟ ହୋଇଯାଉଅଛି । ମନ ମଧ୍ୟ ନିରାକାର, ତାହା ସ୍ଥୂଳ ଜଡ଼ାକୃତିବିଶିଷ୍ଟ ନୁହେ । ଇନ୍ଦ୍ରିୟ ଓ ପ୍ରାଣର ସମ୍ବନ୍ଧରୁ ତହିଁରେ ଜଡ଼ାକାର ଚିତ୍ର ମନୋମୟ ମୂର୍ତ୍ତି ଧାରଣ କରି ମନକୁ ତନ୍ମୟ କରୁଅଛି ! ଇନ୍ଦ୍ରିୟ ଏବଂ ପ୍ରାଣ ଜଡ଼ ଦେହସ୍ଥ, ଅଥଚ ଦେହ ନୁହନ୍ତି, ଦେହ ଏବଂ ଜଗତ ଉଭୟ ଜଡ଼ାକାର । ତିନି ଶେଣାରେ ପାଣି ଉଠିଲା ପରି ଏତଦ୍ରୂପ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ ଜଡ଼ମୟ-ଚିତ୍ର ଇନ୍ଦ୍ରିୟ ଦ୍ୱାରରେ ଆକର୍ଷିତ ହୋଇ ମନୋମୟ ଜ୍ଞାନାକାର ମୂର୍ତ୍ତି ଧାରଣ ପୂର୍ବକ ଅନ୍ତଃକରଣରେ ଉଦିତ ହୋଇ ଓ ଅନ୍ତଃକରଣକୁ ତଦାକାରରେ ପରିଣତ କରାଇ ଏତଦ୍‌କ୍ରମେ ଆତ୍ମାକୁ ମୋହିତ କରିବାରେ ଆତ୍ମା ମୂଢ଼ଭାବେ ନିର୍ଦ୍ଦେଶ କରୁଅଛନ୍ତି – ହୋଇଛି ଏଇ ଜଡ଼ ଜଗତ ଅଛି । ଆତ୍ମା କେବଳ ଆତ୍ମଜ୍ଞାନସମ୍ପନ୍ନ ହୋଇ ଅର୍ଥାତ୍ ଆତ୍ମସ୍ଥ ରହି ଅନ୍ତଃକରଣକୁ

ନ ଦେଖିଲେ ଅନ୍ତଃକରଣ ଓ ଇନ୍ଦ୍ରିୟବର୍ଗ ପ୍ରାଣ, ଦେହ ଓ ସଂସାରାଦି କିଛି ପ୍ରକାଶିତ ଅଛି ବୋଲି କହିବାର କଥା ନାହିଁ । ଅନ୍ତଃକରଣ ଆତ୍ମଜ୍ଞାନାକାରିତତ୍ତ୍ୱକୁ ପ୍ରାପ୍ତ ହୋଇ ଚଞ୍ଚଳ ମନକୁ ଗ୍ରହଣ ନ କଲେ ମନ, ଇନ୍ଦ୍ରିୟ, ପ୍ରାଣ, ଦେହ ଓ ସଂସାରାଦି ଅଛି ବୋଲି କୁହାଯାଇ ନ ପାରେ । ମନ ଜ୍ଞାନାକାରିତ ଓ ଅନ୍ତଃକରଣ ସହିତ ଯୁକ୍ତ ହୋଇ ଇନ୍ଦ୍ରିୟ ଓ ପ୍ରାଣର ସଙ୍ଗ ପରିତ୍ୟାଗ କଲେ ଇନ୍ଦ୍ରିୟ ଓ ପ୍ରାଣ କି ଦେହ ବା ଜଗତ କିଛି ନାହିଁ । ସୂକ୍ଷ୍ମେନ୍ଦ୍ରିୟ ଓ ପ୍ରାଣ ମନର ସଙ୍ଗ ଓ ଦେହସ୍ଥ ଇନ୍ଦ୍ରିୟ ଗୋଳକାଦିର ସଙ୍ଗ ତ୍ୟାଗ କରି ପ୍ରସୁପ୍ତଭାବ ଅବଲମ୍ବନ କଲେ ମଧ୍ୟ ଦେହ ବା ଜଗଦାଦିର ଅସ୍ତିତ୍ୱ ନିର୍ଦ୍ଦେଶର ସ୍ଥାନ କେଉଁଠାରେ ? ଏହିରୂପେ ଆତ୍ମାହିଁ ସର୍ବମୂଳ । ସେହି ଦେବ ଆତ୍ମଜ୍ଞାନଯୋଗାବଲମ୍ବନ-ପୂର୍ବକ ଆତ୍ମସ୍ଥ ହେଲେ ସଂସାରାଦି ଜଡ଼ ପ୍ରପଞ୍ଚର ଅସ୍ତିତ୍ୱର ସତ୍ୟତା ଅନିଶ୍ଚିତ, ମାତ୍ର ତଦ୍ରୂପ ଜଡ଼ ପ୍ରପଞ୍ଚ ଅଛି ବୋଲି କଳ୍ପନା କରି ସେହି କଳ୍ପନାକୁ ମାୟିକ କ୍ରୀଡ଼ାନୁବୋଧରେ ସତ୍ୟ ବୋଲି କହିଲେ ଦେହ ସଂସାର ଭ୍ରାନ୍ତିଭାବରେ ମୃଗତୃଷ୍ଣାପରି ଅଛି ବୋଲି କହିବା ଘଟିପାରେ । ପିଣ୍ଡବ୍ରହ୍ମାଣ୍ଡ ଶରୀର ଆକାର ପ୍ରତିବିମ୍ବରୂପେ ମନରେ ମନ ତଦ୍ରୂପ ପ୍ରତିବିମ୍ବ ସହିତ ଅନ୍ତଃକରଣରେ ଓ ଅନ୍ତଃକରଣ ଏତଦ୍ରୂପ ପ୍ରତିବିମ୍ବମୟ ମୂର୍ତ୍ତି ଧାରଣ କରି ଆତ୍ମାରେ ( ଅର୍ଥାତ୍ ଆକାଶରେ ମୃଗତୃଷ୍ଣା ଉଦିତ ହେଲପରି ) ପରିଜ୍ଞାତ ହେଉଅଛି । ମୃଗତୃଷ୍ଣା ବା ପ୍ରତିବିମ୍ବର ସତ୍ତ୍ୱା ବା ପଦାର୍ଥବସ୍ତୁ ନ ଥିବାରୁ ଏହି ଜଡ଼ ଜଗଦାଦି ପ୍ରତି-ବିମ୍ବାକାରରେ ଆତ୍ମସତ୍ତ୍ୱା ଦ୍ୱାରା ପ୍ରକାଶିତ ହେଉଥିବାରେ ଜଡ଼ ବା ସ୍ଥୂଳାଦିର ଅସ୍ତିତ୍ୱ କଳ୍ପନା କାଳ୍ପନିକ ସତ୍ୟ ଆଉ ଦାର୍ଶନିକ ସତ୍ୟଜ୍ଞାନ ଦୃଷ୍ଟିରେ ତଦ୍‌ବିପରୀତ ଅଟେ । ଏସବୁ ପ୍ରଣିଧାନ ପୂର୍ବକ ଆଲୋଚନା କରି ଦେଖାଗଲା ଆତ୍ମା ବିଶୁଦ୍ଧ ଜ୍ଞାନାନନ୍ଦ ଏବଂ ସ୍ୱୟଂ ପ୍ରକାଶବସ୍ତୁ ପ୍ରାକୃତିକ ପ୍ରକ୍ରିୟା କୌଶଳ ବଳ ଦ୍ୱାରା ଏହି ପିଣ୍ଡବ୍ରହ୍ମାଣ୍ଡାତ୍ମକ ଶରୀର ସଂଘଟିତ ହୋଇ ଜ୍ଞାନାଭାଷାକାରରେ ଆତ୍ମା ସଂଦୃଷ୍ଟ ହେଉଅଛି ଏବଂ ଆତ୍ମାକୁ ବହିଦୃଷ୍ଟି ସହକାରେ ଆପଣାଠାରେ ମୋହିତ କରି ରଖିଅଛି । ଏହାଦ୍ୱାରା ଆତ୍ମାର ଆତ୍ମଜ୍ଞାନ ବିସ୍ମୃତପ୍ରାୟ ହେବାରୁ ଆତ୍ମା କେବଳ ସଂସାରୀ ବୋଲି ଆପଣାକୁ କଳ୍ପନା କରି ସେହି କାଳ୍ପନିକ ସତ୍ୟମୟ ପିଣ୍ଡବ୍ରହ୍ମାଣ୍ଡ ସମ୍ବନ୍ଧାତ୍ମକ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଭାବ ଅବଲମ୍ବନ ପୂର୍ବକ ସର୍ବଦା ଏତଦ୍ରୂପ ସଂସାରୀୟ କ୍ରୀଡ଼ାନିରତ ଅଛନ୍ତି ।

## ୯୧ଶ ପାଠ – ମୂଳ ପ୍ରକୃତିକୁ କଳ୍ପବୃକ୍ଷାକାରରେ ବର୍ଣ୍ଣନା କରି-ଯାଇ ଏକ ଏବଂ ଅଦ୍ୱିତୀୟ ପରମାତ୍ମାକୁ ବୃକ୍ଷାରୂଢ଼ ନିତ୍ୟବଦ୍ଧ ଓ ନିତ୍ୟ-ମୁକ୍ତ ଦୁଇଟି ହଂସପକ୍ଷୀ ନାମରେ ବର୍ଣ୍ଣନା କରାଯାଉଅଛି ।

ଆତ୍ମାର ଆତ୍ମଶକ୍ତି ସୂର୍ଯ୍ୟକିରଣପରି ସର୍ବଦା ଆତ୍ମା ସହିତ ବିରାଜମାନ । ସୂର୍ଯ୍ୟ-କିରଣରେ ଦାହିକା ଏବଂ ଆଲୋକ ଦୁଇଟି ଗୁଣ ଅଛି; ଆଲୋକ ସ୍ୱପର ପ୍ରକାଶକମାତ୍ର,

ଏବଂ ଦାହିକା ସବୁ ପଦାର୍ଥକୁ ଉଷ୍ଣ ବା ଉତ୍ତପ୍ତ କରି ନାନାବିଧ ରୂପାନ୍ତର ଘଟାଏ । ଆଲୋକ ଅପରିଚିତ ଭାବରେ ସବୁ ପ୍ରକାଶ କରେ, ମାତ୍ର ଦାହିକା ସେପରି ନୁହେ, ତାହା ସହିତ ନିକଟ ବା ଯୌଗିକ ସମ୍ବନ୍ଧ ନ ଘଟିଲେ ସେ କାହାକୁହିଁ କିଛି ଉତ୍ତପ୍ତ ବା ବିକାରିତ କରି ନ ପାରେ । ଆଲୋକ ସ୍ୱତଃ ପ୍ରକାଶମାନ, ମାତ୍ର ଦାହିକା ଦହନାଦି କ୍ରିୟାଦ୍ୱାରା ଅନୁମେୟ । ସେହିପରି ଆତ୍ମଶକ୍ତି ମାୟା ନାମରେ ଖ୍ୟାତ, କେହି କେହି ତାହାକୁ ମୂଳ ପ୍ରକୃତି ନାମରେ ଅଭିହିତ କରିଥାଆନ୍ତି । ସେହି ଆତ୍ମଶକ୍ତି ଦୁଇପ୍ରକାର, ୧-ଚିତ୍ ବା ବିଦ୍ୟା ଏବଂ ଅପର ୨-ଅଜ୍ଞାନ ବା ଅବିଦ୍ୟା । ଚିତ୍‌ଶକ୍ତି ଆତ୍ମା ସହିତ ସ୍ୱୟଂ ପ୍ରକାଶମାନ ହୋଇ ଆତ୍ମାକୁ ଆତ୍ମଜ୍ଞାନାନନ୍ଦରୂପରେ ଆତ୍ମସଂସ୍ଥ କରି ରଖିଅଛି, ଏବଂ ଅବିଦ୍ୟା, ଅନାଦି ଦେହାତ୍ମ ବାସନା ଓ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ସଂସ୍କାର ଦ୍ୱାରା ଆତ୍ମାକୁ ଚିତ୍ତଯୁକ୍ତ ଏବଂ ଦେହେନ୍ଦ୍ରିୟ ମନ ପ୍ରାଣାଦି ସହିତ ନିବଦ୍ଧ କରି ସଂସାରୀୟ କ୍ରୀଡ଼ାଜାଲକୁ ବିସ୍ତାର କରିଅଛି । ଏହି ଏକଇ ଆତ୍ମା ବିଦ୍ୟାଶକ୍ତି ସମ୍ବନ୍ଧରେ ଆତ୍ମଜ୍ଞାନ-ପୂର୍ଣ୍ଣ ଚିଦାନନ୍ଦସ୍ୱରୂପ, ଏବଂ ଅବିଦ୍ୟା ବା ଅଜ୍ଞାନଶକ୍ତି ସହିତ ସଂଯୋଗ ବା ସମ୍ବନ୍ଧ ରଖିବା ଦ୍ୱାରା ଅବିଦ୍ୟାମୟ ସୁଖଦୁଃଖ-ମୋହାପନ୍ନ ସଂସାରବଦ୍ଧ ସଂସାରୀ ଜୀବାତ୍ମା-ପଦବାଚ୍ୟ ହୋଇଅଛନ୍ତି । ଏହି ପ୍ରକୃତିନିର୍ମିତ ସଂସାରରୂପ କଳ୍ପବୃକ୍ଷ ଅନାଦି, ଏହା ମହାନ୍‌ର ମହତ୍ତମ । ଏ ମହାକଳ୍ପତରୁ କାରଣରୂପରେ ଏକ, ଏବଂ କାର୍ଯ୍ୟ କାରଣ ଉଭୟ ସଂଜ୍ଞକରୂପେ ଓ କେବଳ କାର୍ଯ୍ୟରୂପେ ବହୁବିଧ । ଏତଦନୁସାରେ ଏହାର ମୂଳ ଏକ, ଏବଂ ଗଣ୍ଡି, ଶାଖା, ପ୍ରଶାଖା, ପଲ୍ଲବ, ପୁଷ୍ପ ଓ ଫଳାଦି ଅସଂଖ୍ୟ, ଅନନ୍ତ । ଏହି ପୁଷ୍ପ ନାନା ଆକାର ପ୍ରକାର ଓ ନାନା ସୁରମ୍ୟ ବର୍ଣ୍ଣବିଶିଷ୍ଟ ଅଟେ, ଫଳ ମଧ୍ୟ ସେହିପରି ବହୁବିଧ ପ୍ରକାର ରସଯୁକ୍ତ ଓ ମୁଗ୍‌ଧକର । ଆତ୍ମା ଏହି ସୁରମ୍ୟ ମୁଗ୍‌ଧକର ଦୃଶ୍ୟମୟ ବୃକ୍ଷକୁ ଦେଖିବାରେ ସର୍ବଦା ନିଯୁକ୍ତ । ଆତ୍ମଦେବ, ଆତ୍ମସଂସ୍ଥ, ଆତ୍ମଜ୍ଞାନ-ସମ୍ପନ୍ନ ଏବଂ ଆତ୍ମଧୈର୍ଯ୍ୟ ସହକାରେ ଆତ୍ମଦୃଷ୍ଟି ଅବଲମ୍ବନ ପୂର୍ବକ ଏହି ବୃକ୍ଷକୁ କୂଟସ୍ଥ-ସାକ୍ଷୀରୂପେ ରହି ଦର୍ଶନ କରି ଅନିର୍ବଚନୀୟ ଅମୃତମୟ ଆନନ୍ଦ ଉପଭୋଗ କରୁଅଛନ୍ତି । ଦେଖି ଦେଖି ଏହା ବୁଦ୍ଧି ବା ମହତ୍ତତ୍ତ୍ୱ, ଅହଂକାରତତ୍ତ୍ୱ ଓ ପଞ୍ଚତନ୍ମାତ୍ରାଦି ସପ୍ତପ୍ରକାର "କାର୍ଯ୍ୟକାରଣାତ୍ମକ ଉଭୟବିଧ" ଭାବରେ ପ୍ରକଟିତ ହେଉଅଛି । ଏହି ଦର୍ଶନ ସଙ୍ଗେ ସଙ୍ଗେ ଆତ୍ମାର ଦୃଷ୍ଟିଦ୍ୱାରା ଏହା ଲବ୍‌ଧ ବୀର୍ଯ୍ୟବାନ୍ ହୋଇ ଦଶେନ୍ଦ୍ରିୟ ଓ ପଞ୍ଚମହାଭୂତ ଆକାର ପ୍ରସବ କରୁଅଛି । ଏହି ଦଶେନ୍ଦ୍ରିୟ ମଧ୍ୟରୁ ପଞ୍ଚଜ୍ଞାନେନ୍ଦ୍ରିୟର ପରସ୍ପର ଐକ୍ୟ-ସମ୍ବନ୍ଧରୁ ଜ୍ଞାନମୟ ଅନ୍ତଃକରଣ ଚତୁଷ୍ଟୟ ଏବଂ କର୍ମେନ୍ଦ୍ରିୟ ପଞ୍ଚ ପରସ୍ପର ଐକ୍ୟ ସମ୍ବନ୍ଧରୁ କର୍ମମୟ ପଞ୍ଚପ୍ରାଣ ସମୁଦିତ ହେଉଅଛି । ଏ ସମସ୍ତର ପ୍ରକୃତି ନିର୍ଦ୍ଦିଷ୍ଟ ଯଥାଯଥ ସମ୍ବନ୍ଧରୁ ସୁଖ ଦୁଃଖ ଓ ମୋହକର ନାନାବିଧ ଭାବମୟ ଫଳ ପ୍ରସବିତ ହେଉଅଛି । ଆତ୍ମଦେବ ଏହି ବୃକ୍ଷର କେବଳ କାରଣାତ୍ମକ ଓ କାର୍ଯ୍ୟକାରଣ ଉଭୟାତ୍ମକ ଭାବ ଦର୍ଶନ କରି ସ୍ୱୟଂ ଏତଦ୍ଦର୍ଶନ ସହକାରେ ସର୍ବଶକ୍ତିମାନ ସର୍ବ-କର୍ତ୍ତୃତ୍ୱାଦି ବିଶିଷ୍ଟ ପରମେଶ୍ୱର ଭଗବାନ ବିଦ୍ୟାମୟ ଚିଦାଭାସରୂପେ ଆପଣାକୁ ବୋଧ

କରୁଅଛନ୍ତି । ଏହି ପ୍ରଭୁ ଜ୍ଞାନପୂର୍ଣ୍ଣ ସତ୍‌ସ୍ୱରୂପ ଓ ଆନନ୍ଦମୟ ସର୍ବମଙ୍ଗଳାଧାର ଅଟନ୍ତି । ଆଉ ମଧ୍ୟ ସର୍ବବିଧ ଜ୍ଞାନାନନ୍ଦ ଓ ମଙ୍ଗଳଦାତା ଅଟନ୍ତି ।

ଦର୍ଶନ ଦୁଇ ପ୍ରକାର; ୧ – ସୂର୍ଯ୍ୟଦେବଙ୍କୁ ସମ୍ମୁଖରେ ଦେଖି ତନ୍ମୟ କିରଣ-ଜାଳ ସମନ୍ୱିତ ତେଜୋମୟ ମୂର୍ତ୍ତି ଦର୍ଶନ କଲେ ସେହି ଦର୍ଶନରେ ଅନ୍ଧକାର ଛାୟା ବା ଅନ୍ୟ କିଛି ଦେଖିବାକୁ ମିଳିବ ନାହିଁ, ଅଥଚ ସେହି ଆଲୋକମୟ ଭଣ୍ଡାର ସୂର୍ଯ୍ୟଦେବ କେବଳ ପରିଦୃଷ୍ଟ ହେବେ । ଏହା ଏକପ୍ରକାର ଦର୍ଶନ । ଏହାହିଁ ବିଦ୍ୟାମୟ ଓ ଚିଦାଲୋକମୟ ଆତ୍ମତତ୍ତ୍ୱଦର୍ଶନ । ୨—ପୁଣି ସୂର୍ଯ୍ୟଦେବଙ୍କ ଆଡ଼ରୁ ଦୃଷ୍ଟି ଫେରାଇ ପଶ୍ଚାତ୍ ଦିଗରେ କଣ ଅଛି ଟିକିଏ ଦେଖିବାକୁ ଇଚ୍ଛା କରି ଫେରି ପଡ଼ି ସୂର୍ଯ୍ୟଦେବଙ୍କୁ ପୃଷ୍ଠଦିଗରେ ରଖି ବିପରୀତ ଦିଗକୁ ଚାହିଁଲା କ୍ଷଣି ନିଜର ଭୌତିକଦେହାକାରିତ କୃଷ୍ଣବର୍ଣ୍ଣ ଛାୟାରୂପଟି ଦେଖାଗଲା । ଏହି ରୂପକୁ 'ମୁଁ' ବୋଲି ଧରିନେଲେ କାହିଁ ଆଲୋକମୟ ସୂର୍ଯ୍ୟଦର୍ଶନ, କାହିଁ ବା ଭ୍ରାନ୍ତିପୂର୍ଣ୍ଣ ଛାୟାମୟ ଅପରୂପାକାରିତ ନିଜରୂପଦର୍ଶନ । ଏହି ଛାୟାମୟ କୃଷ୍ଣବର୍ଣ୍ଣାତ୍ମକ ଅପରୂପକୁ ମୁଁ ବୋଲି ଧରି ସେହି ରୂପର ଆକାର ପ୍ରକାର ଓ ବିକାରାଦିରେ ବିମୁଗ୍ଧ ହେଲେ କି ପ୍ରମାଦରେ ପଡ଼ିବାକୁ ହେଲା ! ଏହାର ବର୍ଣ୍ଣନା ସୃଷ୍ଟି ଆଦିରୁ ଉପସ୍ଥିତ କ୍ଷଣ ପର୍ଯ୍ୟନ୍ତ ଧାର୍ମିକଲେଖକର କାଳ ମଧ୍ୟରେ ଯେତେ ଯେତେ ପ୍ରକାର ଭାଷାରେ ଓ ଭାବରେ ପ୍ରକାଶିତ ହେଲାଣି, ତଦ୍ଦ୍ୱାରା ସେହି ବର୍ଣ୍ଣମୟ ବିଷୟର କୌଣସି ଅଂଶାଂଶ ମଧ୍ୟ ପ୍ରକଟିତ ହୋଇନାହିଁ । ତେବେ ଏହି ଦ୍ୱିତୀୟ ପ୍ରକାର ଦୃଷ୍ଟିଦ୍ୱାରା ଆତ୍ମଦେବ ଅନାତ୍ମ ଭ୍ରାନ୍ତିମୟ ଦୃଷ୍ଟିଯୁକ୍ତ ହୋଇ ଦେହାତ୍ମାଭିମାନରେ ବଦ୍ଧ ହୋଇ-ଅଛନ୍ତି ।

ଏହିରୂପେ ଏକଇ ଆତ୍ମା ଏକମାତ୍ର ଆତ୍ମପୀଠରେ ଅଧିଷ୍ଠିତ ଥାଇ ଦୃଷ୍ଟିର ପ୍ରକାର-ଭେଦରେ ସ୍ୱୟଂ ଆପଣ ଦୁଇପ୍ରକାର ଆତ୍ମାରେ ପରିକଳ୍ପିତ ହୋଇଅଛନ୍ତି, ଅର୍ଥାତ୍ ୧-ପରମାତ୍ମା ଓ ୨-ଜୀବାତ୍ମା । ପରମାତ୍ମ ସ୍ୱରୂପରେ ଆଦିତତ୍ତ୍ୱ ୧-ମୂଳପ୍ରକୃତି, ୨-ମହତ୍ତତ୍ତ୍ୱ; ୩-ଅହଂକାର ତତ୍ତ୍ୱ, ୫-ପଞ୍ଚତନ୍ମାତ୍ର =୮ ତତ୍ତ୍ୱ ପର୍ଯ୍ୟନ୍ତ ଅର୍ଥାତ୍ ୧ ଆଦି ମୂଳତତ୍ତ୍ୱ କେବଳ ପ୍ରକୃତି, ତହିଁରୁ ୨ ମହତ୍ତତ୍ତ୍ୱ, ମହତ୍ତତ୍ତ୍ୱରୁ ୩ ଅହଂକାରତତ୍ତ୍ୱ, ଏଥିରୁ ୫ ପଞ୍ଚତନ୍ମାତ୍ର ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ, ଏହି ପଞ୍ଚତନ୍ମାତ୍ରରୁ ୧୬ ଦଶେନ୍ଦ୍ରିୟ ମନ ଓ ପଞ୍ଚମହାଭୂତ—ଏହିରୂପେ ଏବଂ ୩ ଇନ୍ଦ୍ରିୟାଦି ଠାରୁ ସ୍ଥୂଳଭୂତ ପର୍ଯ୍ୟନ୍ତ ଷୋଳଟି କେବଳ ବିକୃତି, ଏହିରୂପେ ଏହି ମହାକଳ୍ପବଟ ତିନି ପ୍ରକାରରେ ବିଭକ୍ତ । ଏହାର ଦ୍ରଷ୍ଟା ଏକପ୍ରକାର ହେଲେ ମଧ୍ୟ ଦୁଇପ୍ରକାରରେ କଳ୍ପିତ । (ପ୍ରଥମ ପ୍ରକାର ଆତ୍ମଲୀଳାମୟ ଓ ଦ୍ୱିତୀୟ ପ୍ରକାର ମାୟିକ ଲୀଳାମୟ) ଅଷ୍ଟତତ୍ତ୍ୱ ଅର୍ଥାତ୍ ଏହି କଳ୍ପବଟର ଉତ୍କୃଷ୍ଟ ବା ଆଦିଭାଗ ଦର୍ଶନ କରୁଅଛନ୍ତି ଏବଂ ୨ ଜୀବାତ୍ମାରୂପରେ ଦଶେନ୍ଦ୍ରିୟ ସମନ୍ୱିତ ଅନ୍ତଃକରଣଚତୁଷ୍ଟୟ, ପଞ୍ଚପ୍ରାଣ ଏବଂ ପଞ୍ଚମହାଭୂତ ଓ ଭୂତାତ୍ମକ ପିଣ୍ଡବ୍ରହ୍ମାଣ୍ଡ ଦର୍ଶନକରି ତହିଁରେ ବିମୁଗ୍ଧ ଓ ଆବଦ୍ଧ ହୋଇ ସଂସାରୀ ବୋଲି ପ୍ରସିଦ୍ଧ ହୋଇଅଛନ୍ତି । ପୂର୍ବ ଉଦାହରଣବର୍ଣ୍ଣିତ ଦୁଇ ପ୍ରକାର ସୂର୍ଯ୍ୟଦର୍ଶନ ମଧ୍ୟରୁ ପ୍ରଥମ ପ୍ରକାର ଦର୍ଶନ

ଅର୍ଥାତ୍ ପ୍ରଥମ ଅଷ୍ଟ ପ୍ରକାର ତତ୍ତ୍ୱ ସହିତ ଆତ୍ମଦର୍ଶନ; ଏଥିରେ ଆତ୍ମାଲୋକ ନିର୍ମଳଭାବେ ବିରାଜମାନ ଅଛି । ମୋହାଦି ବିକାର କିଛି ନାହିଁ । ଦ୍ୱିତୀୟ ପ୍ରକାର ଉଲ୍ଲିଖିତ ଷୋଳଟି ବୈକାରିକତତ୍ତ୍ୱ ସହିତ ପିଣ୍ଡବ୍ରହ୍ମାଣ୍ଡାଦିର ଦର୍ଶନ; ଏହା ସୁଖ ଦୁଃଖ ମୋହାଦି ତାପମୟ ବନ୍ଧନ ବିଶିଷ୍ଟ । ଏହିରୂପେ ଏକ ଆତ୍ମା ବିଦ୍ୟାମୟ ଚିଦାଲୋକ ବିଶିଷ୍ଟ "ନିତ୍ୟମୁକ୍ତ" ଏବଂ ଅବିଦ୍ୟାମୟ ଭ୍ରମ ପ୍ରମାଦପୂର୍ଣ୍ଣ ସଂସାର ଭାବ ବିଶିଷ୍ଟ "ନିତ୍ୟବଦ୍ଧ" ରୂପେ ଚିରପ୍ରସିଦ୍ଧ ହୋଇ ରହିଅଛନ୍ତି ।

ଶକ୍ତି ଓ ଶକ୍ତିମାନ୍ ଏକ ଏବଂ ଅଭେଦ । ଆତ୍ମା ଆତ୍ମଶକ୍ତିବିଶିଷ୍ଟ । ସେହି ଭ୍ରାନ୍ତିର ନାମ ମାୟା । ଆତ୍ମଦ୍ରଷ୍ଟା ପରମେଶ୍ୱର ଆପଣାକୁ ମାୟାଦେବୀ ସହିତ ଦେଖି ଦେଖି ମାୟାବୀ ହୋଇଅଛନ୍ତି । ଯାହାହେଉ ଏହି ମାୟାମୂର୍ତ୍ତି ସ୍ୱରୂପ କଳ୍ପବୃକ୍ଷକୁ ଦେଖୁ ଦେଖୁ ତାହା ଦ୍ରଷ୍ଟା ଆତ୍ମଦେବଙ୍କୁ ଆକର୍ଷଣ କରି ତନ୍ମୟ ଆତ୍ମଦେହରୂପେ ପରିଗୃହୀତ ହୋଇଅଛି ଅର୍ଥାତ୍ ନିର୍ଲିପ୍ତ ଆତ୍ମବ୍ରହ୍ମ ଚିଦାନନ୍ଦ ସ୍ୱାମୀ ୧-ପରମେଶ୍ୱର ରୂପେ ଆଦ୍ୟା ମୂଳ ପ୍ରକୃତିଠାରୁ ପଞ୍ଚତନ୍ମାତ୍ର ପର୍ଯ୍ୟନ୍ତ ଅଷ୍ଟତତ୍ତ୍ୱକୁ ନିଜର ଅଭେଦାଙ୍ଗରୂପେ ସ୍ୱୀକାର କରିଅଛନ୍ତି ଏବଂ ୨-ଜୀବାତ୍ମାରୂପେ ମନ ଓ ଦଶେନ୍ଦ୍ରିୟଠାରୁ ପଞ୍ଚମହାଭୂତ ପର୍ଯ୍ୟନ୍ତ ଷୋଳଟି ତତ୍ତ୍ୱକୁ ନିଜାତ୍ମ ଦେହରୂପେ ଧରି ବିମୁଗ୍ଧ ହୋଇ ରହିଅଛନ୍ତି । ୧-ଆଦ୍ୟାମୂଳ ପ୍ରକୃତି ଭଗବାନ ହରି ପରମେଶ୍ୱରଙ୍କର ୧-କାରଣ ଦେହ, ଏଥିରେ ସୃଷ୍ଟି ତତ୍ତ୍ୱାଦି ବାସନା ବିଜଡ଼ିତ ରହିଅଛି ଓ ଅପର ମହତତ୍ତ୍ୱାଦି ପଞ୍ଚତନ୍ମାତ୍ର ପର୍ଯ୍ୟନ୍ତ ସାତଟି ତତ୍ତ୍ୱ ସେହି ମହାପ୍ରଭୁଙ୍କର ୨-ସୂକ୍ଷ୍ମଦେହ; ଏହା ଜଗଦାଦିର ଉପାଦାନିକ ବୀଜ ସ୍ୱରୂପ । ଏପରି ସମୁଦାୟ ପଞ୍ଚଭୂତାତ୍ମକ ପିଣ୍ଡବ୍ରହ୍ମାଣ୍ଡମୟ ସର୍ବ ବିଶ୍ୱସଂସାରାକାର ମହାବିରାଟ ଦୃଶ୍ୟ ସେହି ପ୍ରଭୁ ପରମେଶ୍ୱରଙ୍କର ୩-ସ୍ଥୂଳ ବା ଗୌଣ ଦେହ ଅଟେ । ଏହା ପ୍ରାଣିବର୍ଗ ଏବଂ ଜାଗତିକ ସର୍ବନାମରୂପାତ୍ମକ ବସ୍ତୁର ଉପାଦାନ କାରଣ ସ୍ୱରୂପ ଅଟେ । ଏହି ରୂପ ବା ଦେହତ୍ରୟ ପରମେଶ୍ୱରାଧୀନ ଅଟେ । ପ୍ରଭୁ ପରମେଶ୍ୱର ନିଜ ସ୍ୱାଧୀନ ଇଚ୍ଛା ବଳରେ ଏକ ଆଦିକାରଣ ଦେହରୂପ ମୂଳ ପ୍ରକୃତିଦେବୀ ସହିତ ସଦା ସହଯୋଗୀ ଥାଇ ଅନ୍ୟ ସୂକ୍ଷ୍ମ ଓ ସ୍ଥୂଳ ଦେହଦ୍ୱୟର ସୃଷ୍ଟି, ସ୍ଥିତି ଓ ଲୟ ସାଧନ କରୁଅଛନ୍ତି । ଏହା ସଂସାରାଦିର ସୃଷ୍ଟି, ସ୍ଥିତି ଏବଂ ପ୍ରଳୟର ନାମାନ୍ତର ମାତ୍ର । ଏହି ସଂସାର ଏହିପରି ଈଶ୍ୱରାଧୀନ, ଆଉ ପ୍ରଭୁ ପରମେଶ୍ୱର ଏହାର ଅଧୀନ ନୁହନ୍ତି । ସେହି ପ୍ରଭୁ ସ୍ୱାଧୀନ ଇଚ୍ଛାମୟ ସର୍ବଶକ୍ତିମାନ୍ ଓ ସର୍ବକର୍ତ୍ତୃତ୍ୱଶାଳୀ ହୋଇ ସଂସାରାଦି ସମ୍ବନ୍ଧେ ସର୍ବରାଜାଧିରାଜ, ଅନନ୍ତକୋଟି-ବିଶ୍ୱ-ସମଷ୍ଟିରୂପେ ସଂସାରାଦିର ବାହ୍ୟାନ୍ତର ପୂର୍ଣ୍ଣ କରି ବିରାଜମାନ ହୋଇଅଛନ୍ତି । ଏପରି ଜୀବାତ୍ମାର ଦେହ ବର୍ଣ୍ଣନା ସମ୍ବନ୍ଧେ ପ୍ରଣିଧାନ କରାଯାଉ । କର୍ତ୍ତୃତ୍ୱ, ଭୋକ୍ତୃତ୍ୱାଦି ଅନାଦି ଦେହ ସଂସାର ବାସନା ଓ ସଂସ୍କାରମୟ ଅଜ୍ଞାନ ବସ୍ତୁର ନାମ ଅବିଦ୍ୟା । ଏହା ଜୀବର ୧-କାରଣ ଦେହ, ଏହା ସୂକ୍ଷ୍ମ ଓ ସ୍ଥୂଳ-ଦେହ-ଦର୍ଶନ ଓ ତଦ୍ବନ୍ଧନର ବୀଜସ୍ୱରୂପ, ୨-ଦଶେନ୍ଦ୍ରିୟ ଓ ମନ, ଏହା ଜୀବର ସୂକ୍ଷ୍ମ ବା ଲିଙ୍ଗ ଶରୀର—ଦଶେନ୍ଦ୍ରିୟ ମଧ୍ୟରୁ

ପଞ୍ଚଜ୍ଞାନେନ୍ଦ୍ରିୟ ଓ ମନ, ପରସ୍ପର ସମ୍ବନ୍ଧରୁ ଏମାନଙ୍କର ବ୍ୟାପକ ସ୍ୱରୂପେ ବୁଦ୍ଧି ଓ ଅହଂକାରର ବିକାଶ ଏବଂ ପଞ୍ଚକର୍ମେନ୍ଦ୍ରିୟର ପରସ୍ପର ସମ୍ବନ୍ଧରୁ ବ୍ୟାପକଭାବେ ପଞ୍ଚପ୍ରାଣ-ବୃତ୍ତିର ଆବିର୍ଭାବ, ଏହିରୂପେ ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ପଞ୍ଚପ୍ରାଣ, ବୁଦ୍ଧି ଓ ଅହଂକାର (ମନ ଏତଦନ୍ତର୍ଗତ) ମିଶି ସପ୍ତଦଶ କଳା ବା ଅବୟବ ବିଶିଷ୍ଟ ପଦାର୍ଥ ଜୀବାତ୍ମାର ସୂକ୍ଷ୍ମ ବା ଲିଙ୍ଗଶରୀର । ଏପରି ୩-ପଞ୍ଚଭୂତାତ୍ମକ ଏହି ସ୍ଥୂଳଦେହ ଜୀବାତ୍ମାର ସ୍ଥୂଳଦେହ । ଜୀବାତ୍ମା ଏହି ତିନି ଦେହରେ ଆତ୍ମାଭିମାନ ଭ୍ରମ ଦୃଢ଼ଭାବେ ସ୍ଥାପନ କରି ଦେହାଧୀନ ଓ ଦେହବଦ୍ଧ ରହିଅଛି । ବହୁ ମୂଲ୍ୟବାନ ରତ୍ନାଦି ବସ୍ତୁ ଯେପରି କୋଷାବଦ୍ଧ ହୋଇ ରହିଥାଏ, ଏହି ଜୀବାତ୍ମା ସେହିପରି ପଞ୍ଚକୋଷାବଦ୍ଧ ହୋଇ ରହିଅଛନ୍ତି । ଏହି ଦେହତ୍ରୟ ସମଷ୍ଟିକୁ ପ୍ରକାରାନ୍ତରେ ପଞ୍ଚକୋଷରେ ବିଭକ୍ତ କରାଯାଇଅଛି । ୧-ଅନ୍ନମୟ କୋଷ, ୨-ପ୍ରାଣମୟ କୋଷ, ୩-ମନୋମୟ କୋଷ, ୪-ବିଜ୍ଞାନମୟ କୋଷ; ତ୍ରୟ ସମଷ୍ଟିର ନାମ ସୂକ୍ଷ୍ମଦେହ ଏବଂ ୫-ଆନନ୍ଦମୟ କୋଷର ନାମ କାରଣ ଦେହ ।

୧—ଅନ୍ନମୟ କୋଷ, ଏହି ସ୍ଥୂଳଦେହ, ଅନ୍ନ ବା ଖାଦ୍ୟପେୟରେ ପରିପୁଷ୍ଟ ହୋଇ ରହିବାର ଉପଯୋଗୀ ବସ୍ତୁ ଥିବାରୁ ଏହା ଅନ୍ନାଦିର ସାରମୟ ଅଟେ । ସୁତରାଂ ଏହାର ନାମ ଅନ୍ନମୟ କୋଷ । ୨—ପ୍ରାଣମୟ କୋଷ, ଅର୍ଥାତ୍ ପଞ୍ଚପ୍ରାଣ ଓ ବାୟୁ; ଏହା ଦେହସ୍ଥ ସର୍ବପ୍ରକାର ନାଡ଼ୀ ଓ ଛିଦ୍ରାଦିରେ ପରିପୂର୍ଣ୍ଣ ରହି ଦେହର ରକ୍ଷଣ ଓ ପୋଷଣାଦି ବହୁବିଧ କ୍ରିୟା ସାଧନ କରୁଅଛି । ୩—ମନୋମୟ କୋଷ, ମନ ଓ କର୍ମେନ୍ଦ୍ରିୟ ଏକତ୍ରେ ମନୋମୟ ବା କର୍ମମୟ କୋଷ । ଏହା କର୍ମାଦି ସାଧନର ପ୍ରକୃଷ୍ଟ ପ୍ରଶସ୍ତସ୍ଥାନ । ୪—ବିଜ୍ଞାନମୟ କୋଷ । ବୁଦ୍ଧି, ଅହଂକାର ଓ ଜ୍ଞାନେନ୍ଦ୍ରିୟ ଏକତ୍ରରେ ବିଜ୍ଞାନମୟ କୋଷ ନାମଧାରଣ କରିଅଛନ୍ତି । ଏତଦ୍ଦ୍ୱାରା ଭୋଗ କର୍ମ ସମ୍ବନ୍ଧୀୟ ବିବେକ-ବିଚାରାଦି ସୁସିଦ୍ଧ ହୁଏ । ୫—ଆନନ୍ଦମୟ କୋଷ; ଏଥିରେ ଆନନ୍ଦାଭାସ ଓ ନୈଷ୍କର୍ମ୍ୟା-ବସ୍ଥାପନ୍ନ ଶାନ୍ତି ଅନୁଭୂତ ହୋଇଥାଏ । ଆତ୍ମା ଏହିରୂପେ ଅବିଦ୍ୟାକୁ ଦେଖି ଦେଖି ସେ ଦେହତ୍ରୟ ଓ ପଞ୍ଚକୋଷାଦି ଆକାରରେ ଆତ୍ମଦେବଙ୍କୁ ତନ୍ମୟ କରି ସଂସାରବଦ୍ଧ କରିଅଛି । ଏହିରୂପେ ଏହି ଅନାଦି ଅପାରଗାମୀ ମହାକଳ୍ପତରୁ ଏକ ବିଶିଷ୍ଟ ପ୍ରକାରର ଆଶ୍ଚର୍ଯ୍ୟମୟ ଉଲଟବୃକ୍ଷ ଅଟେ । ଏହାର ମୂଳ (ସର୍ବାକାରଣାତ୍ମିକା ତ୍ରିଗୁଣମୟୀ ମୂଳ ପ୍ରକୃତି) ସର୍ବୋଚ୍ଚ ଆବ୍ରହ୍ମପଦବାଚକ ସ୍ଥାନ ପର୍ଯ୍ୟନ୍ତ ଅଧିକାର କରି ନିତ୍ୟ ବିରାଜମାନ ରହିଅଛି । ଏହିଠାରୁ କ୍ରମେ ନିମ୍ନ ଦେଶକୁ ଏହା ତିନିଗଣ୍ଡି (ଗୁଣତ୍ରୟ) ବିଶିଷ୍ଟ ହୋଇ ଅଳ୍ପଦୂର ଆସିଲାରୁ ତହିଁ ନିମ୍ନକୁ ଏଥିରୁ କ୍ରମନିମ୍ନ ପ୍ରକାରରେ ସାତଶାଖା (ସପ୍ତକାର୍ଯ୍ୟ-କାରଣାତ୍ମିକା ତତ୍ତ୍ୱ) ବାହାରିଅଛି । ଏହିଠାରୁ ନିମ୍ନ ପ୍ରଦେଶକୁ (ଷୋଳଟି କେବଳ ବୈକାରିକ ତତ୍ତ୍ୱ) ଷୋଳଟି ପ୍ରଶାଖା ବାହାରି ବହୁଦୂର ବ୍ୟାପି ରହିଅଛି । ଏଥିରେ ଅସଂଖ୍ୟ ଅସଂଖ୍ୟ ପତ୍ରପୁଷ୍ପାଦି (ଅବିଦ୍ୟା ଅହଂକାରାଦି) ସୁଶୋଭିତ ହୋଇ ରହିଅଛି । ଏହି ପତ୍ରପୁଷ୍ପାଦି ନାନାବିଧ ସୁରଙ୍ଗମୟ ବିଷୟାକାର ଚିତ୍ରାରେ ସୁରଞ୍ଜିତ ।

ଏହି କଳ୍ପବୃକ୍ଷର ଫଳ ଦୁଇଗୋଟି ପ୍ରକାର ଉଚ୍ଚତମ ପ୍ରଦେଶରେ ଜ୍ଞାନାମୃତରସପୂର୍ଣ୍ଣ ଫଳ ଏବଂ ନିମ୍ନ ପ୍ରଦେଶରେ ବିଷୟରସାତ୍ମକ ମୋହମୟ ଫଳ । ଅମୃତମୟ ଫଳକୁ ଊର୍ଦ୍ଧ୍ୱସ୍ଥ ପରମହଂସ ଭୋଗ କରନ୍ତି ଏବଂ ନିମ୍ନତମ ପ୍ରଦେଶସ୍ଥିତ ବିଷୟରସମୟ ଫଳକୁ ନିମ୍ନଦେଶବାସୀ ଜୀବହଂସ ଭୋଗ କରନ୍ତି । ପ୍ରଥମ ପ୍ରକାର ଫଳରସର ଗୁଣ ମୁକ୍ତି, ଦ୍ୱିତୀୟ ପ୍ରକାର ଫଳ ସେବନର ଗୁଣ ବନ୍ଧନ । ଏହି ପରମାତ୍ମା ଓ ଜୀବାତ୍ମାରୂପୀ ହଂସଦ୍ୱୟ ନିତ୍ୟ ସଙ୍ଗୀ, ମାତ୍ର ପରମାତ୍ମ ହଂସ ଊର୍ଦ୍ଧ୍ୱ ଦୃଷ୍ଟିଯୋଗେ ନିତ୍ୟ ମୁକ୍ତ ଥାଇ ବିଶୁଦ୍ଧ ଆତ୍ମଜ୍ଞାନ ଦ୍ୱାରା ଆତ୍ମାକୁ, ଅନାତ୍ମ ବସ୍ତ୍ୱାଦିକୁ ଓ ଜୀବାତ୍ମାକୁ ଜାଣୁଅଛନ୍ତି, ଅଥଚ ଜୀବହଂସ ଅଧୋଦୃଷ୍ଟି ଅର୍ଥାତ୍ ବିଷୟବାସନାକୃଷ୍ଟ-ଦୃଷ୍ଟି ହୋଇ ରୂପ-ରସାଦି-ମୋହମୟ-ଫଳ ଭକ୍ଷଣ କରି ନିଜକୁ ବା ପରମାତ୍ମାଙ୍କୁ ଜାଣୁନାହିଁ । ଏହି କଳ୍ପବୃକ୍ଷ ପରମାତ୍ମା ଭଗବାନ ହରିଙ୍କର ମହା ବିଭୂତିର ନିଦର୍ଶନ ସ୍ୱରୂପ ପ୍ରବାହ ନ୍ୟାୟରେ ନିତ୍ୟ ବିରାଜମାନ ରହିଅଛି । ଏହାର ରଚୟିତା ବା ବିକାରକର୍ତ୍ତା କେହି ନାହିଁ । ସ୍ୱକୀୟ ଶକ୍ତିମୟ ଗୁଣ ପ୍ରବାହବଳରେ ଏହି ମହାକଳ୍ପତରୁ ପୁନଃ ପୁନଃ ସୃଷ୍ଟି, ସ୍ଥିତି, ଲୟାଦି କ୍ରମାନୁସାରେ କାରଣରୂପେ ଓ କାର୍ଯ୍ୟରୂପେ ଆତ୍ମାଶ୍ରୟରେ ବହୁରୂପା ଓ ନାନାବିଧ କ୍ରୀଡ଼ାମୟ ନର୍ତ୍ତକୀ ପରି ନିତ୍ୟ ନର୍ତ୍ତନଶୀଳ ହୋଇ ତଦ୍ଦର୍ଶନଶୀଳ ଆତ୍ମଦେବଙ୍କୁ ଏକାଂଶରେ ଅର୍ଥାତ୍ ଚିନ୍ମୟାଂଶରେ ପରମାତ୍ମା ଉପାଧି ଓ ଅପର ଅବିଦ୍ୟାଂଶରେ ଜୀବୋପାଧିବିଶିଷ୍ଟ କରି ଆତ୍ମବ୍ରହ୍ମର ନିର୍ବିକଳ୍ପକ ଓ ନିରୁପାଧିକ ରୂପର ଶୋଭାବର୍ଦ୍ଧନ କରିଅଛି । ଏହିରୂପେ ଏକ ପରଂବ୍ରହ୍ମ ଅଙ୍ଗରେ ଈଶତ୍ୱ ଓ ଜୀବତ୍ୱ ପ୍ରକଳ୍ପିତ ହୋଇଅଛି । ଏତଦ୍ଦ୍ୱାରା ସଂକ୍ଷେପରେ ପୂର୍ବ ନିର୍ଦ୍ଦେଶାନୁଯାୟୀ ଜୀବାତ୍ମା ଓ ପରମାତ୍ମାର ଏବଂ ଆଦ୍ୟା ପ୍ରକୃତିର ବିଗ୍ରହ ଯଥାପରିମାଣରେ ଆଲୋଚିତ ହୋଇ ଶେଷ କରାଗଲା ।

## ୪୨ଶ ପାଠ—ମାୟା ପ୍ରଦତ୍ତ ମାଦକ

ପୂର୍ବେ ଜୀବାତ୍ମାର ପରିଚୟ ସମ୍ବନ୍ଧେ ଯାହା ଯାହା ଉଲ୍ଲିଖିତ ହୋଇଅଛି, ତହିଁରୁ ସ୍ପଷ୍ଟ ଜଣାଯାଉଅଛି ଯେ ଦେହତ୍ରୟ ସମଷ୍ଟିରୁ ଆତ୍ମା ପୃଥକ୍ ଓ ଏହାର ଦ୍ରଷ୍ଟା । ତେବେ ଏହି ପାର୍ଥକ୍ୟ ସାଧାରଣତଃ ଅନୁଭୂତ ନ ହୋଇ ଦେହତ୍ରୟ ଯେ ଆତ୍ମରୂପେ ପରିଗୃହୀତ ହୋଇଅଛି ଏଥିର କାରଣ ତିନିପ୍ରକାର ମାଦକର ଉନ୍ମାଦନା । ୧ମ ପ୍ରକାରର ନାମ ଜାଗରଣ । ଏ ଅବସ୍ଥାରେ ଆତ୍ମା ଦେହତ୍ରୟ ସହିତ ବିଜଡ଼ିତ ଓ ଏକାତ୍ମଭାବ-ପରିପୂର୍ଣ ହୋଇ ଉକ୍ତ ତିନି ଦେହର ଅବସ୍ଥାକୁ ଆଲୋଚନା କରୁଅଛନ୍ତି; ଅର୍ଥାତ୍ ମୁଁ ଉପସ୍ଥିତ ଦେହ ଓ ସଂସାରାଦି ଦେଖୁଅଛି, ବା ଜାଣୁଅଛି ଏବଂ ବିଗତ ସ୍ୱପ୍ନ ଦେଖିଥିଲି ବା ସୁଷୁପ୍ତିରେ କିଛି ଜାଣିନାହିଁ ବୋଲି ଉପଲବ୍ଧି କରୁଅଛି । ୨ୟ ପ୍ରକାର ମାଦକ ଦଶା ଅର୍ଥାତ୍ ସ୍ୱପ୍ନରେ ସୂକ୍ଷ୍ମ ଏବଂ କାରଣ ଦେହରେ ମିଶ୍ରିତ ଥାଇ ଦେହାତ୍ମ ବାସନା ଓ ସଂସାରାଦି ସହ ମିଥ୍ୟା କଳ୍ପିତ ସଂସାରୀୟ ଲୀଳାକୁ ସତ୍ୟ ବୋଲି ମଣୁଅଛି । ୩ୟ ଅବସ୍ଥା ଅର୍ଥାତ୍

ସୁଷୁପ୍ତିରେ ଆତ୍ମା କେବଳ କାରଣଦେହଯୁକ୍ତ ହୋଇ ଅନାଦି ଦେହାତ୍ମ ବାସନା ଓ ସଂସ୍କାର ସହ ଅଭିଭୂତ ରହି 'ମୁଁ' ମାତ୍ର ସ୍ଫୁରଣରେ 'ଦେହ-ସଂସ୍କାର ଜ୍ଞାନଶୂନ୍ୟ' ଅଜ୍ଞ ପରି ବିଦ୍ୟମାନ ରହୁଅଛନ୍ତି । ଏହି ଅବସ୍ଥାତ୍ରୟ ତିନପ୍ରକାର ମାଦକଦ୍ରବ୍ୟ ସେବନରେ ତିନପ୍ରକାର ବିମୂଢ଼ଭାବ ଧାରଣ କଲପରି ଆତ୍ମାକୁ ବିମୂଢ଼ଭାବମୟ କରିଅଛି । ପୁଣି ଏହି ଦଶାତ୍ରୟ ଏକ ପରେ ଅନ୍ୟ ଏବଂ ଅନ୍ୟପରେ ଅପର, ଏହିପରି କ୍ରମାନୁସାରେ ଦିବାରାତ୍ର ପରି ଆବର୍ତ୍ତନ କରୁଥିବାରୁ ଏହି ଦଶାତ୍ରୟମାନଙ୍କୁ ଉପଭୋଗ କରି କରି ଆତ୍ମାର ଆଜୀବନାନ୍ତ ଶେଷ ହେଉଅଛି । ଯାହା କିଛି ଭାବନା ବା ଚିନ୍ତା କି ଉପଭୋଗାଦି ଓ କର୍ମାଦି ଏହି ଦଶାତ୍ରୟ ମଧ୍ୟରେ ସଂସାଧିତ ହେଉଅଛି, ଏହି ତିନ ଅବସ୍ଥା ଭିନ୍ନ ଅନ୍ୟାବସ୍ଥା ସଂସାରୀ ଜୀବର ନାହିଁ ବୋଲି ସମସ୍ତେ ଜାଣିବାକୁ ପାଉଅଛନ୍ତି ।

ବର୍ତ୍ତମାନ ଦେଖାଯାଉ—ଆତ୍ମା ସ୍ୱୟଂ ଭାବିବା ଉଚିତ ଜାଣି ଆତ୍ମତଃ ଭିତରେ ଭିତରେ ଭାବୁଅଛନ୍ତି ଯେ—ଯେଉଁ ମୁଁ ଜାଗ୍ରତ ଦଶାର ସଂସାର ଦେଖିଥାଏ ସେହି 'ମୁଁ' ସ୍ୱପ୍ନ ଦଶାରେ ମିଥ୍ୟା ସଂସାର ଦେଖେ, ଏବଂ ସେହି ଏକଇ 'ମୁଁ' ସୁଷୁପ୍ତିରେ ଦେହ-ସଂସାର ବିସ୍ମରଣ କରେ, ଅର୍ଥାତ୍ 'ମୁଁ' ଏହି ଅବସ୍ଥାତ୍ରୟରୁ ଭିନ୍ନ, ଅଥଚ ଏହି ଅବସ୍ଥା-ତ୍ରୟ ମଧ୍ୟରେ ତତ୍ତତ୍-ଅବସ୍ଥାଗତ ଦ୍ରଷ୍ଟବ୍ୟ ବା ଜ୍ଞାତବ୍ୟ ବିଷୟର ସାକ୍ଷୀ ଅସଙ୍ଗ ଆତ୍ମା । ଆତ୍ମାର ଏତଦ୍ରୂପ ଦଶାଦି ବିରହିତ ଅସଙ୍ଗାବସ୍ଥା 'ତାହାର' ଅପରିବର୍ତ୍ତିତାତ୍ମ ଏବଂ ଅନବଚ୍ଛିନ୍ନ ନିତ୍ୟାବସ୍ଥା । ଏହା ଆତ୍ମାର ନିଜାବସ୍ଥା । ଏହି ଦଶାନୁଭବକାଳରେ ଉକ୍ତ ଦଶାତ୍ରୟ ମାଦକ ମୋହପରି ଜଣାପଡ଼ନ୍ତି । ଦଶାଭୋଗର ଧର୍ମ ଏହି ଯେ ଏକ ଦଶାରେ ଅନ୍ୟ ଦଶା ନ ଥାଏ । ନିଜାବସ୍ଥାକୁ ତୁରୀୟ କହନ୍ତି । ଏହି ତୁରୀୟ ଆତ୍ମସଂସ୍ଥାନର ନାମ ଆତ୍ମାନନ୍ଦ ସଂଭୋଗ । ଏଥିରେ ଦଶାତ୍ରୟ ବା ଦେହତ୍ରୟ ଜ୍ଞେୟ ବା ଦୃଶ୍ୟ ବସ୍ତୁରୂପେ ଜ୍ଞାତା ବା ଦ୍ରଷ୍ଟାରୂପ ସାକ୍ଷୀଚୈତନ୍ୟ ଆତ୍ମାଠାରୁ ପୃଥକ୍ । ଅଥଚ ଆତ୍ମାଦ୍ୱାରା ଏତଦ୍ରୂପ ଜ୍ଞେୟ ବା ଦୃଶ୍ୟରୂପେ ପ୍ରକାଶିତ ଆଉ ଆତ୍ମା ସ୍ୱୟଂ ଜ୍ଞାତ ବା ଦୃଷ୍ଟ ନୁହେ । ଏହା ଆତ୍ମାର ବିଭୂତିବିଶେଷ ମାତ୍ର ।

ବର୍ତ୍ତମାନ ଏହି ଜୀବାତ୍ମାର ଜନ୍ମ-ମରଣାଦି ଏବଂ ପୁରୁଷକାର ବା ଦୈବପ୍ରଭୃତି ବିଷୟାଦି ସମ୍ବନ୍ଧେ ସାମାନ୍ୟ କିଛି ଆଲୋଚନା କରାଯାଉ । ତତ୍ପରେ କର୍ତ୍ତବ୍ୟାଦିର ବିସ୍ତୃତମାର୍ଗ ସହଜଗମ୍ୟ ହେବ ।

## ୧୩ ଶ ପାଠ—ଚକ୍ରବତ୍ ପରିବର୍ତ୍ତନଶୀଳ ଜନ୍ମମରଣ ସମ୍ବନ୍ଧୀୟ ଆଧ୍ୟାତ୍ମିକ ବ୍ୟବସ୍ଥା ନିର୍ଣ୍ଣୟ

ଜନ୍ମ ମରଣ କହିବା ସଙ୍ଗେ ସଙ୍ଗେ ବୁଝାଯାଇଥାଏ ଯେ ମାତୃଗର୍ଭରୁ ଭୂମିରେ ପଡ଼ିବାର ନାମ ଜନ୍ମ, ଆଉ ଦେହ ପ୍ରାଣଶୂନ୍ୟ ହୋଇ ନିଶ୍ଚେଷ୍ଟ ଓ ସଂଜ୍ଞାହୀନ ହେବାର

ନାମ ମରଣ । ଏଥିରୁ ବୁଝାଯାଏ ଦେହର ଜନ୍ମ ଏବଂ ମରଣ ଅବଧାରିତ, ଏହିପରି ଜାତଶୀଳ ବସ୍ତୁମାତ୍ର ହିଁ ମରଣର ଅଧୀନ । ଜାତଶୀଳ ବସ୍ତୁ ବା ଦେହର ୧ମ ଜନ୍ମ, ୨ୟ ବୃଦ୍ଧି; ଏହି ବୃଦ୍ଧିର ନିର୍ଦ୍ଦିଷ୍ଟ ସୀମା ଅଛି । ସେ ବଢ଼ିବ ସେହି ସୀମା ପର୍ଯ୍ୟନ୍ତ । ସେହିଠାରୁ କ୍ରମେ ହ୍ରାସ ଆରମ୍ଭ । ସେହି ହ୍ରାସର ଶେଷ ସୀମା ମରଣ । ଏହିରୂପେ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ହ୍ରାସବୃଦ୍ଧି କାହିଁକି କାହୁଁ ଆସି ଉପସ୍ଥିତ ହେଲା ? ଏହା ମଧ୍ୟ ଏକ ପ୍ରକାର ବିକାର ବିଶେଷ । ୫ ଏହାର ନାମ ରୂପାନ୍ତର । ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ଏହି ରୂପାନ୍ତର ବା ପରିଣାମ ବିକାର କ୍ରମେ ଜାତଶୀଳ ଦେହକୁ ଯଥାସୀମା ପର୍ଯ୍ୟନ୍ତ ବଢ଼ାଇ ସେହିଠାରୁ କ୍ରମେ ହ୍ରାସ କରାଇ ଆଣି ଶେଷ ସୀମା ମରଣଠାରେ ଛାଡ଼ିଦିଏ । ଏପରି ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ଦେହର ଯେଉଁ ଅବସ୍ଥିତି ତାହା ୬ଷ୍ଠ ପ୍ରକାର ବିକାର । ଏହିପରି ଜନ୍ମଠାରୁ ମରଣ ମଧ୍ୟରେ ଯେ ଅବସ୍ଥିତି, ତାହା ପୁଣି ରୂପାନ୍ତର ସହିତ ସଂଯୁକ୍ତ । ସ୍ଥିତି ପରିମାଣକୁ ଏହି ରୂପାନ୍ତର କ୍ଷଣକୁ କ୍ଷଣ ଦଖଲ କରି ସୂକ୍ଷ୍ମଭାବରେ ପରିବର୍ତ୍ତିନ ଘଟାଉ-ଅଛି । ଏହିରୂପେ ୧ମ ଜନ୍ମ, ୨ୟ ବୃଦ୍ଧି, ୩ୟ ହ୍ରାସ, ୪ର୍ଥ ମରଣ, ୫ମ ରୂପାନ୍ତର, ୬ଷ୍ଠ ଅବସ୍ଥିତି—ଏହି ଛଅଟି ବିକାର ଦେହର ସ୍ୱତଃସିଦ୍ଧ ନିର୍ଦ୍ଦିଷ୍ଟ ଅଛି । ମୃତ୍ୟୁପରେ ଦେହର ପାଞ୍ଚଭୌତିକ ଅଂଶ ବିଶ୍ୱ-ବ୍ରହ୍ମାଣ୍ଡର ଭୌତିକ ପଞ୍ଚାଂଶରେ ମିଶ୍ରିତ ହୁଏ, ସୁତରାଂ ଏହି ମୃଣ୍ମୟ ଦେହର ଥରେ ଜନ୍ମ ଥରେ ମରଣ, ଏପରି ଏହାର ଆଉ ଜନ୍ମ ମରଣ ଅସମ୍ଭବ । ଆଉ ଯେଉଁ ସୂକ୍ଷ୍ମ ଓ କାରଣ ଦେହଦ୍ୱୟ ଅଛି, ତାହାର ଜନ୍ମ ମରଣ ଏ ଭୌତିକ ଜଡ଼ ସ୍ଥୂଳ ଦେହ ପରି ଏହା ସଙ୍ଗେ ସଙ୍ଗେ ନୁହେ—ମନୁଷ୍ୟ ଦେହରେ କେତେ କେତେ ଲୁଗା ପିନ୍ଧି ଚିରି ତ୍ୟାଗ କଲା ପରି ଏହି ସୂକ୍ଷ୍ମ ଓ କାରଣଦେହ ସହିତ ଜୀବାତ୍ମା ସଂଯୁକ୍ତ ରହି କେତେ କେତେ ସ୍ଥୂଳ ଦେହକୁ ଜାତ ହୋଇ ମରିବାର ଦେଖୁଅଛୁ । ଏହା ଟିକିଏ ପଛକୁ ରଖାଯାଇଥାଉ । ଏଠାରେ ନାନାପ୍ରକାର ସନ୍ଦେହ ଥିବା ସଂସାରରେ ଦେଖାଯାଏ । କେହି କେହି କହନ୍ତି, ଜୀବାତ୍ମା ଦେହ ସଙ୍ଗେ ଜନ୍ମ, ଦେହର ମରଣରେ ମରଣ । କେହି କେହି କହନ୍ତି, ଦେହ ମରଣପରେ ମାଟିରେ ରହି ମାଟି ହୋଇଯାଏ, ମାତ୍ର ଜୀବାତ୍ମା ଦେହ ଛାଡ଼ି ରହେ । କୌଣସି ସମୟରେ ସେହି ଆତ୍ମା ପୁଣି ସେହି ଦେହକୁ ଧାରଣ କରି ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ନିକଟରେ ଆହ୍ୱାନକାଳରେ ଉପସ୍ଥିତ ହୁଏ । ସେହିଠାରେ ତାହାର ପୂର୍ବ-ଦେହ-କୃତ ପାପ ପୁଣ୍ୟ ଅନୁସାରେ ବିଚାର କରାଯାଇ ଅନନ୍ତ କାଳ ସକାଶେ ତାହାକୁ ସ୍ୱର୍ଗ ବା ନରକରେ ରହିବାକୁ ହୁଏ, ଇତ୍ୟାଦି ଇତ୍ୟାଦି । ଏସମ୍ବନ୍ଧେ ତର୍କ ବିତର୍କ ଆରମ୍ଭ କରିବା ଏ ଗ୍ରନ୍ଥର ଅଭିପ୍ରାୟ ନୁହେ । କାହିଁକି ? ନ ବ୍ରୂୟାତ୍ ସତ୍ୟମପ୍ରିୟଂ । ତେବେ ପ୍ରସଙ୍ଗାନୁରୋଧରେ ଦୁଇ ଏକ କଥା କହି ସେହି ତର୍କମୟ କଣ୍ଟକାଙ୍କିତ ଭୂମିକୁ ଶୀଘ୍ରପଦରେ ଅତିକ୍ରମ କରାଯାଇଥାଉ—ଯେଉଁ ମତରେ ଦେହ ସହିତ ଆତ୍ମାର ଜନ୍ମ ଏବଂ ଦେହର ବିନାଶରେ ଆତ୍ମାର ବିନାଶ, ସେହି ମତରେ ଦେହାବସ୍ଥାନର ପୂର୍ବେ ବା ପରେ ଆତ୍ମାର ଅସ୍ତିତ୍ୱ ଅସ୍ୱୀକାର୍ଯ୍ୟ ଅର୍ଥାତ୍ ଆତ୍ମା ଦେହରୁ ସ୍ୱତନ୍ତ୍ର କୌଣସି ପଦାର୍ଥବିଶେଷ ନୁହେ, ତାହା ଯେପରି ଦେହର ଗୁଣବିଶେଷ ।

ଦେହର ପାଞ୍ଚଭୌତିକ ଅଂଶ ପଞ୍ଚଭୂ ପ୍ରାପ୍ତ ହେଲେ ସେହି ପଞ୍ଚଭୂତର ସମଷ୍ଟିରୁ ଯେଉଁ ଜ୍ଞାନରୂପକ ଗୁଣ (ଆତ୍ମା) ସବୁ ଜାଣୁଥିଲା ତାହା ବିଲୁପ୍ତ ହେଲା, ଆଉ କଣ୍ଟା ଚିହ୍ନିବାର କାହିଁ ଦେଖାଯାଉନାହିଁ ବା ଜାଣିବା ଉପାୟ ନାହିଁ । ତେବେ ଆନୁମାନିକ ବିଶ୍ୱାସକୁ ସ୍ଥାନ ଦିଆଯିବ କାହିଁକି ? ଏଥିରେ ଏତିକି ମାତ୍ର କୁହାଯାଇପାରେ ଯେ—ଦେହକୁ ବା ଦେହରେ ଯେଉଁ ଜ୍ଞାନ ଜାଣୁଅଛି ସେ କିଏ ? ତାହା ଅହଂବୋଧାକାର ଅର୍ଥାତ୍ 'ମୁଁ' ରୂପରେ ତାହା ଦେହ ବା ସଂସାରକୁ ଜାଣୁଅଛି । ଅର୍ଥାତ୍ ଦେହ ଏବଂ ସଂସାର ଜ୍ଞେୟ ଏବଂ ସେ ଜ୍ଞାତା – ଜ୍ଞାତା ଆଉ ଜ୍ଞେୟ ଏକ ହୋଇ ନ ପାରେ, ପୁଣି ଜ୍ଞାନ ଯଦି ଦେହର ଗୁଣ ହୁଏ ତେବେ ଗୁଣ ତ ପଦାର୍ଥରୁ ଅଲଗା ନୁହେଁ । ପଦାର୍ଥ ଥିବାଯାଏ ତାହାର ଗୁଣ ରହିଥିବ । କର୍ପୂର ଥିବାଯାଏ ତାହାର ବାସ ଗୁଣ ରହିଥିବ, କନ୍ଦ ଥିବାଯାଏ ତାହାର ମଧୁର ଗୁଣର ବିଲୋପ ଅସମ୍ଭବ । ଗୁଣ ମଧ୍ୟ 'ସ୍ୱ' 'ପର' ପ୍ରକାଶକ ନୁହେଁ, ତାହା ଜ୍ଞେୟର ଅନ୍ତର୍ଗତ ଗୁଣକୁ ମୁଁ ଜାଣିଲି ବା ଅନୁଭବ କଲି ବୋଲି ଏପରି ଅହଂକାରାତ୍ମକ ଜ୍ଞାନଦ୍ୱାରା ଗୁଣ ପ୍ରକାଶିତ ହୁଏ । ଯାହା ହେଉ ଏ ସ୍ଥଳେ ଦେହ ଶବାକାରରେ ଥାଉଁ ଥାଉଁ ତାହାର ଜ୍ଞାନରୂପ-ଗୁଣ କୁଆଡ଼େ ଗଲା ? ଯଦି କୁହାଯାଏ ଦେହସ୍ଥ ରକ୍ତ, ମଜ୍ଜା, ବୀର୍ଯ୍ୟ କିମ୍ବା ମସ୍ତିଷ୍କର ସେ ଜ୍ଞାନଗୁଣ ମଲାପରେ ଏସବୁ ସୂକ୍ଷ୍ମରସାତ୍ମକ ପଦାର୍ଥ ଶୁଷ୍କ ହୋଇ ଅସ୍ତିତ୍ୱହୀନ ହେଲାରୁ ଜ୍ଞାନ ଧ୍ୱଂସ ହେଲା, ଆମ୍ବ ବା ଲେମ୍ବୁ ପ୍ରଭୃତି ଆମ୍ଳର ସକାଶେ ଯେତେ ଶୁଖିଲେ ଅମ୍ଳ ଗୁଣ ଥାଏ । ତେବେ ମସ୍ତିଷ୍କ ପ୍ରଭୃତି ତ ଜ୍ଞେୟ – ଅହଂ ବା ମୁଁ ଆଗ ଠିକ୍ ରହିଥିବାରୁ ସିନା ପରେ ମସ୍ତିଷ୍କ ଇତ୍ୟାଦି ଜ୍ଞେୟରୂପେ 'ମୋ' ଦ୍ୱାରା ନିରୂପିତ ହେଲା । 'ମୁଁ' ପଦାର୍ଥ ମସ୍ତିଷ୍କ ନୁହେଁ । ମସ୍ତିଷ୍କ ଚକ୍ଷୁରେ ବା ଯନ୍ତ୍ର ସାହାଯ୍ୟରେ ଦେଖାଯାଇ ପାରେ, ମାତ୍ର ଚକ୍ଷୁ ବା ମନ କିମ୍ବା ଯନ୍ତ୍ରାଦିକୁ 'ମୁଁ' ଜାଣି ସ୍ଥିର କରୁଅଛି । 'ଆଗ ମୁଁ' ସର୍ବପ୍ରକାର ଜ୍ଞାତୃତ୍ୱର ପୂର୍ବବର୍ତ୍ତୀରୂ ମୋର ଅଛି । ଜ୍ଞାତା ସର୍ବପ୍ରକାର ଜ୍ଞାନର ଆଦିମ ସ୍ଥାନ ଅଧିକାର କରି ରହିଅଛି । ପୁଣି ଅହଂବୋଧ 'ମୁଁ' ଶବ୍ଦଟି ନୁହେଁ । ଏହା ବର୍ଣ୍ଣାତ୍ମକ । ମୁଁ ବା ଅହଂ କିମ୍ବା ହଂ ଇତ୍ୟାଦି ଭାଷାନ୍ତରିତ ଶବ୍ଦ । 'ମୁଁ' ଶବ୍ଦଟି ଅହଂବୋଧ ପଦାର୍ଥର ଜ୍ଞାପକ ମାତ୍ର, ତାହା ଆତ୍ମାକୁ ଲକ୍ଷ୍ୟ କରୁଅଛି; ମାତ୍ର ତାହା ଆତ୍ମା ନୁହେଁ, ଆତ୍ମା ତାହାର ଜ୍ଞାତା । ମୁଁ ଶବ୍ଦ ଉଚ୍ଚାରିତ ହେବା ପୂର୍ବରୁ ତାହା ଆଗ ମନରେ ସ୍ଥିର କରାଯାଏ । ପରେ ଉଚ୍ଚାରିତ ହୁଏ, ମାତ୍ର ମନ ମୁଁ କହିବା ଆଗରୁ ଏବଂ ମୁଁ ବୋଲି ଉଚ୍ଚାରଣ କରୁଥିବା ସଙ୍ଗେ ସଙ୍ଗେ 'ଅହଂବୋଧ' ସମଭାବେ ବିରାଜ କରୁଅଛି । ଏହା ବର୍ଣ୍ଣନାତ୍ମକ କି ଶବ୍ଦାତ୍ମକ କିମ୍ବା ବର୍ଣ୍ଣାତ୍ମକ ନୁହେଁ, ଅଥବା ମନନାତ୍ମକ ବି ନୁହେଁ, ହେବା ଦୁରୂହ ଅଟେ । ଅହଂବୋଧ ପଦାର୍ଥର ଦ୍ୱୈତ ଅସମ୍ଭବ । ତାକୁ ଯାହା ବୋଲି ସ୍ଥିର କର, ସେ ବସ୍ତୁତଃ ତହିଁରୁ ଅର୍ଥାତ୍ ତଦ୍ରୂପ ସ୍ଥିରୀକୃତ ବସ୍ତୁରୁ ପୃଥକ୍ ଓ ତହିଁର ଜ୍ଞାତା; ଏହା ଦ୍ରବ୍ୟକୁ ଦ୍ରବ୍ୟ ବୋଲି ସ୍ଥିର-କରେ ଓ ତହିଁର ଗୁଣକୁ ଗୁଣ ବୋଲି ଜାଣେ । ଏହିପରି କେତେ କେତେ ଗୁଣମୟ ଦ୍ରବ୍ୟକୁ ସେ ସବୁବେଳେ ଜାଣି ଜାଣି ତାହାସବୁ ତ୍ୟାଗ କରି କରି ସେ ସର୍ବାବସ୍ଥାରେ ଏକ ଅହଂବୋଧାକାରରେ ସର୍ବଦା ରହିଅଛି । ଶବ୍ଦଜ୍ଞାନ, ସ୍ପର୍ଶଜ୍ଞାନ ଇତ୍ୟାଦିରେ ମସ୍ତିଷ୍କ

ଗୁଳନା କରାଯାଇପାରେ, ମାତ୍ର 'ଅହଂବୋଧ' କାହାଦ୍ୱାରା ଗୁଳିତ ହେଉନାହିଁ । ସେ ସର୍ବପ୍ରକାର ଗୁଳନାର ସାକ୍ଷୀ ବା ଜ୍ଞାତା, ଆଉ ଦେହ ନାନାକାର ବିଶିଷ୍ଟ—ଅଥଚ ସର୍ବପ୍ରକାର ଦେହରେ ଗୁଣ ନାନାପ୍ରକାରରେ ଥାଇପାରେ ମାତ୍ର 'ଅହଂବୋଧ' ସବୁ ପ୍ରକାର ଦେହରେ ସର୍ବାବସ୍ଥାରେ ଏକ ଅପରିବର୍ତ୍ତନୀୟ ଭାବରେ ରହିଅଛି । ଅତଏବ ଦେହର ବିକାରରେ ତଦ୍ରଷ୍ଟା ଆତ୍ମାର ବିକାର ନାହିଁ । ଚର୍ବିତଚର୍ବଣ ଏହିଠାରେ ଶେଷ ହେଉ ।

ଆଉ ଅନ୍ୟାନ୍ୟ ମତରେ ଆତ୍ମାର ଅସ୍ତିତ୍ୱ ସ୍ୱୀକାର କରାଯାଏ । ମାତ୍ର ଜନ୍ମ-ମରଣାଦି ବ୍ୟବସ୍ଥା ସମ୍ବନ୍ଧରେ ବହୁ ପ୍ରକାର ମତଭେଦ ଦୃଷ୍ଟ ହୁଏ । ଏଥିର କାରଣ ଏହି ଯେ — ମନେ କରାଯାଉ ଆକାଶ-ପୁଷ୍ପ କେହି ଦେଖିନାହିଁ । ତର୍କଭୂମିରେ ଗୁରିକଥା ତ କହିବାକୁ ହୁଏ, ସେ ସକାଶେ କିଏ କହିବ ଆକାଶପୁଷ୍ପ ନୀଳବର୍ଣ୍ଣ, କିଏ କହିପାରେ ଧଳା ବା କଳା ବର୍ଣ୍ଣ ଇତ୍ୟାଦି । ଏହା ବାକ୍‌ମୟ କ୍ରୀଡ଼ାମାତ୍ର, ଏହା ବୋଲି ଆକାଶପୁଷ୍ପ କେହି ଦେଖିନାହିଁ, ଆକାଶକୁ ଜାଣି ଯୁକ୍ତିତର୍କ ବା ଅନୁମାନାଦିରେ ଆକାଶପୁଷ୍ପର ବର୍ଣ୍ଣ ବିଷୟରେ କଥା ବଢ଼ାଇଲେ ଆକାଶପୁଷ୍ପ ବା ତହିଁର ବର୍ଣ୍ଣାଦି କିଛିମାତ୍ର ନିରୂପିତ ହୋଇ ପାରିବା ଅସମ୍ଭବ । ସେହିପରି ଆତ୍ମତତ୍ତ୍ୱଜ୍ଞାନ ବଡ଼ ଦୁର୍ଜ୍ଞେୟ, ତାହା ଠିକ୍ ଉପଲବ୍ଧି କରିବା ସହଜସାଧ୍ୟ ନୁହେ; ବରଂ ଏକପ୍ରକାର ଅସାଧ୍ୟ ଅଟେ ।

ସେହି କାରଣରୁ ଆତ୍ମା ସମ୍ବନ୍ଧୀୟ ଜନ୍ମମରଣାଦି ବ୍ୟବସ୍ଥାର ବିଗୃରରେ ନାନା ପ୍ରକାର ମତଭେଦ ଦୃଷ୍ଟ ହେବା ଘଟିଥାଏ । ତେବେ ମୂଳ ପଦାର୍ଥକୁ ଠିକ୍ ରୂପେ ସ୍ଥିର ନ କରି ତାହାର ଅସ୍ତିତ୍ୱ ସମ୍ବନ୍ଧରେ ହେଉ ବା ଆକାର ପ୍ରକାର କିମ୍ବା ଜନ୍ମମରଣାଦି ସମ୍ବନ୍ଧରେ ହେଉ, ଅଥବା ଇହକାଳ ପରକାଳ ସମ୍ବନ୍ଧରେ ହେଉ, ଯେ କୌଣସି ସମ୍ବନ୍ଧରେ ତର୍କ ବିତର୍କ ବା ବିଗୃରାଦି କଲେ କିଛିମାତ୍ର ଫଳଲାଭର ସମ୍ଭାବନା ନାହିଁ; ପୁଣି ପଦାର୍ଥ ନିଶ୍ଚିତ ହେଲେ ତତ୍ସମ୍ବନ୍ଧୀୟ ସର୍ବପ୍ରକାର ବ୍ୟବସ୍ଥା ସହଜରେ ସ୍ୱତଃ ନିରୂପିତ ହୋଇ ଗଡ଼ିବ, ଅତ ଏବ ଦିଗ-ବିଦିଗଶୂନ୍ୟ ଅଦୃଶ୍ୟସୀମ ବାଲୁକାମୟ ମରୁ-ଭୂମିରେ ବା ତଦ୍ରୂପ ଅରଣ୍ୟରେ ପରିଭ୍ରମଣ କଲେ ବନ୍ଧ୍ୟା ପୁତ୍ର ପ୍ରସବ କରିପାରିବ ନାହିଁ, ସୁତରାଂ ଏସବୁ ତର୍କାଦିରେ ସମୟ ନଷ୍ଟ କରିବା ବୃଥା । ଏବେ ପ୍ରକୃତ ପ୍ରସ୍ତାବ ଆଡ଼େ ଅଗ୍ରସର ହେବା ।

ଜନ୍ମ ସମ୍ବନ୍ଧରେ ସାଧାରଣତଃ ଦେଖାଯାଏ—ଭୂମିଷ୍ଠ ପୂର୍ବରୁ ଦେହ ମାତୃ-ଗର୍ଭରେ ଥାଏ । ସେଠାରେ କି ପ୍ରକାରେ ବା କାହାଦ୍ୱାରା ଏ ଦେହର ନିର୍ମାଣକ୍ରିୟା ସମ୍ପାଦିତ ହୁଏ ତାହା ଅଦୃଶ୍ୟ ଓ ଅଗୋଚର । ପିତୃବୀର୍ଯ୍ୟ ଏ ଦେହର ଉପାଦାନ । ଏହାହିଁ ମାତୃଗର୍ଭସ୍ଥ ଔପାଦାନିକ ପଦାର୍ଥ ସହିତ ଯୁକ୍ତ ହୋଇ ଦେହାକାରରେ ପରିଣତ ହୁଏ । ଏହି ପିତୃଜ ଓ ମାତୃଜ ଉପାଦାନଦ୍ୱୟର ସଂଯୋଗ ମୁହୂର୍ତ୍ତ ହିଁ ଏ ଦେହର ଆଦି ଜନ୍ମ ମୁହୂର୍ତ୍ତ । ଗଛର ମଞ୍ଜି ଯେପରି କ୍ଷେତ୍ରସ୍ଥ ହେଲେ ତାହା କ୍ଷେତ୍ରର ଯଥା

ଊପାଦାନକ ଅଂଶ ଗ୍ରହଣ କରି ବୃକ୍ଷରୂପ ଧାରଣ କରେ, ସେହିପରି ପିତୃବୀର୍ଯ୍ୟ ଦେହର କାରଣ, ଏଥିରେ ଅହଂକାରମୂଳକ ଜ୍ଞାନ-ବିଶିଷ୍ଟ ଜୀବ, ସୂକ୍ଷ୍ମ ଓ କାରଣଦେହ ସହିତ ଅଭେଦଭାବରେ ବିଜଡ଼ିତ ରହିଥାଏ । ସର୍ବଦା ଦେହାକାର ସହିତ ଜୀବ ଯେପରି ଅଭେଦଭାବରେ ଓ ଅଭେଦଜ୍ଞାନରେ ଏହି ଦେହାକାର 'ମୁଁ' ବୋଲି ବିଜଡ଼ିତ ଥାଏ, ସେହିପରି ଦେହାକାରବିଶେଷ ସଙ୍ଗେ ଏହି ଜୀବ ସଂଯୁକ୍ତ ରହି ତଦ୍ରୂପକାରେ ବୀର୍ଯ୍ୟରେ ଅଭେଦ୍ୟ ଜ୍ଞାନ ସ୍ଥାପନ କରି ଆପଣାକୁ ବୀର୍ଯ୍ୟବିଶିଷ୍ଟ କରି ଦେଖେ । ଏହି ଦେହାକାର ଜ୍ଞାନ, ବୀର୍ଯ୍ୟ ଏବଂ ଜୀବ, ଏ ସମସ୍ତେ ଏକତ୍ର ହୋଇଥିବାରୁ ମାତୃଗର୍ଭରେ ପ୍ରାକୃତିକ ବିଧାନାନୁସାରେ ପ୍ରକୃତିର ନିୟମାଧୀନରେ ପ୍ରକୃତିଦ୍ୱାରା ଦେହ ସୃଷ୍ଟି ହୁଏ । ଏ ସ୍ଥଳେ ବୀର୍ଯ୍ୟର ପ୍ରକୃତ ପଦାର୍ଥଗତ ଅର୍ଥ ଯାହା, ତଦନୁସାରେ ବୁଝିବାକୁ ଗଲେ ବୀର୍ଯ୍ୟ ବଡ଼ ସୂକ୍ଷ୍ମତମ ଓ ଅଦୃଶ୍ୟ ପଦାର୍ଥ । ଯନ୍ତ୍ର ସାହାଯ୍ୟରେ ବା ଲୌକିକଚକ୍ଷୁରେ ବୀର୍ଯ୍ୟ ବୋଲି ଯାହା ନିର୍ଦ୍ଦେଶ କରାଯାଏ, ତାହା ବୀର୍ଯ୍ୟର ଠିକ୍ ଅବିକୃତ ଅବସ୍ଥା ନୁହେ, ତାହା ବୀର୍ଯ୍ୟର ବୈକାରିକ ସ୍ଥୂଳାବସ୍ଥା । ତଦ୍ରୂପ ସ୍ଥୂଳତାପ୍ରାପ୍ତ ହେବା ଆଗରୁ ବୀର୍ଯ୍ୟ ଯେ ଅବସ୍ଥାରେ କେବଳ ସୂକ୍ଷ୍ମ ଓ କାରଣଦେହବିଶିଷ୍ଟ ଜୀବାତ୍ମା ସହିତ ଏକ ହୋଇ କରିଥାଏ, ସେ ଅବସ୍ଥା ବୀର୍ଯ୍ୟର ନିଜ ଅବିକୃତ ଅବସ୍ଥା । ଏହା ମନପରି ଏକପ୍ରକାର ସୂକ୍ଷ୍ମ, ଏହାର ନାମାନ୍ତର ବିନ୍ଦୁ । ଜୀବ ତଦ୍ରୂପ ଅବିକୃତ ବୀର୍ଯ୍ୟବିନ୍ଦୁ ସଙ୍ଗ ହେବାଦ୍ୱାରା ଦେହାକାର ସ୍ମରଣ କରି ସେହି ସ୍ମରଣାନୁଯାୟୀ ବୀର୍ଯ୍ୟ ଅର୍ଥାତ୍ ବିନ୍ଦୁ ଓ ଜୀବ ଉଭୟେ ଏକଦେହାକାର-ବିଶିଷ୍ଟ ହୋଇ ପଡ଼ନ୍ତି । ସେହି ହେତୁ ଜୀବର ଲିଙ୍ଗଦେହସ୍ଥ ସପ୍ତଦଶ ଅବୟବଯାକ ବିନ୍ଦୁ ବା ବୀର୍ଯ୍ୟରେ ପ୍ରତିଫଳିତ ହୋଇ ତତ୍କାର୍ଯ୍ୟ କାର୍ଯ୍ୟଭୂତ ସ୍ଥୂଳଦେହରେ ଯଥାଯଥ ସ୍ଥାନାଧିକାର କରି ଚକ୍ଷୁକର୍ଣ୍ଣାଦି, ହସ୍ତପଦାଦି ଓ ପ୍ରାଣାପାନାଦିର ସ୍ଥାନମାନଙ୍କରେ ଯଥାକ୍ରମେ ଚକ୍ଷୁରିନ୍ଦ୍ରିୟାଦିରେ ପଞ୍ଚଜ୍ଞାନେନ୍ଦ୍ରିୟ, ହସ୍ତାଦି ପଞ୍ଚରେ ପଞ୍ଚକର୍ମେନ୍ଦ୍ରିୟ, ଓ ପ୍ରାଣାଦି ପଞ୍ଚକରେ ପଞ୍ଚସୂକ୍ଷ୍ମେନ୍ଦ୍ରିୟ ପ୍ରାଣରୂପେ ଅବସ୍ଥିତ ରହି ମୃଣ୍ମୟପିଣ୍ଡାକାର ଦେହକୁ ଇନ୍ଦ୍ରିୟ-ଦ୍ୱାରବିଶିଷ୍ଟ କରି ପ୍ରକାଶ କରିଅଛନ୍ତି । ଆକାରର ପଦାର୍ଥଗତ ଜ୍ଞାନ ଏଠାରେ ଯଥାର୍ଥ ରୂପେ ଉପଲବ୍ଧି କରାଯାଉ ।

ଦେହ ଓ ଦେହର ଆକାର ଅର୍ଥାତ୍ ଆକାର ଏବଂ ଆକାରବାନ୍—ଏ ଉଭୟେ ଏକ, ପୁଣି ଏକ ନୁହନ୍ତି ଦୁଇ । ଏହା ଶୁଣିଲା ମାତ୍ରକେ ଯୁକ୍ତିବିରୁଦ୍ଧ ବୋଲି ମନେ କରାଯାଇପାରେ । ତେବେ ଏହା କିପରି ସମ୍ଭବ ? ଦେଖାଯାଉ ଆମ୍ଭେ ଆମ୍ଭ ପିତୃଦେବଙ୍କୁ ଦେଖିଥାଇଁ । ତାଙ୍କ ଆକାରର ପ୍ରତିବିମ୍ବ ରଖିଥାଇଁ । ପିତୃଦେବ ଆମ୍ଭ ପାଖରେ ବର୍ତ୍ତମାନ ନାହାନ୍ତି, ଅର୍ଥାତ୍ ତାଙ୍କ ଦେହ ଆମ୍ଭେ ଦେଖିପାରୁ ନ ଥାଇଁ, ମାତ୍ର ତାଙ୍କର ଦୈହିକ ଆକାର ଆମ୍ଭ ଚିତ୍ତରେ ଅବିକଳ ଅଙ୍କିତ ଥିଲାପରି ଆମ୍ଭେ ତାଙ୍କୁ ସ୍ମରଣ କଲାକ୍ଷଣି ତାଙ୍କ ରୂପ ବା ଆକାର ଆମ୍ଭ ଜ୍ଞାନକୁ ଆସି ଯାଉଅଛି; ଅର୍ଥାତ୍ ପିତୃଦେବଙ୍କ ଆକାର ମନରେ ଆମ୍ଭେ ଦେଖିପାରିଲେହେଁ, ଅଥଚ ସେହି ଆକାର ଯେଉଁ ଦେହ ବା ଆକାରବାନ୍ ପଦାର୍ଥ ଅଟେ, ସେହି ଦେହ ବା ତଦ୍ରୂପ ଆକାରବାନ୍ ପିତୃଦେବ ତ ଆମ୍ଭ ଦୃଷ୍ଟିରେ

ଗୋଚର ହେଉନାହାନ୍ତି । ତେବେ ଏଠାରେ ଦେଖାଗଲା ଆକାର ଏବଂ ଆକାରବାନ୍ ଉଭୟ ଏକ ନୁହେ । ଆକାର ଚକ୍ଷୁ ସାହାଯ୍ୟ ବିନା କେବଳ ମନରେ ସ୍ମରଣାତ୍ମକ ଆକାରରେ ଦେଖାଯାଏ, ଆଉ ଆକାଶ ବା ଆକାରବାନ୍ ବସ୍ତୁକୁ ଚକ୍ଷୁ ସାହାଯ୍ୟରେ ମନ ଦେଖିବାକୁ ପାଏ । ଆକାଶର ଦର୍ଶନ ଜ୍ଞାନ, ମନ ଏବଂ ଚକ୍ଷୁ ଉଭୟର ଯୋଗରେ ସଂଘଟିତ ହୁଏ, ଆଉ (ଆକାଶ ସମ୍ବନ୍ଧୀୟ) ଆକାରର ଜ୍ଞାନ କେବଳ ମନରେ ହିଁ ହୋଇପାରିଥାଏ । ଆକାଶ ଏବଂ ଆକାରର ଏହି ପ୍ରକାର ପ୍ରଭେଦ ଲକ୍ଷିତ ହୁଏ, ମାତ୍ର ପୁଣି ଦେଖିବାକୁ ହେବ—ଆକାଶକୁ ଦେଖିଲାବେଳେ ଆକାଶ ଏବଂ ଆକାର ଉଭୟେ ଏକାଧାରରେ ଏକ କାଳରେ ଉପଲବ୍ଧ ହୋଇଥାଆନ୍ତି । ଆକାରମାତ୍ର ମାନସ-ପ୍ରତ୍ୟକ୍ଷ ହେଲାବେଳେ ଆକାଶ ସେଠାରେ ନ ଥାଇପାରେ, ସ୍ୱପ୍ନରେ ଆକାରର ଦେଖା ହୁଏ, କିନ୍ତୁ ଆକାଶର ଦେଖା ହୁଏ ନାହିଁ । ତେବେ ଆକାର ଏବଂ ଆକାଶ ପୃଥକ୍ । ମୃତ ଲୋକର ଆକାର ମନରେ ଦେଖାଯାଏ, କିନ୍ତୁ ମୃତ ଲୋକକୁ କି କେବେ କେହି ଆଖିରେ ଦେଖିପାରେ ? ଏଥିରୁ ଜଣାଗଲା ଆକାର ସହିତ ଆକାଶର ଭେଦ ଥିଲେ ମଧ୍ୟ ମନ କେବଳ ଆକାରକୁ ଦେଖି ଦେଖି ଏହି ଭାବୁଥାଏ ଯେପରି ସେ ଆକାର ସହିତ ଆକାଶକୁ ଏକତ୍ର ଏକ କରି ଦେଖୁଅଛି । ଏଣୁକରି ସ୍ୱପ୍ନ ସତ୍ୟପରି ପ୍ରତୀୟମାନ ହୁଏ । ବିଶେଷ କରି ଦେଖିବାକୁ ଗଲେ ଆକାଶ ସହିତ ମନର ସଂଯୋଗ କଦାଚ ହେଉନାହିଁ, କାରଣ ମନ ସୂକ୍ଷ୍ମ ଓ ଆକାଶ ସ୍ଥୂଳ । ବିଜାତୀୟ ବସ୍ତୁ ମଧ୍ୟରେ ସଂଯୋଗ ବା ମିଶ୍ରଣ ଅସମ୍ଭବ । କେବଳ ଆକାର ସହିତ ମନର ସଂଯୋଗ ଘଟୁଅଛି । ମନର ଏପରି ଗୁଣ ଯେ ସେ ଆକାର ସହଯୋଗେ ତଦାକାରାକାରିତ ହେଉଅଛି, ଯେହେତୁ ଉଭୟେ ସୂକ୍ଷ୍ମ । ଆତ୍ମା କ୍ରୀଡ଼ା ଆସକ୍ତିରେ ରୂପ ବା ଆକାର ମାତ୍ରକୁ ଗ୍ରହଣ କରେ । ରୂପ ତାହାର ଧର୍ମାନୁସାରେ ରୂପବାନ ଆକାରରେ ପ୍ରତୀତ ହୁଏ । ଏହିରୂପେ ଏହି ଅରୂପ-ଅଦେହ, ବୋଧରୂପ ଆତ୍ମା, ଅନାଦି ଅବିଦ୍ୟାଧୀନ ଦେହାତ୍ମାଭିମାନବଶତଃ ଆପଣାକୁ ସର୍ବଦା ସାକାର ଦେହ ଓ ଦେହୀ ବୋଲି ଦର୍ଶନ କରିଅଛନ୍ତି ।

ଏହିରୂପେ ଜୀବ ଦେହାକାରିତ ଜ୍ଞାନ ଓ ବୀର୍ଯ୍ୟ ଏକତ୍ର ହେବାରୁ ଦେହର ସଂଘଟନ । ଯେପରି ମନୁଷ୍ୟର ପ୍ରତିବିମ୍ବ ଫଟୋଗ୍ରାଫିକ ଯନ୍ତ୍ରଦ୍ୱାରା ଖଣ୍ଡେ କାଗଜରେ (ଯହିଁରେ ପାରଦ ବା ଶମ୍ଭୁବୀର୍ଯ୍ୟର ସମ୍ପର୍କ ଥାଏ) ଠିକ୍ ଆକାରପରି ଗଠିତ ହୋଇ ସ୍ୱତନ୍ତ୍ରରୂପରେ ଦେଖାଯାଇଥାଏ; ବୀର୍ଯ୍ୟ ବା ବିନ୍ଦୁସ୍ଥ ଜୀବ ସକାମ ପ୍ରେମ ସହକାରେ ନାରୀରୂପାକାରରେ ଅଭିଭୂତ ହୋଇ ସ୍ୱୀୟ ନିରାକାର ରୂପକୁ ବିସ୍ମରଣ କରି ଯେତେବେଳେ ନାରୀ-ରୂପାକାରରେ ଅଭେଦଭାବେ ସଂଯୁକ୍ତ ହୋଇଯାଏ, ସେତିକିବେଳେ ଜୀବ, ସୂକ୍ଷ୍ମ ଓ କାରଣ ଦେହ ସହିତ ଭାବୀ ସ୍ଥୂଳ ଦେହାକାରରେ ପରିଣତ ହୋଇ ସ୍ୱସ୍ଥାନରୁ ସ୍ଖଳିତ ହେବାରେ ମାତୃଗର୍ଭସ୍ଥ ପଦ୍ମକୋଷରେ ନିପତିତ ହୁଏ । ସେହି ମାତୃଗର୍ଭରେ ନିୟମିତ ସମୟ ନିବାସ କରି ପରେ ଇନ୍ଦ୍ରିୟାଦି ସମନ୍ୱିତ-ଦେହ-ବିଶିଷ୍ଟ ହୋଇ ଭୂମିଷ୍ଠ ହୁଏ ।

ଏହା ସ୍ଥୂଳଦେହର ଜନ୍ମ । ଜୀବାତ୍ମା ଉପସ୍ଥିତ ସ୍ଥୂଳ ଦେହରେ ଯେପରି ସୂକ୍ଷ୍ମ ଓ କାରଣ ଦେହ-ସହିତ ହୋଇ ବିରାଜ କରିଅଛି, ସେହିପରି ବୀର୍ଯ୍ୟରେ ଏବଂ ମାତୃଗର୍ଭାବସ୍ଥାରେ ରହିଅଛି । ବୀର୍ଯ୍ୟ ଜୀବ ସଙ୍ଗ ହେତୁ ମାତୃଗର୍ଭରେ ଦେହାକାରରେ ପରିଣତ ହେଉଅଛି । ଜୀବ, ସୂକ୍ଷ୍ମ ଓ କାରଣ ଦେହ ସହିତ ସଦା ବିରାଜମାନ । ଏହିରୂପ ସୂକ୍ଷ୍ମ-କାରଣ ଦେହାତ୍ମକ ସୂକ୍ଷ୍ମ-ସ୍ୱରୂପ ଜୀବର ଏତଦ୍ରୂପ ସୂକ୍ଷ୍ମ କାରଣ ଦେହାତ୍ମାଭିମାନ ଓ ତଦ୍ରୂପଭାବର ଆଦି ବା ଜନ୍ମ ଅନିଶ୍ଚିତ, ଆଉ ମରଣ ଅର୍ଥାତ୍ ଏହି ସୂକ୍ଷ୍ମ ଓ କାରଣ ଦେହତ୍ୟାଗର ସମୟ ମଧ୍ୟ ଅନିଶ୍ଚିତ । ଆତ୍ମା ଏହି ସୂକ୍ଷ୍ମ ଓ କାରଣ ଦେହ ସହିତ ଅଭେଦଭାବେ ସର୍ବଦା ସଂଯୁକ୍ତ ରହି ଅସୀମ ଅପାରକାଳ ପ୍ରକୃତିର ସୂକ୍ଷ୍ମରାଜ୍ୟରେ ଅର୍ଥାତ୍ ଅନ୍ତରିକାଶ ବା ଅଜ୍ଞାନାକାଶ ଗର୍ଭରେ ଭ୍ରମଣ କରୁଅଛି । ଜୀବର ସୂକ୍ଷ୍ମ ଦେହ ମଧ୍ୟରେ ସ୍ଥୂଳ ଦେହର ଆକାର ସଂସ୍କାରରୂପେ ନିହିତ ଥାଇ ତଦ୍ଭାବ ଅର୍ଥାତ୍ ତଦ୍ରୂପ ସ୍ଥୂଳ ଦେହାକାର ଅଭିମାନ ସଂସ୍କାରଦ୍ୱାରା ପୂର୍ବୋକ୍ତ ସୂକ୍ଷ୍ମ ବୀର୍ଯ୍ୟକୁ ଜୀବ ଦୈବୀପ୍ରକୃତିର ନିୟମାନୁସାରେ ଦର୍ଶନ କରି ସେହି ବୀର୍ଯ୍ୟରେ ସଂଯୋଜିତ ହୁଏ । ସେହିଠାରୁ ସ୍ଥୂଳ ଦେହର ଅପେକ୍ଷା ଆରମ୍ଭ ହୁଏ, ସେହି ଆରମ୍ଭରୁ ସ୍ଥୂଳ ଦେହର ଜନ୍ମ । ତେବେ ଜୀବ, ପିତୃବୀର୍ଯ୍ୟ ଆଶ୍ରୟ କରି ରହିଥିବା ସମୟରେ ପିତୃ-ଆତ୍ମା ସହିତ ଅଭେଦଭାବରେ ଏକାତ୍ମା ହୋଇଥାଏ, ଅର୍ଥାତ୍ ପିତା ପୁତ୍ରର ଭେଦ ଆତ୍ମତଃ ଜାତ ହୋଇ ନ ଥାଏ । ଆତ୍ମାର ଆତ୍ମାର ଭେଦ ନାହିଁ । ଯେପରି ଏକ ଆକାଶ ଘଟମଧ୍ୟସ୍ଥ ଥାଉ ବା ଶରାବାଦି ମଧ୍ୟସ୍ଥ ଥାଉ, ତାହା ଏକ । ସୂକ୍ଷ୍ମ-ତମ ବସ୍ତୁର ଏହାହିଁ ବିଶେଷ ଧର୍ମ । ସେହି ଅଭେଦ-ଭାବ-ବିଶିଷ୍ଟ ଆତ୍ମା ପିତୃଦେହରେ ଥିଲାବେଳେ ପୁତ୍ର ଜନ୍ମ ଅପେକ୍ଷାରେ କୁହାଯିବ ସେହି ଆତ୍ମା ନିଜକୁ ପୁତ୍ରରୂପରେ ଜନ୍ମ ହେବା ଦେଖୁଅଛି, ଯେପରି 'ଆତ୍ମା ବୈ ପୁତ୍ର ନାମାସି' । ପୁଣି ପୁତ୍ର ଦେହରେ ଥାଇ ପିତୃଦେହରେ ମରଣ ଦେଖୁଅଛି, ଅର୍ଥାତ୍ ଏକଇ ଆତ୍ମା ଆପଣାର ଜନ୍ମ ମରଣ ଏ ଉଭୟ ବ୍ୟାପାରକୁ ଦେହଭେଦରେ ଦର୍ଶନ କରୁଅଛି । ଏହିରୂପେ ଆତ୍ମା ଦେହର ଦ୍ରଷ୍ଟା ଓ ଦେହର ଜନ୍ମମରଣ ବ୍ୟାପାର ସେ ଦର୍ଶନ କରୁଅଛି, ଅର୍ଥାତ୍ ସ୍ଥୂଳଦେହର ଜନ୍ମ ବା ନାଶରେ ଆତ୍ମାର ଜନ୍ମମରଣ ଅସମ୍ଭବ ଅଟେ । ଏପରି ମରଣ ସମ୍ବନ୍ଧରେ ଯତ କିଞ୍ଚିତ୍ ଆଲୋଚନା କରାଯାଉ ।

ମରଣ କହିଲେ—ଯେତେବେଳେ ସ୍ଥୂଳ ଜଡ଼ଦେହରୁ ପ୍ରାଣବାୟୁ ଏକବାରେ ବହିର୍ଗତ ହୋଇ ପୁନଃ ପ୍ରବେଶ ନ କରେ, ଆଉ ଦେହ ପ୍ରାଣଶୂନ୍ୟ ହୋଇ ନିଶ୍ଚେଷ୍ଟ ଓ ନିଷ୍କ୍ରିୟ ଅବସ୍ଥା ପ୍ରାପ୍ତ ହୁଏ । କୌଣସି ପ୍ରକାରରେ ହେଲେ ଜ୍ଞାନ ବା କର୍ମେନ୍ଦ୍ରିୟମାନେ ଅକର୍ମଣ୍ୟ ହୁଅନ୍ତି । ଆଖିରେ ଦିଶେ ନାହିଁ, କାନରେ ଶୁଭେ ନାହିଁ, ହାତ ଗୋଡ଼ କାଠ ପରି ରହେ, ତାହାର ମରଣ ବୋଲି ବିବେଚିତ ହୁଏ । କୁହାଯିବ, ଏହା ଜଡ଼-ଦେହର ମରଣ । ଅଜ୍ଞତାବଶତଃ ଲୋକେ ମନେ କରନ୍ତି ଏହି ଜଡ଼ ଦେହ ଦେଖୁଅଛି, ଶୁଣୁଅଛି, ଚାଲୁଛି, ବୁଲୁଛି, ଲେଖୁଛି ବା ପଢ଼ୁଛି, ମାତ୍ର ଏହା ନୁହେଁ । ଜଡ଼ଦେହକୁ

ନିମିତ୍ତମାତ୍ର କରି ବାହାରେ ବାଡ଼େଇଲା ପରି ଯେ ଦେଖୁଥିଲା, ଶୁଣୁଥିଲା, ଚଳବୁଲ କରୁଥିଲା ବା ଲେଖାପଢ଼ାଦି କରୁଥିଲା, ସେହି ନିତ୍ୟସୂକ୍ଷ୍ମ କାରଣ ଦେହାଭିମାନୀ ଜୀବ ତାହାର ନିତ୍ୟ ସଙ୍ଗୀ ସୂକ୍ଷ୍ମ ଓ କାରଣ ଦେହକୁ ସଙ୍ଗେ ସଙ୍ଗେ ଘେନି ଜଡ଼ ଦେହରୁ ବାହାରି-ଗଲା । ଜଡ଼ ଦେହ ସବୁବେଳେ ଜଡ଼ ଓ ଜଡ଼ଧର୍ମାନୁସାରେ ସେ ସର୍ବଦା ନିଷ୍କ୍ରିୟ, ନିଶ୍ଚେଷ୍ଟ ଓ ଜ୍ଞାନଶୂନ୍ୟ । ଏହି ଜୀବ ବାହାରି ଗଲାରୁ ମଧ୍ୟ ଏ ଜଡ଼ ଦେହ ସେହିପରି ଯଥା-ତଥା ପ୍ରକାରେ ସେହି ଜଡ଼ । ତେବେ କଥା ଏତିକି ଯେ ଆତ୍ମାର ଅଧିଷ୍ଠାନରୂପ ଅନୁଗ୍ରହ ଥିବାଯାଏ ଏ ଜଡ଼ ଦେହ ଦୁର୍ଗନ୍ଧ ବା କଦାକାର ପ୍ରାପ୍ତ ହୁଏନାହିଁ; ଆଉ ଅନୁଗ୍ରହ ସତ୍ତ୍ୱ ବିଶେଷର ସମ୍ବନ୍ଧ, କାଷ୍ଠ ପାଦୁକା ବା ଯଷ୍ଟିପରି ଇତସ୍ତତଃ ନାନାପ୍ରକାରରେ ପୂଜିତ ହୁଏ । ଏ ଚନ୍ଦନାଦି ବା ସୁଗନ୍ଧ ସୌନ୍ଦର୍ଯ୍ୟାଦି ଜଡ଼ଦେହର ସ୍ୱକୀୟ ଗୁଣ ବା ଧର୍ମ ନୁହେ ।

ପ୍ରାଣବାୟୁ ବାହାରିଗଲାରୁ ମୃତ୍ୟୁ ଘଟିବା ଦେଖାଯିବାରେ ପ୍ରାଣକୁ ହିଁ ଆତ୍ମା କହିବା ଠିକ୍ ନୁହେ । କାରଣ ସ୍ୱପ୍ନାଦି ଅବସ୍ଥାରେ ପ୍ରାଣ ନାକ ବା ପାଟି ବାଟରେ ଗତାୟାତ କରିଥାଏ । କାନ ଖୋଲା ଥାଏ, ତେବେ ଶ୍ରବଣାଦି ଜ୍ଞାନ ନ ଥାଏ, କାହିଁକି ? ଏ ସବୁ ବିଷୟରେ ଅନେକ ଆଲୋଚନା ପୂର୍ବେ କରାଯାଇଅଛି, ଏବେ ଉପସ୍ଥିତ ବିଷୟର ବିଚାର କରାଯାଉ । ପୂର୍ବେ କୁହାଯାଇଅଛି, ପ୍ରାଣ ବାହାରିଯିବାର ନାମ ମରଣ, ତେବେ ପ୍ରାଣ ପ୍ରବେଶର ନାମ ଜନ୍ମ । ଏହା ଦେଖିବାକୁ ଗଲେ ପ୍ରାଣ ବହୁବାର ଦିନକ ମଧ୍ୟରେ ଯାଉଅଛି ଏବଂ ଆସୁଅଛି । ତେବେ ଦିନକ ମଧ୍ୟରେ ଜନ୍ମମରଣର ସଂଖ୍ୟା ନାହିଁ ।

ଯୌଗିକ ବା ଯୋଗମତରେ ଦିନକ ମଧ୍ୟରେ ପ୍ରାଣର ଗମନାଗମନ ସଂଖ୍ୟା ୨୧୬୦୦ ବାର । ଏ ଅନୁସାରେ ଦିନକ ମଧ୍ୟରେ ଏକୋଇଶ ହଜାର ଛଅଶତ ବାର ଜନ୍ମମରଣ-କ୍ରିୟା ଏ ଦେହରେ ସାଧିତ ହେଉଅଛି । ଦୌଡ଼ାଦୌଡ଼ି କରିବାରେ ଏବଂ କଳହାଦିରେ ମାତିଲେ ପ୍ରାଣର ଗତି ଅଧିକ ଚଞ୍ଚଳ ହେବାରୁ ଏତଦ୍ରୂପ ଯୌଗିକ-ମତର ଜନ୍ମମରଣ ସଂଖ୍ୟା ଅଧିକ ବଢ଼ିଯାଇଥାଏ । ଏଥିସକାଶେ ଦେହ ସ୍ଥିର ନିମିତ୍ତ ପଦ୍ମାସନାଦି ଦ୍ୱାରା ଦେହ ଅପ୍ତ କରାଯିବାର ବିଧାନ ନିର୍ଦ୍ଦିଷ୍ଟ ଅଛି । ପ୍ରାଣ ସ୍ଥିର ନିମିତ୍ତ ପ୍ରାଣାୟାମାଦି, ମନ ସ୍ଥିର ନିମିତ୍ତ ପ୍ରତ୍ୟାହାରାଦି ଏବଂ ସର୍ବବିଧ ସୁଖଶାନ୍ତି ଓ ସ୍ଥୈର୍ଯ୍ୟ ସମ୍ପା-ଦନ ନିମିତ୍ତ ଯମ, ନିୟମ, ଦମ ଓ ବ୍ରହ୍ମଚର୍ଯ୍ୟାଦି ଅବଲମ୍ବନୀୟ ବୋଲି ନିର୍ଦ୍ଦିଷ୍ଟ ଅଛି । ଏହା ସତ୍ୟର ସତ୍ୟ, ପରମ ସତ୍ୟ । ଆଜିକାଲି ଜଡ଼ବାଦ ଶିକ୍ଷା ଦୀକ୍ଷା ଓ ଆଦର୍ଶ ଏହି ଦୁର୍ଲଭ ଅମୂଲ୍ୟ ରତ୍ନକୁ ଘୋଡ଼ାଇ ରଖିବାର ବଡ଼ ପ୍ରୟାସ ପାଇଅଛି !!!

ନାସାରନ୍ଧ୍ର ବାଟେ ସର୍ବଦା ଯାତାୟାତ କରୁଥିବା ବାୟୁକୁ ପ୍ରାଣ ବୋଲି କୁହାଯାଏ, ମାତ୍ର ଏହା ଗୌଣ । ସୂକ୍ଷ୍ମ ଦେହର ଅଙ୍ଗବିଶିଷ୍ଟ ଯେଉଁ ସୂକ୍ଷ୍ମ ପଞ୍ଚପ୍ରାଣ, ତାହା ହିଁ ମୁଖ୍ୟ । ତାହା କ୍ରିୟାଶକ୍ତ୍ୟାତ୍ମକ ସଂସ୍କାର ରୂପେ ମନପରି ସୂକ୍ଷ୍ମ ପଦାର୍ଥ; ତାହା

ନାଳବାଟେ ବହୁଥିବା ଏବଂ ଦେହର ଅଙ୍ଗ ପ୍ରତ୍ୟଙ୍ଗରେ ଚଳୁଥିବା ସାଧାରଣ ବାୟୁର ଦମ୍ପର ଚର୍ଜ୍ଜିରେ ମିଶି ସାଧାରଣ ବାୟୁକୁ ସ୍ଥୂଳପ୍ରାଣାକାରରେ ଚଳାଉଅଛୁ । ଜୀବନ୍ତ-ଦଶାର କର୍ମାଦି ବାହୁଲ୍ୟରୁ କାମକ୍ରୋଧାଦି ତାପଦ୍ୱାରା ଏବଂ ନାନାବିଧ ଜଟିଳ ଭାବାପନ୍ନ ମାନସିକ ଚିନ୍ତା ଓ ବିକ୍ଷେପପୂର୍ଣ୍ଣ ବିକାରାଦିରେ, ପୁଣି ବିଳାସିତା ଚରିତାର୍ଥୋପଯୋଗୀ ନାନାବିଧ ଅସ୍ୱାସ୍ଥ୍ୟକର ଖାଦ୍ୟପେୟ ଓ ପାପାତ୍ମକ ବେଗ ସମ୍ବେଗାଦି ବଶତଃ, ପ୍ରାଣଦଣ୍ଡ, ତାହାର ସ୍ୱାଭାବିକ ପ୍ରକୃତି ନିର୍ଦ୍ଦିଷ୍ଟ ଅବସ୍ଥାନରୁ ବଞ୍ଚିତ ହୋଇ କ୍ରମଶଃ ଧୀରେ ଧୀରେ ଅଜ୍ଞାତ ସ୍ୱରରେ ବେଗବାନ୍ ଗତିରେ ସଞ୍ଚାଳିତ ହେବାକୁ ବାଧ୍ୟ ହୁଏ । ଏତଦ୍ଦ୍ୱାରା ପ୍ରସୂତ ସମୂଳନକ୍ରିୟା କ୍ରମେ କ୍ରମେ ବୃଦ୍ଧିପ୍ରାପ୍ତ ହୋଇ ଏହା ଏକପ୍ରକାର ଦୁରଭ୍ୟାସରେ ପରିଣତ ହୁଏ । ଏହା ଜାଣିବାର ଉପାୟ ନାହିଁ । ଏହି ପ୍ରାଣଗୃଙ୍ଖଳା କ୍ରମେ ବର୍ଦ୍ଧିତ ହୋଇ ଯଥାସମୟେ ଶେଷମୁହୂର୍ତ୍ତରେ ଉପସ୍ଥିତ କରାଏ । ଦୁଷ୍ଟ ଲୋକ ଯେପରି ବେଗବତୀ ନଦୀ-ଜଳରେ କୁତୂହଳପ୍ରଦ ସନ୍ତରଣକ୍ରୀଡ଼ାରେ ରତ ହୋଇ କ୍ରମେ କ୍ରମେ ଏଭଳି ପ୍ରବଳତମ ସ୍ରୋତ ଆଡ଼କୁ ଆକର୍ଷିତ ହୋଇଯାଏ ଯେ ତହିଁରୁ ପ୍ରତିନିବୃତ୍ତ ହେବା ତାହାର ସାଧ୍ୟାତୀତ ହୋଇପଡ଼େ, ତହୁଁ ସେ ଭୟଙ୍କର ଗତିବିଶିଷ୍ଟ ଜଳାବର୍ତ୍ତରେ ପଡ଼ି ସନ୍ତରଣ କରିବାକୁ ଅକ୍ଷମ ହୁଏ, ଏବଂ ତାହାର ହସ୍ତପଦାଦି ଅବସନ୍ନ ହେତୁ ବ୍ୟାକୁଳ ଭାବରେ ଛଟପଟ ହୋଇ ପ୍ରାଣ ବିସର୍ଜ୍ଜନ କରେ, ସେହିପରି ପ୍ରାଣ କ୍ଷୋଭ ସମ୍ବନ୍ଧୀୟ ଦୁରଭ୍ୟାସଯୁକ୍ତ ଦ୍ରୁତଗତି ଦ୍ୱାରା ସର୍ବଦା ପ୍ରାଣ ନାନାଆଡ଼ର ତିର୍ଯ୍ୟକ୍ ଗତିରେ ସଙ୍ଘର୍ଷିତ ଓ ତତ୍ତତ୍‌କ୍ରମେ ଉତ୍ତପ୍ତ ଭାବ ପ୍ରାପ୍ତ ହେବାରୁ ସେହି ତାପ, ନାଡ଼ୀମାନଙ୍କୁ ତତାଇ ଜୀର୍ଣ୍ଣ କରେ ଏବଂ ତହିଁରେ ଦେହସ୍ଥ ରକ୍ତ ବା ମଜ୍ଜା ଏବଂ ମସ୍ତିଷ୍କ ପ୍ରଭୃତି ସିଝି ସିଝି ଜଳ୍‌ରେ ପରିଣତ ହୁଏ । ଏହି ଜଳଭାଗ କ୍ରମେ ବୃଦ୍ଧିପ୍ରାପ୍ତ ହୋଇ ସନ୍ଧି ବା ସାନ୍ନିପାତିକ ଅବସ୍ଥାରେ ପହଞ୍ଚିଯାଏ ଏବଂ ସଙ୍ଗେ ସଙ୍ଗେ ଜଳରୁ କଫ ବୃଦ୍ଧି ହୋଇ ନାଡ଼ୀମାର୍ଗକୁ ରୁଦ୍ଧ କରେ । ନାଡ଼ୀ ମାର୍ଗ ରୁଦ୍ଧ ହେବାରୁ ବାୟୁ ସ୍ୱାଭାବିକ ଗତି କରିବାକୁ ବାଟ ନ ପାଇ (ଘେରି କପରି କୁଆଡ଼େ ପଳାଇବାକୁ ବ୍ୟଗ୍ର ଚେଷ୍ଟା କଲାପରି) ବେଣି ବଳ ହେଲେ ଯିବା ଆସିବାର ହୋଇପାରେ ବୋଲି ଠିକ୍ କରି ବେଗବାନ୍ ଅଣଗୃଣ ମୂର୍ତ୍ତି ଧାରଣ କରେ । ପ୍ରବଳ ବିତାପ ଘରଗ୍ରାମ, ଗଛପକ୍ଷ ଭାଙ୍ଗି ବହିଗଲାପରି ଏହି ଅଣଗୃଣ ବଳବିଶିଷ୍ଟ ତେଜୋ-ମୟ ପ୍ରାଣବାୟୁ ଦେହସ୍ଥ ନାଡ଼ୀ ଓ ପ୍ରାଣମାର୍ଗକୁ ଛିନ୍ନବିଚ୍ଛିନ୍ନ କରି ରକ୍ତ, ମଜ୍ଜା ପ୍ରଭୃତିକୁ ଶୁଷ୍କ କରିପକାଏ । ତହୁଁ ପ୍ରାଣଦଣ୍ଡକୁ ନାଡ଼ୀମାର୍ଗାଦି ଯେପରି ବାନ୍ଧିରଖି ତାକୁ ଖେଳାଉ-ଥାଆନ୍ତି ସେ ଖେଳ ବନ୍ଦ ହୋଇଯାଏ, ଏବଂ ସଙ୍ଗେ ସଙ୍ଗେ ପ୍ରାଣତ୍ୟାଗ ଘଟେ । ଏ ପରେ ସ୍ଥୂଳଦେହ ଜଡ଼ ଶବାକାରରେ ପଡ଼ିରହେ ।

ଦୈବାତ୍ ମୃତ୍ୟୁରେ ବା ନିୟମିତ ମୃତ୍ୟୁରେ ମଧ୍ୟ ଏହି ଅଣଗୃଣ ସଂହାରମୂର୍ତ୍ତିରେ ଉପସ୍ଥିତ ହୋଇଥାଏ । କେବଳ ଯୋଗାସନ ବଳରେ ବା ତତ୍ତ୍ୱଜ୍ଞାନସମ୍ପନ୍ନ ହୋଇ ଯେଉଁ ଦେହତ୍ୟାଗ ସଂଘଟିତ ହୁଏ ତାହାର ଗତି ଅନ୍ୟପ୍ରକାର । ତହିଁରେ ଜାଣି ଶୁଣି

ଜୀର୍ଣ୍ଣ ବସ୍ତ୍ର ତ୍ୟାଗ କରି ଖୁସି ପୂର୍ବକ ନୂଆ ଲୁଗା ପିନ୍ଧିବା ଅପେକ୍ଷା କଲାପରି କମ୍ବା ଦିଗମ୍ବରରୁ ଗ୍ରହଣ କଲାପରି ଜୀବ ସ୍ୱିଚ୍ଛିକ ଦେହତ୍ୟାଗରେ ଆତ୍ମଜ୍ଞାନସମ୍ପନ୍ନ ଥାଏ । ସ୍ଥୂଳ ଦେହତ୍ୟାଗପରେ ଜୀବର ଅବସ୍ଥା କିପରି କଣ ହୁଏ, ଏହା ପ୍ରଣିଧାନପୂର୍ବକ ଦେଖିବାକୁ ଗଲେ ଏହି ଜୀବ ସର୍ବଦା ସୂକ୍ଷ୍ମ ଓ କାରଣଦେହ ସଙ୍ଗେ ସଂଯୁକ୍ତ ଥାଇ ଅନ୍ତରିକାଶ-ଗର୍ଭରେ ସର୍ବୁଦବେଳେ ଅବସ୍ଥାନ କରିଅଛି । ଏହି ଦେହଦ୍ୱୟ ମଧ୍ୟରୁ ସୂକ୍ଷ୍ମ ବା ଲିଙ୍ଗ-ଦେହର ଅଙ୍ଗ ଅର୍ଥାତ୍ ବୁଦ୍ଧି, ଅହଂକାର, ଦଶେନ୍ଦ୍ରିୟ ଓ ପଞ୍ଚପ୍ରାଣ ସ୍ଥୂଳଦେହାକାରିତ ଚିହ୍ନକୁ କଳ୍ପନାକ୍ରମେ ଆପଣାଠାରେ ଦେଖୁଅଛି । ଏହି କଳ୍ପନାମୂଳକ ସ୍ଥୂଳ-ଦେହାକାରିତ-ଚିହ୍ନ ସ୍ୱଭାବତଃ ସ୍ୱତଃସିଦ୍ଧଭାବେ ବିନ୍ଦୁସମନ୍ୱିତ "ସ୍ମରଣରଖି ଥିବା ଉଚିତ ଯେ ପୂର୍ବେ ଏହି ବିନ୍ଦୁକୁ ଅବ୍ୟକ୍ତ ସୂକ୍ଷ୍ମକାର୍ଯ୍ୟ ଅର୍ଥାତ୍ ଦେହରୂପ-କାର୍ଯ୍ୟର କାରଣାତ୍ମକ-ପଦାର୍ଥ ବୋଲି ନିର୍ଦ୍ଦେଶ କରାଯାଇଅଛି ।" ଲିଙ୍ଗ ବା ସୂକ୍ଷ୍ମ ଦେହ ଏହି ବିନ୍ଦୁ-ବିଶିଷ୍ଟ ହୋଇ ଅନ୍ତରିକାଶରେ ଶୋଭମାନଭାବେ ବିଦ୍ୟମାନ ଅଛି । ଅନ୍ତରିକାଶ ଯେପରି ସୂକ୍ଷ୍ମ ଦେହମୟ ସେହିପରି ମଧ୍ୟ ଉକ୍ତ ବିନ୍ଦୁମୟ ଅଟେ, ଏହି ବିନ୍ଦୁ ପୁଣି ଅନାହତ 'ନାଦ' ବିଶିଷ୍ଟ ଅଟେ । ଉପସ୍ଥିତ ଏହି ଜୀବନ୍ତ ଅବସ୍ଥାରେ ଏହି ସ୍ଥୂଳ ଦେହକୁ ଉକ୍ତ ଲିଙ୍ଗଦେହ ଓ କାରଣଦେହ ଏକ ସହ-ଯୋଗାବସ୍ଥା ବିନ୍ଦୁନାଦ-ବିଶିଷ୍ଟ ହୋଇ ଦୃଶ୍ୟମାନ ଦେଦୀପ୍ୟମୟ ଶୋଭାଯୁକ୍ତ କରି ପ୍ରକାଶ କରିଅଛି । ଏହା ଜୀବାତ୍ମାର ସ୍ଥୂଳ ଦେହାବସ୍ଥା । ଏ ଅବସ୍ଥାରେ ଜୀବାତ୍ମାର ନାମ ବିଶ୍ୱ ଅଟେ । ଏହି ସ୍ଥୂଳ ଦେହ ପୂର୍ବବର୍ଣ୍ଣିତ ପ୍ରକାରରେ ସୂକ୍ଷ୍ମ ଦେହରୁ ବିଯୁକ୍ତ ଅର୍ଥାତ୍ ମୃତ ହେଲାପରେ ସୂକ୍ଷ୍ମ-କାରଣ ଦେହ, ବିନ୍ଦୁ-ନାଦ-ବିଶିଷ୍ଟ ହୋଇ ଜୀବାତ୍ମାକୁ ଆଶ୍ରୟ କରି ଯେଉଁ ଅବସ୍ଥା ପ୍ରାପ୍ତ ହୁଏ, ସେ ଅବସ୍ଥାର ନାମ ଜୀବାତ୍ମାର ତୈଜସାବସ୍ଥା । ଏ ଅବସ୍ଥାରେ ଜୀବର ନାମ ତୈଜସ ବୋଲି ପ୍ରସିଦ୍ଧ । ଏହି ତୈଜସ ଜୀବାତ୍ମା ସ୍ଥୂଳଦେହା-ବରଣମୁକ୍ତ ହୋଇ ଅନ୍ତରିକାଶରେ ରହି ପୂର୍ବକୃତ କର୍ମାଦିର ସଂସ୍କାରରୂପ ସୁଖ-ଦୁଃଖାତ୍ମକ ଭୋଗକୁ ସ୍ୱପ୍ନଭୋଗପରି ଭୋଗ କରେ । ଏହି ଭୋଗ ସତ୍ୟପ୍ରାୟ ଉପଲବ୍ଧ ହୋଇ ଜୀବକୁ ନାନାବିଧ ସୁଖ-ଦୁଃଖ ଓ ମୋହାଦି ପ୍ରପଞ୍ଚମୟ କଷ୍ଟରେ ବିଜଡ଼ିତ କରି ରଖେ । ଏହାର ନାମ ପରକାଳଭୋଗ । ସତ୍ତ୍ୱମୟ ଜୀବ ପକ୍ଷରେ ଏହାର ନାମ ସ୍ୱର୍ଗଭୋଗ; ଏବଂ ରାଜସ, ତାମସ ମ୍ଳାନ-ଭାବ-ବିଶିଷ୍ଟ ଜୀବ ପକ୍ଷରେ ଏହାର ନାମ ଯମଦଣ୍ଡ-ଯାତନାମୟ ଭୋଗ । ଏହିରୂପ ଭୋଗାବସ୍ଥାର ସମୟସୀମା ନିର୍ଣ୍ଣୟ କରି କୁହାଯାଇ ନ ପାରେ । ଏହି ଭୋଗ ପରେ ପୂର୍ବଲବ୍ଧ ସଂସ୍କାରାନୁଯାୟୀ ଏହି ତୈଜସ ଜୀବ ଭାବୀ-ଜନ୍ମ-ଗ୍ରହଣର ଅପେକ୍ଷା କରେ । ଆଉ ଟିକିଏ ପୁଣି ମନେ କରିପାଉ, ସୂକ୍ଷ୍ମ ଦେହର ସ୍ଥାନ ଅନ୍ତରିକାଶ, ଏବଂ ସ୍ଥୂଳ ଦେହର ସ୍ଥାନ ଭୌତିକ-ମହଦାକାଶ-ଗର୍ଭସ୍ଥ-ସ୍ଥୂଳ ଭୌତିକ ଜଗତ । କେହି କାହା ସ୍ଥାନ କେତେବେଳେ ହେଲେ କ୍ଷଣକ ପାଇଁ ପରିତ୍ୟାଗ କରି ନ ପାରେ, ବା ତଦ୍ରୂପ ଦେହ ରହିବାର ଉପଯୋଗୀ ସ୍ଥାନାନ୍ତର ନାହିଁ ବା ହୋଇ ନ ପାରେ । କାରଣ ସୂକ୍ଷ୍ମ ସୂକ୍ଷ୍ମ ସଙ୍ଗରେ, ଏବଂ ସ୍ଥୂଳ ସ୍ଥୂଳରେ ରହିବାର ସ୍ଥିର ଦୃଢ଼

ନିୟମ ଅଟେ । ଏହି ନିୟମାନୁସାରେ ବର୍ତ୍ତମାନ ସ୍ଥୂଳଦେହ ଏହି ଭୌତିକ ଜଗତରେ ବିଦ୍ୟମାନ ରହିଅଛି, ଏବଂ ମରଣାନ୍ତେ ମଧ୍ୟ ଏହି ଭୌତିକ ଜଗତରେ କୌଣସି ସ୍ଥାନର ମାଟିକୁ ଟିକିଏ ଉଚ୍ଚ କରି ରହିବ; ଆଉ ବର୍ତ୍ତମାନ ଏହି ସ୍ଥୂଳଦେହର ଅଦୂର ନିକଟସ୍ଥ ବା ଏହି ଦେହସ୍ଥ ସୂକ୍ଷ୍ମଦେହ, ଜଳସ୍ଥ ପଦ୍ମପତ୍ର ପରି ସ୍ଥୂଳଦେହରେ ଥିଲେ ମଧ୍ୟ ପ୍ରକୃତପକ୍ଷେ ତାହା ଅନ୍ତରୀକାଶରେ ଯେପରି ଏହିକ୍ଷଣି ସେହିପରି ସର୍ବଦା ଅଥଚ ସ୍ଥୂଳଦେହ ତ୍ୟାଗ ପରେ ବି ରହିଅଛି । ସ୍ଥୂଳଦେହ ତ୍ୟାଗକରି ଜୀବ ଉପରୋକ୍ତ-ମତେ ତୈଜସ ମୂର୍ତ୍ତି ଧାରଣପୂର୍ବକ ସ୍ଥୂଳଦେହାବରଣମୁକ୍ତ ଥିବାରୁ ସେ ଭାବୀ ଦେହ-ଧାରଣ ଅପେକ୍ଷାରେ ଧ୍ୟାନସ୍ଥ ରହିବା ଦ୍ୱାରା ସ୍ଥୂଳ ସୂକ୍ଷ୍ମ ଉଭୟାତ୍ମକ ସ୍ଥୂଳଜଗତ ଓ ଅନ୍ତରୀକାଶ ଗର୍ଭର ସମୁଦାୟ ଚିହ୍ନକୁ ତଦୀୟ ସ୍ୱସ୍ଥାନରେ ରହି ଦେଖିପାରେ । ଦେଖ, ଆମ୍ଭେ ବର୍ତ୍ତମାନ ଅବସ୍ଥାରେ ଏହିଠାରେ ଥାଇ ଯେପରି ସୂର୍ଯ୍ୟମଣ୍ଡଳକୁ ଚିନ୍ତିଲେ ବହୁ-ଯୋଜନ ଦୂରବର୍ତ୍ତୀ ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ଏକ ଲବେ ମାତ୍ର କାଳମଧ୍ୟରେ ମନ ଦୌଡ଼ି-ଯାଇ ଫେରିଆସିବ, ଆଉ ତଦ୍ଦ୍ୱାରା ସୂର୍ଯ୍ୟମଣ୍ଡଳଦର୍ଶନ-ଜନିତ-ଜ୍ଞାନ ଆତ୍ମାର ଉପଲବ୍ଧି ହେବ, ସେହିପରି ସେହି ପରିମିତ କାଳରେ ନିକଟସ୍ଥ ନିଜର ନାସିକାଗ୍ରକୁ ଚିନ୍ତି ତାହା ମଧ୍ୟ ଦେଖାଯିବ; ତେବେ ଏଥିରୁ ଏହା ସ୍ପଷ୍ଟତରଭାବେ ଜଣାପଡ଼ିଗଲା ଯେ ମନର ଗମନ-ଦ୍ୱାରା ପଦାର୍ଥ ଦେଖିବା ପକ୍ଷେ ଦୂରତାର ପରିମାଣ କିଛି ନୁହେଁ । କାହିଁ ଅପରିସୀମ ଦୂରସ୍ଥ ସୂର୍ଯ୍ୟମଣ୍ଡଳ, ପୁଣି କାହିଁ ବା ନିଜର ନାସିକାଗ୍ର—ଏ ଉଭୟ ସ୍ଥାନ ଏକଲବେ ପରିମିତ କାଳ ମଧ୍ୟରେ ମନ ଦେଖିପାରୁଅଛି । ତେବେ ଆବ୍ରହ୍ମାଣ୍ଡତୃଣ ପର୍ଯ୍ୟନ୍ତ ଦେଖି କ୍ଷଣକ ମଧ୍ୟରେ ଠିକ୍ କରିବା ମନପକ୍ଷରେ ଅସାଧ୍ୟ ନୁହେ । ଏହା ପୁଣି ମନର ଚକ୍ଷୁଷ ଦର୍ଶନ ସୀମା ମଧ୍ୟରେ ଆବଦ୍ଧ ରହିଥିବା ଅବସ୍ଥାର କ୍ଷମତା, ଆଉ ସେ ଯେତେବେଳେ ସ୍ଥୂଳ-ଦେହ ତ୍ୟାଗପରେ ସ୍ଥୂଳଦେହ ଓ ତଦ୍ଦେହସ୍ଥ ସ୍ଥୂଳଚକ୍ଷୁର ସୀମାବନ୍ଧନରୁ ମୁକ୍ତିଲାଭ କରି ସୂକ୍ଷ୍ମ ତୈଜସ ଦେହସ୍ଥ ଅଛି, ଆଉ ମୁକ୍ତ ମନଶକ୍ତି ଦ୍ୱାରା ଦେଖିବାକୁ ସୁଯୋଗ ପାଇଅଛି, ସେତେବେଳେ ଯେ ଜୀବାତ୍ମା, ସେହି ମନରେ ଏକକ୍ଷଣରେ ଅନ୍ତରୀକାଶ ଏବଂ ବାହ୍ୟାକାଶ ସମେତ ତତ୍‌ମଧ୍ୟସ୍ଥ ସମୁଦାୟ ସ୍ଥୂଳସୂକ୍ଷ୍ମାତ୍ମକ ବସ୍ତୁକୁ ଦେଖିପାରିବ, ଏଥିରେ ବିଚିତ୍ର ବା ଅଘଟଣୀୟ କିଛି ନାହିଁ । ଦେହତ୍ୟାଗପରେ ପରକାଳ ଭୋଗ କ୍ଷୟ ହେଲାରୁ ଜୀବାତ୍ମାର ମନ ଅନ୍ତରାଳରେ ଭ୍ରମଣ କରି କରି କ୍ଳାନ୍ତ ହେଲାବେଳକୁ ପୂର୍ବସଞ୍ଚିତ ପ୍ରାରବ୍ଧ ସଂସ୍କାର ଅନୁଯାୟୀ ଦୟାମୟୀ ଭଗବତୀ ଆଦ୍ୟା ସନାତନୀ ପ୍ରକୃତିଦେବୀ, ଜୀବର ସୂକ୍ଷ୍ମାଙ୍ଗ ଓ ତତ୍‌ସ୍ଥିତ ବିନ୍ଦୁକୁ ଯଥାନୁରୂପ ବୀର୍ଯ୍ୟକୋଷ ଠିକ୍ କରି ତହିଁରେ ଅଜ୍ଞାତ ସୂକ୍ଷ୍ମ ମାର୍ଗରେ ନେଇ ମିଶାଇଦିଏ । ଏହି ବୀର୍ଯ୍ୟକୋଷହିଁ ଭାବୀ ପିତୃବୀର୍ଯ୍ୟ ନାମରେ ଓ ପଦାର୍ଥରେ ଅଭିହିତ ଅଟେ । ଏହି ସମ୍ମିଶ୍ରଣ କେତେ ସମୟସାପେକ୍ଷ ତାହା ଅକଥନୀୟ । ଏହିରୂପେ ପିତୃବୀର୍ଯ୍ୟ ସଙ୍ଗେ ମିଶି ଜୀବାତ୍ମାର ସୂକ୍ଷ୍ମାଙ୍ଗ ଅର୍ଥାତ୍ ସୂକ୍ଷ୍ମ ଓ କାରଣ ଶରୀର ପୂର୍ବ କଥିତ ବିନ୍ଦୁନାଦସମନ୍ୱିତ ହୋଇ ଏତତ୍ପ୍ରଦ କଳ୍ପନାମୂଳକ ସ୍ଥୂଳଦେହାକାରିତ-ଚିହ୍ନକୁ ଧାଇଁ ଧାଇଁ ପୂର୍ବଲିଖିତ ନିୟମାନୁସାରେ ସ୍ଥୂଳଦେହ-ବିଶିଷ୍ଟ

ସନ୍ତାନରୂପ ଧାରଣ କରିବା ଅପେକ୍ଷାରେ ମାତୃଗର୍ଭରେ ନିପତିତ ହୁଏ । ଏପରେ ଯଥା-ସମୟରେ ଭୂମିଷ୍ଠ ବା ଜାତ ହୁଏ । ଏହିରୂପେ ଜୀବାତ୍ମା ପୁରୁଷ ଜୀବୋପାଧି ଧାରଣ-ପୂର୍ବକ ପୁନରପି ଜନନ ପୁନରପି ମରଣ ପୁନରପି ଜନନୀଜଠରେ ଶୟନ କରି କରି ପୁନଃ ଶରୀରକୁ ପବିତ୍ର କରି ତାହାର ମହତ୍ତ୍ୱକୁ ବହୁଗୁଣ ପରିମାଣରେ ବଢ଼ାଇ ଦେଇଅଛି । ଏତଦ୍ଦ୍ୱାରା ଆତ୍ମା କେବଳ ସାକ୍ଷୀ ବା ଦ୍ରଷ୍ଟାରୂପେ ସ୍ୱତଃ ବିରାଜମାନ ଥାଇ ସ୍ଥୂଳଦେହକୁ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ, ଏବଂ ପରେ ଲିଙ୍ଗ ଓ କାରଣ ଦେହକୁ ମରଣଠାରୁ ସ୍ଥୂଳ-ଦେହ ଭୂମିଷ୍ଠ ପର୍ଯ୍ୟନ୍ତ ଦର୍ଶନ କରୁଅଛି । ଦ୍ରଷ୍ଟାପୁରୁଷ ଆତ୍ମା, ଐହିକ ସ୍ଥୂଳଦେହାବସ୍ଥାରେ ସ୍ଥୂଳ, ସୂକ୍ଷ୍ମ ଓ କାରଣାଦି ଦେହତ୍ରୟର ଏକତ୍ର ସମାବେଶକୁ ଦର୍ଶନ କରି ସେହି ଦେହ-ତ୍ରୟର ସମଷ୍ଟିକୁ ମୋହବଶତଃ ଜ୍ଞାନବିସ୍ମୃତିର ଅଭାବେ କେବଳ ଏହି ସ୍ଥୂଳଦେହ ମୋର ବା ସ୍ଥୂଳଦେହହିଁ ମୁଁ ବୋଲି ଦୃଢ଼ ନିଶ୍ଚିତଭାବେ ସ୍ଥିର କରିଅଛି । ଏହାହିଁ ଆତ୍ମାର ଜୀବନ୍ତ ସଂସାରୀ ଅବସ୍ଥା । ଏ ଅବସ୍ଥା ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ପୁନଃ ପୁନଃ ଜାଗରଣ, ପୁନଃ ପୁନଃ ସ୍ୱପ୍ନ ଓ ପୁନଃ ପୁନଃ ସୁଷୁପ୍ତି ଭୋଗ କରି କରି ଦିନେ ଶେଷ ହେଉଅଛି । ଏହି ଜୀବନ୍ତ ଅବସ୍ଥାର ଦଶାତ୍ରୟ ମଧ୍ୟରୁ କେବଳ ଜାଗରଣରେ ଆପଣାକୁ ମାତା ପିତା, ଭାଇଭଗ୍ନୀ, ସ୍ତ୍ରୀ, ପୁତ୍ର କନ୍ୟାଦି ଆତ୍ମୀୟବର୍ଗ କୁଟୁମ୍ବ-ବନ୍ଧୁ-ବାନ୍ଧବ-ମିତ୍ର-ଶତ୍ରୁ ପ୍ରଭୃତି ସହିତ ସମ୍ବନ୍ଧ-ବିଶିଷ୍ଟ ବୋଲି ସ୍ଥିର କରି ଆତ୍ମା ସଂସାର କ୍ରୀଡ଼ାକୁ ସତ୍ୟରୂପେ ଅନୁଭବ କରୁଅଛି । ଏହି ଜାଗରଣରେ ପୂର୍ବୋକ୍ତ ସଂସାର ଲୀଳା ସତ୍ୟପ୍ରାୟ ଅନୁଭୂତ ହେବାର କାରଣ ଏହି ଯେ ସ୍ୱପ୍ନ ଓ ସୁଷୁପ୍ତି ବ୍ୟତୀତ ଏଥିରେ ଏହି ଦେହ ଓ ଆତ୍ମୀୟବର୍ଗାଦି ଏବଂ ବ୍ୟାବହାରିକ ଗୃହଧନାଦିର ଅସ୍ତିତ୍ୱ ଧାରାବାହିକ କ୍ରମେ ପ୍ରତିଦିନ ସେହି ଏହି ମୋର ଦେହ, ସେଇ ଏହି ମୋର ଆତ୍ମୀୟ ଓ ପରିଚିତ ବନ୍ଧୁବର୍ଗାଦି, ସେଇ ଏହି ମୋର ଧନ ଓ ଗୃହାଦି ବୋଲି ନିଶ୍ଚୟ ଜ୍ଞାନ ପୂର୍ବାପର ସ୍ଥିର ରହିଅଛି, ମାତ୍ର ସ୍ୱପ୍ନ ଓ ସୁଷୁପ୍ତିରେ ଏହି ଜାଗରଣ ସଂସାରର ସ୍ଫୁରଣ ବା ଜ୍ଞାନ ବିସ୍ମୃତ ହେଉଅଛି । ସ୍ୱପ୍ନରେ କାରଣ ନ ଥାଇ କାର୍ଯ୍ୟୋତ୍ପତ୍ତି ହେଲାପରି କାଳ୍ପନିକ ବ୍ୟାପାର ସତ୍ୟପ୍ରାୟ ବୋଧ ହେବାର କାରଣ ଏହି ଯେ ଏ ଅବସ୍ଥାରେ କେବଳ ସୂକ୍ଷ୍ମ ଦେହର ବିକାଶ, ସେହି ହେତୁ ସ୍ଥୂଳ ପ୍ରପଞ୍ଚମୟ ଦେହ ସଂସାର ଓ ଦେହସ୍ଥ ଇନ୍ଦ୍ରିୟାଦିର ବିକାଶ ନ ଥାଏ । ସୂକ୍ଷ୍ମ-ଦେହସ୍ଥ ଅହଙ୍କାର ବୁଦ୍ଧ୍ୟାଦି ଏବଂ ସୂକ୍ଷ୍ମେନ୍ଦ୍ରିୟାଦି ସଂସ୍କାର ଦ୍ୱାରା କାଳ୍ପନିକ ଜଗତ ଓ ଦେହାଦିକୁ ସତ୍ୟ ବୋଲି ମଣନ୍ତି, ଯେହେତୁ ଏ ଦର୍ଶନର ସତ୍ୟତା ତଦବସ୍ଥାରେ ଦେହସ୍ଥ ବାହ୍ୟେନ୍ଦ୍ରିୟ ଦ୍ୱାରା ବାଧିତ ହୁଏନାହିଁ, ଅର୍ଥାତ୍ ସ୍ୱପ୍ନଦର୍ଶନ କାଳ୍ପନିକ ଅଥଚ ସତ୍ୟ ନୁହେ ବୋଲି ଦେଖାଇଦେବାକୁ ବାହ୍ୟେନ୍ଦ୍ରିୟାଦି ଉପସ୍ଥିତ ନ ଥାଇ ମୃତପ୍ରାୟ ନିଦ୍ରାଭିଭୂତ ରହି-ଥାଆନ୍ତି । ଏହା ଏକତରଫା ନିଷ୍ପତ୍ତି ହେବାରୁ ମିଥ୍ୟା ସତ୍ୟ ଆକାରରେ ପ୍ରମାଣିତ ହୋଇପାଏ । ସୁଷୁପ୍ତିରେ ସତ୍ୟ-ଜଗତ ଓ କାଳ୍ପନିକ ସତ୍ୟ ସଂସାର ଏବଂ ଦେହାଦି ସମୁଦାୟ ବିସ୍ମୃତ କାରଣ ଏଥିରେ ସ୍ଥୂଳ ଓ ସୂକ୍ଷ୍ମ ଉଭୟ ଦେହ ମୃତପ୍ରାୟ ନିଦ୍ରିତ ଥାଆନ୍ତି, କେବଳ କାରଣଦେହରେ ଆତ୍ମା ଅଭିଭୂତ ରହିଥାଏ । ଏହିରୂପେ ଜାଗରଣ

ଦଶାରେ ପ୍ରାଜ୍ଞ ଜ୍ଞାନ ଥାଏ, ଅର୍ଥାତ୍ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଦେହତ୍ରୟର ସମଷ୍ଟିକୁ ଆତ୍ମା ଦର୍ଶନ କରିପାରନ୍ତି । ସ୍ୱପ୍ନ ଦଶାରେ ଏହି ଦେହତ୍ରୟ ମଧ୍ୟରୁ କେବଳ ଲିଙ୍ଗଦେହକୁ କାରଣଦେହ ସହିତ ଦର୍ଶନ କରେ ଏବଂ ସୁଷୁପ୍ତିରେ କେବଳ କାରଣଦେହ ପରିଦୃଷ୍ଟ ହୁଏ । ଏହିରୂପେ ଦ୍ରଷ୍ଟା ବା ସାକ୍ଷୀ ସ୍ୱରୂପ କୂଟସ୍ଥ ଆତ୍ମା, ଦେହତ୍ରୟକୁ ଅବସ୍ଥାତ୍ରୟ ସହିତ ଦର୍ଶନପୂର୍ବକ ସ୍ୱତଃ ଏତଦ୍ରୂପ ଦୃଶ୍ୟରୁ ପୃଥକ୍ ଥିଲେ ମଧ୍ୟ ଏହି ଆବର୍ତ୍ତନଶୀଳ ଦୃଶ୍ୟରେ ଆତ୍ମଜ୍ଞାନାଭ୍ୟାସ ଅଭାବେ ଏବଂ ଅନାଦି ଅବିଦ୍ୟା ବାସନା ପ୍ରଭାବେ ଆତ୍ମାର ଅଭେଦ କଳ୍ପନାକ୍ରମେ ସ୍ଥିର କରି ସ୍ୱୟଂ ନିତ୍ୟ ବର୍ତ୍ତମାନ ପୁରୁଷ ନିଜ ଧର୍ମାନୁସାରେ ଏହି କାଳ୍ପନିକ ଦୃଶ୍ୟକୁ ସତ୍ୟ ଏବଂ ନିତ୍ୟ ବୋଲି ଜ୍ଞାନ କରୁଅଛି । ଏହିହେତୁ ଏହି ଦୃଶ୍ୟ ଏତଦ୍ରୂପ ଆତ୍ମଜ୍ଞାନବିସ୍ମୃତି ଓ ମୋହର କାରଣ ହୋଇ ଆତ୍ମାକୁ ସଂସାରୀ କରି ସର୍ବଦା ଧରି ରଖିଅଛି । ଏହା ବ୍ରହ୍ମଶକ୍ତି ଭଗବତୀ ଆଦ୍ୟା ପରମେଶ୍ୱରୀର ଲୀଳାମୟ ଇଚ୍ଛାରୁ ହେଉଅଛି । ଉପରୋକ୍ତ ଦୃଶ୍ୟମୟ ଦେହତ୍ରୟ ଓ ଅବସ୍ଥାତ୍ରୟରୂପ-କାର୍ଯ୍ୟ ବିସ୍ତାର ସମ୍ବନ୍ଧରେ ପ୍ରକୃତିଦେବୀ ସ୍ୱୟଂ କାର୍ଯ୍ୟକାରଣ ଲକ୍ଷ୍ୟରେ ସର୍ବକାରଣର କାରଣ-ରୂପିଣୀ ହୋଇ ତଦାତ୍ମ୍ୟ ବାଳକରୂପ ଜୀବନିଚୟାଦିଙ୍କୁ ଏହି ଦୃଶ୍ୟରେ ବିମୋହିତ କରି ସଂସାରଲୀଳା ସାଧନ କରାଉଅଛି । ଆତ୍ମାର ସନ୍ନିଧିରେ ଏହି ପ୍ରକୃତିରୁ ନାନାବିଧ ଆକାର-ପ୍ରକାର-ଗୁଣ-ବିଶିଷ୍ଟ-ଦେହ ସଂସାରାଦିରୂପେ ଏତତ୍ ସମୁଦାୟ ଦୃଶ୍ୟ ଉଦ୍ଭୂତ ହେଉଅଛି; ଏବଂ ପ୍ରକୃତିର ଏତଦ୍ରୂପ ସାନ୍ନିଧ୍ୟରୁ ଆତ୍ମାର ଆତ୍ମଜ୍ଞାନ ବିସ୍ମୃତ ହୋଇ ପ୍ରକୃତିନିର୍ମିତ ଦେହ ସଂସାରାଦିରେ ଆତ୍ମଭାବ ସମର୍ପିତ ହେଉଅଛି । ଏତଦ୍ରୂପ ପ୍ରକୃତି ପୁରୁଷ ଯୋଗକଳ୍ପନାବଶତଃ ଆତ୍ମା, ସ୍ୱପ୍ନାଦି ଦଶାତ୍ରୟର ଅଧୀନ ରହି ସଂସାରୀ-ପଦବାଚ୍ୟ ହେବାରୁ ଅବିଦ୍ୟାସୃଷ୍ଟ ସୁଖ-ଦୁଃଖ-ମୋହମୟ ତାପାଦିରେ ପରିକ୍ଳିଷ୍ଟ ହୋଇଅଛି । ଏହି ପ୍ରକୃତିହିଁ ଆତ୍ମାର ସଂସାରଦର୍ଶନର ମୂଳବୀଜ । ତେବେ ଏହି କାର୍ଯ୍ୟ-କାରଣ-ରୂପା ପ୍ରକୃତି କାହିଁ ହେଲି ? ଏହାର ଅବସ୍ଥାନ କେଉଁଠାରେ ? ଏଥିରେ ଆତ୍ମା କାହିଁକି ଆବଦ୍ଧ ରହିଅଛି ? ଏହି ଶ୍ରେଣୀର ପ୍ରଶ୍ନସବୁ ଯେଉଁ ଅଜ୍ଞାନମୂଳକ ସନ୍ଦେହରୁ ବାହାରେ, ସେହି ସନ୍ଦେହ ନିରାକରଣପାଇଁ ପ୍ରକୃତିତତ୍ତ୍ୱ, ଜୀବତତ୍ତ୍ୱ, ଈଶ୍ୱରତତ୍ତ୍ୱ ଏବଂ ବ୍ରହ୍ମତତ୍ତ୍ୱାଦି ନାନାବିଧ ତତ୍ତ୍ୱାଲୋଚନା କରିବାକୁ ଆବଶ୍ୟକ ପଡ଼େ । ସେହି ଆବଶ୍ୟକତାର ବଶବର୍ତ୍ତୀ ହୋଇ ସହଜବୋଧଗମ୍ୟ ଅଥଚ ଅଳ୍ପାୟାସରେ ଦେଖାଯାଉଥିବା ଏହି ପରିଦୃଶ୍ୟମାନ ଦେହ-ସଂସାର ସମ୍ବନ୍ଧୀୟ ନାନାପ୍ରକାର ପଦାର୍ଥର କାର୍ଯ୍ୟ-କାରଣ-ଭାବାଦି ନେଇ ସର୍ବପ୍ରଥମେ ବିଚାର ଓ ତର୍କାଦି ଆରମ୍ଭ ହୁଏ । ସେହି ଅନିର୍ଦ୍ଦିଷ୍ଟ ସୀମା ଭୌତିକବାଦରେ ପ୍ରବେଶ କଲାରୁ କେହି କେହି ଜ୍ଞାନରାଜ୍ୟକୁ ଜଡ଼ରାଜ୍ୟରେ ପାଇପିବାର ମନେକରି ଅଧବାଟିଆ ହୋଇ ରହିଯାଇ ଜଡ଼ବାଦକୁ ବଡ଼ କରି ଧରିନଅନ୍ତି । ଏହି ଜଡ଼ଜଗତର ଏପରି ଅନିର୍ବଚନୀୟ ଅସୀମ ଗୁଣ ଅଛି ଯେ ଏହାକୁ ପୁଙ୍ଖାନୁପୁଙ୍ଖ ଦେଖି ଦେଖି ଯେତେ ଅଗ୍ରସର ହେଉଥାଅ, ତାହା ସେତିକି ପ୍ରଲୋଭନ ଦେଖାଇ ତତ୍ସମ୍ବନ୍ଧୀୟ ଆଲୋଚନାଆଡ଼କୁ ଝାଙ୍କି ଝାଙ୍କି ସେତିକି ନେଉଥିବ; ଅଥଚ ତାହାର ସୀମା ହନୁମାନ୍

ଲଙ୍ଘନ ଉପରେ କ୍ରମେ କ୍ରମେ ସେତିକି ସେତିକି ଦୂରକୁ ଘୁଞ୍ଚି ଘୁଞ୍ଚି ବଢ଼ି ବଢ଼ି ଯାଉଥିବ । ଏହି ହେତୁ ପଦାର୍ଥତତ୍ତ୍ୱ ବିଦ୍ୟା, ରସାୟନିକତତ୍ତ୍ୱ ବିଦ୍ୟା, ପାର୍ଥିବତତ୍ତ୍ୱ ବିଦ୍ୟା, ଉଦ୍ଭିଦତତ୍ତ୍ୱ-ବିଦ୍ୟା, ଏସବୁରୁ ଅର୍ଥତତ୍ତ୍ୱ ଆଡ଼େ ପ୍ରଲୋଭିତ ହୋଇ ମନୁଷ୍ୟ ଏହି ଜଡ଼ଜଗତକୁ ସର୍ବସ୍ୱାର୍ଥ-ସିଦ୍ଧିର ପ୍ରକୃଷ୍ଟ ମୂଳଭୂମି କରି ଏଥିରେ ପଡ଼ି ସାଂସାରିକ ବ୍ୟାପାରାଦିରେ କେବଳ ଆକୃଷ୍ଟ ହୋଇ ରହିଅଛି । ଏହିରୂପେ ଯେତେ ଚେଷ୍ଟା କଲେ ମଧ୍ୟ ବଡ଼ ସହଜରେ ଓ ଅଳ୍ପକାଳମଧ୍ୟରେ ଆତ୍ମ-ତତ୍ତ୍ୱଜ୍ଞାନ ଲାଭ ନ ହୋଇ ଜଡ଼ବାଦ ସହଜରେ ଆୟତ୍ତାଧୀନ ହୁଏ । ସେହି ହେତୁ ଜଡ଼ବାଦ ଓ ନାସ୍ତିକବାଦାଦିରେ ପ୍ରବୃତ୍ତ ହୋଇ ଆଜିକାଲିର ମନୁଷ୍ୟ-ସମାଜ ଏପରି ହୀନ ହୋଇଅଛି ଯେ ଧର୍ମାଧର୍ମ, କର୍ତ୍ତବ୍ୟାକର୍ତ୍ତବ୍ୟ ଓ ଜ୍ଞାନାଜ୍ଞାନ କିଛି ନା କିଛିର ଠିକ୍ ନାହିଁ । ସବୁକାଳକୁ ଦେଖି ବିଚାର କଲେ ମଧ୍ୟ ଜଣାଯାଏ ଯେ ଏହିପରି ତର୍କ ବିତର୍କରେ ପ୍ରବୃତ୍ତ ହୋଇ ଯେ ଯେଉଁଯାଏ ଗଲା, ସେହି ପର୍ଯ୍ୟନ୍ତକୁ ସେ ଜ୍ଞାନ-ବିଚାରର ସୀମା ବୋଲି ନିଶ୍ଚୟ କଲା । ଏହି ହେତୁରୁ ବିରୁଦ୍ଧଭାବାପନ୍ନ ନାନାବିଧ ଦର୍ଶନାଦି, ନାନାବିଧ ବାଦବିବାଦାଦି, ମତାଦି ଏବଂ ଧର୍ମର ନାନାବିଧ ପନ୍ଥାଦିର ସୃଷ୍ଟି ହୋଇଅଛି । ଏତଦନୁସାରେ ଜନ୍ମ ମରଣ ଓ ଐହିକ ପରକାଳ ସମ୍ବନ୍ଧରେ ନାନାବିଧ ବ୍ୟବସ୍ଥା ଦୃଷ୍ଟ ହୁଏ । ପ୍ରକୃତ ଆତ୍ମତତ୍ତ୍ୱ ଉପଲବ୍ଧି ନ ହେବା ପର୍ଯ୍ୟନ୍ତ ନାନାବିଧ ପୂର୍ବପକ୍ଷ ଓ ତର୍କ ବିତର୍କାଦି ଅଥଚ ନାନାପ୍ରକାର ସଂଶୟାଦିରେ ବୁଡ଼ି ରହିଥିବାକୁ ହେବ ।

ଜ୍ଞାନର ଧର୍ମ ଜାଣିବା, ଦେଖିବା ଇତ୍ୟାଦି ଇତ୍ୟାଦି । ଆତ୍ମା ସ୍ୱୟଂ ଜ୍ଞାନମୟ ପଦାର୍ଥ, ସୁତରାଂ ଜାଣିବାକୁ ବା ଦେଖିବାକୁ ସଦା ପ୍ରସ୍ତୁତ । ଏ ହେତୁରୁ ଜ୍ଞାତା ବା ଦ୍ରଷ୍ଟା ସାକ୍ଷୀ-ଆତ୍ମା ସର୍ବଦା ପ୍ରକୃତିକୁ ତଦ୍‌ଗତ ବିକାର ଜନିତ ଦେହ-ସଂସାରାଦିକୁ ଦେଖୁଅଛି । ଏହି ଦର୍ଶନ ମଧ୍ୟରେ ଦେହ ଭଳି ଜଡ଼ ବସ୍ତୁ ନିତ୍ୟ ବିକାରାଧୀନ ଥିବାରୁ ଏହି ସ୍ଥୂଳଦେହର ଜନ୍ମ, ସ୍ଥିତି ଓ ବିନାଶ ସାଧିତ ହେଉଅଛି । ଏହି ଜନ୍ମ ମରଣ ପ୍ରବାହ ସ୍ୱରୂପ ନିତ୍ୟ ଥିବାରୁ ଆତ୍ମା ଏହାର ସଙ୍ଗ ହେତୁ ନିତ୍ୟ ସଂସାରୀ ହୋଇ ନିଜର ଜନ୍ମ ମରଣ କଳ୍ପନା କରୁଅଛି । କାରଣ ଓ ସୂକ୍ଷ୍ମ ଦେହଦ୍ୱୟ ଆତ୍ମାର ଅପରିବର୍ତ୍ତମାନ ନିତ୍ୟ ସଙ୍ଗୀ ଥାଇ ଆତ୍ମା, ସେହି ସୂକ୍ଷ୍ମ କାରଣ ଦେହ ସମଷ୍ଟିକୁ ସର୍ବଦା ଦେଖୁ ଦେଖୁ ତହିଁ ସଙ୍ଗେ ସଙ୍ଗେ ପରିବର୍ତ୍ତମାନ ସ୍ଥୂଳଦେହର ଜନ୍ମ-ସ୍ଥିତି-ମରଣାଦିକୁ ଜଳପ୍ରବାହବତ୍ ଧାରାବାହିକ କ୍ରମେ ନିତ୍ୟ ବୋଲି ମଣି ଏତଦ୍ରୂପ ନିତ୍ୟ ସାଂସାରିକ କ୍ରୀଡ଼ାମୟ ଦେହାଦି-ରେ ବିଭ୍ରାନ୍ତ ହୋଇ ରହିଅଛି । ଏହି ଦୃଶ୍ୟକୁ ଲକ୍ଷ୍ୟ କରି ସିନା ଆତ୍ମା ଦ୍ରଷ୍ଟାରୂପ ଉପାଧିରେ ବିଭୂଷିତ, ନଚେତ୍ ସ୍ୱୟଂ ସେ ସ୍ୱରୂପତଃ ଅଦ୍ରଷ୍ଟା, ନିତ୍ୟ ବିରାଜମାନ ସଚ୍ଚିଦାନନ୍ଦ ଆତ୍ମାହିଁ ମାତ୍ର ଅଟେ । ପ୍ରକୃତିର ନିତ୍ୟ ନର୍ତ୍ତନଶୀଳ ରୂପରୁ କାର୍ଯ୍ୟକାରଣ-ଭେଦ କ୍ରମେ ନାନାବିଧ ଦେହ ସଂସାରମୟ ସୃଷ୍ଟିଚକ୍ର ପରିଦୃଷ୍ଟ ହେଉଅଛି । ଏହି ଚକ୍ର ନର୍ମଳାକାଶରେ ମୃଗତୃଷ୍ଣା ନଗରାଦି ପରି ଆତ୍ମାରେ କଳ୍ପିତ ସତ୍ୟାକାରରେ ଅନୁଭୂତ ହେଉଅଛି । ଏହା ଆତ୍ମାର ମାୟିକ ଲୀଳାମାତ୍ର । ଏ ସମ୍ବନ୍ଧରେ ବହୁ ଆଲୋଚନା

କରାଯାଇଅଛି । ଏବେ ଆତ୍ମାର ମାୟା ଦର୍ଶନ ସଙ୍ଗେ ସଙ୍ଗେ ତନ୍ଦ୍ଧିର କାର୍ଯ୍ୟ ସ୍ୱରୂପ ଅବିଦ୍ୟା ଦର୍ଶନରୁ ଅବିଦ୍ୟାଜନିତ କାର୍ଯ୍ୟ ଲିଙ୍ଗ ଦେହର ଦର୍ଶନ ସଙ୍ଗେ ସଙ୍ଗେ ତଦୀୟ କାର୍ଯ୍ୟ ସ୍ଥୂଳଦେହର ଦର୍ଶନ, ଏ ସଙ୍ଗେ ସଙ୍ଗେ ସଂସାର ଓ ସଂସାରୀୟ ସୁଖଦୁଃଖାଦିର ଦର୍ଶନ ସାଧିତ ହେଉଅଛି । ଏ ସମ୍ବନ୍ଧେ କାର୍ଯ୍ୟକାରଣ-କର୍ତ୍ତୃତ୍ୱାଦିର ହେତୁ କେବଳ ପ୍ରକୃତିଦେବୀ, ଆଉ ଏତଜ୍ଜାତ ସୁଖଦୁଃଖାଦିର ଦ୍ରଷ୍ଟା, ଜ୍ଞାତା ବା ଭୋକ୍ତାରୂପ ଉପାଧିର ହେତୁ କେବଳ ଆତ୍ମପୁରୁଷ ଅଟନ୍ତି । ଏ ସବୁ ଆଲୋଚନାରୁ ବଡ଼ ସ୍ପଷ୍ଟ ଭାବରେ ଜଣାଯାଏ ଯେ ପ୍ରକୃତିଦେବୀ ଜ୍ଞେୟରୂପିଣୀ ଏବଂ ପୁରୁଷ ବା ଆତ୍ମା ଜ୍ଞାତା ମାତ୍ର; ସୁତରାଂ ପ୍ରକୃତିରୁ ପୁରୁଷ ପୃଥକ୍, ଆଉ ପୁରୁଷ ଅପରିଣାମୀ ଓ ସଦା ଏକରୂପ, ଏବଂ ପ୍ରକୃତି କାର୍ଯ୍ୟ-କାରଣାତ୍ମିକା, ସୁତରାଂ ନାନାରୂପ ଓ ଗୁଣମୟୀ । ଏହି ପ୍ରକୃତି ଗର୍ଭରେ କାରଣ ଓ ଲିଙ୍ଗଦେହ ଅନାଦି କାଳରୁ ଅପାର କାଳ ପର୍ଯ୍ୟନ୍ତ ସ୍ଥାୟୀ ଏବଂ ଲିଙ୍ଗ ଦେହରୁ ସ୍ଥୂଳଦେହ ଅଳ୍ପକାଳସ୍ଥାୟୀ । ଅଥଚ ପୁନଃ ପୁନଃ ଜନ୍ମ-ମରଣ-ପ୍ରବାହରେ ଦୃଶ୍ୟ ଓ ଅଦୃଶ୍ୟ ହୋଇ ଧାରାବାହିକ କ୍ରମେ ଲିଙ୍ଗଦେହ ସଙ୍ଗେ ସ୍ଥିତିକାଳତକ ପରିଦୃଷ୍ଟ ହେଉଅଛି । ଏହିରୂପେ ସ୍ଥୂଳଦେହ ଜନ୍ମ ଓ ମରଣର ବଶବର୍ତ୍ତୀ, ଆଉ ଆତ୍ମା ଅଦୃଶ୍ୟଭାବେ ନିଜର ସୂକ୍ଷ୍ମରୂପତ୍ୱ ଯୋଗୁଁ ସୂକ୍ଷ୍ମ ଓ କାରଣଦେହ ସଙ୍ଗେ ସଙ୍ଗେ ରହି ସ୍ଥୂଳ ଦେହସ୍ଥ ହେବାରୁ ଏହି ସ୍ଥୂଳଦେହର ଜନ୍ମ ମରଣ ଅନୁସାରେ ଆତ୍ମାର ପୁନରପି ଜନ୍ମ ପୁନରପି ମରଣ ପୁନରପି ଜନନୀଜଠରେ ଶୟନାଦି ପରିକଳ୍ପିତ ହୋଇ ବ୍ୟବହୃତ ହେଉଅଛି । ଆତ୍ମତତ୍ତ୍ୱ ନିଶ୍ଚିତ ହେଲେ ପ୍ରକୃତି କାହୁଁ ହେଲା ? ସେ କିପରି ? ତାହାର ସ୍ଥାନ କେଉଁଠାରେ ? ଏ ସମସ୍ତ କଥା ସ୍ୱୟଂ ଜ୍ଞାନଗୋଚର ହେବ । ଆଉ ଆତ୍ମତତ୍ତ୍ୱ ଅନିଶ୍ଚିତ ଥିବାଯାଏ ପ୍ରକୃତି ସମ୍ବନ୍ଧରେ ଏ ପ୍ରକାର ନାନା ସନ୍ଦେହ ଓ ଅଜ୍ଞତା ବିଦ୍ୟମାନ ଥିବ । ଅଥଚ ପ୍ରଥମରୁ କେବଳ ପ୍ରକୃତିତତ୍ତ୍ୱ ଆଲୋଚନା କଲେ ବହୁ ଜନ୍ମରେ ତାହାର ସୀମା ଛୁଇଁବା ଦୂରେ ଥାଉ, ହିଗ ପର୍ଯ୍ୟନ୍ତ ଠିକ୍ ହୋଇ ପାରିବ ନାହିଁ । ତେବେ ପ୍ରକୃତି ତତ୍ତ୍ୱାନୁଲୋଚନା ଯେତିକି ପରିମାଣରେ କରାଗଲେ ତାହା କେବଳ ଆତ୍ମତତ୍ତ୍ୱ-ଜ୍ଞାନର ସହାୟତା କରିବ ସେହି ପରିମାଣରେ ହେବା ଏକାନ୍ତ ପ୍ରଥମ କର୍ତ୍ତବ୍ୟ । କାହିଁକି ? ପ୍ରଥମତଃ ସ୍ଥୂଳ, ପରେ ସୂକ୍ଷ୍ମ ଏବଂ ପରେ ପରେ କ୍ରମେ କ୍ରମେ ସୂକ୍ଷ୍ମତର ଓ ସୂକ୍ଷ୍ମତମ ବସ୍ତୁର ଆଲୋଚନା ସହଜବୋଧଗମ୍ୟ ହୁଏ । ପୁଣି ଜ୍ଞାନଲାଭ ଭିନ୍ନ ଯୁକ୍ତିତର୍କ ମାତ୍ରରେ ବାଚସ୍ପତିରୁ ସଂଗ୍ରହ କରି ଦେଖାଇହେବାକୁ ଗଲେ ଖାଲି ଚକ୍ରକୁଣ୍ଡାରେ କାଳାତିପାତ ହୋଇଥାଏ ।

ଶେଷରେ ଉପସଂହାର ସ୍ଥଳେ ଜନ୍ମ ମରଣାଦି ସମ୍ବନ୍ଧେ ସାଧାରଣତଃ ଦୁଇ କଥା କହି ପ୍ରସଙ୍ଗ ଶେଷ କରାଯାଉ । ବର୍ତ୍ତମାନ ଦେଖାଯାଉଅଛି ଯେ ସବୁ କଥା ପ୍ରତି ପୂର୍ବସଂସ୍କାର ସ୍ୱୀକାର କରିବାକୁ ହେବ । ଆମ୍ଭେମାନେ ଯାହା କିଛି କରୁଥାଉଁ ବା ଭାବୁଥାଉଁ, ତତ୍ସମ୍ବନ୍ଧୀୟ ପୂର୍ବସଂସ୍କାରର ବଶବର୍ତ୍ତୀ ହୋଇ ତଦ୍ରୂପ କରିବାକୁ ବା ଚିନ୍ତିବାକୁ

ହେଉଅଛୁ । ଯେ ଆଜ ଖଣ୍ଡେ ବହିରୁ କୋଡ଼ିଏ ପୃଷ୍ଠା ପଢ଼ିଅଛୁ, ସେ କାଲ ଏକୋଇଶ ପୃଷ୍ଠାରୁ ପଢ଼ା ଆରମ୍ଭ କରୁଅଛୁ; ଯେ ଆଜ ଖଣ୍ଡେ ବିଲରୁ ଅଧେ ଧାନ ବୁଣିଅଛୁ, ସେ କାଲ ବାକି ଅଧକ ବୁଣୁଅଛୁ ; ଅଥବା ଲେଖିବା ପଢ଼ିବା ଇତ୍ୟାଦି ଇତ୍ୟାଦି । ଯାହାର ପୂର୍ବରୁ ଅଭ୍ୟାସ ଅଛୁ ପର ପରକୁ ସେ ତାହାହିଁ କରୁଅଛୁ । ବର୍ତ୍ତମାନ ଏହି ପୂର୍ବ ସଂସ୍କାରକୁ ଯାପତର ଆଗରେ ଧରି ପଛେ ପଛେ ଚାଲିବାକୁ ହେଉ । ସଂସାରରେ ଦେଖାଯାଉଅଛୁ ଯେ ସମୁଦାୟ ଅସଂଖ୍ୟ ଅସଂଖ୍ୟ ମନୁଷ୍ୟ ମଧ୍ୟରେ ପରସ୍ପର ପ୍ରତ୍ୟେକର ଆକାରଗତ ଏବଂ ଉଚାରିତ ଶବ୍ଦ ବା ସ୍ୱରଗତ ପ୍ରଭେଦ ଯେପରି ଲକ୍ଷିତ ହୁଏ, ସେହିପରି ବୁଦ୍ଧି, ବିଗ୍ରହ, ସ୍ମରଣ ଶକ୍ତି, କାର୍ଯ୍ୟକାରୀ ଶକ୍ତି, ଧର୍ମାଧର୍ମ ଏବଂ କରଣୀୟ ଅକରଣୀୟାଦି କର୍ତ୍ତବ୍ୟନିଷ୍ଠା ବିଷୟରେ ପ୍ରଭେଦ ପରିଲକ୍ଷିତ ହୁଏ । ଏହି ପାର୍ଥକ୍ୟର କାରଣ ପୂର୍ବ ସଂସ୍କାର । ଏପରିକି ଏକ ପିତୃର ବହୁ ସନ୍ତାନ ମଧ୍ୟରେ ଏବଂ ଏକ ଗୁରୁଦେବଙ୍କର ବହୁ ଶିଷ୍ୟ ମଧ୍ୟରେ ବୁଦ୍ଧି ବିଗ୍ରହାଦିରେ, କାର୍ଯ୍ୟାକାର୍ଯ୍ୟରେ ଏବଂ ଶିକ୍ଷାଦୀକ୍ଷାର ଉନ୍ନତି ଅବନତ୍ୟାଦିରେ ନାନା ପ୍ରଭେଦ ପରିଦୃଷ୍ଟ ହୁଏ । ସମସ୍ତେ ସମାନ ହୁଅନ୍ତି ନାହିଁ । ଏହାର କାରଣ ଏଇ ଜନ୍ମପୂର୍ବରୁ ଅପର ଜନ୍ମରେ ଯାହାର ଯେପରି ସଂସ୍କାର ଦୃଢ଼ୀଭୂତ ହୋଇଥାଏ, ସେ ପରଜନ୍ମରେ ସେହିପରି ସଂସ୍କାରସହ ଅବତୀର୍ଣ୍ଣ ହୁଏ । ତାହାର କାର୍ଯ୍ୟକଳାପ ଓ ଜ୍ଞାନ ବିଗ୍ରହାଦି ତଦନୁରୂପ ହୁଏ । ଏହି ହେତୁରୁ ଏ ସବୁ ବିଷୟରେ ବର୍ତ୍ତମାନ ମନୁଷ୍ୟ ମଧ୍ୟରେ ଏପରି ପ୍ରଭେଦ ଦେଖାଯାଉଅଛୁ । ଏହିଠାରେ ମଧ୍ୟ ପୂର୍ବସଂସ୍କାର ପରବର୍ତ୍ତୀ କର୍ମର ହେତୁ ବୋଲି ଦେଖାଯାଉଅଛୁ । ପିତା-ମାତା ପୁତ୍ରମାନଙ୍କୁ କାର୍ଯ୍ୟରେ ଯାଅ ବୋଲି କହି ଘରୁ ପଠାଇ ଦିଅନ୍ତି, ମାତ୍ର ପୂର୍ବ ସଂସ୍କାରାନୁବୋଧରେ ଯେଝା କାର୍ଯ୍ୟ ଆଡ଼େ ସେ ଯାଏ । ଗୁରୁଦେବ ସନ୍ଧ୍ୟା ହେଲା କହି ଘରକୁ ଯିବାନିମନ୍ତେ ସବୁ ଶିଷ୍ୟମାନଙ୍କୁ ଛାଡ଼ିଦିଅନ୍ତେ, ମାତ୍ର ପୂର୍ବ ସଂସ୍କାରାନୁଯାୟୀ କେହି କେହି ଖେଳ ବୁଲିବାକୁ ଯାଏ, କେହି କେହି ଚୋର ବା ଅସତ୍ କର୍ମ କରିବାକୁ ଯାଏ । ଏହିଠାରେ ଏହିପରି ପୂର୍ବ ସଂସ୍କାର ପରକାର୍ଯ୍ୟର ହେତୁ ବୋଲି ଦେଖାଯାଉଅଛୁ ; ତେବେ ଜନ୍ମ ହେଲାପରେ ମନୁଷ୍ୟମାନଙ୍କ ମଧ୍ୟରେ ଯେ ପ୍ରଭେଦ ପ୍ରକାରର ବୁଦ୍ଧି, ବିଗ୍ରହ ଓ ଜ୍ଞାନାଦି ଲକ୍ଷିତ ହେଉଅଛୁ, ଏହା ପୂର୍ବ ଜନ୍ମ ସଂସ୍କାରର ପ୍ରଭେଦ ହେତୁ ହେଉଅଛୁ । ଜଣେ ପିଲାଦିନରୁ କବି ହେବାର ଲକ୍ଷଣର ପରିଚୟ ଦିଏ, ଆଉ କାହାକୁ କାହାକୁ ଯେତେ ଶିଖାଇଲେ ମଧ୍ୟ ଭଲକରି ପଦେ କଥା କହିପାରେ ନାହିଁ । ଜଡ଼ବାଦର ଦୋହାଇ ଦେଇ କହିବାକୁ ଗଲେ ଏକ ପ୍ରକାର ଆମ୍ବଗଛରୁ ଯେତେ ଆମ୍ବ ତୋଳି ଖାଇବା, ସେ ସବୁଯାକ ସମାନ ପ୍ରକାର ସ୍ୱାଦୁ ହେବା ଦେଖାଯାଏ । ପୁଣି ସେହି ଗଛ ଟାକୁଆରୁ ଅନ୍ୟ ଯେଉଁ ନୂତନ ଗଛ ହୁଏ, ତାହାର ସ୍ୱାଦୁ ମଧ୍ୟ ସେହି ମା-ଗଛର ଆମ୍ବପରି ସ୍ୱାଦୁ ହୁଏ । ପୂର୍ବ ଜନ୍ମର ପୂର୍ବ ସଂସ୍କାରକୁ ବାଦ୍ ଦେଲେ ଏକ ବାପର ସନ୍ତାନମାନେ ସମାନ ପ୍ରକାରର ବୁଦ୍ଧି-ବିଗ୍ରହ ବା ଜ୍ଞାନ-ବିଶିଷ୍ଟ ହୁଅନ୍ତେ । ଆଉ ଜଣେ ସାଧୁ, ଜଣେ ଚୋର, ଜଣେ ପଣ୍ଡିତ, ଜଣେ ହୁଣ୍ଡାବିମା କପରି ହେଉଅଛନ୍ତି ? ସମସ୍ତ ପିଲାମାନଙ୍କୁ ପିତା ମାତା ସମାନ

ପ୍ରକାରର ଶିକ୍ଷା ଦୀକ୍ଷା ଆଉ୍ତେ ଚଳାଇଲେ ମଧ୍ୟ ଫଳରେ ବହୁ ତାରତମ୍ୟ ଘଟିଥାଏ । ପୂର୍ବ-ଜନ୍ମ-ସଂସ୍କାରାନୁଯାୟୀ ଏଠାରେ (ଇହଜନ୍ମରେ) ମନୁଷ୍ୟ ଯଥା ସଂସ୍କାରବାନ୍ କର୍ତ୍ତବ୍ୟାକର୍ତ୍ତବ୍ୟ-ପରାୟଣ ହେବା ଅବଧାରିତ । ଏସବୁ ସ୍ୱଭାବଗତ ପ୍ରଭେଦ ପୂର୍ବଜନ୍ମର ପ୍ରମାଣ ଦେଉଅଛି । ଆହୁରି ଟିକିଏ ଦେଖିବାକୁ ଗଲେ ବାଳକ ଭୂମିଷ୍ଠ ହେଲା ମାତ୍ର କ୍ରନ୍ଦନ କରେ । ଦୁଃଖମୟ ଭାବ ତ କ୍ରନ୍ଦନର କାରଣ । ଦୁଃଖପୂର୍ଣ୍ଣ ଭାବ ସେ ବାଳକର ପୂର୍ବ-ସଂସ୍କାରାନୁଯାୟୀ ମନେ ପଡ଼ିବାରୁ ସିନା ସେ ଦୁଃଖବୋଧ କରି କ୍ରନ୍ଦନ କରେ, ଆଉ କାନ୍ଦିବା କ୍ରିୟା ହଠାତ୍ କାହୁଁ ଶିଖିଲା ? ତେବେ ପୂର୍ବ ଜନ୍ମରେ କାନ୍ଦିଥିଲା, କ୍ରନ୍ଦନକ୍ରିୟା-ସଂସ୍କାର ତାର ଥିବାରୁ ଜନ୍ମିବାମାତ୍ରେ କାନ୍ଦିଲା । ଜନ୍ମକାଳୀନ ମାତୃଗର୍ଭଯନ୍ତ୍ରଣାରେ ବାଳକ ମଧ୍ୟ ଇତସ୍ତତଃ ଚାଳିତ ହେବାରେ ଦୁଃଖ ବୋଧ କରୁଥାଏ, ଭୂମିଷ୍ଠ ହେବାମାତ୍ର କ୍ରନ୍ଦନଦ୍ୱାରା ସେହି ଦୁଃଖକୁ ପ୍ରକାଶ କରେ । ଏତଦ୍ରୂପ ଦୁଃଖବୋଧ ସଂସ୍କାରରୂପେ ବାଳକର ପୂର୍ବ ଜନ୍ମରୁ ସଞ୍ଚିତ ଥିବା ପ୍ରମାଣିତ ହେଉଅଛି । ଏପରି ଉତ୍ପନ୍ନଶାୟୀ ବାଳକ ଆଖି ବୁଜିଥାଏ, ସମୟେ ସମୟେ ଅଳ୍ପ ହସିବାର ଦେଖାଯାଏ । ସେ ହର୍ଷୋଦ୍ଦୀପକ ଭାବ ଅନୁଭବ କରି ହସିଦିଏ । ଏପରି ମନୋଗତ ଭାବର ଚାଳନା ପୂର୍ବରୁ ସଞ୍ଚିତ ଥାଇ ସଂସ୍କାରରୂପେ ଭିତରେ ଭିତରେ ଜୀବିତ ରହିଥାଏ, ଏହା ଏଥିରୁ ଜଣାଯାଉଅଛି । ଆଉ ମଧ୍ୟ ବାଳକ ଜନ୍ମମାତ୍ରକେ କ୍ଷୁଧା ପିପାସାର ପୀଡ଼ା ଅନୁଭବ କରିପାରେ । ସେତେବେଳେ କାନ୍ଦିବା ଦେଖାଯାଉଥିବାରୁ ଖାଇବା ପିଇବା ସଂସ୍କାର ତାର ଆଗରୁ ସଞ୍ଚିତ ଥିବା ଅନୁମିତ ହୁଏ । ଆହୁରି ଦେଖାଯାଏ, ବାଳକ ଜନ୍ମମାତ୍ରେ ସ୍ତନ୍ୟପାନ କରି ଜାଣେ । ପାଟିରେ ଚୋଷି ଚୋଷି ଦୁଗ୍ଧ ପୂରାଇ ତାହା ଢୋକ ଉଦରସ୍ଥ କରେ । ଏସବୁ କ୍ରିୟାଗୁଡ଼ିକ ଏବଂ ହସ୍ତପଦାଦିର ପରିଚାଳନାଦି ହଠାତ୍ ସେ କାହୁଁ କିପରି ଶିଖିଲା ? ଏହା ପୂର୍ବଜନ୍ମ-ସଞ୍ଚିତ ସଂସ୍କାର ବୋଲି ସ୍ଥିର କରିବା ବିଧେୟ । ଏସବୁରୁ ଅନୁମିତ ହୁଏ ପୂର୍ବ ଜନ୍ମ ମନୁଷ୍ୟର ଥିଲା, କ୍ରିୟା ମାତ୍ରକେ ଜ୍ଞାନର ଅଧିଷ୍ଠାତୃତ୍ୱରେ ନିଷ୍ପନ୍ନ ହୁଏ । ସଦ୍ୟଜାତ ଶିଶୁର ଏସବୁ କ୍ରିୟାକାରିତ୍ୱ-ବୃତ୍ତି-ସମ୍ବନ୍ଧୀୟ ଜ୍ଞାନ ପୂର୍ବଜନ୍ମସଞ୍ଚିତ ସଂସ୍କାରକୁ ପ୍ରମାଣ କରୁଅଛି । ଏପରି ଦେହର ମରଣରେ ଆତ୍ମାର ମରଣ ନାହିଁ ବୋଲି ମଧ୍ୟ ବାହ୍ୟ-ବ୍ୟବହାରରୁ ଜଣାପଡ଼େ । ବହୁଦିନପୂର୍ବେ ଧର୍ମରାଜ ଯୁଧିଷ୍ଠିରଦେବ କହିଥିଲେ, ମନୁଷ୍ୟ ମରିବାର ନିଶ୍ଚୟ ବୋଲି ଆମ୍ଭେମାନେ ପ୍ରତିଦିନ ଦେଖି ଦେଖି ଜାଣୁଥାଉଁ, ମାତ୍ର ଆମ୍ଭେ ମରିବା ବୋଲି ନିଜେ ଜ୍ଞାନ ନ କରି ଚିରଞ୍ଜୀବୀ ବୋଲି ଆପଣାକୁ ମଣୁଥାଉଁ—ଏହା ବଡ଼ ଆଶ୍ଚର୍ଯ୍ୟ । ଏହା ପ୍ରକୃତରେ ଦେଖିବାକୁ ଗଲେ ଏକେବାରେ ଆଶ୍ଚର୍ଯ୍ୟ ନୁହେ, ଏହା ବଡ଼ ଠିକ୍ କଥା । ଭିତରେ ଭିତରେ ଅନ୍ତରେ ଅନ୍ତରେ ଆତ୍ମା ଜାଣି ଦୃଢ଼ ହୋଇ ରହିଅଛି ଯେ ତାହାର ମୃତ୍ୟୁ ନାହିଁ । ଆଉ ମଧ୍ୟ ଦେହ ମରିବା ସିନା ଅନ୍ୟର ଦେଖାଗଲା । ଆଉ ସେ ଦେହସ୍ଥ ଦେହୀ ବା ଆତ୍ମା, ଦେହ ସଙ୍ଗେ ସଙ୍ଗେ ମରିଗଲା କି କଣ ହେଲା, ଆତ୍ମାକୁ ତ କେହି ଦେଖିପାରୁ ନ ଥାଉଁ; ଏପରି ଆପଣାର ଆତ୍ମାର ଜନ୍ମ ମରଣ ତ ଆପେ ଅନୁଭବ କରିବାକୁ ଅକ୍ଷମ, ତେବେ ମରଣକୁ ଆତ୍ମାର ଖାତିରି ନ ଥିବାରୁ ସେ ମରିବ ବୋଲି

ଅନ୍ତତଃ ଅନୁଭବ କରେ ନାହିଁ କି କହେ ନାହିଁ । ମରଣ ସମ୍ବନ୍ଧୀୟ ଯାହା କଥାବାର୍ତ୍ତା, ତାହା ଦେହ ଲକ୍ଷ୍ୟରେ । ବଳବାନ୍ ଲୋକ ଯେପରି ସାମାନ୍ୟ ପୀଡ଼ାଦିକୁ ଖାତିର ନ କରି ଅବଲୀଳାକ୍ରମେ ବୁଲାଚଲା କରୁଥାଏ, ସେ ଅନ୍ତତଃ ଦୃଢ଼ ଥାଏ ଯେ ପୀଡ଼ା ଚାଲିଯିବ, ମୋର କଣ କରିବ ? ସେହିପରି ଆତ୍ମା ଅନ୍ତତଃ ଦୃଢ଼ ଅଛି ଯେ ମୋର ମୃତ୍ୟୁ ନାହିଁ, ଦେହ ଯିବାରେ କଣ ଅଛି ? ମୁଁ ମୁଁ ରୂପେ ସର୍ବଦା ରହିଅଛି ଓ ଥିବ । ଏହି ଉତ୍ତରିଆ ସଂସ୍କାର ଅଜ୍ଞାତଭାବେ ତା ନିଜ ଧର୍ମାନୁସାରେ ଆତ୍ମା ସହିତ ନିବଦ୍ଧ ରହିଥିବାରୁ ମରଣଚିନ୍ତା କେହି ନ କରି ବରଂ ବହୁବର୍ଷ ସକାଶେ ଦୈହିକ ସୁଖ-ସମ୍ଭୋଗାଦି କରିବା ଆଶାରେ ଯେତେ ଧନ ସଞ୍ଚୟ କଲେ ମଧ୍ୟ ତହିଁରୁ ମନ ନିବର୍ତ୍ତୁ ନାହିଁ । ମନୁଷ୍ୟ ମନେ କରୁଅଛି, ଧନ ଥିଲେ କେତେବେଳେ ହେଲେ ମଧ୍ୟ ଅଭାବ ଦେଖାଦେବ ନାହିଁ । ମୁଁ ତ ଅଛି, ଚିନ୍ତା କଣ ? ଏ ସ୍ଥଳେ ଦେହର ମରଣକୁ ଆତ୍ମା ନିଜେ ଚିରଜୀବୀ ଥିବାରୁ ଖାତିର ନ କରି ତାହାର ସ୍ୱକୀୟ ଚିରଜୀବତ୍ୱ ସେ ଅନ୍ତତଃ ସ୍ମରଣ ରଖି ଉନ୍ମତ୍ତ ଭାବରେ ସଂସାରରେ ଖେଳୁଅଛି । ଏବେ ଦେହ ମରଣରେ ଆତ୍ମାର ମୃତ୍ୟୁ ନ ଘଟି ସେ ଚିରଜୀବୀ ବୋଲି ଦୃଢ଼ ଥିବା ଏ ସବୁରୁ ଜଣାପଡ଼େ । ଏହିରୂପେ ଆତ୍ମାର ପୂର୍ବଜନ୍ମ ଓ ପରବର୍ତ୍ତୀତ୍ୱ ସମ୍ବନ୍ଧେ ଆଲୋଚନା ଏତିକରେ ଶେଷ କରି ଏବେ ଆତ୍ମାର ପୁରୁଷକାର ବା ପୌରୁଷେୟ ଓ ଦୈବ ବା ପ୍ରାରବ୍ଧାଦି ସମ୍ବନ୍ଧେ ଅଲ୍ପାଲୋଚିତ ହେଉ ।

## ୧୪ଶ ପାଠ—ପୁରୁଷକାର ଓ ଦୈବ

ପ୍ରଯତ୍ନ ସହକାରେ ସିଦ୍ଧିଲାଭ କରିବାର ନାମ ପୁରୁଷକାର । ଅପ୍ରଯତ୍ନସିଦ୍ଧି ବା ପ୍ରାପ୍ତିର ନାମ ଦୈବ । ପୁରୁଷକାର ଚାରି ପ୍ରକାର—୧-ମୁଖ୍ୟ, ୨-ଗୌଣ, ୩-ଉପାଦେୟ, ୪ର୍ଥ-ହେୟ ବା ଘୃଣ୍ୟ । ସଂସାରରେ ଦେହ ଧାରଣ କରି ଜନ୍ମଲାଭ କଲେ ସୁଦ୍ଧା ଦେହ ଓ ଇନ୍ଦ୍ରିୟାଦିର ବିଳାସାଦିରେ ଏବଂ ଅନ୍ତଃକରଣର ମୋହମୟ ବୈଷୟିକ ପ୍ରଲୋଭନାଦିରେ ବିମୁଗ୍ଧ ନ ହୋଇ ଜ୍ଞାନ ବୈରାଗ୍ୟ ଯୋଗ ଓ ଆତ୍ମଲୟ ଅଭ୍ୟାସ-ପୂର୍ବକ ପୁରୁଷର ଯେଉଁ ମାୟାନିର୍ଲିପ୍ତ ଆତ୍ମସଂସ୍ଥାନ ଦୃଢ଼ତା ତାହା ମୁଖ୍ୟ । ଦେହ ସଂସାରଗତ ବିଷୟଲିପ୍ତ ଓ କେବଳ ସଂସାରଚିନ୍ତା-ମଗ୍ନ ରହି ଅହଂକାର ଓ ଆଡ଼ମ୍ବର ପ୍ରଦର୍ଶନ ସକାଶ ଅଥଚ ଦୃଷ୍ଟିଷ୍ଟାଲାଭାର୍ଥ ଯେଉଁ ବୃହତ୍ କାର୍ଯ୍ୟ କରାଯାଉ ବା ଯେଉଁ ପାଣ୍ଡିତ୍ୟ ଅର୍ଜ୍ଜନ କରାଯାଉ ପଛକେ, ତାହା ଗୌଣ ପ୍ରକାର ଅଟେ । ତୃତୀୟ ପ୍ରକାରଟି ଉପାଦେୟ । ସଂସାରରେ ଜ୍ଞାନ, ଧର୍ମ, ନ୍ୟାୟ, ସଦ୍‌ବିଦ୍ୟା, ସତ୍ୟ, ଦୈହିକ ସ୍ୱାଚ୍ଛନ୍ଦ୍ୟ ଏବଂ ସୁଖସ୍ୱାସ୍ଥ୍ୟାଦି ପ୍ରଚଳନ ଦ୍ୱାରା ସଂସାରୀୟ ସାଧାରଣ ମନୁଷ୍ୟ ସମାଜର ଉପକାର ଓ ମଙ୍ଗଳାଦି ସାଧନର ଯେଉଁ ଚେଷ୍ଟା ଏକ ମହାବ୍ରତରୂପେ ସର୍ବଦା ହୃଦୟକୁ ଅଧିକାର କରି ନିଃସ୍ୱାର୍ଥ ନିରହଂକାରଭାବେ ଈଶ୍ୱରୋ-ଦ୍ଦେଶେ କାର୍ଯ୍ୟକ୍ଷେତ୍ରରେ ଅନୁରୂପ କର୍ତ୍ତବ୍ୟ କର୍ମରେ ପ୍ରବୃତ୍ତ ହୁଏ, ତାହା ଉତ୍ତମ ବା

ସ୍ୱର୍ଗୀୟ ପ୍ରଧାନ ପୌରୁଷେୟ । ଚତୁର୍ଥ ହେୟ ବା ଘୃଣ୍ୟ । ଆତ୍ମମ୍ଭରିତା, ସ୍ୱେଚ୍ଛାଗ୍ରହିତା ଓ ବିଳାସିତାଦି ନିକୃଷ୍ଟ ସଙ୍କୀର୍ଣ୍ଣତମ ପ୍ରବୃତ୍ତି ସହକାରେ ମିଥ୍ୟା କପଟାଗ୍ରହ, କୁଟିଳତାଦି ମଳିନ ସ୍ୱଭାବ ପରିଚାଳନା ଦ୍ୱାରା ଯେଉଁ ଚେଷ୍ଟା ସଂସାରକୁ ବଞ୍ଚନା କରି ନିଜର ସୁଖ-ସ୍ୱାଚ୍ଛନ୍ଦ୍ୟବୃଦ୍ଧିର ପ୍ରୟାସ ପାଏ, ତଦ୍ଦ୍ୱାରେ ପ୍ରଭୂତ ଧନ ବା ଅବିଦ୍ୟା-ନାମଧେୟ-ବିଦ୍ୟା ଉପାର୍ଜ୍ଜିତ ହେଲେ ମଧ୍ୟ ତାହା ନାରକୀୟ ପାଶବ ପୌରୁଷେୟ ଅଟେ । ଏହାହିଁ ହେୟ ବା ଘୃଣ୍ୟସଂଜ୍ଞକ ଅଟେ । ଆଜିକାଲି ଅଧିକାଂଶତଃ ଏହା ହିଁ ପୌରୁଷ ନାମରେ ବ୍ୟବହୃତ ହେଉଅଛି । ଏଥିରେ ପ୍ରଥମ ପ୍ରକାରଟି ପରମହଂସ ସାଧୁପୁରୁଷମାନଙ୍କଠାରେ ବିଶ୍ରାମଲାଭ କରିଥାଏ । ସେମାନେ ସଂସାରରେ ପବିତ୍ର ଆତ୍ମାର ଆଦର୍ଶ ଦେଖାଇ କେବଳ ସ୍ୱୟଂ ନିର୍ଲିପ୍ତ ଦ୍ରଷ୍ଟା ବା ସାକ୍ଷୀରୂପେ ବିରାଜମାନ ରହିଥାଆନ୍ତି । ଅଜଗର-ଧର୍ମାବଲମ୍ବନ-ପୂର୍ବକ ଯଦୃଚ୍ଛା ଲାଭରେ ସନ୍ତୁଷ୍ଟ ହୋଇ ଉପାଧିଶୂନ୍ୟ ଅବସ୍ଥାରେ ବିଚରଣ କରନ୍ତି । ଏହା ଆତ୍ମାର ଆଦର୍ଶ ପୁରୁଷକାର ଅଟେ । ଦ୍ୱିତୀୟ ପ୍ରକାରଟି ସ୍ଥୂଳ ସୂକ୍ଷ୍ମ ଦେହାଭିମାନ ସହକାରେ ସଂସାରଭାବାପନ୍ନ ଅବସ୍ଥା ଧାରଣ ପୂର୍ବକ ଲୋକାନୁକରଣ ଦ୍ୱାରା କର୍ତ୍ତବ୍ୟ ସ୍ଥିର କରି ମନୁଷ୍ୟକୁ ତଥାବିହିତ ଚେଷ୍ଟାରେ ଅଗ୍ରସର କରାଏ । ଏହା ସାଧାରଣ ସଂସାରୀର ଆଦର୍ଶ ପୌରୁଷେୟ । ତୃତୀୟ ପ୍ରକାରଟି ମିଶ୍ର ଅଥଚ ପ୍ରକାରାନ୍ତରେ ସର୍ବୋତ୍କୃଷ୍ଟ ପୌରୁଷେୟ ଅଟେ । ଏହା ଉପାଦେୟ, ମନୁଷ୍ୟ ଜନ୍ମକୁ ଚରିତାର୍ଥ କରେ । ସଂସାରରେ ସ୍ୱର୍ଗୀୟ ଆଦର୍ଶ ପ୍ରଦର୍ଶନ କରେ, ସଂସାରର ନିଃସ୍ୱାର୍ଥ ମଙ୍ଗଳ ସାଧନଦ୍ୱାରା ସଂସାରର ସର୍ବପ୍ରକାର ଐହିକ ଓ ପାରଲୌକିକ ହିତାନୁଷ୍ଠାନ କରେ; କହିବାକୁ ଗଲେ ଏହି ଶ୍ରେଣୀର ପୁରୁଷକାର ଈଶ୍ୱରାନୁମୋଦିତ ଏବଂ ଏହି ଶ୍ରେଣୀର ପୁରୁଷ ପରମେଶ୍ୱର ଓ ପରମେଶ୍ୱରୀର ବରପୁତ୍ର ସ୍ୱରୂପ ମହାପୁରୁଷ ନାମେ କଥିତ ଏବଂ ସର୍ବପୂଜ୍ୟ ଅଟନ୍ତି । ୪ର୍ଥ ପ୍ରକାର ପୌରୁଷେୟ ବର୍ତ୍ତମାନ ସଂସାରରେ କଥିତ ଉଚ୍ଚ ସ୍ଥାନାଧିକାର କରିବା ଦେଖାଯାଉଥିଲେ ମଧ୍ୟ ଏହା ଗର୍ବ-ମୋହ-ଅହଂକାରାଦିର ମୂର୍ତ୍ତିମାନ୍ ବିଗ୍ରହରୂପେ ଏକପ୍ରକାରର ମନୁଷ୍ୟସମାଜକୁ କବଳିତ କରି ପ୍ରକାରାନ୍ତରେ ନିରୀହ ସରଳ ସମାଜର ସର୍ବବିଧ ଅମଙ୍ଗଳ ଓ ଅପକାରାଦି ଘଟାଉଅଛି । ଏହା ସେହି ଅହଂକାରୀ ସମାଜରେ ଲୀଳା ସହକାରେ ପୌରୁଷେୟ ନାମ ଧାରଣ କରି ଅପର ନିରୀହ ସମାଜକୁ ଆଡ଼ମ୍ବର ଓ ଭୟାଦି ପ୍ରଦର୍ଶନ କରାଇ ସେମାନଙ୍କ ଦ୍ୱାରା ମଧ୍ୟ ପୁରୁଷକାର ବୋଲି ବଳପୂର୍ବକ ମନାଇଁ ନେଉଅଛି । ଏହି ଜବରଦସ୍ତି ପୁରୁଷକାର ଉପସ୍ଥିତ ସମୟର ପ୍ରଧାନ ପୌରୁଷେୟରୂପେ ବଳରୂପେ ଦଣ୍ଡାୟମାନ ହୋଇ ପ୍ରକୃତ ପୁରୁଷ-କାରକୁ ଆବରଣ କରି ବଲୁ ପ୍ରପ୍ରାୟ ଅବସ୍ଥାରେ ରଖିବାର ପ୍ରୟାସ ପାଉଅଛି । ଏଥିରେ ଆଶୁ ଫଳଲାଭ ଦେଖି ଅସଂଯତ ବିଳାସୀଶ୍ରେଣୀ ପତଙ୍ଗ ଅଗ୍ନିକୁ ଝାମ୍ପି ପଡ଼ିଲା ପରି ବଡ଼ ଆଗ୍ରହ ଓ ଯତ୍ନ ସହକାରେ ଏହା ଗ୍ରହଣ କରୁଅଛନ୍ତି । ମନେ କରୁଅଛନ୍ତି, ଏହା ଉତ୍କୃଷ୍ଟ ପୁରୁଷକାର, ଏହା ଗ୍ରହଣକାରୀମାନଙ୍କ ପକ୍ଷରେ ଆଶାତୀତ ସୁଖସମ୍ଭୋଗାଦି ଯଥାଶୀଘ୍ର ପ୍ରଦାନ କରୁଅଛି । ମାତ୍ର ଏହା ବଡ଼ ଭୁଲ । ଯେପରି ଛେଳିପଶୁ ପ୍ରୋକ୍ଷଣ ବେଳେ

କଳା ଦୂବ, ବରକୋଳି ପତ୍ର ସହ ସଫା ସୁନ୍ଦର ଧିଆ ଅରୁଆ ଗୁଡ଼ାଳ ଖାଇ ଖୁସି ହୁଏ, ମାତ୍ର ସେ ଆନନ୍ଦ ଯେ ତାହାର ନିକଟମୃତ୍ୟୁର ପୂର୍ବ ଚିହ୍ନ ଏହା ମୁଗ୍ଧ ପଶୁ ଜାଣିପାରେ ନାହିଁ, ସେହିପରି ଚତୁର୍ଥ ଶ୍ରେଣୀ ପୁରୁଷକାର । ସାଧକ ପୁରୁଷମାନେ ପ୍ରକୃତିର ପରୀକ୍ଷା ବୁଝି ନ ପାରି ଅଧର୍ମ ଓ ଅନୈତିକ ଭାବରେ ପର ପ୍ରବଞ୍ଚନା କରି ବଳପୂର୍ବକ ପରସ୍ୱଭୋଗରେ ମାତି ଅଛନ୍ତି । ପ୍ରକୃତି ଏହାର ପ୍ରତିଘାତ ଶିକ୍ଷା ଦେଲାବେଳକୁ ଏହି ମୂଢ଼ଶ୍ରେଣୀର ଭୟାବହ ମାରାତ୍ମକ ପତନ ଅନିବାର୍ଯ୍ୟ ହୋଇ ଉଠିବ, ଏହା ପ୍ରକୃତିର ନିୟମ । ମୋହାନ୍ଧ ହୋଇ ସ୍ୱୟଂ ନିୟନ୍ତା ବୋଲି ମନେ କଲେ ପ୍ରକୃତିର ପରୀକ୍ଷାରୁ ରକ୍ଷା ନାହିଁ । ନିଜର ଭାବୀ ଅମଙ୍ଗଳ ଓ ସଂସାରରେ ଉପସ୍ଥିତ ଅପକାରଜନକ ବ୍ୟାପାରକୁ ପୁରୁଷକାର ମନେକରିବା ବିଡ଼ମ୍ବନା ମାତ୍ର; ଯାହାହେଉ, ସମୟର ଗତି ଅନୁସାରେ ଏହା ପ୍ରକୃତ ପୌରୁଷେୟ ବୋଲି ତଦ୍ରୂପ ସମାଜରେ ଆଦରଣୀୟ ହୋଇଅଛି; ବରଂ ଏହି ଦୁଷ୍କ୍ରିୟା ସାଧନ କରି ନ ପାରିବା ଲୋକ କାପୁରୁଷ ବୋଲି ବିବେଚିତ ହେଉଅଛି । ବର୍ତ୍ତମାନ ଏହାର ପତନ ଏଣ୍ଡି–ସେଣ୍ଡିଠାରେ, ଧରାପଡ଼ିଗଲା ଯେତେବେଳେ ଯେଉଁ-ଠାରେ ।

ଏହି ଚାରିପ୍ରକାର ପୌରୁଷେୟ ଅର୍ଥାତ୍ ୧ମ ମୁଖ୍ୟ, ୨ୟ ଗୌଣ, ୩ୟ ଉପାଦେୟ ଓ ୪ର୍ଥ ହେୟ ବା ଘୃଣ୍ୟାଦି ସମ୍ବନ୍ଧରେ ଯାହା କିଛି ଉଲ୍ଲେଖ କରାଗଲା, ଏବେ ଦୈବ କଣ—ସେ ସମ୍ବନ୍ଧରେ କହିବାକୁ ଗଲେ ଦୈବ ହିଁ ଦାତା ସ୍ୱରୂପ; ପୁରୁଷକାର ଗ୍ରହୀତା । ଦୈବର ସଂଜ୍ଞା ଏଥିପୂର୍ବେ ଉକ୍ତ ହୋଇଅଛି । ପୁରୁଷକାରର ଅଭ୍ୟାସ ବା କର୍ତ୍ତୃତ୍ୱସମ୍ବନ୍ଧୀୟ ଚେଷ୍ଟା ଯେଉଁ ପ୍ରବୃତ୍ତିରୁ, ବୁଦ୍ଧି ବିବେକାଦିରୁ, ବା ବଳରୁ, କିମ୍ବା ଉପାଦାନ କି ଉପକରଣାଦିରୁ ଜାତ ହେଉଅଛି, ସେ ସବୁ କେହି ନିଜ ବଳରେ କେଉଁଠାରୁ ନେଇଆସିନାହିଁ, ବା ଖରିଦସୂତ୍ରେ କି ପ୍ରବଞ୍ଚନା କରି ବା ଅନ୍ୟ ଯେ କୌଣସି ପ୍ରକାର ନିଜ ଯତ୍ନରେ କାହାଠାରୁ ପାଇନାହିଁ; ତାହା ସବୁ ଦୈବଦତ୍ତ । ତାହା ଗ୍ରହଣ କରି ପୂର୍ବ ସଂସ୍କାରାନୁସାରେ କିଏ ଚାରିପ୍ରକାର ପୌରୁଷେୟ ମଧ୍ୟରୁ କେଉଁ ପ୍ରକାରଟିକୁ କେତେବେଳେ କିପରି କାର୍ଯ୍ୟରେ ପରିଣତ କରୁଅଛି, ତାହା କହିବା ବଡ଼ ସହଜ ନୁହେ । ପୁରୁଷକାର ମୋଟ ଉପରେ ଦୈବାଧୀନ, ଆଉ ଦୈବ ପୁରୁଷକାରର ଅଧୀନ ନୁହେ । ଜଡ଼ବାଦୀ ପୂର୍ବ ଜନ୍ମର ଅସ୍ତିତ୍ୱ ପ୍ରମାଣ କରିବାକୁ ଅକ୍ଷମ-ବୁଦ୍ଧି-ସମ୍ପନ୍ନ ଥିବାରୁ ମନେକରନ୍ତି, ଆମ୍ଭେ ସବୁ କରୁଥାଉଁ, ଯାହା କଲେଇଁ ସେ ହେଲା, ନ କଲେ ତ କିଛି ହୋଇ ନ ପାରେ, ତେବେ ପୁରୁଷକାର ସବୁ ଆଉ କିଛି ନାହିଁ; ମାତ୍ର "ଆମ୍ଭେ ସବୁ କରୁଥାଉଁ" ତେବେ ଏହି ଅହଂକାରାବୃତ-ମୋହମୟ ଧାରଣାତ୍ମକ ଭାବ ପୁରୁଷକାରର ନାମାନ୍ତର ବୋଲି ବୁଝିନେବାକୁ ହେଉଅଛି । ଏଠାରେ ଦେଖାଯାଉ ଏତଦ୍ରୂପ ଗର୍ବାହଂକାରାଦି କେବେ ଜାତ ହେଲା, ଆଉ କେଉଁଦିନଠାରୁ କର୍ମକ୍ଷମ ଓ ଭାବନାଶୀଳ ହେବାକୁ ହେଲା ? ଉତ୍ତରରେ କୁହାଯାଇପାରେ ହେତୁ ହେଲାରୁ । ଆଉ ଦୈହିକ ବଳ ଯଥାପରିମାଣରେ ହେଲାଉତ୍ତାରୁ, କିନ୍ତୁ ତହିଁ ପୂର୍ବରୁ ନୁହେ । ତେବେ

କୁହାଯିବ ହେତୁ ହେବା ଓ ଦୈହିକ ବଳ ସଂଗୃହୀତ ହେବାର ନିର୍ଦ୍ଦିଷ୍ଟ ସମସ୍ତ ଦୈବ-ନିୟମାଧୀନ । ପୁରୁଷକାରର ଅଧୀନ ନୁହେ । ସେହି ନିୟମ ଦୈବାଧୀନ ଓ ଦୈବ ନିୟାମକ ଅଟେ । କର୍ମମୟ ଦେହ ଏବଂ କର୍ମ-ଚିନ୍ତାଦି ଜ୍ଞାନଶକ୍ତିର ଆଧାରଭୂତ— ଅନ୍ତଃକରଣ, ଆଉ କର୍ମସାଧନ କ୍ଷେତ୍ରରୂପ ସର୍ବାଧାର ବିରାଟ-ବିଶ୍ୱ-ସଂସାର ଆମ୍ଭ ପୁରୁଷକାର ପୂର୍ବରୁ କେଉଁ ପୁରୁଷକାରଦ୍ୱାରା ନିର୍ମିତ ? ପୁରୁଷକାର ବ୍ୟତୀତ ପରା ସାମାନ୍ୟ କାର୍ଯ୍ୟ ହୋଇପାରୁନାହିଁ ? ତେବେ ଏ ମହାସମାରୋହପୂର୍ଣ୍ଣ-ରଚନା-ନିର୍ମାଣ-କୌଶଳମୟ ଦେହ-ସଂସାରାଦିର ନିର୍ମାଣ ଯେଉଁ ପୁରୁଷକାର-ଦ୍ୱାରା ଏତଦାକାରରେ ଅବସ୍ଥିତ, ତାହାର ନାମ ଆମ୍ଭେ ନୋହୁଁ, ତାହାର ନାମ ହିଁ ଦୈବ । ଅତଏବ ଏସବୁ ଦୈବଦତ୍ତ । ଆମ୍ଭର କର୍ମ-ନିଷ୍ପାଦକତା ଏବଂ ଜ୍ଞାତୃତ୍ୱାଦି ଅବଶ୍ୟ ଦେଖାଯାଉଅଛି, କିନ୍ତୁ ଏସବୁ ଏକ ନିୟମିତ ସୀମାମଧ୍ୟରେ ଆବଦ୍ଧ ରହିଅଛି । ସେହି ସୀମା ଏବଂ ନିୟମାଦିର ନିର୍ଦ୍ଧାରକ ଆମ୍ଭେ ନୁହେଁ କି ଆମ୍ଭର ପୁରୁଷକାର ନୁହେ । ଆମ୍ଭ ପୁରୁଷକାର ଯେତେ ଉଚ୍ଚାକାଙ୍କ୍ଷାବିଶିଷ୍ଟ ହେଉ ନା କାହିଁକି, ସେହି ନିୟମ ଓ ସେହି ନିର୍ଦ୍ଦିଷ୍ଟ ସୀମାରୁ ଏକ କେଶାଗ୍ର ପରିମାଣ ଅଧିକ ଟପି ପାରୁନାହିଁ । ତେବେ ପୁରୁଷକାର ମଧ୍ୟ ପୁରୁଷ ସହିତ ଦୈବର ଅଧୀନ; କଦାଚ ସ୍ୱାଧୀନ ନୁହେ । ବିଭିନ୍ନ ପ୍ରକାର ବୁଦ୍ଧି, ପ୍ରତିଭା କିମ୍ବା କ୍ଷମତାଦି ପ୍ରାରବ୍ଧ ବା ପୂର୍ବସଞ୍ଚିତ କର୍ମଫଳଜନିତ ସଂସ୍କାରାନୁଯାୟୀ ଦୈବଦ୍ୱାରା ଦତ୍ତ । ଏହିରୂପେ ପୁରୁଷର ଦୈବ ଓ ପ୍ରାରବ୍ଧ ଉଭୟେ ପରସ୍ପର ଅବିରୋଧ-ସମାନୁକୂଳ ବିଶିଷ୍ଟ ଅଟନ୍ତି । ଅତଏବ ଦୈବହିଁ ଦାତା, ଏବଂ ପୁରୁଷକାର ବା ପୌରୁଷେୟ ଗ୍ରହୀତା । ଅନ୍ୟ ପକ୍ଷରେ ଦେଖିବାକୁ ଗଲେ ଦୈବ ଓ ପୁରୁଷକାର ଏବଂ ପ୍ରାରବ୍ଧ ଯେପରି ଏକାଧାରରେ ଅବସ୍ଥିତ ଓ ପରସ୍ପର ସମବାୟୀ । ଏ ସବୁର ସ୍ୱାତନ୍ତ୍ୟ କଳ୍ପନା କରି ଆମ୍ଭେ ଏପରି ବା ସେପରି ବୋଲି ଦେଖାଇ ହେବା କେବଳ ଅହଂକାର, ମୋହ, ଗର୍ବ ଓ ଅଜ୍ଞତାଦିର କାର୍ଯ୍ୟ ଅଟେ । ପୁରୁଷକାରର ବଡ଼ିମା ସମ୍ବନ୍ଧେ ଏକ ପୌରାଣିକ ବିବରଣ ସ୍ମରଣ କରାଯାଉ । ଯେପରି ହିରଣ୍ୟାକ୍ଷ ଅସୁର ସ୍ୱକୀୟ ପୌରୁଷେୟ ବଳରେ କଠୋର-ତପଃସିଦ୍ଧ ହୋଇ ଏପରି କ୍ଷମତା ପ୍ରାପ୍ତ ହୋଇଥିଲା ଯେ ସଂସାରରେ ଯେତେପ୍ରକାର ଜୀବସୃଷ୍ଟି ବିଦ୍ୟମାନ ଥାଇ ଆବିଶ୍ୱ-ସଂସାର ଗର୍ଭ ପର୍ଯ୍ୟନ୍ତ ପରିପୂର୍ଣ୍ଣ ହୋଇଅଛନ୍ତି, ତହିଁ ମଧ୍ୟରୁ କୌଣସି ପ୍ରକାର ପ୍ରାଣୀ ଯେତେ ମହାନ୍ ହେଉ ପଛକେ ତାହାଦ୍ୱାରା ସେ ଅସୁର କଦାଚ ମରିପାରିବ ନାହିଁ । ଅଥଚ ସେ ସମସ୍ତଙ୍କୁ ଜୟ କରିବ । ଦିନ ବା ରାତ୍ରି କୌଣସି କାଳ ମଧ୍ୟରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳାଦି କୌଣସି ପୁରରେ ଲାଗିଥାଇ ସେ ମରିବ ନାହିଁ । ଆଉ ମଧ୍ୟ କୌଣସି ଅସ୍ତ୍ର ତାହାର କିଛି ଅନିଷ୍ଟ କରିପାରିବ ନାହିଁ । ଏପରି ଅଜେୟ ଓ ଅମର ହୋଇ ସେ ତ୍ରିଜଗତ ଜୟ କରିବ ଓ ଭୋଗ କରିବ । ଏ ସ୍ଥଳରେ ଦେଖାଯାଏ ଯେତେଦୂର ସମ୍ଭବ ହୋଇପାରେ, ସେତେଦୂର କ୍ଷମତା ସେ ଆୟତ୍ତ କରିଥିଲା; ମାତ୍ର ଅଶକ୍ତ ଓ ନିରୁପାୟ ସହାୟବିହୀନ ପ୍ରହ୍ଲାଦ ବାଳକର ଆଧ୍ୟାତ୍ମିକ-ଧର୍ମତତ୍ତ୍ୱ-ଚିନ୍ତା ବଳରେ କଣ ହେଲା ?

ଯାହାକୁ ମାରିବାକୁ କେହି ପ୍ରାଣୀ ଯେ କୌଣସି ରୂପବିଶିଷ୍ଟ ହେଲେ ସୁଦ୍ଧା ମାରି ନ ପାରେ, ଆଉ ଯାହାର ମରିବାର ସ୍ଥାନ ନାହିଁ, କାଳ ନାହିଁ, କିମ୍ବା କୌଣସି ଅସ୍ତ୍ର ମଧ୍ୟ ନାହିଁ, ତେବେ ସେ କିପରି ମରିବ ? ଏଥି ସକାଶେ ଯୁକ୍ତି ଖଟି ନ ପାରେ, ମାତ୍ର ଜୀବସୃଷ୍ଟିର ବହିର୍ଭୂତ ରୂପ ଅର୍ଥାତ୍ ମୁଖ ଓ ହସ୍ତ ମାତ୍ର ସିଂହର, ବାକି ସର୍ବାବୟବ ମନୁଷ୍ୟ ପରି, ନର ଏବଂ ସିଂହ ଉଭୟ ମିଶ୍ରିତ ଜୀବ ନରସିଂହ ଦ୍ୱାରା ଦିନ ନୁହେଁ କି ରାତି ନୁହେଁ, ସନ୍ଧ୍ୟା ସମୟରେ, ତ୍ରିଭୁବନ ଲଗା ନୁହେଁ, ଜାନୁରେ, ଅସ୍ତ୍ର ନୁହେଁ, ଦେହର ପ୍ରତ୍ୟଙ୍ଗ ନଖରେ ହିରଣ୍ୟାକ୍ଷର ମୃତ୍ୟୁ ସଂଘଟିତ ହେଲା । ହିରଣ୍ୟାକ୍ଷ ଯାହା ଲାଭ କରିଥିଲା ପୌରୁଷେୟ ବଳରେ ମଧ୍ୟ ତାହା ମିଳିବା ଦୁର୍ଘଟ ଅଟେ । ତେବେ ଏ କ୍ଷମତା, ତାହାର କାର୍ଯ୍ୟ ବିଶେଷ ଦ୍ୱାରା ଅବଶ୍ୟ ଦୈବଦତ୍ତ ଥିଲା । କେବଳ ପୌରୁଷେୟ ଦ୍ୱାରା ପ୍ରାପ୍ତ ହୋଇ ନ ଥିଲା । ପୁଣି ଏହି ଅକ୍ଷୟ ବିଭୂତି ନଷ୍ଟ ହେବା ଅସାଧ୍ୟ ଓ ଅସମ୍ଭବ ଥିଲେ ମଧ୍ୟ ଏକ କ୍ଷଣକୁ ଅଟିଲା ନାହିଁ । ଭଗବାନ୍ ହରି ଭକ୍ତବତ୍ସଳ ନରସିଂହରୂପ ଧାରଣ କରି ସେହି ଅସୁରର ସମୁଦାୟ ସର୍ତ୍ତ ରକ୍ଷାକରି ମଧ୍ୟ ଅବଲୀଳାକ୍ରମେ ସଂହାର କରିଥିଲେ । ଏ ସଂହାର କିମ୍ବା ଅତିକ୍ରମାୟ ଓ ଅନିର୍ବଚନୀୟ ବୋଲି କେବି ବୁଦ୍ଧିରେ ସ୍ଥିର କରିପାରିବ, ମାତ୍ର ଦୈବ ବଳୀୟାନ୍ । ଦୈବର ଅସାଧ୍ୟ କିଛି ନାହିଁ । ଏଠାରେ ଯେଉଁ ଦୈବ ଅଗ୍ରବର୍ତ୍ତୀ ପୁରୁଷକାର ଓ ତଦନୁଯାୟୀ ଖଣ୍ଡ ବିଭୂତିର ପ୍ରଦାତା, ପୁଣି ଯେଉଁ ଦୈବ ସଂସାରର ମଙ୍ଗଳ ବିଧାନାର୍ଥ ସେହି ଅତୁଳୈଶ୍ୱର୍ଯ୍ୟ-ସମନ୍ୱିତ ସେହି ଅନୁପମ ପୁରୁଷକାରର ମଧ୍ୟ ସଂହର୍ତ୍ତା—ଏହିରୂପେ ପୁରୁଷକାର ହେଉ ବା ପ୍ରାରବ୍ଧ ହେଉ ସବୁ ଶେଷପକ୍ଷରେ ଦୈବାଧୀନ । କଥା ଏତିକି ଯେ ଜଡ଼ବାଦସେବୀ ଜଡ଼ାତ୍ମପ୍ରାଣ-ସର୍ବସ୍ୱ-ମୋହ-ଗର୍ବାନ୍ଧ-ମାନବ ବିଶେଷ କହିପାରନ୍ତି ଯେ 'ଯାଅ ହେ ଏଇ କଥା ପୁଣି ସତ୍ୟ ?' ଆଜିକାଲିର ଲୋକ ଯେପରି କୁସଂସ୍କାରର ଅଧୀନ ହୋଇ କୁଶିକ୍ଷା ଓ କୁସଙ୍ଗାଦିର ଆଦର୍ଶ ଅନୁକରଣ କରି ଏ ଆଖ୍ୟାୟିକାକୁ କାଳ୍ପନିକ ବୋଲି ଅସମ୍ଭବ କରି ଉଡ଼ାଇଦେବେ—ସେ ସଂସ୍କାରବିଧିର ଆକାର କିପରି ? ଆଜିକାଲିର ଲୋକ ଭୌତିକ ଦେହାଦି ଓ ଭୌତିକ ଜଗଦାଦି ଦର୍ଶନ କରି ସ୍ଥିର କରୁଅଛୁ ଯେ ଏହି କୌଶଳମୟ ବିଶ୍ୱସଂସାର ତାହାର ସ୍ୱୀୟ ନିୟମାଧୀନରେ ଓ ପ୍ରକ୍ରିୟାଦି ଦ୍ୱାରା ସ୍ୱୟଂ ବିଦ୍ୟମାନ ଅଛି, ଓ ପ୍ରାଣିବର୍ଗ ମଧ୍ୟ ତଦ୍ରୂପ ଭୌତିକ ନିୟମରେ ସୃଷ୍ଟି, ସ୍ଥିତି ଓ ବିନାଶ ପ୍ରାପ୍ତ ହେଉଅଛନ୍ତି । ମନୁଷ୍ୟ ବୁଦ୍ଧିଦ୍ୱାରା ଯେତିକି ଏ ସଂସାରରେ ଜାଣିପାରୁଅଛି ବା ଜାଣିପାରିବା ଅନୁମାନ କରୁଅଛି, ଏବଂ ଯାହା ହୋଇପାରିବା, ନ ହୋଇପାରିବା ଦେଖୁଅଛି ଓ ଅନୁମାନ କରୁଅଛି, ସେହି ପର୍ଯ୍ୟନ୍ତ ସମ୍ଭବ ବା ଅସମ୍ଭବର ସୀମାକୁ ଏକ ବନ୍ଧନୀ-ମଧ୍ୟାନ୍ତର୍ଗତ କରି ରଖୁଅଛି । କୂପ-ମଣ୍ଡୂକ-ନ୍ୟାୟରେ ମନୁଷ୍ୟର ବୁଦ୍ଧି ଏହିପରି ଏକ ସଂକୀର୍ଣ୍ଣତମ-ଭୌତିକଜ୍ଞାନଚ୍ଛିଦ୍ର-ମଧ୍ୟରେ ରହି ତହିଁର ବାହାରରେ ଅଧିକ କଣ କିଛି ଅଛି ବୋଲି ଜାଣିପାରିବାକୁ ଅକ୍ଷମ ହେଉଅଛି । ପୁଣି ଏହି ଛିଦ୍ର ଅଜ୍ଞାନାନ୍ଧକାରାଚ୍ଛନ୍ନ ଥିବାରୁ ମନୁଷ୍ୟ ମୋହବିଜଡ଼ିତ ହୋଇ ଏହି ସ୍ୱଳ୍ପ ଜଡ଼ୀୟ ଜ୍ଞାନ ଲାଭକରି ତହିଁରେ ଗର୍ବ-ଦର୍ପ-ଦମ୍ଭ-ବିଶିଷ୍ଟ ଅପଜୀବାକାର ଧାରଣ

କରୁଅଛି । ଆଜକାଲର ଜଡ଼ବାଦ ଚର୍ଚ୍ଚା, ଶିକ୍ଷାଦୀକ୍ଷା ଓ ଆଦର୍ଶାଦିର ଅନୁକରଣ କରି ମନୁଷ୍ୟ କ୍ରମେ ସେହି ଅଧିକତର ସଂକୀର୍ଣ୍ଣ ଜ୍ଞାନ ଆଡ଼କୁ ଆକୃଷ୍ଟ ହୋଇଯାଉଅଛି । ଏହାହିଁ କୁସଂସ୍କାରରୂପ ବା ଆକାର ପ୍ରକାରର ଜନ୍ମ ବୃତ୍ତାନ୍ତ । ଏହି କୁସଂସ୍କାରାଚ୍ଛନ୍ନ ଅଜ୍ଞାନ-ମୋହାଦି ଆଜକାଲ ଜ୍ଞାନ ନାମରେ କଳ୍ପିତ । ସେହି କଳ୍ପନା ପୁଣି ବଡ଼ ସତ୍ୟ ବୋଲି ପ୍ରତିଷ୍ଠିତ ହୋଇଅଛି । ଏହାହିଁ ଜଡ଼ବାଦର ଦୃଢ଼ତା ।

ଦେଖିବା ଉଚିତ ଯେ ଜ୍ଞାନ ବିବୃଦ୍ଧିର ଅଧିଷ୍ଠାତୃତ୍ୱ ବିନା କର୍ମ ଅସମ୍ଭବ । କର୍ମାଭାବେ କୌଣସି ପଦାର୍ଥ କାର୍ଯ୍ୟରୁ କାରଣରେ ବା କାରଣରୁ ରୂପାନ୍ତରିତ କାର୍ଯ୍ୟରେ ପରିଣତ ହୋଇ ନ ପାରେ । ପ୍ରାଣୀଯନ୍ତ୍ରକୁ ଦେଖିଲେ ଏହା ଯେପରି ସଚ୍ଛିଦ୍ର, ଇନ୍ଦ୍ରିୟ ଓ ନାଡ଼ୀବିଶିଷ୍ଟ ରକ୍ତମାଂସାଦିଯୁକ୍ତ ହୋଇ ନାନା ଆକାରପ୍ରକାରରେ ନିର୍ମିତ ହୋଇଅଛି, ପୁଣି ଏଥିରେ ପ୍ରାଣର ସଂସ୍ଥାନ ଓ ଚାଳନାଦି ଅଥଚ ମନବୁଦ୍ଧ୍ୟାଦିର ନିଯୋଗ ଯେପରି କୌଶଳରେ ହୋଇଥିବା ଦେଖାଯାଏ, ବିଶେଷରେ ଅହଂବୋଧାକାରିତ ଜ୍ଞାନର ମଧ୍ୟ ଅଧିଷ୍ଠାନ ଯେପରି ସାକ୍ଷାତ୍ ଉପଲବ୍ଧି ହେଉଅଛି, ଏହା ସଙ୍ଗେ ସଙ୍ଗେ ବିଶ୍ୱବ୍ରହ୍ମାଣ୍ଡ, ଜଳ, ବାୟୁ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହତାରାଦିବିଶିଷ୍ଟ ହୋଇ ପ୍ରକାଶିତ ଥିବା ଯେପରି ଜଣା ଯାଉଅଛି, ଏହା ଯେଉଁ ନିୟମ ବା ପ୍ରକ୍ରିୟା ଦ୍ୱାରା ନିର୍ମିତ ବା ରକ୍ଷିତ, ଏହାର ଆଦି ନିର୍ମାଣ-କଳ୍ପନା ଯେଉଁ ଅସୀମ ଅପାର ମହାଜ୍ଞାନ ଓ ଶକ୍ତିର ଆଭାସ ଦେଉଅଛି, ସେହି ଜ୍ଞାନ ଓ ମହାଶକ୍ତି ମାନବୀୟ ଜ୍ଞାନର ଅନୁମାନଠାରୁ ଅପରିମିତ ଦୂରସ୍ଥ । ଏହି ମହାଜ୍ଞାନ ଓ ମହାଶକ୍ତିମୟ ଅପରିମେୟ ଅନାଦି ଅପରିସୀମ ମହାସାଗରର ଯେ ପ୍ରଭୁ ବା ଅଧିକାରୀ ଏବଂ ଯାହାଙ୍କର ଏହି ମହାସାଗରର ସୂକ୍ଷ୍ମେକ୍ଷଣ-ସୂଚ୍ୟଗ୍ରଧୃତ-ଜଳୀୟ-କଣାଂଶ ମାତ୍ରର ଆଭାସ ମାତ୍ର ମାନବୀୟ ବୁଦ୍ଧି ଓ କ୍ଷମତାରେ ଦତ୍ତ ହୋଇଅଛି କି ନା ସନ୍ଦେହ, 'ସେହି' ଅବାଙ୍-ମାନସ-ଗୋଚର ମହାପୁରୁଷମାନଙ୍କୁ ମାନବୀୟ ବୁଦ୍ଧି ବହୁଜନ୍ମସଞ୍ଚିତ ଜ୍ଞାନ-ଧର୍ମ ଓ ପୁଣ୍ୟ ବଳରେ ଟିକିଏ ହେଲେ କ୍ଷଣକ ପାଇଁ ସ୍ମରଣ କରିବା ବଡ଼ ଦୁର୍ଲଭ କଥା । ପୁଣି ସେହି ମହାପୁରୁଷଙ୍କର ଶକ୍ତି, ମହିମା ଓ ଜ୍ଞାନାଦି ଆଲୋଚନା କରିବାକୁ କୀଟାଦପି କୀଟାଣୁଠାରୁ କ୍ଷୁଦ୍ରତମ ଓ ତୃଣାଦପି ହେୟ ଓ ନୀଚତର ମାନବର ମୋହ-ଗର୍ବ-ପୂର୍ଣ୍ଣ ଅଜ୍ଞାନକଳଙ୍କ-ସମାଚ୍ଛନ୍ନ-ବୁଦ୍ଧି କାହିଁ ବା ଉପଯୁକ୍ତ ବୋଲି ବିବେଚିତ ହୋଇପାରେ ? ଅଥଚ ମନୁଷ୍ୟର କାର୍ଯ୍ୟ-କୌଶଳ-ନୈପୁଣ୍ୟ-ବୁଦ୍ଧି ଦେଖି ଅପର ମନୁଷ୍ୟ ବିମୋହିତ ଓ ଆଶ୍ଚର୍ଯ୍ୟାନ୍ୱିତ ହେଉଥିବା ସ୍ଥଳେ ମହା-ଐଶ୍ୱର୍ଯ୍ୟଶାଳୀ ସର୍ବ-ଶକ୍ତିମାନ୍ ଓ ସର୍ବକର୍ତ୍ତୃତ୍ୱବିଶିଷ୍ଟ ଭଗବାନ୍ ହରିଙ୍କର କାର୍ଯ୍ୟରେ ଓ ଅବତାରାଦି ଧାରଣରେ ମନୁଷ୍ୟ ଆଶ୍ଚର୍ଯ୍ୟାନ୍ୱିତ, ପ୍ରଣତ ଓ ଅବନତ ନ ହୋଇ ନିଜର କୁତ୍ସିତ ବୁଦ୍ଧି ବିଦ୍ୟା-ଦ୍ୱାରା ତତ୍ସମ୍ବନ୍ଧେ ତର୍କ-ବିତର୍କ ବା ସନ୍ଦେହାଦି ଜାତ କରୁଅଛି; ଏହା ଧର୍ମରାଜ ଯୁଧିଷ୍ଠିରଙ୍କ 'କିମାଶ୍ଚର୍ଯ୍ୟ ମତଃପରଂ' ଠାରୁ ବଳି ବହୁଗୁଣରେ କିମାଶ୍ଚର୍ଯ୍ୟ ମତଃପରଂ ବୋଲି ବିବେଚିତ ଓ ସ୍ଥିରନିଶ୍ଚିତ ହେବା ବିଧେୟ ।

ଏବେ ଦେଖାଯାଉଅଛି ପୁରୁଷକାର ଓ ଦୈବ ମଧ୍ୟରେ ଦୈବହିଁ ପ୍ରଧାନ । ଆଉ ପୁରୁଷକାର ଦୈବାଧୀନ । ଏଥିରେ କେହି ମନେ କରି ପାରନ୍ତି, ଆମ୍ଭେ କିଛି ନ କରି ଖାଲି ବସି ରହିବା, ଦେଖାଯାଉ ଦୈବ ଆସି କଣ କରିବ ? ଏହା କଦାଚ ହୋଇ ନ ପାରେ—ମନୁଷ୍ୟ ଯେତେ ଚେଷ୍ଟା କଲେ ମଧ୍ୟ ଖାଲି ବସିପାରିବ ନାହିଁ । ପ୍ରାଣବାୟୁ ଚଳିବ, ତହିଁରେ କ୍ଷୁଧାପିପାସା ହେବା ସୁନିଶ୍ଚିତ । କ୍ଷୁଧାପିପାସା ଓ ମଳମୂତ୍ରବେଗରେ ପ୍ରପୀଡ଼ିତ ହେଲରୁ ଖାଲି ବସିହେବ ନାହିଁ । ତାହା ନିବାରଣ ଚେଷ୍ଟାରେ ଦୈବ ନିୟମରେ ବାଧ୍ୟ ହୋଇ ଏଣେତେଣେ ଦୌଡ଼ିବାକୁ ହେବ । ପୁରୁଷକାର ଦୈବର ନିୟମାଧୀନ । ଦୈବ ପ୍ରଭୁ ସ୍ୱରୂପ, ପୁରୁଷକାର ଆଜ୍ଞାବହ ଦାସସ୍ୱରୂପ । ଦୈବ ପ୍ରଭୁ ରୂପେ ଦାତା ଏବଂ ପୁରୁଷକାର ଦାସରୂପେ ପାରିଶ୍ରମିକର ଗ୍ରହୀତା ମାତ୍ର । ବହୁଧନଶାଳୀ ଲୋକଙ୍କୁ ମଧ୍ୟ ଇଚ୍ଛାନୁରୂପ ଖାଦ୍ୟପେୟ ସବୁବେଳେ ପ୍ରାପ୍ତି ଘଟେ ନାହିଁ । ଅଭାବ ନ ଥିଲେ ମଧ୍ୟ ପଥ୍ୟ ଖାଉଁ ଖାଉଁ କାହାରି କାହାରି ସବୁ ଦିନ କଟିଁଚ ହୋଇଥାଏ । ମନୁଷ୍ୟର ପୁରୁଷକାର ଓ ଦୈବ ଉଭୟହିଁ ଗ୍ରହଣୀୟ । କେବଳ ପୁରୁଷକାରର ଗର୍ବ କରି ଦୈବଛଡ଼ା ହୋଇ ରହିବାକୁ ଗଲେ ଦୈବ ସହଜରେ ଛାଡ଼ିବ ନାହିଁ । ଅତଏବ ଦୈବ-ଛଡ଼ା ହେବା ଉଚିତ ନୁହେ ।

ଏହା ସର୍ବଦା ସ୍ମରଣ ରଖିବା ଉଚିତ, ମୁଁ କରୁଅଛି ଓ ମୁଁ ଅନୁଭବ ସହକାରେ ସୁଖଦୁଃଖାଦି ଭୋଗ କରୁଅଛି—ଏହିରୂପ ଅଭିମାନାତ୍ମକ ଭାବର ନାମ ଅହଂକାର । ପୁରୁଷକାର ଏହି ଅହଂକାରର ନାମାନ୍ତର ବା ଭାବାନ୍ତର ବୋଲି ଧରାଯାଇପାରେ । ଏହି ପୁରୁଷକାର ଐହିକ ସ୍ୱପ୍ନ ବା ସୁଷୁପ୍ତି ଦଶାରେ ମୃତବତ୍ ତେଜ-ଓଜ-ଶୂନ୍ୟ ହୋଇ ଅକର୍ମଣ୍ୟ ଅବସ୍ଥାପନ୍ନ ଥାଏ, ପୁଣି ଦେହାନ୍ତେ ବିଲୁପ୍ତ ପ୍ରାପ୍ତ ହୋଇଯାଏ ; ମାତ୍ର ଦୈବ ସେପରି ନୁହେ । ଏହା ସ୍ୱପ୍ନ ସୁଷୁପ୍ତ୍ୟାଦିରେ ମଧ୍ୟ ଜାଗ୍ରତ ରହି ରକ୍ଷା ଓ ପାଳନ ବିଧାନ କରୁଥାଏ ଏବଂ ଦେହାନ୍ତେ ଭବିଷ୍ୟତ୍ ପ୍ରାରବ୍ଧାନୁଯାୟୀ ଅନାଗତ-ଦେହ ଓ ତଦୁପଯୋଗୀ କର୍ମ-ଭୋଗାଦିର ବ୍ୟବସ୍ଥା ଗଢ଼ୁଥାଏ । ପୁରୁଷକାର ଏହି ଦୈବର ଆଶୀର୍ବାଦବିଶେଷ ଅଟେ । ଗର୍ବାହଂକାର ଓ ମୋହାଦି ଆସୁର ସମ୍ପତ୍ତି ଏଥିରେ ଆତ୍ମଜ୍ଞାନ କଳଙ୍କାବୃତ ରହିଯିବାରୁ ମୂଢ଼ାତ୍ମା ପୁରୁଷ କର୍ମମୟ ଦେହାଭିମାନସମ୍ପନ୍ନ ହୋଇ ପୁରୁଷକାରକୁ ବଡ଼ ବୋଲି ଭ୍ରମ କରେ । ପୁରୁଷକାର ବାଧା ବିଘ୍ନାଦିର ତାଡ଼ନା ସହ୍ୟ କରିବାକୁ ବାଧ୍ୟ ଆଉ ମଧ୍ୟ ବିକାର ଓ ରୂପାନ୍ତରାଧୀନ, ଅଥଚ କ୍ଷଣବିଲୋପୀ, ଅନିତ୍ୟ ଅଟେ । କିନ୍ତୁ ଦୈବ ବାଧାବିଘ୍ନ କି ବିକାର ରୂପାନ୍ତରାଧୀନ ନୁହେ, ଅଥଚ ଏ ସମସ୍ତ ଦୈବାଧୀନ । ଏବେ ସେହି ପରାତ୍ପର ଦୈବ ମହାପୁରୁଷ ପଦରେ କୋଟି କୋଟି ପ୍ରଣାମ କରି ପୁରୁଷକାର ଓ ତଦ୍ଦ୍ୱାରା ସାଧିତ ଯଥାସର୍ବସ୍ୱ ସହିତ ନିଜକୁ ଅର୍ପଣ କରି ଆଶୀର୍ବାଦମୟ ସେହି ପଦଧୂଳିକୁ ମସ୍ତକରେ ଧାରଣ ପୂର୍ବକ ଅନ୍ୟ ଦିଗରେ ଅଗ୍ରସର ହେବାକୁ ବିଚାର କରାଯାଉ ।

## ୪୫ଶ ପାଠ—ଭଗବତୀ ଶ୍ରୀ ପରମେଶ୍ୱରୀର ସ୍ତବ

ବ୍ରହ୍ମମୟୀ-ଆଦ୍ୟା-ସନାତନୀ-ଭଗବତୀ-ପରମେଶ୍ୱରୀ ଜଗଜ୍ଜନନୀ ପଦରେ ପ୍ରଣତ ହୋଇ ତଦୀୟ ଧ୍ୟାନ ସ୍ତବନାଦି ସତ୍-କର୍ମ୍ମ ଯଥାନୁସାରେ ସମାପନ କରଣାନନ୍ତର ଆତ୍ମସଂବାଦଭାଗ ନାମକୁ ମାତ୍ର ଶେଷ କରି, ପରେ କଳ୍ପନାରାଜ୍ୟ ଟିକିଏ ଦର୍ଶନ କରିବାକୁ ଶ୍ରୀ ଜଗଦ୍ଧାତ୍ରୀର ପ୍ରସାଦ ସହିତ ଗମନ କରିବାକୁ ଚେଷ୍ଟା କରାଯିବ । ମା ଜଗଜ୍ଜନନୀ ! ପରଂବ୍ରହ୍ମ ଅଦ୍ୱୟାନନ୍ଦ-ମୂର୍ତ୍ତିମାନ୍ ସ୍ୱୟଂପ୍ରକାଶିତ ବିଗ୍ରହ ହୋଇ ରହିଥିଲେ ସୁଦ୍ଧା ତୋହର ପ୍ରେମାକର୍ଷଣ-ବଳରେ ସେହି ମହାଦେବ ତୋହରି ସର୍ବଶକ୍ତିମୟୀ-ସର୍ବକର୍ତ୍ତୃତ୍ୱାଦି ଗୁଣ-ଯୁକ୍ତ ହୋଇ ତୋ ସହିତ ଅଭେଦ ଏକାତ୍ମସ୍ୱରୂପ ଧାରଣ କରିବାକୁ ତୁହି ମା ସେହି ବିଭୁଙ୍କୁ ପରମେଶ୍ୱରୋପାଧିରେ ଅଳଂକୃତ କରି ସର୍ବଶୋଭା, ସର୍ବୈଶ୍ୱର୍ଯ୍ୟ, ସର୍ବଜ୍ଞାନ ଏବଂ ସର୍ବକର୍ତ୍ତୃତ୍ୱାଦିରେ ସ୍ୱାମୀତ୍ୱ ଅର୍ପଣ କରିଅଛୁ । ତୁହି ମା ସର୍ବକାର୍ଯ୍ୟ କାରଣର ମୂଳ ଓ ସର୍ବାଦି ରୂପ ଧାରଣ କରି ତୋହର ସ୍ୱତଃସିଦ୍ଧ ଗୁଣତ୍ରୟ ଅର୍ଥାତ୍ ଜ୍ଞାନାଲୋକମୟ-ସତ୍ତ୍ୱ, ସର୍ବବିଧ ଭବିଷ୍ୟତ୍ ସୃଷ୍ଟିର ଔପାଦାନିକ ତତ୍ତ୍ୱମୟ ରଜଃ ଏବଂ ରୂପାନ୍ତରାତ୍ମକ ବିକାରଷଟ୍କ କର୍ମବୀଜମୟ ତମଃ ବିକାଶ କରି ତହିଁରେ ସେହି ପ୍ରଭୁ ପରମେଶ୍ୱରଙ୍କୁ ତ୍ରିଦେବ-ଉପାଧି ପ୍ରଦାନ କରିଅଛୁ । ସତ୍ତ୍ୱଗୁଣୋପହିତ-ଦେବ, ସର୍ବଜ୍ଞ, ସର୍ବପାଳକ, ସର୍ବସ୍ଥିତି କାଳବ୍ୟାପକ—ବିଷ୍ଣୁମୂର୍ତ୍ତି ଧାରଣ କରିଅଛନ୍ତି । ରଜୋଗୁଣ-ସମ୍ପନ୍ନ-ଦେବ ବ୍ରହ୍ମାରୂପେ ସୃଷ୍ଟି-ବ୍ୟାପକତା ଧାରଣ କରି ସର୍ବପ୍ରକାର ସଂସାର ଓ ଜୀବସୃଷ୍ଟି-କର୍ତ୍ତା ହୋଇଅଛନ୍ତି । ତମୋଗୁଣମୟ ଶିବ, ବିକାର-ଷଟ୍କ-କର୍ମମୟରୂପ ଧାରଣ କରି ସର୍ବପ୍ରକାର ସୃଷ୍ଟିର କ୍ଷଣଭଙ୍ଗୁରତା ସମ୍ପାଦନ କରୁଅଛନ୍ତି । ଏହିରୂପେ ସୃଷ୍ଟି-ସ୍ଥିତି ଓ ଲୟ ଲୀଳା, ମା ! ତୋହରିଠାରେ ଚକ୍ରଭ୍ରମଣ ନ୍ୟାୟରେ ଆବର୍ତ୍ତନ କରୁଅଛି । ତୁହି ମା ! ବ୍ରହ୍ମା-ବିଷ୍ଣୁ ଓ ଶିବାଦି ତ୍ରିଦେବଙ୍କର ଆଦିମାତା ଅଟୁ । ମା ! ତୁହି ପରଂବ୍ରହ୍ମଙ୍କୁ ଶବ୍ଦବ୍ରହ୍ମନାମ ପ୍ରଦାନ କରି ସ୍ୱୟଂ ବାକ୍‌ଦେବୀ ରୂପେ ଅଂଶତଃ ଅଧିଷ୍ଠିତ ରହିଅଛୁ । ତୁହି ମା ! ଭଗବତୀ ପରମଲକ୍ଷ୍ମୀ ରୂପେ ସର୍ବଶୋଭା ଓ ସର୍ବ ସୁଖ-ଶାନ୍ତିର ଆଦି ଉପାଦାନ ରୂପ ଧାରଣ କରିଅଛୁ । ତୁହି ମା ! କାରଣ କାର୍ଯ୍ୟାତ୍ମିକା-ସ୍ୱଭାବ-ବିଶିଷ୍ଟ ଥାଇ ମହତତ୍ତ୍ୱ, ମହତତ୍ତ୍ୱରୁ ଅହଂକାରତତ୍ତ୍ୱ, ଓ ଅହଂକାରତତ୍ତ୍ୱରୁ ପଞ୍ଚତନ୍ମାତ୍ରତତ୍ତ୍ୱ ରୂପରେ ପରିଣତ ହୋଇଅଛୁ । ଏତତ୍‌କ୍ରମେ ପରମେଶ୍ୱରଙ୍କୁ ମହତତ୍ତ୍ୱ-ବିଶିଷ୍ଟ କରି ବାସୁଦେବ ଓ ଅହଂକାରତତ୍ତ୍ୱ ଯୁକ୍ତ କରି ସଙ୍କର୍ଷଣାଦି ଉପାଧି ପ୍ରଦାନ କରିଅଛୁ । ତୁହି ମା ! ପଞ୍ଚ-ତନ୍ମାତ୍ରାତ୍ମକ ବ୍ୟାପକ ସୂତ୍ରରେ ପରମେଶ୍ୱରଙ୍କୁ ସୂତ୍ରାତ୍ମା ବା ହିରଣ୍ୟଗର୍ଭାଦି ଉପାଧି ଦାନ କରି ବିକାରୋନ୍ମୁଖ ପଞ୍ଚତନ୍ମାତ୍ରରୁ ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଓ ପଞ୍ଚମହାଭୂତ ରୂପେ ପରିଣତ ହୋଇଅଛୁ । ଏଥିରେ କାରଣ-ସୂକ୍ଷ୍ମ ଓ ସ୍ଥୂଳାଦି ଦେହତ୍ରୟର ଏକତ୍ର ସମାବେଶ କରି ତହିଁରେ ଆତ୍ମାକୁ ଦେହାତ୍ମାଭିମାନୀ କରାଇ ନାନାବିଧ ଶରୀରଭେଦରେ ନାନାବିଧ ଜୀବୋପାଧି ପ୍ରଦାନ କରିଅଛୁ । ତୁହି ମା ! ଦୃଶ୍ୟତ୍ୱକୁ ଏକାଂଶରେ, ଦର୍ଶନଭାବକୁ ଅନ୍ୟାଂଶରେ

ଏବଂ ଦ୍ରଷ୍ଟୃତ୍ୱକୁ ଅପଭ୍ରଂଶରେ ତୋହର ସୂକ୍ଷ୍ମ-ସ୍ଥୂଳ ଓ କାରଣାତ୍ମକ ଅଙ୍ଗରେ ଧାରଣ କରି ତ୍ରିଧା ପ୍ରତୀୟମାନ ହେଉଥିଲେ ସୁଦ୍ଧା ସ୍ୱରୂପତଃ ସର୍ବକାର୍ଯ୍ୟ କାରଣର କାରଣରୂପେ ଏକ ଅନୁପମ ବିଗ୍ରହାକାରରେ ବିରାଜମାନ କରିଅଛୁ । ହେ ମାତଃ, ଦେବୀ ପରମେଶ୍ୱରୀ ! ଏହିରୂପେ ତୁହି ଏକ ହୋଇ ବହୁ ଓ ବହୁଧାରୂପେ ପରିଦୃଷ୍ଟ ଓ ବିଜ୍ଞାତ ବା ଅନୁମିତ ହେଉଅଛୁ ବୋଲି ତହିଁରେ ବିରୁଦ୍ଧଭାବର କଥା କିଛି ନାହିଁ । ତାହା ତୋହର ଅପୂର୍ବ ମହିମାର ବିଶେଷତ୍ୱ ମାତ୍ର । ଏହି ବିଶେଷତ୍ୱ ଯୋଗୁଁ ଆତ୍ମଦେବ ତୋହର ମାୟାମୟ ସ୍ନେହାକର୍ଷଣରେ ଓ ସପ୍ରେମଭାବରେ ଆକର୍ଷିତ ଓ ବିଜଡ଼ିତ ହୋଇ ତୋହର ଅଙ୍ଗରେ ଆତ୍ମହରା ହୋଇଅଛନ୍ତି । ଆତ୍ମାର ବନ୍ଧନ ଓ ମୁକ୍ତି ତୋହର କୃପାରେ ନିର୍ଭର କରେ । ତୁହି ତଦ୍ରୂପରେ ଆତ୍ମାକୁ ଆତ୍ମଜ୍ଞାନଯୁକ୍ତ ଓ ଅନାତ୍ମ୍ୟତାରୁ ବିଯୁକ୍ତ ରଖିଥାଉ ଏବଂ ତୁହି ଅବିଦ୍ୟାରୂପରେ ଆତ୍ମାକୁ ଅନାତ୍ମ୍ୟତାରେ ଅର୍ଥାତ୍ ଦେହାଦି ଉପାଧିରେ ଅଭେଦ-ଭାବେ ଯୋଗ କରି ସୁଖ-ଦୁଃଖ-ମୋହାଦିପୂର୍ଣ୍ଣ ତାପମୟ ରାଜ୍ୟରେ ସର୍ବଦା ଭ୍ରମଣ କରାଇଥାଉ, ଏଥିରେ ତୋହଠାରେ ବୈଷମ୍ୟ ପରିଲକ୍ଷିତ ହୋଇ ନ ପାରେ । କାରଣ, ତାହା ତୋହର କରୁଣାବିଶେଷରୁ ଲୀଳାର୍ଥ ମୁକ୍ତିଭାବ ପ୍ରଦତ୍ତ ହେବାଦ୍ୱାରା ଜୀବନିଚୟ ସ୍ୱେଚ୍ଛାକ୍ରମେ ମାୟିକ କ୍ରୀଡ଼ାରେ ପ୍ରବର୍ତ୍ତି ଆପେ ଆପଣାକୁ ବିସ୍ମରଣ କରି ଅଧୋଗତିପ୍ରାପ୍ତ ହେଉଅଛନ୍ତି; ପୁଣି ଏହି ଅପାର ମାୟାଭ୍ରମଣ ତୋହର ସେହି କୃପାକଟାକ୍ଷପାତଦ୍ୱାରା ଯଥାସମୟେ ବିନିବୃତ୍ତ ହେଉଅଛି । ଏହିରୂପେ ପତନୋତ୍‌ଥାନ ତୋହପକ୍ଷରେ ଲୀଳା-ଦର୍ଶନ ମାତ୍ର; ମୁଗ୍ଧ ଜୀବ ନିଜ-କର୍ମ-ଦୋଷରେ ଉଚ୍ଚ-ନୀଚ-ଭାବ ଧାରଣ କରୁଅଛି । ଏଥିପ୍ରକାରେ ପୁଣି ତୋହର ଦୂତରୂପେ ପ୍ରାରବ୍ଧ, ପୁରୁଷକାର, ଓ ସଂସ୍କାର-ବାସନାଦି ନିଯୁକ୍ତ ଥାଇ ମାୟା-ସଂସାର-ସାଗରରେ ନାନାପ୍ରକାର ତରଙ୍ଗ ଓ ଚକ୍ରାବର୍ତ୍ତନାଦିର ସୃଷ୍ଟି କରୁଅଛନ୍ତି । ଏଥିରେ ତୋହର ପରୀକ୍ଷା ପୁରୁଷକାରକୁ ପ୍ରତିଯୋଗିତାରେ କେତେବେଳେ ହରାଇ ଦେଉଅଛି, ପୁଣି କେତେବେଳେ ବା ଆପେ ହାର ମାନିଯାଉ-ଅଛି । ତରଙ୍ଗ ଇତ୍ୟାଦିରେ ଏକ ସ୍ଥାନ ଉଚ୍ଚ ଓ ଏକ ଦେଶ ନୀଚ ବୋଲି ଦେଖାଯାଉଥିଲେ ମଧ୍ୟ ସାଗରର ତହିଁରେ କିଛି ଊଣାଅଧିକ ହେଉନାହିଁ । ସେ ଯେଉଁ ସାଗର, ସେହି ସାଗର । ଏହିପରି ସଂସାରର ଊର୍ଦ୍ଧ୍ୱ-ଅଧୋଗତି ଜୀବ ପକ୍ଷରେ ଘଟୁଥିଲେ ମଧ୍ୟ ଏହା ତୋହ ପକ୍ଷରେ ଲୀଳା ବିଶେଷମାତ୍ର । ଏଥିରେ ତୋହର ବା ଜୀବମାନଙ୍କର ସ୍ୱରୂପତଃ କିଛି ବୈଲକ୍ଷଣ୍ୟ ନାହିଁ ।

ଯାହା ହେଉ, ଆତ୍ମା ତୋହର ଦର୍ଶନଲାଭ କରିବାକୁ ତୋହର ପ୍ରଦତ୍ତ ଜୀବୋପାଧି ଧାରଣ କରିଅଛନ୍ତି—ଅନ୍ୟ କାରଣରେ ନୁହେ । ଏହି ଦର୍ଶନ ସଙ୍ଗେ ସଙ୍ଗେ ତୋହର ପୂଜା, ସ୍ତୁତିବାଦ ଓ ବନ୍ଦନାଦି ମଧ୍ୟ ପ୍ରଯୁଜ୍ୟ ହେବା ବିଧେୟ; ମାତ୍ର ଜୀବାତ୍ମା ଆପଣାକୁ ଏହିରୂପ ଦ୍ରଷ୍ଟା, ପୂଜକ, ସ୍ତୁତିପାଠକ ବା ଅଭିବନ୍ଦକରୂପେ ନ ଦେଖି ମୋହବଶରୁ ତାହାଦ୍ୱାରା ତୋହର ଅଙ୍ଗ ବା ଅଂଶବିଶେଷକୁ ତାହାର ନିଜଭୋଗ୍ୟ ବୋଲି ସୁଖଜ୍ଞାନରେ ଆଦର ନେଉଅଛି । ଏହିଠାରେ ଆପଣାର ପତନ ହେବାର ଗତି

ଆପେ ନିର୍ମାଣ କରୁଅଛୁ,—ଅର୍ଥାତ୍ ଯାହା କର୍ତ୍ତବ୍ୟ ତହିଁର ବିପରୀତାଚରଣ କରୁଅଛୁ; ଏହା ମଧ୍ୟ ତୋହର ଲୀଳାର ପ୍ରକାର ବିଶେଷ । ଦେଖିବାକୁ ଗଲେ ଜୀବର ସ୍ଥୂଳଦେହ ଓ ସ୍ଥୂଳ ଭୌତିକ ଜଗତ ତୋହର ଅଙ୍ଗ ବା ଅଂଶ ବିଶେଷ ଅଟେ । ତୁହି ମା ପଞ୍ଚତନ୍ମାତ୍ର-ରୂପ ଧାରଣ କରିଅଛୁ, ସେହି ପଞ୍ଚତନ୍ମାତ୍ରର ସତ୍ତ୍ୱାଂଶରୁ ପଞ୍ଚଜ୍ଞାନେନ୍ଦ୍ରିୟ ଏବଂ ରଜସାଂଶରୁ ପଞ୍ଚକର୍ମେନ୍ଦ୍ରିୟ ଓ ତାମସାଂଶରୁ ପଞ୍ଚଭୌତିକ ଦେହ ଓ ପଞ୍ଚଭୌତିକ ଜଗଦାଦି ସବୁ ବିଶ୍ୱସଂସାର ପରିଦୃଷ୍ଟ ହେଉଅଛି । କର୍ମେନ୍ଦ୍ରିୟଦ୍ୱାରା ଦେହ ସଚେଷ୍ଟ ଓ କର୍ମକ୍ଷମ ହୋଇ କର୍ମସାଧକକ୍ଷେତ୍ରରୂପ ଭୌତିକ ଜଗତରେ ନାନାବିଧ କର୍ମ ସାଧନ କରୁଅଛି ଏବଂ ଜ୍ଞାନେନ୍ଦ୍ରିୟ ଏହି କର୍ମ ନିଷ୍ପାଦନରେ ସାହାଯ୍ୟ କରୁଅଛି ଏବଂ କର୍ମଫଳ ଗଢ଼ୁଅଛି । ଏଥିରେ ଦେହ ଓ ଜଗତ୍ ତୋହର ସ୍ଥୂଳାଂଶ ବା ଅଙ୍ଗାନ୍ତର୍ଭୁକ୍ତ ଜିନିଷ, ସୁତରାଂ ସେ ଉଭୟକୁ ଏକ କରି ସେହି କର୍ମକୁ ତହିଁ ସଙ୍ଗେ ସଙ୍ଗେ ତୋହଠାରେ ଅର୍ପଣ କରିଦେଲେ କର୍ତ୍ତା କେହି ନାହିଁ, ସେହି ଦେହ—ସଂସାର ଓ କର୍ମାଦି ମଧ୍ୟ ସ୍ୱତଃସିଦ୍ଧ ଗତିରେ ତୋହର ଅଙ୍ଗରୁ ଉଦିତ, ତୋହର ଅଙ୍ଗରେ ସ୍ଥିତ ଏବଂ ତୋହର ଅଙ୍ଗରେ ଏକ ହୋଇ ରହିଅଛି । ସାଗରରେ ଯେତେ ଯେତେ ପ୍ରକାର ଲହରୀ ଆଦି ହେଉ ନା କାହିଁକି, ତାହା ଦେଖିବାକୁ ଅନ୍ୟ ପ୍ରକାର ମାତ୍ର—ବୁଝିବାକୁ ଗଲେ ସେ ସମସ୍ତ ଏକ ସାଗରାନ୍ତର୍ଗତ, ସାଗରରୁ ପୃଥକ୍ ସତ୍ତା ଲହରୀର ନାହିଁ । ତେବେ ଆତ୍ମା, ଦେହ, ସଂସାର ଓ କର୍ମାଦିକୁ ଆପଣାର ବୋଲି ପୃଥକ୍ କରି ମଣିବା ତାହା ନିଜର ବନ୍ଧନ,—ଯାହା ସତ୍ୟ ଆତ୍ମା ତହିଁର ବିପରୀତ ବୁଝୁଅଛି । ଦେହ ଓ ଦୈହିକ କର୍ମ ଏହା ଭୌତିକ ଜଗତାନ୍ତର୍ଗତ, ପୁଣି ଦେହ ଓ କର୍ମାଦି ସହିତ ଭୌତିକ ଜଗତ ତୋହର ତାମସାଂଶର ଅନ୍ତର୍ଭୁକ୍ତ, ଏହିରୂପେ ତୋହର ଅଙ୍ଗ ଦର୍ଶନ କରି ଜୀବାତ୍ମା ତୋହର ପୂଜା ସ୍ତବନ ବନ୍ଦନାଦିରେ ଦେହ ଓ କର୍ମାଦିକୁ ସମର୍ପଣ ନ କରି ତୋହର ଅଙ୍ଗବିଶେଷକୁ ନିଜର ବୋଲି ବିପରୀତ ଭାବ ପ୍ରକାଶ କରିବାରୁ ସେହି ବିପରୀତ ଭାବ ତାହା ନିଜ ବନ୍ଧନର କାରଣ ହୋଇଅଛି । ଆପଣା ହସ୍ତେ ଜିହ୍ୱା ଛେଦି, କେ ତା'ରେ ଅଛି ପ୍ରତିବାଦୀ ? ଏହିରୂପେ ଦେଖିବାକୁ ଗଲେ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ଉଭୟେ କ୍ରମାନ୍ୱୟେ ତୋହର ରଜସାଂଶ ଓ ସତ୍ତ୍ୱାଂଶରୁ ଜାତ ଓ ତଦନ୍ତର୍ଗତ । ଅତଏବ ଉକ୍ତ କର୍ମେନ୍ଦ୍ରିୟକୁ ତୋହର ଅବୟବସ୍ଥିତ ରଜସାଂଶରେ ଓ ଜ୍ଞାନେନ୍ଦ୍ରିୟକୁ ସତ୍ତ୍ୱାଂଶରେ ଏକ କରି ଦେଖିଲେ ଉକ୍ତ ଇନ୍ଦ୍ରିୟବର୍ଗ ଦେହ ଓ ସଂସାର ସମ୍ବନ୍ଧରୁ ଉତ୍ପନ୍ନ ହେଉଥିବା କର୍ମଫଳ ସ୍ୱରୂପ ଶବ୍ଦସ୍ପର୍ଶାଦି-ଭୋଗ ବା ଜ୍ଞାନ ତୋହର ଅଙ୍ଗର ସାତ୍ତ୍ୱିକ ଓ ରଜସାଂଶରୁ ଉତ୍ପନ୍ନ, ତହିଁରେ ସ୍ଥିତ ଏବଂ ତହିଁରେ ଅଭେଦକ୍ରମେ ତନ୍ମୟ ହୋଇ ରହିଅଛି । କୁଣ୍ଡଳାଦି ଅଳଙ୍କାର ଯେପରି ସୁବର୍ଣ୍ଣରୁ ହୁଏ, ଅଳଙ୍କାରକୃତି ପ୍ରାପ୍ତାବସ୍ଥାରେ ମଧ୍ୟ ତାହା ସୁବର୍ଣ୍ଣ ଏବଂ ପରେ ସୁବର୍ଣ୍ଣ । ଅତଏବ ଯାହା ଯହିଁରୁ ଏବଂ ଯହିଁରେ ତାହା ସେହିମାତ୍ର, ଅନ୍ୟ ହୋଇ ନ ପାରେ । ସୁତରାଂ ଦଶେନ୍ଦ୍ରିୟ (ପଞ୍ଚଜ୍ଞାନେନ୍ଦ୍ରିୟର ପରସ୍ପର ବ୍ୟାପକ ସମ୍ବନ୍ଧରୁ ଅନ୍ତଃକରଣଚତୁଷ୍ଟୟ ଏବଂ ପଞ୍ଚକର୍ମେନ୍ଦ୍ରିୟ ବ୍ୟାପକ ସୂତ୍ରରୁ ପଞ୍ଚପ୍ରାଣର ଉଦୟ ନିର୍ଦ୍ଦିଷ୍ଟ ଅଛି) ଅନ୍ତଃକରଣ ଓ

ପଞ୍ଚପ୍ରାଣାଦି ସମସ୍ତ ତୋହର ସାତ୍ତ୍ୱିକ ଓ ରାଜସାଂଶରେ ଅନ୍ତର୍ଭୁକ୍ତ ଥିବାରୁ କର୍ମସମ୍ବନ୍ଧୀୟ କର୍ତ୍ତୃତ୍ୱ ଓ କର୍ମଫଳ ସମ୍ବନ୍ଧୀୟ ଭୋକ୍ତୃତ୍ୱ ବା ଜ୍ଞାତୃତ୍ୱାଦି ସେହି ସାତ୍ତ୍ୱିକ ରାଜସାଂଶର ଅନ୍ତର୍ଗତ ଅଟେ । ଏହିରୂପେ ଦେହ-ସଂସାର, ଦଶେନ୍ଦ୍ରିୟ, ଅନ୍ତଃକରଣ ଚତୁଷ୍ଟୟ ଏବଂ ପଞ୍ଚପ୍ରାଣ, ଶବ୍ଦସ୍ପର୍ଶାଦି ପଞ୍ଚ ପ୍ରକାର ଜ୍ଞାନାଦି ସହିତ ଜ୍ଞାତୃତ୍ୱ ଓ ପଞ୍ଚ ପ୍ରକାର କର୍ମାଦି ସହିତ କର୍ତ୍ତୃତ୍ୱାଦି ସମସ୍ତ ଏକତ୍ରେ ବା ପୃଥକ୍‌ରେ ହେଉ, ତୋହର ରାଜସତାମସ ଓ ସାତ୍ତ୍ୱିକାଂଶ-ମୟ ପଞ୍ଚତନ୍ମାତ୍ରର ଅନ୍ତର୍ଗତ । ଏହିରୂପେ ହେ ମାତଃ ! ତୋହର ଅବୟବସ୍ଥ ପଞ୍ଚତନ୍ମାତ୍ରରେ ଦେହ, ସଂସାର, ଦଶେନ୍ଦ୍ରିୟ, ଅନ୍ତଃକରଣ, ପଞ୍ଚପ୍ରାଣ, ସତ୍ତ୍ୱରଜତମାଦି ଗୁଣତ୍ରୟ ଏବଂ କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱାଦି ସମସ୍ତ ଭାବକୁ ସମର୍ପଣ କରି ତୋହର ସର୍ବମୟ ଅଙ୍ଗମାନଙ୍କୁ ଦର୍ଶନ ଓ ତୋହର ପୂଜନ, ବନ୍ଦନ ସ୍ତବନାଦି ଦ୍ୱାରା ଜୀବାତ୍ମାର କୃତାର୍ଥ ଲାଭ କରି କର୍ତ୍ତବ୍ୟ । ଏହି କୃତକୃତ୍ୟ ଲବ୍‌ଧ ହେଲା ପରେ ଜୀବାତ୍ମା ଜୀବୋପାଧି ମାନଙ୍କୁ ନେଇ ତାହା ତୋହର ଅବିଦ୍ୟାରେ ଲୟ ଥିବା ଦର୍ଶନ କରି ଉପାଧିଶୂନ୍ୟ ଭାବରେ ଶୁଦ୍ଧାତ୍ମାରୂପେ ରହି ତୋହର ଚିଦଂଶରୁ ସାମାନ୍ୟ କଣିକା ମାତ୍ର ତୋହର ପ୍ରଦତ୍ତ ପ୍ରସାଦରୂପେ ଗ୍ରହଣପୂର୍ବକ ତଦ୍ୱାରା ନିଜାତ୍ମସ୍ୱରୂପକୁ ଏବଂ ପରମେଶ୍ୱରଙ୍କୁ, ଆଉ ତୋହର ବିମଳାଙ୍ଗକୁ ଅଥଚ ଧଙ୍ଗେ ସଙ୍ଗେ ଉଭୟ ଅଙ୍ଗସ୍ଥ ଅବିଦ୍ୟାଦି ଓ ତତ୍‌କୃତ ଦେହାଦି ସଂସାରକୁ ଏକାଧାରରେ ଏକକାଳରେ ଦର୍ଶନ କରୁଅଛି । ଏହି ସମ୍ୟକ୍ ଦର୍ଶନ ସଙ୍ଗେ ସଙ୍ଗେ ହେ ମାତଃ ଜଗନ୍ମାତ ପରମେଶ୍ୱରି ! ଆତ୍ମା ତୋହର ସର୍ବାଙ୍ଗ ଦର୍ଶନ କରି ଈଶ୍ୱରୋପାଧି ଓ ଜୀବୋପାଧିରେ ତୋହର ସେହି ପରିତ୍ରମ-ମଙ୍ଗଳାକର-ଅଙ୍ଗ, ସୁଶୋଭିତ ଓ ସର୍ବବନ୍ଦ୍ୟ ନମସ୍କୃତ ପଦ ଥିବା ବୁଝି ସେହିଠାରେ ଆତ୍ମନିବେଦନ କରୁ-ଅଛି । ଏଥିରୁ ଉପଲବ୍‌ଧି ହେଉଅଛି ଯେ ଏହି ଆତ୍ମନିବେଦନ ଦ୍ୱାରା ଆତ୍ମାର ସ୍ୱାତନ୍ତ୍ର୍ୟ କିଛିମାତ୍ର କୌଣସି ପ୍ରକାରରେ ରହୁନାହିଁ । ଜୀବୋପାଧି ଓ ଈଶ୍ୱରୋପାଧିରେ ଏବଂ ଏତତ୍ ସର୍ବୋପାଧିମୟୀ ସର୍ବମୟୀ ତୋହର ଏକମାତ୍ର ଆଦ୍ୟା ସନାତନୀ-ବିଶ୍ୱମୂର୍ତ୍ତିମୟୀ ସର୍ବଧର୍ମ-ଜ୍ଞାନ-ବୈରାଗ୍ୟ, ଐଶ୍ୱର୍ଯ୍ୟାଦି ସର୍ବବିଭୂତି ଓ ସର୍ବଗୁଣମୟୀ ବିଶ୍ୱସଂସାର ଚରାଚରମୟୀ ରୂପରେ ଆତ୍ମା ଜୀବୋପାଧି ସହିତ ତଦନ୍ତର୍ଗତ ଦେହ-ସଂସାରାଦିକୁ ବିଲୀନ ଥିବା ଉପଲବ୍‌ଧି କରି ସ୍ୱୟଂ ସ୍ୱାତନ୍ତ୍ର୍ୟଘଟିତ ବନ୍ଧନରୁ ମୁକ୍ତିଲାଭ କରୁଅଛି । ଘଟାକାଶ ଓ ମହଦାକାଶ ଏକ ଅଭିନ୍ନ ରୂପ ବୋଲି ଜ୍ଞାନ ହେଲେ ଯେପରି ଘଟାକାଶର ମୁକ୍ତି କଥିତ ହୁଏ, ତଦ୍ରୂପ ତୋହର ମାୟାବରଣର ଅଂଶ ତୋହରଠାରେ ଅଭିନ୍ନ ବୋଧ ହେଲେ ଜୀବାତ୍ମା ପରମାତ୍ମାରୁ ଅଭିନ୍ନ ବୋଲି ସ୍ୱତଃସିଦ୍ଧ ହୋଇପଡ଼େ; ଏହିଠାରେ ଆତ୍ମାର ନା ବନ୍ଧନ ନା ମୁକ୍ତି କିଛିହିଁ ନାହିଁ । ଏ ସମସ୍ତ ତୋହର ଅବିଦ୍ୟାଂଶରେ ଏବଂ ବିଦ୍ୟାଂଶ-ସମନ୍ୱିତ ଚିଦ୍ରୂପରେ ବିଲୀନ ଓ ଅଭିନ୍ନ ହୋଇଯାଏ । ଭିନ୍ନଭିନ୍ନ କଳ୍ପନାମୂଳକ ଚକ୍ଷୁରେ ଅବଲୋକିତ ହେଲେ ସେହି ପାର୍ଥକ୍ୟକଳ୍ପନାହିଁ ବନ୍ଧନ ନାମରେ ଅଭିହିତ ହୁଏ । ଏହିରୂପେ ହେ ମାତଃ ! ବିଶ୍ୱେଶ୍ୱରି ! ବିଶ୍ୱଚରାଚରାଦି ସର୍ବ ଓ ସର୍ବମୟୀ ଭଗବତି, ତୁହି କେବଳ ଏକ ଏବଂ ଅଦ୍ୱିତୀୟ । ବନ୍ଧନ ବା ମୁକ୍ତି ତୋହର ଅଙ୍ଗରଚନାର ଲୀଳା ବିଶେଷମାତ୍ର ।

ମାତଃ ! ତୋହର ଏହି ଲୀଳାମୟ ରୂପ ଦର୍ଶନ କରି ସେହି ରୂପରେ ନିଜର ଜୀବୋପାଧି ସହିତ ଦେହ ସଂସାରାଦିର ସମ୍ବନ୍ଧ-ସୃଷ୍ଟି-କର୍ତ୍ତୃତ୍ୱ-ଭୋକ୍ତୃତ୍ୱ, ସୁଖିତ୍ୱ ଓ ଦୁଃଖିତ୍ୱାଦିକୁ ଅର୍ପଣ କରିବା ପରିବର୍ତ୍ତେ ଏହିସବୁରେ ଆତ୍ମାଭିମାନ ଅଭିନିବେଶପୂର୍ବକ ଜୀବ, ଆପଣା ଅଜ୍ଞାନମୋହକୃତ ଇଚ୍ଛାରେ ଆପେ ଆପଣାର ବନ୍ଧନକୁ ବରଣୀୟ କରୁଅଛି; ଏହା ମଧ୍ୟ ତୋହର ଲୀଳାବିଶେଷ । ବହୁଜନ-ସମ୍ପଦ-ସମ୍ପନ୍ନ ଗୃହୀ ଯେପରି ବାଳକମାନଙ୍କୁ ନାନାବିଧ କ୍ରୀଡ଼ାରତ ଥିବା ଦେଖିବାକୁ ଏବଂ ତହିଁରେ କଳଗୋଳ ଓ ନୃତ୍ୟଗୀତାଦି କାହାକୁ କାହାକୁ କରିବା ଦେଖିବାକୁ ଘରର ଓ ତାହାର ନିଜର ଅଳଙ୍କାର ବୋଲି ଜ୍ଞାନ କରେ, ସେହିପରି ମା ! ଏ ସଂସାରରେ ବନ୍ଧ ମୋକ୍ଷ ବ୍ୟବସ୍ଥା ତୋ ପକ୍ଷରେ ଲୀଳାମାତ୍ର ।

ମା ଭଗବତି ! ବିଶ୍ୱମୂର୍ତ୍ତିମୟି-ବିଶ୍ୱେଶ୍ୱରି ! ତୋହର ସୂକ୍ଷ୍ମତର ସୂକ୍ଷ୍ମତମ ଓ ସର୍ବକାରଣର କାରଣ ନିତ୍ୟରୂପ ଦର୍ଶନ କରି ଉପଲବ୍ଧି କରିବା ବଡ଼ ଅସାଧ୍ୟ ବ୍ୟାପାର; ସୁତରାଂ ଆତ୍ମପାର୍ଥକ୍ୟ-କଳ୍ପିତ-ଦେହ-ସଂସାରାଦି-ବନ୍ଧନ ଅବାରିତଭାବେ ଆତ୍ମାକୁ ଆବଦ୍ଧ କରି ସଂସାରୀ କରାଇଅଛି । ଏଥିରୁ ଭକ୍ତି ଓ ଜ୍ଞାନାଦିଦ୍ୱାରା ମୁକ୍ତି ଲଭିବା ଭିନ୍ନ ଉପାୟାନ୍ତର ନାହିଁ । ସୁତରାଂ ମୁକ୍ତିମାର୍ଗ ଅଧିକାରୀ-ଭେଦରେ ଜ୍ଞାନ, ଭକ୍ତି ଓ କ୍ରିୟାଯୋଗାଦି ବହୁବିଧ ଶ୍ରେଣୀରେ ବିଭକ୍ତ ହୋଇ ନାନା ପ୍ରକାରରେ ଅନୁଷ୍ଠିତ ହେବାର ନିୟମ ତୋହରି କୃପାରୁ ମା ! ଏ ସଂସାରରେ ନିର୍ଦ୍ଦିଷ୍ଟ ଅଛି । ମାତ୍ର ବର୍ତ୍ତମାନ କଳିର ପୂର୍ଣ୍ଣ ତାମସଭାବ ଉପସ୍ଥିତ ହୋଇଥିବାରୁ ତଦନୁରୂପ ତାମସ ଶିକ୍ଷାଦୀକ୍ଷା, ତାମସବେଗ, ତାମସକ୍ରିୟା, ତାମସସଙ୍ଗ, ଓ ତମସାଚ୍ଛନ୍ନ ଆଦର୍ଶାନୁକରଣର ଦୁର୍ନୀତିରେ ସଂସାର ବୁଡ଼ିରହି ପ୍ରାଣୀମାନଙ୍କୁ ସେହିପରି ମୂଢ଼ତାରେ ଅଭିଭୂତ କରି ରଖିଅଛି । ଏହି ହେତୁରୁ ମନୁଷ୍ୟ ବିପରୀତାକୃଷ୍ଟ ହୋଇ ସେହି ଭଗବତୀର ପ୍ରସାଦ ସ୍ୱରୂପ ଧର୍ମସାଧନାଦିକୁ ତାମସବେଗ ଓ ବିଳାସିତାଦିର ବିରୁଦ୍ଧ ବୋଲି ମନେ କରି ଅମୃତତ୍ୟାଗ ପୂର୍ବକ ହଳାହଳ-ବିଷମୟ-ବିଷୟୋପଭୋଗରେ ପ୍ରମତ୍ତ ଭାବରେ ପ୍ରବୃତ୍ତ ହୋଇଅଛି; ଆଜି ଧର୍ମ-କର୍ମାନୁଷ୍ଠାନରେ ବଡ଼ ଅବଜ୍ଞା, ଅବହେଳା ଏବଂ ଅନାଦର ଜାତ ହୋଇଅଛି । ଏହି ଅବଜ୍ଞା, ଅବହେଳାଦିକ୍ରମ ଅଭ୍ୟାସଦ୍ୱାରା କ୍ରମେ କ୍ରମେ ବଢ଼ି ମ୍ଲେଚ୍ଛାକାର ଧାରଣପୂର୍ବକ ଶେଷ "ସର୍ବମତ୍ୟାନ୍ତଗର୍ହିତଂ" ସୀମାରେ ପହଞ୍ଚି ସାରିଲଣି । ତଦନୁସାରେ "ଯଦା ଯଦାହି ଅଭ୍ୟୁତ୍‌ଥାନମଧର୍ମସ୍ୟ ତଦା ଦୁଷ୍କୃତାଂ ବିନାଶାୟ ଆତ୍ମାନଂ ଅହଂ ସୃଜାମିତି" ଶ୍ରୀମଦ୍ ଭଗବତ୍ ପ୍ରତିଜ୍ଞା ବାକ୍ୟର ବେଳ ଉପସ୍ଥିତ ହୋଇଗଲଣି । ସେହି ହେତୁ ହିରଣ୍ୟାକ୍ଷ ଅର୍ଥାତ୍ ହିରଣ୍ୟରେ ଲଖିରହିଅଛି ଆକ୍ଷି ଯାହାର ସେହି ଶ୍ରେଣୀୟ ପରମାରୁ, ପରଧନ, ଧର୍ମ ଓ ପରମାନାପହାରୀ ଅସୁରବର୍ଗର କାଳାନ୍ତକ ନରସିଂହ ମୂର୍ତ୍ତି, ନ୍ୟାୟଧର୍ମ-ପ୍ରତିଷ୍ଠାନୁରୂପ ନୈତିକ ବିଗ୍ରହ ଧାରଣ ପୂର୍ବକ ଉପସ୍ଥିତ ହୋଇ ଆସିଥିବା ଜାଣି ଭକ୍ତରାଜ ପ୍ରହ୍ଲାଦ ବାଳକର "ବାଳକେ ମୋର ବୋଲ କର, ବେଳହୁଁ ଗୋବିନ୍ଦ ସୁମର" ବାଣୀ ଭୂମି-ଗଗନ-ପାତାଳ ଭେଦକରି ବଜ୍ରନିର୍ଘୋଷ ନାଦରେ ଗ୍ରାମ, ନଗର,

ପଲ୍ଲୀ, ପାଟଣାଦିରେ, ଏବଂ ଅରଣ୍ୟ, ମରୁପ୍ରାନ୍ତଦେଶରେ ସ୍ୱୟଂ କଳାଦିତ ହେଉଅଛୁ । ଅତଏବ ଜଡ଼ବାଦ ତଥା ଅଜ୍ଞାନବାଦର ସେବା ପରିତ୍ୟାଗ କରି ଆଦି-ଆର୍ଯ୍ୟ ପୂଜ୍ୟପଦରେଣୁ ମହର୍ଷି-ପ୍ରବରବୃନ୍ଦଙ୍କ ପ୍ରଦର୍ଶିତ ଧର୍ମାନୁଷ୍ଠାନ ପ୍ରଣାଳୀ ବା ପନ୍ଥା ଅବଲମ୍ବନ-ପୂର୍ବକ ସେହି ପରମେଶ୍ୱରୀ ଭଗବତୀ ଆଦିମାତୃଦେବୀର ସ୍ତବନ ବନ୍ଦନାଦି ଉଦ୍ଦେଶ୍ୟରେ ଧର୍ମରାଜ୍ୟର ପ୍ରଥମ ଦ୍ୱାରର ଫାଟକ କପାଟ ରୂପ ସ୍ୱରୂପ ପ୍ରତିଷ୍ଠିତ ପବିତ୍ର ଦେବ-ବିଗ୍ରହାଦିର ଅର୍ଚ୍ଚନ, ବନ୍ଦନାଦି ସମ୍ବନ୍ଧେ ଦୁଇଟିଏ କଥା କହି ମହାଦେବୀ ଭଗବତୀର ଏହି ସ୍ତୁତିବାଦ ପ୍ରବନ୍ଧ ଶେଷ କରିଯାଉ ।

## ୧୭ଶ ପାଠ—ନାମରୂପାତ୍ମକ ଅଧ୍ୟାତ୍ମଭାବଯୁକ୍ତ ମୂର୍ତ୍ତି ବା ସାକାରୋପାସନା

ସତ୍ତ୍ୱଯୁକ୍ତ-ରୁଚିକର, ଶ୍ରଦ୍ଧାସହିତ-ଚିତ୍ତାକର୍ଷକ, ସୁଖଶାନ୍ତିପ୍ରଦାୟକ ଓ ଧର୍ମ-ଜ୍ଞାନାଦିର ସହାୟକ, ଅଥଚ ଏ ସମସ୍ତର ଅବରୋଧୀ ଯେଉଁ ଯେଉଁ ସ୍ପର୍ଶନାତ୍ମକ, ଦର୍ଶନାତ୍ମକ, ଆସ୍ୱାଦନାତ୍ମକ, ଆଘ୍ରାଣାତ୍ମକ ଏବଂ ମନନାତ୍ମକ ବସ୍ତୁ ପରିଜ୍ଞାତ ହୁଏ ବା ଲବ୍ଧ କରିଯାଇପାରେ କି ନିର୍ଦ୍ଦେଶ କରିଯାଇପାରେ, ତାହାସବୁ ଶ୍ରୀ ମହାଲକ୍ଷ୍ମୀଦେବୀଙ୍କର ଅଂଶ ବିଶେଷ ଅଟେ, ବା ତତ୍‌ସମସ୍ତ ପଦାର୍ଥାଦିରେ ଶ୍ରୀଲକ୍ଷ୍ମୀଦେବୀଙ୍କର ସତ୍ତ୍ୱା ବା କଳା ବିଦ୍ୟମାନ ଅଛି, ଏହା ଅବଧାରଣୀୟ । ଆଉ ମଧ୍ୟ ଆତ୍ମଜ୍ଞାନାତ୍ମକ ବା ଈଶ୍ୱରପ୍ରେମାତ୍ମକ ସର୍ବପ୍ରକାର ଶକ୍ତି, ବୃତ୍ତି ବା ଭାବ ଏବଂ ଗୁଣାଦି ମଧ୍ୟ ଲକ୍ଷ୍ମୀସତ୍ତ୍ୱ-ବିଶିଷ୍ଟ । ଧ୍ୱନ୍ୟାତ୍ମକ, ବର୍ଣ୍ଣାତ୍ମକ, ଶବ୍ଦ ବା ବାକ୍ୟାତ୍ମକ, ଅନାହତ କିମ୍ବା ମନନାତ୍ମକ ଏ ସମସ୍ତ ପ୍ରକାର—କିମ୍ବା ଯେ କୌଣସି ପ୍ରକାର ହେଉ, ଉଚ୍ଚାରିତ ବା ଅନୁଚ୍ଚାରିତ ହେଉ—ଶବ୍ଦମାତ୍ରକ୍ଷି ଶ୍ରୀ ବାଗ୍‌ଦେବୀ ସରସ୍ୱତୀଙ୍କର ଅଂଶ ବା କଳାବିଶେଷ ଅଟେ, ଅଥବା ସେ ସବୁରେ ଶ୍ରୀ ସରସ୍ୱତୀଦେବୀଙ୍କର ସତ୍ତ୍ୱା ବିଦ୍ୟମାନ ଅଛି, ଏହା ପ୍ରଣିଧାନ ଯୋଗ୍ୟ ।

ଏହିରୂପେ ଉକ୍ତ ଶ୍ରୀ ମହାଲକ୍ଷ୍ମୀ ଓ ଶ୍ରୀ ସରସ୍ୱତୀ ଉଭୟ ମହାଦେବୀ ସ୍ୱରୂପତଃ ଅବ୍ୟକ୍ତା, ଅଚିନ୍ତ୍ୟରୂପା ହେଲେ ମଧ୍ୟ ଶ୍ରୀପ୍ରଭୁ ପରମେଶ୍ୱରଙ୍କର ଦୁଇ ଆଦ୍ୟା ଓ ନିତ୍ୟାଶକ୍ତି ଅଟନ୍ତି ଏବଂ ଲୋକାନୁଗ୍ରହ ପ୍ରଦର୍ଶନାର୍ଥ ଶ୍ରୀପ୍ରଭୁପରମେଶ୍ୱରଙ୍କ କୃପାରୁ ଉକ୍ତ ଶକ୍ତିରୂପା ଦେବୀଦ୍ୱୟ ବ୍ୟକ୍ତରୂପ ଧାରଣ କରିଅଛନ୍ତି । ଉପରୋକ୍ତ ନିର୍ଦ୍ଧାରଣାନୁଯାୟୀ ସର୍ବ-ଶୋଭାମୟୀ ଶ୍ରୀମହାଲକ୍ଷ୍ମୀ ବ୍ୟକ୍ତ ଜଗଚ୍ଚରାଚରାଦିରେ ସାକ୍ଷାତ ବିରାଜିତ ଥିବାରୁ ଏତତ୍‌-ଜଗଦାଦି ଶୋଭାମୟ, ରୁଚିମୟ ଏବଂ ଶ୍ରଦ୍ଧାମୟ ହୋଇ ପରିଦୃଷ୍ଟ ବା ପରିଜ୍ଞାତ ହେଉଅଛି । ସୁତରାଂ ସର୍ବପ୍ରକାର ଦ୍ରବ୍ୟ ବା ପଦାର୍ଥାତ୍ମକ ରୂପାଦିରେ ଶ୍ରୀ ମହାଲକ୍ଷ୍ମୀଦେବୀ ତନ୍ମୟ ହୋଇ ଅଭେଦଭାବେ ରହିଅଛନ୍ତି ବୋଲି ଶ୍ରୀମହାଲକ୍ଷ୍ମୀଙ୍କୁ ରୂପତତ୍ତ୍ୱ ସହିତ ଅଭେଦ ଓ ଏକ ବୋଲି ନିଶ୍ଚୟ କରିଯାଉଅଛି । ଏହିରୂପେ ଶ୍ରୀପରମଲକ୍ଷ୍ମୀଙ୍କୁ ରୂପମାତ୍ର ବୋଲି ନିଶ୍ଚୟ କରିଯାଉ । ଏ ସ୍ଥଳେ ରୂପତତ୍ତ୍ୱର ଅର୍ଥ ସାକାରତତ୍ତ୍ୱ । ରୂପ ଅର୍ଥରେ ଆକାର-

ମାତ୍ର ବୁଝିବାକୁ ହେବ । ଏହିରୂପେ ଶ୍ରୀ ଭଗବତୀ ବାକ୍‌ଦେବୀ ସରସ୍ୱତୀ ସର୍ବପ୍ରକାର ନାଦରେ ବା ଶବ୍ଦାଦିରେ ନିଜ ସତ୍ତା ସହିତ ବିରାଜମାନ ଥିବାରୁ ତାହା ବ୍ୟକ୍ତିଭାବରେ ପରିଜ୍ଞାତ ହେଉଅଛି । ଅତଏବ ନାଦାଦି ସହିତ ଶ୍ରୀ ସରସ୍ୱତୀ ଅଭେଦ ହୋଇ ରହିଥିବାରୁ ସେହି ନାଦ ବା ଶବ୍ଦାଦିକୁ ଶ୍ରୀ ସରସ୍ୱତୀଙ୍କର ରୂପ ବୋଲି ନିରୂପଣ କରାଯାଉ । ଉକ୍ତ ଦେବୀଦ୍ୱୟ ପରମବ୍ରହ୍ମ ଶକ୍ତିରୂପା ଥିବାରୁ ଶ୍ରୀମହାଲକ୍ଷ୍ମୀ 'ରୂପବ୍ରହ୍ମାତ୍ମିକା' ଏବଂ ଶ୍ରୀ ସରସ୍ୱତୀ 'ଶବ୍ଦବ୍ରହ୍ମମୟୀ' ଅଟନ୍ତି । ଶକ୍ତି ଓ ଶକ୍ତିମାନ୍ ଅଭେଦ ଏବଂ ଏକ ବୋଲି ପ୍ରସିଦ୍ଧ । ଏହିରୂପେ ସ୍ୱୟଂ ପରମେଶ୍ୱର ନିଜ ଶକ୍ତି ଯୋଗରେ ରୂପ ଏବଂ ନାମ ଉଭୟବିଧ ଭାବ ଧାରଣ କରିଅଛନ୍ତି ।

ବାସ୍ତବରେ ଦେଖିବାକୁ ଗଲେ ନାମ ଓ ରୂପ ଜଗନ୍ମୟ, ଚରାଚରାତ୍ମକ ଜୀବମୟ ଓ ସର୍ବମୟ ହୋଇ ବ୍ୟକ୍ତିଭାବ ଧାରଣ କରିଅଛି । ସମସ୍ତଙ୍କର ରୂପ, ଆଉ ସମସ୍ତ ରୂପର ନାମ ଅଛି । ସୁତରାଂ ସମସ୍ତ ନାମରୂପାତ୍ମକ । ଏଠାରେ ଜଡ଼ବାଦ ବା ଜଡ଼ବାଦୀ ଜଳ୍ପି-ପାରେ କି ସବୁ ରୂପାତ୍ମକ ବସ୍ତୁ ଓ ସବୁ ଶବ୍ଦ ତ ଜଡ଼ସୃଷ୍ଟିର ଅନ୍ତର୍ଗତ—ଏହା ଚିରପ୍ରସିଦ୍ଧ ଅଛି; ତେବେ ଏସବୁକୁ ଏତେଗୁଡ଼ାଏ ଟେକାଟେକି କରି ଧରିବା କାଳ୍ପନିକ କଥା ଭିନ୍ନ ଆଉ କଣ ହୋଇପାରେ ? ବାବା କ୍ଷମାକର, ଏତେ ଗର୍ବ-ଗୃହପଣ୍ଡି ତୁମ୍ଭେ କାହିଁ ପାଇଲ ? ରୂପକୁ ମନ ଓ ଚକ୍ଷୁ ସାହାଯ୍ୟରେ ଏବଂ ଶବ୍ଦକୁ ମନକର୍ଣ୍ଣ ସାହାଯ୍ୟରେ ଜାଣିବାକୁ ହେଲ, ଅଥଚ ରୂପ କି ନାମ ବା ଶବ୍ଦ ପୁଣି ଦେହ ସମ୍ପର୍କ ମନଶ୍ଚକ୍ଷୁ ବା ମନକର୍ଣ୍ଣ, ଏ ସବୁ ତ ଆମ୍ଭ ତୁମ୍ଭ କି ଅନ୍ୟ କାହାର ତିଆରି ଜିନିଷ ନୁହେଁ, କିମ୍ବା କିଣା ଖରିଦା ନୁହେଁ; ଏ ସମସ୍ତ ଦତ୍ତ, ତେବେ ଏ ସମ୍ବନ୍ଧେ ଅନଧିକାରୀ କାହିଁକି ? ଅଯାଚିତ ଦାନ, ଅହେତୁକ ଦୟା ଏବଂ ନିଃସ୍ୱାର୍ଥ ପରୋପକାର ଏହାର ମୂଲ୍ୟମହତ୍ତ୍ୱାଦି ବୁଝି ନ ଯାଇ ଯଦି ତଦ୍ରୂପ ଦାତା, ଦୟାଳୁ ଓ ପରୋପକାରୀଙ୍କୁ ଆମ୍ଭର ଋଣ ପରିଶୋଧକାରୀ ବୋଲିବା, ବାଧ୍ୟ-ଭୃତ୍ୟାଦି ପରି ବୋଲି ସେ ଆମ୍ଭପାଇଁ ଏ ସଂସାର ଓ ଆମ୍ଭ ପାଇଁ ସୁଖ-ସମ୍ଭୋଗ ଯୋଗାଡ଼ କରି ରଖିଛନ୍ତି—ଏପରି ମନେ କରାଯାଏ, ତେବେ କହିବାକୁ ହେବ—ଏହା ଯେ କେତେ କେତେ ପୂର୍ବଜନ୍ମସଞ୍ଚିତ ପାପଜନିତ ବୁଦ୍ଧି ଏବଂ ଭବିଷ୍ୟତ୍ କେତେ ଶତ ଜନ୍ମରେ ଯେ ଏ ମହାପାପ ଏବଂ କୃତଘ୍ନତାର ପ୍ରାୟଶ୍ଚିତ୍ତ ଶେଷ ହେବ, ତାହା କୁହାଯାଇ ନ ପାରେ । ଏବେ ନାମରୂପର ମାହାତ୍ମ୍ୟ ଟିକିଏ ଭଲରୂପେ ବିବେଚିତ ହେଉ ।

ବାସ୍ତବରେ ଦେଖିବାକୁ ଗଲେ ସମସ୍ତ ସଂସାର ମଧ୍ୟରେ ନାମରୂପହିଁ ଉପାସନା ସାମଗ୍ରୀ, ଏ ଭିନ୍ନ ଅନ୍ୟ କିଛି ନାହିଁ । କାବ୍ୟ-ନାଟକାଦି ଦେଖ, ଶାସ୍ତ୍ର-ପୁରାଣାଦି ଦେଖ, ଦର୍ଶନଶାସ୍ତ୍ର, ବେଦବେଦାନ୍ତାଦି ସର୍ବବିଧ ଗ୍ରନ୍ଥାଦି ଦେଖ ଏବଂ ସଂସାରୀୟ ବ୍ୟବହାର ବହି ଖାତାଦି ଦେଖ, ସବୁଠି ନାମ (ଶବ୍ଦ) ମୟ, ସେହି ନାମରୂପହିଁ ପ୍ରତିନିଧି ରୂପେ ଉପସ୍ଥିତ ରହି ରୂପକୁ ପ୍ରଦର୍ଶନ କରାଉଅଛି । ରୂପ ଉପଲବ୍‌ଧି ସକାଶେ ନାମର ବ୍ୟବହାର । "ଚନ୍ଦ୍ର" ନାମଟି କାହାର କିଛି କରେ ନାହିଁ, ମାତ୍ର 'ଚନ୍ଦ୍ର' ଶବ୍ଦଦ୍ୱାରା ଚନ୍ଦ୍ରାକୃତି ପଦାର୍ଥର

ଉପଲବ୍ଧି ହେଉଥିବାରୁ ତାହା ଆହ୍ଲାଦ ପ୍ରଦାନ କରିଥାଏ । ଏହିରୂପେ ସବୁ ନାମ ବା ଶବ୍ଦ ପଦାର୍ଥର ଜ୍ଞାପକ, ସୁତରାଂ ନାମଟି ରୂପର ପ୍ରତିନିଧି ବ୍ୟତୀତ ଅନ୍ୟ କିଛି ନୁହେଁ । ନାମ ଶ୍ରୁତ ବା ପଠିତ ହେବା ସଙ୍ଗେ ସଙ୍ଗେ ଆକାଶରେ ଲୟ ହୋଇ ଯାଉଥାଏ, ମାତ୍ର ସେ ଲୟ ହେଲେ କଣ ହେବ, ସେ ଯେଉଁ ପଦାର୍ଥାଦିର ଉପଲବ୍ଧି ବା ଜ୍ଞାନ କରାଇ ଦେଇଯାଏ, ସେହି ପଦାର୍ଥାଦି ଉପାଦେୟ ଅଟେ । ନାମ ବ୍ୟତୀତ ପଦାର୍ଥର ଜ୍ଞାପନ ପ୍ରତ୍ୟକ୍ଷ ସ୍ଥାନରେ କେବଳ ଠାର ବା ଇଙ୍ଗିତଦ୍ୱାରା ବ୍ୟକ୍ତ କରାଯାଇପାରେ, ମାତ୍ର ବହୁଦୂରସ୍ଥ ବା ମନେନ୍ଦ୍ରିୟାଦିର ଅଗୋଚର ବସ୍ତୁକୁ 'ନାମ' ପଦାର୍ଥର ପ୍ରତିନିଧି ରୂପେ ବିରାଜିତ ରହି ତତ୍ତତ୍ ପଦାର୍ଥାକାରରେ ପ୍ରଦର୍ଶନ କରାଇ ଦେଉଅଛି । ଲୋକମାନେ କ୍ରନ୍ଦନ ଶବ୍ଦଦ୍ୱାରା ମୃତ ପିତାମାତାଙ୍କର ରୂପ ଉପଲବ୍ଧି କରନ୍ତି, ଶବ୍ଦଦ୍ୱାରା ଦୂରସ୍ଥ ଲୋକର ସମ୍ବାଦ ପାଇ ତାହାର ରୂପ ବ୍ୟକ୍ତ ବା ଜ୍ଞାପନ କରାଇ ଥାଆନ୍ତି ଇତ୍ୟାଦି ଇତ୍ୟାଦି । ସଂସାରର ସର୍ବତ୍ର ନାମହିଁ ପଦାର୍ଥର ପ୍ରତିନିଧିରୂପେ ବ୍ୟବହୃତ ହେଉଅଛି । କୋଟିପତି କମ୍ବା ରାଜାଧିରାଜ ହୋଉ ସେ ମନୁଷ୍ୟଟିଏ, ମାତ୍ର କୋଟି ମୁଦ୍ରା ବା ରାଜ୍ୟର ମାଲିକ ବୋଲି ସେ ଯେଉଁଠାରେ ଏକାକୀ ଥାଉ ପଛକେ ତାହାର ତାହା ସ୍ମରଣ ହେଉଅଛି । ମୁଦ୍ରା ବା ରାଜ୍ୟ ସେ କୋଳରେ ଧରିବସିନାହିଁ, କି ସବୁବେଳେ ଦେଖି ପାରୁନାହିଁ; ତଥାପି "କୋଟିମୁଦ୍ରା" ବା "ରାଜ୍ୟ" ଏହି ଶବ୍ଦର ସ୍ମରଣ ତାହାର ମୁଦ୍ରା ବା ରାଜ୍ୟର ଉପଲବ୍ଧି କରାଇ ତାକୁ ସର୍ବଦା ଆଶ୍ୱାସ ଦେଉଅଛି, ଇତ୍ୟାଦି ଇତ୍ୟାଦି । ଏପରି ଉପାସନା ଆଡ଼େ ଦେଖ, ଯେ ଯେଉଁ ଭାଷାରେ କହନ୍ତୁ, ସବୁହିଁ ନାମ (ଶବ୍ଦ); ପରମେଶ୍ୱର ଲକ୍ଷ୍ୟରେ ସମସ୍ତେ ନାମମାତ୍ରର ଉଚ୍ଚାରଣ ବା ବ୍ୟବହାର କରନ୍ତି, ମାତ୍ର ପରମେଶ୍ୱରଙ୍କ ରୂପକୁ ନାମୋଚ୍ଚାରଣ ବେଳେ ଦେଖୁଥାଆନ୍ତି କି ? ତେବେ ନାମହିଁ ଉପାସନାସ୍ଥଳେ ପରମେଶ୍ୱରଙ୍କ ରୂପର ପ୍ରତିନିଧିରୂପେ ଉପସ୍ଥିତ ହୁଏ । ଯେଉଁ ସମ୍ପ୍ରଦାୟ ବା ମତବାଦୀ କି ଧର୍ମବାଦୀ ଶୂନ୍ୟମନ୍ଦିରରେ ନାନାବିଧ ଆଡ଼ମ୍ବରସହ ଉପସ୍ଥିତ ହୋଇ ଉପାସନା କରନ୍ତି, ଯେଉଁଠାରେ ଈଶ୍ୱରଙ୍କ ରୂପ କଳ୍ପନାରେ ମଧ୍ୟ ଅଦୃଶ୍ୟ ଥାଏ, ତଥାପି ଈଶ୍ୱର ଲକ୍ଷ୍ୟରେ କେତେ ପ୍ରକାରର ଶବ୍ଦଗୁଡ଼ିଏ କେବଳ ପାଠ ବା ଶ୍ରବଣ କରି ସମସ୍ତେ ଈଶ୍ୱରୋପାସନା ଶେଷ କରନ୍ତି । କି ମୁସଲମାନ, କି ଖ୍ରୀଷ୍ଟିୟାନ ଯେ କୌଣସି ଧର୍ମରେ, ମତରେ ବା ସମ୍ପ୍ରଦାୟରେ ଶୂନ୍ୟମନ୍ଦିରରେ ବା ଅନ୍ୟ ସ୍ଥାନରେ ହେଉ, ଈଶ୍ୱରୋପାସନା ଶାବ୍ଦିକ ପ୍ରାର୍ଥନା, ସ୍ତବନ ବା ବନ୍ଦନାଦିରେ ସମାପିତ ହୁଏ । ତଦନୁସାରେ ମନରେ ଯେ ଯେପରି ଭାବପାର ଥାଆନ୍ତି, ମାତ୍ର ଈଶ୍ୱରଙ୍କ ରୂପ ସେଠାରେ ଦେଖିବାକୁ ପାଆନ୍ତି ନାହିଁ । ଏମନ୍ତ କି ନାସ୍ତିକବାଦୀ, ଯେ କି ଈଶ୍ୱରଙ୍କର ଅସ୍ତିତ୍ୱ ଅସ୍ୱୀକାର କରେ, ସେ ମଧ୍ୟ ସେହିପରି ନାମୋପାସନା ପ୍ରକାରାନ୍ତରେ କରିଥାଏ, ଅର୍ଥାତ୍ ଆସ୍ତିକ କହେ "ଈଶ୍ୱର ହେ", ନାସ୍ତିକ କହେ "ଈଶ୍ୱର ନାହାନ୍ତି" । ଏ ଦୁଇ ଶ୍ରେଣୀ ମଧ୍ୟରେ ଦେଖିବାକୁ ଗଲେ ଉଭୟେ ନାମୋପାସକ । ଆସ୍ତିକର ଉପାସନା ଈଶ୍ୱର ବୋଲି ନାମୋଚ୍ଚାରଣ ବା ଶ୍ରବଣ, ଆଉ ନାସ୍ତିକର ଉପାସନା ମଧ୍ୟ ସେହି ନାମ

ଅର୍ଥାତ୍ "ଈଶ୍ୱର" (ଏହା ତ ନାମ) 'ନାହାନ୍ତି' (ଏ ବି ତ ନାମ) ବୋଲି ଦୁଇଟି ନାମୋଚ୍ଚାରଣ । ତେବେ କେବଳ ଏହି ନାମୋପାସକମାନେ ରୂପୋପାସକ ବା ସାକାରୋପାସକମାନଙ୍କୁ ହେୟ କରନ୍ତି, କହିଥାଆନ୍ତି ସାକାରୋପାସକମାନେ ଜଡ଼ ପଦାର୍ଥକୁ ପରମେଶ୍ୱର କହୁଅଛନ୍ତି । ତେବେ ବିଚାର କରିବାକୁ ଗଲେ ଶବ୍ଦ ବା ନାମ ଅଜଡ଼ ନୁହେ; ଏକ ଜଡ଼ ଉପାସ୍ୟ, ଅନ୍ୟ ଜଡ଼ କାହିଁକି ତ୍ୟାଜ୍ୟ ? ଏ ସବୁ କେବଳ ସାମ୍ପ୍ରଦାୟିକ ମତଭେଦ ମାତ୍ର । ଏବେ ଆତ୍ମ-ସମ୍ବାଦ ସମସ୍ତଙ୍କ ସେବାରେ ନିଯୁକ୍ତ ରହି ନିବେଦନ କରୁଅଛି ଯେ ସମସ୍ତେ ନାମୋପାସକ । ଏ ସମସ୍ତଙ୍କ ମଧ୍ୟରେ ଯେପରି ମୁସଲମାନ, ଖ୍ରୀଷ୍ଟିୟାନମାନେ ଯାଉଅଛନ୍ତି, ସେହିପରି ମଧ୍ୟ ବ୍ରାହ୍ମ ପ୍ରଭୃତି ଅନ୍ୟାନ୍ୟମାନେ ବିଶେଷତଃ ସାକାରୋପାସକମାନେ ଯାଉଅଛନ୍ତି । ସାକାରୋପାସକମାନେ ନାମବ୍ରହ୍ମର ଅତି ବଡ଼ ଭକ୍ତ, ଅଧିକ କେବଳ ଏତିକି ଯେ ଏମାନେ ନାମୋପାସନା ସଙ୍ଗେ ସଙ୍ଗେ ରୂପ ବା ସାକାର ମୂର୍ତ୍ତିର ଉପାସନାଟି ଯୋଗ କରନ୍ତି । ଏବେ ଟିକିଏ ପୂର୍ବ କଥା ମନେ କରିଯାଉ, ନାମ ସରସ୍ୱତୀ ଓ ରୂପ ମହାଲକ୍ଷ୍ମୀ । ଉଭୟେ ପରମେଶ୍ୱରଙ୍କର ଦୁଇ ନିତ୍ୟା ଶକ୍ତି । ଉଭୟେ ଅବ୍ୟକ୍ତା, ଅଥଚ ଯେପରି ଯେଉଁ କାରଣରେ ବ୍ୟକ୍ତା ତାହା ଉଲ୍ଲେଖ କରିଯାଇଅଛି । ଏବେ ବିଶେଷ କରି ଦେଖିବାକୁ ଗଲେ ନାମ ଆଉ ରୂପର ଯେପରି ଘନିଷ୍ଠ ନିତ୍ୟ ସମ୍ବନ୍ଧ, ସେପରି ସ୍ୱାଦୁ-ଗନ୍ଧ ଓ ସ୍ପର୍ଶ ମଧ୍ୟରେ ନୁହେ । ନାମ ଧରିଲେ ସଙ୍ଗେ ସଙ୍ଗେ ରୂପ ମନୋମଧ୍ୟରେ ଉପସ୍ଥିତ ହୁଏ, ଏବଂ ରୂପ ଦେଖିଲେ ତହିଁର ନାମ ଜଣା-ଥିଲେ ଉପସ୍ଥିତ ହେଲା, ଆଉ ଜଣା ନ ଥିଲେ 'କଣ' ଶବ୍ଦଟି ଉପସ୍ଥିତ ହେଲା । ମନୁଷ୍ୟ ସର୍ବଦା ଅନବଚ୍ଛିନ୍ନଭାବେ ନାମ-ରୂପ ଉପଲବ୍ଧି କରୁଅଛି । ସେ ସମ୍ବନ୍ଧରେ କହିବାକୁ ଗଲେ ମନୁଷ୍ୟ ଏକରକମ ବାତୁଳପ୍ରାୟ; ଅର୍ଥାତ୍ ବେଶୀ ଲୋକ ଏକତ୍ର ଥିଲେ କଥନ, ଶ୍ରବଣ ଚାଲିଥାଏ, ଏକାକୀବେଳେ ମଧ୍ୟ ମନୋମୟ କୋଷ ଖାଲି ନ ଥାଏ, ମନେ ମନେ ଯେପରି କିଛି ନା କିଛି କହି ହେଉଥାଏ, ଆଉ କହିବାନୁଯାୟୀ ପଦାର୍ଥାଦିର ରୂପକୁ ଯେପରିକି ଦେଖୁଥାଏ । ସ୍ୱପ୍ନ ଓ ଜାଗରଣ ଉଭୟ ଦଶାରେ କହି ହେଉଥିବା ଏବଂ ଦେଖି ଯାଉଥିବା ପ୍ରାୟ ସବୁବେଳେ ଲାଗି ରହିଅଛି । ଏହାର ତାତ୍ପର୍ଯ୍ୟ ଏହି ଯେ ମନୁଷ୍ୟ ପ୍ରଧାନତଃ ନାମ-ରୂପର ଉପାସକ । ନାମ ଏବଂ ରୂପ ପରସ୍ପର ସାପେକ୍ଷ; ରୂପ ନାମକୁ ଖୋଜୁଥାଏ, ଏବଂ ନାମ ରୂପକୁ ଜ୍ଞାପନ କରେ । ଏବେ ଉପାସନାଦିରେ ନାମର ପ୍ରାଧାନ୍ୟ ସର୍ବ ଶ୍ରେଣୀରେ, ସର୍ବ ସମ୍ପ୍ରଦାୟରେ, ଏବଂ ସର୍ବ ମତରେ ଦେଖା ଯାଉଥିବା ଲେଖାଯାଇଅଛି । ବର୍ତ୍ତମାନ ବୁଝାଯିବା ଆବଶ୍ୟକ, ରୂପ ବା ସାକାର ଭିନ୍ନ ଖାଲି ନାମୋପାସନାରେ ଉପାସନାର ଅଙ୍ଗ ଅସମ୍ପୂର୍ଣ୍ଣ ରହୁଅଛି; କାରଣ ନାମ ରୂପକୁ ଅପେକ୍ଷା ନ କରି ରହିପାରୁନାହିଁ । ତେବେ ନାମ ଏବଂ ରୂପ ଉଭୟେ ଛଡ଼ାଛଡ଼ି ନ ହେବା ଅବସ୍ଥାରେ ନାମୋପାସନା ସଙ୍ଗେ ସଙ୍ଗେ ରୂପ ବା ସାକାରୋପାସନା ସ୍ୱତଃ ଆସି ଉପସ୍ଥିତ ହେଉଅଛି । ଯେତେବେଳେ କେହି କାହାକୁ ଡାକୁଅଛି, ସେତେବେଳେ ତାହାର ଡାକ ରୂପକୁ ନେଉଅଛି । ରୂପକୁ ନ ଦେଖିବାଯାଏ ଡାକିବାକୁ ହେଉଥିବ,

ସୁତରାଂ ନାମୋପାସନା ସଙ୍ଗେ ସଙ୍ଗେ ଯଦି ରୂପ ବା ସାକାର ଦେବମୂର୍ତ୍ତି ଉପାସ୍ୟରୂପେ ସମ୍ମୁଖରେ ଦର୍ଶନ କରାଯାଉଥିବ, ତେବେ ବଡ଼ ଭଲ ରୂପେ ଉପାସନା ସାଙ୍ଗ ହେଲା । ଏହି ହେତୁ ନିମ୍ନଲିଖିତ ବିବରଣାନୁଯାୟୀ ସାକାରୋପାସନା ଉପାଦେୟ ଓ ବିଧେୟ ଅଟେ ବୋଲି ଉକ୍ତ ଉପାସନା ସମ୍ବନ୍ଧେ ଅଳ୍ପ କିଛି ଆଲୋଚନା କରାଯାଉ ।

ଠିକ୍‌ରୂପେ ଦେଖିଲେ ଆଗ ରୂପ, ପରେ ନାମ । ରୂପର ନାମ, ରୂପକୁ ବାଦ୍‌ଦେଲେ ନାମ କାହୁଁ ଆସିଲା ? ଅତଏବ ରୂପ ବା 'ସାକାରୋପାସନା' ସହିତ ନାମ, ସ୍ତୋତ୍ର, ମନ୍ତ୍ରାଦି ଏକତ୍ରେ ଉପାସିତବ୍ୟ । ସେହି ପୂର୍ଣ୍ଣାଙ୍ଗ-ଉପାସନା ସାକାରୋପାସନାରେ ଉପଲବ୍‌ଧି ହେଉଅଛି । ଏବେ ଦେଖିବାକୁ ହେଉ, ଆତ୍ମା ମାନବ ଜନ୍ମ ଗ୍ରହଣ କରି ସ୍ୱଭାବତଃ ଜଡ଼ ଦେହର ସେବାରେ ସର୍ବଦା ଲାଗି ରହିଅଛି । ନିଜ ଦେହର ସେବା, ଆତ୍ମୀୟ-ସ୍ୱଜନ ଓ ପରିଜନାଦିର ସେବା, ସାଧୁ, ଅତିଥି, ଅଭ୍ୟାଗତ, ନିଃସହାୟ ଦୁଃଖୀ, ଏବଂ ଦରିଦ୍ରାଦିର ସେବା ମନୁଷ୍ୟମାନଙ୍କ ଅହରହ ନିର୍ବାହ କରୁଅଛି । ଏଥିର କାରଣ ଆତ୍ମା ଜଡ଼ ଦେହ ଧାରଣ କରି ସେହି ଦେହକୁ ଆତ୍ମଜ୍ଞାନାଭାବରୁ ଆତ୍ମା ବୋଲି ଅଭେଦ-ଭାବରେ ଭ୍ରମଧାରଣା ସହିତ ମାନି ନେଇଅଛି । ଏହି ଭ୍ରମ ଅନ୍ତରିତ ହୋଇ ନିଜ ବୋଧାତ୍ମା ରୂପ ଉପଲବ୍‌ଧି ହେବା ନିମିତ୍ତ ଉପାସନାଦି କର୍ତ୍ତବ୍ୟ ବୋଲି ଅବଧାରିତ ହୋଇଅଛି । ଦେହ ଜଡ଼ ଓ ପାଞ୍ଚଭୌତିକ, ତେବେ ସେ କିପରି ଆତ୍ମା ହୋଇ-ପାରେ ? ଏହିଠାରୁ ଉପାସନାଦିର ବର୍ଣ୍ଣମାଳାର ପ୍ରଥମ ବର୍ଣ୍ଣାକ୍ଷର ଆରମ୍ଭ ହେଲା । ଦେହ ଜଡ଼, ତହିଁ ସଙ୍ଗେ ଇନ୍ଦ୍ରିୟାଦି-ଦଶ, ପ୍ରାଣାଦି-ପଞ୍ଚ, ଅନ୍ତଃକରଣ-ଚତୁଷ୍ଟୟ, ଏବଂ ଆତ୍ମାର-ସତ୍ତା ଇତ୍ୟାଦିର ସମ୍ବନ୍ଧ ହେବାରୁ ପରସ୍ପର-ସମ୍ବନ୍ଧହାରା ଦେହ ଆତ୍ମମୟ ହୋଇ ଆତ୍ମା ବୋଲି ବ୍ୟବହୃତ ହେଉଅଛି । ଏ ସଙ୍ଗେ ସଙ୍ଗେ ଜାଣିବାର ବହୁତ ଜ୍ଞାନମୟ-ରହସ୍ୟ ଉପାସନା ପଦ୍ଧତିରେ ନିହିତ ଅଛି । ଅନୁଭବ ବିନା କାଳ୍ପନିକ ଜ୍ଞାନ କିଛି ନୁହେଁ, ଉପାସନା ପ୍ରଣାଳୀରୁ ଏ ସମସ୍ତ ରହସ୍ୟ ଭେଦ ହେବାର ପନ୍ଥା ଉନ୍ମୋଚିତ ହୋଇଅଛି । ଏହି ସାକାରୋପାସନାର ରାଜ୍ୟ ଅତୀବ ବିଶାଳ । ଏଥିରେ ଦେବ-ବିଗ୍ରହ ପୂଜା ସଙ୍ଗେ ସଙ୍ଗେ ସ୍ତୋତ୍ର-ମନ୍ତ୍ରାଦି ପଠନ ଏବଂ ତହିଁର ପ୍ରକୃତାର୍ଥ ଗ୍ରହଣ କରିବା ବିଧେୟ । ସେହି ଉପାସନାରେ ପୂଜନ-ବନ୍ଦନାଦି ସମ୍ବନ୍ଧେ କର୍ମଯୋଗ, ହଠଯୋଗ, ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର ଓ ଧ୍ୟାନାଦିର ବହୁ ବହୁ ପ୍ରକାର ପ୍ରକ୍ରିୟା ଓ ସାଧନାନୁଷ୍ଠାନାଦି ବିଧାନସହ ନିୟମିତଭାବରେ ନିର୍ଦ୍ଦିଷ୍ଟ ଅଛି; ଅର୍ଥାତ୍ ପ୍ରକୃତିଠାରୁ ମହତତ୍ତ୍ୱ ଓ ଅହଂକାରାଦି ତତ୍ତ୍ୱ ସହ ପ୍ରାଣେନ୍ଦ୍ରିୟାଦି, ପଞ୍ଚଭୂତାଦିର ଅଂଶ ପର୍ଯ୍ୟନ୍ତ ମିଶ୍ରିତଭାବରେ, ଏବଂ ବିରାଟ ସଂସାର ତତ୍ତ୍ୱାଦିରୁ, ଗ୍ରହ-ନକ୍ଷତ୍ରାଦିରୁ, ଦେବଦେବ୍ୟାଦି ଅଂଶରୁ କଳାଏ କଳାଏ ମଧ୍ୟ ଦିଆ ଅଛି । ପରମେଶ୍ୱର-ଭଗବାନ-ହରି ପ୍ରକୃତିରୁ ଆରମ୍ଭ କରି ସର୍ବସୃଷ୍ଟି ଉତ୍ପାଦନ, ରକ୍ଷଣ, ପାଳନ ଓ ଲୟ ସାଧନାଦି ଶକ୍ତି-ସହିତ ଯେପରି ସର୍ବଶକ୍ତିମାନ୍, ସର୍ବଦେବମୟ, ସର୍ବ ଜୀବମୟ, ଓ ସର୍ବବିଶ୍ୱମୟ

ହୋଇ ମହା ଅଚିନ୍ତ୍ୟ ଶକ୍ତିସମ୍ପନ୍ନ ସର୍ବୈଶ୍ୱର୍ଯ୍ୟ ଓ ବିଭୂତ୍ୟାଦି ସହ ବିରାଜମାନ ଅଛନ୍ତି, ସେହି ସର୍ବପ୍ରକାର ତତ୍ତ୍ୱରୁ ନଗଣ୍ୟ କ୍ଷୁଦ୍ର କଣିକାଏ କଣିକାଏ ଦତ୍ତ ହୋଇ ଜୀବୋପାଧିର ସୃଷ୍ଟି ହୋଇଅଛି ବୋଲି ଜୀବାତ୍ମା ଆପଣାଠାରେ ସେହି ସବୁ ପ୍ରକାର ଦତ୍ତ ତତ୍ତ୍ୱର ଅସ୍ତିତ୍ୱ ଉପଲବ୍ଧି କରି ନିଜ ଆତ୍ମାକୁ ପରମେଶ୍ୱରଠାରେ, ଏବଂ ନିଜଠାରେ ପରିଲକ୍ଷିତ ସର୍ବତତ୍ତ୍ୱାଂଶକୁ ପରମେଶ୍ୱରର ସର୍ବତତ୍ତ୍ୱମୟ ସମଷ୍ଟିରେ ଅର୍ଥାତ୍ ଯେଉଁ ଆଂଶିକ ବ୍ୟଷ୍ଟିତତ୍ତ୍ୱ, ଯେଉଁ ସମଷ୍ଟିତତ୍ତ୍ୱ ଜାତୀୟ ତାକୁ ତହିଁରେ ଯୋଗ ଥିବା ଦର୍ଶନକରଣାନନ୍ତର ତତ୍ପର ଉଭୟ ବ୍ୟଷ୍ଟି ସମଷ୍ଟିର କାଳ୍ପନିକ ଭେଦ ଯତ୍ୟତଃ ଅଭେଦଭାବ ଅନୁଭବ-ପୂର୍ବକ ନିଶ୍ଚୟ କରିବାର ନାମ ସମର୍ପଣ ବା ପୂଜାଦି ନାମେ ଅଭିହିତ । ଏହାର ନାମାନ୍ତର ମଧ୍ୟ ଆତ୍ମନିବେଦନ । ଏତଦ୍ଦ୍ୱାରା ସର୍ବପ୍ରକାର ବ୍ୟଷ୍ଟିତତ୍ତ୍ୱକୁ ଜୀବାଙ୍ଗରେ ଏବଂ ସମଷ୍ଟିତତ୍ତ୍ୱକୁ ପରମେଶ୍ୱର ଅଙ୍ଗରେ ଦର୍ଶନ କରି ଏକ ଏକ କରି ପୃଥକ୍‌ଭାବେ ଚିହ୍ନି ସ୍ଥିର କରିବାର ବିଧି ପୂଜାଦିରେ ନିର୍ଦ୍ଦିଷ୍ଟ ଅଛି । ସେଥିରୁ ତ୍ରିଗୁଣ ପରମେଶ୍ୱର ବିଭିନ୍ନ ପ୍ରକାରର ଏକ ମହାଶକ୍ତି ଯୋଗେ ବ୍ରହ୍ମା-ବିଷ୍ଣୁ-ଶିବାଦି ରୂପେ ବାସୁଦେବ-ସଙ୍କର୍ଷଣ-ପ୍ରଦ୍ୟୁମ୍ନ-ଅନିରୁଦ୍ଧାଦି ରୂପେ, ନାନାବିଧ ନାମରୂପବିଶିଷ୍ଟ ଦେବାଦି ଏବଂ ଗ୍ରହାଦିରୂପେ ପ୍ରପ୍ରକଟ ହେଉଅଛନ୍ତି । ଏତତ୍‌କ୍ରମେ ନାନାବିଧ ଦେବଦେବ୍ୟାଦିଙ୍କର ନାନା ମୂର୍ତ୍ତି ଓ ତଦୁପଯୋଗୀ ଧ୍ୟାନ, ସ୍ତବ, ମନ୍ତ୍ରାଦିର ମଧ୍ୟ ଉପାସନାକ୍ରମ ଅବଧାରିତ ହୋଇଅଛି । ମାନବୀୟ ଆତ୍ମା ଯେପରି ଆପଣାକୁ ପାର୍ଥିବ ଦେହରୂପେ କଳ୍ପନା କରି ତହିଁରେ ଉପାସକ ଭାବାରୋପ କରିଅଛି, ସେହିପରି ତନ୍ତ୍ରୋକ୍ତ ବିଧାନ ମତାନୁଯାୟୀ ପରମାତ୍ମାଙ୍କୁ ନାନାବିଧ ବିଗ୍ରହରୂପେ ଦର୍ଶନ କରି ତହିଁରେ ଉପାସ୍ୟଭାବ ଚିନ୍ତା କରି ପୂଜା କରିବା ତାହାପକ୍ଷରେ ସ୍ୱାଭାବିକ ସ୍ୱଧର୍ମ ଅଟେ । ଏ ସମ୍ବନ୍ଧେ ପୂଜା, ସ୍ତବନ, ବନ୍ଦନାର୍ଚ୍ଚନ, ନୈବେଦ୍ୟାଦି ବିଷୟ ନେଇ ଏହି ସାକାରୋପାସନା ପଦ୍ଧତି ଯେ କେଡ଼େ ବିଶାଳ ଆକାର ଧାରଣ କରିଅଛି, ଆଉ ସେହି ନିମିତ୍ତ ଉପାସନା ଭେଦରେ ଉପାସ୍ୟ ଏବଂ ଉପାସକର ଉପାଧି ଯେ କେତେ କେତେ ପ୍ରକାରର ଅଛି ତାହାର ଇୟତ୍ତା ନାହିଁ । ସାକାର-ସୃଷ୍ଟି-ତତ୍ତ୍ୱର ଅସୀମତା ସଙ୍ଗେ ପ୍ରତିଯୋଗିତା ଦେଖାଇବା କାରଣ ବୋଧହୁଏ ଏହି ଉପାସନା ପଦ୍ଧତି ଏପରି ଅସୀମ ଭାବ ପ୍ରାପ୍ତ ହୋଇଅଛି । ଏ ସବୁ ସମ୍ବନ୍ଧୀୟ ଗ୍ରନ୍ଥମାନଙ୍କର ନାମ ଥରେ ଉଚ୍ଚାରଣ କରି ଶେଷ କରିବାକୁ ଚେଷ୍ଟା କଲେ ବୋଧହୁଏ ମନୁଷ୍ୟର କ୍ଷୁଦ୍ର ଜୀବନ ସେତେ ପରମାୟୁ ପାଇଅଛି କି ନା ସନ୍ଦେହ । ଏଥିରୁ ଦେଖାଯିବ ଆତ୍ମାର ଦେହାତ୍ମାଭିମାନ କିପରି ଦୃଢ଼ ଓ ଅତୁଟ ଥିବାରୁ ତହିଁରୁ ନିବୃତ୍ତି ଓ ମୁକ୍ତି ଲଭିବା କାରଣ ଯେଉଁ ଦେଶରେ, ଯେଉଁ ସମାଜରେ, ପୂଜ୍ୟପଦ-ମହର୍ଷି-ପ୍ରବରବୃନ୍ଦ ପୂର୍ବାଦି କାଳରୁ ଏ ସବୁ ଉପାସନାଦି ନିର୍ଣ୍ଣୟ କରିବା ନିମିତ୍ତ ଅସଂଖ୍ୟ ଅସଂଖ୍ୟ ଗ୍ରନ୍ଥ ପ୍ରଣୟନରେ କଳ୍ପକଳ୍ପସ୍ଥାୟୀ ଜୀବିତକାଳ ବ୍ୟୟ କରି ଅସାଧ୍ୟ ସାଧନ କରି ରଖିଅଛନ୍ତି, ସେହି ଦେଶରେ, ସେହି ଜାତି ବା ସମ୍ପ୍ରଦାୟରେ କିମ୍ବା ସମାଜରେ ଜନ୍ମଲାଭ କରି ଆଜି ଆମ୍ଭେମାନେ ପେଟ ବିକଳରେ ଛଟପଟ ହୋଇ ମ୍ଳେଚ୍ଛବୃତ୍ତି, ମ୍ଳେଚ୍ଛସଙ୍ଗ, ମ୍ଳେଚ୍ଛାଚାର ଓ ମ୍ଳେଚ୍ଛ ବ୍ୟବହାର—

ସଂସାରର ଦାସତ୍ୱ ଗ୍ରହଣପୂର୍ବକ ଉଦରମାତ୍ର ପୂରଣ କରି ପାରିଲେ ଆପଣାକୁ ଚରିତାର୍ଥ ମନେ କରୁଥାଇଁ; ଏଥିରେ ପୁଣି ଅଜ୍ଞତାପୂର୍ବକ ପବିତ୍ର ଧର୍ମର ନିନ୍ଦା ବା ଗ୍ଲାନିବାଦ କରି-ପାରିବାଦ୍ୱାରା କେବଳ କେବଳ ପାଣ୍ଡିତ୍ୟ ଦେଖାଇବାରେ ପ୍ରମତ୍ତ ହୋଇଅଛନ୍ତି । ଏହି ପବିତ୍ର ଦେବବିଗ୍ରହୋପାସନାସମ୍ବନ୍ଧୀୟ ସ୍ତବନ, ବନ୍ଦନ, ଅର୍ଚ୍ଚନ, ଦର୍ଶନ ଓ ପୂଜନାଦିରୁ ଆଧ୍ୟାତ୍ମିକ ତତ୍ତ୍ୱ ଶିକ୍ଷା ପ୍ରାପ୍ତ ହେବାର ଅଭ୍ୟାସ କ୍ରମେ କ୍ରମେ ଜାତ ହୁଏ, ଆଉ ମଧ୍ୟ ସେହିପରି ଅଭ୍ୟାସ ସହକାରେ ଉପାସକ ଉପରଲିଖିତ ବର୍ଣ୍ଣନାନୁଯାୟୀ ଶୌଚ, ଇନ୍ଦ୍ରିୟ ନିଗ୍ରହ, ଶମଦମାଦି, ଆସନ ପ୍ରାଣାୟାମାଦିର ଅଭ୍ୟାସ କରିବାକୁ ବାଧ୍ୟ ହୋଇଥାଏ । ଏ ସବୁର ଅନୁଷ୍ଠାନ ବିନା ଦେବୋପାସନା ସାଙ୍ଗ ହୋଇ ପାରିବ ନାହିଁ । କଥାଚ୍ଛଳରେ ବାଳକ-ମାନଙ୍କୁ ନୈତିକ ଶିକ୍ଷା ଦେଲାପରି ଦେବବିଗ୍ରହ ପୂଜନାଦିରେ ଆଧ୍ୟାତ୍ମିକ ତତ୍ତ୍ୱଚିନ୍ତା ଓ ଯୋଗାଭ୍ୟାସାଦି ଶିକ୍ଷା କରିବା ପ୍ରଣାଳୀ ଉଦ୍ଭାବିତ ହୋଇଅଛି । ମୂତ୍ର, ପୁରୀଷ, ପୂଜ, ନାଳ, ରକ୍ତ, ମାଂସ ଓ ମେଦାଦିପୂର୍ଣ୍ଣ ଜଡ଼ପିଣ୍ଡାକାର ଶବକୁ ଆତ୍ମା ଯେତେବେଳେ ଅଭେଦ ଭାବରେ ଆତ୍ମସର୍ବସ୍ୱ କରି ଧରି ବସିଅଛି, ସେହି ଭ୍ରମ ଓ ମୋହ ବା ତଦ୍ରୂପ ଅଜ୍ଞାନା-ବରଣ ଫିଟିବାଉଳି କ୍ରିୟାଦି ଏହି ଦେବୋପାସନା ଶିକ୍ଷା କରିବାଦ୍ୱାରା ପବିତ୍ର ଦେବବିଗ୍ରହଙ୍କ ଠାରେ ଈଶ୍ୱରତତ୍ତ୍ୱ ସନ୍ଦର୍ଶନାଦିର ଆତ୍ମତତ୍ତ୍ୱୋପଲବ୍ଧି କରିବାର ମାର୍ଗ ଅଭ୍ୟସ୍ତ ହେବ । ଅଭ୍ୟାସ ଦ୍ୱାରା କାର୍ଯ୍ୟରେ ପରିଣତ ନ କଲେ ଦେହାତ୍ମ ଭ୍ରମ ଛୁଟିବା ସର୍ବଥା ଅସମ୍ଭବ । ଏହିହେତୁ ଜଡ ଦେହକୁ ଆତ୍ମା ବୋଲି ନିଶ୍ଚୟ କରିଥିବା ମୂଢ଼ ଜୀବପକ୍ଷରେ ଦେବମୂର୍ତ୍ତିରେ ଈଶ୍ୱରଜ୍ଞାନ ରଖି ସାକ୍ଷାତ ଭାବରେ ଈଶ୍ୱରଙ୍କୁ ଦେଖିବା, ତାଙ୍କର ପୂଜା ଦର୍ଶନାଦି କରିବା ଏବଂ ସେହି କ୍ରିୟାଦିରୁ ଜ୍ଞାନତତ୍ତ୍ୱୋପଦେଶାଦି କ୍ରମେ କ୍ରମେ ଆୟତ୍ତ କରିବା ଅତୀବ ସହଜ; କରିପାରିବାକୁ ହୋଇପାରିବ ବୋଲି ଉପାସନାରାଜ୍ୟର ପ୍ରଥମ ପ୍ରବେଶଦ୍ୱାର ସ୍ୱରୂପ ଏହି ଦେବୋପାସନା ବିଧି ପୂର୍ବ ମହର୍ଷିମାନଙ୍କ ଦ୍ୱାରା ନିର୍ଣ୍ଣୀତ ହୋଇଅଛି । ଯେଉଁ ମୂଢ଼ ଜୀବ ମାଟି ଦେହକୁ, ମାଟିର ସଂସାର-ମୃଣ୍ମୟ-ଧନଧାନ୍ୟାଦିକୁ ଉତ୍କୃଷ୍ଟ ଅର୍ଥ ବୋଲି ମଣି ସେଥିରେ ମାତି ରହିବା ଭିନ୍ନ ଏବଂ ତହିଁରେ 'ମୁଁ' ବା 'ମୋର' ବୋଲି ଅହଂତ୍ୱ ମମତାଦି ଭିନ୍ନ ଆତ୍ମା କଣ, ଈଶ୍ୱର ବା କଣ, ଧର୍ମାଧର୍ମହିଁ କଣ, ଇତ୍ୟାଦି କିଛି ଉପଲବ୍ଧି କରିବାକୁ ସମୟ, ସୁଯୋଗ ବା ବୁଦ୍ଧି ନ ପାଇ ପଶୁପରି ଆହାର, ନିଦ୍ରାଦିରେ କେବଳ ସମୟ କର୍ତ୍ତନ କରୁଅଛି, ତଦ୍ରୂପ ଅଜ୍ଞ, ମୂଢ଼ ମାନବ ପକ୍ଷରେ ପରମେଶ୍ୱର ବା ମହାପ୍ରଭୁ ବୋଲି ଟିକିଏ ହେଲେ ସ୍ମରଣ କରି ଦେବବିଗ୍ରହ ନିକଟରେ ଦେବାଳୟରେ ଉପସ୍ଥିତ ହୋଇ ଦର୍ଶନ, ପ୍ରଣାମାଦି କରିବା ଏବଂ ତଦ୍ଦ୍ୱାରା ଆପଣାକୁ ନୀଚ ଏବଂ ମହାପ୍ରଭୁ ବଡ଼ ମନେ କରି ସେଠାରେ ପ୍ରଣତ ହେବା ବହୁ ପରି-ମାଣରେ ମଙ୍ଗଳପ୍ରଦ ଅଟେ । ତହିଁରୁ କ୍ରମେ କ୍ରମେ ଶିକ୍ଷା କରି ସ୍ତବନ, ବନ୍ଦନାଦି ଉଚ୍ଚତର ସୋପାନକୁ ଉଠି ଆସନ, ନିୟମାଦିର ଅନୁଷ୍ଠାନ ସହକାରେ ଜ୍ଞାନଲାଭ କରିବା ଓ ଦେବରାଜ୍ୟର ଆଦର୍ଶ କଣ ତାହା ମନେକଲେ ହୃଦୟ ଆନନ୍ଦରେ ଫୁଲି ଉଠେ । ମନୁଷ୍ୟସନ୍ତ ଆତ୍ମତତ୍ତ୍ୱୋପଦେଶ ଲାଭ କରିବାର ଉପଯୁକ୍ତ ଉପକରଣ; ଏଥିରେ

ପଶୁପର ବିଷୟସ୍ଵଭୋଗମାତ୍ରରେ ଉନ୍ନତ ରହିଥିବା ପଶୁଠାରୁ ଅଧିକ କଣ ? ବରଂ ହୀନ ।

ସାକାରୋପାସନା ପଦ୍ଧତିରେ ବହୁବିଧ ଦେବଦେବୀ ମୂର୍ତ୍ତିର ଉପାସନା ନିର୍ଦ୍ଦିଷ୍ଟ ଥିବାରୁ ଅନେକ ଲୋକଙ୍କର ଆପତ୍ତି ଉଠେ —ଏକ ପରମେଶ୍ଵର ସମସ୍ତଙ୍କର ଉପାସ୍ୟ, ସେହି ଉପାସନା ଏତେ ପ୍ରକାରରେ ବିଭକ୍ତ ହେବାର କାରଣ କଣ ? ଏହି ଯେଉଁ ଏକେଶ୍ଵରୋପାସନା, ଏହା ସେହିପରି କହିବାର କଥା, ମାତ୍ର ଏକେଶ୍ଵର କଣ ? ଉପାସନା ବା କଣ ? ଏହା କଣ ଖାଲି ବାଗାଡ଼ମ୍ବର ସହିତ ଗର୍ବ ଓ ଗୃହଲକ୍ଷ୍ମୀ ଦେଖାଇ ଗୃହ କଥା କହିଦେଲେ ହେଲା ? ନା, ଏ ଖେଳଘର କଥା ନୁହେଁ । ସମସ୍ତ ମନୁଷ୍ୟଙ୍କର ଏକପ୍ରକାର ବୁଦ୍ଧି, ଜ୍ଞାନ, ବିବେକ, ବିଚାର, ପ୍ରତିଭା, ଶ୍ରଦ୍ଧା, ସଂସ୍କାରାଦି ନୁହେଁ । ଗୋଟିଏ ମନୁଷ୍ୟର ଯେପରି ଏକପ୍ରକାର ଆକାର ଓ ସ୍ଵର, ଏହିପରି ସମସ୍ତଙ୍କ ମଧ୍ୟରେ ଯେପରି ଆକାରଗତ ଓ ସ୍ଵରଗତ ପାର୍ଥକ୍ୟ ଦେଖାଯାଉଅଛି, ସେହିପରି ଏହିସବୁ ବୁଦ୍ଧି, ବିବେକ ଓ ଜ୍ଞାନାଦି ମଧ୍ୟ ପ୍ରତ୍ୟେକ ମନୁଷ୍ୟଠାରେ ବିଭିନ୍ନ ପ୍ରକାର ଦେଖାଯାଉଅଛି । ଏହି ବିଭିନ୍ନ ପ୍ରକାର ବୁଦ୍ଧି, ବିବେକ ଓ ସଂସ୍କାରାଦି ଦ୍ଵାରା ପ୍ରତ୍ୟେକ ଲୋକ ଏକପ୍ରକାର ଉପାସନାର ଅଧିକାରୀ ବୋଲି ନିର୍ଣ୍ଣୟ କରିବା ସମ୍ପୂର୍ଣ୍ଣ ଭ୍ରମ । ଉପାସନାର ଅର୍ଥ ଉପାସନା-ତତ୍ତ୍ଵକୁ ଅଭ୍ରାନ୍ତ ଅନୁଭବ ସହକାରେ ଉପଲବ୍ଧି କରି । ଏ ସ୍ଥଳେ 'ସର୍ବଂ ଖଳ୍ଵିଦଂ ବ୍ରହ୍ମ' ଏହି 'ଏକେଶ୍ଵରୋପାସନା' ତତ୍ତ୍ଵ ସଣ୍ଡୀପୁଅ ଅନନ୍ତାଠାରୁ ଆରମ୍ଭ କରି ଗୋପାଳ ଦାଶ, ମଧୁ ପଟ୍ଟନାୟକ ଓ ହରିବନ୍ଧୁ ତ୍ରିପାଠୀ ପ୍ରଭୃତିଙ୍କ ମଧ୍ୟ ଦେଇ ମହାମହୋପାଧ୍ୟାୟ ମହାଶୟଙ୍କ ପର୍ଯ୍ୟନ୍ତ, ତଥା ପରମହଂସ, ଯୋଗୀ, ବୈଷ୍ଣବ ଗୋସାଇଁଙ୍କୁ ମିଶାଇ ସର୍ବ-ପ୍ରକାର ସବୁ ମନୁଷ୍ୟଙ୍କ ପକ୍ଷରେ ସମାନ ଫଳଦାୟୀ, ସମାନ ଉପାଦେୟ ବା ସମାନ ପ୍ରକାରର ବୋଧଗମ୍ୟ ବୋଲି ନିଶ୍ଚୟ କରିବା ବଡ଼ ଭୁଲ କଥା । ଏହି ହେତୁ ବିଭିନ୍ନ ବୁଦ୍ଧି ଓ ସଂସ୍କାରସମ୍ପନ୍ନ ଭିନ୍ନ ଭିନ୍ନ ମନୁଷ୍ୟର ସୁବୋଧ ଓ ସହଜସାଧ୍ୟ ହେବାଭଳି ଭିନ୍ନ ଭିନ୍ନ ପ୍ରକାରର ଉପାସନା ପଦ୍ଧତି ପରମକାରୁଣିକ, ସମଦୟାପର ପୂଜ୍ୟପାଦ ମହର୍ଷି ପ୍ରବରାଦିଙ୍କଦ୍ଵାରା ଶାସ୍ତ୍ରପୁରାଣାଦିରେ ବିବିଧ ପ୍ରକାରରେ ନିର୍ଦ୍ଦେଶ କରାଯାଇ ଅଛି । ଫଳକଥା ଅଧିକାରୀ ଭେଦରେ, ଅଭିପ୍ରାୟ ଓ ଫଳକାମନା ଭେଦରେ ଏବଂ ସାଧ୍ୟାସାଧ୍ୟ ଭେଦାନୁସାରେ 'ଉପାସନା ଓ ଉପାସ୍ୟ' ଅନୁରୂପ ଭେଦବିଶିଷ୍ଟ ହେବା ବାଞ୍ଛନୀୟ । ସେହି ହେତୁରୁ ନାନାପ୍ରକାର ଦେବଦେବୀଙ୍କୁ ନାନାପ୍ରକାର ଉପାସ୍ୟରୂପେ ଉପାସନା କରିବାକୁ ଅନୁରୂପ ପ୍ରକାର ଭେଦବିଶିଷ୍ଟ ଯଥୋପଯୁକ୍ତ ମନ୍ତ୍ରାନୁଷ୍ଠାନ, ଜପପୂଜା ଏବଂ ବନ୍ଦନାର୍ଚ୍ଚନ ସହିତ ବିଭିନ୍ନ ପ୍ରକାରର ଉପାସନାଦ୍ଵାରା ବିଭିନ୍ନ ପ୍ରକାର ଉପାସକମାନଙ୍କର ପ୍ରକୃତ ଉପକାର ଓ ମଙ୍ଗଳସାଧନ ନିମିତ୍ତ ଆରାଧନାର୍ଥ ଶାସ୍ତ୍ର-ପୁରାଣାଦି ଉପଦେଶ ଦେଉଅଛନ୍ତି । ଉପସ୍ଥିତ କାଳର ଅଧିକାଂଶ ସମ୍ପ୍ରଦାୟଭୁକ୍ତ ଲୋକ ଜଡ଼ବାଦାନ୍ଧ-କାରାଚ୍ଛନ୍ନ-ବୁଦ୍ଧିବିଶିଷ୍ଟ ଥିବାରୁ ଦେହାତ୍ମଭ୍ରମ-ଜ୍ଞାନାଧୀନ ବିଚାର ଦ୍ଵାରା ଆପଣାକୁ ସର୍ବମୟ କର୍ତ୍ତା ଓ ପୁରୁଷକାରସମ୍ପନ୍ନ-ମହାବଳ ବୋଲି ସ୍ଥିର କରି ପରମେଶ୍ଵରୋପାସନା ସମ୍ବନ୍ଧେ

ଦାୟିତ୍ୱଶୂନ୍ୟ ଭାବ ପୋଷଣ କରୁଥିବାରୁ ଖାମଖେୟାଲରେ ଉପାସନାକୁ ଅବସର ମତ କ୍ରୀଡ଼ା-ବିଶେଷ-ସାମଗ୍ରୀ ରୂପେ ବ୍ୟବହାର କରୁଅଛନ୍ତି । ଏହି ଶ୍ରେଣୀର ଭ୍ରାନ୍ତ ମାନବ ସବୁ କହିପାରେ,·········ଛାଡ଼ ସେ ପ୍ରଳାପ; ଏ ସଂସାରରେ ଏ ମାଟିଦେହଧାରୀ ମାନବ ଏହାର ବିଷୟ କାରଖାନାଦିକୁ ଆଜକାଲି ଚିରସ୍ଥାୟୀ ଦଖଲଭୁକ୍ତ ସମ୍ପତ୍ତି କରି ରଖି ପାରିଲଣି, ଚିନ୍ତା କଣ ? ଧର୍ମ କଣ ? ଇହପରକାଳ ବା କେଉଁଠାରେ ? ନାରୀ, ମାଦକ, ମୁଦ୍ରାହିଁ ଉପାସ୍ୟ । ଏତଦ୍ରୂପ-ଭ୍ରାନ୍ତ-ମାନବ ମତରେ ଓ ପକ୍ଷରେ ନାମମାତ୍ର ଉପାସନା, ନାଁ ମାତ୍ର ଫମ୍ପା ଉପାସକ ନାମଧାରୀ ବ୍ୟକ୍ତି ଏହିହେତୁ କହେ, ଉପାସନା କଣ କି ? 'ହେ ଈଶ୍ୱର କହିବା କଥାଟା' ଏ ତ କେବଳ ଉପାସନା; ଏହା ସମସ୍ତେ କହିପାରନ୍ତି । ଅତଏବ ସମାଜଟା ତମାମ ସମାନଧର୍ମୀ । ତେବେ ଉପାସନାର ଭେଦ କାହୁଁ ସମ୍ଭବ ? ଉପାସନାର ଅର୍ଥ, ଯେ ଉପାସ୍ୟ ଈଶ୍ୱରତତ୍ତ୍ୱ, ଜୀବତତ୍ତ୍ୱ, ଏବଂ ପ୍ରକୃତି ତତ୍ତ୍ୱାଦି ସର୍ବ ତତ୍ତ୍ୱକୁ ଉପଲବ୍ଧି କରିବା, ଏବଂ ତହିଁରୁ ଜୀବର ବନ୍ଧମୋକ୍ଷାଦି ବିଷୟ ସ୍ଥିର କରିବା; ଏ କଥା ଦେହାତ୍ମ ଗର୍ବ-ସମ୍ବଳ-ସର୍ବସ୍ୱ ଅନାର୍ଯ୍ୟ-ବିଷୟାଡ଼ମ୍ବରୀ ସମାଜ ବୁଝନ୍ତି ନାହିଁ । ଜଡ଼ୀୟ-ଧନ-ସମ୍ପଦକୁ ଢାଲ କରି ଧରି ଜଡ଼ବାଦ-ବିଦ୍ୟା ଅସିରେ ସବୁପ୍ରକାର ଆଧ୍ୟାତ୍ମିକ ତତ୍ତ୍ୱ-ଜ୍ଞାନ-ପ୍ରକାଶକ-ବିଦ୍ୟାଦି, ଏବଂ ଉପାସନା-ତତ୍ତ୍ୱାଦିକୁ ସମୂଳେ ଛେଦନ କରିବାର ସାହସ କରନ୍ତି !!!!

ଏବେ ପବିତ୍ର ଉପାସ୍ୟ ଦେବମୂର୍ତ୍ତି ଦର୍ଶନ କରି ସାକ୍ଷାତ୍ ଉପାସ୍ୟ-ଈଶ୍ୱରଙ୍କୁ ଉପାସନା କରୁଥାଇଁ ବୋଲି ଭକ୍ତସହକାରେ ପ୍ରଣତ ହେବା କପରି ସହଜ ପ୍ରେମଦାୟକ ସେ ସମ୍ବନ୍ଧରେ ଟିକିଏ ପ୍ରଣିଧାନ କରାଯାଉ । ଦେବଦର୍ଶନ ନିୟମାନୁସାରେ ସ୍ନାନ-ଶୌଚାଦି ସମାପନ କରି ପବିତ୍ର ବସ୍ତ୍ର ଓ ଚନ୍ଦନ ଧାରଣ ପୂର୍ବକ ଚାଲି ଦେବାଳୟକୁ ଯିବା । ଏଠାରେ ବୁଝିରଖିବା ଉଚିତ ଯେ ଉପାସନାଦି ସମ୍ବନ୍ଧେ ପରମେଶ୍ୱର ଅବତାର ତତ୍ତ୍ୱସଙ୍ଗେ ଏହି ସାକାର ଦେବବିଗ୍ରହ ତତ୍ତ୍ୱର ସାମଞ୍ଜସ୍ୟ ରହିଅଛି । ଅବ୍ୟକ୍ତ, ଅଚିନ୍ତ୍ୟ ଓ ଅନିର୍ବଚନୀୟ ନିରାକାର ପ୍ରଭୁ ଯେପରି ଧର୍ମରକ୍ଷା ଓ ଅଧର୍ମ ବିନାଶାର୍ଥ ଦେହବନ୍ତ ହୋଇ ଅବତାର ଗ୍ରହଣ କରନ୍ତି, ସେହିପରି ଧର୍ମପ୍ରଦାନାର୍ଥ କାରଣାତ୍ମକ ଅବ୍ୟକ୍ତ ତତ୍ତ୍ୱକୁ ଉପଲବ୍ଧି କରାଇବା ପାଇଁ ଭକ୍ତ ସକାଶେ ଅବ୍ୟକ୍ତ ପୀଠ ତ୍ୟାଗ କରି ଭୌତିକ ରାଜ୍ୟକୁ ଆସି ଉପସ୍ଥିତ ହେବାରୁ ସେହି ଅପୂର୍ବ ରୂପକୁ ଦେଖି ଭକ୍ତର ଯେତେ ପ୍ରକାର ପ୍ରେମଭକ୍ତି ଉଦିତ ହେବା ସ୍ୱାଭାବିକ, ତଦ୍ରୂପ ଭକ୍ତିଭାବ ସହିତ ଦେବମୂର୍ତ୍ତି ମନ୍ଦିରରେ ଦର୍ଶନ କରି ପ୍ରେମବିଗଳିତ ହେବା ସ୍ୱାଭାବିକ । କାରଣ ପରମେଶ୍ୱରଙ୍କର ନାନାବିଧ ଅବତାର ରୂପାକାରରେ ସାକାର ଦେବମୂର୍ତ୍ତି ନିର୍ମିତ ଓ ପ୍ରତିଷ୍ଠିତ । ଅବତାର ଲୀଳାଦି ସାକାର ବିଗ୍ରହରେ ଲୀଳା-ଆକାରରେ ଅନୁକଳ୍ପିତ ହୋଇ ଅନୁଷ୍ଠିତ ହୋଇଥାଏ । ଉଦ୍ଧବ, ଅର୍ଜ୍ଜୁନାଦିଙ୍କ ପରି ମହାଭାଗ୍ୟବାନ ମହାପୁରୁଷମାନେ ମହାପ୍ରଭୁଙ୍କର ସେହି ଅବତାର ଶ୍ରୀମୂର୍ତ୍ତି ଦର୍ଶନ, ସ୍ପର୍ଶନ, ବନ୍ଦନ, ସେବନାଦି କରି କି ସ୍ୱର୍ଗ-ଦୁର୍ଲ୍ଲଭ ଭକ୍ତି-ପ୍ରେମ ଭାବାଦି ଆସ୍ୱାଦନ କରୁଥିବେ, ତାହା ସେହିମାନେ କେବଳ ଜାଣୁଥିବେ ।

ବର୍ତ୍ତମାନ ଭାବନା ଉଚିତ ତଦ୍ରୂପ ଭକ୍ତିଭାବ ଅନୁଭବ କରିବାପାଇଁ ସେହି ପ୍ରଭୁଙ୍କର ଲୀଳାଦି ଜୀବନ୍ତ ଆକାରରେ ସ୍ମରଣ କରିବା ଦେବବିଗ୍ରହପୂଜା-ଉପାସନାଦି ବ୍ୟତୀତ ଅନ୍ୟୋପାୟ କିଛି ନାହିଁ । ଅତଏବ ପବିତ୍ର ସାକାର ଦେବମୂର୍ତ୍ତି ଉପାସିତବ୍ୟ । ଅତୀତ ମାତାପିତାଦିଙ୍କର ପ୍ରତିବିମ୍ବ ଫଟୋଗ୍ରାଫ କରି ରଖି ଲୋକେ ଦେଖିଲାବେଳେ କିପରି ଆହ୍ଲାଦିତ ହୁଅନ୍ତି । ପରମେଶ୍ୱରଙ୍କ ଅବତାର ଶ୍ରୀମୂର୍ତ୍ତି ଓ ସର୍ବାର୍ଥପ୍ରଦାୟକ ତତ୍ସମ୍ବନ୍ଧୀୟ ଲୀଳାଦି ସ୍ମରଣ କରିବାପାଇଁ ସାକାର ଦେବୋପାସନାକାଙ୍କ୍ଷୀ ଉପାସନାଦିରେ କୃତକୃତ୍ୟ ଲାଭ କରିବା ବହୁପରିମାଣରେ ସମ୍ଭବ ଅଟେ । ଏବେ ସେହି ପବିତ୍ର ଦେବାଳୟରେ ପ୍ରବେଶ କରି ପ୍ରଭୁଙ୍କ ସେହି ସାକାର ଦେବମୂର୍ତ୍ତିଙ୍କୁ ଦର୍ଶନ କରିବା । ଏଠାରେ ଆହୁରି ଟିକିଏ ପୂର୍ବର ଲିଖିତ ବିବରଣ ମନେ ପକାଇବାକୁ ହେଉ, ଅର୍ଥାତ୍ ଆକାର ଏବଂ ଆକାରବାନ୍ ଏ ଉଭୟ ତତ୍ତ୍ୱ କିପରି ? ଦେବମୂର୍ତ୍ତି ଦର୍ଶନ କଲାବେଳେ ତାହାର ଆକାରକୁ ମନ ଧାରଣ କରୁଅଛି । ସେହି ଆକାରକୁ ମନ ସବୁବେଳେ ନିଜଠାରେ ଧରି ବସିପାରେ, ମାତ୍ର ସେହି ଆକାରବାନ୍ ବିଗ୍ରହ ସେହି ଦେବାଳୟରେ ସେହିପରି ପରମେଶ୍ୱରଙ୍କ ଅବତାର ରୂପକୁ ମନ ଚିରଦିନ ଧରି ରଖିବ ବୋଲି ଦେବମୂର୍ତ୍ତି ସେହି ଅବତାର ରୂପକୁ ପ୍ରଦର୍ଶନ କରାଉଛନ୍ତି । ଅବତାରୀ ପ୍ରଭୁ ସେହି ବୈକୁଣ୍ଠଧାମରେ ଅଥଚ ତାହାର ରୂପ ଦେବତା ରୂପରେ ଦେବାଳୟରେ ଏବଂ ଦେବାଳୟସ୍ଥ ଦେବମୂର୍ତ୍ତି ଦର୍ଶନରୁ ଆମ୍ଭ ମନରେ ବିରାଜମାନ । ଫଳତଃ ବୈକୁଣ୍ଠଧାମ ଏବଂ ଦେବାଳୟ ଉଭୟର ଏଠାରେ ଯେପରି ସାମ୍ୟ ସେହିପରି ବୈକୁଣ୍ଠଧାମରେ ବିରାଜିତ ଶ୍ରୀ ମହାପ୍ରଭୁ ପରମେଶ୍ୱରଙ୍କ ଶ୍ରୀମୂର୍ତ୍ତି ସଙ୍ଗେ ଦେବାଳୟସ୍ଥ ସାକାର ଦେବମୂର୍ତ୍ତି ଏକାକାରବିଶିଷ୍ଟ ଓ ଅଭିନ୍ନ ପ୍ରକାର ରୂପବାନ୍ ଅଟନ୍ତି । ଆମ୍ଭେ ଅତୀତ ପିତୃଦେବଙ୍କୁ ଦେଖିଥାଇଁ, ତାଙ୍କ ରୂପ ସଙ୍ଗେ ବର୍ତ୍ତମାନ ଦେଖୁଥିବା ତାଙ୍କର ପ୍ରତିମୂର୍ତ୍ତିର ଯେପରି ଅଭିନ୍ନତା, ସେହିପରି ଅବତାର ପ୍ରଭୁଙ୍କ ରୂପ ସଙ୍ଗେ ବର୍ତ୍ତମାନ ଦୃଷ୍ଟ ତଦାକାରାକାରିତ ଦେବମୂର୍ତ୍ତିଙ୍କ ରୂପର ଅଭିନ୍ନତା ରହିଅଛି । ଅତଏବ ଦେବାଳୟରେ ଆମ୍ଭେ ଯେଉଁ ସାକାର ଦେବମୂର୍ତ୍ତି ଦର୍ଶନ କଲୁଁ, ତାହା ବୈକୁଣ୍ଠଧାମର ଅବତାରୀ ପ୍ରଭୁଙ୍କୁ ଦେଖିଲପରି । ତତ୍ସମ୍ବନ୍ଧୀୟ ରୂପାକାରିତ ଜ୍ଞାନ ଏକା ପ୍ରକାରରେ ଆମ୍ଭ ମନରେ ଅଙ୍କିତ ହୋଇଯାଉଅଛି । ତେବେ ଆମ୍ଭେ ଦେବାଳୟକୁ ଯାଇ ସାକାର ଦେବମୂର୍ତ୍ତି ଦେଖୁଥାଇଁ —ଯାହା ବୈକୁଣ୍ଠଧାମର ପ୍ରଭୁଙ୍କୁ ଦେଖିବା ତାହାହିଁ ମାତ୍ର । ଯେଉଁ ରୂପ ବୈକୁଣ୍ଠଧାମରେ ସେହି ରୂପ ଦେବାଳୟରେ, ଏବଂ ସେହି ରୂପ ଆମ୍ଭ ମନରେ; ତେବେ ବୈକୁଣ୍ଠଧାମ, ଦେବାଳୟ ଓ ଆମ୍ଭ ମନ ଏ ତିନି ସ୍ଥାନ ପ୍ରଭୁ ଶ୍ରୀମୂର୍ତ୍ତି ଧାରଣ ସମ୍ବନ୍ଧେ ଏକାଦର୍ଶସମ୍ପନ୍ନ ।

ଏବେ ଆସ, ଜ୍ଞାନମାର୍ଗ ଓ ଦର୍ଶନମାର୍ଗରୁ ଅଜ୍ଞାନ-କଣ୍ଟକ ଉଠାଇ ନିଆଗଲା । ଚାଲ, ଭକ୍ତ ସହିତ ଦେବାଳୟରେ ମହାପ୍ରଭୁଙ୍କୁ ଦର୍ଶନ କରିବା । ବୈକୁଣ୍ଠଧାମ ଯେପରି ସଦା ପବିତ୍ର, ପରିଷ୍କୃତ, ଦେବ-ମୁନି-ଋଷି ପରିବେଷ୍ଟିତ, ପୁଷ୍ପ-ଚନ୍ଦନ-ଧୂପ-ଦୀପାଦିରେ ସୁବାସିତ ଓ ଆଲୋକିତ, ଏବଂ ବେଦମନ୍ତ୍ରାଦି ପଠନରେ ନିନାଦିତ, ଦେବାଳୟ

ସେହିପରି ଦେଖ, ପବିତ୍ର, ନିର୍ମଳ, ସାଧୁ-ବ୍ରାହ୍ମଣ-ଭକ୍ତ, ଉପାସକ ଏବଂ ସେବକାଦିଙ୍କ ଦ୍ୱାରା ଅର୍ପିତ ପୁଷ୍ପ, ଚନ୍ଦନ, ଧୂପ ପ୍ରଭୃତିରେ ସେହିପରି ସୁବାସିତ ଓ ଆଲଙ୍କୃତ, ଆଉ ମଧ୍ୟ ସ୍ତବ-ବେଦ-ମନ୍ତ୍ରାଦି ପଠନରେ ନିନାଦିତ ହେଉଅଛି । ତେବେ ବୈକୁଣ୍ଠଧାମ ସଙ୍ଗେ ଦେବାଳୟକୁ ଯେପରି ସମ-ଶ୍ରେଣୀୟ କରି ବର୍ଣ୍ଣନା କରାଯାଉଅଛି, ମନ ସେହି ଉଭୟ ଦେବଧାମ ପରି ଦେବମୂର୍ତ୍ତିର ଆକାର ଧାରଣ କରିବାର ସ୍ଥାନ, ସୁତରାଂ ମନ ତଦନୁ-ରୂପ ପବିତ୍ରତାର ଆଦର୍ଶ ପ୍ରାପ୍ତ ହେବା ବିଧେୟ । ଏହି ହେତୁ ମନକୁ କନ୍ଦର୍ପ୍ୟ-ବିଷୟ-ଚିନ୍ତାବିରହିତ କରି ନିର୍ମଳ ପ୍ରଶାନ୍ତ ପବିତ୍ର ରଖି ତହିଁରେ ସାକାର ଦେବବିଗ୍ରହ ବିଜେ କରାଇବା ଉଚିତ । ଉପାସନା ପ୍ରଣାଳୀରେ ଦୈହିକ ସାଧନ ଆସନାଦିର, ପ୍ରାଣର ସାଧନ ପ୍ରାଣାୟାମାଦିର ଏବଂ ମନର ସାଧନ ପ୍ରତ୍ୟାହାରାଦି ଧ୍ୟାନ ଧାରଣାର ବିଧାନ ସ୍ପଷ୍ଟରୂପେ ନିର୍ଦ୍ଦିଷ୍ଟ ଅଛି । ଏପରି ଷୋଡ଼ଶୋପଚାର ପୂଜାବିଧ୍ୟାଦିରେ ପୂଜା ଉପାସନାଦି ସମ୍ବନ୍ଧେ ଯେପରି ଉଲ୍ଲିଖିତ ଅଛି, ତଦନୁସାରେ ବୁଝିବାକୁ ଗଲେ ସାକାର ଦେବ-ବିଗ୍ରହର ଉପାସନା ସାକ୍ଷାତ୍ ଭକ୍ତି, ମୁକ୍ତି, ଧର୍ମାର୍ଥ ଜ୍ଞାନାଦି ସର୍ବପ୍ରକାର ଇଷ୍ଟଫଳ-ପ୍ରଦାୟକ ଅଟେ । ଏଠାରେ ସେସବୁର ଅବତାରଣା କରିବା ଅସମ୍ଭବ । ଖଣ୍ଡେ ଲୁଗା-ମପା କାଠିରେ ଅନାଦି ଅନନ୍ତ ଆକାଶର ଆୟତନ କି ମାପ କରାଯାଇପାରେ ? ତେବେ ଅଳ୍ପ କିଛି ତହିଁର ଆଭାସ ମାତ୍ର ଏଠାରେ ଦିଆଯାଉ ।

ଶ୍ରୀ ସାକାର ଦେବମୂର୍ତ୍ତି ଦର୍ଶନ କରୁଥାଇଁ, କଣ ଦେଖୁଥାଇଁ ? ହୃଦୟରେ କଣ ଭାଉଥାଇଁ ? ଏଠାରେ ଜୀବାତ୍ମା (ଜୀବାତ୍ମାର ସ୍ୱରୂପୋପଲବ୍ଧି ଠିକ୍ କରାଯାଉ); କେବଳ ଦର୍ଶନକାରୀ ବା ଦ୍ରଷ୍ଟା ସେ ଦେବବିଗ୍ରହକୁ ଏବଂ ନିଜ ଦେହକୁ—ଏ ଉଭୟକୁ ଦେଖୁଅଛି ଏବଂ କହୁଅଛି, ହେ ପ୍ରଭୋ ! ସର୍ବଯୋଗମୟ, ସର୍ବଯୋଗାଧାର ମହାଯୋଗେଶ୍ୱର ମୂର୍ତ୍ତି ! ଆପଣ ସର୍ବମହାଶକ୍ତିମାନ୍, ଅଚିନ୍ତ୍ୟ ଇଚ୍ଛାମୟ, ଅନନ୍ତ-ଲୀଳା-ବିଗ୍ରହଧାରୀ, ଆପଣଙ୍କୁ ନମସ୍କାର, ସାଷ୍ଟାଙ୍ଗ ଭୂମିଷ୍ଠ ପ୍ରଣାମ । ଆପଣ ମାୟିକ କ୍ରୀଡ଼ାନୁରୋଧରେ ସର୍ବପ୍ରକାର ଶକ୍ତି ଏବଂ ଇଚ୍ଛାମୟ, ସର୍ବକର୍ତ୍ତୃତ୍ୱାଦି ସହିତ ଯେଉଁ କୌଣସି କ୍ଷୁଦ୍ରାବୟବରେ ବିଜେ କରି ରୂପବାନ ହୋଇ ସଂସାରକୁ ପଦଧୂଳିଦ୍ୱାରା ପବିତ୍ର କରୁଅଛନ୍ତି । ଆପଣଙ୍କର ଏହି ମହା ବିରାଟ ମୂର୍ତ୍ତି ସମଷ୍ଟି ବା ସର୍ବ-ଆକାର-ବିଶିଷ୍ଟ ହୋଇ ବିଶ୍ୱରୂପ ଧାରଣ କରିଥିବାରୁ ସେହି ନିରୂପମ ମହାବିଗ୍ରହରେ ମୋହର ଏହି ଭୂମିଷ୍ଠ ନଗଣ୍ୟ କ୍ଷୁଦ୍ରାବୟବକୁ ବିଶ୍ୱବ୍ରହ୍ମାଣ୍ଡ ସମେତ ଜାଗତିକ ସର୍ବପ୍ରକାର ଅବୟବାଦି ସହିତ ବ୍ୟଷ୍ଟି ବା ଅଂଶରୂପେ ଦର୍ଶନ କରୁଅଛି; ଅର୍ଥାତ୍ ଆପଣଙ୍କର ପଞ୍ଚଭୂତାତ୍ମକ-ସ୍ଥୂଳ-ମହାବିରାଟ-ଅଙ୍ଗର ଏକ ନଗଣ୍ୟ-କଳ୍ପିତ-ଭାଗ-ସ୍ୱରୂପ, ଅଥଚ ଆପଣଙ୍କର ସେହି ବିରାଟ ଅଙ୍ଗରୁ ମୋହର ଏହି ପାଞ୍ଚଭୌତିକ କ୍ଷୁଦ୍ରତମ ଦେହ ସମୁଦ୍ଭୂତ ଓ ଦୃଶ୍ୟାକାରେ ପରିଦୃଷ୍ଟ ହେଉଅଛି । ପରିଦୃଶ୍ୟମାନ ବିଶାଳ ସଂସାରାଦି ସମୁଦାୟ ମଧ୍ୟ ତଦ୍ରୂପ ଅଂଶ ସ୍ୱରୂପ ଅଟେ । ଏପରି ଆପଣଙ୍କର ପଞ୍ଚତନ୍ମାତ୍ରାତ୍ମକ ଅପରିମେୟ ମହାସୂକ୍ଷ୍ମାଙ୍ଗରୁ ମୋହର

ବଶେନ୍ଦ୍ରିୟ ଓ ଅନ୍ତଃକରଣ ସମୁଦ୍‌ଭୂତ ଏବଂ ତହିଁରେ କଳ୍ପନାକ୍ରମେ ଅଂଶଭେଦରୂପେ ଅବସ୍ଥିତ ରହିଅଛୁ । ଆପଣଙ୍କର ପ୍ରାଣ ସ୍ୱରୂପ ସର୍ବଗ ଓ ସର୍ବତ୍ର ସଂସ୍ଥିତ ଏହି ମହାବାୟୁ କେଶାଗ୍ରଶତଭାଗରୁ ଆହୁରି ସୂକ୍ଷ୍ମତମ ନଗଣ୍ୟ ପରିମାଣରେ ମୋହର ଦେହ-ବାହ୍ୟାନ୍ତରରେ ବିରାଜ କରି ମୋହର ପ୍ରାଣ ବୋଲାଉଅଛୁ । ମୋହର ଦେହସ୍ଥ ସର୍ବପ୍ରକାର ଜ୍ଞାନ ଏବଂ କ୍ରିୟାଶକ୍ତି ଆପଣଙ୍କର ଜ୍ଞାନ-କ୍ରିୟାଶକ୍ତିମୟ ଅନିର୍ଦ୍ଦିଷ୍ଟସୀମ ଅବ୍ୟକ୍ତ ମହାଭଣ୍ଡାରରୁ ମହାସମୁଦ୍ରରୁ କୁଶୋଦକ ପରିମାଣ ହିସାବରେ ଦତ୍ତ ହୋଇ ମୋତେ ଦେହେନ୍ଦ୍ରିୟାଦି ସହିତ ସଚେଷ୍ଟ ଏବଂ ସଂଜ୍ଞାବିଶିଷ୍ଟ କରିଅଛୁ, ଯଦ୍ୱାରା ଆପଣଙ୍କୁ ଦର୍ଶନ କରୁଅଛୁ ବୋଲି ଜାଣିବାକୁ ସକ୍ଷମ ହୋଇଅଛୁ । ଆପଣଙ୍କର ଆଦ୍ୟାଶକ୍ତି ଲକ୍ଷ୍ମୀଦେବୀଙ୍କ-ଠାରୁ ମୋହର ଉପାଧିନିଚୟ ଜାତ ଓ ତହିଁରେ ଆପଣଙ୍କର ବାଗ୍‌ଦେବୀରୂପା ଶବ୍ଦବ୍ରହ୍ମ-ରୂପିଣୀ ଶକ୍ତିରୁ ସ୍ୱର ବ୍ୟଞ୍ଜନାଦି ବର୍ଣ୍ଣମାନେ ମୋ ଦେହରେ ବିନ୍ୟସ୍ତ ଥାଇ ମୋତେ କଥକ ବା ପାଠକରୂପେ ପରିଚୟ କରାଉଅଛନ୍ତି । ମୋହର ଏହି ଜୀବୋପାଧି ଆପଣଙ୍କ ସର୍ବକାରଣ ରୂପାତ୍ମକ ପରମେଶ୍ୱର ରୂପରୁ ଅବିଦ୍ୟା କଳ୍ପନାକ୍ରମେ ଅଲଗା ବୋଲି ଜଣାଯାଉଥିଲେ ସୁଦ୍ଧା ଆପଣ ଆଶ୍ରୟରେ ଆପଣଙ୍କଠାରେ ଲାଗି ରହିଅଛୁ । ଏହି ରୂପେ ଆପଣ ସ୍ୱୟଂ ଆପଣଙ୍କ ଅଂଶଦ୍ୱାରା ପରିଦୃଷ୍ଟ, ପୂଜିତ ଓ ସ୍ତୁତ ହେଉଅଛନ୍ତି । ମୁଁ କାହିଁ କେହି ନାହିଁ । ଏହି ଉପାସନା ସମ୍ବନ୍ଧରେ ଦର୍ଶନ, ପୂଜନ, ସ୍ତବନ ଓ ବନ୍ଦନାଦି ସମ୍ବନ୍ଧରେ ଉପାସକାଦିରୂପେ 'ମୁଁ' ବୋଲି ଯେଉଁ ପୃଥକ୍ ଭାବ ତାହା ମଧ୍ୟ ଆପଣଙ୍କର ଆବିଧିକାଶକ୍ତି ବିଶେଷର ବିଶେଷତ୍ୱ ମାତ୍ର । 'ମୁଁ' ବୋଲି କେହି କାହିଁ ନାହିଁ । ମୋହଠାରେ ସୀମାବଦ୍ଧ ନଗଣ୍ୟ କ୍ଷୁଦ୍ରତମ ଶକ୍ତିକଣିକା ଦତ୍ତ ଥିବାରୁ ତଦ୍ୱାରା ସାଧମାୟ କର୍ମକୁ 'ମୁଁ' ସମ୍ଭବ ବୋଲି ଜ୍ଞାନ କରେଁ, ତହିଁରୁ ଅତିରିକ୍ତ କର୍ମକୁ ମୁଁ ଅସାଧ୍ୟ ଓ ଅସମ୍ଭବ ବୋଲି ମୋହର କ୍ଷୁଦ୍ର ଜ୍ଞାନ ଅନୁସାରେ ସ୍ଥିର କରିଥାଏ; ମାତ୍ର ଆପଣଙ୍କ ଅବତାର ବିଗ୍ରହ ଯେ କୌଣସି ପ୍ରକାରର ହେଉ ବା ମାନବ ଦୃଷ୍ଟିରେ ଯେତେ କ୍ଷୁଦ୍ରାକ୍ଷୁଦ୍ର ହେଉ, ତହିଁରେ କି ଅଲୌକିକ ଅସୀମ ଅନୁମାନାତୀତ ମହାଶକ୍ତି ସନ୍ନ୍ୟସ୍ତ ଥାଏ, ତହିଁରେ ଆପଣ ଅସାଧ୍ୟ-ସାଧନ ଓ ଅଘଟନ-ଘଟନା-ନୈପୁଣ୍ୟ ପ୍ରଦର୍ଶନ କରାଇ ସଂସାରକୁ ମୁଗ୍ଧ କରନ୍ତି । ଏହି ହେତୁରୁ ଆପଣଙ୍କର ଶ୍ରୀମୂର୍ତ୍ତି ଅବତାର-ସମୟ-ମଧ୍ୟରେ ଯେପରି ପୂଜା, ଉପାସନାଦିର ଯୋଗ୍ୟ, ସେହିପରି ଅସୀମ-ଭବିଷ୍ୟତ୍ କାଳ ଓ ଭବିଷ୍ୟତ୍ ପ୍ରାଣୀମାନଙ୍କ ନିମିତ୍ତ ପୂଜା-ବନ୍ଦନାଦିର ଉପଯୁକ୍ତ ବୋଲି ସ୍ୱତଃ-ଭକ୍ତିସହିତ ସ୍ଥିର କରାଯାଇଥାଏ । ସେହି ମୂର୍ତ୍ତି ଯେଉଁ ଆକାର ବା ରୂପ-ବିଶିଷ୍ଟ, ଦେବ-ବିଗ୍ରହ ସେହିପରି ଆକାରରେ ନିର୍ମିତ, ସୁତରାଂ ରୂପାକାରିତ ଜ୍ଞାନ ଉଭୟରେ ଏକ; ଅତଏବ ଆପଣଙ୍କ ସାକାର ଦେବ-ବିଗ୍ରହ ସ୍ୱୟଂ ଆପଣ ବୋଲି ଦର୍ଶନକାରୀ ପକ୍ଷରେ ପରିଜ୍ଞାତ ବା ବିଦିତ ହେବା ସ୍ୱାଭାବିକ । ଆପଣଙ୍କଠାରେ ଯେଉଁ ଅଚଳା ଭକ୍ତି ବା ଶ୍ରଦ୍ଧାଦି ଅବାରିତଭାବେ ଜାତ ହେବାର କଥା, ସେହି ଭକ୍ତି-ଶ୍ରଦ୍ଧାଦି ଆପଣଙ୍କ ଦେବମୂର୍ତ୍ତିରେ ଅର୍ପିତ ହୋଇ ଚିରକାଳ ଆପଣ ସେହି ଦେବବିଗ୍ରହାଦି ଆକାରରେ ପୂଜିତ ହେଉଅଛନ୍ତି । ଏହି ପୂଜାର୍ହ ଆପଣଙ୍କର

ଚିରସ୍ମରଣ-ଭଜନାଦିର ହେତୁ । ଅତଏବ ଏହି ସ୍ୱଭାବସିଦ୍ଧ ଦେବବିଗ୍ରହୋପାସନା ମୋକ୍ଷ-ପକ୍ଷରେ ସାଯୁଜ୍ୟ-ମୁକ୍ତି ପ୍ରଦାନ କରୁଅଛି; ଆପଣଙ୍କର ଅବତାର ଗ୍ରହଣହିଁ ଏ ସମସ୍ତ ପ୍ରକାର ଉପାସନାଦିର ନିଦାନ ଥିବାରୁ ଆପଣଙ୍କୁ ଏହି ଦେବବିଗ୍ରହରୂପେ ସାକ୍ଷାତ ଦର୍ଶନ କରି କୃତାର୍ଥ ହେଲି । ମାତୃଠାରୁ ପ୍ରାଣୀଦେହର ଜନ୍ମ, ଏବଂ ସେହି ମାତୃ-ଅଂଶରେ ଦେହର ବିକାଶ । ସର୍ବଦେହଦେହୀ ନାମରୂପାତ୍ମକ ଏହି ନାମ ଓ ରୂପ ଆପଣଙ୍କ ଆଦ୍ୟାଶକ୍ତି ସରସ୍ୱତୀ ଓ ମହାଲକ୍ଷ୍ମୀଙ୍କର କଳାବିଶେଷ ଅଟେ । ମୋହର ନାମ-ରୂପାତ୍ମକ ତତ୍ତ୍ୱର ମାତା ଶ୍ରୀ ବାଗ୍‌ଦେବୀ ଓ ପରମଲକ୍ଷ୍ମୀ । ଅତଏବ ସେହି ଆଦିମାତା-ତତ୍ତ୍ୱରୂପା ଦେବୀଦ୍ୱୟ ଅଙ୍ଗରେ ମୋହର ନାମ-ରୂପ-ତତ୍ତ୍ୱକୁ ଅର୍ପଣ କଲି । ମୁଁ ବା ମୋର ବୋଲି କିଛି ନାହିଁ ବା କେହି ନାହିଁ, ସବୁହିଁ ଆପଣ । ଏହି ସମସ୍ତ ନାମରୂପାତ୍ମକ ଶକ୍ତିମୟ କଳେବର-ସ୍ୱରୂପ ଆପଣ, ସଂସାରରୂପେ ଆପଣ, ଏବଂ ସଂସାରରେ ବୈଷୟିକ ଓ ଆଧ୍ୟାତ୍ମିକ ଚିନ୍ତାରୂପ-କ୍ରୀଡ଼ାର ମୂଳରେ ଆପଣ । ଆଧ୍ୟାତ୍ମିକ ଚିନ୍ତା ଉତ୍କୃଷ୍ଟ ଏବଂ ମୁଖ୍ୟ ଥିବାରୁ ତାହା ଉପାସନା ଆକାରରେ ଭକ୍ତି-ଶ୍ରଦ୍ଧା ସହିତ କିପରି ପ୍ରକାଶିତ ହେବ, ତନ୍ନିମିତ୍ତ ଆପଣ ସ୍ୱୟଂ ଅବତାର ଗ୍ରହଣ କରି ସ୍ୱରୂପତଃ ପରମେଶ୍ୱରରୂପେ, ଏବଂ କାଳ୍ପନିକ ଅଂଶତଃ ଭକ୍ତରୂପେ ପ୍ରକାଶିତ ହୋଇ ଉପାସ୍ୟ ଉପାସକଭାବ ସଂସାରରେ ପ୍ରଚଳନ କରନ୍ତି, ଏବଂ ଉକ୍ତ ଭାବ ଚିର ଭବିଷ୍ୟତ୍‌ସ୍ଥାୟୀ ହେବା ନିମିତ୍ତ ଦେବୋପାସନା ସୃଷ୍ଟି କରି ଆପଣହିଁ ଉପାସ୍ୟ ଦେବମୂର୍ତ୍ତିରୂପରେ, ଏବଂ ଶ୍ରଦ୍ଧା-ଭକ୍ତି-ଯୁକ୍ତ ଉପାସକ ରୂପରେ ଆପଣଙ୍କର ଉପାସନାକୁ ଫଳତଃ ଆପଣଙ୍କ ଅଂଶଦ୍ୱାରା ଆପଣ ସମ୍ପାଦନ କରାଉଅଛନ୍ତି । ଅତଏବ ସର୍ବମୟ ଓ ସର୍ବସ୍ୱରୂପ ଆପଣଙ୍କୁ ନମସ୍କାର । ଯେ କୌଣସି ଭାଷାରେ ହେଉ, ବା ଯେ କୌଣସି ସାକାର ବା ଆକାରଶୂନ୍ୟ ଭାବରେ ହେଉ, ଆପଣଙ୍କ ସ୍ମରଣ ମୁହୂର୍ତ୍ତରେ ଅଜ୍ଞାତ ଏକପ୍ରକାର ଆକାରରେ ରହି ଆପଣ ହୃଦୟଗତ ଭାବକୁ ଗ୍ରହଣ କରନ୍ତି । ଆଉ ମଧ୍ୟ ଯଥାପରିମାଣରେ ଅଜ୍ଞାତସୂତ୍ରରେ କିଛି ଆଶ୍ୱାସ ମିଳିଯାଏ, ସେହି ଗୁଣ ଆପଣଙ୍କଠାରେ ଚିର ବିରାଜିତ ରହିଅଛି । ଏହିହେତୁରୁ ଆପଣଙ୍କର ନାମ ଭାବଗ୍ରାହୀ, ପୁଣି ଆପଣଙ୍କର ଏହି ଭାବଗ୍ରାହୀ ନାମ ସର୍ବଶ୍ରେଣୀର ଲୋକଙ୍କୁ ଆଶ୍ୱାସ ପ୍ରଦାନ କରୁଅଛି ଓ ଯେ ଯେଉଁରୂପେ ହେଲେ ଠିକଏ ଆପଣଙ୍କୁ ସ୍ମରଣ କରିବାକୁ ଅଧିକାରୀ ହୋଇଅଛି; ଏମନ୍ତକି ନାସ୍ତିକ ଲୋକ ସୁଦ୍ଧା ଯେତେବେଳେ ମନେକରୁଅଛି, କହୁଅଛି ପରମେଶ୍ୱର ନାହାନ୍ତି, ସେତେବେଳେ ମଧ୍ୟ ଆପଣ ତାହାର ହୃଦୟରେ ବିରାଜିତ ଥାଇ କହୁଅଛନ୍ତି, "ବାବା ! ଆଶ୍ୱସ୍ତ ହୁଅ, ମୁଁ ଏଠାରେ ନାହିଁ ।"

ସର୍ବାନ୍ତର୍ଯ୍ୟାମୀ, ସର୍ବତ୍ର ବିରାଜମାନ, ସର୍ବ ଓ ସର୍ବମୟ ଆପଣଙ୍କୁ ନମସ୍କାର । ଏହିଠାରେ ସାକାରୋପାସନାର ଆଦର୍ଶ ନାମମାତ୍ର ଦିଆଯାଇ ଏବେ ଆତ୍ମସମ୍ବାଦଭାଗ କଥାକୁ ମାତ୍ର ଶେଷ କରି ଉଲ୍ଲିଖିତ ଆତ୍ମସମ୍ବାଦର ତାତ୍ପର୍ଯ୍ୟ ନିମ୍ନରେ ପ୍ରଦତ୍ତ ହେଉଅଛି ।

ଏ ସଂସାରରେ ମନୁଷ୍ୟ ସମାଜକୁ ଦେଖିଲେ ସହଜରେ ଉପଲବ୍ଧି ହୁଏ ଯେ ମନୁଷ୍ୟ ଜ୍ଞାନପ୍ରଧାନ ଜୀବ । ଏହି ମନୁଷ୍ୟ ଜ୍ଞାନଦ୍ୱାରା ଆପଣାକୁ ମୁଁ ବୋଲି ସ୍ୱୀକାର କରି ସଂସାରରେ 'ମୁଁ ଜଣେ' ବୋଲି ପରିଚୟ ଦେଉଅଛି । ଏହି 'ମୁଁ ଜ୍ଞାନ' ଖାଲି 'ମୁଁ' ନୁହେଁ, ଏହା ଦେହକୁ 'ମୁଁ' ବୋଲି ନିଶ୍ଚୟ କରି ଧରି ଦୈହିକ ବ୍ୟବହାର ଓ ଦୈହିକ ସୁଖଦୁଃଖାଦିରେ ମନୁଷ୍ୟକୁ ବିଜଡ଼ିତ କରି ରଖିଅଛି । ଏହିହେତୁ ପ୍ରଥମେ ଦେହ କିଣ ? ଦେହ-ଅର୍ଥେ ପ୍ରଥମରୁ ଏହି ଦୃଶ୍ୟମାନ ସ୍ଥୂଳ ଦେହ ବୋଲି ଲେଖାଯାଇଅଛି । ତହିଁରୁ କ୍ରମେ କ୍ରମେ ସୂକ୍ଷ୍ମ ଆଡ଼କୁ ଆଲୋଚନା ବଢ଼ାଇ ସୂକ୍ଷ୍ମ ଦେହ ଓ କାରଣଦେହର ବର୍ଣ୍ଣନା କରାଯାଇଅଛି । ଏହି ଦେହତ୍ରୟର ବର୍ଣ୍ଣନା ସଙ୍ଗେ ସଙ୍ଗେ ଦେହସମ୍ବନ୍ଧୀୟ ସ୍ୱପ୍ନ, ସୁଷୁପ୍ତି ଓ ଜାଗରଣାଦି ଅବସ୍ଥାତ୍ରୟ ଓ ଅବସ୍ଥାତ୍ରୟ ଭେଦରେ କର୍ମାକର୍ମ, ଜ୍ଞାନାଜ୍ଞାନ ସମ୍ବନ୍ଧୀୟ ନାନା ପ୍ରସଙ୍ଗ ଆଲୋଚିତ ହୋଇଅଛି । ଏ ସମସ୍ତ ଆଲୋଚନାର ମୁଖ୍ୟ ଉଦ୍ଦେଶ୍ୟ ଏହି ଯେ ଆତ୍ମା ଦ୍ରଷ୍ଟାରୂପରେ ଏହି ଦେହାଦି ଦେଖୁଅଛି, ଅଥଚ ଦେଖୁ ଦେଖୁ ତହିଁରେ ମମକାର ସ୍ଥାପନ କରି ସେହିସବୁରେ ତଦ୍ରୂପ ଫସାଣି ହୋଇ ଶେଷକୁ ଅଭ୍ୟାସବଶରୁ ସେହି ଦେହାଦିକୁ 'ମୁଁ' ବୋଲି ସ୍ଥିର କରି ଦେହାତ୍ମାଭିମାନ-ଭ୍ରମରେ ଦେହହିଁ 'ମୁଁ' ଭିନ୍ନ ଆଉ ଆତ୍ମାକୁ ସ୍ମରଣ କରୁନାହିଁ । ତେବେ ଆପଣାକୁ ଆତ୍ମା ବୋଲି ସ୍ଥିର କରିବା କାରଣ ଦେହାଦିର ବର୍ଣ୍ଣନା କରାଗଲେ ସେ ସବୁକୁ ଦୃଶ୍ୟଜ୍ଞାନରେ ଅଲଗା କରି ରଖି ଦ୍ରଷ୍ଟା-ସ୍ୱରୂପମାତ୍ର ଆତ୍ମା ସ୍ୱୟଂ ଆତ୍ମରୂପେ ନିର୍ଦ୍ଦିଷ୍ଟ ହେବେ । ଏହିହେତୁ ଲୀଳାଧାର ଦୃଶ୍ୟ-ରୂପରେ ଦେହାଦି ଓ ତତ୍ସମ୍ବନ୍ଧୀୟ ଅବସ୍ଥାଦି ଏବଂ ଜ୍ଞାନକର୍ମାଦିର ବର୍ଣ୍ଣନା କରାଯାଇଅଛି । ଏ ସଙ୍ଗେ ସଙ୍ଗେ ଖାଲି ମନୁଷ୍ୟ କାହିଁକି ? ପଶୁପକ୍ଷ୍ୟାଦି ପର୍ଯ୍ୟନ୍ତରେ ଜୀବାତ୍ମାର ସମାବେଶ ଥିବା ନିର୍ଦ୍ଦେଶ କରାଯାଇଅଛି । ଅଥଚ ସର୍ବଜୀବ-ନିବାସଭୂମି ସ୍ୱରୂପ ଏହି ବିରାଟ ଦୃଶ୍ୟ-ସମ୍ପନ୍ନ ବିଶ୍ୱ ସଂସାରର ମଧ୍ୟ ଯଥାରୂପ ଆଲୋଚନା କରାଯାଇଅଛି । ଏହି ସଂସାର ସଙ୍ଗେ ଜୀବସୃଷ୍ଟିର ଯେପରି ଘନିଷ୍ଠ ନିତ୍ୟ ସମ୍ବନ୍ଧ ଅଥଚ ଏକଜାତୀୟ ଜୀବ ମଧ୍ୟରେ ପରସ୍ପର ସମ୍ବନ୍ଧ ଯେପରି ଦେଖାଯାଏ, ତତ୍ସମ୍ବନ୍ଧରେ ମଧ୍ୟ ଆଲୋଚନା କରାଯାଇଅଛି । ଜୀବମାନଙ୍କ ମଧ୍ୟରେ ଦେହ-ସଂସାର ସମ୍ବନ୍ଧୀୟ ବିଷୟଜ୍ଞାନାଦିର ଏବଂ ଧର୍ମଜ୍ଞାନାଦିର ମଧ୍ୟ ଯତ୍ସାମାନ୍ୟ ବିବୃତ କରାଯାଇଅଛି । ଆତ୍ମାର ଦେହ ସମ୍ବନ୍ଧ କିପରି ହେଲା ? ଦେହାଦିର ଦୃଶ୍ୟ କାହିଁ କିପରି ସଂଘଟିତ ହେଲା—ଏସବୁ ଆଲୋଚନା କରୁ କରୁ ପ୍ରକୃତି ଏବଂ ଈଶ୍ୱର ସମ୍ବନ୍ଧରେ ଶ୍ରୀହରିଦତ୍ତ ପ୍ରସାଦସ୍ୱରୂପ ଜୀବତତ୍ତ୍ୱ, ପ୍ରକୃତିତତ୍ତ୍ୱ ଏବଂ ପରମେଶ୍ୱର-ତତ୍ତ୍ୱ ସମ୍ବନ୍ଧୀୟ ଆଲୋଚନା କରାଗଲା । ତହିଁ ସଙ୍ଗେ ସଙ୍ଗେ କାଳତତ୍ତ୍ୱ ବିବୃତ ଏବଂ ଜଗତରେ କ୍ଷୁଦ୍ର, ବୃହତ୍ତ୍ୱାଦି ଆଲୋଚନାରୁ ମନୁଷ୍ୟ ଦେହ ଓ ପରମାଣୁ କିଛି ନୁହେଁ, ନଗଣ୍ୟ ବସ୍ତୁ ବୋଲି ସ୍ଥିର କରାଗଲା; ଅର୍ଥାତ୍ ବିନ୍ଦୁ ଯେପରି ତାହାର ସଂଜ୍ଞାନୁସାରେ ସ୍ଥାନବ୍ୟାପକ ନୁହେଁ, କେବଳ ନାମ ନିର୍ଦ୍ଦେଶକ ମାତ୍ର, ସେହିପରି ସଂସାର ତୁଳନାରେ ମନୁଷ୍ୟଦେହ ଓ ପରମାଣୁ ଶବ୍ଦଦ୍ୱାରା ନିର୍ଦ୍ଦେଶ ମାତ୍ର କରାଯାଉଅଛି । କିନ୍ତୁ ଦେଖିଲା ବେଳକୁ ବିଶ୍ୱବ୍ରହ୍ମାଣ୍ଡ ତୁଳନାରେ ଦେହ ପରମାଣୁଠାରୁ ଆହୁରି ନଗଣ୍ୟ,

ଏବଂ ଆୟୁ ଅନାଦି ଅନନ୍ତ କାଳ ଗର୍ଭରେ ଏକବାରେ ଅଦୃଶ୍ୟ ଏବଂ ହେୟ । ଓହୋ ! ଏହି ଅସ୍ଥାୟୀ ତୁଚ୍ଛ ସମ୍ପଦରେ ମନୁଷ୍ୟ କେତେ ଗର୍ବ କରିଅଛି ! ଦେହର ଠିକ୍ ନାହିଁ, ମୁହୂର୍ତ୍ତେ ମୁହୂର୍ତ୍ତେ ପରମାୟୁ ଶେଷ ହୋଇ ଯାଉଅଛି, ତହିଁରେ ପୁଣି ଧନସମ୍ପଦାଦି ମୋହରେ ମନୁଷ୍ୟ କେତେ ପ୍ରମତ୍ତ ! ଏହା ବିଚାର ଦେଖିଲେ ଜ୍ଞାନ-ବିବେକାଦିରୁ ସ୍ୱତଃ ବୈରାଗ୍ୟ ଉପସ୍ଥିତ ହୁଏ । ଏହି ସଂସାର ମୋହାବରଣ ଉନ୍ମୋଚିତ ହୋଇ ବିତୃଷ୍ଣା ଜାତ ହେଲାରୁ ପରମେଶ୍ୱର-ଭକ୍ତି ସମ୍ବନ୍ଧରେ ଭାବ ଜାତ ହୁଏ । ସେହି ହେତୁରୁ ଏ ପରେ ପରମେଶ୍ୱରୋପାସନା ସମ୍ବନ୍ଧରେ କିଛି ଆଲୋଚନା କରାଯାଇଅଛି ।

ଆଲୋକମୟ ରାଜ୍ୟରେ ଥିବା ମନୁଷ୍ୟ ସଙ୍ଗେ ସଙ୍ଗେ ଯେପରି ଛାୟାମୟ ଆକାରରେ ଗୋଟିଏ ଛାୟା ପୁରୁଷ ତାହା ପାଖେ ପାଖେ ରହିଥାଏ, ମାତ୍ର ସେଇଟିର ମା, ବାପ କେହି ନାହିଁ, ତାକୁ କେହି ଗଠନ କରେ ନାହିଁ କିମ୍ବା ତାକୁ ଯେତେ ତଡ଼ିଲେ ସେ କୁଆଡ଼େ ଯାଏନାହିଁ; କେବଳ ଜ୍ଞାନ ବିବେକଦ୍ୱାରା ତାହାର ଅପଦାର୍ଥତ୍ୱ ନିଶ୍ଚୟ କରି ତାହା ଥିବାଟାକୁ ନ ଥିବା ପରି ଦେଖିବାର ନାମ ତାହାର ଅସ୍ତିତ୍ୱଲୋପ । ପ୍ରକୃତପକ୍ଷେ ତାହାର ପଦାର୍ଥାକାରରେ ଅସ୍ତିତ୍ୱ ବା ନାସ୍ତିତ୍ୱ କିଛି ନାହିଁ । ଏହିପରି ବିଜ୍ଞାନାଲୋକ ରାଜ୍ୟରେ ଥିବା ଆତ୍ମା ସର୍ବଦା ଚିଦାଲୋକରେ ଆଲୋକିତ ଥିଲେ ମଧ୍ୟ ତହିଁ ସଙ୍ଗେ ସଙ୍ଗେ ଅବିଦ୍ୟାମୟ ଚିଦାକାରାକାରିତ ଜୀବୋପାଧିବିଶିଷ୍ଟ କଳ୍ପିତ ପୁରୁଷଟି ସେହି ଆତ୍ମାର ପାଖେ ପାଖେ ରହିଅଛି । ଏହାର ଜନ୍ମଦାତା, ସଂହର୍ତ୍ତା କେହି ନାହିଁ ।

ଆତ୍ମତତ୍ତ୍ୱ, ପ୍ରକୃତ ପରମେଶ୍ୱରତତ୍ତ୍ୱ ଓ ଜୀବତତ୍ତ୍ୱାଦି ପରିଜ୍ଞାତ ସହକାରେ ଜ୍ଞାନ-ବୈରାଗ୍ୟାଦି ଆଶ୍ରୟପୂର୍ବକ ଆତ୍ମାନାତ୍ମବିବେକଦ୍ୱାରା ସେହି ଜୀବୋପାଧିର ଅପଦାର୍ଥତ୍ୱ ଓ ମାୟିକତ୍ୱ ନିର୍ଣ୍ଣୟ କରି ତାହାର ଥିବା ନ ଥିବା ଉଭୟକୁ ସମରୂପେ ଦେଖିବାର ନାମ ଆତ୍ମଜ୍ଞାନ । ଏଥିରେ ଅନାତ୍ମ-ଜୀବୋପାଧିକୃତ-କଳ୍ପିତ-ବନ୍ଧନରୁ ଆତ୍ମାର ମୁକ୍ତି । ବାସ୍ତବରେ ଆତ୍ମାର ବନ୍ଧନ ବା ମୁକ୍ତି କିଛି ନାହିଁ । ଅବିଦ୍ୟା ସମ୍ବନ୍ଧରୁ ଆତ୍ମାର ଜୀବୋପାଧି ଏବଂ ଏହି ଜୀବୋପାଧିର "ଅବିଦ୍ୟା ବିକାର ଓ ଅବିଦ୍ୟା ଜନିତ" ଅନ୍ତଃକରଣ ସମ୍ବନ୍ଧରୁ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ ଏବଂ ସୁଖଦୁଃଖାଦି ସଂସାର ଏବଂ ଏହି ସଂସାର ଅନ୍ତଃକରଣ, ଇନ୍ଦ୍ରିୟ, ପ୍ରାଣ, ଦେହ ଓ ଭୌତିକ ଜଗଦାଦି ସମ୍ବନ୍ଧକୃତ ଏବଂ ବୈଜ୍ଞାନିକ-ଚିହ୍ନରୂପରେ ପ୍ରକଟିତ ହୋଇଅଛି । ଏହି ଚିହ୍ନରେ ଅଭିମାନୀ ହେବା ଜୀବାତ୍ମାର ବନ୍ଧନ । ଅବିଦ୍ୟା ଓ ଅନ୍ତଃକରଣର ପ୍ରଭେଦ ଏହି ଯେ ଅବିଦ୍ୟା ଜୀବୋପାଧି ପ୍ରଦାନ କରେ ଏବଂ ଅନ୍ତଃକରଣ ସୁଖଦୁଃଖାଦି ଏବଂ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଆରୋପ କରେ । ଛାୟାଦର୍ଶୀ ଛାୟାକୁ 'ମୁଁ' ଜ୍ଞାନ କରିବା ଭଳି ଅଜ୍ଞାନର ନାମ ଅବିଦ୍ୟା । ପୁଣି ସେହି ଛାୟାକୁ ଦେଖି ତତ୍ସହିତ ସହଯୋଗ କରିବାର ନାମ ଅନ୍ତଃକରଣ ସହିତ ଅଭେଦତା ବା ଅସ୍ମିତା ଅର୍ଥାତ୍ ପତନ ବା ବନ୍ଧନ ଇତ୍ୟାଦି ଇତ୍ୟାଦି······ । ଏହି ଆତ୍ମା ଚିନ୍ମୟ ରାଜ୍ୟରେ ସର୍ବଦା ଚିଦାକାରବିଶିଷ୍ଟ ହୋଇ ରହିଅଛି ଏବଂ ସେହି ଆତ୍ମା ଆତ୍ମସଂସ୍ଥ ପୀଠରେ ନିତ୍ୟ ପ୍ରତିଷ୍ଠିତ ଥାଇ ସେହିଠାରେ ଅବିଦ୍ୟା ସହ ଅନ୍ତଃକରଣ-ସମନ୍ୱିତ-

ସୁଖଦୁଃଖାଦିମୟ ଜଗଦାକାର ଚିତ୍ରକୁ ନିଜର ସ୍ଥପ୍ନ ବା ପ୍ରତିବିମ୍ବାକାରରେ ଦର୍ଶନ କରି ବିମୋହିତ ଭାବରେ ଆପଣାକୁ ସଂସାର-କୂପ-ପତିତ ସଂସାରୀ ବୋଲି କଳ୍ପନା କରୁଅଛୁ । ଜ୍ଞାନଦ୍ୱାରା ଏହି ସଂସାର ଦର୍ଶନ ଏକ ବିଚିତ୍ର କ୍ରୀଡ଼ାରୂପରେ ପରିଦୃଷ୍ଟ ହୁଏ । ଜ୍ଞାନାଭ୍ୟାସ ଏବଂ ଆଲୋଚନାର ଏହାହିଁ ଫଳ । ଏହିରୂପେ ପରମେଶ୍ୱର ଉପାସନା ସମ୍ବନ୍ଧରେ ବିଚାର କରାଯାଇ ତହିଁରେ ଜ୍ଞାନ, କ୍ରିୟା ଏବଂ ଭକ୍ତି ଯୋଗାଦିର ସାମାନ୍ୟ ବର୍ଣ୍ଣନା ଓ ଧ୍ୟାନାଭ୍ୟାସାଦିର ମଧ୍ୟ ସଂକ୍ଷିପ୍ତ ଆଦର୍ଶ ପ୍ରଦର୍ଶିତ ହୋଇଅଛି । ଏହି ସବୁ ପଠନ ଓ ଆଲୋଚନା ଏବଂ ଅଭ୍ୟାସାଦିରେ ଅଜ୍ଞାନକୃତ ସଂସାର-ବନ୍ଧନଗ୍ରନ୍ଥି କ୍ରମେ କ୍ରମେ ଶିଥିଳ ହୋଇ ଆସେ । ଅଭ୍ରାନ୍ତ ଜ୍ଞାନଦ୍ୱାରା ଶେଷକୁ ଆନନ୍ଦ ବା ଆତ୍ମପ୍ରେମ ସଂବେଗ ଜାତ ହୁଏ । ଜ୍ଞାନାଭ୍ୟାସର ଧର୍ମ ଏହି ଯେ ତାହା ଯେତିକ ଯେତିକ ପରିମାଣରେ ଦୃଢ଼ ଓ ଅଭ୍ରାନ୍ତ ହେଉଥିବ, କ୍ରମେ କ୍ରମେ ସେହି ସେହି ପରିମାଣରେ ବନ୍ଧନମୟ ସଂସାର ଆସକ୍ତି ଊଣା-ଊଣା ହୋଇ ଆସୁଥିବ; ଏବଂ ଆତ୍ମଜ୍ଞାନ-ଜନିତ ପ୍ରେମ ଉପବେଗ ସେହି ସେହି ଅନୁପାତରେ ବଢ଼ି ବଢ଼ି ଯାଉଥିବ । ଅତଏବ ଜ୍ଞାନଚର୍ଚ୍ଚା ଓ ସତ୍‌ସଙ୍ଗ ସର୍ବଥା ଆଦରଣୀୟ ।

ଆଜକାଲି ସାଧାରଣତଃ ଦେଖାଯାଏ ଲୋକ ପରଚର୍ଚ୍ଚା ସମ୍ପର୍କରେ ନାନା-ବିଧ ନିନ୍ଦା, ପ୍ରଶଂସା, ଭଲମନ୍ଦାଦିର ଗଳ୍ପ ବା ଏ ଭଳି ସମାଲୋଚନାର ନୈତିକା-ନୈତିକ ଭାବମୟ ପ୍ରବନ୍ଧାଦି ପାଠରେ ବଡ଼ ବ୍ୟସ୍ତ; ପରନ୍ତୁ ସ୍ୱୈର ପର୍ଯ୍ୟନ୍ତ ମଧ୍ୟ ପଞ୍ଚାପ୍ରେଷ୍ଟ ଭଲଲୋକ ସଭାରେ ଦୁଇଚାରି ନ୍ୟାୟକଥା କହିବାକୁ ଛାଡ଼େ ନାହିଁ, ଅଥଚ ନିଜର ଭଲ କଥା ବଖାଣିବାକୁ ମଧ୍ୟ ସମସ୍ତେ ଆଗ୍ରହାନ୍ୱିତ; କିନ୍ତୁ ନିଜର ଦୋଷଯୁକ୍ତ ଗୁଣ ବା କଥା ଶୁଣିବାକୁ କେହି ଭଲ ପାଆନ୍ତି ନାହିଁ । ଏହା ଏକ ମହତ୍ ଦୋଷ ଓ ସ୍ୱଭାବସିଦ୍ଧ ପାପବୁଦ୍ଧିର କାର୍ଯ୍ୟ ଅଟେ । ଏହି କୁସ୍ୱଭାବ ଦୋଷରୁ ସଂସାରୀୟ ପ୍ରବୃତ୍ତିମାର୍ଗର ନିବାରକ ଆତ୍ମବିଦ୍ୟା ବା ଜ୍ଞାନଚର୍ଚ୍ଚାଦିରେ ଅଳ୍ପସଂଖ୍ୟକ ଲୋକର ଶ୍ରଦ୍ଧା ଜନ୍ମିଥାଏ । କେହି କେହି ବା ଖବରକାଗଜ, ନାଟକ, ଉପନ୍ୟାସ ପାଠ କଲାପରି ଅଧ୍ୟାତ୍ମଶାସ୍ତ୍ରର ପଠନ, ଶ୍ରବଣ ଓ ଚର୍ଚ୍ଚାଦି କରିଥାଆନ୍ତି । ଉଦ୍ଦେଶ୍ୟ ଥାଏ, କଥା ପଡ଼ିଲେ ଦୁଇ ଚାରି କଥା କହିଦେବା ବା ପାଣ୍ଡିତ୍ୟ ଦେଖାଇବା, ମାତ୍ର ତାହା କିଛି ନୁହେ । ଧ୍ୟାନ-ସ୍ଥିର-ଭାବରେ ଆତ୍ମବିଚାର, ଗ୍ରନ୍ଥାଦି ବା କଥାଦିର ଆଲୋଚନା କରିବା ବିଧେୟ । ଆପଣାର ଦେହରେ, କାର୍ଯ୍ୟରେ, ହୃଦୟରେ ବା ଜ୍ଞାନରେ ତାହା ଅନୁଭବ ସଙ୍ଗେ ସଙ୍ଗେ ବୁଝି ରଖିବା ଉଚିତ । ଏ ସକାଶେ ଅସତ୍ ସେବାଦି ଓ ଅସତ୍ ସଙ୍ଗ ସର୍ବଥା ତ୍ୟାଜ୍ୟ ଅଟେ । ତହିଁରେ ଚିତ୍ତ ଶୃଙ୍ଖଳା ବଢ଼େ । ମନ ସ୍ଥିର ହେବାଭଳି କାର୍ଯ୍ୟ, ବେଗ, ଉପବେଗ ଏବଂ ଚର୍ଚ୍ଚାଦି, ସତ୍‌ସଙ୍ଗ ସେବନୀୟ । ଆଜକାଲି ବଡ଼ ଦୁର୍ଦ୍ଦିନ । ଏହିରୂପେ ଜ୍ଞାନାଲୋଚନା ଓ ବିଚାରଆଡ଼େ କିୟତ୍‌ପରିମାଣରେ ଅଗ୍ରସର ହେଲାରୁ ଜୀବାତ୍ମାତତ୍ତ୍ୱ, ଈଶ୍ୱରତତ୍ତ୍ୱ ଓ ପ୍ରକୃତିତତ୍ତ୍ୱ ସମ୍ବନ୍ଧରେ ପ୍ରତ୍ୟକ୍ଷ ବିଶଦ ବ୍ୟାଖ୍ୟାଦି

ପ୍ରକାରରେ କେତେକ କଥାର ଚର୍ଚ୍ଚା କରାଯାଇ ତହିଁରେ ଜୀବାତ୍ମା, ପରମାତ୍ମା ଓ ପ୍ରକୃତିଦେବୀଙ୍କୁ କ୍ରମାନ୍ୱୟେ ନିତ୍ୟବଦ୍ଧ ଓ ନିତ୍ୟମୁକ୍ତ ହଂସଦ୍ୱୟ ରୂପରେ ଏବଂ ପ୍ରକୃତି-ଦେବୀଙ୍କୁ ଅନାଦି କଳ୍ପବୃକ୍ଷ ଆକାରରେ ବର୍ଣ୍ଣନା କରାଯାଇଅଛି । ଅବସ୍ଥାତ୍ରୟକୁ ତିନି ପ୍ରକାର ମାଦକ ବୋଲି ଦର୍ଶାଇ ଦିଆଯାଇଅଛି । ଏ ଉତ୍ତାରୁ ଜନ୍ମ-ମରଣ ବୃତ୍ତାନ୍ତ ପୂର୍ବକାଳ ଓ ପରକାଳର ବିଚାର ଏବଂ ପୁରୁଷକାର ଓ ଦୈବାଦି ସମ୍ବନ୍ଧରେ ଆଲୋଚନା କରାଯାଇଅଛି । ଜୀବୋପାଧି ସମ୍ବନ୍ଧରେ ସ୍ଥୂଳଦେହର ଜନ୍ମ, ଅବସ୍ଥାନ, ଏବଂ ମରଣ ପ୍ରବାହ ରୂପରେ ଧାରାବାହିକ କ୍ରମେ ପୁଣି ଲାଗି ରହିଥାଏ; ମୋକ୍ଷ ପର୍ଯ୍ୟନ୍ତ ବହୁକାଳ-ସ୍ଥାୟୀ ବୋଲି ଧର୍ମାଧର୍ମ ଓ କର୍ତ୍ତବ୍ୟାକର୍ତ୍ତବ୍ୟର ଅଧୀନ ହୋଇ ଜୀବକୁ ଧର୍ମକର୍ମ ବିହିତଭାବରେ ସମ୍ପାଦନ କରିବାର ଉଚିତ ଥିବା ନିଷ୍ପତ୍ତି କରାଯାଇଅଛି । ଭଗବନ୍ତ ପରମେଶ୍ୱର ଏ ସଂସାର ପ୍ରବାହର ଓ ସଂସାରସ୍ଥ ସମସ୍ତ ଧର୍ମ-କର୍ମ ଓ ଭୋଗାଦିର ଆଦିମୂଳକାରଣ ଥିବାରୁ ତାଙ୍କର ସ୍ତବ ଓ ବନ୍ଦନାଦି ସମ୍ବନ୍ଧରେ କିଛି ବର୍ଣ୍ଣନା ମଧ୍ୟ କରାଯାଇଅଛି । ଶେଷରେ ସାକାର ଦେବୋପାସନା ସମ୍ବନ୍ଧରେ କେତେକ କଥାର ଅବତାରଣା ହୋଇଅଛି ।

ଏଠାରେ ଆତ୍ମ-ସଂବାଦ ପ୍ରକରଣ ଶେଷ କରାଯାଇ ଲେଖାଯାଉଅଛି ଯେ ମନୁଷ୍ୟ କେବଳ କର୍ମ ଏବଂ ଭୋଗସାଧନ କରିବାକୁ ସଂସାରରେ ଜନ୍ମଗ୍ରହଣ କରିନାହିଁ । କର୍ମ ଏବଂ ଭୋଗ ମନୁଷ୍ୟେତର ସର୍ବ ପ୍ରାଣୀର ଅଛି । ତେବେ ମନୁଷ୍ୟର ବିଶେଷତ୍ୱ ଆତ୍ମାର ଉପଲବ୍ଧି କରିବା । ଆତ୍ମାହିଁ ମନୁଷ୍ୟ ତଥା ସର୍ବ ପ୍ରାଣୀର ମନୋବୃତ୍ତି ଏବଂ ଇନ୍ଦ୍ରିୟବୃତ୍ତିକୁ ଜ୍ଞାନାଲୋକମୟ କରିଅଛି । ଦିବସରେ ସବୁ ଦେଖା ଯାଉଅଛି । ସୂର୍ଯ୍ୟାଲୋକ ଯେପରି ତହିଁର କାରଣ, ପ୍ରାଣୀମାତ୍ରଠାରେ ଯେଉଁ ଅହଂମାତ୍ର ସବୁବେଳେ ବିରାଜମାନ ଥାଇ ମନୋବୃତ୍ତି ଏବଂ ଇନ୍ଦ୍ରିୟାଦି ବୃତ୍ତ୍ୟାଦିକୁ ସଂଜ୍ଞା-ବିଶିଷ୍ଟ କରିଅଛି, ଏହି ଅହଂମାତ୍ରର ଅଧିଷ୍ଠାନ ସେହିପରି ସର୍ବବୃତ୍ତ୍ୟାଦିର ସଂଜ୍ଞାଲାଭର କାରଣ । ଏହା ନିଷ୍ପତ୍ତି କରିବାକୁ ଗଲେ ମନୁଷ୍ୟର ଆତ୍ମା ସର୍ବଦା ଅହଂବୋଧ 'ବା' ଆତ୍ମବୋଧ ସ୍ୱରୂପ; ତାହା ସର୍ବଦା ଅନବଚ୍ଛିନ୍ନଭାବରେ ଅବାଧରେ ଅହଂବୋଧ-ମାତ୍ରରୂପରେ ସ୍ଫୁରିତ ହୋଇ ରହିଅଛି । କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱ-ଜ୍ଞାନ ଏଥିରେ ଉଦିତ ବିଲୀନ ହେଉଥିବାରୁ ଏହି ଅହଂବୋଧ, ତହିଁରେ କର୍ତ୍ତାଭୋକ୍ତାରୂପରେ ଅପରୂପାନ୍ତରିତ ହେଉଥିଲାପରି ସ୍ୱୟଂ ଆପଣାକୁ ମଣୁଅଛି । କର୍ତ୍ତୃତ୍ୱ ଭୋକ୍ତୃତ୍ୱ ଜଳାଶୟ-ଜଳରେ ଫେନ-ତରଙ୍ଗପରି ପୁନଃ ପୁନଃ ଉଦିତ ବିଲୀନ ହେଉଅଛି । ମନେ କର, ଅନବରତ ଫେନ-ତରଙ୍ଗାଦିରେ ଜଳାଶୟ ଜଳ ତନ୍ମୟ ହୋଇ ସବୁବେଳେ ଯେପରି ଫେନ-ତରଙ୍ଗାକୃତି ବିଶିଷ୍ଟାକାରରେ ପ୍ରତୀୟମାନ ହେଉଅଛି, ଆଉ ଜଳର ନିଜ ସ୍ଥିର, ନୀଳ କୃଷ୍ଣବର୍ଣ୍ଣାତ୍ମକ ରୂପ ତହିଁରେ ଆବୃତ ରହିଅଛି; ସେହିପରି ଅହଂବୋଧ ମାତ୍ର ଆତ୍ମାର ସ୍ଥିର ନିଜବୋଧ ରୂପରେ କର୍ତ୍ତୃତ୍ୱ, ଭୋକ୍ତୃତ୍ୱାଦିରେ ତନ୍ମୟ ଓ ତଦ୍ରୂପ ଅପରୂପାକାରକାରିତ ହୋଇ

ଆବୃତ ରହିଅଛି । ସ୍ଥିରଭାବରେ ବିବେଚନା କରି ଦେଖିଲେ ଫେନ-ତରଙ୍ଗାଦିର ବିରାମ ନ ଥିବାରୁ ଜଳ ତଦାକାରମୟ ଦିଶୁଥିଲେ ସୁଦ୍ଧା ତାହା ସର୍ବାବସ୍ଥାରେ ଯେପରି ଜଳମାତ୍ର, ଆଉ ଯେପରି ଫେନ-ତରଙ୍ଗାଦି ଜଳୀୟ ସତ୍ତ୍ୱମାତ୍ର, ଜଳରୁ ଅନ୍ୟେତର କିଛି ନୁହେଁ; ଅତଏବ ଜଳାଶୟ କେବଳ ଜଳମୟ, ଆଉ ଫେନ-ତରଙ୍ଗାଦି ଯେପରି ତାହାର ଚଳନ କ୍ରୀଡ଼ାରେ ତାହାର ଜଳୀୟ ସତ୍ତ୍ୱରୁ ଉଦିତ ହୋଇ ତାହାର ଶୋଭାମାତ୍ର ବର୍ଦ୍ଧନ କରିଅଛି, ସେହିପରି ଆତ୍ମା ସର୍ବଦା ଅହଂବୋଧ ରୂପମାତ୍ର । କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦିରେ ଅନବରତ ଅବିଶ୍ରାନ୍ତ ଭାବରେ ଆତ୍ମା ତନ୍ମୟ ଦିଶୁଥିଲେ ସୁଦ୍ଧା ତାହା ସର୍ବଦା ଆତ୍ମସ୍ୱରୂପ, ଆଉ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ମଧ୍ୟ ଆତ୍ମସତ୍ତ୍ୱ ସମ୍ଭୂତ ଆତ୍ମାରେ କ୍ରୀଡ଼ା ବା ମାୟିକ ଲୀଳାରୂପରେ ପ୍ରକଟିତ ହୋଇ ଆତ୍ମାର ଅପରୂପାକାରିତ ଶୋଭାବର୍ଦ୍ଧନ କରିଅଛି । ତଦ୍ୱାରା ଆତ୍ମା କର୍ତ୍ତା-ଭୋକ୍ତା ରୂପରେ ନର୍ତ୍ତନଶୀଳ ଦେଖାଯାଉଥିଲେ ମଧ୍ୟ ସେହି କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଧାରାବାହିକ କ୍ରମେ ପୁନଃ ପୁନଃ ଉଦିତ ବିଲୀନ ହେଉଥିବାରୁ ଆତ୍ମା ତଦ୍ୱାରା ରୂପାନ୍ତରିତ ନ ହୋଇ ଯଥା ତଥା-କାରରେ ଅହଂବୋଧ ନିତ୍ୟ ଉପଲବ୍ଧି ରୂପ ସମ୍ଭୂତ ନିତ୍ୟ ବିରାଜମାନ ରହିଅଛନ୍ତି । ଏହି କର୍ତ୍ତୃତ୍ୱ ଭୋକ୍ତୃତ୍ୱ ଭାବ କ୍ଷଣିକ ଅଟେ । ମାତ୍ର ଏହି କ୍ଷଣସ୍ଥାୟୀ ଭାବ କ୍ଷଣକୁ କ୍ଷଣ ପୁଣି ପୁଣି ଧାରାବାହିକରୂପରେ ଉଦୟ ଲୀନ ହେଉଥିବାରୁ ଆତ୍ମରୂପ ସର୍ବଦା ଆବୃତ ରହି ଏହି କ୍ଷଣସ୍ଥାୟୀ ଭାବର ଲଗାଲଗି ସମଷ୍ଟିରେ ତାହାରଇ ବିଦ୍ୟମାନତା ନିତ୍ୟ ବୋଲି ଜଣାପଡ଼ୁଅଛି । ଏଠାରେ ଦେଖାଯାଉଅଛି, ଆତ୍ମା ନିତ୍ୟ, ତାହାର ସତ୍ତ୍ୱରେ ତାହାରିଠାରେ ଅନିତ୍ୟର ଅର୍ଥାତ୍ କ୍ଷଣସ୍ଥାୟିତ୍ୱର ସମଷ୍ଟି ନିତ୍ୟ ଆକାରରେ ପରିଦୃଶ୍ୟମାନ ହେଉଅଛି । ଏହି ଅନିତ୍ୟ ସମଷ୍ଟି ଧାରାବାହିକକ୍ରମେ ନିତ୍ୟ ବୋଲି ପ୍ରତୀତ ହେଉଥିବାରୁ ଏହା କାଳ୍ପନିକ ସତ୍ୟ । ଆତ୍ମରୂପ ଅକଳ୍ପିତ ନିତ୍ୟ ଓ ସତ୍ୟ । ଏହିରୂପେ ଆତ୍ମା ସ୍ୱରୂପରେ ଅହଂବୋଧ ନିତ୍ୟରୂପ ଏବଂ ଅବାଧ ବିରାଜିତ । ପୁଣି ଅନିତ୍ୟ କର୍ତ୍ତୃତ୍ୱ-ଭୋକ୍ତୃତ୍ୱାଦି କ୍ଷଣିକ କ୍ଷଣିକ ଭାବ-ସମଷ୍ଟିରେ ତନ୍ମୟ ବୋଲି କଳ୍ପିତ ହୋଇ ନିତ୍ୟ କର୍ତ୍ତା-ଭୋକ୍ତାରୂପ ବିଶିଷ୍ଟ ଜୀବାତ୍ମା ନାମରେ କଥିତ ହୋଇଅଛନ୍ତି । ଏହି କଳ୍ପିତ ରୂପ, ନିତ୍ୟ ସତ୍ୟ ରୂପକୁ ଆବରଣ କରି ପ୍ରାୟ ବାହ୍ୟ ବ୍ୟାବହାରିକ ଚକ୍ଷୁରେ କଳ୍ପିତ ଭ୍ରମଦ୍ୱାରା ଦେଖାଯାଉଅଛି । ଆଉ ଅଭ୍ରାନ୍ତ ଜ୍ଞାନ-ବିବେକ ଯୋଗଦୃଷ୍ଟିରେ ଆତ୍ମା ନିତ୍ୟ ନିର୍ମଳ ଅହଂବୋଧ ରୂପରେ ଏହି ଜୀବାତ୍ମ-ରୂପକୁ ବିମଳାକାଶରେ କଳ୍ପିତ ମୃଗତୃଷ୍ଣା ନଗର ଧୃତ ଥିଲା ପରି ଧାରଣ କରିଅଛନ୍ତି । ଏହି ଜୀବରୂପରେ କର୍ତ୍ତୃତ୍ୱ-ଭୋକ୍ତୃତ୍ୱ, ସୁଖ-ଦୁଃଖାଦି ଭାବ ପ୍ରକାଶ କରି ଜୀବକୁ ସଂସାରୀ କରିଅଛି । ଏହି ସଂସାରବଦ୍ଧ ଜୀବର ସତ୍ୟ ଆତ୍ମତତ୍ତ୍ୱ-ଜ୍ଞାନ ନିଜାତ୍ମ ସମ୍ପଦ, ଏହାର ନାମ ଦୈବୀ ସମ୍ପତ୍ତି । କର୍ତ୍ତୃତ୍ୱ-ଭୋକ୍ତୃତ୍ୱାଦି ଦେହୋପାଧିଜାତ କଳ୍ପିତ ସମ୍ପଦ ଏହାର ନାମ ଆସୁର ସମ୍ପତ୍ତି । ଜୀବାତ୍ମାର ଏହି ନିଜାତ୍ମ ସମ୍ପଦ ଅର୍ଥାତ୍ ଆତ୍ମତତ୍ତ୍ୱଜ୍ଞାନ ନିତ୍ୟ ବର୍ତ୍ତମାନ ଥିଲେ ସୁଦ୍ଧା ରାଜା ନିଦ୍ରାରେ ଦୀନଭାବ ପ୍ରାପ୍ତ ହୋଇ ଭିକ୍ଷା ମାଗି ବୁଲିଲା ପରି ଏହି ଜୀବାତ୍ମା ଏହି ଦେହାତ୍ମଭ୍ରମ ନିଦ୍ରାରେ ଚିରନିଦ୍ରିତ ରହି ଦେହ ସମ୍ବନ୍ଧୀୟ କର୍ତ୍ତୃତ୍ୱ

ଭୋକ୍ତୃଭାବରେ ବିଜଡ଼ିତ ରହିଅଛି । ଆତ୍ମତତ୍ତ୍ୱଜ୍ଞାନ ସ୍ଫୁରଣନିମିତ୍ତ ଏହି ଆତ୍ମା ସମ୍ବାଦ ପ୍ରକରଣରେ ଏ ଗ୍ରନ୍ଥର ମୂଳରୁ ଏ ପର୍ଯ୍ୟନ୍ତ ପୂର୍ବକଥିତମତେ ଅନେକ ଆଲୋଚନା କରାଗଲା । ସେ ସମସ୍ତ ଭୂଗୋଳ ବିଦ୍ୟାର ବହି ପଢ଼ିବା ସଙ୍ଗେ ସଙ୍ଗେ ମାନଚିତ୍ର ଦେଖି ପୃଥିବୀକୁ ଦେଖିଥିଲାପରି ପଢ଼ିବା ଉଚିତ ଏବଂ ସେହି ପଠନ ସଙ୍ଗେ ସଙ୍ଗେ ଆତ୍ମାଠାରୁ ଆରମ୍ଭ କରି ଜ୍ଞାନ, ଚିତ୍ତ ବା ବିଦ୍ୟା ଏବଂ ଅଜ୍ଞାନ ବା ଅବିଦ୍ୟା, ଅବିଦ୍ୟାରୁ ଅନ୍ତଃକରଣ ସହିତ ଅଭେଦତା ବା ଅସ୍ମିତା, ଅସ୍ମିତାରୁ ରାଗ (ଅର୍ଥାତ୍ ସୁଖର ରୂପ), ଦ୍ୱେଷ (ଅର୍ଥାତ୍ ଦୁଃଖର ରୂପ) ଏବଂ ଏଥିରୁ ଦେହାଭିନିବେଶ ଓ ଏସବୁର କ୍ରୀଡ଼ା ବା କ୍ରିୟା-ସାଧନୋପଯୋଗୀ କର୍ମଭୂମି ସ୍ୱରୂପ ଏହି ବିଶ୍ୱ ସଂସାରାତ୍ମକ ବିରାଟ ଚିତ୍ର ପର୍ଯ୍ୟନ୍ତ ସମସ୍ତ ବସ୍ତୁର କାର୍ଯ୍ୟକାରଣାତ୍ମକ ନାନାବିଧ ରୂପକୁ ଦେଖି ଦେଖି ଯିବାକୁ ହେଉଥିବ; ଅର୍ଥାତ୍ ଏ ପ୍ରକରଣର ପ୍ରତ୍ୟେକ ବାକ୍ୟ ଓ ପଦକୁ ତତ୍ତତ୍ ଜ୍ଞାପକ ପଦାର୍ଥାଦି ସହିତ ପଢ଼ି ପଢ଼ି ଦେଖି ଦେଖି ଯିବାକୁ ହେଉଥିବ ।

ଉପରୋକ୍ତ ଆଲୋଚନାରୁ ଆତ୍ମତଃ ଅର୍ଥାତ୍ ଅନ୍ତତଃ ଆତ୍ମା, ନିଜାତ୍ମବୋଧ-ରୂପରେ ସଦା ଜାଗରିତ ରହି ବହିର୍ବ୍ୟାପାର ସମ୍ପାଦନ ଓ ସଂଗ୍ରହାର୍ଥ ବାହ୍ୟତଃ ଲୋକ-ଯାତ୍ରାନୁରୂପ ଯଥାବିହିତ ସତ୍କର୍ମ ଅନୁଷ୍ଠାନ କରି ସଂସାର କ୍ଷେତ୍ରରେ ବିଚରଣ କରିବା ଏକାନ୍ତ କର୍ତ୍ତବ୍ୟ ବୋଲି ନିଶ୍ଚିତ ହେଉଅଛି । ଏବେ ଉପଲବ୍ଧି କରାଯାଉ, ପରଂବ୍ରହ୍ମ ସଚ୍ଚିଦାନନ୍ଦସ୍ୱାମୀ ଆଦ୍ୟା ସର୍ବକାରଣରୂପା ମୂଳପ୍ରକୃତିରେ ସର୍ବଶକ୍ତିମାନ୍ ସର୍ବୈଶ୍ୱର୍ଯ୍ୟ-ଶାଳୀ ଏକମେବ ଅଦ୍ୱିତୀୟ ପରମେଶ୍ୱର ରୂପରେ ବିଦ୍ୟା ଅବିଦ୍ୟାଦି ସର୍ବୋପାଧି ନିଜାଧୀନରେ ରଖି ସ୍ୱାଧୀନଭାବରେ ବିରାଜିତ ଅଛନ୍ତି । ସେହି ପ୍ରଭୁ ପରମେଶ୍ୱର ଅଂଶତଃ ସତ୍ତ୍ୱ ସୃଷ୍ଟିରେ ଦେବ-ସିଦ୍ଧ-ଋଷ୍ୟାଦି ରୂପରେ ଏବଂ ରାଜସ ତାମସ ସୃଷ୍ଟିରେ ଅଂଶତଃ ଜୀବୋପାଧି ଧାରଣ କରି ଏହିପରି ବହୁମୟ ହୋଇ ମୈତ୍ରୀ ବା ପରସ୍ପର ସଖ୍ୟଭାବରେ ବିରାଜମାନ ଅଛନ୍ତି । ସେହି ଜୀବୋପାଧିବିଶିଷ୍ଟ ଜୀବାତ୍ମା ସ୍ୱୀୟ ଜୀବୋପାଧିଗତ କାରଣ ସୂକ୍ଷ୍ମ ଦେହରେ ଓ ତହିଁରୁ ସ୍ଥୂଳଦେହରେ ଯୁକ୍ତ ହୋଇ ସାମ୍ୟଭାବ ଅବଲମ୍ବନ-ପୂର୍ବକ ପ୍ରକୃତିଦେବୀର ଭୌତିକ ସଂସାରରେ ଅଭ୍ୟାଗତରୂପେ ଉପସ୍ଥିତ ହୋଇଅଛନ୍ତି । ଅଭ୍ୟାଗତ ଗୃହୀଦ୍ୱାରେ ଉପସ୍ଥିତ ହୋଇ ତାହାର ଆବଶ୍ୟକୀୟ ଖାଦ୍ୟାଦି ଓ ବିଶ୍ରାମସ୍ଥାନାଦି ପାଇ ସମୟ କ୍ଷେପଣ କରେ । ଆଗରୁ ଉକ୍ତ ଗୃହସ୍ୱାମୀ ଗୃହ ବା ଖାଦ୍ୟାଦି ସଙ୍ଗେ ତାହାର ସମ୍ବନ୍ଧ ନ ଥାଏ । ସେହିପରି ଭଗବତୀ ପ୍ରକୃତିଦେବୀ ଈଶୋପାଧି ସହିତ ଜୀବୋପାଧି ଓ ତଦ୍‌ଗତ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଦେହାଦି ଏବଂ ବିଶ୍ୱ-ବ୍ରହ୍ମାଣ୍ଡାଦି ଗଠନ କରି ରଖିଅଛି । ପ୍ରଭୁ ପରମେଶ୍ୱରଙ୍କୁ ସର୍ବାଧିକାରିତ୍ୱ ପ୍ରଦାନ କରି ସର୍ବମୟ ସ୍ୱାମୀଭାବରେ ବରଣ କରିଅଛି, ଏବଂ ଜୀବାତ୍ମାକୁ ଜୀବୋପାଧି ଦେଇ ତହିଁରୁ ଦେହକ୍ଷେତ୍ରରେ ବସତି କରାଇ ସଂସାରକ୍ଷେତ୍ରରେ ଖେଳାଉଅଛି । ଏ ସଂସାରରେ ଜୀବମାତ୍ରହିଁ ଅଭ୍ୟାଗତ । ଆଗରୁ କୌଣସି ଉପାଧିସଙ୍ଗେ କାହାରି ସମ୍ବନ୍ଧ ବା ଚିହ୍ନା

ପରିଚୟ ନ ଥାଏ, ବା ଏ ମହାସମାରୋହ ଯୋଗାଡ଼ କେହି କାହା ନିଜପାଇଁ କରି ନ ଥାଏ । କେବଳ ଅଭ୍ୟାଗତରୂପେ ଏ ସଂସାର-ମନ୍ଦିରରେ ସମସ୍ତେ ଉପଗତ ହୋଇଥାଇଁ । ପ୍ରଭୁ ପରମେଶ୍ୱର ଏ ମହାଭବନର ସ୍ୱାମୀ ଓ ଭଗବତୀ ଗୃହଲକ୍ଷ୍ମୀରୂପେ ବିରାଜମାନ । ଜୀବସମସ୍ତ ପରମେଶ୍ୱରାଧୀନ ବା ତାଙ୍କର ନିୟମାଧୀନ ଅଟନ୍ତି, ଅଥଚ ଆମ୍ଭେମାନେ ଭଗବତୀଦତ୍ତ ପ୍ରସାଦରୂପ-ସ୍ୱାଧୀନତାରେ ପରସ୍ପର ସମସ୍ତେ ସ୍ୱାଧୀନ, କେହି କାହା ଅଧୀନ ନୁହନ୍ତି । କାରଣ ଜଣେ ଗୃହସ୍ୱାମୀର ପ୍ରଦତ୍ତ ସ୍ଥାନରେ ସମସ୍ତେ ବିଶ୍ରାମ କରୁଥାଇଁ, ତାଙ୍କର ପ୍ରଦତ୍ତ ଖାଦ୍ୟାଦି ଭୋଗ କରୁଥାଇଁ; ପୁଣି ଆମ୍ଭେମାନେ ପରସ୍ପର ସଖା ଅର୍ଥାତ୍ ସମଭାବାପନ୍ନ ଅଟନ୍ତି, କେହି ବଡ଼ ସାନ ନୁହେ । ତେବେ ଜୀବ-ନିଚୟ ପରସ୍ପର କେହି କାହା ଅଧୀନ ନୁହେ, ସର୍ବେ ସଖା ଓ ସମଭାବାପନ୍ନ—ଏହା ଏହି ସଂସାରରୁ ଶିକ୍ଷା ମିଳୁଅଛି । ଏହି ଶିକ୍ଷା ଭଗବତୀ ପରମେଶ୍ୱରୀଦତ୍ତ ପ୍ରସାଦ । ଏ ମହାପ୍ରସାଦ ଆଗ ଗ୍ରହଣ କରି ଏହି ସ୍ୱାଧୀନତା, ସଖ୍ୟ ଏବଂ ସାମ୍ୟଭାବରେ ପ୍ରାଣକୁ ପ୍ରତିଷ୍ଠା କରି ପବିତ୍ର ହେଲା ପରେ ଆମ୍ଭମାନଙ୍କୁ ଏହି ପରମେଶ୍ୱରୀର ରାଜ୍ୟରେ ସ୍ଥାନ ମିଳିଅଛି । ସେହି ସ୍ଥାନର ନାମ ଦେହ, ଏବଂ ଆମ୍ଭେମାନେ ସୂକ୍ଷ୍ମଦେହଧାରୀ ଅଦୃଶ୍ୟ ଜୀବ, ଦେହ ଆମ୍ଭର ବିଶ୍ରାମାଗାର । ଏହି ଦେହାଗାରର ସ୍ଥାନ ସଂସାରରୂପ ଧର୍ମଶାଳା । ଅତିଥିର ଧର୍ମ, କେହି କାହା ପ୍ରାପ୍ତ ସାମଗ୍ରୀ ଛଳେ ବଳେ କୌଶଳେ ଗ୍ରହଣ କରିବା ନାହିଁ । ଗୃହସ୍ୱାମୀ ଯାହାକୁ ଯାହା ଦାନ କରିଅଛନ୍ତି, ସେହି ଦତ୍ତ ସାମଗ୍ରୀ ସେହି ଏକା ଭୋଗ କରିବାକୁ ଅଧିକାରୀ । ଆମ୍ଭେମାନେ ଆପଣା ଆପଣା ମଧ୍ୟରେ ଛଡ଼ାଛଡ଼ି କଲେ ତାହାର ନିୟମଲଙ୍ଘନକାରୀ ଦୋଷୀ ସାବ୍ୟସ୍ତ ହେବା । ଏବେ ଦେଖାଯାଉ, ଜୀବାତ୍ମା ସୂକ୍ଷ୍ମ-କାରଣ-ଦେହରେ ସୂକ୍ଷ୍ମରୂପେ ଅଦୃଶ୍ୟ ଅବ୍ୟକ୍ତଭାବେ ବିରାଜମାନ ସେହି ଆତ୍ମରୂପୀ ତୁମ୍ଭେ, ଆମ୍ଭେ ଓ ସେ ସ୍ଥୂଳ ଦେହ ପ୍ରାପ୍ତ ହେଲାରୁ ଏହି ଦୃଶ୍ୟମାନ ଦେହବନ୍ତ ହୋଇ ଦେହଭେଦରେ ଆମ୍ଭେ ଅମୁକ, ତୁମ୍ଭେ ଅନ୍ୟ ଏବଂ ସେ ଅପର ବୋଲି ଭେଦ ବ୍ୟବହାର କରୁଥାଇଁ । ଏହି ଦେହରେ ଜୀବାତ୍ମାର ସମ୍ବନ୍ଧୀଜୀବ ପ୍ରଭୁ ପରମେଶ୍ୱରଙ୍କର କଳ୍ପିତ ଅଂଶ ବିଶେଷ । ପ୍ରଭୁ ପରମେଶ୍ୱର ସର୍ବମୟ ପରଂବ୍ରହ୍ମ ସ୍ୱରୂପ ଅଟନ୍ତି । ଅତଏବ ଦେହରେ ଓ ପ୍ରତ୍ୟେକରେ ପ୍ରଭୁ ପରଂବ୍ରହ୍ମ, ପରମେଶ୍ୱର ଓ ଜୀବାତ୍ମାଙ୍କୁ ଦର୍ଶନ କରି ସବୁଠାରେ ଭକ୍ତି ସହିତ ଅନ୍ତରେ ଅନ୍ତରେ ପ୍ରଣାମ କରୁଥିବା ଆଉ ବାହ୍ୟରେ ପ୍ରତ୍ୟେକ ଦେହକୁ ସ୍ୱାଧୀନ ଭାବି କାହା ଉପରେ ପ୍ରଭୁତ୍ୱ ଦେଖାଇବା ନାହିଁ । ଏକଜୀବଭାବ ସର୍ବତ୍ର ଦେଖି ସମସ୍ତେ ସଖା ବା ମୈତ୍ରୀଭାବ ରଜ୍ଜୁରେ ଆବଦ୍ଧ ରହିଥିବା, ଆଉ ପରସ୍ପରରେ ସମାନ ଭାବ ରକ୍ଷା କରୁଥିବା—ଏହି ପରମଧର୍ମ ଈଶ୍ୱରାନୁ-ମୋଦିତ ନିୟମାଧୀନ ବ୍ୟବସ୍ଥା ସ୍ୱରୂପ ଅଟେ । ଏବେ ଆତ୍ମାନାତ୍ମଜ୍ଞାନ-ମୀମାଂସା-ସମ୍ବନ୍ଧ ବିବେକହାରୀ ଆତ୍ମ-ସଂବାଦ ପଠନ, ଶ୍ରବଣ ଓ ଗ୍ରହଣ କରି ଉପଲବ୍ଧି କରାଯାଇଅଛି ଯେ ଆତ୍ମା ସ୍ୱକୀୟ ଧର୍ମାନୁଯାୟୀ ସ୍ୱରୂପତଃ ନିର୍ଲିପ୍ତ ଦ୍ରଷ୍ଟାରୂପେ ଆତ୍ମସଂସ୍ଥ ରହି ଦେହସ୍ଥୟ ଓ ଜୀବସୃଷ୍ଟିମୟ ଚରାଚର ସମେତ ଜଗନ୍ମଣ୍ଡଳ ପରିଦର୍ଶନ କରୁଅଛନ୍ତି । ଏହି ଭାବରେହିଁ

ଦେହ-ସଂସାର ଦର୍ଶନ କରିବା ପରମେଶ୍ୱରଙ୍କ ଜ୍ଞାନୋପଦେଶ ଅଟେ । ସେହି ହେତୁ ବିଦ୍ୟା ବା ଚିତ୍ ଅଥବା ଜ୍ଞାନଶକ୍ତି ଜୀବାତ୍ମାକୁ ପ୍ରଥମ ଦାନ ସ୍ୱରୂପ ସଙ୍ଗେ ସଙ୍ଗେ ଦିଆଯାଇଅଛି । ବିଚିତ୍ର ମହିମାମୟ ମହାପୁରୁଷଙ୍କର ଲୀଳାମୟ ଇଚ୍ଛାରୁ ତଦ୍ରୂପ ଇଚ୍ଛାରୂପିଣୀ ଭଗବତୀ ପ୍ରକୃତିଦେବୀ ଜୀବାତ୍ମାକୁ ଜୀବୋପାଧି ସହିତ ଗୁଣତ୍ରୟସମନ୍ୱିତ ଅନ୍ତଃକରଣବୃତ୍ତିଚତୁଷ୍ଟୟ, ଦଶେନ୍ଦ୍ରିୟ ପ୍ରାଣ ଏବଂ ଦେହ-ସଂସାରସମ୍ବନ୍ଧୀୟ ଆତ୍ମୀୟ ବର୍ଗାଦି ପ୍ରଦାନ କରିଅଛି; ଅଥଚ ସଙ୍ଗେ ସଙ୍ଗେ ଦୃଢ଼ ଆଦେଶ ରହିଅଛି ଯେ ଆତ୍ମା ଏ ସମସ୍ତ ଦର୍ଶନ କରି ଏ ସବୁର ରକ୍ଷଣାବେକ୍ଷଣ ଓ ପରିପାଳନାଦି ଯଥାନିୟମରେ ସମ୍ପାଦନ କରିବାକୁ ବାଧ୍ୟ । ଏହିରୂପେ ସର୍ବୋପଦେଷ୍ଟା ପରମେଶ୍ୱରଙ୍କର ଉପଦେଶ ପାଳନୀୟ ଏବଂ ପ୍ରକୃତିର ଆଦେଶ କରଣୀୟ ଅଟେ । ଈଶ୍ୱରଙ୍କ ଜ୍ଞାନୋପଦେଶ ଅବହେଳା କଲେ ପ୍ରକୃତିର ଆଦେଶାନୁଯାୟୀ ଇନ୍ଦ୍ରିୟାଦି ପ୍ରକୃତିଗଣ ନିଜ ନିଜ ମାର୍ଗରେ ଜୀବାତ୍ମାକୁ ଟାଣିନେଇ ବିଳାସ ମୋହାଦି ଗର୍ତ୍ତରେ ପକାଇଦେବା ସୁନିଶ୍ଚିତ । ଉପଦେଶ, ଦୟା-ପ୍ରେମ-ମିଶ୍ରିତ କୋମଳଭାବାପନ୍ନ ପଦାର୍ଥ ମାତ୍ର ଆଦେଶ ସେପରି ନୁହେ, ଏହା ତାଡ଼ନା ସହିତ ଦୃଢ଼ ଏବଂ ବଳବତ୍ତର ବିଶେଷ । ଏହି ଉଭୟ ସନ୍ଧିରେ ଜୀବାତ୍ମାର ସ୍ଥାନ, ଅତଏବ ଏହି ଉଭୟ ଭାବ ରକ୍ଷାକରିବା ଜୀବର ଧର୍ମ ଏବଂ କର୍ତ୍ତବ୍ୟ । ଆତ୍ମାର ନିଜ ତତ୍ତ୍ୱ ଅବଧାରଣ କରି ନିର୍ଲିପ୍ତ ଦ୍ରଷ୍ଟାରୂପେ ଅନ୍ତତଃ ଅବସ୍ଥିତ ରହି ବାହ୍ୟରେ ଅର୍ଥାତ୍ ମନେନ୍ଦ୍ରିୟାଦି ପ୍ରକୃତି ରାଜ୍ୟରେ ଦେହାଦି ରକ୍ଷଣରୂପ କାର୍ଯ୍ୟରେ ପ୍ରବର୍ତ୍ତିବା ଉଚିତ । ଈଶ୍ୱରୋପଦେଶର ଅର୍ଥ, ଜୀବାତ୍ମା ନିଜାତ୍ମଜ୍ଞାନରେ ସଦା ଆତ୍ମଜ୍ଞାନୀ ହୋଇ ରହିଥିବ, ଆଉ ପ୍ରକୃତିର ଆଦେଶର ଅର୍ଥ ଆତ୍ମା ଦେହେନ୍ଦ୍ରିୟ ଓ ପ୍ରାଣାନ୍ତଃକରଣାଦି ସହିତ ସଂସାରୀୟ ବିଷୟସୁଖଭୋଗୀ ହୋଇଥିବ । ଏହି ହେତୁ ସଂସାରରେ ସେହି ଆଦର୍ଶ ଦେଖାଯାଏ । ଗୁରୁଦେବ ଏବଂ ପିତୃଦେବ ପ୍ରଭୃତି ବାଳକକୁ ଜ୍ଞାନୀ ହେବାର ଉପଦେଶ ଦିଅନ୍ତି ଏବଂ ଇଚ୍ଛାକରନ୍ତି, ଆଉ ମାତା ଠାକୁରାଣୀ ବିଶେଷ ଭାବରେ ବାଳକକୁ ବିଷୟ-ସୁଖ ଉପଭୋଗର ଅଧିକାରୀ ହେବାକୁ ସର୍ବଦା ଚାହାନ୍ତି । ପିତା ଚାହାନ୍ତି ମନକୁ ଏବଂ ଜ୍ଞାନକୁ, ମା ଚାହେଁ ପେଟକୁ । ପୁଣି ଜ୍ଞାନୀ ନ ହେଲେ ସଂସାରରେ ମନୁଷ୍ୟ ପଶୁପରି ରହେ, ମାତ୍ର ପ୍ରକୃତିର ବେଗ ପରିତ୍ୟାଗ କରିବା ଅସାଧ୍ୟ । ତେବେ ମାନବୀୟ ଆତ୍ମାର ଏ ସଂସାର ବଡ଼ ପରୀକ୍ଷାକେନ୍ଦ୍ର । ଆତ୍ମଜ୍ଞାନ ବିସ୍ମୃତ ହେବନାହିଁ, ଅଥଚ ସାତ୍ତ୍ୱିକ ଭାବରେ ଯଥା ନିୟମରେ ଦେହର ଏବଂ ଆତ୍ମୀୟ ସଂସାରାଦିର ପରିରକ୍ଷଣ ଓ ପରିପାଳନ ହେବ । ଏହିରୂପେ ଈଶ୍ୱରୋପଦେଶ ଏବଂ ପ୍ରକୃତିର ଆଦେଶ ଉଭୟେ ଏକସ୍ଥ ରହିଥିବେ, ଅଥଚ ସଂସାରଯାତ୍ରା ନିର୍ବାହିତ ହେଉଥିବ, ଏହା ମାନବୀୟ ଆତ୍ମାର କର୍ତ୍ତବ୍ୟ । ଆତ୍ମା ନିଶ୍ଚୟ ଆଗ ହେଲେ ପରେ କର୍ତ୍ତବ୍ୟାବଧାରିତ ହୁଏ, ଏହି ହେତୁ ଆତ୍ମ-ସଂବାଦ ପ୍ରାପ୍ତ ହୋଇ ଆତ୍ମଦର୍ଶନ ଲାଭ କରିଥିବା ଉଚିତ । ଆତ୍ମାହିଁ ସଂସାର କର୍ମ ଭୋଗମୟ କ୍ଷେତ୍ରରେ କାର୍ଯ୍ୟ କରିବେ, ଆଉ କେହି ନାହିଁ; ସେହି ଆତ୍ମା ସ୍ୱଭାବତଃ ଏବଂ ସ୍ୱରୂପତଃ ସର୍ବଦା ଆତ୍ମଜ୍ଞାନ-ସମ୍ପନ୍ନ ଚିଦାନନ୍ଦ ବିଗ୍ରହ, ଅଥଚ ସେହି ପୁଣି ଭୌତିକ ବିଗ୍ରହାକାରରେ

ଦେହବନ୍ତ ହୋଇ ସଂସାରରେ କର୍ମ ଓ ଭୋଗ ସାଧନ କରିବେ । କର୍ମ ଏବଂ ଭୋଗ କ୍ଷଣସ୍ଥାୟୀ, ଆତ୍ମାର ଆତ୍ମଭାବ ନିତ୍ୟ, ଅତଏବ ଆତ୍ମା ନିଜ ନିତ୍ୟଭାବ ରକ୍ଷାକରି ସଂସାରୀୟ ଅନିତ୍ୟ ଭୋଗ ଏପରି ସମ୍ପାଦନ କରିବା ଉଚିତ ଯଦ୍ଦ୍ୱାରା ଆତ୍ମବିସ୍ମୃତି ନ ଘଟିବ, ଅଥଚ ସଂସାରୀୟ କର୍ମ ଏବଂ ଭୋଗ ଯେପରି ଦୈହିକ ସୁଖଶାନ୍ତିର ପ୍ରୟୋଜକ ହେବ, ସେହି ପରିମାଣରେ ଆତ୍ମଜ୍ଞାନର ସହାୟକ ହେବ; ଅର୍ଥାତ୍ ସଂସାରୀୟ କର୍ମଦ୍ୱାରା ନିଜର ଆତ୍ମୀୟବର୍ଗାଦିର ଏବଂ ସଂସାରୀୟ ପ୍ରାଣିମାନଙ୍କର ଉପକାରମାତ୍ର ହେବ; ଅଥଚ କାହାର କିଛି ଅନୈତିକ ଅପକାର ବା କଷ୍ଟ ନ ହେବାଭଳି ଲକ୍ଷ୍ୟ ରଖାଯାଇଥିବ । ଏହାହିଁ ସଂସାର ପକ୍ଷରେ ଆତ୍ମାର କର୍ତ୍ତବ୍ୟ । ଏ ପର୍ଯ୍ୟନ୍ତ ଆତ୍ମସଂବାଦ ପ୍ରକାଶିତ ହେଲା । ପ୍ରିୟବସ୍ତୁର ସମ୍ବାଦ ପାଇଲେ ଯେପରି ତାହାର ଦର୍ଶନଲାଭ କରିବାକୁ ସ୍ୱଭାବତଃ ଇଚ୍ଛା ଜାତ ହୁଏ, ସେହିପରି ଆତ୍ମାଠାରୁ ଆଉ କିଛି ବା କେହି ପ୍ରିୟ ନ ଥିବାରୁ, ତତ୍ସମ୍ବନ୍ଧୀୟ ସମ୍ବାଦ ପାଇଲାରୁ ଏ ମଧ୍ୟରେ ଆତ୍ମଦର୍ଶନଲାଭ ହୋଇଅଛି ବୋଲି ଧରି ନିଆଯିବ । ଆତ୍ମା ସର୍ବଦା ଆତ୍ମାନନ୍ଦସମ୍ଭୋଗଶାଳୀ, ଅତଏବ ସଂସାରୀୟ ବିଷୟାନନ୍ଦ ସମ୍ଭୋଗ ତାଙ୍କ ପକ୍ଷରେ କ୍ଷଣକୁ କ୍ଷଣ ଉଦୟ ବିଲୟ ଏବଂ କ୍ଷଣଭଙ୍ଗୁରବିଶିଷ୍ଟ, ଅଥଚ ଧାରା-ବାହିକକ୍ରମେ ଲାଗିରହି ନିତ୍ୟ ସତ୍ୟବତ୍ ପ୍ରତୀୟମାନ ହେଉଥିବାରୁ ଏହା କାଳ୍ପନିକ ସତ୍ୟ ଅଟେ । ଏବେ ଏହି ସଂସାରପ୍ରବାହ ସୁଖ ଦୁଃଖ, ଶୁଭାଶୁଭ, ଅମଙ୍ଗଳମଙ୍ଗଳ, ଓ ଜ୍ଞାନାଜ୍ଞାନାଦି ଉଭୟବିଧ ମାର୍ଗରେ ସର୍ବଦା ଚାଳିତ ହେଉଥିବାରୁ ସୁଖ, ଶାନ୍ତି, ଶୁଭ ଏବଂ ଜ୍ଞାନାଦି ରକ୍ଷା ଓ ଅଶୁଭାଦି ପରିହାର ପୂର୍ବକ ଯାହା କର୍ତ୍ତବ୍ୟ ବୋଲି ନିର୍ଦ୍ଦିଷ୍ଟ ହେବ ତାହା ଆତ୍ମା ପକ୍ଷରେ ଆତ୍ମାନନ୍ଦଭୋଗାପନ୍ନ ଆତ୍ମସଂସ୍ଥାବସ୍ଥାପକ୍ଷରେ କାଳ୍ପନିକ ଅଟେ । ଏହି ହେତୁ ଉତ୍ତରଭାଗକୁ କର୍ତ୍ତବ୍ୟ ସମ୍ପାଦନ ବିଷୟ ବିବୃତ ହେବ ବୋଲି ସେହି ଭାଗର ନାମ ବିଶ୍ୱକଳ୍ପନା । ଏହିରୂପେ ଆତ୍ମଦର୍ଶନରେ ବିଶ୍ୱକଳ୍ପନା ନାମ ଦିଆଯାଇ ଏ ଗ୍ରନ୍ଥ ପ୍ରଣୟନ କରାଯାଉଅଛି । ଆତ୍ମା ପକ୍ଷରେ ସଂସାର ଅନାତ୍ମ ବସ୍ତୁ ଅଟେ । ଦେହ-ସଂସାରାଦି ଦୃଶ୍ୟ ବା ଜ୍ଞେୟ, ଆଉ ଆତ୍ମା ତହିଁର ଦ୍ରଷ୍ଟା ବା ଜ୍ଞାତାପୁରୁଷ ଅଟନ୍ତି । ଦ୍ରଷ୍ଟା ବା ଜ୍ଞାତା ଦୃଶ୍ୟ ବା ଜ୍ଞେୟରୁ ପୃଥକ୍, ସୁତରାଂ ନିର୍ଲିପ୍ତ ଜ୍ଞାତା ପୁରୁଷ ଅଦୃଶ୍ୟ ଓ ଅସ୍ପର୍ଶ ହେଲେ ସୁଦ୍ଧା ଏହି ଦେହ-ସଂସାରରେ ନିଜ ପ୍ରେମବଶତଃ ତନ୍ମୟ ହୋଇଥିବାରୁ ସବୁ ବିଷୟରେ ତାହାଙ୍କୁହିଁ କର୍ତ୍ତା ବା ଭୋକ୍ତା କି ଜ୍ଞାତା ବୋଲି ନିର୍ଦ୍ଦିଷ୍ଟଭାବେ କଳ୍ପନା କରାଯାଇଅଛି । ଆଉ ସଂସାରଯାତ୍ରାନୁରୋଧରେ ସେହି କଳ୍ପନା ସତ୍ୟବତ୍ ବ୍ୟବହାର କରାଯାଉଅଛି । ତେବେ ଏ ସଂସାରରେ କର୍ତ୍ତବ୍ୟ ନିର୍ଦ୍ଦିଷ୍ଟ ହେବା ଏଭଳି ଆତ୍ମା ପକ୍ଷରେ ଏକାନ୍ତ ପ୍ରୟୋଜନ । ଏହାର ନାମ ସଂସାରଯାତ୍ରା ବା କ୍ରୀଡ଼ା, ଏଥିରେ କର୍ତ୍ତବ୍ୟପରାୟଣ ନ ହେଲେ ହାରି ଯିବାକୁ ହେବ । କର୍ତ୍ତବ୍ୟ ଆତ୍ମଜ୍ଞାନ ରକ୍ଷା କରିବ, ଅଥଚ କର୍ମ ଏବଂ ଭୋଗସାଧନ କରି ଦେହ ସଂସାର-ଯାତ୍ରା ନିର୍ବାହ-ପକ୍ଷେ ସହାୟକ ହେବ । କେବଳ ଜ୍ଞାନଦ୍ୱାରା ଦେହ-ସଂସାର ପ୍ରତି ଏକାନ୍ତ ଉଦାସୀନ ହେଲେ ବା କର୍ମଭୋଗାଦି ଏକବାରେ ତ୍ୟାଗ କଲେ ତାହା ଅକରଣେ ପ୍ରତ୍ୟବାୟ ବୋଲି

ଯେ ଦୋଷ ଅଛି, ତହିଁରେ ପରିଣତ ହେବ, ଅଥଚ ପ୍ରକୃତିର ଆଦେଶ ପାଳିତ ନ ହେବାରୁ ସେ ନିଷ୍କୃତି ଦେବା ବଡ଼ ସହଜ ନୁହେ, ବରଂ ପ୍ରକୃତିର କୋପ ବଡ଼ ଅସହ୍ୟ ଭୟାବହ ହୋଇ ଜ୍ଞାନ ବିନଷ୍ଟ କରିବା ସମ୍ଭବ । ଏପରି ଜ୍ଞାନକୁ ଏକବାରେ ତ୍ୟାଗ କରି ମୋହମୟ ବିଳାସାବରେ ମାତିଗଲେ କ୍ରମେ କ୍ରମେ ଏପରି ଅଧୋଗତି ଘଟିବ ଯାହା ପଶୁଭିଠାରୁ ନିକୃଷ୍ଟତର ହେବ । ଏ ଉଭୟ ମାର୍ଗ ରକ୍ଷାକରି ଜ୍ଞାନମାର୍ଗରେ ବିଶେଷ ଲକ୍ଷ୍ୟ ରଖି ସଂସାରୀୟ କର୍ମକ୍ଷେତ୍ରରେ ଅବଲୀଳାକ୍ରମେ ବିଚରଣ କରିବାର ଯେ ବ୍ୟବସ୍ଥା, ତାହାହିଁ ଏଠାରେ କର୍ତ୍ତବ୍ୟ ବୋଲି ଅବଧାରିତ ହେଉଅଛି । ଏରୂପ କର୍ତ୍ତବ୍ୟ ସଂସାର-ଯାତ୍ରା ସୁରକ୍ଷା କରେ ଏବଂ ପରକାଳକୁ ସମ୍ବଳ ସ୍ୱରୂପ ହୁଏ । ଅତଏବ କର୍ତ୍ତବ୍ୟପରାୟଣ ହେବା ମାନବୀୟ ଆତ୍ମାର ଧର୍ମ ଅଟେ । ଆତ୍ମଦେବ ! ଏବେ ଭୌତିକ ଦେହସଂସାର ଆଡ଼କୁ ଆସନ୍ତୁ; କର୍ତ୍ତବ୍ୟବିଜ୍ୟ ଅଧିକାର କରି ଇହ ପର ଉଭୟ ରକ୍ଷା କରନ୍ତୁ ।

## ୪୮ଶ ପାଠ—ନିଜ ଗୁଣ ସହିତ ପ୍ରକୃତି ଦେବୀର ଆତ୍ମାକୁ ସଂସାର ଆଡ଼େ ନିମନ୍ତ୍ରଣ ଓ ପ୍ରାକୃତ ରାଜ୍ୟଦାନ

ପରଂବ୍ରହ୍ମଣେ ନମଃ—ସର୍ବଶକ୍ତିମାନ୍, ସର୍ବୈଶ୍ୱର୍ଯ୍ୟଶାଳୀ ଶ୍ରୀ ପରମେଶ୍ୱରଙ୍କୁ ନମସ୍କାର ।

ଯେଉଁ ପ୍ରଭୁ ଅଂଶତଃ ପ୍ରତିଭାଷିକାକାରେ ଜୀବୋପାଧି ଧାରଣପୂର୍ବକ ସର୍ବଯୁଗରେ ପରିବ୍ୟାପ୍ତ ହୋଇ ପୂରିରହିଅଛନ୍ତି, ସେହି ସର୍ବମୟ ଆତ୍ମାରୂପୀ ହରିଙ୍କୁ ନମସ୍କାର । ଏହିଠାରୁ ଆତ୍ମଦେବ ଭୌତିକ ସଂସାର ଆଡ଼କୁ ଆଗମନପରାୟଣ ହେବାରୁ ପ୍ରକୃତିଦେବୀ ସ୍ୱୀୟ ପରିଚାରିକାବର୍ଗଙ୍କୁ ପ୍ରେରଣ କରି ସେହିମାନଙ୍କଦ୍ୱାରା ଆତ୍ମାକୁ ଅଭିବାଦନ ଓ ନିମନ୍ତ୍ରଣ କରାଇ ଜୀବୋପାଧି ପ୍ରଦାନପୂର୍ବକ ଆତ୍ମସ୍ଥ ଓ ପ୍ରକୃତିସ୍ଥରୂପେ ବରଣ କରୁଅଛି ।

ପ୍ରଥମରୁ ଅବିଦ୍ୟା ସହଚରୀ ଉପସ୍ଥିତ ହୋଇ ଜଣାଉଅଛି, "ଆତ୍ମଦେବ ! ଆପଣଙ୍କ ଦର୍ଶନରେ ମୁଁ କୃତାର୍ଥ ହେଲି, କୃତଜ୍ଞତାର ଚିହ୍ନ ସ୍ୱରୂପ ଆପଣଙ୍କୁ ଜୀବୋପାଧି ପ୍ରଦାନ କରୁଅଛି । ଏତଦ୍ଦ୍ୱାରା ଆପଣ ମୃଣ୍ମୟ ଜଗତକୁ ଆଲୋକିତ ଓ ପବିତ୍ର କରିବେ । ଆପଣଙ୍କୁ ସର୍ବତ୍ର ସମାଦର ଓ ପୂଜା ହେଉଥିବ, ଆପଣ ରାଜାଧିରାଜ ବୋଲାଇ ସମ୍ମାନ ପାଇବେ । ପୁଣି ନାନାପ୍ରକାର ଉପାଧିରେ ମଣ୍ଡିତ ହୋଇ ତତ୍ତତ୍ ଉପାଧିଗତ ସର୍ବପ୍ରକାର ସୁଖସମ୍ପଦାଦି ଭୋଗ କରିବେ । ହେଇଟି ଦେଖନ୍ତୁ—କେତେ କେତେ ପରିଚାରିକା ଆପଣ ଜୀବୋପାଧି ଧାରଣ କଲାମାତ୍ରେ ସମ୍ମୁଖରେ ଉପସ୍ଥିତ ହୋଇ ସ୍ତୁତିବାଦ ଆରମ୍ଭ କଲେଣି । ବୁଦ୍ଧିଦେବୀ ଉପସ୍ଥିତ ହୋଇ କହୁଅଛି, "ସ୍ୱାମିନ୍ ! ମୁଁ ଆପଣଙ୍କୁ ସୂକ୍ଷ୍ମ-ସ୍ଥୂଳ ଦେହରେ ଅଧିକାରୀ କରାଉଅଛି । ଆପଣ ଏହି ଦେହଦ୍ୱୟର ଅଧିକାର ସଙ୍ଗେ ସଙ୍ଗେ ଖଣ୍ଡାକାର ରୂପ ଦର୍ଶନ କରି ଏକବାରେ ମୋହିତ ଓ ପ୍ରୀତ ହୋଇଯିବେ । ଏତଦ୍ରୂପ ଦେହାକାର ରୂପରେ ଆପଣଙ୍କୁ ତନ୍ମୟ ପ୍ରାପ୍ତ ହୋଇ ସଂସାରୀ ପଦବାଚ୍ୟ ବୋଲି ନିଷ୍ଟୟ

କରନେବାକୁ ଦେବ । ଦେଇଛି, ଅନ୍ୟାନ୍ୟ ସେବକାମାନଙ୍କୁ ଦେଖନ୍ତୁ ।" ଅହଂକାର ଉପସ୍ଥିତ ହୋଇ ନିବେଦନ କରୁଅଛି, "ହେ ଦେବ । ଦେଖନ୍ତୁ ମୋ ଅଧୀନରେ ସର୍ବପ୍ରକାର କର୍ତ୍ତୃତ୍ୱ ଓ ସର୍ବପ୍ରକାର ଭୋକ୍ତୃତ୍ୱ ସର୍ବଦା ସବୁଠାରେ ପୂରିରହିଅଛି । ମୁଁ ଆଜ୍ଞାନୁସାରେ ସମସ୍ତ କର୍ମ କରିବି ଓ ତଦ୍ରୂପ କର୍ମଫଳରୂପ ଭୋଗର ମଧ୍ୟ ସଂପାଦନ କରିବି । ଆପଣ ଏକସ୍ଥାନରେ ସ୍ଥିରଭାବେ ଉପବିଷ୍ଟ ହୋଇ ଏ ସମସ୍ତ ଉପଭୋଗ କରିବେ ।" ଚିତ୍ତ ଉପସ୍ଥିତ ହୋଇ କହୁଅଛି, "ମୁଁ ଅତୀତ ଗର୍ଭରୁ ସବୁପ୍ରକାର କିପ୍ରଭାବ-ମାନଙ୍କୁ କାଢ଼ିଆଣି, ଆପଣଙ୍କୁ ସ୍ମରଣ କରାଇଦେଉଥିବି । ତହିଁରୁ ଆପଣ ଆମ୍ଭଙ୍କର ଆଗକୁ ଯାହା ଭଲ ବୋଲି ସ୍ଥିର କରୁଥିବେ ତହିଁରେ ତାକୁ ପ୍ରବର୍ତ୍ତାଉଥିବେ ।" ମନ କହୁଅଛି, "ମୁଁ ଦଶେନ୍ଦ୍ରିୟର ଅଧିନାୟକ । ଦେଖିବା, ଶୁଣିବା, କହିବା, ବୋଲିବା, ଦେବା, ନେବା ଆଦି ସବୁ ବିଷୟ ଇନ୍ଦ୍ରିୟମାନଙ୍କଦ୍ୱାରା ସାଧନ କରୁଥିବି । କ୍ଷଣେମାତ୍ର ସ୍ଥିର ରହିବନାହିଁ ।" ଏହିପରି ଇନ୍ଦ୍ରିୟବର୍ଗ କ୍ରମେ କ୍ରମେ ଉପସ୍ଥିତ ହେଲେ । ଶ୍ରବଣେନ୍ଦ୍ରିୟ ଜଣାଉଅଛି, "ମୁଁ ସବୁପ୍ରକାରର ବେଦଶାସ୍ତ୍ରାଦି, କାବ୍ୟନାଟକାଦି ଏବଂ ସର୍ବବିଧ ବିଷୟର ସର୍ବପ୍ରକାର ପ୍ରବନ୍ଧାଦି ଶୁଣାଇବି ଓ ମୁଗ୍ଧକର ନାନାପ୍ରକାର ଯନ୍ତ୍ରବାଦ୍ୟ, ଜୀବକଣ୍ଠ-ନିଃସୃତ ଶବ୍ଦ ଓ ଧ୍ୱନିରେ ଆପଣଙ୍କୁ ମୋହିତ କରାଇବି ।" ସ୍ପର୍ଶେନ୍ଦ୍ରିୟାଦି ପଞ୍ଚଜ୍ଞାନେନ୍ଦ୍ରିୟ ଏବଂ ହସ୍ତପଦାଦି ପଞ୍ଚକର୍ମେନ୍ଦ୍ରିୟ—ଏହିପରି ନିଜ ନିଜ ଗୁଣ କ୍ରିୟା ଓ ଜ୍ଞାନ କର୍ମସଂପାଦନ ସମ୍ବନ୍ଧେ ସବୁପ୍ରକାର ବର୍ଣ୍ଣନା ଦେଲେ । ଏହି ବର୍ଣ୍ଣନା ସଙ୍ଗେ ସଙ୍ଗେ ଦେଖି ଦେଖି ଆତ୍ମା ସୂକ୍ଷ୍ମ ଓ ସ୍ଥୂଳ ଦେହ, ଅନ୍ତଃକରଣ ଚତୁଷ୍ଟୟ ଦଶେନ୍ଦ୍ରିୟ, ପ୍ରାଣ ଓ ସର୍ବପ୍ରକାର ଅଙ୍ଗପ୍ରତ୍ୟଙ୍ଗଯୁକ୍ତ ଦେହାତ୍ମବିଗ୍ରହ ଦେଖିବାକୁ ପାଇ ତହିଁରେ ଅଭେଦ ଜ୍ଞାନସହିତ ମୁଁ ହୋଇ ଜଡ଼ିତ ହେଲେ ; ଏହା ସଙ୍ଗେ ସଙ୍ଗେ ଚରାଚର ସମେତ ବିଶ୍ୱବିରାଟ ମୂର୍ତ୍ତିର ଦର୍ଶନ ମିଳିଲା । ଏହି ସମୟରେ ଆତ୍ମା ଆପଣାକୁ ଦେହାଦି ସଙ୍ଗେ ସଙ୍ଗେ ସର୍ବକର୍ମର କର୍ତ୍ତା ଏବଂ ସବୁପ୍ରକାର କର୍ମଫଳରୂପ ଜ୍ଞାନ ବା ଭୋଗର ଜ୍ଞାତା ବା ଭୋକ୍ତା ବୋଲି ସ୍ଥିର କରି ଏହି ପରିଦୃଶ୍ୟମାନ ସଂସାରକୁ ସେ ସମସ୍ତ କର୍ମ ଓ କର୍ମଫଳାଦିର ଆଧାରରୂପେ ଦର୍ଶନ କଲେ ।

## ୪୯ ଶ ପାଠ—ଆତ୍ମାପ୍ରତି ତଦୀୟ ବିଜ୍ଞାନସଖାର ଉପଦେଶ

ଏହି ଅବସରରେ ଆତ୍ମାର ନିତ୍ୟସହଚର ବିଜ୍ଞାନସଖା ଆସି ଉପସ୍ଥିତ ହୋଇ ବୁଝାଉଅଛନ୍ତି, "ବନ୍ଧୋ ! ପ୍ରିୟ ସଖେ ! ତୁମ୍ଭର ଆମ୍ଭର ନିତ୍ୟସଙ୍ଗ, ଆମ୍ଭଙ୍କୁ ବିସ୍ମରଣ କରିବ ନାହିଁଟି ? ଜଗନ୍ମାତା ମା ଭଗବତୀଙ୍କ କୃପାରୁ ତୁମ୍ଭଙ୍କୁ ଏହି ଯେଉଁ ପିଣ୍ଡବ୍ରହ୍ମାଣ୍ଡାତ୍ମକ ବିଷମୟ ସତ୍ୟବତ୍ ପ୍ରତୀୟମାନ, କାଳ୍ପନିକ ସଂପଦ ଲାଭ ହୋଇଅଛି, ଏତଦ୍ଦର୍ଶନରେ ତୁମ୍ଭର ନିଜାତ୍ମ-ଦର୍ଶନଜ୍ଞାନ ବିସ୍ମୃତ ହୋଇ ତାଦାତ୍ମ୍ୟାଧ୍ୟାସ ଯୋଗତଃ ଏହାକୁହିଁ ଆତ୍ମରୂପେ ଗ୍ରହଣ କରି ଏଥିରେ ମୁଁ ବୋଲି ଅଭେଦଭାବେ ବିଜଡ଼ିତ ରହି ଏତଦ୍‌କୃତ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ ଏବଂ ସୁଖ, ଦୁଃଖ ମୋହାଦିରେ ଅଭିଭୂତ ହେବା ତୁମ୍ଭ ପକ୍ଷରେ

ଖୁବ୍ ସମ୍ଭବ । ଦେଖ, ଭଗବଣ୍ଟର ରାଜ୍ୟରେ ଦୁଇଟି ଦୂତିକା ସର୍ବପ୍ରଧାନ । ଗୋଟିକର ନାମ ପ୍ରବୃତ୍ତି, ଅପରଟିର ନାମ ନିବୃତ୍ତି । ନିବୃତ୍ତିର ସଙ୍ଗୀ ଓ ସହାୟକ ବୈରାଗ୍ୟ, ବୈରାଗ୍ୟର କାର୍ଯ୍ୟ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର ବା ବିଷୟବୃତ୍ତିତ୍ୟାଗ, ଧ୍ୟାନ, ଧାରଣା, ଆତ୍ମଲୟ ବା ଆତ୍ମସମାଧି, ଜ୍ଞାନ, ଦୟା, କ୍ଷମା, ଅଲୋଭ, ପ୍ରେମ, ପରୋପକାର, ସରଳତା, ଅଶାଠ୍ୟ, ସତ୍ୟ, ସନ୍ତୋଷ, ତିତିକ୍ଷା, ଦାନବ୍ରତ ଓ ତପସ୍ୟାଦି ସର୍ବପ୍ରକାର ସତ୍ତ୍ୱାତ୍ମକଗୁଣବିଶିଷ୍ଟ ଭାବ ଓ କ୍ରିୟା । ଏହି ନିବୃତ୍ତି ମୋହର ଆତ୍ମପ୍ରାଣସର୍ବସ୍ୱ ଅଟେ । ଏହା ମୋତେ କଦାଚ ପରିତ୍ୟାଗ କରେନାହିଁ ବା ମୁଁ ଏହାକୁ କଦାଚ ଲବମାତ୍ର ବିସ୍ମରଣ କରି ରହି ନ ପାରେ । ଏହି ନିବୃତ୍ତି ସାଧୁ ମହାତ୍ମାମାନଙ୍କର ସେବମାୟ ଅଟେ । ଏହି ନିବୃତ୍ତି ଧର୍ମ ଏବଂ ଜ୍ଞାନର ଆବାସ ସ୍ୱରୂପ । ଏହା ଐଶ୍ୱର୍ଯ୍ୟାଦିକୁ ପର୍ଯ୍ୟନ୍ତ ପ୍ରବେଶ କରାଇଦିଏ ନାହିଁ । ଐଶ୍ୱର୍ଯ୍ୟାଦି ଏହି ପବିତ୍ର ଗୃହର ପ୍ରାଚୀର ସ୍ୱରୂପ । ଏହି ପ୍ରାଚୀରଠାରୁ ବହୁ ବହୁ ସାଧକ ପ୍ରତ୍ୟାବର୍ତ୍ତନ କରନ୍ତି । ଏହି ନିବୃତ୍ତି ପରଂବ୍ରହ୍ମ, ପରମାତ୍ମ ପରମେଶ୍ୱର ଏବଂ ଜୀବାତ୍ମା—ଏହି ତିନଙ୍କର ସମ୍ବନ୍ଧକୁ ସର୍ବଦା ସଂଘଟନ କରୁଥାଏ । ଏଭିନ୍ନ ଅନ୍ୟ ଭାବ ଏହାଠାରେ ପ୍ରବେଶ କରି ନ ପାରେ । ଏହା ପ୍ରକୃତିର ଶୁଦ୍ଧସତ୍ତ୍ୱାଂଶରେ ଅବସ୍ଥାନ କରେ । ପ୍ରକୃତିର ରାଜସ, ତାମସ ସମଷ୍ଟିସୂତ୍ର ପ୍ରବୃତ୍ତିକୁ ଉତ୍ପାଦନ କରେ । ଏହି ପ୍ରବୃତ୍ତି ଜୀବାତ୍ମାର ଦେହସଂସାରମାର୍ଗ ପରିଭ୍ରମଣର ଦମ୍ ବା ବଳ ସ୍ୱରୂପ ଅଟେ ।

ଅନ୍ତଃକରଣଠାରୁ ଦେହସଂସାରାଦି ଜାଗତିକ ବସ୍ତୁ ପର୍ଯ୍ୟନ୍ତ ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ଏହି ପ୍ରବୃତ୍ତି ଦ୍ୱାରାଇ ପରିଚାଳିତ । ପ୍ରଲୋଭନ, ଉତ୍ତେଜନା, ଉଦ୍ଦୀପନା, ଉତ୍ସାହ ଓ ଉନ୍ମାଦନାଦି ଏହି ପ୍ରବୃତ୍ତିର ସହଚର; ଏହା ବିନା ସଂସାର ନୀରସ ମରୁଭୂମିରୁ ବଳି ଅନାଦରର ସାମଗ୍ରୀ ହୋଇ ରହିଥାନ୍ତା । ସର୍ବପ୍ରକାର କର୍ମ ଓ ସର୍ବପ୍ରକାର ଭୋଗ ବା ସର୍ବପ୍ରକାର ଭାବାଭାବଆଡ଼େ ଏହି ପ୍ରବୃତ୍ତି ଜୀବାତ୍ମାକୁ ସର୍ବଦା ଭ୍ରମାଉଅଛି । ପ୍ରବୃତ୍ତିମାର୍ଗରେ ଭ୍ରମି ଭ୍ରମି କ୍ଳାନ୍ତ ହେଲାରୁ ସ୍ୱତଃ ତହିଁରେ ନିବୃତ୍ତି ଜାତ ହୁଏ । ପୁଣି ସଙ୍ଗେ ସଙ୍ଗେ ସେହି ପ୍ରବୃତ୍ତି ତାହାର ଅନ୍ୟତମ ଦିଗକୁ ଶ୍ରାନ୍ତି ଦୂର କରାଇ ଆଶ୍ୱାସନା ଦେବା ଆଶାରେ ଆକର୍ଷଣ କରିନିଏ । ଆତ୍ମାର ପୁନଃ ପୁନଃ ବିଷୟୋପଭୋଗର କାରଣ ଏହି ପ୍ରବୃତ୍ତି । ଯେତେ ଅଧିକ ଶୁଣିବାରେ ବା ଦେଖିବାରେ ବା ଅନ୍ୟାନ୍ୟ ଜ୍ଞାନେନ୍ଦ୍ରିୟ ବା କର୍ମେନ୍ଦ୍ରିୟ କି ମନନେନ୍ଦ୍ରିୟର କାର୍ଯ୍ୟରେ ନିଯୁକ୍ତ ହୁଅ, ତାହା ସେତିକି ଅଧିକ ପୁଣି ପୁଣି ସେହି ସେହି କାର୍ଯ୍ୟଆଡ଼େ ଆଗକୁ ଆଗକୁ ଟାଣି ଟାଣି ନେଇ ନେଇ ଯାଉଥିବ । ଏମନ୍ତ କି ଉଦର-ପୂର୍ତ୍ତି କରି ଭୋଜନ କଲାପରେ ମଧ୍ୟ କେହି କେହି ବମନ କରି ପୁଣି ଭୋଜନ କରିଥାଏ । ପ୍ରବୃତ୍ତିଇ ଏହି ମୃଣ୍ମୟ ଜଡ଼ ଜଗତରେ ଜ୍ଞାନମୟ ଆତ୍ମାକୁ ଆବଦ୍ଧ କରି ରଖିଅଛି । ଏହାର ପ୍ରଭାବରେ ମୃତ୍ୟୁବ୍ୟାପ୍ତ ଅନିତ୍ୟ ଭୌତିକ ବ୍ରହ୍ମାଣ୍ଡ ପିଣ୍ଡାଦି ରୋଗ, ଦୁଃଖ, କଷ୍ଟ, ଇନ୍ଦ୍ରିୟତାଡ଼ନାଦି ଶୋକସନ୍ତପ୍ତମୟ ହୋଇଥିଲେ ସୁଦ୍ଧା ପତଙ୍ଗକୁ ଅଗ୍ନି ସୁନ୍ଦର ଓ ସୁଖଭୋଗ୍ୟରୂପେ ବୋଧ ହେଉଥିଲା ପରି ଆତ୍ମାକୁ ଏହି ସଂସାର

ସର୍ବବିଧ ସୁଖ ଶାନ୍ତିର ଭୋଗୋପବନନ୍ୟାୟ ପ୍ରଶସ୍ତମାନ ହେଉଅଛି । ଏହି ପ୍ରବୃତ୍ତି କ୍ଷୁଦ୍ର ନରାକାର ପିଣ୍ଡକୁ କେତେବେଳେ ଆକାଶରେ, କେତେବେଳେ ପାତାଳରେ, କେତେବେଳେ ଭୂଗର୍ଭରେ, କେତେବେଳେ ବା ସମୁଦ୍ର ବକ୍ଷରେ, ବିଶେଷତଃ ସବୁବେଳରେ ଏହି ଗୃହସଂସାର, କପଟ, ଛଳ, କଦର୍ଯ୍ୟ କୁହିସ୍ୟାପୂର୍ଣ୍ଣ ପାପବିପଣୀରେ ନିବଦ୍ଧ କରି ଆମ୍ବ ଦେଖାଇ ଆମ୍ବଡ଼ା ଭର୍ତ୍ତି କରି, ସୁନା ଦେଖାଇ ପିତ୍ତଳ ଦେଲା ନ୍ୟାୟ, ଅମୃତ-ଭୋଗ ପ୍ରଲୋଭନଦ୍ୱାରା ବିଷମୟ ବିଷୟରସ ପାନ କରାଇ ମ୍ରିୟମାଣ କରି ରଖିଅଛି । ଏହି ପ୍ରବୃତ୍ତି ଏକପ୍ରକାର ଜୀବର ଚିରବନ୍ଧ ବେଡ଼ି ସ୍ୱରୂପ ଏବଂ ଅନ୍ୟ ପକ୍ଷରେ ବଳାତ୍କାର ଗଳଧକ୍କା ସ୍ୱରୂପ ଏବଂ ସର୍ବପକ୍ଷରେ ଭୟଂକର ଦୁର୍ନିବାର ଦୁଃଖ, ମୋହ-ମାୟାପ୍ରଦ ଶତ୍ରୁସ୍ୱରୂପ ଅଟେ । ନିବୃତ୍ତିର ଗତି ଊର୍ଦ୍ଧ୍ୱଦିଗକୁ ; ଏହା ଆତ୍ମଜ୍ଞାନ ଓ ଆତ୍ମବିଶ୍ରାନ୍ତିର ସଦାୟକାଙ୍କ୍ଷୀ ଏବଂ ପ୍ରବୃତ୍ତି ସବୁବେଳେ ଅଧୋମୁଖୀ ; ଏହାର ଗତି ନିମ୍ନଆଡ଼କୁ । ପ୍ରକୃତିନିର୍ମିତ ଦେହ ସଂସାରସଞ୍ଚିତ କର୍ମ ଏବଂ ଭୋଗମୟ ସୁଖ, ଦୁଃଖ ମୋହଜଡ଼ିତ ବିଷୟାଦି ଏହାର ନିତ୍ୟ ଲୀଳାପୀଠ ଅଟେ । ସଂସାର କ୍ଷେତ୍ରରେ ନିବୃତ୍ତି ଏବଂ ପ୍ରବୃତ୍ତି ମିଳିମିଶି ସମସ୍ତ କର୍ମ ଏବଂ ଭୋଗାଦି ସମ୍ପାଦନ କରୁଅଛନ୍ତି । ନିବୃତ୍ତି ଆତ୍ମାର ସାତ୍ତ୍ୱିକ ଧର୍ମ, ପ୍ରବୃତ୍ତି ପ୍ରକୃତିର ରାଜସ-ତାମସମୟ ପ୍ରବାହ । ଅତଏବ ଆତ୍ମା ଏବଂ ପ୍ରକୃତି ଉଭୟେ ଏକତ୍ର ମିଶିକରି ରହିଥିବାରୁ ଉଭୟର ଧର୍ମ ନିବୃତ୍ତି ଏବଂ ପ୍ରବୃତ୍ତି ଏକଯୋଗରେ ଆତ୍ମାର ଭୋଗ ଏବଂ ମୁକ୍ତି ଉଭୟବିଧ ଫଳସାଧନପରାୟଣ ହୋଇଅଛନ୍ତି । ଭୋଗ ସର୍ବଦା ଦେହେନ୍ଦ୍ରିୟାଦିଦ୍ୱାରା ସାଧିତ ହେଉଥିବାରୁ ବଡ଼ ସହଜ, ମାତ୍ର ମୋକ୍ଷ, ଜ୍ଞାନାତ୍ମକ ସୂକ୍ଷ୍ମ ବସ୍ତୁ ଥିବାରୁ ପ୍ରବୃତ୍ତିଯୁକ୍ତ ସଂସ୍କାର ପକ୍ଷରେ କଷ୍ଟକର; ଏହିହେତୁରୁ ପ୍ରବୃତ୍ତିର ଗରିଷ୍ଠ ଅଧିକ । ସେହି ପ୍ରବୃତ୍ତି ସଂସ୍କାରଦ୍ୱାରା ନାନାବିଧ ଅଭ୍ୟାସଆଡ଼େ ସର୍ବଦା ନିଯୁକ୍ତ । ଏହିହେତୁ ସଂସ୍କାରାନୁଯାୟୀ ଅଭ୍ୟାସ ଅନୁଷ୍ଠିତ ହୁଏ ।

ଏହି ଅଭ୍ୟାସ ସତ୍ ହେଉ ବା ଅସତ୍ ହେଉ କିମ୍ବା ମିଶାମିଶି ପ୍ରକାରର ହେଉ, ଯେଉଁପରି ହେବ ସେହିପରି କାର୍ଯ୍ୟଆଡ଼େ ପ୍ରବୃତ୍ତି ମତାଇ ଦେଉଥିବ; ଏ ଅନୁସାରେ କେହି କେହି ଧର୍ମଆଡ଼େ, କେହି କେହି ଭୋଗସମ୍ପାଦନ ଯଥାବିହିତ-କର୍ମଆଡ଼େ ଇତ୍ୟାଦି ନାନାବିଧ ଦିଗରେ ପ୍ରଧାବିତ ହେଉଅଛନ୍ତି । ଏ ପଥ ବା ଦିଗର ସଂଖ୍ୟା ନାହିଁ; ପ୍ରବୃତ୍ତିର ମାର୍ଗ ଏବଂ ଦିଗ ଅସଂଖ୍ୟ ଅସଂଖ୍ୟ ପ୍ରକାରର ଅଟେ । ଏହା ଉପସ୍ଥିତ ସୁଖାଭାସମୟ, ଅଥଚ ପରିଶେଷରେ ଆତ୍ମାର କ୍ଲେଶ ବା ବନ୍ଧନର କାରଣ ହୁଏ । ନିବୃତ୍ତିରେ ଆତ୍ମାନନ୍ଦ ସଂଭୋଗ ଓ ପ୍ରବୃତ୍ତିରେ ଦୈହିକ ସୁଖଦୁଃଖମୟ ବିଷୟାନନ୍ଦ ସଂଭୋଗ ସାଧିତ ହୁଏ । ଆତ୍ମା ସାଧାରଣତଃ ଦେହଭାବାପନ୍ନ ଥିବାରୁ ପ୍ରବୃତ୍ତି ଏ ସଂସାରରେ ସର୍ବାଧିକାରିତ୍ୱ ପ୍ରାପ୍ତ ହୋଇଅଛି । ଏହି ପ୍ରବୃତ୍ତିମୟ କର୍ମପ୍ରବାହରେ ଭାସମାନ ଜୀବ, କର୍ମ କରି କରି ଅବଶ ହୋଇ ପଡ଼ିଗଲାରୁ ତାହାର ବିଶ୍ରାମ ସୁଖଭୋଗର ଅଭିଳାଷ ଜାତ ହୁଏ । ଏହି ବିଶ୍ରାମ ଅବସାନରେ ପୁଣି କର୍ମଆଡ଼େ ପ୍ରବୃତ୍ତି ଝୁଙ୍କିନିଏ । ଏହିପରି କର୍ମ ଓ ଭୋଗରେ

ଜୀବ ଅବସନ୍ନ ହେଲେ ଭଗବତ୍ କୃପାରୁ ନିବୃତ୍ତି ଜାତ ହୋଇ ପ୍ରବୃତ୍ତିକୁ ଆତ୍ମଜ୍ଞାନ ବା ଧର୍ମକର୍ମାନୁଷ୍ଠାନ ଆଡ଼କୁ ଆଗମୁଁହା କରିଦିଏ; ତହୁଁ ପ୍ରବୃତ୍ତି ନିବୃତ୍ତିମାର୍ଗରେ ଆତ୍ମାକୁ ପ୍ରବର୍ତ୍ତାଇଦିଏ । ସେଆଡ଼େ କ୍ରମେ ଅଗ୍ରସର ହେଲେ ଆତ୍ମା ମଙ୍ଗଳମୟ ଭୁବନ ପରିଦର୍ଶନ କରି ସତ୍‌ଜ୍ଞାନ ଓ ସତ୍‌କର୍ମ ଏବଂ ସତ୍‌ସଙ୍ଗ, ସତ୍‌ସେବାରେ ନିଯୁକ୍ତ ହୋଇଯାନ୍ତି । ଭୋଗ-ମାର୍ଗରେ ଏବଂ ଭୋଗ ସଙ୍କଟକ ନାନାବିଧ କର୍ମମାର୍ଗରେ ପ୍ରବୃତ୍ତି ବଢ଼ିଲେ ଏହା ଆତ୍ମାକୁ ସଂସାରସ୍ଥ ନାନାବିଧ ଉଚ୍ଚ ଉଚ୍ଚ ସୋପାନରେ ଆରୋହଣ କରାଇ କ୍ରମେ କ୍ରମେ ରାଜ-ପଦବୀର ଉପରଆଡ଼କୁ ପର୍ଯ୍ୟନ୍ତ ଉଠାଇବାକୁ ଚେଷ୍ଟାକରେ; ଅତଏବ ପ୍ରବୃତ୍ତିର ମାର୍ଗ ବଡ଼ ସଙ୍କଟାପନ୍ନ, ଅଥଚ ଆତ୍ମାର ଏହି ପ୍ରବୃତ୍ତିମାର୍ଗରେ ଭ୍ରମି ଭ୍ରମି ଶେଷରେ ଯେଉଁ-ଠାରେ ସ୍ଥାନ ନିର୍ଦ୍ଦିଷ୍ଟ ହୁଏ, ସେ ସ୍ଥାନ ଆତ୍ମାପକ୍ଷରେ ଯାହା, ସେଠାରୁ ଅନ୍ୟ କୌଣସି ଉଚ୍ଚନୀଚ ଓ ମଧ୍ୟସ୍ଥାନ ଆଡ଼କୁ ଗଲେ ମଧ୍ୟ ଆତ୍ମାପକ୍ଷରେ ସବୁଇ ସମାନ ।

ଏହିଭଳି ପ୍ରବୃତ୍ତି ମାର୍ଗରେ ମଧ୍ୟସ୍ଥିତ ସ୍ଥାନମାନଙ୍କ ମଧ୍ୟରେ ସ୍ଥାନର ବିଶେଷତ୍ୱ ତୁଳନାଦ୍ୱାରା କଳ୍ପନା କରାଯାଇ ନ ପାରେ, ମାତ୍ର ଆତ୍ମାର ତହିଁରେ କିଛି ବିଶେଷତ୍ୱ ନାହିଁ । ଆତ୍ମା, ଯଥାତଥା ଓ ଯଦ୍ରୂପ ତଦ୍ରୂପ ଆତ୍ମାମାତ୍ର । ପ୍ରବୃତ୍ତିର ଭ୍ରମଣରେ କେବଳ ଭ୍ରମଣ ସାର ହୁଏ । ଏହି ପ୍ରବୃତ୍ତିର ଶକ୍ତି ଅଚିନ୍ତ୍ୟ ଅପରିସୀମ । ଏହାରିବଳରେ ଯେ ମନୁଷ୍ୟଇ କେବଳ ଅପାର ସଂସାରରେ ପରିଭ୍ରମଣ କରୁଅଛି, ଏହା ନୁହେ । ଏହି ପ୍ରବୃତ୍ତି ମହାପୁରୁଷ ପରମେଶ୍ୱରଙ୍କୁ ବ୍ରହ୍ମା ବା ପ୍ରଜାପତିରୂପରେ ସୃଷ୍ଟି ନିର୍ମାଣରେ ଓ ବିଷ୍ଣୁଦେବଙ୍କୁ ପାଳକରୂପରେ ଏବଂ ମହାଦେବଙ୍କୁ ପରିବର୍ତ୍ତନ ବା ପ୍ରଳୟକାରୀରୂପରେ ନିତ୍ୟ କରାଉଅଛି । ଋଷି-ମୁନି ଏବଂ ଯୋଗୀମାନଙ୍କୁ ମଧ୍ୟ ନାନା ଭ୍ରମଣରେ ଭ୍ରମାଉଅଛି । ସଂସାରୀ ମୂଢ଼ର କଥା ବା କେଉଁଠାରେ ? ଏହିରୂପେ ଏହି ପ୍ରବୃତ୍ତିଦ୍ୱାରା ଏହି ଆତ୍ମପୁରୁଷ ସର୍ବଦା ବିଷୟ ସଂସାର ପ୍ରଭୃତି ଧ୍ୟାନ କରୁଅଛି । ଏହି ଧ୍ୟାନରୁ ଭୋଗ ଓ କର୍ମମୟ ସର୍ବବୃତ୍ତିବିଶିଷ୍ଟ ଅନ୍ତଃକରଣ ସର୍ବପ୍ରକାର ବାସନା ସହଯୋଗରେ ଦେହବିଷୟର ସଙ୍ଗଲାଭ ହୋଇ ଯାଉଅଛି । ତହିଁରୁ ନାନାବିଧ କାମନା ଜାତ ହେଉଅଛନ୍ତି । ସେହି ସେହି ପ୍ରତ୍ୟେକ କାମନାନୁଯାୟୀ ଫଳଲାଭର କିଛି ବିଳମ୍ବ ବା ବିଘ୍ନ ଘଟିଲେ ତହିଁରୁ ବିରାଗ ବା କ୍ରୋଧ ଜାତ ହେଉଅଛି । ଏହି କ୍ରୋଧଦ୍ୱାରା ଧୈର୍ଯ୍ୟ ଓ ଶାନ୍ତି ପ୍ରଭୃତି ସଦ୍‌ଗୁଣଚୟ ବିଲୀନ ହେଉଅଛନ୍ତି । ଏହାପରେ ସଙ୍ଗେ ସଙ୍ଗେ ରୁକ୍ଷ କ୍ରୋଧରୁ ମୋହ ଜାତ ହୋଇ, ମୁଁ କିଏ ? କଅଣ ? ଏତଦ୍ରୂପ ଦେହାତ୍ମ ସ୍ମରଣର ନିର୍ଦ୍ଦିଷ୍ଟ ଭାବ ଗୋଳମାଳ ହୋଇ ଯିବାରୁ ତଦ୍ରୂପ ଆତ୍ମ-ବିସ୍ମୃତ, ଆତ୍ମାକୁ ଆବରଣ କରି ଅଜ୍ଞାନାନ୍ଧକାରରେ ଅଭିଭୂତ କରି ରଖିଅଛି; ଏହାର ନାମ ସ୍ମୃତିବିଭ୍ରମ । ଏହି ଭ୍ରମରୁ ଦେହାକାର ଚିଦାଭାସହ ବୁଦ୍ଧି-ବୃତ୍ତି ମୋକ୍ଷ ବା ନାଶ ହୋଇ ଯାଉଅଛି । ବୁଦ୍ଧି ନାଶ ହେବାରୁ ଆତ୍ମା ଜ୍ଞାନଶୂନ୍ୟ ସ୍ଥାବରବତ୍‌ତୁଲ୍ୟ ଅବସ୍ଥା ଧାରଣ କରୁଅଛି ।

ସଂସାର ମୋହର ପରାକାଷ୍ଠା । ଏହିଠାରେ ଏହି ଅନିତ୍ୟ କ୍ଷଣଭଙ୍ଗୁର ଓ ଅସାରଜାତ ସବୁବେଳେ ଦେଖୁ ଦେଖୁ ଓ ଅନୁଭବ କରୁ କରୁ ଆତ୍ମା ଏହି ସଂସାର

ମୋହରୁ କ୍ଷଣକ ପାଇଁ ମୁକ୍ତ ଲଭ ପାରନାହିଁ । ବରଂ ଏହି ପ୍ରବୃତ୍ତିବଳରେ ସର୍ବଦା ପୁନଃ ପୁନଃ ସେହି ପ୍ରବୃତ୍ତିର ସ୍ରୋତରେ ଭାସମାନ ହେଉଅଛୁ ।

## ୧୦୦ ପାଠ—ଆଧ୍ୟାତ୍ମିକ ଯୁଗ ନିର୍ଣ୍ଣୟ

ଭକ୍ତଜନସଖା ପୁଣି କହୁଅଛନ୍ତି, "ସଖେ ପ୍ରିୟ ବନ୍ଧୋ, ଜୀବାତ୍ମନ୍ ! ଆହୁରି ଟିକିଏ ଦେଖ । ଏହି ପ୍ରବୃତ୍ତି ସତ୍ତ୍ୱଗୁଣରେ ମିଶିଲେ ଜ୍ଞାନାମୃତ ସୋମରସ ପାନ କରାଏ । ଜ୍ଞାନ, ଧର୍ମ ଏବଂ ବୈରାଗ୍ୟାଦି ଓ ଶମ ଦମାଦି, ଶ୍ରଦ୍ଧା, ଶୌଚାଦି, ମିତ୍ରଭାବ, ସ୍ୱାଧୀନ ପ୍ରେମ ଓ ସମତା, ସୌହାର୍ଦ୍ଦ୍ୟାଦି ଏବଂ ପରନିଜଭେଦରହିତ ସୁଖରସାଦି ଓ ପରୋପକାର ବ୍ରତ ପାଳନାଦି ସର୍ବସତ୍ତ୍ୱାତ୍ମକ କ୍ରିୟା ଏବଂ ଜ୍ଞାନ ଓ ଭୋଗାଦି ପ୍ରଦାନ କରାଏ । ଏ ଅବସ୍ଥା ବା ସମୟ ଜୀବାତ୍ମା ପକ୍ଷରେ ସତ୍ୟଯୁଗ; ଏଥିରେ ଧର୍ମ, ନ୍ୟାୟ, ସତ୍ୟ, ସନ୍ତୋଷ, ଦୟା, କ୍ଷମା, ତ୍ୟାଗ ଓ ସଦାଚାର ଉପକାରାଦି ବ୍ୟବହାରିକ କ୍ରିୟା ରୂପେ ଅନୁବର୍ତ୍ତନ କରନ୍ତି ଓ ଅନୁଷ୍ଠିତ ହୁଅନ୍ତି । ଏହି ଯୁଗ ବା କାଳର ମନୁଷ୍ୟଜାତି ବ୍ରାହ୍ମଣପଦବାଚ୍ୟ । ଏହି ପ୍ରବୃତ୍ତି ସତ୍ତ୍ୱ ଏବଂ ରାଜସ ଗୁଣରେ ମିଶିଲେ ଏହା ଜ୍ଞାନମିଶ୍ରିତ ବିଷୟସୁଖରସ ସମ୍ଭୋଗରେ ଆତ୍ମାକୁ ପ୍ରବର୍ତ୍ତାଇ ଦିଏ ।"

ଧର୍ମକର୍ମାଦିରେ ଯେଉଁ ପ୍ରବୃତ୍ତି ଜାତ କରାଏ, ତାହା ବିଶେଷ ଭାବରେ ସଂସାରୀୟ ପଦଗୌରବ, ମାନମର୍ଯ୍ୟାଦା, ବଡ଼ପଣିଆ, ବିଳାସ, ବିପୁଳ ଧନସମ୍ପତ୍ତି ଓ ଦେଖାଇ ହେବାର ସବୁପ୍ରକାର ଯଶ, ପୌରୁଷାଦି ଆଡ଼େ ମତାଇଦିଏ । ଏଥିରୁ ଏହିପ୍ରକାର ସମ୍ପତ୍ତି ଲାଭରେ ଏକାଗ୍ର ବୁଦ୍ଧି ଜାତ ହୋଇ ଅନୁରୂପ ତପସ୍ୟା, ବ୍ରତ, ନିୟମ, ଦାନ, ଯଜ୍ଞ ଓ ପରୋପକାରାଦିରେ ଆତ୍ମାର ପ୍ରବୃତ୍ତି ଜନ୍ମେ । ଏ ସବୁ ରଜୋଗୁଣାକ୍ରାନ୍ତ ସକାମ ଧର୍ମରେ ପରିଣତ ହୁଏ । ଏ ଅବସ୍ଥା ବା କାଳ କି ସମୟର ନାମ ତ୍ରେତାଯୁଗ । ଏ ଯୁଗ ଆତ୍ମାକୁ ଅଧିକାରରେ ରଖି ସବୁ ପ୍ରକାରର ଧର୍ମ ପ୍ରଦାନ କରେ । ଏଥିରେ ବଳ, ବୀର୍ଯ୍ୟ, ଶୌର୍ଯ୍ୟ ଓ ବିଦ୍ୟାଦି କ୍ଷାତ୍ରଗୁଣମାନ ଉଦିତ ହୋଇ ଧର୍ମରକ୍ଷା ଓ ଅଧର୍ମର ବିନାଶ ସାଧନୋପଯୋଗୀ ଅଦ୍ଭୁତ କୌଶଳମାନ ଉଦ୍ଭାବନ କରନ୍ତି । ଶାନ୍ତି, ସୁଖାଦିର ସୁରକ୍ଷା କରି ସର୍ବପ୍ରକାର ବାଧାବିଘ୍ନାଦିର ନିବାରଣ ନିମିତ୍ତ ବଦ୍ଧପରିକର ହୁଅନ୍ତି । ଏହି ଯୁଗର ମନୁଷ୍ୟଜାତି ବିଶେଷତଃ କ୍ଷତ୍ରିୟପଦବାଚ୍ୟ । ଏହି ପ୍ରବୃତ୍ତି ରଜଃତମଃଗୁଣ-ଯୁକ୍ତ ହେଲେ ଆତ୍ମାକୁ ଉତ୍କୃଷ୍ଟ ଭାବରେ ଆତ୍ମମ୍ଭରୀ, ବିଳାସୀ, ଆଡ଼ମ୍ବରୀ, କେବଳ ସଂସାରୀୟ ସୁଖସମ୍ଭୋଗଶାଳୀ, ଧନ, ମଣି, ରତ୍ନ, ସ୍ୱର୍ଣ୍ଣ, ରୌପ୍ୟାଦି ସଂଗ୍ରହପ୍ରିୟ କରାଇଦିଏ । ନିଜ ଓ ଆତ୍ମୀୟବର୍ଗର ସ୍ୱାର୍ଥସାଧନ କର୍ତ୍ତବ୍ୟ ବୋଲି ପରିଦୃଷ୍ଟ ହୁଏ । ଯାହା କିଛି ଅବା ଧର୍ମକର୍ମାଦି ଅନୁଷ୍ଠିତ ହୁଏ ବା ବ୍ରତ ନିୟମାଦି ପାଳିତ ହୁଏ, ସେ ସବୁ ଧନ, ସମ୍ପତ୍ତି ପ୍ରଭୃତିର ବୃଦ୍ଧି ସକାଶେ । ମାତ୍ର ଧନ, ଦୀନ ଦରିଦ୍ର, ସାଧୁ ଅଭ୍ୟାଗତ-

ମାନଙ୍କର ଉପକାର ନିମିତ୍ତ ବ୍ୟୟିତ ହେବା ସର୍ବଥା ବିଧେୟ । ଏହି ରଜୋତମ-ମିଶ୍ରିତ ପ୍ରବୃତ୍ତି ଯେଉଁ ସମୟକୁ ବ୍ୟାପ୍ତ କରେ ସେହି ସମୟ ବା କାଳର ନାମ 'ଦ୍ୱାପର' । ଏହି ସମୟର ମନୁଷ୍ୟ ପ୍ରଧାନତଃ ବୈଶ୍ୟପଦବାଚ୍ୟ । କେବଳ ତମୋଗୁଣାକ୍ରାନ୍ତ ପ୍ରବୃତ୍ତିଯୁକ୍ତ ସମୟର ନାମ 'କଳି' । ଏଥିର ମନୁଷ୍ୟ ପ୍ରାୟ ଶୂଦ୍ରବର୍ଣ୍ଣ । ଏ ସମୟର ଜ୍ଞାନ ବା କ୍ରିୟାକଳାପାଦି ବଡ଼ ଜଘନ୍ୟ । ଏଥିରେ ଦାନ, ବ୍ରତ ବା ତପସ୍ୟାଦି ଧର୍ମ-କର୍ମର କୌଣସି ନିୟମ ନ ଥାଏ । ଇନ୍ଦ୍ରିୟପରାୟଣତା, ବିଳାସିତା, ଗର୍ବ, ମୋହ, ଧନର ବଡ଼ିମା, ଆଡ଼ମ୍ବର, ଉଦରମ୍ଭରିତା, ସ୍ୱେଚ୍ଛାଚାରିତା, ଆମୋଦଯୁକ୍ତ ମାଦକ-ପ୍ରିୟତାଦି ମନ୍ଦ ଗୁଣମାନେ ସ୍ୱଭାବକୁ ଅଧିକାର କରି ରଖନ୍ତି । ଧନସଞ୍ଚୟ ଓ ଧନର ଆୟୋଜନ ଏକମାତ୍ର କାର୍ଯ୍ୟ ହୁଏ । ଧନଦ୍ୱାରାହିଁ ଯଶ, ସମ୍ମାନ, ପ୍ରଶଂସା ଓ ଆଦର ହୁଏ । ଆତ୍ମଜ୍ଞାନଚର୍ଚ୍ଚା ବିଲୁପ୍ତପ୍ରାୟ ହୁଏ । ଧର୍ମର ଛଦ୍ମମାତ୍ର ଦେଖାଇ ଅନ୍ତରେ କୂଟକପଟାଦି କ୍ରୀଡ଼ା କରନ୍ତି । ମିଥ୍ୟା, ଛନ୍ଦ ଓ ପ୍ରବଞ୍ଚନାଦିରେ ଯେଉଁ ନୈପୁଣ୍ୟ ଜାତ ହୁଏ ତାହାହିଁ ପୌରୁଷେୟ ହୁଏ । ଉଦର ବା କୁଟୁମ୍ବ ପୋଷଣ କେବଳ କର୍ତ୍ତବ୍ୟ କର୍ମ ହୁଏ । ପରନିନ୍ଦା ବା ଗ୍ଳାନି, ପରବାଦ, ପରଧନାପହରଣ, ପରର ଅନିଷ୍ଟାଦି ନିଜ ମହତ୍ତ୍ୱର ପରିଚୟକ ହୁଏ । ଏହିରୂପେ ଗୁଣପ୍ରବାହବଶତଃ ଯେଉଁ ମନ୍ଦ ପ୍ରବୃତ୍ତିର ସୃଷ୍ଟି ଦେଖାଯାଏ ତାହା କାହାରି ବଶତାପନ୍ନ ନୁହେ । ଏହା ଗୁଣମାନଙ୍କର ସ୍ୱଭାବସିଦ୍ଧ ଧର୍ମ । ପ୍ରଥମତଃ ସତ୍ତ୍ୱଗୁଣ, ଦ୍ୱିତୀୟରେ ରଜୋଗୁଣ ତହିଁରେ ମିଶ୍ରିତ ହେଲାରୁ ତାହା ସତ୍ତ୍ୱ-ରଜୋମୟ ହୁଏ । ତୃତୀୟରେ ରଜୋତମର ମିଳନ । ଚତୁର୍ଥରେ କେବଳ ତମୋଗୁଣ ଶୁଦ୍ଧତା ମଳୀନ୍ତକାର ଅଭିନୟ କରେ ।

କେବଳ ସତ୍ତ୍ୱଗୁଣ ଉଦୟ ସମୟରେ ତହିଁରେ ଯେ ଅନ୍ୟ ଗୁଣମାନେ ଏକାବେଳକେ ନ ଥାନ୍ତି, ତାହା ନୁହେ । ସେମାନେ ଅର୍ଥାତ୍ ରଜ ଏବଂ ତମ ଗୁଣମାନେ ଏତେ ଅଳ୍ପ ପରିମାଣରେ ଥାଆନ୍ତି ଯେ ତାହା ନ ଥିଲା ପ୍ରାୟ କାର୍ଯ୍ୟ କରି ହୁଅନ୍ତି ନାହିଁ । ବୁଝିବାକୁ ଗଲେ ଏହିପରି ରଜ ସତ୍ତ୍ୱର ଆଧିକ୍ୟରେ ତମ କମ୍ ପରିମାଣରେ ଥାଏ । ରାଜସ ତାମସର ସଂଯୋଗରେ ସତ୍ତ୍ୱଗୁଣ ଅଳ୍ପ ରହେ । ବିଶୁଦ୍ଧ ତମୋଦୟବେଳେ ସତ୍ତ୍ୱ ଏବଂ ରଜୋଭାଗ ନିତାନ୍ତ କ୍ଷୀଣ ଥାଏ । ସତ୍ୟରେ ଧର୍ମ ଓ ଜ୍ଞାନାଦିର ସଞ୍ଚୟ, ତ୍ରେତାରେ ଧର୍ମ, କାମ, ବଳବୀର୍ଯ୍ୟାଦି ଏବଂ ଭୋଗାଦିର ଉତ୍ସାହ, ଦ୍ୱାପରରେ ଧନସଞ୍ଚୟ ଓ ଧର୍ମକର୍ମାଦିର ସାତ୍ତ୍ୱିକ କାର୍ଯ୍ୟରେ ଧନବ୍ୟୟ, ସତ୍କାର୍ଯ୍ୟରେ ଓ ଧର୍ମାଦିରେ ଉତ୍ସାହ ଥାଏ । କଳିରେ କେବଳ ଧନସଞ୍ଚୟ ଓ ନିଜ ଭୋଗରେ ଆଡ଼ମ୍ବର ପ୍ରଦର୍ଶନାଦିରେ ବ୍ୟୟମାତ୍ର ପରିଲକ୍ଷିତ ହୁଏ । ମନୁଷ୍ୟର ଜନ୍ମର ଆଦି ମୁହୂର୍ତ୍ତରୁ ସତ୍ତ୍ୱଗୁଣ ଓ ସତ୍ୟ ଯୁଗର ସଞ୍ଚାର ଅର୍ଥାତ୍ ସହଜଜ୍ଞାନ ଅବିକୃତ ଥାଏ; ପରେ ବଳସଂଗ୍ରହ ଓ ଜ୍ଞାନସଂଗ୍ରହ—ଏହା 'ତ୍ରେତା' । ତୃତୀୟରେ ଧନାଦି ଓ ସୁଖସମ୍ଭୋଗାଦି ସଂଗ୍ରହରେ ବ୍ୟସ୍ତ – ଏହା 'ଦ୍ୱାପର'; ଚତୁର୍ଥରେ ଅଶକ୍ତ ଅବସ୍ଥା—ଏହାହିଁ କଳି । ଏଥିରେ ଶୌଚାଶୌଚ, ଭଲ ମନ୍ଦାଦିର ନିୟମ ରହିପାରେ

ନାହିଁ । ଏହାପରେ ଶେଷ ନିଦାନ ମୃତ୍ୟୁର ଅଧିକାର ଉପସ୍ଥିତ ହୁଏ, ଜ୍ଞାନ ବା ସଂଜ୍ଞା ଲୋପ ପାଏ । ଏହା ପ୍ରଳୟ ନାମରେ ଖ୍ୟାତ ଅଟେ ।

ସତ୍ୟରେ ପୂର୍ଣ୍ଣମାତ୍ରାରେ ସତ୍ୟ ବିରାଜମାନ କରିଥିଲେ ସୁଦ୍ଧା ତାହାର ପ୍ରଥମ ଚତୁର୍ଥାଂଶରେ ସତ୍ୟ, ଦ୍ୱିତୀୟ ଚତୁର୍ଥାଂଶରେ ତ୍ରେତାର ଆଭାସ, ତୃତୀୟ ଚତୁର୍ଥାଂଶରେ ଦ୍ୱାପରର ଆଭାସ ଏବଂ ଚତୁର୍ଥ ଚତୁର୍ଥାଂଶରେ କଳିର ସତ୍ତା ପ୍ରକାଶ କରେ । ତହିଁଉତ୍ତାରୁ ସତ୍ୟ ତ୍ରେତାରେ ପରିଣତ ହୁଏ । ଏହିପରି ତ୍ରେତାର ପ୍ରଥମ ଚତୁର୍ଥାଂଶରେ ଅଳ୍ପ ସତ୍ୟ, ଦ୍ୱିତୀୟ ଚତୁର୍ଥାଂଶରେ 'ତ୍ରେତା', ତୃତୀୟ ଚତୁର୍ଥାଂଶରେ 'ଦ୍ୱାପର' ଓ ଚତୁର୍ଥ ଚତୁର୍ଥାଂଶରେ କଳିର ଉଦୟ ହେଲାରୁ 'ତ୍ରେତା' ଦ୍ୱାପରରେ ପରିଣତ ହୁଏ । ଦ୍ୱାପରର ପ୍ରଥମ ଭାଗରେ ସତ୍ୟ ଅଳ୍ପ, ଦ୍ୱିତୀୟ ଭାଗରେ ଆଂଶିକ ତ୍ରେତା, ତୃତୀୟ ଭାଗରେ ଦ୍ୱାପର ଏବଂ ଚତୁର୍ଥ ଭାଗରେ କଳି ସ୍ପର୍ଶ କଲାରୁ ଦ୍ୱାପର କଳିରେ ପରିଣତ ହୁଏ । କଳିର ପ୍ରଥମ ଅଂଶ ନାମମାତ୍ର ସତ୍ୟ, ଦ୍ୱିତୀୟ ଅଂଶ ନାମମାତ୍ର ତ୍ରେତା ଓ ତୃତୀୟ ଭାଗ ନାମଧେୟ ଦ୍ୱାପର ମିଶ୍ରିତ ଥାଏ ଏବଂ ଚତୁର୍ଥ ଅର୍ଥାତ୍ ଶେଷ ଭାଗ କଳିରେ କଳି ଅର୍ଥାତ୍ ପୂର୍ଣ୍ଣ 'କଳି' ବା ଘୋର କଳିରେ ପରିଣତ ହୁଏ । ଏହିପରି ଦେଖାଯାଏ 'ସତ୍ୟ'କୁ ଶେଷଭାଗରେ 'କଳି' ସ୍ପର୍ଶ କଲାରୁ ତାହାର ଅନ୍ତଭାଗ ଉପସ୍ଥିତ ହୁଏ । ତହୁଁ ତାହା ସତ୍ୟ ଆକାରରେ ରହି ନ ପାରି ତ୍ରେତାରେ ପରିଣତ ହୁଏ । ଏହିପରି ତ୍ରେତାକୁ ଶେଷରେ କଳି ସ୍ପର୍ଶ କଲାରୁ ତାହା ଦ୍ୱାପରରେ ଏବଂ ଦ୍ୱାପରକୁ ଶେଷରେ କଳି ଆକ୍ରମଣ କଲାରୁ ତାହା କଳିରେ, ପୁଣି କଳିର ଶେଷଭାଗକୁ ସେହି କଳି ମାତ୍ର ଅବଶେଷ ରହି ଘୋର କଳିରେ ପରିଣତ ହୁଏ । ଏଥିରେ 'ସତ୍ୟ', 'ତ୍ରେତା' ଓ 'ଦ୍ୱାପର'ର ଆଂଶିକ ଧର୍ମ ଯାହା ମାତ୍ର ଥାଏ, ତାହା ସମୂଳେ ବିନଷ୍ଟ ହୋଇ କେବଳ ଘୋର କଳିର ଗୁଣ ଏବଂ କ୍ରିୟାଦି କଳିର ପୂର୍ଣ୍ଣ ପ୍ରଭାବ ସହିତ ଅବଶିଷ୍ଟ ରହନ୍ତି । ଏହା ଜ୍ଞାନ, ଧର୍ମ, ବିବେକ, ନ୍ୟାୟ, ସତ୍ୟ, ଦୟା, କ୍ଷମା, ପରୋପକାରାଦି ସର୍ବପ୍ରକାର ପ୍ରକୃତିଦତ୍ତ ସଦ୍‌ଗୁଣମାନଙ୍କୁ ବିନଷ୍ଟ କରେ ଏବଂ ଏତଦ୍ରୂପ ଜ୍ଞାନାଦିର ପ୍ରଳୟ ଘଟାଏ । ଦେଖା ଯାଉଅଛି, କଳି ଯେପରି ପ୍ରତ୍ୟେକ ଯୁଗସନ୍ଧିରେ ଉପସ୍ଥିତ ହୋଇ ପୂର୍ବ ଯୁଗକୁ ଶେଷ କରେ, ସେହିପରି ତାହାର ସର୍ବନାଶୀ ସ୍ୱଭାବ ତାହାରି ଶେଷ ସନ୍ଧିରେ ଉପସ୍ଥିତ ହୋଇ ଆପଣାର ପ୍ରଳୟ ଆପେ ସୃଷ୍ଟି କରେ ଏବଂ ପୁଣି ସେହି ସନ୍ଧିକାଳୀନ କଳି ପ୍ରଳୟ ପରପାରରେ ସତ୍ୟାଲୋକର ଉଦୟ ହୁଏ । କଳିର ସତ୍ତାସ୍ପର୍ଶରେ ଯୁଗସନ୍ଧି ଉପସ୍ଥିତ ହେବା ନିର୍ଣ୍ଣୟ କରାଯାଇଅଛି ।

ଏହି ଯୁଗସନ୍ଧି ଦେହୀ ପକ୍ଷରେ ଯେପରି ସୂକ୍ଷ୍ମ ଗଣନାନୁଯାୟୀ ଦୈହିକ ମାନସିକ ପରିବର୍ତ୍ତନ ଘଟାଏ ଏବଂ ପୂର୍ବ ନିୟମକୁ ପରିବର୍ତ୍ତନ କରି ନୂତନ ନିୟମ ଆଣି ଥୋଇବାକୁ ଅପେକ୍ଷା କରେ, ସେହିପରି ଦେହୀ ଦେହମୟ ସଂସାରକୁ ମଧ୍ୟ ପୂର୍ବାବସ୍ଥାରୁ ପର ଅବସ୍ଥାରେ ଉପନୀତ କରେ । ଦେହ ସମ୍ବନ୍ଧେ ଏହି ପରିବର୍ତ୍ତନରେ ଦୈହିକ, ମାନସିକ ବୃତ୍ତିର ଯେଉଁ ପରିବର୍ତ୍ତନ ଘଟେ, ତାହା ବୟଃସନ୍ଧିର କାର୍ଯ୍ୟ ନାମରେ କଥିତ

ହୁଏ । ତାହା ମଧ୍ୟ ସମସ୍ତ ସମୟରେ ଏକପ୍ରକାର ଜଣା ପଡ଼ିଥାଏ । ଏକ ପ୍ରକାର ଦୁଃଖ-କଷ୍ଟାଦି ମଧ୍ୟ ସେହି ବୟଃସନ୍ଧି ପ୍ରଦାନ କରେ । ଏହା ପିଣ୍ଡ ସମ୍ବନ୍ଧରେ ଦେଖାଯାଏ । ଆଜି ପିଣ୍ଡମୟ ବ୍ରହ୍ମାଣ୍ଡର ଏତଦ୍ରୂପ ଯୁଗସନ୍ଧି (ଯାହା ବୟଃସନ୍ଧିର ନାମାନ୍ତର ଅର୍ଥାତ୍ ପିଣ୍ଡ ସମ୍ବନ୍ଧେ ସେହି ସନ୍ଧିର ନାମ ବୟଃସନ୍ଧି ଏବଂ ବ୍ରହ୍ମାଣ୍ଡ ସମ୍ବନ୍ଧେ ସେହି ସନ୍ଧିର ନାମ ଯୁଗସନ୍ଧି ) ସମସ୍ତ ପ୍ରାଣୀମାନେ ଭଲରୂପେ ଅନୁଭବ କରନ୍ତି ଅର୍ଥାତ୍ 'ତାହା' 'ମାତର' ଏବଂ ଆସ୍ଥର ବ୍ୟବହାର ଓ ଧର୍ମ, ଜର୍ତ୍ତିବ୍ୟାଦିର ଏବଂ ସମସ୍ତ ସଂପର୍କ ସୁଖ, ଦୁଃଖାଦିର ସବୁପ୍ରକାର ସଂସାରସ୍ଥ ପୂର୍ବ ଭାବର ପରିବର୍ତ୍ତନ କରାଇ ନୂତନ ବିଧିନିର୍ଦ୍ଦିଷ୍ଟ ନୀତି ସଂସ୍ଥାପନର ପ୍ରୟାସ ପାଏ । ସେହି ସନ୍ଧିରେ ଅର୍ଥାତ୍ ପୂର୍ବର ବିଦାୟ ଏବଂ ଉତ୍ତରର ଆଗମନ ମଧ୍ୟରେ ଅନିବାର୍ଯ୍ୟ ସଂଘର୍ଷ ଘଟେ, ଏବଂ ପର ତାକୁ ବାହାର କରି ନିଜେ ତାହାର ସ୍ଥାନ ଅଧିକାର କରିବାକୁ ସମୁଦାୟ ଶକ୍ତି ସହିତ କୌଶଳ କ୍ରିୟାଦି ପ୍ରୟୋଗ କରେ । ମାତ୍ର ହେଲେ କଣ ହେବ, ପୁରୁଣା ତ କଳଦୋଷଦୂଷିତ ଅଧର୍ମ, ଅନ୍ୟାୟ, ଅସତ୍ୟ ଓ ଅଜ୍ଞାନାଦିରେ ପ୍ରପୀଡ଼ିତ ହୋଇ ଲକ୍ଷ୍ମୀଛଡ଼ା ହୋଇଥାଏ । ଆଜି ନୂତନ ବିଧିବିଧାନର ଆଶୀର୍ବାଦ ବଳରେ ବର୍ତ୍ତମାନ; ସୁତରାଂ ଏହି ପାପ ଏବଂ ପୁଣ୍ୟ, ଧର୍ମ ଏବଂ ଅଧର୍ମ, ନ୍ୟାୟ ଏବଂ ଅନ୍ୟାୟ, ସତ୍ୟ ଓ ମିଥ୍ୟା ମଧ୍ୟରେ ଘୋର ସଂଘର୍ଷ ସଂଘଟିତ ହୁଏ । ଶେଷରେ ଅଧର୍ମର କ୍ଷୟ ଓ ଧର୍ମର ଜୟ ହୁଏ । ଏହି ନିୟମର ଅଧୀନରେ ଏ ପ୍ରବୃତ୍ତିମୟ ସଂସାର ସତ୍ୟ, ତ୍ରେତା, ଦ୍ୱାପର ଓ କଳି ନାମଧେୟ ଯୁଗଚତୁଷ୍ଟୟନିର୍ମିତ ଚକ୍ରଦ୍ୱାରା ଏକପରେ ଅନ୍ୟ, ଅନ୍ୟପରେ ଅପର ଏବଂ ଅପରପରେ ଇତରବଦିକ୍ରମେ ପରିଭ୍ରମିତ ଓ ପରିବର୍ତ୍ତିତ ହେଉଅଛି । ଏ ମଧ୍ୟରେ କଳି ବଡ଼ ବିଚିତ୍ର ଶକ୍ତିବିଶିଷ୍ଟ କାଳ ଅଟେ । ଏହା ଯେତେ-ବେଳେ ସତ୍ୟ, ତ୍ରେତା, ଦ୍ୱାପରାଦିକୁ ଶେଷଭାଗରେ ସ୍ପର୍ଶକରେ, ସେତେବେଳେ ସେମାନ-ଙ୍କର ପ୍ରତ୍ୟେକର ଶେଷ ପରିବର୍ତ୍ତନ ସଂଘଟନ କରାଏ । ପୁଣି ଯେଉଁ ସମୟରେ କଳିର ଶେଷଭାଗକୁ କଳି ଅବଶିଷ୍ଟ ରହେ, ତାହା ଘୋର କଳିରେ ପରିଣତ ହେଲେ ସେ ପରିଣାମ ଫଳ ଯେ ସଂସାର ପକ୍ଷରେ ଅତୀବ ଭୟାବହ ହେବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଏପରି ଯୁଗର ପରିବର୍ତ୍ତନ କାହିଁକି ହୁଏ, ଏହା ପ୍ରଶ୍ନର ବିଷୟୀଭୂତ ନୁହେ, ସଂସାରର, ଅର୍ଥାତ୍ ପରିବର୍ତ୍ତନର ନାମାନ୍ତର ବା ଆଦର୍ଶ ବିଶେଷ ଅଟେ । ଗୋଟିଏ ବର୍ଷ ମଧ୍ୟରେ ସପ୍ତାହ, ପକ୍ଷ, ମାସ ଏବଂ ଋତୁର ପରିବର୍ତ୍ତନ, ମନୁଷ୍ୟର ଦେହ ମଧ୍ୟ ଅବସ୍ଥାନୁଯାୟୀ ପରିବର୍ତ୍ତନ, ଅହରହ ମୁହୁର୍ମୁହୁଃ ମନୁଷ୍ୟର ପରିବର୍ତ୍ତନ—ଏହିରୂପେ ଏ ସଂସାର ପରିବର୍ତ୍ତନଶୀଳ ଅଟେ । ମନୁଷ୍ୟର ସ୍ୱଭାବ ଏହିପରି ଯେ ସେ ନାନା ପ୍ରକାର ପଦାର୍ଥ ଭକ୍ଷଣ କରେ ସ୍ୱାଦୁର ପରିବର୍ତ୍ତନ ଅନୁଭବ କରିବାପାଇଁ, ରୁଚି ପରିବର୍ତ୍ତନ ପାଇଁ ବହୁ ବହୁ ପ୍ରକାର ବସ୍ତ୍ରାଦି ଓ ନାନାବିଧ ପଦାର୍ଥାଦି ଓ ନାନା ପ୍ରକାର ପାଠ୍ୟାଦି ବ୍ୟବହାର କରିଥାଏ । ଏ ବିଶାଳ ବିଶ୍ୱବ୍ରହ୍ମାଣ୍ଡ କୋଟି କୋଟି ମଧ୍ୟରେ କୋଟି କୋଟି ପ୍ରକାରର ବିଭିନ୍ନ ଜୀବ ସୃଷ୍ଟି କରି ସେହି ସେହି ପ୍ରତ୍ୟେକ ପ୍ରତ୍ୟେକ ପ୍ରକାରର ଏକ ଏକ

ଜୀବଠାରେ ବିଭିନ୍ନ ପ୍ରକାରର ଭୋଗ ଏବଂ କର୍ମ ସମ୍ପାଦନ ନିମିତ୍ତ ନାନାବିଧ ଭିନ୍ନ ଭିନ୍ନ ସଂସ୍କାର ପ୍ରଦାନ କରି, ଭଗବତୀ ପରମେଶ୍ୱରୀ ଯୋଗମାୟା ପ୍ରକୃତିଦେବୀ ନିଜର ସନ୍ତୋଷ-ଜନକ କ୍ରୀଡ଼ା ଦେଖିବା ପାଇଁ ଏ ସଂସାରକୁ ପରିବର୍ତ୍ତନଶୀଳ କରି ନିର୍ମାଣ କରିଅଛନ୍ତି । ଯୁଗ ପରିବର୍ତ୍ତନବେଳକୁ ନିଜର ମହାଶକ୍ତି ସମ୍ବଳିତ ମହାପୁରୁଷ ଭଗବାନ ହରିଙ୍କୁ ଏହି ସଂସାରରେ ଅବତୀର୍ଣ୍ଣ କରାଇ କଳୁଷ ନିବାରଣ ଓ ସତ୍ୟ ଧର୍ମାଦିର ପୁନଃ ସ୍ଥାପନ କରାଉଅଛି । ଏହି ଅବାରିତ ଲୀଳାସ୍ରୋତରେ ଜୀବନଚୟ ସର୍ବଦା ଭ୍ରାମ୍ୟମାନ ହେଉ-ଅଛନ୍ତି । ଅଥଚ ଅହଂକାର, ମୋହ ଏତେ ପ୍ରବଳ ଯେ କୀଟାଦପି କ୍ଷୁଦ୍ରତମ ନଗଣ୍ୟ କୀଟାଣୁ ସଦୃଶ ଜୀବ ଏଥିରେ ନିତ୍ୟ ସ୍ଥାୟୀ ସତ୍ତ୍ୱ ସ୍ଥାପନ କରିଥିଲି ପ୍ରାୟ ଦର୍ପ, ଦମ୍ଭ, ଆଡ଼ମ୍ବର ଦେଖାଉଅଛି ।

ବିଜ୍ଞାନସଖୀ ପୁଣି ବୁଝାଉଅଛନ୍ତି, "ପ୍ରିୟ ସଖେ ଜୀବାତ୍ମନ୍ ! ସାର ସଂକ୍ଷେପରେ ଆଉ ଅଳ୍ପ ଦୁଇ କଥା କହୁଅଛି । ଏହି ପ୍ରବୃତ୍ତିମୟ ପ୍ରବାହ ମଧ୍ୟରେ କଳି ବଡ଼ ଭୟାବହ; ବିଶେଷରେ ମହାକଳି ବା ଶେଷ ଘୋରକଳି ଅତୀବ ମୋହପୂର୍ଣ୍ଣ ପ୍ରମାଦ ସ୍ଥାନ ଅଟେ । ଏଥିରେ ପ୍ରଖ୍ୟାତ ଦେହାତ୍ମଭ୍ରମ, ବିଳାସିତା ଓ ଅର୍ଥଗୃଧ୍ନୁତା ପ୍ରବଳ ଥିବାରୁ ଅଧର୍ମ ଓ ଅଜ୍ଞାନାଦି ଧର୍ମ ଓ ଜ୍ଞାନ ନାମ ଧାରଣ କରି ତଦ୍ରୂପ ଧର୍ମ ଓ ଜ୍ଞାନାଦି ରୂପେ ସେହି ସ୍ଥାନରେ ଅନଧିକାର ପ୍ରବେଶ କରି ବ୍ୟବହୃତ ହୁଅନ୍ତି । ଅବିଦ୍ୟା ବା ମ୍ଳେଚ୍ଛ ବିଦ୍ୟା ଅର୍ଥାତ୍ ଜଡ଼ବାଦ ଚର୍ଚ୍ଚାଦି ବିଦ୍ୟା ନାମରେ କୁଶିକ୍ଷା, ଶିକ୍ଷା ନାମରେ ଅସୁର ବା ପ୍ରେତ ପିଶାଚ କ୍ରିୟାଦି ଶ୍ରେଷ୍ଠ ମନୁଷ୍ୟ କ୍ରିୟାରୂପେ ଆଦୃତ ହୁଅନ୍ତି । ଶାସନ, ଧର୍ଷଣ, ପୀଡ଼ନ ଓ ପେଷଣ ଆକାରରେ ଏବଂ ପାଳନ, ପୋଷଣ, ଦୋହନ, ଶୋଷଣର ଭୀଷଣ ଛନ୍ଦ ସୂତ୍ରରେ ପରିଚାଳିତ ହୁଅନ୍ତି । ଧର୍ମଭାବ ଓ ଧର୍ମକ୍ରିୟାଦି ବାହ୍ୟ ଚିହ୍ନ ବା ଶୁଷ୍କ ଆଡ଼ମ୍ବର ଯବନିକା ତଳେ ଆବୃତ ରହି ପାପଭାବ ବା ଜଘନ୍ୟ କ୍ରିୟାଦି ପ୍ରକୃତ କାର୍ଯ୍ୟର ସ୍ଥାନ ଅଧିକାର କରି ବସନ୍ତି ।"

ମିଥ୍ୟା, କପଟ, ପ୍ରବଞ୍ଚନା, ଶଠତା, କୃତ୍ରିମତା, ବିସାଦ ଓ ଚୌର୍ଯ୍ୟାଗ୍ରହାଦି, ଛଳ, ବଳ, କୌଶଳପୂର୍ଣ୍ଣ ଯୁକ୍ତି ବା କ୍ରିୟା ସାହାଯ୍ୟରେ ନିଜ ନିଜ ଦୁରଭିସନ୍ଧି ସିଦ୍ଧ କରି ନେଇ ତଦ୍ଦ୍ୱାରା ମହତ୍ତ୍ୱ ବୁଦ୍ଧିର ପରିଚୟ ଦିଅନ୍ତି । ପ୍ରକୃତ ଶିଷ୍ଟତା ବା ଭଦ୍ରତା ଉପ-ହାସର ଯୋଗ୍ୟ ହୁଏ । ବଳବତ୍ତା ଓ ବହୁବାଗ୍ମିତା ସଭାରେ ଆଦରଣୀୟ ହୁଏ । କୁତ୍ସିତ ପାପମୟ ମନ୍ଦବୃତ୍ତିର ଉତ୍ତେଜକ ଖାଦ୍ୟପେୟାଦି ଦୈହିକ ପୁଷ୍ଟି ସାଧନର ଉପଯୋଗୀ ବୋଲି ସର୍ବତ୍ର ସେବନୀୟ ହୁଏ । ସେତେ ମନ୍ଦ ଆଚରଣ ଓ ମନ୍ଦକ୍ରିୟାକାରୀମାନେ ଲମ୍ବ-ଶାଟ୍ ପଟାବୃତ ହୋଇ ଗମ୍ଭୀର ଭାବ ଦେଖାଇ ନିଜ ବଡ଼ିମା ଦେଖାନ୍ତି, କେବଳ ଧନଲାଭ ଇଚ୍ଛା ଭିତରେ ରଖି ନାନା ପ୍ରକାର ଧର୍ମଧ୍ୱଜତା, ବାଗ୍ମିତା ଓ କ୍ରିୟାକୌଶଳାଦି ନାନାବିଧ ଛଳନା ସହକାରେ କ୍ରୀଡ଼ା କରନ୍ତି । ଏହି ଘୋର କଳିରେ ଅସଦାଗ୍ରହ, ମ୍ଳେଚ୍ଛଭାବ, ପାପକ୍ରିୟା ଓ ପାପଭୋଗାଦି ମନୁଷ୍ୟର ବାହ୍ୟାନ୍ତରବ୍ୟାପୀ ଅଧିକାର

କର ରହନ୍ତ । ଏହା ସବୁ ଏପରି ଦୋଷାବହ ଓ ପାପମୟ ବୋଲି ପ୍ରବୃତ୍ତି ଜଣାଇ ନ ଦେଇ ବରଂ ଆଗରେ ନାନାବଧ ପ୍ରଲୋଭନର ପ୍ରଦର୍ଶନୀ ଦେଖାଇ ପଛଆଡ଼ରୁ ପୃଷ୍ଠ ଧକ୍କା ଦେଇ ଗଳବଦ୍ଧ ରଜ୍ଜୁରେ ବେଗବାନ କଳ ଦୃଢରୂପେ ଏହି ପାପମୟ ସ୍ରୋତରେ ଭସାଇ ଭସାଇ ନେଉଥାଏ । ପ୍ରବୃତ୍ତିକୁ ଏହିଠାରେ ଭଲରୂପେ ପରିଚୟ କରା-ଯାଇଥାଉ ।

ପ୍ରିୟ ସଖେ ଜୀବାତ୍ମନ୍, ତୁମ୍ଭେ ଆତ୍ମଧୈର୍ଯ୍ୟ ଅବଲମ୍ବନ ପୂର୍ବକ ଏତଦ୍ରୂପ ଘୋର କଳର ପ୍ରବୃତ୍ତିମୟ ଦୃଶ୍ୟରେ ମୋହିତ ହେବନାହିଁ । ସ୍ମରଣ କରୁଥିବ, ଆତ୍ମା ଅତୀତ ଓ ଅନାଗତ କାଳର ଅଧୀନ ନୁହନ୍ତି । କାଳ, ତାଙ୍କ ପାଖରେ ନିତ୍ୟ ବର୍ତ୍ତମାନ ରୂପେ ବିରାଜମାନ । ଆତ୍ମା ନିତ୍ୟ ବର୍ତ୍ତମାନ ତୁରୀୟ ଆତ୍ମସ୍ଥ ଅବସ୍ଥାରେ ବିରାଜମାନ ରହି, ବିମଳାକାଶରେ ମୃଗତୃଷ୍ଣା ଅସତ୍ ମିଥ୍ୟା କଳ୍ପିତ ସତ୍ୟ ନଗରୀବ ପ୍ରଦର୍ଶନ କରାଇଲାପରି ଆପଣାର ସତ୍ୟଜ୍ଞାନାନନ୍ଦମୟ ବିମଳ ଅଙ୍ଗରେ ଏହି ପ୍ରବୃତ୍ତି ପ୍ରବାହ ସହ ଭୂତ, ଭବିଷ୍ୟତ ଓ ବର୍ତ୍ତମାନାଦ କାଳ ବିଭାଗକୁ ଅସତ୍ ରୂପେ ପ୍ରକାଶ କରି ଧାରଣ କରି-ଅଛନ୍ତି । ଏହି ମାୟିକ ଅସତ୍ୟ ଅନିତ୍ୟ ପ୍ରବୃତ୍ତି ପ୍ରବାହ ଘଟିତ କାଳମୟ ଚିହ୍ନ ଆତ୍ମାର କ୍ରୀଡ଼ା ବା ଲୀଳାତ୍ମକ ଦୃଶ୍ୟ ବିଶେଷମାତ୍ର, ଆଉ ଏଥିରେ ସତ୍ୟଜ୍ଞାନ କଳ୍ପନା କରି ମୋହିତ ହେବାର ବିଡ଼ମ୍ବନା ଭିନ୍ନ ଅନ୍ୟ କିଛି ନୁହେ । କାଳତ୍ରୟ, ନିଜ ନିଜ ଅନିତ୍ୟତା ନିଜେ ନିଜେଇ ଆତ୍ମା ସମ୍ମୁଖରେ ପ୍ରମାଣ କରିଅଛନ୍ତି । ଅତୀତ, ଅଦୃଶ୍ୟ ଅନ୍ଧକାର ଗର୍ଭରେ ନିପତିତ ଥାଇ ଦେଖାଯାଉନାହିଁ । ଅନାଗତ ବା ଭବିଷ୍ୟତ୍ ତଦ୍ରୂପ ଅଜ୍ଞାତ ରାଜ୍ୟର ଅନିର୍ଦ୍ଦିଷ୍ଟ ଅନ୍ଧକାରମୟ ଗର୍ଭରେ କେଉଁଠାରେ ଅଛି ତାହାର ଠିକଣା ନାହିଁ । ଅର୍ଥାତ୍ ସେ କେତେବେଳେ କେଉଁ ଆକାରରେ ଆବିର୍ଭୂତ ହେବ, ତାହା ଅନବଧାରିତ; ତେବେ ବର୍ତ୍ତମାନ ଉକ୍ତ ଉଭୟ ଅତୀତ ଓ ଅନାଗତ କାଳକୁ ତଦ୍ରୂପ ନାମବିଶିଷ୍ଟ କରି ପ୍ରକାଶ କରୁଅଛି । ପୁଣି ବର୍ତ୍ତମାନକୁ ଦେଖିଲା ବେଳକୁ ସେ ଛାୟାବାଜି ବା ବିଜୁଳିଠାରୁ ଆହୁରି ଅଧିକ ଚଞ୍ଚଳ ଓ ଅସ୍ଥାୟୀ । ଭବିଷ୍ୟତ୍ ବର୍ତ୍ତମାନର ଅଜ୍ଞାତ ଭଣ୍ଡାର । ବର୍ତ୍ତମାନକୁ ହେଲାଟି, ଏଇ ବୋଲି ଲକ୍ଷ୍ୟ କରୁ କରୁ ସେ ଅତୀତ ଗର୍ଭରେ ପଡ଼ି ଅଦୃଶ୍ୟ ହୋଇ ସାରିଲାଣି । ଗାଈର ଦୁଗ୍ଧ ଯେପରି ଦୁଗ୍ଧାଗାର ଏବଂ ବତ୍ସର ମୁଖ ମଧ୍ୟସ୍ଥ ସନ୍ଧି ସ୍ଥାନରେ ଟିକିଏ ହେଲେ ବିଶ୍ରାମ କରିବାକୁ ଅବସର ପାଏ କି ନା ସନ୍ଦେହ, ଠିକ୍ ସେହିପରି ଭବିଷ୍ୟତ୍ ଭଣ୍ଡାରରେ ଥିବା ବିଷୟ ବର୍ତ୍ତମାନଠାରେ ଦେଖାଦେଲା ମାତ୍ରେ ତାହା ଅତୀତ ଦ୍ୱାରା ଶୋଷିତ ଓ ଆକର୍ଷିତ ହୋଇ ତାହାରି ଗର୍ଭକୁ ଚାଲିଯାଏ । ତେବେ ବର୍ତ୍ତମାନ ଆକାରରେ ଯେଉଁ ବିଷୟଜ୍ଞାନ ପରିଦୃଷ୍ଟ ବା ପରିଜ୍ଞାତ ହେଉଅଛି, ତାହା ତତ୍ସମ୍ବନ୍ଧୀୟ ପୌନଃପୁନିକ ସ୍ମରଣ ଦ୍ୱାରା ଅନୁଭୂତ ହେଉଅଛି । ଯେପରି ଜଳ-ପ୍ରବାହକୁ ଦେଖି ଏକ ସ୍ଥାନର ଜଳକୁ ଏଇ ବୋଲି ନିର୍ଦ୍ଦେଶ କରୁ କରୁ ସେହି ଜଳ ଆଗକୁ ବହିଯାଇ ସ୍ଥାନାନ୍ତରିତ ହୋଇଥାଏ ଏବଂ ପୂର୍ବ ସ୍ଥାନର ଜଳ ଅଲକ୍ଷ୍ୟ ଦ୍ରୁତ ଗତିରେ ଆସି ତାହାର ସେହି ସ୍ଥାନକୁ ଅଧିକାର କରେ, ମାତ୍ର ପ୍ରବାହ ଦ୍ୱାରା ଜଳର

ଯେଉଁ ପୌନଃପୁନକ ବଦ୍ୟମାନତା ତାହାଲ ସେଇ ଜଳ ଏଇ ବୋଲି ପ୍ରଖ୍ୟାତ ଜନ୍ମାଇବାର କାରଣ ହୁଏ, ବର୍ତ୍ତମାନ କାଳଦ୍ୱାରା ପ୍ରକାଶିତ ବିଷୟ ସେହିପରି ଭବିଷ୍ୟତ୍ ଗର୍ଭରୁ ଆସି ଅତୀତ ଗର୍ଭରେ ପ୍ରବେଶ କରି ଅଦୃଶ୍ୟ ହୋଇ ଯାଉଅଛୁ । କେବଳ ବିଷୟଜ୍ଞାନର ଯେଉଁ ପୁନଃ ପୁନଃ ଅନବଚ୍ଛିନ୍ନ ସ୍ମରଣ, ତାହା ଏକହରେ ପୂର୍ଣ୍ଣତା ପ୍ରାପ୍ତ ହୋଇ ଅନୁଭୂତର ଯୋଗ୍ୟ ହୋଇଅଛି । ଅଥଚ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଏହି ଅନତ୍ୟର ସଂଯୋଗଜନିତ ପୂର୍ଣ୍ଣତା ବିଷୟ ଜ୍ଞାନାକାରରେ ପରିଣତ ହୋଇ ଆତ୍ମାଦ୍ୱାରା ପ୍ରକାଶିତ ହୋଇଅଛି । ପୁଣି ଆତ୍ମା, ସେହି ବିଷୟଜ୍ଞାନସମଷ୍ଟିକୁ ସତ୍ୟ ବୋଲି କଳ୍ପନା କରି ସେହି ନିଜକୃତ କଳ୍ପନା ଦ୍ୱାରା ନିଜେଇ ଆବୃତ ଥିଲପ୍ରାୟ ଆପଣାକୁ ଆପେ ପରିଚୟ କରି ନ ପାରି ସ୍ୱୟଂ ବିଷୟଜ୍ଞାନାକାରାକାରିତ ବିଗ୍ରହରୂପେ ଆଭାସିତ ହେଉଅଛି । ଆତ୍ମାର ଏହି ଲୁଚୁକାଳି ଖେଳ ହିଁ ସଂସାରଭାବ । ଏବେ ବିଜ୍ଞାନସଖା ଜୀବାତ୍ମାକୁ ପ୍ରବୋଧ ଦେଇ ବକ୍ତବ୍ୟ ଶେଷ କରି କହୁଅଛନ୍ତି, "ବନ୍ଧୋ ଜୀବାତ୍ମନ୍ ! ଆତ୍ମସମ୍ବାଦ ପ୍ରାପ୍ତ ହୋଇ ଆତ୍ମଦର୍ଶନ ଲାଭ କଲାପରି ସଂସାର-କାନନରେ ପ୍ରବେଶ କରିବା ନିମିତ୍ତ ପ୍ରକୃତି ଦ୍ୱାରା ନିମନ୍ତ୍ରିତ ହେବା ଅବକାଶ ମଧ୍ୟରେ ମୁଁ ତୁମ୍ଭଙ୍କୁ ସଂସାରସ୍ୱ ପ୍ରବୃତ୍ତି ମାର୍ଗ ପ୍ରଦର୍ଶନ କରାଇ ଏବେ ସର୍ବଶେଷରେ କହୁଅଛି—ଆସ, ଏହି ଭୌତିକ ଜଗତରେ ବିଚରଣ କର, ମୁଁ ତୁମ୍ଭ ସଙ୍ଗ କଦାଚ ପରିତ୍ୟାଗ କରିବି ନାହିଁ । ଦେଖ, ନଦୀସ୍ରୋତ ଯେପରି ମନୁଷ୍ୟଙ୍କୁ ଅନାୟତ୍ତ ଗତିରେ ଭସାଇନେଇ କେଉଁଠାରେ ନା କେଉଁଆଡ଼େ ମାଡ଼ି ଦେଇ ତାହାର ଜୀବନାନ୍ତ କରେ, ମାତ୍ର ସେ ଯଦି କୌଣସି ଆଶ୍ରୟ ପାଇ ବା ସନ୍ତରଣାଦିଦ୍ୱାରା ବିପରୀତ ଆଡ଼କୁ ଗତି ପରିବର୍ତ୍ତନ କରି କୂଳକୁ ଲାଗିଯାଏ, ତେବେ ତାହାର ସୁରକ୍ଷା ସୁନିଶ୍ଚିତ; ସେହିପରି ଏହି ପ୍ରବୃତ୍ତି ପ୍ରବାହ ବିଷୟମାର୍ଗ ଗତିରେ କାଳଚକ୍ର ସହିତ ଜୀବାତ୍ମାକୁ କେଉଁଆଡ଼େ ନା କେଉଁ ଦିଗକୁ ଭସାଇ ନେଇ କେଉଁଠାରେ କଅଣ କରିଦେବ, ତାହାର ଇୟତ୍ତା ନାହିଁ । ଅତଏବ ପ୍ରତ୍ୟେକ ବିଷୟର ବେଗ ଆରମ୍ଭ ବେଳକୁ ମୁଁ ତୁମ୍ଭଙ୍କୁ ଚେତନା ଓ କର୍ତ୍ତବ୍ୟବୁଦ୍ଧି ପ୍ରଦାନ କରିବା ନିମିତ୍ତ ଠିକ୍ଏ ହେଲେ ଥକ୍କା ମରାଇ ଥୟ କରାଇ ଦେଉଥିବି । ସେ ମଧ୍ୟରେ ଏଥିରେ ପ୍ରବର୍ତ୍ତିବାକୁ ହେବ କି ନା, ତୁମ୍ଭର ଭିତରେ ଭିତରେ ଆତ୍ମସନ୍ଦେହ ବା ବିତର୍କ ଆରମ୍ଭ ହେବା ସ୍ୱାଭାବିକ । ସେହି ଅବସରରେ 'ମୁନି' ବୃତ୍ତିକୁ କର୍ତ୍ତବ୍ୟ ବୁଦ୍ଧି ସହିତ ସଂଯୋଗ କରାଇ ଯଥାର୍ଥ ନିର୍ଦ୍ଧାରଣ କରିବା ନିମିତ୍ତ ତୁମ୍ଭଙ୍କୁ ସାହାଯ୍ୟ କରୁଥିବି । ତୁମ୍ଭେ ମଧ୍ୟ ସେତିକବେଳେ ଠିକ୍ଏ କର୍ତ୍ତବ୍ୟବୋଧ ସକାଶେ ଧ୍ୟାନମଗ୍ନ ହେଉଥିବ । ଏତଦ୍ଦ୍ୱାରା ଏହି ସନ୍ଧିକ୍ଷଣରେ ଯଦି ତୁମ୍ଭର କର୍ତ୍ତବ୍ୟବୁଦ୍ଧି ଜୟଲାଭ କରେ, ତେବେ ତାହା ତୁମ୍ଭ ପକ୍ଷରେ ସନ୍ତରଣ ବା ନୌକା କି ଅନ୍ୟ ଭାସମାନ କାଷ୍ଠ ପ୍ରଭୃତି ପରି ସୁରକ୍ଷାର ହେତୁ ସ୍ୱରୂପ ହେବ; ନଚେତ୍ ପ୍ରବୃତ୍ତି ଯଦି ଜୟୀ ହୁଏ, ତେବେ ସେ ତୁମ୍ଭଙ୍କୁ କାଳସ୍ରୋତ ଓ ବିଷୟାକାର ବେଗବାନ ଗତି ସହିତ ଅଜ୍ଞାତ ଅନ୍ଧକାର ଗର୍ଭରେ କେଉଁଆଡ଼େ ନେଇ କେଉଁଠାରେ କଅଣ କରିଦେବ ତାହା କୁହା-ଯାଇ ନ ପାରେ । ଅତଏବ ସଖେ ଜୀବାତ୍ମନ୍ ! ଏବେ ମାନବୀୟ ସ୍ୱଭାବକୁ ନିରୀକ୍ଷଣ

କର । ମନୁଷ୍ୟ ଯେତେବେଳେ ଯେ କୌଣସି କାର୍ଯ୍ୟରେ ଯିବାକୁ ଆରମ୍ଭ କରେ, ସେତିକବେଳେ ତାକୁ ଟିକିଏ ଥକ୍‌କାମରା ହୋଇ ବସି ସ୍ମରିବାକୁ ସ୍ୱଭାବ ବାଧ୍ୟ କରେ । ପ୍ରବର୍ତ୍ତିବାକୁ ହେଲେ ନିବର୍ତ୍ତି ଯିବାକୁ ବା ପରିବର୍ତ୍ତିତ ହେବାକୁ ହୁଏ; ନଚେତ୍ ପ୍ରବୃତ୍ତି ପ୍ରବାହର ବେଗ ଅତ୍ୟନ୍ତ ପ୍ରବଳ ହୋଇଥିଲେ ସେ କାର୍ଯ୍ୟ ଯେତେ ମନ୍ଦ ବା ଭବିଷ୍ୟତ ଦୁଃଖପ୍ରଦ ବା ମାରାତ୍ମକ ହେଲେ ମଧ୍ୟ ସେହି ଭୟଙ୍କର ବେଗକୁ ବାଧ୍ୟ ହୋଇ ଅଗ୍ରସର ହେବାକୁ ପଡ଼ିଥାଏ ।"

"ବୁଦ୍ଧି ରଖିବାକୁ ହେବ, କାର୍ଯ୍ୟାରମ୍ଭର ସେହି ପ୍ରଥମ ଥକ୍‌କାମରା ସ୍ମରିଯିବା ବେଳ ଟିକିକ ମୋର ଉପଦେଶ ଦେଲାବେଳେ; ତହିଁ ପ୍ରତି ଲକ୍ଷ୍ୟ ରଖି ସବୁ କରୁଥିବ । ଏ ଉତ୍ତାରୁ ଆମ୍ଭେ ସଂସାର ଦେଶରେ ଉପସ୍ଥିତ ହୋଇଗଲେଣି । ଏବେ କର୍ତ୍ତବ୍ୟ ବୁଦ୍ଧି ଏହି ଭୌତିକ ଜଗତ ପ୍ରାଣି-ସୃଷ୍ଟି ଓ ଆମ୍ଭର ଦେହ ମନ, ପ୍ରାଣାଦି ଏବଂ ଅନ୍ତର୍ଜଗତାଦି ଦର୍ଶନରୁ ଶିକ୍ଷା କରି ସ୍ଥିର କରିବାକୁ ହେବ ।"

## ୧୦୧ ପାଠ—ପ୍ରକୃତିର ସ୍ଥୂଳ ଦେହ, ବହିର୍ଜଗତରୁ ଆତ୍ମାର ଅଧ୍ୟାତ୍ମ ଶିକ୍ଷା

ଅଭାବହିଁ ଦୁଃଖ, ଅଭାବର ପରିପୂରଣ ସୁଖ ।

ମନୁଷ୍ୟ ସର୍ବଦା ସୁଖ ଶାନ୍ତି ଲୋଡ଼ୁଅଛି । ପାଞ୍ଚଜ୍ଞାନେନ୍ଦ୍ରିୟ ଦ୍ୱାରା ପାଞ୍ଚପ୍ରକାର ଭୋଗସାଧନରେ ଏହି ସୁଖ ଶାନ୍ତି ନିର୍ଭର କରେ । ଅର୍ଥାତ୍ ଦେଖିବା, ଶୁଣିବା, ଆଘ୍ରାଣ କରିବା, ସ୍ୱାଦୁ ଅନୁଭବ କରିବା ଏବଂ ସ୍ପର୍ଶ ସୁଖ ଅନୁଭବ କରିବା ଇତ୍ୟାଦି ବିଷୟ ରୁଚିକର ଏବଂ ପ୍ରୀତିକର ହେବାଇ ସୁଖ ଶାନ୍ତିର ଅର୍ଥ । ଏ କ୍ଷୁଧା ପିପାସାଦିର ନିବୃତ୍ତି ମଧ୍ୟ ଏହି ସୁଖ ଶାନ୍ତି ପୂରଣର ଅଙ୍ଗ ବୋଲି ଧରି ନେବାକୁ ହେବ । ଏ ସବୁ ଅନୁଭବାତ୍ମକ ସୁଖ ଶାନ୍ତିରେ ଅନ୍ତଃକରଣରେ ମଧ୍ୟ ସୁଖ ଶାନ୍ତି ସମ୍ପାଦିତ ହୁଏ । ଏପରି ମନର ଆଶା ଓ ଆକାଂକ୍ଷା ବହୁତ । ଏ ସବୁର ସମ୍ପାଦନ ନିମିତ୍ତ ବାହ୍ୟ ଜଗତରେ ସବୁ ରହିଅଛି । ପୃଥିବୀ ଫଳଭରା ହୋଇଅଛି ଏବଂ ଉତ୍ପାଦିକା ଶକ୍ତିକୁ ଯେନ ମନୁଷ୍ୟର ଆବଶ୍ୟକ ଅଭାବାଦି ପୂରଣ କରିବାକୁ ଦୁଗ୍ଧବତୀ କାମଧେନୁ ସ୍ୱରୂପ ବିରାଜ କରୁଅଛି । ଜଳର ଅଭାବ ନାହିଁ । ବାୟୁ ତରଳ ଓ ସୂକ୍ଷ୍ମାକାର ଧାରଣ କରି ଜୀବର ପ୍ରାଣ ରକ୍ଷା ପାଇଁ ପ୍ରାଣାପାନାଦି ନାମରେ ଅଭିହିତ ହୋଇଅଛି । ଚନ୍ଦ୍ର, ସୂର୍ଯ୍ୟ ଆଲୋକ ଉତ୍ତାପ ଏବଂ ଶୀତଳତା ପ୍ରଦାନ କରୁଅଛନ୍ତି । ଆକାଶ ସର୍ବାଧାରରୂପେ କୋଟି କୋଟି ବ୍ରହ୍ମାଣ୍ଡକୁ ସ୍ଥାନ ଦେଲାଭଳି ଅସୀମ, ଅନାଦି, ଅନନ୍ତ କଳେବରବିଶିଷ୍ଟ ହୋଇ ରହିଅଛି । ଏପରି ଅନ୍ତର୍ଜଗତ ଅବର୍ଣ୍ଣନୀୟ ଓ ଅଦୃଶ୍ୟ । ମନବୁଦ୍ଧ୍ୟାଦି ସୂକ୍ଷ୍ମତମ କରଣମାନେ ସେହି ରାଜ୍ୟର ପଦାର୍ଥ । ଏ ଉତ୍ତାରୁ ଦେଖ, ତ୍ରିଗୁଣ ପ୍ରବାହ ମଧ୍ୟ ସେହି ସୂକ୍ଷ୍ମ ଅନ୍ତର୍ଜଗତର ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀସ୍ୱରୂପ ଅଟନ୍ତି । ଜ୍ଞାନ, ଧର୍ମ, ବୈରାଗ୍ୟ ବା ତ୍ୟାଗ, ସତ୍ୟ, ସନ୍ତୋଷ, ଦୟା, କ୍ଷମା, ନ୍ୟାୟ, ପରୋପକାରବ୍ରତ, ଶୌଚ, ଶାନ୍ତି, ସ୍ୱାଧୀନ ଭାବ,

ମୈତ୍ରୀ, ସମାନତା, ପ୍ରେମ, ସ୍ନେହ, ଶ୍ରଦ୍ଧା, ଆତ୍ମସମ୍ମାନ, ତୁଷ୍ଟି ଓ ପୁଷ୍ଟ୍ୟାଦି ସେହି ଅନ୍ତର୍ଜଗତର ବିଧିଦତ୍ତ ନିତ୍ୟ ଅକ୍ଷୟ ସାମଗ୍ରୀ । ସ୍ଥୂଳ ଦେହର ପାଞ୍ଚଭୌତିକାଂଶ ବାହ୍ୟ ଜଗତର ପାଞ୍ଚଭୌତିକ ସମଷ୍ଟି ଭଣ୍ଡାର ଦ୍ୱାରା ସୁରକ୍ଷିତ ଏବଂ ସୂକ୍ଷ୍ମ ଦେହର ସୂକ୍ଷ୍ମାଙ୍ଗ ସକଳ ଅନ୍ତର୍ଜଗତର ଉପରଲିଖିତ ଜ୍ଞାନ, ଧର୍ମ, ଦୟା ଏବଂ ନ୍ୟାୟ ପ୍ରଭୃତି ସକଳ ଅମୃତମୟ ପଦାର୍ଥଦ୍ୱାରା ସୁରକ୍ଷିତ ଏବଂ ପରିତୁଷ୍ଟ ଓ ପରିପୁଷ୍ଟ ହୋଇ ରହିଅଛି ।

ଏତଦ୍ୱାରା ସ୍ଥୂଳ ଦେହ ଓ ସ୍ଥୂଳ ଜଗତ ଏବଂ ଅନ୍ତର୍ଜଗତ ଓ ସୂକ୍ଷ୍ମାଙ୍ଗର ସମ୍ବନ୍ଧ ଯେ ଏକାନ୍ତ ଘନିଷ୍ଠ ଏହା ଜାଣିବା ଉଚିତ । ଦୈହିକ ସ୍ଥୂଳ ସୂକ୍ଷ୍ମାଙ୍ଗ, ବାହ୍ୟ ସ୍ଥୂଳ ଜଗତ ଓ ଅନ୍ତର ଜଗତର ସମ୍ବନ୍ଧ ନିତ୍ୟ ଏବଂ ବିଧିନିର୍ଦ୍ଦିଷ୍ଟ । ଏହି ସମ୍ବନ୍ଧ ବଡ ପବିତ୍ର ଓ ସାତ୍ତ୍ୱିକମୟ । ଏହି ସମ୍ବନ୍ଧ ଉପର ପଦାର୍ଥ, ପ୍ରଣିଧାନପୂର୍ବକ ବହୁ ଯତ୍ନ, ଚେଷ୍ଟା ଓ ଅଭ୍ୟାସ ସହକାରେ ବହୁ ଆୟାସ ସ୍ୱୀକାର କରି ବହୁତ ସମାଲୋଚନା ଏବଂ ବିଗ୍ରହ ବହୁଦର୍ଶିତାକ୍ରମେ ବୁଦ୍ଧି ସ୍ଥିର କରିବାକୁ ହେବ । ତଦ୍ରୂପ ଆଲୋଚନା ଏବଂ ଦର୍ଶନାଦିର ମାନସିକ କର୍ତ୍ତବ୍ୟଜ୍ଞାନ ଆପେ ଆପେ ଉଦିତ ହୋଇ ବ୍ୟକ୍ତିଗତ ଭାବରେ ଯେପରି ମନୁଷ୍ୟଙ୍କୁ ଏବଂ ମନୁଷ୍ୟର ହୃଦୟ ଓ ଆତ୍ମାକୁ ପବିତ୍ରମୟ ସୁଖଶାନ୍ତିରେ ଜଡ଼ିତ କରି ରଖିବ, ସେହିପରି ସଂସାରରେ ମଧ୍ୟ ତଦ୍ରୂପ ପବିତ୍ରତମ ସଦାଦର୍ଶ ଅନୁକରଣାଦିର ପ୍ରୟୋଗସ୍ଥାନରୂପେ ନିର୍ଦ୍ଦିଷ୍ଟ ହେବ ।

ସଂସାରରେ ବାର୍ଯ୍ୟାଧାର ସାଗର ପ୍ରଭୃତି ଏବଂ ବାରିବାହ ମେଘ ପ୍ରଭୃତି ଅକ୍ଷୟ ଜଳ ଭଣ୍ଡାର ରୂପେ ବିରାଜମାନ ଥିବାରୁ ଯେପରି ସ୍ଥାନେ ସ୍ଥାନେ ଝରଣା ପ୍ରବାହିତ ହୋଇ କୂପ ପୁଷ୍କରିଣୀ ପ୍ରଭୃତିରେ ସର୍ବଦା ଜଳ ସଂସ୍ଥାନ ପ୍ରାଣୀମାନଙ୍କର ପ୍ରାଣରକ୍ଷାର ଉପଯୋଗୀ ହୋଇଅଛି ଏବଂ ବୃକ୍ଷଲତାଦି ବର୍ଷା ଦ୍ୱାରା ସଜୀବିତ ଅଛି, ଆଲୋକ ଏବଂ ତୈଜସ ଭଣ୍ଡାର ସୂର୍ଯ୍ୟଦେବଙ୍କ ଅସ୍ତିତ୍ୱ ରୂପେ ଯେପରି ମନୁଷ୍ୟ, ପଶ୍ୱାଦି ଏବଂ ବୃକ୍ଷଲତାଦି ତେଜ ପ୍ରାପ୍ତ ହୋଇ ସୁରକ୍ଷିତ ଅଛି, ସେହିପରି ଅନ୍ତର୍ଜଗତର ଗୁଣପ୍ରବାହରୁ ମନୁଷ୍ୟର ହୃଦୟ ତ୍ରିଗୁଣାତ୍ମକ ହୋଇଅଛି ଏବଂ ଜ୍ଞାନଧର୍ମାଦିର ସମଷ୍ଟିକୃତ ଭଣ୍ଡାରରୁ ମନୁଷ୍ୟ ହୃଦୟ ବ୍ୟଷ୍ଟି ଭାବରେ ଏକ ଏକ କଣିକା ପ୍ରାପ୍ତ ହୋଇ ଜ୍ଞାନ ଏବଂ ଧର୍ମଯୁକ୍ତ ହୋଇଅଛି । ଏ ସମସ୍ତଇ ପରମେଶ୍ୱର ଓ ପରମେଶ୍ୱରୀ ପ୍ରକୃତିଦେବୀର ଆଶୀର୍ବାଦ ଚିହ୍ନ ସ୍ୱରୂପ ଦତ୍ତ ସାମଗ୍ରୀ ଏହି ବିଶ୍ୱ ବ୍ରହ୍ମାଣ୍ଡମୟ ଯନ୍ତ୍ରର ସଂସ୍ଥାନ ଓ ପ୍ରାଣୀ ସୃଷ୍ଟିର ହେତୁ ବା କାରଣ ସ୍ୱରୂପ ଅଟେ । ଏହି ବିଶ୍ୱ ବ୍ରହ୍ମାଣ୍ଡର ସ୍ଥାୟିତ୍ୱ ଏବଂ ପ୍ରାଣୀ ସୃଷ୍ଟି, ଜ୍ଞାନ, ଧର୍ମାଦି ବିଶିଷ୍ଟ ମନୁଷ୍ୟାଦିର ଅସ୍ତିତ୍ୱ ଇତ୍ୟାଦି ଦର୍ଶନ କଲେ ଏ ସମସ୍ତ ଯେ ତ୍ରୟଗୁଣମୂଳକ ଏବଂ ଜ୍ଞାନ-ଧର୍ମାଦି ଉପରେ ସଂସ୍ଥାପିତ ଓ ସଂରକ୍ଷିତ, ଏହା ବଡ଼ ସ୍ପଷ୍ଟଭାବରେ ଉପଲବ୍ଧି ହୋଇଥାଏ ।

ଏହି ସଂସାର ପ୍ରାଣୀସୃଷ୍ଟି ଏବଂ ଜ୍ଞାନଧର୍ମାଦି କେହି ମନୁଷ୍ୟକୃତ ବସ୍ତୁ ନୁହନ୍ତି । ଏହି ସୃଷ୍ଟି ଏବଂ ସୃଷ୍ଟ ଉଭୟେ ଏକ ପ୍ରକାର ଗୁଣାତ୍ମକ ଏବଂ ଧର୍ମ ବା ଜ୍ଞାନାତ୍ମକ

ଅଟନ୍ତି । ଯେଉଁ ପଦାର୍ଥ ଯେପରି ତାହା ଚିରକାଳ ତଦୀୟ ସତ୍ତା ସହିତ ଯାହା ଦ୍ୱାରା ସେହିପରି ସୁରକ୍ଷିତ ହୋଇ ରହିଅଛି ତାହା ସେହି ପଦାର୍ଥର ଧର୍ମ । ସାଧାରଣତଃ ଯାହା ସବୁ ପଦାର୍ଥ ଓ ପ୍ରାଣୀ ବର୍ଗାଦି ସହିତ ସଂସାରକୁ ତଦ୍ରୂପେ ରକ୍ଷାକରି ଧାରଣ କରିଅଛି, ତାହା ଧର୍ମ । ଏହି ଧର୍ମ କାହାକୁ ଛାଡ଼ିନାହିଁ ବା କେହି ଧର୍ମଛଡ଼ା ହୋଇ ରହି ନ ପାରେ । ଧର୍ମଛଡ଼ା ବେଳ ଧ୍ୱଂସ । ଏହି ଧର୍ମର ବଳ ପ୍ରଭାବରେ ପୃଥିବୀ କୃଷି ଉତ୍ପାଦିକା ଶକ୍ତି ସହିତ ଚରାଚରମୟ ହୋଇ ରହିଅଛି । ଏହି ଧର୍ମ ସକାଶେ ଚନ୍ଦ୍ର ସୂର୍ଯ୍ୟାଦି ନିଜ ନିଜ ଗତି ସ୍ୱସ୍ଥାନରେ ରହିଅଛନ୍ତି । ବାୟୁ ଚଳନଶୀଳ ହୋଇଅଛି ଏବଂ ସାଗର ସେହିପରି ନିତ୍ୟ ବିରାଜମାନ କରିଅଛି । ଯେଉଁ ପଦାର୍ଥର ଯେଉଁ ଗୁଣ, ତାହା ସେଥିରେ ଚିରକାଳ ସେହିପରି ରହିଅଛି । ଏପରି ଆହୁରି ଦେଖ । ଶତାବ୍ଦ ନୁହେ ବା ସହସ୍ରାବ୍ଦ ନୁହେ, ନିୟୁତମସ୍ତ ହୋଇ ଦେଖ, ସୃଷ୍ଟିର ଆଦି ଦିନରୁ ଆଜ ଏହି ମୁହୂର୍ତ୍ତ ପର୍ଯ୍ୟନ୍ତ କେତେ କେତେ ମନୁଷ୍ୟ, ପଶୁ, ପକ୍ଷ୍ୟାଦି ଜୀବଜନ୍ତୁ ଜନ୍ମ ହୋଇ ଅନ୍ତ ଜୀବନ ଲଭିଲେଣି । ବର୍ତ୍ତମାନ ମଧ୍ୟ କେତେ କେତେ ମନୁଷ୍ୟାଦି ରହିଅଛନ୍ତି । ଏମାନେ ପୃଥିବୀରୁ କେତେ କେତେ ଶସ୍ୟ, ଫଳ, ମୂଳାଦି ଖାଇଗଲେଣି । ତହିଁରେ ତାହାର ତଦ୍ରୂପ ଶକ୍ତି ବା ଆକାର କିଛି ପରିମାଣରେ ହେଲେ ଊଣା ହୋଇଅଛି କି ? କେତେ କେତେ ପ୍ରାଣୀ କେତେ କେତେ ଜଳ ପାନ ଓ ଅନ୍ୟାନ୍ୟ ବ୍ୟବହାରରେ ଲଗାଇ ସାରିଲେଣି । ତହିଁରେ ନଦୀ, କୂପାଦି ଏବଂ ଏମାନଙ୍କ ଆଧାର ସ୍ୱରୂପ ମୌଳିକ ଭଣ୍ଡାର ସାଗରାଦି କିଛି କମିଲେଣି କି ? କେତେ କେତେ ପ୍ରାଣୀ ଓ ସ୍ଥାବରାଦି ପର୍ଯ୍ୟନ୍ତ କେତେ କେତେ ଆଲୋକ ବା ଉତ୍ତାପାଦି ଗ୍ରହଣ କରି ସୂର୍ଯ୍ୟ, ଚନ୍ଦ୍ରାଦିଙ୍କୁ ନିଷ୍ପ୍ରଭ କରିପାରିଅଛନ୍ତି କି ? ବାୟୁ ସର୍ବଦା କେଉଁଆଡ଼େ କେତେ ବହି ଯାଉଅଛି, ପୁଣି ଅଳଗରାଦି ଜନ୍ତୁମାନେ ମନୁଷ୍ୟାଦି କରି ସମସ୍ତେ ଯେ ଯେତେ ବାୟୁ ସେବନ କଲେ ସୁଦ୍ଧା ତହିଁରୁ କିଛି ଊଣା ହୋଇ ଯାଇଅଛି କି ? ଆକାଶଗର୍ଭରେ ଯେ ସବୁ ନୃତ୍ୟ ଓ ସମାରୋହାଦି ଲାଗିଅଛି; ସେ କେବେହେଲେ ତାହାକୁ ଅବହେଳା ବା ହେୟ ପ୍ରଦର୍ଶନ କରିଅଛି କି ? ଏହି ସବୁଯାକ ଏକାଠି ହୋଇ ସୁଦ୍ଧା ଏହି ଭୌତିକ ଭଣ୍ଡାରକୁ କିଛି ତ କାହିଁ ପାରିତୋଷିକ ଦିଅନ୍ତି ନାହିଁ । ସେମାନେ ତାହାଠାରୁ କିଛି ପାଇବାର ଇଚ୍ଛା ବା ଦାବି ମଧ୍ୟ କରିବାର ତ ଦେଖା ଓ ଶୁଣା ନାହିଁ ।

ଏହି ମହା ଅକ୍ଷୟ କୀର୍ତ୍ତି ଯେଉଁ ଶକ୍ତି ଦ୍ୱାରା ନିର୍ମିତ ଏବଂ ସୁରକ୍ଷିତ ସେହି ମହାଶକ୍ତି ବା ତଦ୍ରୂପ ମହାଶକ୍ତିମାନ୍ ମହାପୁରୁଷଙ୍କୁ କେହି କିଛି ଏ ସଂସାରରୁ ସ୍ୱକୃତ ପଦାର୍ଥାଦିରୁ କଣିକାଏ ହେଲେ ତ ଦେଉନାହାନ୍ତି, ତେବେ ଏହାକୁ କିପରି ନିତ୍ୟ ପାଳନୀୟ ଧର୍ମ, ଅହେତୁକ ଓ ଅଯାଚିତ ଦାନ ଓ ଦୟା ଏବଂ ନିଃସ୍ୱାର୍ଥ ପରୋପକାର ବ୍ରତ ବୋଲି କୁହାଯିବ ? ଅଥଚ ଏହା ମହାତ୍ୟାଗର ଆଦର୍ଶକୁ ଆଉ କାହାର ପାଇଁ କିଛି ବାକି ରଖିଅଛି କି ? ଏପରି ଏହା ଯେ ଅପାର ସାଗର ସଦୃଶ ମହାଜ୍ଞାନର ପରିଚୟ ଦେଉଅଛି, ତାହା ଏକା ଭାବନାତୀତ କାହିଁକି, ବଚନାତୀତ ଓ ଶ୍ରବଣଦର୍ଶନାତୀତ

ଅଟେ । ତେବେ ଦେଖାଗଲା ଏ ସଂସାର ଧର୍ମମୂଳକ, ଆଉ ଜ୍ଞାନ, ଦୟା, ଦାନ, ପରୋପକାର ବ୍ରତ ଓ ତ୍ୟାଗାଦି ଧର୍ମ ଉପରେ ସୁସୃଷ୍ଟ ଓ ପ୍ରତିଷ୍ଠିତ । ଏବେ ଏ ସଂସାର ଆମ୍ଭମାନଙ୍କର ଦୈହିକ ଉପାଦାନାଦିର ହେତୁ ବୋଲି ମଧ୍ୟ ଜାଣିଥାଇଁ । କାରଣର ଗୁଣ ବା ଧର୍ମାଦି କାର୍ଯ୍ୟରେ ସର୍ବଦା ଦେଖାଯାଏ ଓ ସଂକ୍ରମିତ ହୁଏ । ସୁତରାଂ ଆମ୍ଭେ ମନୁଷ୍ୟମାନେ ଏ ମହାଦୃଶ୍ୟରୁ ଶିକ୍ଷା ପାଇଥାଉଁ ଯେ ଆମ୍ଭେମାନେ କଦାଚ ଧର୍ମଛଡ଼ା ହେବା ନାହିଁ କି ଜ୍ଞାନଶୂନ୍ୟ ଭାବରେ ଦୟା, ଦାନ, ପରୋପକାରାଦି ଓ ତ୍ୟାଗାଦି ଧର୍ମ-ମାନଙ୍କୁ କଦାଚ ଲଂଘିବା ନାହିଁ । ଆଉ ଏ ମହାକୀର୍ତ୍ତି ଆମ୍ଭମାନଙ୍କର ପୂର୍ବର ଋଣୀ ବା ଆଜ୍ଞାବହ ଭୃତ୍ୟ ରୂପେ ଆମ୍ଭଙ୍କୁ ଏହା ଯୋଗାଉଅଛି ବା ପରିଶୋଧ କରିବାକୁ ବାଧ୍ୟ ବୋଲି ମନେ କରିବା ନାହିଁ । ଏ ଧର୍ମ ଓ ଜ୍ଞାନାଦି ମନୁଷ୍ୟସମାଜ ଛାଡ଼ ସ୍ୱାର୍ଥପର ଓ ସ୍ୱେଚ୍ଛାଚାରୀ, ଆତ୍ମମ୍ଭରୀ ଏବଂ ବିଳାସୀ ହୋଇ ମାଟିଦେହକୁ ମୁଁଇ କେବଳ ଓ ମୃଣ୍ମୟ ଜଗତଟି ଏକା ମୋହର ବା ଆମ୍ଭର ସମାଜ ବା ଜାତିର ବୋଲି ଗର୍ବମୋହସହକାରେ କାମୁଡ଼ି ଧରିବସି ଆଉ ସମସ୍ତଙ୍କୁ ଠକାଇ ବା ଛଳ, ବଳ କୌଶଳାଦିକ୍ରମେ ଦୂର କରି ଛଡ଼ି ଦେବାର ନାମ ଅସୁରତା, ପ୍ରେତତ୍ୱ, ପୈଶାଚିକତା ଓ ପାଶବିକତା; ଆଉ ଏ ସବୁର ସମଷ୍ଟିର ନାମ ମୋଟ ଉପରେ ମ୍ଳେଚ୍ଛତା ଅଟେ । ଏ ମ୍ଳେଚ୍ଛଭାବର ଉତ୍କଟ ସମୟର ନାମ ଘୋର କଳି । ବର୍ତ୍ତମାନଟି କିପରି ସମୟ ନିରୂପଣ କରିବା ଉଚିତ ।

## ୧୦୨ ପାଠ—ପ୍ରକୃତିର ସୂକ୍ଷ୍ମ ଦେହ ଅନ୍ତର୍ଜଗତରୁ ଆତ୍ମାର ଅଧ୍ୟାତ୍ମ ଜ୍ଞାନଶିକ୍ଷା

ପଶୁ, ପଶୁର ଧର୍ମ ରଖିଅଛି; କେବଳ ମନୁଷ୍ୟ କାହିଁକି ଧର୍ମଛଡ଼ା ?

ଏ ତ ଗଲା ବହିର୍ଜଗତକୁ ଗୁରୁ କରି ତାହାଠାରୁ ଶିକ୍ଷାଲାଭ କରିବାର ବ୍ୟବସ୍ଥା । ଏବେ ଅନ୍ତର୍ଜଗତକୁ ଗୁରୁଦେବଙ୍କ ସ୍ଥାନରେ ବରଣ କରି ସେଠାରୁ କଅଣ ଶିକ୍ଷା ମିଳୁଅଛି ନିଶ୍ଚୟ କରିବାକୁ ହେଉ । ବହିର୍ଜଗଦାଦି ପ୍ରାଣୀସଂସାର ଯେପରି ବହିରାକାଶ ଗର୍ଭରେ ଅବସ୍ଥିତ, ସେହିପରି ଅନ୍ତର୍ଜଗତ ଓ ଅନ୍ତଃକରଣାଦି ଅନ୍ତରାକାଶ ମଧ୍ୟରେ ରହି ଶୋଭା ପାଉଅଛି । ଅନ୍ତର୍ଜଗତସ୍ଥ ପଞ୍ଚତନ୍ମାତ୍ରାତ୍ମକ ସୂକ୍ଷ୍ମ ଭୂତାଦିରୁ ବୁଦ୍ଧି ଅହଂକାରାଦି ଓ ସୂକ୍ଷ୍ମେନ୍ଦ୍ରିୟାଦି ସମୁଦ୍ଭୂତ ଏବଂ ତଦ୍ଦ୍ୱାରାଇ ଧୃତ ଏବଂ ରକ୍ଷିତ ହୋଇଅଛନ୍ତି । ଏ ସମ୍ବନ୍ଧେ ଆତ୍ମସଂବାଦରେ ଉଲ୍ଲେଖ କରାଯାଇଅଛି । ଏବେ ଆଉ ଟିକିଏ ସ୍ମରଣ କରାଯାଉ । ବହିର୍ଜଗତ ଯେପରି ପୃଥିବ୍ୟାଦି ମହାଭୌତିକ ଭଣ୍ଡାରାଦିରେ ପରିପୂର୍ଣ୍ଣ, ଅନ୍ତର୍ଜଗତ ସେହିପରି ଜ୍ଞାନ, ଧର୍ମ, ବୈରାଗ୍ୟ, ସତ୍ୟ, ସନ୍ତୋଷ, ଦୟା, କ୍ଷମା, ନ୍ୟାୟ, ପରୋପକାର ବ୍ରତ, ଶୌଚ, ଶାନ୍ତି, ସ୍ୱାଧୀନତା, ମୈତ୍ରୀ, ସାମ୍ୟ, ପ୍ରେମ, ସ୍ନେହ, ଶ୍ରଦ୍ଧା ଏବଂ ସହିଷ୍ଣୁତାଦି ସଦ୍‌ଗୁଣମାନଙ୍କର ସାତ୍ତ୍ୱିକମୟ ଭଣ୍ଡାରମାନଙ୍କୁ ନିଜ ଗର୍ଭରେ ଧାରଣ କରିଅଛି । ସମଷ୍ଟିଭୂତ ଭୌତିକ ଜଗତରୁ ବ୍ୟଷ୍ଟିଭାବରେ ଯେପରି ପ୍ରାଣୀ ଶରୀର ଏବଂ

ଜାଗତିକ ବସ୍ତୁାଦିର ସୃଷ୍ଟି, ସେହିପରି ଅନ୍ତର୍ଜଗତର ସମଷ୍ଟିଭୂତ ଧର୍ମ, ଜ୍ଞାନାଦିର ଭଣ୍ଡାରରୁ ବ୍ୟଷ୍ଟି ଭାବରେ ବା ଅଂଶ କି ଅଂଶାଂଶ ପରିମାଣରେ ଦତ୍ତ ହୋଇ ଆମ୍ଭମାନଙ୍କଠାରେ ବୁଦ୍ଧ୍ୟାଦି ଏବଂ ଧର୍ମ, ଜ୍ଞାନାଦି ରୂପେ ଉପରବର୍ଣ୍ଣିତ ସାତ୍ତ୍ୱିକ ଭାବମୟ ବସ୍ତୁମାନ ଅବସ୍ଥାନ କରିଅଛି । ଏ ସମସ୍ତ ସ୍ୱର୍ଗୀୟ ସମ୍ପଦ କାହାର କଣା, ଖରିଦା କମ୍ବା ପୈତୃକ କି ସ୍ୱୋପାର୍ଜିତ ବସ୍ତୁ ନୁହେ । ମହଦାକାଶ ଯେପରି କର୍ଣ୍ଣଚ୍ଛିଦ୍ରାକାଶରେ ଅର୍ଥାତ୍ ତହିଁର ଅଂଶରେ ସଦା ସଂଯୁକ୍ତ ଥାଇ କର୍ଣ୍ଣଚ୍ଛିଦ୍ରାକାଶକୁ ଶ୍ରବଣଶକ୍ତିସମ୍ପନ୍ନ କରି ରଖିଅଛି, ସେହିପରି ଅନ୍ତର୍ଜଗତ ବା ଜ୍ଞାନାକାଶର ଅନ୍ତର୍ଗତ ପଞ୍ଚତନ୍ମାତ୍ରାତ୍ମକ, ବୁଦ୍ଧ୍ୟାଦି ଓ ଜ୍ଞାନ-ଧର୍ମାଦିର ଭଣ୍ଡାର ସେହି ସେହିମାନଙ୍କର ବ୍ୟଷ୍ଟି ଭାବାତ୍ମକ ମନୁଷ୍ୟ ହୃଦୟସ୍ଥ ଜ୍ଞାନଧର୍ମାଦି ଓ ଅନ୍ତଃକରଣାଦି ସହିତ ନିତ୍ୟ ଯୋଗ ଥାଇ ଅନ୍ତଃକରଣକୁ ଜ୍ଞାନ ଧର୍ମାଦି ସହିତ ତତ୍ତ୍ୱଜ୍ଞାନ ଧର୍ମାଦି ଓ ବୁଦ୍ଧ୍ୟାଦି ରୂପେ ଅର୍ଥାତ୍ ତଦ୍ରୂପାକାରରେ ପ୍ରକାଶ କରି ରଖିଅଛି । ଏହି ହେତୁରୁ ସୁଷୁପ୍ତି, ମୂର୍ଚ୍ଛା ବା ଲୟାଦିରେ ଅନ୍ତଃକରଣ ତହିଁର ସହଜାତ ଜ୍ଞାନ, ଧର୍ମାଦି ସହିତ ନିହିତ ବା ବିଲୟପ୍ରାୟ ପ୍ରାପ୍ତ ହେଲେ ଏକାବେଳକେ ସେ ସମସ୍ତ ବିନାଶପ୍ରାପ୍ତ ନ ହୋଇ ପୁଣି ତନ୍ନିତ୍ୟ ସଂଯୋଜିତ ଭଣ୍ଡାରମାନଙ୍କ ଦ୍ୱାରା ଯଥାସମୟେ ଜାଗରିତ ବା ପୁନର୍ଜୀବିତ ହୋଇ ଉଦ୍‌ବୋଧିତ ହୁଅନ୍ତି ।

ପଞ୍ଚଭୌତିକ ଦେହ ଯେପରି ଭୌତିକ ମହାଭଣ୍ଡାର ସଂଯୋଗ ଦ୍ୱାରା ସୁରକ୍ଷିତ, ସେହିପରି ବୁଦ୍ଧି, ଅହଂକାରାଦି ଏବଂ ତହିଁର ସହଜାତ ଜ୍ଞାନ, ଧର୍ମାଦି ଉଲ୍ଲିଖିତ ଜ୍ଞାନ ଧର୍ମାଦିମୟ ଓ ବୁଦ୍ଧ୍ୟହଂକାରମୟ ପଞ୍ଚତନ୍ମାତ୍ରାତ୍ମକ ଭଣ୍ଡାରର ନିତ୍ୟ ସହଯୋଗରେ ସୁରକ୍ଷିତ ହୋଇ ରହିଅଛନ୍ତି । ଅତଏବ ମାନବୀୟ ହୃଦ୍‌କ୍ଷେତ୍ରରେ, "ବିଦୁର ଭୂମିରେ ହୀରକାଦି ନିହିତ ରହିଥିଲା ପରି ବା ଆକାଶ ଊର୍ଦ୍ଧ୍ୱଭାଗରେ ନକ୍ଷତ୍ରାଦି ରହି ଶୋଭା ପାଉଥିଲା ପରି," ଜ୍ଞାନ, ଧର୍ମ ବୈରାଗ୍ୟାଦି ସମସ୍ତ ଜ୍ଞାନ ଜ୍ୟୋତିଷ୍କ ବସ୍ତୁମାନେ ଅବସ୍ଥିତ ରହି ତହିଁରେ ଶୋଭା ପରିବର୍ଦ୍ଧନ କରୁଅଛନ୍ତି । ଏହି ଜ୍ଞାନ, ଧର୍ମ, ବୈରାଗ୍ୟାଦି ସାତ୍ତ୍ୱିକ ଭାବମାନ ଯେପରି ନିଜ ପକ୍ଷରେ, ସେହିପରି ସଂସାର ପକ୍ଷରେ ହିତକର ଅଟେ । ଏହି ସାତ୍ତ୍ୱିକ ଭାବ ସଂସାରରୁ ପାଇବାକୁ ସମସ୍ତଙ୍କର ଇଚ୍ଛା, ମାତ୍ର ସଂସାରକୁ ତାହାସବୁ ଦେଖାଇଲା ବେଳକୁ ବା ପ୍ରଦାନ କଲା ବେଳକୁ ସେହି ସର୍ବସାଧାରଣ ଇଚ୍ଛାନୁରୋଧରେ ଅଗ୍ରସର ହେବା ପ୍ରକୃତି ବା ସୃଷ୍ଟି ବିଧାନର ଆଦେଶ । ଏହି ଜ୍ଞାନ ଧର୍ମାଦି ମାନବୀୟ ଆତ୍ମାର ସୁବାସ ସଦୃଶ ଆହ୍ଲାଦ ଓ ପ୍ରୀତିଦାୟକ ପୁଷ୍ପମାଳମୟ ଭୂଷଣ ସ୍ୱରୂପ ଅଟେ । ଏହା ସତ୍ତ୍ୱପ୍ରଧାନ ପ୍ରକୃତିର ବିଭୂତି । ଭୋଗ ବିଳାସିତାଦି ସ୍ୱର୍ଣ୍ଣ ରୌପ୍ୟାଦି ଅଳଙ୍କାର ସଦୃଶ ରାଜସୀ ଭୂଷଣ ବିଭୂତି ଏବଂ ହିଂସା ପ୍ରତିହିଂସାଦି ପୋଷାକ ଓ ଭୟ ଦୁଃଖାଦି-ପ୍ରଦାୟକ ଖଣ୍ଡା, ତରବାରି ଓ ଆଗ୍ନେୟ ଅସ୍ତ୍ରାଦି ତାମସୀ ଭୂଷଣ ଏବଂ ଘୋର ତାମସୀ ପ୍ରବୃତ୍ତିର ବିଭୂତି ସତ୍ତ୍ୱ ପ୍ରଧାନ ପ୍ରକୃତି ପରାଭୂତ ହୋଇ କେବଳ ଭୋଗବିଳାସାଦିକୁ ପ୍ରକାଶ କଲାବେଳେ ରାଜସୀ ପ୍ରବୃତ୍ତିର ପ୍ରାଧାନ୍ୟ ଲକ୍ଷିତ ହୁଏ । ଏ ଆଉ ଯେତେବେଳେ

ଭୋଗବିଳାସାଦି ଓ ଆତ୍ମମ୍ଭରିତାଦି ଦୁଷ୍ପ୍ରବୃତ୍ତି ଚରିତାର୍ଥ ହେବା କାମନାରେ ତତ୍ତତ୍‌ସାଧନୋପଯୋଗୀ କର୍ମମାନେ ଉଦ୍ଭବ ହୁଅନ୍ତି, ପୁଣି ସେହି କର୍ମ ପ୍ରବୃତ୍ତିମୟ ସ୍ରୋତରୁ ନାନା ପ୍ରକାର କୁକର୍ମ, ଅକର୍ମ ଓ ବିକର୍ମାଦି ଉଦ୍ଭୂତ ହୋଇ, ଭୋଗ କାମନାକୁ ସୁଦ୍ଧା ବିସ୍ମରଣ କରାଇ କେବଳ ସେହି ରୁକ୍ଷ ଓ ଉଗ୍ର କର୍ମମୟ ସ୍ରୋତର ବେଗରେ ଭସାଇ ନେଇ, ଭୋଗବିଳାସାଦି ହାନ ପରିବର୍ତ୍ତିରେ ଭୟଙ୍କର ଦୁଃଖ, ମୋହାଦିର କାରଣ ହୁଅନ୍ତି; ସେତେବେଳେ ମାଳିନ୍ୟ ତମୋଭାବ ଉଦୟର କାଳ ବୋଲି ଅବଧାରିତ ହୁଏ । ସତ୍ତ୍ୱର ଭାବ ଜ୍ଞାନ ବା ବାସନାତ୍ମକ ସଂସ୍କାର, ଆଉ ରାଜସଭାବ ଭୋଗ, ବାସନାତ୍ମକ ସଂସ୍କାର ଏବଂ ତାମସୀ ଭାବ କର୍ମବାସନାତ୍ମକ ସଂସ୍କାର ଅଟେ । ସତ୍ତ୍ୱର ଅର୍ଥ ଜ୍ଞାନ, ରାଜସର ଅର୍ଥ ଭୋଗ ଏବଂ ତାମସର ଅର୍ଥ କର୍ମ, ମାତ୍ର ଏହି ଭାବତ୍ରୟ ପ୍ରକୃତିର ସୂକ୍ଷ୍ମ ରାଜ୍ୟରୁ ଭୌତିକ ରାଜ୍ୟସ୍ଥ ମାନବୀୟ ଆତ୍ମାରେ ପ୍ରବେଶ କରି ମନୁଷ୍ୟକୁ ଆପାଦମସ୍ତକ ଶରୀର ଓ ପ୍ରାଣ ଇନ୍ଦ୍ରିୟ ମନାଦି ସହିତ ଗ୍ରାସ କରି ନୃତ୍ୟ କରୁଅଛନ୍ତି ।

## ୧୦୩ ପାଠ—କାଳର ତାମସୀ ଗତିରେ ଅନ୍ତରର ମଳିନତା

ଏବେ ଦେଖାଯାଉଅଛି, ଅନ୍ତର୍ଜଗତ ଜ୍ଞାନ, ଧର୍ମ ଓ ବୈରାଗ୍ୟାଦି ସଦ୍‌ଗୁଣରେ ପରିପୂର୍ଣ୍ଣ ସେହି ସଦ୍‌ଗୁଣର ଅଂଶରେ ଏବଂ ଅନୁକଳ୍ପ ବା ଆଦର୍ଶରେ ମାନବୀୟ ଅନ୍ତଃକରଣାଦି ଗଠିତ ହୋଇଅଛି; କେବଳ ପ୍ରବୃତ୍ତି ରାଜସ ତାମସ ଭାବରେ ଯୁକ୍ତ ହୋଇ କ୍ରମେ କ୍ରମେ ମଳିନତା ପ୍ରାପ୍ତ ହେବାରୁ ସର୍ବଶେଷ ଅବସ୍ଥାକୁ ଘୋର ତାମସିକ କର୍ମରେ ପ୍ରମତ୍ତ କରାଉଅଛି । ଏହି ସମୟରେ ସତ୍ତ୍ୱଭାବ ରଜୋଭାବ ଦ୍ୱାରା ପରାଭୂତ ଓ ଆବୃତ ହୁଏ ଏବଂ ରଜୋଭାବ ଘୋର ତମୋଦ୍ୱାରା ପରାଭୂତ ଓ ଆଚ୍ଛାଦିତ ରହି କେବଳ ତମୋମୟ କର୍ମବାହୁଲ୍ୟର ପ୍ରାଦୁର୍ଭାବ ଘଟେ । ଏ ସମୟର ନାମ ଘୋର ତାମସପୂର୍ଣ୍ଣ କଳି । ଏହା ମ୍ଳେଚ୍ଛତ୍ୱର ନିଦର୍ଶନ । ବର୍ତ୍ତମାନ କିପରି ସମୟ ଉପସ୍ଥିତ ହୋଇଅଛି, ଏହା ପରେ ନିର୍ଣ୍ଣୀତ ହେଲେ ଅବସ୍ଥାନୁଯାୟୀ ବ୍ୟବସ୍ଥା ଠିକ୍ ହେବ ।

## ୧୦୪ ପାଠ—ସ୍ୱଭାବଗତ ଆଧ୍ୟାତ୍ମିକ ସ୍ୱାଧୀନତା

ମନୁଷ୍ୟ ମାତ୍ରକେ ଜ୍ଞାନ ଲୋଡ଼ୁଅଛି । ଧର୍ମକୁ ଅନ୍ତତଃ ସମସ୍ତଙ୍କର ଜାଣି ଲାଭ କରିବାର ବାସନା ରହିଅଛି । ବୈରାଗ୍ୟ ବା ତ୍ୟାଗ ଦ୍ୱାରା ଆତ୍ମା ବିଷୟ ମନରୁ ନିଷ୍କୃତି ଲାଭ କରି ସ୍ୱୀୟ ବିମଳ ଆତ୍ମାଲୋକରେ ଆଲୋକିତ ରହିଥିବା ତାହାର ସ୍ୱଭାବ । ସତ୍ୟ ସର୍ବ ସନ୍ଦେହ ନିବାରକ ଏବଂ ସର୍ବ ବିଷୟର ସୁମୀମାଂସକ, ଆଉ ମଧ୍ୟ ସଂସାରରେ ସମସ୍ତଙ୍କ ପକ୍ଷରେ ମଙ୍ଗଳଦାୟକ ବୋଲି ତାହା ମନୁଷ୍ୟ ମାତ୍ରକେ ଇଚ୍ଛା କରୁଅଛି । ସନ୍ତୋଷ ସର୍ବଦା ହୃଦୟକୁ ପରିତ୍ୟାଗ ନ କରୁ ବୋଲି କିଏ କାମନା ନ କରେ ? ଦୟା ପାଇବାକୁ ପ୍ରାଣୀ ମାତ୍ରେଇ ଲାଳାୟିତ । କ୍ଷମା, ସମସ୍ତଙ୍କର ସବୁବେଳେ ମାଗିବାର ; ଚିତ୍ତ

ନାହିଁ । ନ୍ୟାୟର ଦାବ ନ କରେ, ଏପର ଜଣେହେଲେ ସଂସାରରୁ ବାହାରିବ ନାହିଁ । ପରୋପକାର, ମହାବ୍ରତ ବୋଲି ସ୍ୱୀକାର କର ଶତମୁଖରେ ତାହାର ଯଶୋଗାନ କରିବା ସର୍ବତ୍ର ଶୁଣାଯାଏ । ଶୌଚ କାହାର ଅନାଦୃତ ନୁହେ । ଶାନ୍ତି, ଏକମାତ୍ର ନିତ୍ୟ ସହଚର ରୂପେ ଆତ୍ମାର ଓ ହୃଦୟର ସଙ୍ଗେ ସଙ୍ଗେ ଲାଗି ରହିଥାଏ, ଏକଥା ସମସ୍ତଙ୍କର ବାସନା । ଆତ୍ମା ସ୍ୱଭାବତଃ ଏବଂ ସ୍ୱତଃ ସ୍ୱାଧୀନ ବସ୍ତୁ ; ଏହା ପ୍ରକୃତି ବା ପ୍ରବୃତ୍ତିର ଅଧୀନତା ସ୍ୱୀକାରକୁ କ୍ଳେଶ ବୋଲି ଗଣନା କରେ ।

ସଂସାରରେ ମନୁଷ୍ୟ କଥା ଛାଡ଼ି ଦିଆଯାଉ, ପଶୁପକ୍ଷ୍ୟାଦି ସୁଦ୍ଧା ମୁକ୍ତଭାବରେ ବିଚରଣ କରିବାକୁ ଇଚ୍ଛା କର ପରାଧୀନତାରୁ ସର୍ବଦା ମୁକ୍ତି ଲଭିବା ପାଇଁ କାମନା କରନ୍ତି । ପଶୁ ପକ୍ଷୀ ପ୍ରଭୃତିଙ୍କୁ ମନୁଷ୍ୟ ହୁଏ ତ ଭଲ ଜିନିଷ ଖୁଆଇ ଓ ଭଲ ସ୍ଥାନରେ ରଖାଇବାକୁ ଚେଷ୍ଟା କରେ, ମାତ୍ର ଅରଣ୍ୟାଦିରେ ଖରା, ବର୍ଷା ଓ ଖାଦ୍ୟାଦିର ଅପଚୟ ଘଟୁ ପଛକେ, ତାହା ସେ ଅତି ଆନନ୍ଦରେ ସହି ମୁକ୍ତ ଭାବରେ ରହିବାକୁ ଇଚ୍ଛା କରେ । ଅତଏବ ଜୀବମାତ୍ରକେ ସ୍ୱାଧୀନ ମୁକ୍ତ ରାଜ୍ୟର ପଦାର୍ଥ । ମାତ୍ର ଦେହ ସଂପର୍କରୁ ଭୌତିକ ଜଗତରେ ସେ ଅବସ୍ଥିତ ଥିଲେ କଅଣ ହେବ, ସେହି ସ୍ୱଭାବଦତ୍ତ ସ୍ୱାଧୀନତା ସର୍ବଦା ତାହାପକ୍ଷରେ ବାଞ୍ଛନୀୟ ଓ ଆଦରଣୀୟ ଅଟେ ।

## ୧୦୫ ପାଠ—ଆଧ୍ୟାତ୍ମିକ ସମତା

ସନ୍ତୁଷ୍ଟି ତାଦି ମନୁଷ୍ୟର ସର୍ବଦା ପାଳନୀୟ । ଏହା ସଂସାରରେ କନ୍ଦଳ ବା ଗଣ୍ଡଗୋଳାଦି ବଢ଼ାଇବାକୁ ଦିଏ ନାହିଁ । ଆଉ ସବୁ ପ୍ରକାର ଅବସ୍ଥାରେ ମନୁଷ୍ୟକୁ ସମାନ ଶକ୍ତି, ଶାନ୍ତି ଓ ସଂଯମରେ ରକ୍ଷା କରେ । ମିତ୍ରତା ଓ ଆସଙ୍ଗଲିପ୍ସା ମନୁଷ୍ୟର ଆତ୍ମଗତ ପ୍ରବୃତ୍ତି । ନିର୍ଜନବାସରେ ରହିବା କିମ୍ବା ଜନଶୂନ୍ୟତା ଦେଖିବା ମନୁଷ୍ୟର ପ୍ରକୃତି କେତେବେଳେ ହେଲେ କହୁନାହିଁ । ଏଥିର କାରଣ, ମନୁଷ୍ୟ ପ୍ରତି ମନୁଷ୍ୟର ଆନ୍ତରିକ ପ୍ରୀତି । ଅତଏବ ମୈତ୍ରୀ ମନୁଷ୍ୟ ହୃଦୟର ସର୍ବଶ୍ରେଷ୍ଠ ଅଳଙ୍କାର । ପ୍ରାକୃତିକ ଜଗତର ଦୃଷ୍ଟିରେ, ପରମେଶ୍ୱରଙ୍କ ପାଳନ, ରକ୍ଷଣାଦି ବ୍ୟବସ୍ଥା ସମ୍ବନ୍ଧରେ ବିଚାରିବାକୁ ଗଲେ ଏହା ସାର୍ବଜନୀନ ସମଭାବାପନ୍ନ ହେବ । ପ୍ରକୃତିର ଦାନ ସମସ୍ତଙ୍କ ପକ୍ଷରେ ସମାନ । ଅତଏବ ସଂସାରରେ ସମତାରକ୍ଷା କର୍ତ୍ତବ୍ୟ । ଅର୍ଥାତ୍ ମନୁଷ୍ୟ, ପରସ୍ପର ସମସ୍ତେ ଦୈହିକ ଭାବରେ ସମାନ ପଞ୍ଚଭୂତ ଦେହଧାରୀ; ଆଉ ବାଲ୍ୟ, ଯୌବନ, ଜରାଦି ଅବସ୍ଥା ସମ୍ବନ୍ଧରେ ସମସ୍ତେ ସମଦଶାପନ୍ନ । ଜନ୍ମ ଓ ମୃତ୍ୟୁର ସମସ୍ତେ ସମାନ ଦାସ । ପ୍ରକୃତି ସମସ୍ତଙ୍କୁ ସମାନ ଭାବରେ ରକ୍ଷା କରିବାର ବ୍ୟବସ୍ଥା କରିଅଛି । ଆତ୍ମା ତତ୍ତ୍ୱସର୍ବତ୍ର ଏକଇ ଜୀବାତ୍ମାରୂପେ ବିରାଜମାନ । ଅତଏବ ସାମ୍ୟ, ସ୍ୱର୍ଗୀୟ ଆଦର୍ଶ, ପ୍ରେମ, ସ୍ନେହ ଓ ଶ୍ରଦ୍ଧାଦି ପରସ୍ପରରେ ପ୍ରତ୍ୟେକଠାରୁ ପ୍ରତ୍ୟେକେ ପାଇବାକୁ ଏକାନ୍ତ ଉତ୍ସୁକ । ଏଥିରୁ ଦେଖାଯାଏ, ଜ୍ଞାନ ଧର୍ମାଦି ଉଲ୍ଲିଖିତ ସମସ୍ତ ସଦ୍‌ଗୁଣମାନେ ମାନବୀୟ ସଂସାରରେ

ସ୍ୱର୍ଗୀୟ ଆଦର୍ଶ ପ୍ରଦର୍ଶନ କରି ସଂସାରକୁ ପବିତ୍ର ଜ୍ଞାନ ଧର୍ମ ପୀଠରେ ପରିଣତ କରିବାକୁ ଯେପରି ପରମେଶ୍ୱର ଦ୍ୱାରା ଦେବଦୂତ ରୂପେ ପ୍ରେରିତ ଓ ନିଯୁକ୍ତ କରାଯାଇଛନ୍ତି । ପୁଣି ପ୍ରକୃତିଦେବୀ, ମାନବୀୟ ଶ୍ରେଷ୍ଠ ଲୀଳା ବହୁ ବହୁ ପ୍ରକାରରେ ଦେଖିବା ପାଇଁ ଏହି ଜ୍ଞାନ-ଧର୍ମାତ୍ମକ ପବିତ୍ର ପୀଠ ସ୍ୱରୂପ ସଂସାରକୁ ଏକ ଆଶ୍ଚର୍ଯ୍ୟଜନକ ପରୀକ୍ଷା କେନ୍ଦ୍ରରେ ପରିଣତ କରିଅଛି । ପ୍ରବୃତ୍ତି ରାଜସ ମିଶ୍ର ତାମସ ଭାବ ସହିତ ଅଥବା କେତେବେଳେ ଶୁଦ୍ଧ ତାମସ ଗୁଣ ସହିତ ସଂଯୁକ୍ତ ଥାଇ ଏହି ପରୀକ୍ଷା କେନ୍ଦ୍ରରେ ପରୀକ୍ଷକ ରୂପେ ଦଣ୍ଡାୟମାନ ହୋଇ କେତେକ ପରିମାଣରେ ଅନୁତ୍ତୀର୍ଣ୍ଣ ବ୍ୟବସ୍ଥାକୁ ଅକ୍ଷୁଣ୍ଣ ରଖିବାର ପ୍ରୟାସ ପାଉଅଛି ।

## ୧୦୭ ପାଠ—ପ୍ରକୃତ ପରୀକ୍ଷା

ଏ ପରୀକ୍ଷା ଓ ପରୀକ୍ଷାର ଫଳ ଅତୀବ ଚମତ୍କାର । ଏଥିରେ ପରୀକ୍ଷାର୍ଥୀମାନେ ଜ୍ଞାନ ଧର୍ମାଦି ତତ୍ତ୍ୱରେ ପରୀକ୍ଷୋତ୍ତୀର୍ଣ୍ଣ ହେଲେ ସେମାନଙ୍କୁ ପ୍ରଶଂସାପତ୍ର ମିଳେ ନାହିଁ । କୌଣସି ପରୀକ୍ଷାଫଳ ପୁସ୍ତକାଦିରେ ସେମାନଙ୍କ ନାମ ମିଳିବା ବଡ଼ ବିରଳ । ସେମାନଙ୍କୁ ସଂସାରରେ ଅଳ୍ପ ଲୋକ କଦାଚିତ୍ ଜାଣିବାକୁ ସମର୍ଥ ହୁଅନ୍ତି । ପରୀକ୍ଷୋତ୍ତୀର୍ଣ୍ଣମାନେ ମଧ୍ୟ ଜଣାଇ ଚିହ୍ନାଇ ହେବାର ଇଚ୍ଛାକୁ ଘୃଣା କରନ୍ତି । ପରୀକ୍ଷକ କହେ, ଏ ବିଦ୍ୟା ତ ମୋ ଜ୍ଞାନର ବହୁ ଉପରକୁ, ମୁଁ କି ପ୍ରଶଂସାପତ୍ର ଦେବି ? ମାତ୍ର ଅନ୍ୟଆଡ଼େ ଦେଖି-ବାକୁ ଗଲେ ଯେଉଁ ପରୀକ୍ଷାର୍ଥୀମାନେ ଜ୍ଞାନ, ଧର୍ମ ଓ ବୈରାଗ୍ୟାଦି ତତ୍ତ୍ୱବିଦ୍ୟାରେ ଅପାରଗ ସୁତରାଂ ଅନୁତ୍ତୀର୍ଣ୍ଣ ହୁଅନ୍ତି, ସେମାନେ ରାଜସ, ତାମସ ବା ଶୁଦ୍ଧ ତାମସମୟ ପ୍ରବୃତ୍ତି ପ୍ରବାହରେ ପଡ଼ି ଭୋଗ ଏବଂ କର୍ମ ଓ ଅଜ୍ଞାନ ବୈରାଗ୍ୟଶୂନ୍ୟାଦିରେ ପ୍ରମତ୍ତ ହୋଇ ପରୀକ୍ଷକଠାରୁ ଲମ୍ବା ଲମ୍ବା ପ୍ରଶଂସାପତ୍ର ପାଆନ୍ତି ।

ଧର୍ମଜ୍ଞାନାଦିର ପବିତ୍ର ପୀଠରୂପ ସଂସାରକୁ ତାମସ ଭୋଗ କର୍ମମୟ କ୍ଷେତ୍ରରେ ପରିଣତ କରନ୍ତି । ଏହିପରି ଜ୍ଞାନାଧମମାନେ ସଂସାରର ମାଟିପର୍ଯ୍ୟନ୍ତ ଭକ୍ଷଣ କରି ମୋଟା ଦେହରେ କ୍ରମେ କ୍ରମେ ସଂସାରକୁ ପୂର୍ଣ୍ଣ କରିବାର ଚେଷ୍ଟା କରନ୍ତି । ଶୁଦ୍ଧ ସାତ୍ତ୍ୱିକ କାଳରେ ଏହିପରି ବିପରୀତ ଭାବର ଉତ୍ତୀର୍ଣ୍ଣ ପ୍ରାଣୀସଂଖ୍ୟା ଅତି ନଗଣ୍ୟ ପରିମାଣରେ ହୋଇଥାଏ । ପରେ ସାତ୍ତ୍ୱିକ ସହିତ ଭୋଗାତ୍ମକ ରାଜସ ମିଶ୍ରିତ ହୋଇବା କାଳରେ ଏହି ଉତ୍ତୀର୍ଣ୍ଣସଂଖ୍ୟା ମନୁଷ୍ୟସମାଜରେ ଏକଚତୁର୍ଥାଂଶରୁ ଅଧିକ ହୋଇଥାଏ । ତୃତୀୟ ସୋପାନରେ ରାଜସ ତାମସମୟ ଭୋଗ ଏବଂ କର୍ମପ୍ରଧାନ କାଳରେ ଏତଦ୍ରୂପ ଜ୍ଞାନାଧମ ସଂଖ୍ୟା ଆଠପଣରୁ ଅଧିକ ଏବଂ ପୂର୍ଣ୍ଣ ତାମସରେ କର୍ମମୟ କାଳରେ ଜ୍ଞାନଶୂନ୍ୟ ନରାଧମ ସଂଖ୍ୟା ପ୍ରଥମ ଅବସ୍ଥାରେ ତିନଚତୁର୍ଥାଂଶରୁ ବେଶୀ ହୁଏ । ପରେ କ୍ରମେ କ୍ରମେ ଏହି ସଂଖ୍ୟା ବୃଦ୍ଧିପ୍ରାପ୍ତ ହୋଇ ଚତୁର୍ଥ ଅବସ୍ଥାକୁ ପ୍ରାପ୍ତ ସମୁଦାୟ ମନୁଷ୍ୟସମାଜକୁ ପୂର୍ଣ୍ଣ କରେ ।

## ୧୦୭ ପାଠ—କାଳ ପରିବର୍ତ୍ତନ ଦ୍ୱାରା ସଂଘଟିତ ଯୁଗବିଭାଗର ଶେଷଭାଗ ମ୍ଳେଚ୍ଛତ୍ୱ

ଏହିରୂପ ପ୍ରଥମ ଭାଗ କାଳର ନାମ ସତ୍ୟ, ଦ୍ୱିତୀୟ ଭାଗ ତ୍ରେତା, ତୃତୀୟ ଭାଗ ଦ୍ୱାପର, ଚତୁର୍ଥ ଭାଗ କଳି, ଚତୁର୍ଥର ଚତୁର୍ଥ ଭାଗ ଘୋର କଳି । ଯେପରି ଆଲୋକକୁ ଅନ୍ଧାର, ପଛଆଡ଼େ ଲୁଚି ଜଗି ଛକି ଛକି ଛପି ରହି ଶେଷରେ ପୂର୍ଣ୍ଣ ଅନ୍ଧକାରମୟ ଅଧିକାର ବିସ୍ତାର କରେ, ସେହିପରି ଏ କାଳପ୍ରବାହ ସଙ୍ଗେ ସଙ୍ଗେ ପ୍ରବୃତ୍ତି ଗୁଣମୟ ହୋଇ ବଢ଼ି ବଢ଼ି ସର୍ବଶେଷରେ ଘୋର କଳିରେ ପରିଣତ ହୁଏ । ଏହି ପୂର୍ଣ୍ଣ ତମୋମୟ ପ୍ରବୃତ୍ତି ମ୍ଳେଚ୍ଛତ୍ୱ ନାମରେ ଅଭିହିତ ହୁଏ । ସଂସାରର ନିୟମ ଏହିପରି ଯେ ଏହା ସର୍ବଦା ଏକଭାବାପନ୍ନ ନୁହେ; କାଳର ପରିବର୍ତ୍ତନ, ଋତୁର ପରିବର୍ତ୍ତନ ପରି ଅନିବାର୍ଯ୍ୟ । ଏହି ପରିବର୍ତ୍ତନ ଦ୍ୱାରା ମାନବୀୟ ସଂସାର ଶେଷାବସ୍ଥାକୁ ମ୍ଳେଚ୍ଛତ୍ୱରେ ପରିଣତ ହୁଏ । ଏହି ତମୋପ୍ରଧାନ ଶେଷାବସ୍ଥା ମ୍ଳେଚ୍ଛତ୍ୱର ନିବାସ ସ୍ଥାନ ଅନ୍ଧକାର ରାତିର ଶେଷ ଭାଗ । ଆରପାଖେ ଯେପରି ଆଲୋକାଗମର ପୂର୍ବ ଲକ୍ଷଣ ଦେଖାଯାଇ ସୂର୍ଯ୍ୟଦେବ ଉଦିତ ହୋଇ ନ ଥିଲେ ସୁଦ୍ଧା ଅନ୍ଧକାର କ୍ରମେ କ୍ରମେ କ୍ଷୀଣତ୍ୱ ପ୍ରାପ୍ତ ହୁଏ ଏବଂ କାକ କୁକ୍କୁଟାଦି ପକ୍ଷୀମାନେ ରାବ କରନ୍ତି, ପୂର୍ବଦିଗ ଆଲୋକର ପ୍ରଥମ ଆଭାସ ସ୍ୱରୂପ ରକ୍ତିମାରେ ସୁରଞ୍ଜିତ ହୁଏ, ସେହିପରି ଏହି ଅଜ୍ଞାନପୂର୍ଣ୍ଣ ତମସାଚ୍ଛନ୍ନ 'କଳି' ମ୍ଳେଚ୍ଛତ୍ୱ ଶେଷ ହୋଇ ସତ୍ୟାଲୋକର ଆବିର୍ଭାବ ପୂର୍ବରୁ ସତ୍ୟ, ଧର୍ମ ଓ ନ୍ୟାୟାଦିର ସଞ୍ଚାର ପୃଥିବୀରେ ଦେଖାଯାଏ । ସୂର୍ଯ୍ୟାଲୋକ ଯେପରି ପ୍ରଥମରୁ ଉଚ୍ଚ ସ୍ଥାନରେ ପଡ଼ି କ୍ରମେ କ୍ରମେ ତଳକୁ ଆସେ, ସେହିପରି ଏ ଜ୍ଞାନଧର୍ମାଦିର ଆଲୋକ ସାଧୁ ମହାତ୍ମାମାନଙ୍କର ଉଚ୍ଚ ହୃଦୟରେ ପ୍ରଥମରୁ ନିପତିତ ହୋଇ ପରେ ସର୍ବତ୍ର ବ୍ୟାପ୍ତ ହୁଏ । ଜ୍ଞାନ, ଧର୍ମ, ନ୍ୟାୟ ଓ ସତ୍ୟର ଆଗମନ ବୁଝିପାରି ମ୍ଳେଚ୍ଛତ୍ୱ ବଡ଼ ଜଡ଼ମଡ଼ ଆରମ୍ଭ କରେ । କିନ୍ତୁ ମରଣ କାମୁଡ଼ାର ବଳ ନ ଥିବାରୁ ସେଥିରେ କିଛି ହୁଏ ନାହିଁ । ଶେଷରେ ମ୍ଳେଚ୍ଛତ୍ୱର ଶେଷ ଏବଂ ସତ୍ୟାଲୋକ-ବିଶିଷ୍ଟ ଜ୍ଞାନରବି ଉଦିତ ହୁଅନ୍ତି ଏବଂ ଉକ୍ତ ଶେଷ ଶବ୍ଦକୁ ବିଶେଷଭାବେ ସାର୍ଥକ ଓ ପବିତ୍ର କରନ୍ତି । ଆହୁରି ଟିକିଏ ଭଲ କରି ଦେଖିଲେ ଜଣାଯାଏ କାଳ କର୍ତ୍ତା ନୁହେ । ଆକାଶ ଯେପରି ସବୁ ଭଲ ମନ୍ଦ ପଦାର୍ଥକୁ କେବଳ ସ୍ଥାନ ଦାନ ମାତ୍ର କରିଅଛି, ମାତ୍ର ଭଲ ମନ୍ଦ କରି କାହାକୁ ଗଢ଼ୁନାହିଁ କିମ୍ବା ତଦ୍ରୂପ ଭଲ ମନ୍ଦ ଗୁଣ କାହାକୁ ବି ଦେଉ-ନାହିଁ, ସେହିପରି କାଳଗର୍ଭରେ ଭଲ ମନ୍ଦ ସବୁ ପ୍ରକାର ଘଟଣା ସଂଘଟିତ ହେଉଅଛି ସତ୍ୟ, ମାତ୍ର କାଳ ତହିଁର କର୍ତ୍ତା ନୁହେ କି କାରଣ ମଧ୍ୟ ନୁହେ । କାଳ ସେ ସବୁକୁ କଳନା କରୁଅଛି ଏବଂ ସେ ସବୁର ପରିମାପକ ବା ସୀମା ନିର୍ଦ୍ଦେଶକ ହେଲେ ହୋଇ-ପାରେ । ଏକ କାଳ ମଧ୍ୟରେ ବିପରୀତ ପ୍ରକାରର ନାନାବିଧ ଘଟଣା ମଧ୍ୟ ଘଟୁଅଛି । ଏହି ମ୍ଳେଚ୍ଛତ୍ୱର ଜନ୍ମଦାତା କେହି ନାହିଁ; ଏହା ପ୍ରବୃତ୍ତିମୟ ସଂସାର ପ୍ରବାହରୁ ଜଟିଳ ତାମସୀ ଗତିର ଆଘାତ ପ୍ରତିଘାତରେ ପ୍ରକଟିତ ହୁଏ । ଦେଖ, ଭଲ ସ୍ୱଭାବବିଶିଷ୍ଟ

ବୃଦ୍ଧ ଲୋକମାନେ ମଧ୍ୟ ଅକ୍ଷକ୍ରୀଡ଼ାଦିରେ ଲିପ୍ତ ହେଲେ ତାହାର ଗର୍ତ୍ତରେ ସେମାନେ ପଡ଼ି ସମୟ ସମୟରେ କଳହ ଦ୍ୱନ୍ଦ କରନ୍ତି । ଆଉ ମଧ୍ୟ ବହୁ ସମୟ ବ୍ୟୟ କରି କ୍ଷୁଧା ତୃଷ୍ଣା ଭୁଲିଯାଇ ନିଜର ଅସ୍ୱାସ୍ଥ୍ୟକୁ ନିଦ୍ଦାରି ନିଜେ ବରଣ କରନ୍ତି । ଅଥଚ ଜୟ ବା ପରାଜୟ ଦ୍ୱାରା କାହାରି କିଛି ଲାଭାଲାଭ ନାହିଁ । ଉଭୟ ପକ୍ଷର କଷ୍ଟ ମାତ୍ରଇ ଶେଷ ସାର ଫଳ ହୁଏ । ପ୍ରବୃତ୍ତିର ତୋଡ଼ର ପରାକ୍ରମ ଏହିପରି । ଏହା ମାନବୀୟ ସ୍ୱଭାବକୁ ରାଜସ ତାମସ ଗର୍ତ୍ତରେ ପକାଇ ଭସାଇ ଭସାଇ ଶେଷକୁ ଘୋର କଳି ଅଜ୍ଞାନାନ୍ଧକାରରେ ପ୍ରବେଶ କରାଇଦିଏ ।

ତହିଁ ଉତ୍ତାରୁ ସ୍ୱୟଂ ଜର୍ଜରିତ ଓ ମ୍ଳାନବଳ ହୋଇ ରହେ । ସୃଷ୍ଟିର ନିତ୍ୟ ପରିବର୍ତ୍ତନଶୀଳ ଧର୍ମାନୁରୋଧରେ ଏହି ପାପମୟ ଘୋର କଳି, ତମସାଚ୍ଛନ୍ନ ଦୁଷ୍ପ୍ରବୃତ୍ତି ସହିତ ସତ୍ୟାଲୋକ ଆଗମନ ଦ୍ୱାରା ବିନାଶପ୍ରାପ୍ତ ହୁଏ । ଦିନରାତି ପରି ଏହା ଏହିରୂପେ ପରିବର୍ତ୍ତନାଧୀନ ରହି ଜୀବାତ୍ମାକୁ ଭ୍ରମାଉଅଛି—ଏତିକି ଏହାର କାର୍ଯ୍ୟ । ଏଥିରେ ଜୀବର ଭ୍ରମଣହିଁ ସାର; ଲାଭ ମଧ୍ୟରେ ଦୁଃଖ, କଷ୍ଟ ଓ କ୍ଳେଶଭୋଗ ମାତ୍ର । ପ୍ରବୃତ୍ତିର ଏହି ଭ୍ରମଣରୁ ଜ୍ଞାନ ହିଁ ଜୀବନକୁ ନିସ୍ତାର କରେ । ପ୍ରବୃତ୍ତି ଓ ନିବୃତ୍ତିର ପ୍ରତିଯୋଗିତାର ଫଳରେ ମାୟା ଭ୍ରମଣରୂପ ବନ୍ଧନ ଏବଂ ଜ୍ଞାନ, ଧର୍ମ ଓ ବୈରାଗ୍ୟାଦି ରୂପ ମୁକ୍ତି ସଂଘଟିତ ହେଉଅଛି, ଏହା ପ୍ରକୃତିଦେବୀର ନିତ୍ୟ ଲୀଳା ।

## ୧୦୮ ପାଠ—ଉପସ୍ଥିତ ବର୍ତ୍ତମାନ କାଳ ଘୋର କଳି

ଏବେ ଜ୍ଞାନ-ନୟନମୟ ହୋଇ ଦେଖ, ଉପସ୍ଥିତ ଦିନ ଘୋର କଳି କି ନା; ସମସ୍ତେ ସ୍ୱୀକାର କରି କହୁଅଛନ୍ତି, ଏ କଳିଯୁଗ ଏଥିରେ ସନ୍ଦେହ ନାହିଁ । ପୁରାଣାଦିରେ ପୂଜ୍ୟପାଦ ମହର୍ଷିମାନଙ୍କ ଉକ୍ତିରୁ ଏବଂ ଜ୍ୟୋତିର୍ବେଦସମ୍ମତ ପଞ୍ଜିକାଦିରୁ ଏ କଳିଯୁଗ ବୋଲି ନିରୂପିତ ହୋଇଅଛି । ତେବେ ଉପସ୍ଥିତ ଦିନ କଳିର ଶେଷ ଚତୁର୍ଥଭାଗ କି ନା, ସମସ୍ତେ ଆସନ୍ତୁ, ବସି ବିବେଚନା କରିବା । କାରଣ ତାହା ହୋଇଥିଲେ ସନ୍ନିହିତ ଅଦୂର ଭବିଷ୍ୟତରେ ସତ୍ୟ, ଜ୍ଞାନ, ଧର୍ମାଦିର ଦର୍ଶନ ଲାଭ ହେବ । ମନୁଷ୍ୟ ଜନ୍ମରେ ଏଥିରୁ ବଳି ପରିବର୍ତ୍ତନ ବଡ଼ ବସ୍ତୁ ଆଉ କିଛି ନାହିଁ । ପଞ୍ଜିକାରୁ ଦେଖାଯାଏ, କଳି ଯୁଗାଦିର ୫୦୨୭ (ପାଞ୍ଚସହସ୍ର ପଞ୍ଚବିଂଶତି) ବର୍ଷ ଆଜି ଚଳୁଅଛି । ମାତ୍ର କଳି ତ ୪୩୨୦୦୦ ବର୍ଷ, ତେବେ ଏହା ବର୍ତ୍ତମାନ ଘୋର କଳି ହୋଇପାରେ କି ନା ? କାର୍ଯ୍ୟରୁ କାରଣ ଅନୁମିତ ହୁଏ ଏବଂ କାରଣରୁ ମଧ୍ୟ କାର୍ଯ୍ୟ ଅନୁମିତ ହୁଏ । ଧର୍ମରୂପ କାର୍ଯ୍ୟ ଦର୍ଶନରେ ତହିଁର କାରଣ ଅଗ୍ନିର ଅସ୍ତିତ୍ୱ ନିରୂପିତ ହୁଏ । ଘଟରୁ ମୃତ୍ତିକାର ଅନୁମାନ ହୁଏ । ଜଳୀୟ ବାଷ୍ପ ସଂଗ୍ରହରୁ ମେଘର ନିରୂପଣ ହୁଏ । ପୁଣି ଅଗ୍ନିରୁ ଧୂମ, ମୃତ୍ତିକାରୁ ଘଟ ଏବଂ ମେଘରୁ ଜଳର ଉଦ୍ଭବ ହେବାର ଦେଖାଯାଏ । ଏହିପରି କାର୍ଯ୍ୟକାରଣର ସମବାୟ ବା ନିତ୍ୟ ସମ୍ବନ୍ଧ । ଯୁଗ ବା କାଳ କଳେବର ଦର୍ଶନଯୋଗ୍ୟ ସ୍ଥୂଳାକାର

ବସ୍ତୁ ନୁହେ । ତାହା କାର୍ଯ୍ୟରୁ ନିଶ୍ଚୟ କରଯାଉଅଛି । ଶ୍ରୀମଦ୍ଭାଗବତ ମହାପୁରାଣର ଦ୍ୱାଦଶସ୍କନ୍ଧ ଦ୍ୱିତୀୟ ଅଧ୍ୟାୟରେ ଶେଷ କଳିର ଗୀତ, ନୀତ, ଧର୍ମ, ଜ୍ଞାନ, କ୍ରିୟା ଓ ଭୋଗାଦି କିପରି ତହିଁର ବିବରଣ ବିଶଦରୂପେ ବର୍ଣ୍ଣିତ ହୋଇଅଛି, ତାହା ସବୁ ଆଲୋଚନା କରି ଉପସ୍ଥିତ ଦିନର ଗୀତ, ନୀତ ଓ କାର୍ଯ୍ୟ କଳାପାଦି ସହିତ ମେଳ କରି ତୁଳନାଦ୍ୱାରା ଆଲୋଚିତ ବିଷୟ ସ୍ଥିର କରିବାକୁ ହେବ ।

## ୧୦୯ ପାଠ—ଭୌତିକତାର ଜନ୍ମ ଓ ବିସ୍ତାର ଲାଭ

ଏହି ଅବସରରେ ଆଉ ଟିକିଏ ବୁଦ୍ଧି ରଖିବା ଉଚିତ ଯେ ବନ୍ୟ ପଶୁ ଦଖଲ ରାଜ୍ୟର ମାଟି, ପଥର ଗୁମ୍ଫାରେ ଅଳ୍ପଦିନ ତଳେ ଏକ ସମ୍ପ୍ରଦାୟର ଲୋକ ବାସକରି ପଶୁପକ୍ଷ୍ୟାଦିଙ୍କୁ ସୌନ୍ଦର୍ଯ୍ୟରେ ଜିତିବା ନିମିତ୍ତ ନିଜ ଦେହକୁ ନାନା ପ୍ରକାର ରଙ୍ଗ, ବେରଙ୍ଗରେ ରଞ୍ଜିତ କରୁଥିଲେ । କୌଣସି ଦୈବୀ କାରଣରୁ ସେମାନେ ଗୁମ୍ଫା ଭିତରୁ ବାହାରି ପଡ଼ିଲାରୁ ଏହି ବିଶାଳ ବିଶ୍ୱଦୃଶ୍ୟ ତାଙ୍କର ନୟନଗୋଚର ହେଲା । ତହୁଁ ସେମାନେ ବଡ଼ ବଡ଼ ଗଛ ଦେଖି ମହତ୍ ଜ୍ଞାନରେ ସେହି ବୃକ୍ଷାଦିକୁ ଉପାସ୍ୟ ବସ୍ତୁ ବୋଲି ଧରିନେଲେ । ଆଉ ବିଶ୍ୱ ବ୍ରହ୍ମାଣ୍ଡରେ ନାନାବିଧ ଦ୍ରବ୍ୟ ରହିଥିବାର ଦେଖି ସେହି ଜଡ଼ ବସ୍ତ୍ୱାଦିର ସେବା କରୁ କରୁ ତହିଁରୁ ନାନା ପ୍ରକାର ଜଡ଼ୀୟ ତତ୍ତ୍ୱ ଉଦ୍‌ଘାଟିତ ହେଲା । ଆଉ ମଧ୍ୟ ତହିଁରୁ ନାନାବିଧ ଜଡ଼ୀୟ ଭୌତିକ ଯନ୍ତ୍ରାଦି ନିର୍ମାଣ କରି ଦେଖି ପାରିଲେ, ଓହୋ ! କାହିଁରେ ଥିଲୁ ? କଣ ଦେଖିଲୁ ? ଏବେ ଏହି ଜଡ଼ତତ୍ତ୍ୱ ସାହାଯ୍ୟରେ ବିଶ୍ୱବ୍ରହ୍ମାଣ୍ଡ ଉଦରସ୍ଥ କରିବା ବଡ଼ କଷ୍ଟ ହେବ ନାହିଁ । ତହୁଁ ଏକଆଡ଼େ ସଂସାର ଖେଦିବାର ଚେଷ୍ଟା ଲଗିଲା । ଅନ୍ୟଆଡ଼େ ଭୌତିକ ଜ୍ଞାନର ବଡ଼ିମା ଦେଖାଇବାର ପ୍ରୟାସ ପାଇବାକୁ ହେଲା । ତହିଁରୁ କପୋଳକଳ୍ପନା ଆରମ୍ଭ ହେଲା । ଆଧ୍ୟାତ୍ମିକ ତତ୍ତ୍ୱାଦିକୁ ଜଡ଼ର ଗୁଣ ଭିତରେ ପୂରାଇ ବନ୍ଦ କରି ରଖିବା ତାହାକୁ କୂଳ ଯୋଡ଼ାଇ ଲୁଚାଇବା ନୀତପରି ! ଏହି ସଂପ୍ରଦାୟ ମଧ୍ୟରେ କେତେକ ଜାଣିବା ଲୋକ କହନ୍ତି ଯେ "ସେମାନଙ୍କର ଲିଖିତ ନିଦର୍ଶନ ଏପରି ଅଛି କି ଯହିଁରୁ ଜଣାଯାଏ ଏ ପୃଥିବୀର ଆଦିନିର୍ମାଣଦିନ ଆଜିକୁ ପ୍ରାୟ ଛଅ ସହସ୍ର (୬୦୦୦) ବର୍ଷ ହେଲା । ମାତ୍ର ଏ ଦେଶର ପ୍ରଚଳିତ ପଞ୍ଜିକା ପ୍ରତିବର୍ଷ ନୂଆ ନୂଆ ତିଆରି ହୋଇ ଆସୁଅଛି । ତହିଁରେ ଅବିଶ୍ୱାସ କରିବାର କାରଣ କିଛି ନାହିଁ । ତଦନୁସାରେ କଳିଯୁଗାଦି ୫୦୨୫ ବର୍ଷ ହେଲା । ତହିଁରୁ ଅଳ୍ପ ପୂର୍ବ ଦ୍ୱାପର ଶେଷକୁ ମହାଭାରତ ହୋଇଥିଲା । ମହାଭାରତର ଦିନ ଏ ପର୍ଯ୍ୟନ୍ତ ଚଳିତ ହୋଇ ରହିଅଛି । କୁରୁକ୍ଷେତ୍ର, ଗିରିଗୋବର୍ଦ୍ଧନ, ବୃନ୍ଦାବନ, ଗୋପପୁର, ମଥୁରା, ଦ୍ୱାରକାଦି ସେହି କାଳର ନିଦର୍ଶନ । ଭୀମ, ଜରାସନ୍ଧର ଯୁଦ୍ଧଭୂମି ପ୍ରଭୃତି ଏ ପର୍ଯ୍ୟନ୍ତ ରହିଅଛି । ସୁଦାମାପୁରୀର ଭଗ୍ନାବଶେଷ ବର୍ତ୍ତମାନ ମୂକସାକ୍ଷୀ ହୋଇଅଛି । ତେବେ ସେଠାରୁ ୧୦୦୦ ବର୍ଷ ପୂର୍ବ ମଧ୍ୟରେ ଏ ସଂସାରର ନିର୍ମାଣ

ସମ୍ଭବ ? ରାମାବତାରର ପ୍ରମାଣ ସ୍ୱରୂପ ସେତୁବନ୍ଧ । ଭାରତର ସେତୁବନ୍ଧ ରାମେଶ୍ୱର-ଠାରୁ ଲଙ୍କା ପର୍ଯ୍ୟନ୍ତ ବିସ୍ତୃତ ଥିବାର ଦେଖାଯାଏ । ଲକ୍ଷ୍ମଣ ଉକ୍ତ ସେତୁବନ୍ଧର କେତେକ ସ୍ଥାନ କାଟି ଦେଇଥିଲେ ବୋଲି ତାହାର ଚିହ୍ନ ଏ ପର୍ଯ୍ୟନ୍ତ ରହିଅଛି । ତେବେ ରାମାୟଣ ଯୁଗର ସତ୍ୟତା ଏଥିରୁ ପ୍ରମାଣିତ ହେଲେ ସୁଦ୍ଧା ଆହୁରି ଅନେକ ପ୍ରମାଣ ରହିଅଛି । ରାମ ରାବଣ ଯୁଦ୍ଧ ମହାଭାରତର ବହୁ ପୂର୍ବ । ଏଣୁ ଅନୁମିତ ହୁଏ ଯେ ରାମାବତାରର ବହୁ ପୂର୍ବେ ଏ ସଂସାର ଥିଲା । ପୌରାଣିକ ଇତିହାସ ଏ ସମ୍ବନ୍ଧରେ ପ୍ରଚୁର ପ୍ରମାଣ ଦିଏ । ପୁରାଣାଦିର ନିର୍ମାତା, ବେଦପ୍ରଭୃତିର ନିର୍ମାତା ଯେଉଁ ଦେବର୍ଷି-ପ୍ରବରମାନେ ଅମରତ୍ୱ ଲାଭ କରିଅଛନ୍ତି, ସେମାନଙ୍କ ମଧ୍ୟରେ 'ବ୍ୟାସଦେବ' ଜଣେ ପବିତ୍ର ନାମଧାରୀ ମହାପୁରୁଷ ଅଟନ୍ତି । ଶ୍ରୀମଦ୍ଭାଗବତାଦି ମହାପୁରାଣ ଏବଂ ଶ୍ରୀମଦ୍ଭଗ-ବଦ୍‌ଗୀତାଦି ପବିତ୍ର ଗ୍ରନ୍ଥରେ ଆଧ୍ୟାତ୍ମିକ ତତ୍ତ୍ୱାଦିର ଯେପରି ବ୍ୟାଖ୍ୟା କରାଯାଇଅଛି ଏବଂ ଅନ୍ୟାନ୍ୟ ଗ୍ରନ୍ଥରେ ଯୋଗତତ୍ତ୍ୱାଦିର ରହସ୍ୟ ଯେପରି ସୁନ୍ଦର ଭାବରେ ବ୍ୟାଖ୍ୟା କରାଯାଇଅଛି ସେଥିରୁ ସହଜରେ ଜଣାଯାଏ ଯେ ପୂଜ୍ୟପାଦ ମହର୍ଷିମାନେ ମାନବାତୀତ ପ୍ରତିଭାସମ୍ପନ୍ନ ଦେବତୁଲ୍ୟ ମହାପୁରୁଷ ଥିଲେ । ଯେପରି ମହାଜ୍ଞାନୀ, ସତ୍ୟବକ୍ତା, ଧର୍ମାତ୍ମା ମହାପୁରୁଷମାନଙ୍କର ସତ୍ୟଜ୍ଞାନପୂର୍ଣ୍ଣ ଯୋଗଦୃଷ୍ଟି ଥିଲା । ସେମାନଙ୍କର ଉକ୍ତି ସାଧାରଣ ପ୍ରାଣୀର ମଙ୍ଗଳ ନିମିତ୍ତ ଯୁଗେ ଯୁଗେ ପୂଜିତ ଓ ଆଦୃତ ହୋଇ ଗ୍ରନ୍ଥାକାରରେ ରକ୍ଷା ହୋଇଅଛି । ତେବେ ଏଭଳି ଶାସ୍ତ୍ରପୁରାଣାଦିରେ ଅନାଦର, ଅବିଶ୍ୱାସ କରିବା ମନୁଷ୍ୟପକ୍ଷରେ ଜଘନ୍ୟତମ କୃତଘ୍ନତା ବ୍ୟତିରେକେ ଆଉ କିଛି ହୋଇ ନ ପାରେ । ଏବେ ବୁଝି ରଖିବାକୁ ହେବ, ମହର୍ଷିମାନଙ୍କର ପ୍ରଣୀତ ପବିତ୍ର ଗ୍ରନ୍ଥାଦି ସମସ୍ତଙ୍କର ପାଳନୀୟ, ମାନନୀୟ ଓ ପୂଜ୍ୟ ଅଟେ । ତହିଁରେ ଯୁଗାଦିର ସମୟନିରୂପଣ ଏବଂ ଅନ୍ୟାନ୍ୟ ଯେଉଁ ଯେଉଁ ସତ୍ୟୋଦ୍ଧାର କରାଯାଇଅଛି ଅଥବା ଧର୍ମ, ଜ୍ଞାନ ତତ୍ତ୍ୱାଦିର ଆଲୋଚନାର୍ଥ ଯେଉଁ ଯେଉଁ ଐତିହାସିକ ବିବରଣମାନ ପ୍ରଦତ୍ତ ହୋଇଅଛି, ତହିଁରେ ଅବିଶ୍ୱାସ କରିବା ମୂଢ଼ତା, ଅଜ୍ଞତା, ଚପଳତା, ଔଦ୍ଧତ୍ୟ, ମ୍ଲେଚ୍ଛତ୍ୱାଦି ପ୍ରଦର୍ଶନ ବ୍ୟତୀତ ଅନ୍ୟ କିଛି କାରଣ ସମ୍ଭବ ହୋଇ ନ ପାରେ । ଏବେ ଦେଖାଯାଉ ଏ ବିଶ୍ୱ-ବ୍ରହ୍ମାଣ୍ଡର କିଆଁ ୬୦୦୦ ବର୍ଷ ପ୍ରାପ୍ତ ହେବାର ଯେଉଁ ଅଭିମତ ଅଛି, ତାହାର କାରଣ ଅନେକ ଥାଇପାରେ ।

ଶାସ୍ତ୍ର ପୁରାଣାଦିରେ ଅବିଶ୍ୱାସ ଘଟାଇବା ତହିଁର ପ୍ରଥମ ଉଦ୍ଦେଶ୍ୟ । କାରଣ ତାହା ଯୁଗ ଯୁଗାନ୍ତର ପ୍ରାଚୀନ । ତାହାହେଲେ ଜଡ଼ବାଦ ଓ ଜଡ଼ବାଦୀ ମାନବଶ୍ରେଷ୍ଠ ଶୃଗାଳ ପରି ବଡ଼ ହୋଇଯିବେ । ତପୋବଳ, ନ୍ୟାୟବଳ ଓ ଧର୍ମବଳର ମର୍ଯ୍ୟାଦା ଓ ଗୁରୁତ୍ୱ ପ୍ରତି ଲଘୁଭାବ ବା ହେୟଭାବ ଜାତ ହେବ । ପୁରାଣବର୍ଣ୍ଣିତ ବୀର ଓ ମହାକର୍ମୀମାନଙ୍କ ଶୂରତ୍ୱ ଓ ଅସାଧାରଣ ବଳବୀର୍ଯ୍ୟଯୁକ୍ତ କର୍ମକୁ ଔପନ୍ୟାସିକ ମିଥ୍ୟା ବିବରଣ ପରି ଲୋକେ ମନେ କରିବେ । ସେ ସବୁ କଥାକୁ ଦୃଢ଼ କରିବାପାଇଁ ଅନ୍ୟ ଆଡ଼େ ଯୋଗାଡ଼ ଲାଗେ । ମାତ୍ର ସେହିଆଡ଼ର ବଡ଼ ବଡ଼ ଲୋକଙ୍କ ପ୍ରଣୀତ ନାନା ପ୍ରକାର

ପୁସ୍ତକର ପ୍ରଚଳନ ଓ ପଠନର ଯୋଗାଡ଼ ଲଗିଅଛି । ଏହିରୂପେ ଲେଖାପଢ଼ାଶ୍ରେଣୀସ୍ଥ ଅନେକ ଲୋକଙ୍କର ମଧ୍ୟ ପୁରାଣନିନ୍ଦା ଆଉ ଆଧୁନିକ ଲେଖା ପୁସ୍ତକରେ ବିଶ୍ୱାସପୂର୍ଣ୍ଣ ଭକ୍ତି କରିବାର ଦେଖାଯାଏ । ଅଧିକନ୍ତୁ ଏପରି ବିପରୀତ ବୁଦ୍ଧି ଧାରଣ କଲେ ବୈଷୟିକ ଓ ଆର୍ଥିକ ଉନ୍ନତି ଚର୍ଚ୍ଚିର ପୁରସ୍କାର ସ୍ୱରୂପ ପ୍ରଦତ୍ତ ହେବାର ବିରଳ ଉଦାହରଣ ଦେଖାଯାଉନାହିଁ । ଏହି ମୋହ ଆଜିକାଲି ବଡ଼ ପ୍ରବଳ ହୋଇଅଛି । ଏହାର ଫଳ ମୋଟ ଉପରେ ଦେଖିବାକୁ ଗଲେ ବୋଧହୁଏ ତାମସୀ ପ୍ରବୃତ୍ତି ମ୍ଳେଚ୍ଛତାରେ ପରିଣତ ହୋଇ, ଚିରଞ୍ଜୀବୀ ହୋଇ ରହି ସବୁ ପ୍ରକାର ଯୋଗାଡ଼ଯନ୍ତ୍ର କରି ସାରିଛି । ଏ ସବୁ ଘଟନା ବ୍ୟକ୍ତିଗତ କିମ୍ବା ସମାଜଗତ ଭାବରେ ମନୁଷ୍ୟଦ୍ୱାରା ହୁଏ ନାହିଁ କିମ୍ବା ହେଉ-ନାହିଁ କି ହୋଇନାହିଁ । ଏହା କଳିର ତାମସୀଗତିସମ୍ଭୂତ ପରାକ୍ରମସମ୍ଭୂତ । ପ୍ରେତାଦି ଯେପରି ମନୁଷ୍ୟଙ୍କୁ ଗ୍ରାସିଲେ ତାହାର ସ୍ୱଭାବସିଦ୍ଧ ସହଜାତ ଜ୍ଞାନକୁ ଆବରଣ କରି ନିଜ ନିଜର ପ୍ରେତଭାବ ମନୁଷ୍ୟଦ୍ୱାରା ପ୍ରକାଶ କରନ୍ତି, ମନୁଷ୍ୟଙ୍କୁ ବିଚଳିତ ଓ ଜ୍ଞାନ-ମୋଷ କରି ଝରିଉସୁଆଁ ଚକୁଳି ପିଠା, ମଦ ଓ କୁକୁଡ଼ାରେ ଯେହି ମନୁଷ୍ୟଙ୍କୁ ପ୍ରେତଭାବ ଦ୍ୱାରା ଖାଇବାକୁ ଓ ସେହି ପ୍ରେତମାନଙ୍କର ଅଭିପ୍ରାୟାନୁଯାୟୀ ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ କଥାମାନ କହିବାକୁ ଦେଖାଯାଇଥାଏ, ସେହିପରି ଏହି କଳି ମ୍ଳେଚ୍ଛଭି ସବ ସଂସାରକୁ ଗ୍ରାସ କଲାପରି ପରିଶେଷରେ ପବିତ୍ର ଆଧ୍ୟାତ୍ମିକ ତତ୍ତ୍ୱ ଓ ସଦାଚାର, ଯୋଗା-ଚାରାଦିର ଧର୍ମପୀଠ ଭାରତକୁ ଆଚ୍ଛାଦନ କରିବାର ଚେଷ୍ଟା କରୁଅଛି । ଏ ଚେଷ୍ଟା 'ଜନ୍ମେଜୟ' ପ୍ରଭୃତି ପବିତ୍ର ବଂଶଜଙ୍କର କାଳ ଶେଷ ପରେ ବଡ଼ ପ୍ରବଳ ବେଗରେ ଗତି କରିଅଛି । କିଛି ସହସ୍ରବର୍ଷ ଭାରତରେ ନାନା ପ୍ରକାର ବିଭ୍ରାଟ ଓ ଗଣ୍ଡଗୋଳ ଓ ଅନୈକ୍ୟାଦି ଘଟାଇ ଦେଇ ଶେଷରେ ଅନ୍ତତଃ ଏକ ହଜାର କି ବାରଶତ ବର୍ଷ ହେଲା ନିକଟ ପଶ୍ଚିମା ବିତାପ ସଙ୍ଗେ ମିଶି ଏହି କଳି ମ୍ଳେଚ୍ଛଭି, ସୟତାନ ଆଦି ସଙ୍ଗୀମାନଙ୍କ ସାହାଯ୍ୟରେ ଏହି ପବିତ୍ର ଭାରତରେ ପ୍ରବେଶ କରିଅଛି; ଅନେକ ପରିବର୍ତ୍ତନ ମଧ୍ୟ ଘଟାଇଅଛି । ଧର୍ମକାର୍ଯ୍ୟ, ଆଚାର, ବ୍ୟବହାର, ଖାଦ୍ୟ, ଗୀତ ଓ ସଂସ୍କାରର ବହୁ ପରିବର୍ତ୍ତନ ଶିକ୍ଷାଦୀକ୍ଷାଦି ସହିତ ଘଟିଗଲାଣି । ଏହି ନିକଟ ଅତୀତ ୧୨ ଶତ ବର୍ଷ କଳିଯୁଗାଦି ପାଞ୍ଚ ସହସ୍ରର ଶେଷ ଚତୁର୍ଥାଂଶ ହିସାବ ଅନୁସାରେ ହେଉଅଛି । ଏହି ବାରଶତ ବର୍ଷର ଶେଷ ଷଷ୍ଠଭାଗ ଅର୍ଥାତ୍ ପ୍ରାୟ ଦୁଇଶତ ବର୍ଷ ହେଲା ଏହି କଳି ମ୍ଳେଚ୍ଛଭି ଓ ସଇତାନ ବଡ଼ ପ୍ରବଳ ଗତି ସହିତ ଭୀଷଣ ଆକାର ଧାରଣ କରି ଦୂର ପ୍ରାନ୍ତସ୍ଥ କଳଖାଜାଣୁମୟ ଜଡ଼ବାଦ ବିତାପ ସଙ୍ଗେ ଯୁକ୍ତ ହୋଇ ଏହି ପବିତ୍ର ଭାରତରେ ପ୍ରବେଶ କରିଅଛି । କଥାବାର୍ତ୍ତାରେ, ପାନାହାରରେ ଶୁଙ୍ଘିବା ପିନ୍ଧିବାରେ, ଶିକ୍ଷା ଦୀକ୍ଷାରେ, ଶୋଇବା ବସିବାରେ, ଦବା ନବାରେ, ଚାଲିବା, ବୁଲିବା ଇତ୍ୟାଦି ସକଳ ପ୍ରକାର ସଂସାରସ୍ଥ କ୍ରିୟା କଳାପ ଅବସ୍ଥା ବ୍ୟବ-ସ୍ଥାଦିରେ ଏହି କଳି, ସୟତାନ ସହିତ ଯୁକ୍ତ ହୋଇ ତାହାର ଜୟ ପତାକା, ସବୁଆଡ଼େ, ସବୁ ପ୍ରକାରେ, ସବୁଠାରେ, ପାଇଖାନାଠାରୁ ରହିବା ଘର ମଧ୍ୟ ଦେଇ ବାଟ, ଘାଟ,

ଭୂମି, ଭବନ, ଗଗନ, ପାତାଳ ଭେଦ କରି ଉଜନାଳସ୍ଥ ପର୍ଯ୍ୟନ୍ତ ଉତ୍ତୀର୍ଣ୍ଣମାନ ହେଉଅଛୁ । ଅଥଚ ଏପରି ମୋହ ଭିତରେ ପ୍ରବେଶ କରାଇ ଦେଉଅଛୁ ଯେ ତଦ୍ଦ୍ୱାରା ମନୁଷ୍ୟ ସମାଜ ମୂଢ଼ମାନ ଓ ଜ୍ଞାନଶୂନ୍ୟ ହୋଇ ସେଥିରେ ଏକାନ୍ତ ପ୍ରମତ୍ତ ହୋଇଅଛୁ ଓ ଏହି ମନ୍ଦ ଭାବ ଘଡ଼ିକ ଘଡ଼ି, ଉତ୍ତରୋତ୍ତର ଉନ୍ନତି ଲାଭ କରି କ୍ରମଶଃ ଅଗ୍ରସର ହେଉଅଛୁ ।

ବର୍ତ୍ତମାନ ଦେଖାଗଲା ଏହି ମ୍ଳେଚ୍ଛତ୍ୱପୂର୍ଣ୍ଣ ସପ୍ତତାନ କଳ ପାଞ୍ଚ ସହସ୍ର ବର୍ଷ ମଧ୍ୟରେ ତାହାର ଶେଷ ଚତୁର୍ଥାଂଶ ଅର୍ଥାତ୍ ଗତ ବାରଶତ ବର୍ଷରେ ଏହି ଭାରତରେ ନିଜ ରୂପ ଦେଖାଇଅଛୁ; ବିଶେଷତଃ ଏହି ବାରଶତ ବର୍ଷର ଶେଷ ଦୁଇଶତ ବର୍ଷର କଥିତ ଅଳ୍ପକାଳ ମଧ୍ୟରେ ଏହି ମ୍ଳେଚ୍ଛତ୍ୱଯୁକ୍ତ ସପ୍ତତାନ ତାହାର ନିଜ ମୂର୍ତ୍ତି ସହିତ ମୋହ, ଗର୍ବ, ଆଡ଼ମ୍ବର, ବିଳାସିତା ଓ ଅଜ୍ଞାନତାଦି ସଙ୍ଗୀମାନଙ୍କ ସହିତ କାର୍ଯ୍ୟ ଆରମ୍ଭ କରି ବର୍ତ୍ତମାନ ବେଳକୁ କାର୍ଯ୍ୟର ଫଳ ପ୍ରାପ୍ତ ସଂପୂର୍ଣ୍ଣ କରିପୂର୍ତ୍ତ କରି ସାରିଲାଣି । ଆତ୍ମା ତାହାର ଆତ୍ମଜ୍ଞାନ ଅର୍ଥାତ୍ ନିଜତ୍ୱ ପୂର୍ଣ୍ଣମାତ୍ରାରେ ବିସ୍ମରଣ କରି ମୋହଗର୍ବାଦିରେ ବୁଡ଼ି କେବଳ ଭୌତିକତା ବା ପାଶବିକତାରେ ଅଭିଭୂତ ହୋଇ ପାଶବିକ ଭୋଗ ଓ କର୍ମାଦିରେ ସର୍ବଦା ଲିପ୍ତ ରହିଅଛୁ । ଜ୍ଞାନଦ୍ୱାରା ଜ୍ଞାନର କାର୍ଯ୍ୟ ହୁଏ । ଅଜ୍ଞାନତା ଦ୍ୱାରା ପାଶବିକତା କାର୍ଯ୍ୟରେ ପରିଣତ ହୁଏ । ଆତ୍ମଜ୍ଞାନ ଆଚ୍ଛାଦନ ନିମିତ୍ତ ଯେପରି ଜଡ଼ ଭୌତିକ ତତ୍ତ୍ୱପୂର୍ଣ୍ଣ ଗ୍ରନ୍ଥାଦି ବହୁ ପରିମାଣରେ ପ୍ରଚଳିତ ହୋଇଅଛୁ, ସେହିପରି ସଙ୍ଗେ ସଙ୍ଗେ ମୋହ, ଗର୍ବ, ଆଡ଼ମ୍ବର, ବିଳାସିତାଦିର ଆଦର୍ଶ ପ୍ରଦର୍ଶନୀ ରୂପେ ସର୍ବତ୍ର ଖୋଲା ହୋଇ ରଖା ହୋଇଅଛୁ ।

• ଏତଦ୍ଦ୍ୱାରା ମାନବୀୟ ଆତ୍ମା ଏହି ପବିତ୍ର ଭାରତରେ ଆତ୍ମଜ୍ଞାନ ଓ ଆତ୍ମଜ୍ଞାନ ତତ୍ତ୍ୱବିଦ୍ୟାର ଗ୍ରନ୍ଥାଦିକୁ ଅନାଦର କରି ତାମସୀ କର୍ମ ଓ ତାମସୀ ଭୋଗମୟ ମୋହ, ଗର୍ବ, ଆଡ଼ମ୍ବର ପ୍ରଭୃତିରେ ମାତି ଯାଇଅଛୁ । ଏଥିରୁ କର୍ମ ବହୁଳ ଉନ୍ନତି ଲାଭ କରିଅଛୁ । ଜଡ଼ବାଦ ଓ ଜଡ଼ପଦାର୍ଥ ସଂଗ୍ରହରେ ମନୁଷ୍ୟ ପ୍ରବୃତ୍ତ ହୋଇଅଛୁ । ଏହି ଅଳ୍ପଦିନ ମଧ୍ୟରେ ଘରେ ଘରେ ପବିତ୍ର ଧର୍ମଗ୍ରନ୍ଥାଦି ପରିବର୍ତ୍ତରେ ଜଡ଼ୀୟ ମୋହବାଦ-ପୂର୍ଣ୍ଣ ପୁସ୍ତକାଦି ଭଡ଼ା ଭଡ଼ା ହୋଇ ଗଚ୍ଛିତ ରହି ସାରିଲାଣି । ମୋହ, ଗର୍ବ, ଆଡ଼ମ୍ବର, ବିଳାସିତାଦିର ସେବା କେବଳ କର୍ତ୍ତବ୍ୟ କର୍ମରେ ପରିଣତ ହେଲାଣି । ନାନା ପ୍ରକାରର ବହୁ ଆୟାସ ଓ ଅର୍ଥ ସାଧ୍ୟ ଗୃହାଦି ଓ ଉପକରଣାଦିରେ ଗ୍ରାମନଗର ସୁସଜ୍ଜିତ ହେବାକୁ ଲାଗିଲାଣି । ଯାନବାହନର ସୀମା ନାହିଁ । ଏ ସବୁ ଅର୍ଥସାଧ୍ୟ ଆଡ଼ମ୍ବର ଏକଆଡ଼େ ଯେତିକ ବଢ଼ୁଅଛୁ, ବିଳାସିତା ଯେତିକ ଯେତିକ ବଢ଼ୁଅଛୁ, ଅନ୍ୟଆଡ଼େ ଦାରିଦ୍ର୍ୟ, ଅନାହାର, ବସ୍ତ୍ରହୀନତା, ସଂକୀର୍ଣ୍ଣତା ଓ ଦାସତ୍ୱ ସେତିକ ସେତିକ ବଢ଼ୁଅଛୁ; ଅର୍ଥାତ୍ କାହା ଦେହରୁ ଜାତ ହୁଏ ନାହିଁ, ଅନ୍ୟଠାରୁ ଆଣି ନିଜର ଅର୍ଥ ବୃଦ୍ଧି କରିଯାଏ । ଦେବା ମରିବାକୁ କେହି ଭଲ ପାଆନ୍ତି ନାହିଁ । ସୁତରାଂ ପ୍ରବଞ୍ଚନା,

କୁଟିଳତା, ବିଶ୍ୱାସଘାତକତା, ଗୁପ୍ତଚୌର, ଜାଲ, ଫିସାଦ, ମିଥ୍ୟା, ଯୁଆଚୌର ପ୍ରଭୃତି ସବୁ ପ୍ରକାରର ସୟତାନି କ୍ରିୟାଗୁଡ଼ାକ ଧନଲୋଭୀ, ଆଡ଼ମ୍ବରୀ ଓ ବିଳାସୀମାନଙ୍କୁ କ୍ରୀଡ଼ା ପୁତ୍ତଳରୂପେ ଅବାରିତ ନଚାଉଅଛି । ଏହାର ଫଳରେ ମନୋବାଦ, ଅସନ୍ତୋଷ, ଆତ୍ମକଳହ ଓ ସବୁ ପ୍ରକାରର ଅଶାନ୍ତ କ୍ରିୟା ଓ ଅଶାନ୍ତ ଭାବ ସର୍ବତ୍ର ପ୍ଲାବିତ ହୋଇ ଗଲଣି । ଏହି ପ୍ଲାବନକାରୀ ରାକ୍ଷସଗଣ ଉନ୍ନତ ମନୁଷ୍ୟ ବୋଲି ଗର୍ବ କରି ଅନ୍ୟ ସରଳ-ପ୍ରାଣ ନମ୍ରଭାବାପନ୍ନ ଲୋକଙ୍କୁ ଅର୍ଥଶୂନ୍ୟ ଦେଖି କାଷ୍ଠ ତୃଣାଦିବତ୍ ଜ୍ଞାନ କରୁଅଛନ୍ତି ।

ଏହି ଲେଖାର ଅଭିପ୍ରାୟ ବୁଝି ଏହିସବୁ ପାପଘଟନା ଉପରି ଭାରତକୁ ପୂର୍ଣ୍ଣମାତ୍ରାରେ କବଳିତ କରି ରଖିଅଛି, ସେ ସବୁ ଦେଖି ଆଲୋଚନା କରି ବୁଝିବାକୁ ଗଲେ ବହୁ ପରିମାଣରେ ଏହାର ଯଥାର୍ଥତା ଉପଲବ୍ଧି କରାଯାଇପାରିବ । ଏବେ ସଂକ୍ଷେପରେ କୁହା ଯାଇପାରେ, ଏହି ଅତି ନିକଟ ପୂର୍ବ ଦୁଇଶତ ବର୍ଷ ମଧ୍ୟରେ ଭାରତର ଏହି ଭୌତିକ ଆଡ଼ମ୍ବର, ପାଶବିକ ଆଚରଣ, ପୈଶାଚିକ ଓ ରାକ୍ଷସୀ ଭୋଗ ବିଳାସିତା ଏବଂ ଅଜ୍ଞାନ ମୋହପୂର୍ଣ୍ଣ ଜଡ଼ବାଦଚର୍ଚ୍ଚା ଓ ବିଦ୍ୟାନାମଧାରୀ ଅବିଦ୍ୟାପ୍ରଭୃତି କଳି-ମ୍ଳେଚ୍ଛତା ଓ ସୟତାନର ପ୍ରଦର୍ଶନୀପୂର୍ଣ୍ଣ ଆଦର୍ଶ ସବୁଆଡ଼େ ପୂର୍ଣ୍ଣ ହୋଇଗଲଣି । ପୁଣି ଏହି ପ୍ରଦର୍ଶନୀର ଅଧିକାରୀ ବା ନେତା ବଡ଼ିମାରେ ନୀଳବର୍ଣ୍ଣ ଶୃଗାଳପରି, ସୌନ୍ଦର୍ଯ୍ୟରେ ଗୋବରନିର୍ମିତ ଗଣଦେବତାପରି, ପରାକ୍ରମରେ ବାଉଁଶପାଇଆ କଂଟାସ-ମହାବଳ ପରି, ହାକିମିରେ ହାଡ଼-ଉମପଲ୍ଲୀର କୁକୁରଚାପିଲା ସରଦାରପରି, ଖାଁ ଖାଁରେ ପାତିପଲର ବୁଢ଼ା 'ଚେଧ' ପରି, ଧନିକତାରେ ବୃକ୍ଷଶୂନ୍ୟ ଦେଶର ଏରଣ୍ଡପରି, ଚତୁ-ରତାରେ କାକପ୍ରଭୁ ଡାମରା କୁଆପରି ଆପଣାକୁ ଭାରି ଉଚ୍ଚ ଜନ୍ତୁ ବୋଲି ଠିକ୍ କରି ସଂସାରଟାକୁ ଗୋଡ଼କଣାଠାରୁ ହୀନତମ ଆକାରରେ ଦେଖୁଅଛନ୍ତି । ଏହାଦ୍ୱାରା ବୁଝା ଯାଉଅଛି ଧର୍ମବୈପରୀତ୍ୟ ଜ୍ଞାନବିପ୍ଳବ, କର୍ମଭାବଶଙ୍କରତା ପୂର୍ଣ୍ଣ ଅଧିକାର କରି ସାରିଲେଣି, ତେବେ ଆଉ କଳି ମ୍ଳେଚ୍ଛ ସୟତାନର ଅବଶେଷ କଅଣ ରହିଲା ?

ଏଠାରେ ବର୍ତ୍ତମାନ ପ୍ରଚଳିତ ଇତିହାସ ବିଦ୍ୟାର ଟିକିଏ ସାହାଯ୍ୟ ନେଲେ ଭଲ ହୁଅନ୍ତା, ମାତ୍ର ସେ ଇତିହାସ ପରମାରୁ । ସେ ପରଧନ ଓ ରାଜ୍ୟ-ହରଣ ସମ୍ବନ୍ଧୀୟ ପ୍ରବନ୍ଧରେ ପୂର୍ଣ୍ଣ ଥିବାରୁ ପ୍ରତ୍ୟେକ ଦେଶର ସ୍ୱଦେଶୀ ଓ ସ୍ୱଜାତିଙ୍କ ଲେଖାରେ ନିଜ ଦେଶ ସମ୍ବନ୍ଧେ ଓ ନିଜ ଜାତି ସମ୍ବନ୍ଧେ ଯେପରି ଭାବ ବ୍ୟକ୍ତ ହୋଇଅଛି, ସେହି ଦେଶର ଇତିହାସ ଅନ୍ୟ ଦେଶୀ ଓ ଅନ୍ୟ ଜାତିଙ୍କ ଦ୍ୱାରା ଅନ୍ୟ ପ୍ରକାରେ ଲିଖିତ ହୋଇଅଛି । ଏଥିରେ ପ୍ରତ୍ୟେକ ଜାତିର ଲେଖକ ନିଜ ନିଜ ଦେଶ ବା ଜାତି ସମ୍ବନ୍ଧେ ସମୁଦାୟ ପାପକଳଙ୍କମୟ ବିବରଣର ଜଘନ୍ୟତମ ଅଂଶ-ଗୁଡ଼ିକ ଲୁଚାଇ ରଖି ତାହା ବିଦେଶୀ ଶତ୍ରୁ ପ୍ରତିଦ୍ୱନ୍ଦ୍ୱୀ ମୁଣ୍ଡରେ ଲଦିଦେବାର ପ୍ରୟାସ ପାଉଅଛନ୍ତି । ଏହିରୂପେ ସେସବୁ ପରସ୍ପର ଅନୈକ୍ୟ ଆକାର ଧାରଣ କରିଥିବା ଖୁବ୍

ସମ୍ଭବ । କାରଣ ପାପୀ ଜଘନ୍ୟାଶୟଗଣ ଜନ୍ତୁ ବିଗତ ପରି ନିଜ ପାପ-ମଳ ଘୋଡ଼ାଇ ରଖେ । ଆଜକାଲିର ଯୁଦ୍ଧ ବିବରଣ ଓ ଜଘନ୍ୟ କ୍ରିୟାଦି ଯେପରି ନାନାବିଧ ମିଥ୍ୟାବାକ୍ୟରେ ପୂର୍ଣ୍ଣ, ଆଉ ସତ୍ୟ ବିବରଣ ଲୁଚାଇ ରଖି ଅନ୍ୟ ପ୍ରକାରରେ ପ୍ରକାଶ କରିବାକୁ ଯେପରି ଶାସାଧିକାରୀ ସାହିତ୍ୟିକ ପଣ୍ଡିତ ବିପୁଳ ଅର୍ଥଦାନରେ ନିଯୁକ୍ତ ଅଛନ୍ତି, ସେଥିରୁ ଇତିହାସର ସତ୍ୟ ଲେଖାପ୍ରତି ଅବିଶ୍ୱାସ ହେବା ସ୍ୱାଭାବିକ । ସୁତରାଂ ତାହା ତ୍ୟାଜ୍ୟ । ତେବେ ଦେଖାଶୁଣାରୁ ଏବଂ ପ୍ରଚଳିତ ଲୋକମୁଖନିଃସୃତ କଥାରୁ ଅନୁମାନ ଦ୍ୱାରା ଯାହା କିଛି ସଂଗ୍ରହ କରାଯାଇପାରେ ତଦନୁସାରେ କହିବାକୁ ଗଲେ ଏହି ଦୁଇଶତ ବର୍ଷର କିଞ୍ଚିତ୍ ଊଣା କାଳ ମଧ୍ୟରେ ଏହି ପବିତ୍ର ଭାରତରେ ଭୌତିକ ପରିବର୍ତ୍ତନର ଦୃଶ୍ୟ ଏବଂ ସେହି ପରିବର୍ତ୍ତନର ଉପଯୋଗୀ ବହୁ ଆୟାସସିଦ୍ଧ କ୍ରିୟା ଏବଂ ତଦନୁରୂପ ଜଡ଼ଭାବ ଏତେ ଅଧିକ ପରିମାଣରେ ବୃଦ୍ଧିଲାଭ କରିଅଛି, ଏବଂ ସେହି ଦୃଶ୍ୟାଦିର ମୋହାକର୍ଷଣ ଆଧ୍ୟାତ୍ମିକତା, ଜ୍ଞାନନିଷ୍ଠା ଓ ସଦାଚାରାଦିକୁ ଏତେ ଅଧିକ ପରାକ୍ରମ ସହିତ ଦବାଇ ଦେଇ ପାରିଅଛି ଯେ ତାହାର ବଳରେ ଆଜ ଏହି ପବିତ୍ର ଭାରତ ଏକ ନୂତନ ଆକାର ଓ ନୂତନ ଭାବରେ ପରିବର୍ତ୍ତିତ ହୋଇ ଗୋଟିଏ ପାପକଳଙ୍କଭାରବହ ସ୍ଥାନପରି ପ୍ରତୀୟମାନ ହେଉଅଛି ।

ଯେଉଁ କଳିରାଜାଣୁମୟ ଜଡ଼ବାଦ କୁସଂସ୍କାର ଏ ପବିତ୍ର ଦେଶକୁ ଅଳ୍ପ ଦିନରେ ଏତେ ପତିତ କରିଦେଲାଣି, ପୁଣି ସେହି ପାଶ୍ଚାତ୍ୟ, ସଭ୍ୟତା ନାମରେ କଥିତ ହୋଇ ଜୟ-ବାଜଣା ବଜାଉଅଛି, ଅଥଚ ସେହି ବାଜଣାର ଶବ୍ଦ ଶୁଣିବାକୁ ସମସ୍ତେ ଆଗ୍ରହାନ୍ୱିତ; ସେହି କୁସଂସ୍କାରର ଜନ୍ମଭୂମି ସ୍ୱରୂପ ଯେଉଁ ଦେଶମାନ ବହୁଶତ ବର୍ଷ ପୂର୍ବରୁ ତଦ୍ରୂପ କୁସଂସ୍କାରାଚ୍ଛନ୍ନ ପାଶବିକ ସଭ୍ୟତା ବିସ୍ତାର କରି ସେହି ସେହି ଦେଶକୁ ଓ ଅନ୍ୟାନ୍ୟ ଦେଶକୁ ମୂଢ଼ତାରେ ଓ ଭୌତିକ ଦୃଶ୍ୟ ବ୍ୟାମୋହକତାରେ ବୁଡ଼ାଇ ରଖି ପାରିଅଛି, ସେହି ସେହି ଦେଶ ଯେ ବର୍ତ୍ତମାନ କପରି ତାମସୀ କ୍ରିୟା କି ପାପମୟ ବିଳାସିତାରେ ଆଚ୍ଛନ୍ନ ହୋଇ ରହିଅଛି ତାହା ଭାବିଲେ ବିସ୍ମୟ ଉପସ୍ଥିତ ହୁଏ । ଆଉ ପରମେଶ୍ୱରଙ୍କର ଜ୍ଞାନ ଧର୍ମ ପ୍ରତିଷ୍ଠିତ ଏହି ସଂସାରକୁ ଭୂତ, ପ୍ରେତ, ରାକ୍ଷସ, ପିଶାଚାଦିର ନୃତ୍ୟାଧିକାର ପାପଭୂମି ବୋଲି ସ୍ୱତନ୍ତ୍ର ହେବାକୁ ହୁଏ କାହିଁକି ? ଏଥିରେ ତ ପୃଥିବୀର ପ୍ରାଣୀମାନଙ୍କୁ ମାତ୍ର ରହି ବଡ଼ ହୃଷ୍ଟପୁଷ୍ଟ ଥିବା ଦେଖାଯାଏ । ତେବେ ଏ ଦୁଃଖର କାରଣ କଅଣ ? ବିଳାସିତା, ଗର୍ବ, ମୋହ, ଆଡ଼ମ୍ବର, ସ୍ୱେଚ୍ଛାଚାରିତା, ଆତ୍ମମ୍ଭରିତା, ପରପୀଡ଼ା, ପରହିଂସା, ପରଧନା-ପହରଣ, ମଦ୍ୟମାଂସାଦି ତାମସୀ ଖାଦ୍ୟପେୟ ଓ ସଦାବିଷୟଲିପ୍ସୁତା ଓ ଅଶାନ୍ତି ଇତ୍ୟାଦି ରାକ୍ଷସୀ କ୍ରିୟା ଓ ପୈଶାଚିକ ଭୋଗାଦି ପରା ଜ୍ଞାନ ଧର୍ମାଦିର ବିରୁଦ୍ଧ । ଆଉ ସଂସାରର ପରା ଏ ପାପଭାରଗୁଡ଼ାକ ମ୍ଳେଚ୍ଛତ୍ୱ ଓ ସମ୍ଭୂତାନିର ପରିଚାୟକ । ଏତଦ୍ଦ୍ୱାରା ଧର୍ମ, ଜ୍ଞାନାଦିର ବିପ୍ଳବ ଓ ଗ୍ଳାନି ଉପସ୍ଥିତ ହୋଇଅଛି । ଏପରି ଅବସ୍ଥାରେ ଏ ସଂସାରର ସମୁଦାୟରେ ଧର୍ମର ଗ୍ଳାନି ଓ ଅଧର୍ମର ପ୍ରାଦୁର୍ଭାବ ସୂଚିତ ହେବା ସ୍ୱାଭାବିକ ।

ଏବେ ଦେଖାଯାଉ ମନୁଷ୍ୟର ଅସ୍ଥି, ଚର୍ମ, ମେଦ, ମାଂସ, ରକ୍ତ ଓ ମଳମୂତ୍ରପୂର୍ଣ୍ଣ ଚୌରାଶୀ ଅଙ୍ଗୁଳ ପରିମିତ ଚୌରାଶୀ ନରକାଧାର ନର କଳେବର ମଧ୍ୟରେ ପରମାଣୁ ସଦୃଶ ଚକ୍ଷୁ ତାବତ୍‌ନିଖିଳ ସଂସାର ପଦାର୍ଥ । ତହିଁରେଇ କେବଳ ସବୁ ଦେଖାଯାଏ । ତାହା ଅଭାବେ ସବୁ ଅନ୍ଧାର । ତେବେ ଏ ସଂସାରରେ କର୍ମମୟ ଓ ଭୋଗମୟ ଭୂମିରେ ଜ୍ଞାନ ଧର୍ମାଦି ଚକ୍ଷୁ ସ୍ୱରୂପ । ଏହି ଚକ୍ଷୁ ଆଧ୍ୟାତ୍ମିକତତ୍ତ୍ୱ, ପରଂବ୍ରହ୍ମତତ୍ତ୍ୱ, ପରମାତ୍ମତତ୍ତ୍ୱ ଏବଂ ଜୀବାତ୍ମତତ୍ତ୍ୱ ଓ ପ୍ରକୃତି ତତ୍ତ୍ୱାଦିରେ ନିର୍ମିତ । ଏହି ତତ୍ତ୍ୱାଦି ବେଦ-ବେଦାନ୍ତ, ଉପନିଷଦ, ସୂକ୍ତ ଦର୍ଶନ ଓ ଶାସ୍ତ୍ର ପୁରାଣାଦିରେ ପୂଜ୍ୟପାଦ ମହର୍ଷିପ୍ରବରାଦିଙ୍କ ଦ୍ୱାରା ବର୍ଣ୍ଣିତ ଓ ବ୍ୟାଖ୍ୟାତ ହୋଇଅଛି । ତଦ୍ରୂପ ମହର୍ଷିମାନେ ପବିତ୍ର ପଦଧୂଳି-ଦାନରେ ଏହି ଭାରତକୁ ପବିତ୍ର ପୁଣ୍ୟଭୂମିରେ ପରିଣତ କରିଅଛନ୍ତି । ପୁଣି ଏଥିରେ ଜନ୍ମ-ଲାଭ କରି ଶିକ୍ଷା, ଦୀକ୍ଷା, ଯୋଗାନୁଷ୍ଠାନ, ତପସ୍ୟା, ବ୍ରତ, ନିୟମ ଓ ସଦାଚାରାଦି ସାଧନ କରି ଏହି ଭାରତକୁ ପବିତ୍ର ପୁଣ୍ୟ ଆଦର୍ଶ ସ୍ଥାନରେ ପରିଣତ କରିଅଛନ୍ତି । ସେହି ଧର୍ମ-ବଳରେ କେତେ କେତେ ବିରୁଦ୍ଧବାଦ, କେତେ କେତେ ବିପରୀତ ମତ, କେତେ କେତେ ଧର୍ମବିପ୍ଳବର ସ୍ରୋତ ଏ ଦେଶରେ ଚାଲିଯାଇଥିଲେ ମଧ୍ୟ ଏହାର ସେପରି କିଛି ବୈଧର୍ମ୍ୟ ବା ମ୍ଳେଚ୍ଛାଚାରାଦି ଦୋଷଦୂଷିତତା ଘଟି ପାରି ନ ଥିଲା । ଘରେ ଘରେ ଧର୍ମଗ୍ରନ୍ଥ ଓ ଦେବପୂଜା ଓ ଗ୍ରାମେ ଗ୍ରାମେ ଭଜନାଳୟ, ଉପାସନାଗାର ଓ ଦେବମନ୍ଦିରାଦି ସୁଶୋଭିତ ହେଉଥିଲା । ଏବେ ଯେ ନାହିଁ ତାହା ନୁହେଁ, ସ୍ଥାନେ ସ୍ଥାନେ ଯେ ତୀର୍ଥ ଓ ପୁଣ୍ୟ କ୍ଷେତ୍ରାଦି ଆଜିର ଏହି ମୁହୂର୍ତ୍ତରେ ଧର୍ମର ନିତ୍ୟ ଚିହ୍ନ ସ୍ୱରୂପ ବିରାଜମାନ ରହିଅଛି, ଏହା କହିବା ବାହୁଲ୍ୟ ମାତ୍ର । ସୁତରାଂ ଏହି ପବିତ୍ର ଭାରତଭୂମି ସମୁଦାୟ ପୃଥିବୀର ବିଶ୍ୱାତ୍ମକ କଳେବରର ଜାଜ୍ୱଲ୍ୟମାନ ନେତ୍ରସ୍ୱରୂପ ଅଟେ । ସବୁ ଥାଇ କଅଣ ହେବ ? ଆପାଦ-ମସ୍ତକ ଅକ୍ଷୁଣ୍ଣ ଶରୀରର ଦୃଷ୍ଟିଶକ୍ତିରେ କଅଣ ଅଛି ? ତାହା ଯଦି ନିଷ୍ପ୍ରାଣ ନିର୍ଜୀବ ହୁଏ, ତେବେ ତାହା ଶବାକାର । ଆଜିର ଧର୍ମମନ୍ଦିର ଦେବାଳୟ ପ୍ରଭୃତି ଥାଇ କଅଣ ହେବ, ବା ଧର୍ମଗ୍ରନ୍ଥାଦି ଥାଇ କଅଣ ହେଉଅଛି ? କହିବାକୁ ଗଲେ, ଅଳ୍ପସଂଖ୍ୟକ ନଗଣ୍ୟ ପରିମିତ ସାଧୁ, ମହାତ୍ମାମାନଙ୍କୁ ବାଦ୍ ଦେଲେ ପ୍ରାୟ ସମୁଦାୟ ଲୋକ ଉପସ୍ଥିତ ଜଡ଼-ବାଦିତା, ଭୌତିକ ଦୃଶ୍ୟମୟ ମୁଦ୍ରା ଓ ଉପକରଣାଦି ସଂଗ୍ରହ, ଭୂମିଧନାଦି ସଂଚୟ, ଭୋଗବିଳାସାଦି ପ୍ରମତ୍ତତା, କୁଶିକ୍ଷା, କୁଖାଦ୍ୟ, କୁପେୟ, କୁସଙ୍ଗ, କୁତ୍ସିତ ଚର୍ଚ୍ଚାରତ ଓ କୁକର୍ମାଦିରେ ପ୍ରମତ୍ତ ହୋଇଅଛନ୍ତି ।

ବିଶେଷତଃ ବର୍ତ୍ତମାନର ପାପାଚାର ଗୁଡ଼ାଏ ଲେଖି କଅଣ ହେବ ? ସମସ୍ତେ ଦେଖୁଥାଇଁ, ବୁଝୁଥାଇଁ, ଓ ଜାଣୁଥାଇଁ ଯେ ଭାରତର ଏପରି ପାପମୟ-ଅକର୍ମ-ଅବିଚାର, ଅନୀତି, ଅଧର୍ମ, ଅନାଚାର, କଦାଚାରାଦି ବର୍ତ୍ତମାନ ଭାରତକୁ ପାପଭାରମୟ କରି ରଖି ସାରିଲଣି । ତାତ୍ପର୍ଯ୍ୟ ଏହି ଯେ ଦେହ ଗୋଟିକଯାକ ଯେପରି ମୃଣ୍ମୟ ଆଉ ଚକ୍ଷୁଟାକ ଟିକିକ ମାତ୍ର ସଂପ୍ରଦର୍ଶକ ଜ୍ୟୋତିର୍ମୟ ଅଟେ, ସେହିପରି ବିଶ୍ୱାତ୍ମକ କଳେବରମୟ ସଂସାରର ସର୍ବାଙ୍ଗଭୋଗ ଏବଂ ଭୋଗୋପଯୋଗୀ କର୍ମମୟ ଅଟେ । ତହିଁରେ

ଭାରତବର୍ଷ କେବଳ ଆଧ୍ୟାତ୍ମିକ ତତ୍ତ୍ୱାଦିଯୁକ୍ତ ଜ୍ଞାନ ଧର୍ମ ଜ୍ୟୋତିର୍ମୟ ଚକ୍ଷୁ ସ୍ୱରୂପ ଅଟେ । କାରଣ ପୃଥିବୀର ସର୍ବତ୍ର ଅବଶ୍ୟ ବଦାନ୍ୟତା, ପରୋପକାର, ବିଦ୍ୟାଚର୍ଚ୍ଚାଦି ନାହିଁ, ତାହା ନୁହେ । ମାତ୍ର ତାହା ନୈତିକତାର ଅନ୍ତର୍ଗତ ପରଂବ୍ରହ୍ମତତ୍ତ୍ୱ ଓ ଅପରୋକ୍ଷାତ୍ମାନୁଭୂତି ପ୍ରଭୃତି ଯାହା 'ସର୍ବଂ ଖଲ୍ୱିଦଂ ବ୍ରହ୍ମଃ', ଅୟମାତ୍ମାବ୍ରହ୍ମ, ଅହଂ ବ୍ରହ୍ମାସ୍ମି ଓ ତତ୍ତ୍ୱମସ୍ୟାଦି ମହାବେଦବାକ୍ୟାଦି ଦ୍ୱାରା ଏବଂ ନାନାବିଧ ଯୋଗସିଦ୍ଧ ରହସ୍ୟ ଦ୍ୱାରା, ଯମ ନିୟମାଦି ବ୍ୟବହାରସାପେକ୍ଷ ନିର୍ବିକଳ୍ପ ସାଧନାଦି ଦ୍ୱାରା ପ୍ରତ୍ୟକ୍ଷ । ସେପରି ତତ୍ତ୍ୱ ଓ ସେପରି ସାଧନା ବା ସେପରି ସିଦ୍ଧିର ଆଦର୍ଶ ଭାରତ ଛଡ଼ା କେଉଁଠାରେ ? ତାହା ସବୁ ପୋଥିରେ । ଆଜି ଦେଖିବାକୁ କାହିଁ ବୋଲି ଯେ କହିବ ତାହାର ଜାଣିବା ଉଚିତ ଯେ ତାହାଭଳି କଳିପୁରୁଷପୁଙ୍ଗବମାନଙ୍କ ଦ୍ୱାରା ତାହା ଆଚ୍ଛାଦିତ ହୋଇଅଛି ବୋଲି ଆଜି ଚକ୍ଷୁଟି ପିଠି ଚମଡ଼ାରେ ପରିଣତ ହୋଇଗଲାଣି । ଆଜି ଭାରତ ମ୍ଲେଚ୍ଛଭୂମିରେ ପରିଣତ ହେବାକୁ ବସିଲାଣି ବୋଲି ବର୍ତ୍ତମାନ ସମୁଦାୟ ସଂସାରକୁ ଜ୍ଞାନଶୂନ୍ୟ ତାମସୀ କର୍ମଭୋଗ ବିଳାସପୂର୍ଣ୍ଣ ଅନ୍ଧକାରାଚ୍ଛନ୍ନ ସୟତାନ ମ୍ଲେଚ୍ଛାସିଭାବର ଲୀଳାକ୍ଷେତ୍ର ବୋଲି ସୂଚନା ଦିଆଯାଉଅଛି । ପରିଶେଷରେ କହିବାକୁ ଗଲେ ସମୁଦାୟ ପୃଥିବୀ ସହିତ ଭାରତ ମଧ୍ୟ ଆଧ୍ୟାତ୍ମିକ ତତ୍ତ୍ୱାଦି ସମନ୍ୱିତ ଅଟେ । ଜ୍ଞାନ ଧର୍ମାଦି ସମ୍ବନ୍ଧେ ନିଷ୍ପ୍ରାଣତା ଓ ନିର୍ଜୀବ ଭାବ ଧାରଣ କରିଅଛି, ଧର୍ମାଦିର ଚିହ୍ନ ବା ବାହ୍ୟାଡ଼ମ୍ବର ମାତ୍ର କ୍ଷୀଣଭାବରେ ଦେଖା ଯାଉଅଛି । ଏହି ଚିହ୍ନ ଓ ଆଡ଼ମ୍ବରାଦି ଏକପ୍ରକାର ସୌଖୀନ ଓ କ୍ରୀଡ଼ାର ସାମଗ୍ରୀ ହୋଇଅଛି । ଅତଏବ ସର୍ବ ଜଗତ କଳି ତାମସୀ ପ୍ରବୃତ୍ତିମୟ ପ୍ରବାହ ସହିତ ମ୍ଲେଚ୍ଛାସି ଓ ସୟତାନ ଲୀଳାରେ ଭାସମାନ ହେଉଅଛି । ତେବେ ଆଜି ଘୋର କଳିର ଶେଷ ଭାଗ ବୋଲି ଏହି ସବୁ ଲକ୍ଷଣରୁ ସ୍ଥିର କରିବାକୁ ହେବ । ସାବଧାନର ବିଷୟ ଏହି ଯେ, ଯେ ଯେଉଁ ଅବସ୍ଥାରେ, ତାହା ତାହାର ନିଜ ସ୍ୱଭାବ ପରି ତାକୁ ଜଣାପଡ଼େ । ସ୍ୱପ୍ନଦର୍ଶୀ ସ୍ୱପ୍ନକୁ ମିଥ୍ୟା ବୋଲି ଜାଣିପାରେ ନାହିଁ । ନିଶାଖୋର ଲୋକ ମାଦକାବସ୍ଥାକୁ ଘୃଣା ନ କରି ବରଂ ତହିଁରେ ବେଶୀ ବୁଡ଼ି ରହିଥିବାକୁ ଉତ୍ତରୋତ୍ତର ଇଚ୍ଛା କରେ ।

ଏହି ହେତୁରୁ ଉପସ୍ଥିତ କାଳର ଲୋକ ଭୋଗ କର୍ମ ବାସନାମୟ ହୋଇ ଭୋଗ ବିଳାସିତାଦିକୁ ବଡ଼ ପରମ ସ୍ୱାର୍ଥବାନ୍ ପଦାର୍ଥ ବୋଲି ଜାଣିଥିବାରୁ ତାକୁ ଘୃଣା କରିବା ବା ତ୍ୟାଗ କରିବାର ଇଚ୍ଛା ଲୋକର ହେଉନାହିଁ । ଅଭ୍ୟାସ ବଳରୁ ଆତ୍ମଦୋଷ ଗୁଣାକାରରେ ପରିଣତ ହୋଇଅଛି । ଏହା ତ ଅଧିକ ପରିମାଣରେ ପ୍ରମାଣ କରି-ଦେଉଅଛି ଯେ ଏ ଉପସ୍ଥିତ ସମୟ ଘୋର ତମସାଚ୍ଛନ୍ନ କଳିର ଶେଷଭାଗର ମ୍ଲେଚ୍ଛତ୍ୱ ଓ ସୟତାନର ପ୍ରାଦୁର୍ଭାବ ବେଳ ଅଟେ । ଏହିପରି ସମୟ ହେଲେ ଅର୍ଥାତ୍ ସତ୍ୟ, ଧର୍ମ, ଜ୍ଞାନ, ନ୍ୟାୟାଦିର ଗ୍ଲାନି ବା ବିପ୍ଳବ ଘଟିଲେ ଧର୍ମ ଜ୍ଞାନାଦିର ପୁନରୁଦ୍ଧାର ଓ ପୁନଃ ସ୍ଥାପନ ନିମିତ୍ତ ଆଜି ମ୍ଲେଚ୍ଛ, ସୟତାନ ଓ ପାପାତ୍ମାଦିର ତିରୋଭାବ ଘଟାଇବା କାରଣ ଅପରିସୀମ ଶକ୍ତିଭଣ୍ଡାରରୁ ଯେତିକି ପରିମାଣ ଶକ୍ତି ପ୍ରୟୋଗର ପ୍ରୟୋଜନ, ସେହି

ପରମିତ ଅଥଚ ସଂସାର ପକ୍ଷେ ଅତୁଳନୀୟ, ଅଚିନ୍ତ୍ୟ ଶକ୍ତି ସମ୍ପନ୍ନ ସର୍ବଶକ୍ତିମାନ ମହାପୁରୁଷଙ୍କର ଧର୍ମ ଏବଂ ଏହି ସଂସାରର ମଧ୍ୟସ୍ଥ ପବିତ୍ର ଭାରତର ଏହା ଏକ ବିଶେଷ ଗୁଣ ବା ଅଲୌକିକ ଆକର୍ଷଣ ଶକ୍ତି ଅଛି ଯେ ଏହିପରି ଧର୍ମ ବିପ୍ଳବବେଳେ ସେହି ଭାରତମାତା ସେହି ମହାପୁରୁଷ ଭଗବାନ ହରିଙ୍କୁ ପୁତ୍ରରୂପେ କ୍ରୋଡ଼ରେ ଧାରଣ କରି ନିଜ ଅଙ୍ଗକୁ ଧୌତ ଓ ପବିତ୍ର କରିଥାଏ; ଏହି ଘଟନା ପରମେଶ୍ୱରଙ୍କର ନିତ୍ୟ ଲୀଳାଭୂମି ରୂପେ ବିରାଜିତ । ଭାରତ ତଦ୍ରୂପ ପବିତ୍ର ଲୀଳାର କ୍ଷେତ୍ରରୂପେ ଚିର ପ୍ରସିଦ୍ଧି ଲାଭ କରିଅଛି । ପୁରାଣ ଶାସ୍ତ୍ରାଦି ଏବଂ ଗୀତା ଦର୍ଶନାଦି ଏ ବିଷୟର ସିଦ୍ଧାନ୍ତ ପ୍ରମାଣ ଅଟେ ।

ସଂସାରରେ ମଧ୍ୟ ଦେଖା ଯାଉଅଛି, ମନୁଷ୍ୟ ବ୍ୟକ୍ତିଗତ ଭାବରେ କୌଣସି ବିଷୟର ରକ୍ଷା ବା ଆତ୍ମୀୟ ସ୍ୱଜନର ରକ୍ଷା ନିମିତ୍ତ ନିଜର ଯଥାସର୍ବସ୍ୱ ଓ ପୂର୍ଣ୍ଣ ଶକ୍ତି ପ୍ରୟୋଗ କରିଥାଏ । ଏ ମମକାର ଗୁଣବିଶିଷ୍ଟ ପ୍ରାଣୀମାନଙ୍କର ଯନ୍ତ୍ର କେଉଁ ଅଜ୍ଞାତ ଅଡ୍ଭୁତ ଭବନରୁ ଆସିଅଛି ? ସେହି ବିଶାଳ ଭୁବନର ଭୁବନେଶ୍ୱର ତାଙ୍କ ସୃଷ୍ଟି ସଂସାର ଓ ସଂସାରସ୍ଥ ମନୁଷ୍ୟ ପ୍ରତି ଯେ ତଦ୍ରୂପ ଆପଦ ବେଳରେ ତଦ୍ରୂପ ଶକ୍ତି ପ୍ରୟୋଗ କରି ଆତ୍ମୋଦ୍ଧାର କରିବେ, ଏଥିରେ ସନ୍ଦେହ ତର୍କାଦି କିଛି ନାହିଁ । ତେବେ ବିକୃଷ୍ଟ ପକ୍ଷରେ ବା ପାପଭୋଗପରିପୂର୍ଣ୍ଣ ବ୍ୟକ୍ତି ପକ୍ଷରେ ତନ୍ମୟ ସୁଖାଶୟ ବା ସୁଖାଧାର ବିଷୟଭୋଗାଦି ବା ପାପାଶ୍ରୟ କର୍ମାଦିକ ଭୋଗାଦିର ଆଧାରଭୂତ ବିଷୟ ସମ୍ପତ୍ତ୍ୟାଦି ବସ୍ତୁ ପ୍ରେମାଦରାଦିର ପଦାର୍ଥ । ସୁତରାଂ ବିକୃଷ୍ଟ ବା ପାପୀ ମାନବ ତାହାର ନିଜ ନିଜ ଆଦରର ସାମଗ୍ରୀ ରକ୍ଷା କରିବା ସକାଶେ କଦାଚିତ୍ ତିଳେ ହେଁ ତ୍ରୁଟି କରିବ ନାହିଁ । ସବୁ ପ୍ରକାରର ତର୍କ ଯୁକ୍ତ୍ୟାଦି ଓ କ୍ରିୟାକୌଶଳାଦି ପ୍ରୟୋଗ କରିବ । ଅତଏବ ଯେଉଁମାନେ ଏହିପରି ପାପସଂରକ୍ଷଣରେ ବ୍ୟସ୍ତ, ସେମାନଙ୍କର ତର୍କ ଯୁକ୍ତ୍ୟାଦିକୁ ଅନ୍ଧକାର ଗର୍ଭରେ ନିକ୍ଷେପ କରାଯାଉ । ସଂକ୍ଷେପରେ କହି ରଖାଯାଉଅଛି ଯେ ବର୍ତ୍ତମାନ ଏହିପରି ଧର୍ମାଦି ହାନି କରିବାର ବେଳ ଉପସ୍ଥିତ ହୋଇଅଛି କି ନା ? ତାହା ବିଚାର କରିବା ନିମିତ୍ତ ବର୍ତ୍ତମାନକାଳୀନ ରୀତି, ନୀତି, ଶିକ୍ଷା, ଦୀକ୍ଷା ବା ବ୍ୟବହାରାଦି ଉଲ୍ଲେଖ କରାଯାଇ ସେ ସମ୍ବନ୍ଧେ ବ୍ୟବସ୍ଥା ଓ କର୍ତ୍ତବ୍ୟାଦି ଅବଧାରଣ କରିବା କାରଣ ନିମ୍ନରେ ସାମାନ୍ୟ କିଛି ଆଲୋଚନା କରାଯାଉଅଛି ।

## ୧୧୦ ପାଠ—କଳିକୁ ଘୋର କଳିରେ ପରିଣତ କରାଇବାର ଉପାଦାନ

ସଂସାରଲୀଳା ପ୍ରଦର୍ଶନ ଓ ସାଙ୍ଗ କରିବା ନିମିତ୍ତ ଶିକ୍ଷା ଏବଂ ଲୌକିକ ଆଦର୍ଶ ଓ ତନ୍ନିର ଅନୁକରଣାଦି ମନୁଷ୍ୟର ଏକ ଏବଂ ପ୍ରଧାନ ଅବଲମ୍ବନ । ତେବେ ଉପସ୍ଥିତ ଜନର ଶିକ୍ଷା ଓ ଆଦର୍ଶ ଅନୁକରଣାଦି କିପରି ? ମନୁଷ୍ୟ ବାଲ୍ୟାବସ୍ଥାରେ ଅଜ୍ଞାନ ଓ ପଶୁପରି ସୁଖଦୁଃଖାଦି ବୋଧକ୍ଷମ ଥାଏ । ଏହା ଦୈହିକ ଧର୍ମ ଓ ସଂସ୍କାର । ପ୍ରାଣୀ-

ଜାତ ମାତ୍ରେ ଏହି ଦେହ, ଧର୍ମ ଓ ସଂସ୍କାରାଦିର ସ୍ୱଭାବତଃ ଅଧୀନ; ପଶ୍ୱାଦି ଯନ୍ତ୍ରରେ ଜ୍ଞାନୋନ୍ନତି ନିମିତ୍ତ ଶିକ୍ଷାଦିର ଏକାନ୍ତ ଅସୁବିଧା ଓ ଅକ୍ଷମତା ଲକ୍ଷିତ ହୁଏ । ଶୁକପକ୍ଷୀ ରାମନାମ ଗାନ କଲେ ସୁଦ୍ଧା ତହିଁର ଅର୍ଥ ବ୍ୟୁତ୍ପତ୍ତ୍ୟାଦି ଜାଣେ ନାହିଁ । ମନୁଷ୍ୟ ଶିକ୍ଷାର ଅଧିକାରୀ ଓ ଶିକ୍ଷାରୁ ଜ୍ଞାନଲାଭର ଅଧିକାରୀ ବୋଲି ମାନବଜନ୍ମ ଶ୍ରେଷ୍ଠ ସାର ଜନ୍ମ ଅଟେ । ଜ୍ଞାନଦ୍ୱାରା ଆତ୍ମଦର୍ଶନ ଲାଭ ହୁଏ । ଏହା ଆତ୍ମସମ୍ବାଦରେ ଲେଖାଯାଇଅଛି । ଏବେ ଦେଖାଯାଉ, ଆଧୁନିକ ଶିକ୍ଷା ଆତ୍ମଜ୍ଞାନପ୍ରଦ କି କେବଳ ଅର୍ଥକରୀ ବା ଭୋଗ-ବିଳାସାଦିର ନିଦାନ; ତାହା ଆଲୋଚନାର ବିଷୟ ଅଟେ । ଏ ଦେଶରେ ବାଳକ ପ୍ରଥମ ଦିନ ବିଦ୍ୟାଳୟକୁ ଯାଇ ବ୍ରହ୍ମା, ବିଷ୍ଣୁ ଓ ମହେଶ ନାମରେ ତିନିଗୋଟି ମଣ୍ଡଳ ଲେଖିବାକୁ ଶିଖୁଥିଲେ । ପରେ ବର୍ଣ୍ଣମାଳାଦି ଜ୍ଞାନ ସଙ୍ଗେ ସଙ୍ଗେ ଈଶ୍ୱର ସ୍ତୁତି ଶିକ୍ଷା କରୁଥିଲେ । ପାଠୋନ୍ନତି ସଙ୍ଗେ ସଙ୍ଗେ ସଂସାରବିଷୟ ବିଷୟକର୍ମ ଶିକ୍ଷା, ନ୍ୟାୟ ଦର୍ଶନାଦି ସାହିତ୍ୟ ପ୍ରବନ୍ଧମାନ, ଗଣିତ, ଜ୍ୟୋତିଷ, ଆୟୁର୍ବେଦ, କାବ୍ୟ, ନାଟକ, ଉପନ୍ୟାସ ଓ ଅଳଙ୍କାରାଦି ଗ୍ରନ୍ଥ ପାଠ କରୁଥିଲେ । ଶାସ୍ତ୍ର, ପୁରାଣ ଓ ଆଧ୍ୟାତ୍ମିକ-ତତ୍ତ୍ୱବିଦ୍ୟାଦି ମଧ୍ୟ ଅଭ୍ୟାସ କରୁଥିଲେ । କୁଶାସନୋପବିଷ୍ଟ ଗୁରୁଦେବ, ବୃକ୍ଷମୂଳ ଭଳି ସ୍ଥାନକୁ ବିଦ୍ୟାପୀଠ ରୂପେ ବ୍ୟବହାର କରିବାକୁ ଭଲ ପାଉଥିଲେ । ସେଠାରେ ଶିଷ୍ୟମାନଙ୍କର ଜ୍ଞାନଲାଭ ଓ ବୃଦ୍ଧି ନିମିତ୍ତ, ସଦାଚାରଶିକ୍ଷା, ଧର୍ମଶିକ୍ଷା, ଯୋଗଶିକ୍ଷାଦି ସବୁପ୍ରକାର ଆତ୍ମୋନ୍ନତି-କର ତତ୍ତ୍ୱ ଅଭ୍ୟାସ କରାଯାଉଥିଲା । ମନୁଷ୍ୟ ଶିକ୍ଷାଦ୍ୱାରା ମନୁଷ୍ୟତ୍ୱ ଓ ଦେବତ୍ୱ ପର୍ଯ୍ୟନ୍ତ ଲାଭ କରୁଥିଲା । ସଂସାରଯାତ୍ରାଦି ମଧ୍ୟ ନିୟମ ସଂଯମ ସହିତ ନିର୍ବାହ କରୁଥିଲା । ଏ ସମ୍ବନ୍ଧେ ଏ ଦେଶରେ ଭୂରି ଭୂରି ଗ୍ରନ୍ଥ ପ୍ରଣୀତ ହୋଇଥିଲା । ତାହା ଅବ୍ୟବହାର୍ଯ୍ୟରୂପେ ବର୍ତ୍ତମାନ କେବଳ 'ଖଟୁଲି' ପ୍ରଭୃତିକୁ ମଣ୍ଡନ କରୁଅଛି, ଅଥବା ସ୍ଥାନାନ୍ତରରେ ହେୟ ଓ ଅକର୍ମଣ୍ୟ ଜ୍ଞାନରେ ପରିତ୍ୟକ୍ତ ହେଉଅଛି । ଯଦାହେଉ ଶିକ୍ଷାର ଉଦ୍ଦେଶ୍ୟ ଥିଲା ସରଳ ସଂଯତଭାବରେ ସଂସାରଯାତ୍ରା ନିର୍ବାହ କରିବା ଓ ପରକାଳର ସାହାଯ୍ୟ ନିମିତ୍ତ ଜ୍ଞାନାଦି ଲାଭ କରିବା । ମନୁଷ୍ୟପଦବାଚ୍ୟ ମନୁଷ୍ୟତା ସହକାରେ ସଂସାରକ୍ରିୟା ଏବଂ ପାରମାର୍ଥିକ-ଜ୍ଞାନ ସଂଗ୍ରହଦ୍ୱାରା ମନୁଷ୍ୟ ସବୁ ସାଙ୍ଗ କରି ଇହଜଗତରୁ ବିଦାୟ ନେବାକୁ ବାଧ୍ୟ । ଏହି ଲକ୍ଷ୍ୟରେ ଏ ଦେଶର ପୂର୍ବକାଳ ଶିକ୍ଷା ନିର୍ଦ୍ଦିଷ୍ଟ ହୋଇଥିଲା । ଏବେ ଏହି ଶତାଧିକ ବର୍ଷ ମଧ୍ୟରେ ବହୁ ସହସ୍ର ବର୍ଷର ସଞ୍ଚିତ ଶିକ୍ଷା, ଦୀକ୍ଷା ଓ ସଂସ୍କାର, ଆଚାର ବ୍ୟବହାରାଦି ସବୁ ଜଡ଼ବାଦ ବିଳାସ ବଳରେ ଉଡ଼ିଯାଇ ପୂର୍ବ ସମୁଦ୍ରରେ ପତିତ ହୋଇ ଅତଳ ସ୍ପର୍ଶ କରିଅଛି ।

ଏହି ତୁଳନାରେ ଦେଖିଲେ ବର୍ତ୍ତମାନ ଶିକ୍ଷା ଦୀକ୍ଷାଦି କେବଳ ଅର୍ଥକରୀ ଓ ଭୋଗବିଳାସ, ଆଡ଼ମ୍ବରାଦିର ଆସ୍ପଦରୂପେ ଦଣ୍ଡାୟମାନ ହୋଇଅଛି । ନାନାବିଧ କର୍ମଶିକ୍ଷା ବା ବିଦ୍ୟାଶିକ୍ଷା ଓ ଦାସତ୍ୱଶିକ୍ଷାର ଗଣ୍ଡି ମଧ୍ୟରେ ଆବଦ୍ଧ ରହି ତଦ୍ରୂପ ଶିକ୍ଷିତ ମାନବ-ସମାଜକୁ ଦାସାନୁଦାସରୂପେ ଗଠନ କରୁଅଛି । ଆଜକାଲି ଶିକ୍ଷା କେବଳ ଭୋଗ,

ବିଳାସ, ଆଡ଼ମ୍ବର, ତଦ୍ରୂପ ଶିକ୍ଷାନଭିଜ୍ଞ ସ୍ୱଜାତି, ସ୍ୱଦେଶୀ, ଆତ୍ମୀୟ ବନ୍ଧୁବର୍ଗ ଏମନ୍ତ କି ପିତୃ, ଭ୍ରାତୃ ପ୍ରଭୃତିଙ୍କ ପ୍ରତି ଅବଜ୍ଞା ଅବହେଳା ଓ ହେୟ ପ୍ରଦର୍ଶନ ଏବଂ ଧର୍ମଜ୍ଞାନାଦି ସହିତ ଅସଂପର୍କ, ଭୃତ୍ୟଶ୍ରେଣୀୟ ଦେଖାଣିଆଙ୍କ ପ୍ରତି ଭକ୍ତି ଓ ଉଚ୍ଚଭାବ ପୋଷଣ ପ୍ରଭୃତି ପାଶବିକ ପ୍ରବୃତ୍ତିର ପ୍ରଦର୍ଶନୀ ଖୋଲି ଦେଇଅଛି । 'ଖଜୁରି ଗଛର କସ ବାହୁନିବା, ସେ ତ ମୂଳରୁ ପାହାଚ ପାହାଚ ।' ପ୍ରଥମରୁ ବିଦ୍ୟାଳୟ ପରିଦର୍ଶନ କର । ଲକ୍ଷ ଲକ୍ଷ ଟଙ୍କାରେ ତାହା ନିର୍ମିତ ଓ ହଜାର ହଜାର ଟଙ୍କାର କାଷ୍ଠାସନ ପ୍ରଭୃତିରେ ତାହା ସୁରଞ୍ଜିତ ଓ ସୁରକ୍ଷିତ ହୋଇଅଛି । ଶିକ୍ଷକ ମହାଶୟଙ୍କ ତର୍ଜନ ଗର୍ଜନ, ଗାମ୍ଭୀର୍ଯ୍ୟ ଓ ପୋଷାକ ପରିଚ୍ଛଦ ସହ ଦୈହିକ ଆକାର ପ୍ରକାରର ଆଡ଼ମ୍ବରାଦି ଶିଷ୍ୟମାନଙ୍କୁ ତଦ୍ରୂପ ହେବାକୁ ଇଙ୍ଗିତ କରୁଅଛି । ସ୍କୁଲ ମନ୍ଦିରର ହତା ନନ୍ଦନକାନନରୁ ବଳି ସୁଦୃଶ୍ୟ ଓ ସୁରମ୍ୟ ହୋଇଅଛି ଏବଂ ବହୁ ଅର୍ଥବ୍ୟୟସାପେକ୍ଷ ଦୃଶ୍ୟ ଉପଭୋଗ କରି ବାଳକମାନଙ୍କର ପ୍ରଥମରୁ ଆଡ଼ମ୍ବରଟା ବଡ଼ ପୁରୁଷାର୍ଥ ବୋଲି ସେମାନଙ୍କ ମନରେ ଦୃଢ଼ ଧାରଣା ଜନ୍ମାଉଅଛି । ଏଆଡ଼େ ସେହି ଅର୍ଥର ଅପଚୟ ବାଳକମାନଙ୍କର ଅଭିଭାବକମାନଙ୍କର ଦାରିଦ୍ର୍ୟ ଘଟାଇ କରି ଓ ନାନାପ୍ରକାର ଅତିରିକ୍ତ ଉପକରଣାଦିରେ ସେମାନଙ୍କୁ ବ୍ୟତିବ୍ୟସ୍ତ କରୁଅଛି । ଯାହା ହେଉ, ବିଦ୍ୟାଗାର ଓ ହତା ଦର୍ଶନ କରି ଏବଂ ଶିକ୍ଷକ ମହାଶୟମାନଙ୍କର ଆଡ଼ମ୍ବର ପରିଚ୍ଛଦ୍ୟୁକ ଦୃଶ୍ୟାଦିରୁ ଶିଷ୍ୟମାନେ ଗର୍ବ, ଆଡ଼ମ୍ବର ଓ ଭୋଗବିଳାସିତାଦି ବଡ଼ ଜିନିଷ ବୋଲି ହୃଦୟଙ୍ଗମ କରି କାର୍ଯ୍ୟରେ ପରିଣତ କରୁଅଛନ୍ତି । ସେହି ସଙ୍ଗେ ନିଜ ସମାଜକୁ ହେୟ ଓ ନୀଚ ବୋଲି ସ୍ଥିର ଭାବ ପୋଷଣ କରୁଅଛନ୍ତି । ଅଧିକନ୍ତୁ ଏହି ବହୁ ବ୍ୟୟସିଦ୍ଧ ପ୍ରଦର୍ଶନୀର ମୂଳ ଅଭିନେତା ବା ବ୍ୟୟକର୍ତ୍ତାମାନଙ୍କୁ ସ୍ୱର୍ଗରାଜ୍ୟର ଅଧିଦେବତାରୂପେ, କାୟମନୋବାକ୍ୟରେ ବରଣ କରି ନିଜ ନିଜକୁ କୃତାର୍ଥ ମଣୁଅଛନ୍ତି । ଏତଦ୍ୱାରା ବାଳକମାନେ ଜ୍ଞାନୋନ୍ନତିକର ବିଦ୍ୟା କଅଣ ଶିଖିଲେ? କିଛି ନାହିଁ ! ଶିଖିଲେ କେବଳ ଆଡ଼ମ୍ବରଭୋଗବିଳାସର ମୋହ ଆଉ ଏତଦ୍ରୂପ ମହାକୀର୍ତ୍ତିର ସ୍ଥାପକ ପ୍ରତି ଭକ୍ତି ଓ ଉଚ୍ଚ ଭାବ ପ୍ରଦର୍ଶନ ଏବଂ ସଙ୍ଗେ ସଙ୍ଗେ ନିଜ ଜାତିର ନୀଚତ୍ୱ ସୂଚନା 'ଘରେ ନ ପଶୁଁ ଗୃହ ବାଜିବା' ପରି । ବିଦ୍ୟାର ନାମ ନ ଧରୁ, ଆଗ ପ୍ରଥମରୁ ଏତିକି ଲାଭ ହେଉଅଛି । ଏପରେ ଶିକ୍ଷା । ଶିକ୍ଷଣୀୟ ବିଷୟମାନଙ୍କର ନାମ ଶୁଣିବାକୁ ଯେପରି, ଜ୍ଞାନ ସେପରି ନୁହେଁ । ଶିକ୍ଷଣୀୟ ବିଷୟମାନଙ୍କର ନାମ 'ଅନନ୍ତ ନାମେ ଅନ୍ତ ନାହିଁ' ଅର୍ଥାତ୍ ସାହିତ୍ୟ, ଗଣିତ, ଇତିହାସ, ଭୂଗୋଳ, ବିଜ୍ଞାନ, ରସାୟନକ ତତ୍ତ୍ୱ, ଭୂତତ୍ତ୍ୱ, ଖଗୋଳତତ୍ତ୍ୱ, ଉଦ୍ଭିଦତତ୍ତ୍ୱ, କୃଷିତତ୍ତ୍ୱ, ପ୍ରାଣୀତତ୍ତ୍ୱ ଇତ୍ୟାଦି କେତେ କେତେ ନାମ ବିଶିଷ୍ଟ କେତେ କେତେ ପ୍ରକାରର ବିଷୟ ସଂକଳିତ ଓ କେତେ କେତେ ଗ୍ରନ୍ଥ ଯେ ବର୍ତ୍ତମାନ ଦେଖାଯାଏ ତାହାର ସଂଖ୍ୟା ନାହିଁ । ଏସବୁରେ ଆଜକାଲି ସଂସାର ବିମୋହିତ ହୋଇଅଛି ଓ ହେବାର ମଧ୍ୟ କଥା ।

ଏହି ଉପରୋକ୍ତ ଗୋଟିଏ ଗୋଟିଏ ବିଷୟ ଅର୍ଥାତ୍ ସାହିତ୍ୟ ହେଉ ବା ଗଣିତାଦି ହେଉ, ଶିକ୍ଷା କରିବାର ପ୍ରଣାଳୀ ଏପରି ନିୟମବଦ୍ଧ ଯେ ସେହି ଏକ ଏକ ବିଷୟର ଶେଷ

ସୋପାନ ପର୍ଯ୍ୟନ୍ତ ଶିକ୍ଷା ଲାଭ କରି ବଡ଼ ମାନ୍ୟାର୍ହ ପ୍ରଶଂସାପତ୍ର ପାଇବାକୁ ହୋଇଥାଏ । ଏହାପରି ଏକାଧିକ ବର୍ଷଯାଏ ଶିକ୍ଷା କରି ଅନେକଙ୍କୁ ଏକାଧିକ ବଡ଼ ବଡ଼ ଉଚ୍ଚ ଶିକ୍ଷାର ପ୍ରଶଂସାପତ୍ର ମଧ୍ୟ ଲାଭ କରିବାକୁ ହୋଇଥାଏ । ଏହାପରି ଶିକ୍ଷିତ ସମାଜ ଆଜକାଲି ଅଳ୍ପ ବୋଲି କୁହାଯିବ ନାହିଁ । ତେବେ ଆଜକାଲି ବିଦ୍ୟୋନ୍ନତି ବା ଅବସ୍ଥାଦିର ଉନ୍ନତି ସମ୍ବନ୍ଧେ ଉନ୍ନତି ବୋଲି ଅକ୍ଷର ତିନୋଟି ସବୁଆଡ଼େ ଧ୍ୱନିତ ଓ ପ୍ରତିଧ୍ୱନିତ ହେଉଅଛି । ଏହି ଶିକ୍ଷାରୁ ଜଡ଼ଜ୍ଞାନ ତତ୍ତ୍ୱ, ରସାୟନିକ ତତ୍ତ୍ୱ ଇତ୍ୟାଦି ନାନାପ୍ରକାର ତତ୍ତ୍ୱର ଜ୍ଞାନଲାଭ କରାଯାଇ ତଦ୍ୱାରା ମାଟିକୁ ଇଟା ପଥରାଦିରେ, ପିତ୍ତଳକୁ ସୁବର୍ଣ୍ଣାଦିରେ, ଗୋଡ଼ି ବାଲିକୁ ହୀରକାଦିର ପ୍ରଭୃତି ନାନାବିଧ କୃତ୍ରିମ ବୈକାରିକ ଉପାୟରେ ସୃଷ୍ଟିର ଅବତାରଣା କରାଯାଇଅଛି । ଏହି ଜଡ଼ବିଜ୍ଞାନ ତତ୍ତ୍ୱବଳରେ ନାନା ପ୍ରକାର ସ୍ଥଳଯାନ, ଜଳଯାନ ଓ ଆକାଶଯାନାଦି ହୋଇଅଛି ଓ ହେଉଅଛି । ନାନା ପ୍ରକାର ବାର୍ତ୍ତାବହ ଯନ୍ତ୍ର ଓ ଅସଂଖ୍ୟ ପ୍ରକାର ପଦାର୍ଥ ନିର୍ମାଣକ୍ଷମ ନାନାବିଧ କଳକୌଶଳାଦି ମଧ୍ୟ ତିଆରି ହେଉଅଛି । ପୁଣି ନାନା ପ୍ରକାର ନରହିଂସାସାଧନର ଉପଯୋଗୀ ବିଷାକ୍ତ ଓ ଆଗ୍ନେୟ ଅସ୍ତ୍ରାଦି ମଧ୍ୟ ଅସଂଖ୍ୟ ଅର୍ଥବ୍ୟୟରେ ଆମଦାନି ହେଉଅଛି । ଏହି ଶିକ୍ଷାରୁ ନାନା ପ୍ରକାର ବିଭାଗୀୟ କର୍ମସାଧନର ଗୁଣ ମଧ୍ୟ ମନୁଷ୍ୟ ସଂଚୟ କରୁଅଛି । ଏହି ଶିକ୍ଷା-କୁହୁକ ସଂସାରରେ ଏକ ନବଯୁଗର ସୃଷ୍ଟି କରିଅଛି । ମନୁଷ୍ୟ ଯେତେ ଯେଉଁଆଡ଼େ ପ୍ରବର୍ତ୍ତି ଯାଉ ପଛକେ ସେହି ପ୍ରବୃତ୍ତିର ଲକ୍ଷ୍ୟ ସ୍ଥିର ଥିବା ଉଚିତ । ପ୍ରଥମ ଲକ୍ଷ୍ୟ ଜ୍ଞାନଲାଭ, ଦ୍ୱିତୀୟ ଲକ୍ଷ୍ୟ ଫଳଲାଭ । ମନୁଷ୍ୟର ଶିକ୍ଷା ଦୀକ୍ଷାଦି ହେଉ ବା ଆଦର୍ଶ ଅନୁକରଣ ପ୍ରଭୃତିର ପଶ୍ଚାଦ୍‌ଧାବନ ହେଉ, ପ୍ରତ୍ୟେକ କାର୍ଯ୍ୟରେ କିଛି ଶିକ୍ଷା ମିଳେ ଏବଂ ସେହି ଶିକ୍ଷା କୌଣସି ପ୍ରକାର ଫଳଲାଭକୁ ଲକ୍ଷ୍ୟ କରିଥାଏ । ଏହି ସ୍ୱଭାବସମ୍ମତ ନିୟମାଧୀନରେ ମନୁଷ୍ୟ ଅନୁଗତ ରହିବାକୁ ବାଧ୍ୟ । ଏତଦ୍ରୂପ ଶିକ୍ଷା ଦୀକ୍ଷାଦିରୁ କର୍ମ ସଂଗ୍ରହ କରିବାକୁ ମନୁଷ୍ୟମାନଙ୍କ ପ୍ରବୃତ୍ତି ସହିତ ନିଯୁକ୍ତ ଅଛି । ଏଥିରୁ ଯଥା ପରିମାଣରେ ଯଥାଯଥ ପ୍ରକାରର ଜ୍ଞାନଲାଭ ହେଉଅଛି । ତହିଁରୁ କର୍ମକ୍ଷେତ୍ରରେ ସିଦ୍ଧିଲାଭ କଲେ ଯଥା ଫଳପ୍ରାପ୍ତି ଘଟୁଅଛି । ମାତ୍ର ଏହି ଶିକ୍ଷା, ଜ୍ଞାନ ବା ଫଳଲାଭରେ ମନୁଷ୍ୟ ଯଦି ଭ୍ରାନ୍ତ ହୁଏ, ଆଉ ସେହି ଭ୍ରାନ୍ତିଦ୍ୱାରା ସେ କି ଫଳ ଲାଭ କଲା ତାହା ଯଦି ବୁଝିବାକୁ ଅକ୍ଷମ ହୁଏ, ଅଥବା ମନ୍ଦକୁ ଯଦି ଭଲ ମଣେ, ତେବେ ତାହାର ଶିକ୍ଷାଦୀକ୍ଷାଦି ଏବଂ ଜ୍ଞାନଲାଭ ବା ଫଳପ୍ରାପ୍ତ୍ୟାଦି ସବୁ ବିଫଳ ବୋଲି କହିବାକୁ ହେବ ।

ଏବେ ଦେଖିବାକୁ ଗଲେ ଆଧୁନିକ ଶିକ୍ଷାଦୀକ୍ଷାଦିରେ ଯେଉଁ ଜ୍ଞାନ ଲାଭ ହେଉ-ଅଛି ଏବଂ ଜ୍ଞାନରୁ ଯେଉଁ ଫଳଲାଭ ଘଟୁଅଛି, ତାହା ସବୁ ଆଖିରେ ଦେଖା ପଡ଼ୁଅଛି । ଜ୍ଞାନ ସହିତ ବିଶ୍ୱର ଦେଖାଯାଉ ସେ ସବୁ କଅଣ ଓ କିପରି ? ସେହି ଶିକ୍ଷାରେ ଅଳ୍ପ ସମୟ ବ୍ୟୟିତ ହେଲେ ବଡ଼ ଅଳ୍ପ ଶିକ୍ଷା ମିଳୁଅଛି । ଜ୍ଞାନର ଘର କେଜାଣି କେଉଁ-ଆଡ଼େ ? ତେବେ ଲାଭ ମଧ୍ୟରେ ହୀନ ସୋପାନର ଗୋଲାମି ଟିକିଏ । ଯେବେ ଉଚ୍ଚ ଶିକ୍ଷାର ଫଳ ଦେଖିବାକୁ ଯାଅ, ସେ କଅଣ ମହାକାଳ ଫଳ ପରି ନୁହେ କି ? ଆଗ

୨୫ ବର୍ଷ କି ୩୦ ବର୍ଷ ଆୟୁରୁ ବ୍ୟୟ ହୋଇ ଯାଉଅଛି । ଚର୍ମ ଶୁଖି ଶୁଖି ବୁଢ଼ାକଥା ହୋଇଯାଉଛି । ଆଜି କେତେ କଅଣ ଦୈହିକ ବିକାର ଓ ମାନସିକ ଦୌର୍ବଲ୍ୟାଦି ଲାଭ ହେଉଅଛି, ତାହା ଡାକ୍ତର କବିରାଜଙ୍କର ମାସିକ ରିପୋର୍ଟରୁ (ବିଲ୍‌ରୁ) ଜଣା ପଡ଼ୁଅଛି । କେବଳ ପୋଷାକ ପରିଚ୍ଛଦରେ ଦେହର ପ୍ରକୃତିଦତ୍ତ ସୌନ୍ଦର୍ଯ୍ୟ ଯାହା ଘୋଡ଼ାଇ ରଖା ଯାଉଅଛି, ସେହିଟା ମହତ୍ତ୍ୱର ବଡ଼ ଚିହ୍ନ । ଏ ଦେଶ ତୁଳନାରେ ଅନେକ ବଡ଼ ବଡ଼ ଶବ୍ଦ ସବୁଥିରେ ଲାଗି ଯାଉଅଛି । ବଡ଼ ଘର, ବଡ଼ ବଗିଚ୍, ବଡ଼ ସୁନ୍ଦର ବସନ-ଭୂଷଣାଦି, ବଡ଼ ଘୋଡ଼ାଲଗା ବଡ଼ ବଡ଼ ଶକଟ ଜାତୀୟ ଯାନ, ବଡ଼ ଆଦର୍ଶର ଭାବଭଙ୍ଗି, ସମଜାତୀୟ ବଡ଼ ବଡ଼ ସଙ୍ଗୀ ପ୍ରଭୃତି ଦେଖାଣିରୁ ସ୍ୱଜାତୀୟ ପ୍ରତି ବଡ଼ ଘୃଣା ଓ ବଡ଼ ହେୟଜ୍ଞାନ ପ୍ରଭୃତି ବଡ଼ ଆଦର୍ଶରେ ବଡ଼ିମା କେତେ ବଢ଼ି ଯାଉଅଛି, ତାହାର ମାପକାଠି ଏ ଦେଶରେ ଏ ପର୍ଯ୍ୟନ୍ତ ତିଆର ହୋଇନାହିଁ ।

କେହି କେହି ଏହି ବଡ଼ିମାର କୁହୁକରେ ପଡ଼ି ସ୍ୱଜାତି ବା ସ୍ୱକୀୟ ରକ୍ତସମ୍ବନ୍ଧ ମାତୃ-ପିତୃ-ଭ୍ରାତା-ଭଗିନୀମାନଙ୍କୁ ଚିରଦିନ ସକାଶେ ପରିତ୍ୟାଗ କରି ବଡ଼ିମାର ଅନ୍ଧକାରମୟ ମାର୍ଗରେ ଭ୍ରମଣ କରୁଅଛନ୍ତି । ଏହି ବଡ଼ଶିକ୍ଷାର ଶେଷଫଳ ଅର୍ଥୋପାର୍ଜନ ଭିନ୍ନ ଆଉ କିଛି ନୁହେଁ । ସେହି ଅର୍ଥଲାଭର ସ୍ଥାନ ଜଳ ହେଉ, ସ୍ଥଳ ହେଉ ବା ପାତାଳ ହେଉ, ଅରଣ୍ୟ ହେଉ ବା ପାହାଡ଼ ହେଉ, ସ୍ୱଦେଶ, ବିଦେଶ, ଯେ କୌଣସି ଅଞ୍ଚଳ ହେଉ, ସେହିଠାରେ ନରକଳେବର ଉପସ୍ଥିତ ହେବାକୁ ପ୍ରସ୍ତୁତ ହେଉଅଛି । ଦାସତ୍ୱ ଏହି ଅର୍ଥଲାଭର ବଡ଼ ପ୍ରଣୟଦାୟୀ । ଏହି ଅର୍ଥ ଅଧିକାଂଶରେ ଭୋଗ, ବିଳାସିତା ବ୍ୟସନାଦିରେ, ଗର୍ବ ଆଡ଼ମ୍ବର ପ୍ରଦର୍ଶନରେ ବ୍ୟୟିତ ହେଉଅଛି । ଏହି ମାୟା ଭ୍ରମଣରେ ଭ୍ରମି ଭ୍ରମି ଆୟୁର ଅବଶିଷ୍ଟ ଅର୍ଦ୍ଧଭାଗରୁ ଅଳ୍ପ ବାକି ଥାଉଁ ଥାଉଁ କେହି କେହି ବା ଦାସତ୍ୱ ଶୃଙ୍ଖଳରେ, କେହି କେହି ବା ଅନ୍ୟାନ୍ୟ ବନ୍ଧନରୁ ଦେହଛଡ଼ା ହୋଇ ପାରିଥାନ୍ତି, କେହି କେହି ବା କଲମ କାମୁଡ଼ି ଥାଉଁ ଥାଉଁ ପ୍ରାଣ ହରାନ୍ତି । ମନୁଷ୍ୟ ଜୀବନ ପକ୍ଷରେ ଏହି ଦୃଶ୍ୟ ଭ୍ରାନ୍ତିପୂର୍ଣ୍ଣ ନୁହେ କି ? ମନୁଷ୍ୟର ଐହିକ ପରମାୟୁ ଅସୀମ କାଳଗର୍ଭରେ ନଗଣ୍ୟ କ୍ଷୁଦ୍ରତମ; ତହିଁ ମଧ୍ୟରୁ ଅର୍ଦ୍ଧଭାଗ ଗଲା ଶିକ୍ଷାରେ, ବାକି ଅଧିକ ଗଲା ବ୍ୟସନାଦି କାଳ ମୁଖରେ । ଶେଷରେ କେଉଁ ସୁଖ, ଭୋଗ ବା ଜ୍ଞାନ-ଲାଭର ସ୍ଥାନ ଆଗକୁ ରହିଲା ? ସେ କଥା ତ ଏ ଷାଠିଏ ବର୍ଷ ମଧ୍ୟରେ ଦିନେହେଲେ ପଡ଼ିଲା ନାହିଁ । ୩୦ ବର୍ଷ ପଠନର ଶ୍ରମ, ବାକି ୩୦ ବର୍ଷ ଦୁର୍ବହ କର୍ମଭାର ବହନର ଶ୍ରମ କରି କରି ପଞ୍ଚଭୌତିକ ଦେହ ତ ଶେଷରେ ପଞ୍ଚତ୍ୱ ପ୍ରାପ୍ତ ହେଲା । ହେ ଜୀବାତ୍ମନ୍ ! ଆପଣଙ୍କର ବଡ଼ ଆଶ୍ଚର୍ଯ୍ୟଜନକ ମୋହର ବିଷୟ ଏହି ଯେ ମନୁଷ୍ୟ ନିଜ ଆୟୁର ସୀମା ନିର୍ଦ୍ଦେଶ ନ କରି, କିମ୍ବା ଉତ୍ତରପୁରୁଷାଦିର ସ୍ଥାୟିତ୍ୱ କିପରି କଅଣ ନ ଜାଣୁ ପଛକେ, ବହୁ ବର୍ଷ ସକାଶେ ଏବଂ ବହୁ ବହୁ ପୁରୁଷର ଖର୍ଚ୍ଚ ସକାଶେ ଗଣି ଗଣି ଅର୍ଥ ଗଚ୍ଛିତ ରଖିବାକୁ ଏକାନ୍ତ ଯତ୍ନ ଓ ଇଚ୍ଛା କରୁଅଛି । ପର-

କାଳର ଅନ୍ଧାର ମୋଟ ଉପରେ ଦେଖିବାକୁ ଗଲେ ଏହି ଶିକ୍ଷାର ଜ୍ଞାନ, ଭୌତିକତାର ମୋହମୟ ପ୍ରଦର୍ଶନୀ ମଧ୍ୟରେ ସୀମାବଦ୍ଧ ହୋଇ ରହିଅଛି ।

ଇତିହାସାଦିପଠନରୁ ଚତୁର ଲୋକମାନଙ୍କ ଜୀବନୀ ଓ ଜୀବନଗତ କର୍ମାଦି ଆଲୋଚନା କରାଯାଏ । କିନ୍ତୁ ସେହି କୌଶଳ ଓ ସେହି ଚତୁର୍ଯ୍ୟାଦି ଏବଂ ତଦନୁରୂପ କର୍ମାକର୍ମାଦି ସମସ୍ତ ଧନରକ୍ଷା ବା ଲାଭ ଉଦ୍ଦେଶ୍ୟରେ ଅଥବା ପରଧନ, ପରରାଜ୍ୟ, ପର-ପ୍ରାଣ ହରଣ ଲକ୍ଷ୍ୟରେ ବ୍ୟବହୃତ ହୋଇଥିବା ଦେଖାଯାଇଅଛି । ତହିଁରୁ ଯେଉଁ ନୈତିକ ଶିକ୍ଷା ମିଳେ, ତାହା ପାଠକମାନଙ୍କ ବ୍ୟବହାରରେ ଲାଗିବାର କାରଣ ନୁହେ । ପାଠକ-ମାନେ ତହିଁର ଚର୍ଚ୍ଚାରୁ ଯେଉଁମାନଙ୍କର ନାମ ବିବରଣାଦି ମୁଖସ୍ଥ କରନ୍ତି, କେବଳ ସେହିମାନଙ୍କ ଜାତି ବା ସମାଜ ପ୍ରତି ବା ସେହି ଦେଶବାସୀଙ୍କ ପ୍ରତି ବଡ଼ ଉଚ୍ଚ ଭାବ ପୋଷଣ କରିବାକୁ ଶିଖନ୍ତି । ଆଉ ତାଙ୍କ କର୍ମର ସମକର୍ମୀ ବୋଲି ଆପଣା ଆପଣାକୁ କାର୍ଯ୍ୟତଃ ଅକ୍ଷମ ଜ୍ଞାନ କରି ସେମାନଙ୍କର ପାଦୁକା ସେବା କଲେ ନିଜ ନିଜ ସମାଜରେ ବଡ଼ପଣିଆ ଦେଖାଇ ହେବେ ବୋଲି ସ୍ଥିର କରି ଦାସତ୍ୱକୁ ଜୀବନର ମୋକ୍ଷ ମାର୍ଗଆଡ଼େ ସଳଖି ଦିଅନ୍ତି । ଭୂଗୋଳଶିକ୍ଷାରୁ ସର୍ବଜଗତ ଜଡ଼ବିଜ୍ଞାନବାଦୀଙ୍କ କରତଳଗତ ଥିବା ଦେଖି ପ୍ରଭୁତ୍ୱ ସେହିମାନଙ୍କ ନିମିତ୍ତ ମହାପ୍ରଭୁ ସୃଷ୍ଟି କରିଅଛନ୍ତି ବୋଲି ଜାଣି ସେମାନଙ୍କର ଦାସତ୍ୱ କରିବା ନିଜର ପୁରୁଷାର୍ଥପ୍ରଦାୟକ ଅଟେ—ଏହା ଭଲରୂପେ ବୁଝିବାକୁ ହୁଏ । ଏପରେ ଭୌଗୋଳିକ ତତ୍ତ୍ୱ ଆୟତ୍ତ କଲେ ମନୁଷ୍ୟ ଅବଶ୍ୟ ମହାପଣ୍ଡିତ ବା ଜ୍ଞାନୀପଦବାଚ୍ୟ ହୁଏ ଏଥିରେ ସନ୍ଦେହ ନାହିଁ । ମାତ୍ର ସେ ଜ୍ଞାନର ଫଳ ଭୌତିକ ଜଗତର ମାୟିକ ଦୃଶ୍ୟରେ ବିଲୀନ, ଆତ୍ମାର ସମ୍ବନ୍ଧ ଏ ଜ୍ଞାନରେ ନାହିଁ । ଥାଏ ବୋଲି କହିଲେ ତାହା କାଳ୍ପନିକ ଅଥଚ ଅଳ୍ପସ୍ଥାୟୀ । ତେବେ ଏହା ଏକପ୍ରକାର ବାକ୍ୟ ଓ ମନର ବିନୋଦ ମାତ୍ର । ସାହିତ୍ୟ ସବୁ ବିଷୟର ମାତା ହୋଇ ସବୁ ବିଷୟର ସୌନ୍ଦର୍ଯ୍ୟ ସମ୍ପାଦନ କରେ । ଅଜ୍ଞାତ ଗୁପ୍ତ ସ୍ଥାନର ଅମୂଲ୍ୟ ରତ୍ନରାଜି ସ୍ୱରୂପ ଭାବମୟ ଅବ୍ୟକ୍ତ ଆକାର-ଶୂନ୍ୟ, ଜ୍ଞାନାତ୍ମକ ପଦାର୍ଥକୁ ସୁସଜ୍ଜିତ, ସୁରଞ୍ଜିତ ମନୋହର ଶ୍ରୀସମ୍ପନ୍ନ ବାଙ୍ମୟ ଆକାରରେ ଗଠନ କରି କାବ୍ୟ, ନାଟକ, ଅଳଙ୍କାର ବା ଉପନ୍ୟାସ ପ୍ରଭୃତି ନାମଧାରୀ ନାନାବିଧ ପ୍ରବନ୍ଧ ପ୍ରସବ କରେ । କୁତ୍ସିତ ଅର୍ଥବିଶିଷ୍ଟ ବାକ୍ୟାବଳୀକୁ ମନୋହର ଅର୍ଥ ବ୍ୟୁତ୍ପତ୍ତି ଆକାରରେ ପରିବର୍ତ୍ତନ କରାଇ ମାନବସମାଜକୁ ମୋହିତ କରେ । ଆଜିକାଲି ଯୁଗରେ ସାହିତ୍ୟର ଲୀଳାଖେଳା ଦୁର୍ବୃତ୍ତମାନଙ୍କର ଏକମାତ୍ର ଆତ୍ମସମ୍ବଳ ହୋଇଅଛି । କଥାରେ ହାଣ୍ଡି ଦେବା, ଓଟ ଦେବା କହି ଆମ୍ବ ଦେବା, ଅମୃତର ସମ୍ପୂର୍ଣ୍ଣ ଅମୂଲ୍ୟ ଫଳ ଦେବାର ଆଶ୍ୱାସ ଦେଖାଇ ତଦ୍ଭାବ ଆପ୍ୟାୟିତ ବା ମୁଗ୍ଧ ହୋଇପଡ଼ିବା ସରଳ-ବିଶ୍ୱାସୀମାନଙ୍କ ପରି ନିଜ ଅଭିପ୍ରେତ କାର୍ଯ୍ୟ ସିଦ୍ଧ କରାଇ ନେଇ ସାରିଲାରୁ ଶେଷକୁ ହାଣ୍ଡି ଓଟ ବଦଳରେ ମଲା ଭୁଆବିରାଡ଼ଟାଏ ବା ମହାକାଳ ପ୍ରଭୃତିକୁ ଆମ୍ବ ପ୍ରଭୃତି ଭଲ ଫଳ ପରିବର୍ତ୍ତରେ ଯାଉଁଳିଏ ଲେଖାଏଁ ଲଦିଦେଇ ତତ୍କ୍ଷଣାତ୍ ବିଷକୁମ୍ଭ ପୟୋମୁଖ

ଅବତାର ଗ୍ରହଣ ପୂର୍ବକ ନାନାବିଧ କୁଟ, ଗୂଢ଼ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାକ୍ୟ ସାହାଯ୍ୟରେ ବିଦାୟ କରିଦିଅନ୍ତି । ପରେ ଆପତ୍ତି ଅନୁଯୋଗ ବା ଅଭିଯୋଗ ଉଠିଲେ ଅତି ଚମତ୍କାର ବାକ୍ୟ ପ୍ରୟୋଗ ବା ବନ୍ଧ ବ୍ୟବସ୍ଥାଦି କାର୍ଯ୍ୟରେ ପ୍ରଦର୍ଶିତ ହୁଏ । ଅନୁଯୋଗୀମାନେ ସେହିଠାରେ ସାହିତ୍ୟର ମର୍ଯ୍ୟାଦା କଥିତ ପରିମାଣରେ ଉପଲବ୍ଧି କରିବାକୁ ସୁଯୋଗ ପାଇଥାନ୍ତି । ତାଙ୍କୁ ବୁଝିନେବାକୁ ହୁଏ, ହାଣ୍ଡି ଓଟର ଅର୍ଥ ମଲା ଭୂଆ । ଅମୃତରସମୟ ଫଳର ଅର୍ଥ ଗୋବରଗର୍ଭି ମହାକାଳ ଫଳ । ଏଥିରେ ଅସନ୍ତୁଷ୍ଟିର ଚିହ୍ନ ଦେଖାଇଲେ ବେଆଦବ, ମୂର୍ଖ ଓ ବଦମାସ ରୂପ ବିଶେଷଣବିଶିଷ୍ଟ ହୋଇ ଗଳାର୍ଦ୍ଧଚନ୍ଦ୍ରଦାନ ସହିତ ପୁନର୍ବିଦାୟ ଗ୍ରହଣ କରିବାକୁ ବାଧ୍ୟ ହେବାକୁ ହୁଏ ।

ଏ ଉତ୍ତରରୁ ମନ ତ ମାନିଲା ନାହିଁ ଗୁଣି ଗୁଁ ସୁଁ ଠିକଏ ହେଲେ ତଦ୍ରୂପ ଛିଦ୍ରାଦିକୁ ଅପରାଧଜନକ ମହାପାପ ସଂଘଟକ ଭତ୍ରୁଙ୍କର ଦୋଷାବହ ଅପରାଧର ଫାଙ୍କା ଭିତରେ ପକାଇ ଦେଇ ଗରିବ ବିଚାରିଙ୍କୁ କଳ୍ପନାରଚିତ ମିଥ୍ୟା ପ୍ରମାଣ ବଳରେ, ବା ପ୍ରମାଣ-ଶୂନ୍ୟ ମର୍କଟଠାରୁ ଇଙ୍ଗିତଦ୍ୱାରା ଶ୍ରୀଘରବାସ ବା ଦେଶାନ୍ତର ନିବାସ କିମ୍ବା ଦେହାନ୍ତର ନିବାସ ପ୍ରଭୃତି ପୁରସ୍କାର ସହ ଶେଷ ବିଦାୟ ପ୍ରଦାନ କରାଯାଇଥାଏ । ଆଜ ସାହିତ୍ୟର ଉଚ୍ଚସୋପାନ ପ୍ରଦର୍ଶକ ଓ ସାହିତ୍ୟର ଉଚ୍ଚଭାବ ପୋଷକ ଶ୍ରେଣୀରେ ସାହିତ୍ୟର ଏହି ଅପବ୍ୟବହାର ବା ପାପ ବ୍ୟବହାର ଦେଖି ବୁଝି ନେବାକୁ ହେଉଅଛି । ଗୁରୁଦେବଙ୍କ-ଠାରେ ପିନା ଧୋବାମଣ୍ଡା ଖାଇବା, ରଙ୍ଗ ଆଉଟି ପିଇବାର ଶକ୍ତି ଦତ୍ତ ଅଛି, ମାତ୍ର ଶିଷ୍ୟମାନଙ୍କଠାରେ ତାହା କେଉଁଆଡ଼ୁ ଆସିବ ? ଶିଷ୍ୟମାନେ କେବଳ ପଢ଼ି ପଢ଼ି, ଶୁଣି ଶୁଣି ଥୋବରା ହେବା ତାଙ୍କ କପାଳରେ ଲେଖା ବୋଲି ବୁଝି ରଖିବେ । ଆଉ ତଦ୍ରୂପ ଅନର୍ଥକୁ ବା କଦର୍ଥକୁ ଠିକ୍ ଭାବରେ ପ୍ରକୃତ କଲେ ବା ସ୍ୱୀକାର କଲେ ଗୋଷ୍ଠମି ଭୋଜନ-ଉଚ୍ଛିଷ୍ଟ ସ୍ୱରୂପ କିଛି ଅର୍ଥଲାଭ କରିବେ । ତାହା ପୁଣି ବିଳାସିତାଦିରେ ବ୍ୟୟ କରି ସେହି ପାଇଥିବା ସ୍ଥାନକୁ ସେହି ଅର୍ଥର ପ୍ରତ୍ୟାଗମନ କରାଇଦେବେ । ବାକ୍ୟାର୍ଥ ମୋହ ବଳରେ ଆଜକାଲି ନିରୀହ ସରଳ ସମାଜ ଏହି ଦୁର୍ଦ୍ଦଶା ଭୋଗ କରୁଅଛନ୍ତି । ଏହିରୂପେ ଆଜକାଲିର ସାହିତ୍ୟ ଏକଆଡେ ପୌଷମାସ ଓ ଅନ୍ୟଆଡ଼େ ସର୍ବନାଶର ସଂଘଟନ କରୁଅଛି । ନିରୀହ ଦୁର୍ବଳ ସମାଜ ସାହିତ୍ୟସେବାଦ୍ୱାରା ଚାରି ଧାଡ଼ି ଭଲ କରି ଲେଖିବାକୁ ବା ଚାରି କଥା ଭଲ କରି କହିବାକୁ ବା ଖଣ୍ଡେ ଅଧେ ପୁସ୍ତକ ପ୍ରଣୟନ କରିବାକୁ ଯାହା ଅଧିକାର ପାଇଅଛି, ତାହା ମୁକ୍ତ ଭାବର ନୁହେ, ବୁଝିବାକୁ ଗଲେ ସମ୍ୟକ୍ ପ୍ରକାରରେ ପ୍ରଭୃତ୍ତ୍ୱାଧୀନ ଅତି ସୀମାବଦ୍ଧ ଅଟେ । ତେବେ ଆଜକାଲିର ସାହିତ୍ୟ-ସେବାର ଜ୍ଞାନ ଆଉ ସେହି ଜ୍ଞାନର ଫଳ କପରି ଅବା କଅଣ ? ସବୁ ପ୍ରକାର ବିଷୟ-ଶିକ୍ଷାର ଯେଉଁ ଶେଷ ଫଳ, ସାହିତ୍ୟ ଶିକ୍ଷାର ସେହି ଶେଷ ଫଳ; ଫଳ, ଜ୍ଞାନଲାଭ ନୁହେ, ଅର୍ଥାତ୍ ଧର୍ମଜ୍ଞାନ ବୈରାଗ୍ୟାଦିର ସମ୍ପର୍କ ସେଥିରେ ନାହିଁ । ବୈଷୟିକ ଜ୍ଞାନ ଜ୍ଞାନର ନାମାନ୍ତର ଧାରଣ କରି ନିରୀହ ସରଳ ଗରିବ ସମାଜର ପ୍ରାୟଶ୍ଚିତ୍ତ ବିଧାନ କରୁଅଛି ।

ଅର୍ଥାତ୍ ଆତ୍ମାର ସ୍ୱାଧୀନ ସାମ୍ୟାଦି ଆତ୍ମଗୁଣାଦିକୁ ବିସ୍ମରଣ ଓ ହେୟ କରାଇ ଦାସତ୍ୱ, ଆଡ଼ମ୍ବର, ମୋହ ଗର୍ବାଦିକୁ ସେହି ସେହି ପବିତ୍ର ସ୍ଥାନରେ ଅଧିକାଶ କରାଇଅଛି । ବିଳାସିତାଦି ଏହି ଶିକ୍ଷାର ଅଙ୍ଗ । ଠିକ ଠିକ କରି ଏହି ଶିକ୍ଷାର ମାହାତ୍ମ୍ୟ ବର୍ଣ୍ଣନା କରି ଏ ଶିକ୍ଷା ଏହାର ଫଳ ସହିତ ଜଗତର ସର୍ବାଂଶକୁ ଆଚ୍ଛନ୍ନ କରି ଦେଉଅଛି । ଦେଖି ଶୁଣି ଏହାର ଗୁଣ ସହଜରେ ଅନୁଭବ କରାଯାଉଅଛି । କଳିଦୋଷରୁ ମନୁଷ୍ୟ ସମାଜ, ଅନ୍ତତଃ ଆତ୍ମଜ୍ଞାନ ଧର୍ମ ବୈରାଗ୍ୟାଦିରେ ପରାଙ୍ମୁଖ ହୋଇ ଲକ୍ଷ୍ୟଭ୍ରଷ୍ଟ ହୋଇଥିଲେ । ଇନ୍ଦ୍ରିୟପରାୟଣତା ମନୁଷ୍ୟଙ୍କୁ ଇତସ୍ତତଃ କରୁଥିଲା । ଏଥିରେ କଳି ତାମସୀ ପ୍ରବୃତ୍ତିର ଆବିର୍ଭାବିଶେଷ ନବକଳେବର ଧରି ଭୋଗ ବିଳାସିତା ଓ କର୍ମବାହୁଲ୍ୟାଦି ସହଚରବର୍ଗ ସହିତ ଘୂରିଆଣ୍ଡେ ଦିଗ୍‌ବିଜୟ ଯାତ୍ରା କରିବାକୁ ଲାଗିଗଲା । ତାହା ଦେଖି ତାହିଁ ପଛେ ପଛେ ସମସ୍ତେ ଧାବମାନ ହୋଇ ମନେ କଲେ ଅଭାବ ପକ୍ଷେ ଯେପରି ଗୋଟାଏ ପନ୍ଥା ମିଳିଗଲା । ପ୍ରଥମେ ପ୍ରଥମେ ସବୁ ଜିନିଷର ଭିତରେ ଥିବା ଗୁଣ ସହଜରେ ପଦାକୁ ବାହାରି ଜଣା ପଡ଼େ ନାହିଁ । ଠିକଏ ଠିକଏ ନିଶାଦ୍ରବ୍ୟ ସେବନ କରୁ କରୁ ପ୍ରଥମେ ପ୍ରଥମେ ବଡ଼ ଚିତ୍ତାକର୍ଷକ ଓ ସୁଖଦାୟକ ହୁଏ । ମାତ୍ର ପରେ ତାହା ଅଭ୍ୟସ୍ତ ହୋଇ ଉଚ୍ଚ ପାହାଚକୁ ଉଠିଲେ ଶେଷରେ ସହଜରେ ଛାଡ଼ ହୁଏ ନାହିଁ । ବରଂ ଅନୁତାପ ଆଣି-ଦିଏ । ବହୁ ଅର୍ଥ କ୍ଷତି ଘଟାଏ । ଆଳସ୍ୟର ଦାସତ୍ୱ ଶୃଙ୍ଖଳରେ ସର୍ବଦା ବାନ୍ଧି ରଖେ । ପୁଣି ଅର୍ଥାଭାବରୁ ନିଶାଦ୍ରବ୍ୟର ଅଭାବ ହେଲେ ବଡ଼ କଲବଲ ହେବାକୁ ପଡ଼େ । ଏହିପରି ସବୁ ପ୍ରକାର ବିଷୟ ପ୍ରଲୋଭନ ଓ ଭୋଗବିଳାସିତା, ଗର୍ବ, ମୋହ, ଆଡ଼ମ୍ବରାଦିର ପରିଣାମ, ଶେଷରେ ମନୁଷ୍ୟ ଏଥିରୁ ଠିକ ଠିକ ଶିକ୍ଷାଲାଭ କରି ଚେତନା ପ୍ରାପ୍ତ ହୁଏ । ପରିଶେଷରେ ଏଥିରୁ ନିଷ୍କୃତି ଲାଭ କରି ପୂର୍ବର ଦୋଷଶୂନ୍ୟ ଅବସ୍ଥାକୁ ସ୍ମରଣ କରେ ଓ ଆତ୍ମଜ୍ଞାନ ଲାଭର ପ୍ରୟାସ ପାଏ । ଏହା ସ୍ୱାଭାବିକ । ମାତ୍ର ଅଳ୍ପସଂଖ୍ୟକ ଲୋକର ଭାଗ୍ୟକ୍ରମେ ଯଦି ଅର୍ଥାଭାବ ନ ଘଟେ, ନିଶା ବନ୍ଦ କରିବାର ଭାବ ଜାତ ହୁଏ ନାହିଁ । ତେବେ ସେହି ନିଶାରେ ଦିନେ ସେ ଆକ୍ରାନ୍ତ ହୋଇ ପଶୁଭାବରେ ଇହ-ଲୀଳାର ଶେଷ ସୀମାରେ, ଶେଷ ଶଯ୍ୟାରେ, ଶେଷ ବିଶ୍ରାମ ଲାଭ କରେ । ଅର୍ଥାଭାବ ଓ ନିଶାଭାବ ଯେ କେତେଜଣର ନ ଘଟେ ତହିଁର କାରଣ ଅଛି । ସେମାନେ କଳି ତାମସୀ ପ୍ରବୃତ୍ତିର ନିଶାରେ ଓ ନିଶାରୂପ ଭୋଗବିଳାସିତାଦିରେ ବୁଡ଼ି ତାହାକୁ ପ୍ରକୃଷ୍ଟ ପୁରୁଷାର୍ଥ-ସାଧକ ଜ୍ଞାନ କରି ରହନ୍ତି ଏବଂ ସେହି ଅପଭାବ ଚିରକାଳ ରକ୍ଷା କରିବା ନିମିତ୍ତ ପରାର୍ଥଦୋହନ, ଶୋଷଣ ଓ ଆକର୍ଷଣର ବାଟ ବଡ଼ ଗୁପ୍ତ ଭାବରେ ଖୋଳିବାର ପ୍ରୟାସ ପାନ୍ତି । ବ୍ୟବସାୟାଦିରେ ସବୁ ପ୍ରକାର ଆଦାନ ପ୍ରଦାନ କ୍ରିୟାରେ ଛନ୍ଦ, କପଟ, କୃତ୍ରିମ ଜାଲ ଫିସାଦ, ଫରେବ, ମିଥ୍ୟା ଓ ସର୍ବପ୍ରକାର କୂଟବାଦ ପ୍ରୟୋଗ କରି ନିରୀହ ସରଳପ୍ରାଣ ସମାଜକୁ ଠକାଇ ପ୍ରବଞ୍ଚନା ଜାଲରେ ପକାଇ ସେମାନଙ୍କର ଅର୍ଥକୁ ଗୁପ୍ତତନ୍ତ୍ର-ମନ୍ତ୍ରଣା ବଳରେ ଅପହରଣ କରନ୍ତି । ଏହିରୂପେ କଳି ତାମସାତ୍ମକ ବିଳାସିତା, ଗର୍ବ, ମୋହ ପ୍ରଭୃତି ଗୁଣ ଅନେକ ଲୋକଙ୍କୁ ଆକ୍ରମଣ କରି ଏକ ଦଳ ଗଠନ କରନ୍ତି ।

ତକାଏଣ ସ୍ୱଭାବ ଏକ ମୂଣ୍ଡ ଗ୍ରାସିଲେ ପ୍ରକୃଷ୍ଟ ଭାବରେ କାର୍ଯ୍ୟକ୍ଷମ ହେବା ଟିକଏ ଅସୁବିଧାଜନକ । ଜଣକ ଦ୍ୱାରା କଠୋର ଦୁରୂହ କର୍ମ ହୋଇ ଉଠିବା ସୁକଠିନ । ସୁତରାଂ ସବୁ ତକାଏତ ଚହ୍ଲାଚହ୍ଲି ହୋଇ ଏକ ଦଳ ଗଠନ କରନ୍ତି । ପରାର୍ଥଶୋଷଣ, ପରରାଜ୍ୟହରଣ, ସେଥି ସକାଶେ ପର ପ୍ରାଣକୁ ହଳଡ଼ା ଜ୍ଞାନ କରିବା ସେହି ଦଳର କର୍ତ୍ତବ୍ୟ କର୍ମ ହୋଇ ଉଠେ । ତଦ୍ରୂପ କର୍ତ୍ତବ୍ୟପରାୟଣତା ସେମାନଙ୍କୁ ବହୁ ରାଜ୍ୟ ଭ୍ରମାଇବାର ଚେଷ୍ଟା କରେ । ଏହି ଚେଷ୍ଟା ସଙ୍ଗେ ଉପସ୍ଥିତ ସମସ୍ତ ପରି କଳ ଦ୍ରୁତ ରୂପେ ତାମସୀପ୍ରବୃତ୍ତି ପ୍ରବାହ ମିଶି ଏକାକାର ଧାରଣ କରେ । ଏହି ତାମସୀ ବୁଦ୍ଧି-ବଳରେ କ କ ଉପାୟରେ ସର୍ବଜଗତ ହାନକରେ ବୁଲ ଦେଖି ଆସି ପାରିବାକୁ ହେବ, ସେହି ସେହି ଉପାୟ ଅନ୍ୱେଷଣ କରିବାର ମନ୍ତ୍ରଣା ହୁଏ । ଏହି ମନ୍ତ୍ରଣା ଧ୍ୟାନମଗ୍ନ କଲି ପରି ବଡ଼ ସୂକ୍ଷ୍ମ ବିଗ୍ରହରେ ପ୍ରବର୍ତ୍ତାଇ ଦିଏ । ମନୁଷ୍ୟଠାରେ ଅପୂର୍ବ ବୁଦ୍ଧି, ଅପୂର୍ବ ଶକ୍ତି ଦତ୍ତ ଅଛି । ତାହା ନିବୃତ୍ତିରେ ଯୁକ୍ତ ହେଲେ ମନୁଷ୍ୟକୁ ଦେବତା ରୂପରେ ପରିଣତ କରିପାରେ । ପୁଣି ପ୍ରବୃତ୍ତିରେ ମିଶିଗଲେ କଠୋର ତାମସୀ କର୍ମରେ ପ୍ରବର୍ତ୍ତାଏ । ଅପରିସୀମ ଭୋଗବିଳାସାଦିରେ ପ୍ରମତ୍ତ କରାଇଦିଏ । କଳି ତାମସୀ ପ୍ରବୃତ୍ତି ପ୍ରବାହର ବେଗରେ ଏକ ଦଳ ବା ଏକ ସମାଜ ସର୍ବଜଗତ ବୁଲି ଦେଖି ସର୍ବଠାରୁ ଅର୍ଥଶୋଷଣ କରିବାର ପ୍ରୟାସ ପାଇଗଲେ । ଏହିପରି ଏକ ଜଣକ ପରେ ଯେପରି ଏକ ଦଳ ଗଠିତ ହେଲେ, ସେହିପରି ଏକ ଦଳ ବା ଏକ ସମାଜ ଆଦର୍ଶରେ ଅନେକ ଦଳ ପ୍ରସ୍ତୁତ ହୋଇ ପଡ଼ିଲେ । ଏହିପରି ଏକାଗ୍ର ଧ୍ୟାନ, ବିଗ୍ରହ ଓ ଚିନ୍ତା ବଳରେ ଭୌତିକ ଜଗତର ନାନା ପ୍ରକାର ଜାଗତିକ ବସ୍ତୁସମୂହର ଗୁଣ, ଧର୍ମ, ଆକାର, ପ୍ରକାର ଓ କାର୍ଯ୍ୟ ପ୍ରୟୋଜକତାଦି ନିର୍ଣ୍ଣୟ କରି ପଦାର୍ଥମାନଙ୍କଠାରେ ଅଲୌକିକ ଗୁଣ ଏବଂ ତଦ୍ରୂପ ପଦାର୍ଥମାନଙ୍କର ପରସ୍ପର ସଂଯୋଗରେ ଆଶ୍ଚର୍ଯ୍ୟ କଳକୌଶଳ ଓ ଯନ୍ତ୍ରାଦି ହୋଇ ପାରିବା ନିର୍ଣ୍ଣୟ କରାଗଲା । ତହିଁରୁ ଜଡ଼ ବିଜ୍ଞାନଚର୍ଚ୍ଚା ବଳରେ ବାଷ୍ପୀୟ ପୋତ ଓ ବାଷ୍ପୀୟ ଶକଟ, ତଡ଼ିତ୍ ବାର୍ତ୍ତାବହ ଯନ୍ତ୍ରାଦି ନାନାବିଧ କଳକୌଶଳର ସୃଷ୍ଟି ହେଲା । ଏହିଠାରେ ମନେ କରି ରଖାଯାଉ କଳି ତାମସୀ ପ୍ରବୃତ୍ତି ପ୍ରବାହ ବେଗବାନ ଗତିରେ ଉତ୍ତରୋତ୍ତର ବୃଦ୍ଧି ହେବାକୁ ଲାଗିଲା । ଏହା ମୂଳରେ ବିଳାସିତାଦି ବହୁ ବହୁ ସୁଖ, ସମ୍ଭୋଗ ନିହିତ ଅଥଚ ଗର୍ବ, ମୋହ, ଆଡ଼ମ୍ବର, ବଡ଼ିମା ଗରିମାଦି ଅସୁର ପ୍ରବୃତ୍ତିମାନ ଏହାର ପ୍ରାଣ ସ୍ୱରୂପ ସଂଯୋଜିତ ରହିଅଛନ୍ତି । ଗୋଟାଏ ଜିନିଷ ଉପରୁ ପଡ଼ିଲେ ସେ କ୍ରମେ କ୍ରମେ ଯେତେବେଳେ ତଳକୁ ଆସୁଥାଏ, କ୍ରମଶଃ ସେତିକି ସେତିକି ବେଶୀ ବେଶୀ ତାହାର ଗତି ବେଗ ସହିତ ତଳକୁ ବୃଦ୍ଧିପ୍ରାପ୍ତ ହେଉଥାଏ । ଏହିପରି କଳି ତାମସୀ ପ୍ରବୃତ୍ତି ପ୍ରବାହର ବେଗ କ୍ରମେ ଯେତେ ନିମ୍ନଗାମୀ ହେଲା, ଅର୍ଥାତ୍ ଭୌତିକ ଭୋଗ ବିଳାସିତାଦି ଆକାରରେ ଯେତେ ଯେତେ ପରିମାଣରେ ବୃଦ୍ଧି ହେଲା, ସେତିକି ସେତିକି ପରିମିତ ଦ୍ରୁତ ବେଗରେ କ୍ରମଶଃ ସେହି ବିଷୟୋନ୍ମତ୍ତ ସ୍ରୋତ ବୃଦ୍ଧି ଲାଭ କଲା । ଏହି ନିୟମରେ ଏହି ନିକଟପୂର୍ବ ଏକଶତ ବର୍ଷ ମଧ୍ୟରେ ଉପରୋକ୍ତ ଭୌତିକତା କ୍ରମେ-

କ୍ରମେ ବୃଦ୍ଧିପ୍ରାପ୍ତ ହୋଇ ସର୍ବଜଗତକୁ ଭୌତିକ ସଂସ୍କାର ଓ ଭୌତିକ ଜ୍ଞାନର ଶିକ୍ଷା ଦୀକ୍ଷାଦିରେ ପ୍ଲାବନ କରିଅଛି । ଏହିଠାରେ ଏହି ଭୌତିକତା ବା ପାଶବିକତା ଯେଉଁ-ମାନଙ୍କ ଆପାଦମସ୍ତକ ପ୍ରାଣ ଜୀବନ ପର୍ଯ୍ୟନ୍ତ ଗ୍ରାସିଅଛି, ସେହିମାନେ ଭିତରେ ଭିତରେ ଏକମତ ଓ ଏକଦଳ ହୋଇ ଏକ ଦେହରେ, ଏକ ପ୍ରାଣରେ ଓ ଏକ ମନରେ ଏକ ହୋଇ ଛାଳ ହୋଇଅଛନ୍ତି । ଏହି ଗୁପ୍ତ ଏକତା ଏତଦ୍ରୂପ ଦଳକୁ ଅଲଗା କରି ସଂସାରର ସର୍ବସାଧାରଣଙ୍କଠାରୁ ପୃଥକ୍ ରଖିଅଛି । ଏହି ଦଳ ଧନ ସମ୍ପଦ ସଂସାରାଦିର ପ୍ରଭୁ ଓ ଅବଶିଷ୍ଟ ସକଳ ସାଧାରଣ ଏମାନଙ୍କର ଆଜ୍ଞାବହ ସ୍ତବ ପଠନ-ପରାୟଣ ହୋଇ ଭୃତ୍ୟ ବେଶ ଧାରଣ କରିଅଛନ୍ତି । ଦେଖାଯାଏ ପ୍ରତ୍ୟେକ ଦେଶର ଏହି ଗୁପ୍ତ ମନ୍ତ୍ରଣାପୂର୍ଣ ଦଳର ଦୂତମାନେ ଅନ୍ୟାନ୍ୟ ପ୍ରତି ଏକ ଏକ ଦେଶରେ ନାମ, ଗୋତ୍ର, ନାନା ବର୍ଣ୍ଣ, ନାନା ବେଶ ଓ ନାନା କର୍ମ, ନାନା ଧର୍ମରେ ପରିଚିତ ହୋଇ ପ୍ରବେଶଲାଭ କରିଅଛନ୍ତି । ଆନ୍ତରିକ ଭାବ ଅନୁସାରେ ଏମାନଙ୍କର କର୍ମବିସ୍ତାର ଲାଭ କରିବା ଦେଖାଯାଉଅଛି । ପରାର୍ଥଦୋହନ, ଶୋଷଣ, ପ୍ଲାବନ, ଦହନ, ଅମୃଶ୍ଚିକରଣାଦି କ୍ରିୟାରେ ଏମାନେ ଯଥାପରିମାଣରେ କେହି ଅପଟୁ ନୁହନ୍ତି । ଏହି ପରାର୍ଥହରଣ ମନ୍ତ୍ର ଯେ ଯେତେ ପରିମାଣରେ ସିଦ୍ଧ କରିବାର ସୁଯୋଗ ପାଇଅଛି, ସେ ତଦନୁସାରେ, କେହି ଏକ ଏକ ସ୍ଥାନର ସର୍ବେସର୍ବା, କେହି କେହି ଏକ ଏକ ସ୍ଥାନର ପୂତନା ମାଉସୀ ଦୀକ୍ଷା-ଧାରୀ, କେହି କେହି ବା କେଉଁ କେଉଁ ସ୍ଥାନରେ ବାହ୍ୟ ଉଦ୍ଭାର ଚିହ୍ନ ସହିତ ନାନା ପଦାର୍ଥାଦିର ଜନ୍ମପ୍ରକାଶୀ, କେହି କେହି ବା ଛପୁରକପ୍ରକାଶୀ, କେହି କେହି ବା ଛୁପ୍ପାବାଜି ଦେଖାଇ, କେହି କେହି ବା ଉପୁହାସ ଜନ୍ମାଇ, କେହି କେହି ବା ଆଖିକେ ଡାମରକୁଆ, ଆଖିକେ ରାମ ରାମ କରି ଧର୍ମଯାଜକ ବେଶ ଧାରଣପୂର୍ବକ ପରାର୍ଥ ଦୋହନ ତଥା ପରରକ୍ତ ଶୋଷଣ ବା ପର ଜୀବନ ଆକର୍ଷଣ ଇତ୍ୟାଦି ପୈଶାଚିକ କ୍ରିୟାରେ ପରମେଶ୍ୱରଙ୍କର ଏହି ଜ୍ଞାନ, ଧର୍ମ, ନ୍ୟାୟ, ଦୟା ପ୍ରତିଷ୍ଠିତ ରାଜ୍ୟକୁ କଳଙ୍କିତ କରି ସାରିଲେଣି ।

ନୂତନ ଶିକ୍ଷାର କୁହୁକ ଯେ ଉପସ୍ଥିତ କାଳରେ ସର୍ବଜଗତକୁ ଆଚ୍ଛନ୍ନ କରିଅଛି, ତାହାର ପକ୍ଷାମୂଳରେ ଏହି ଉପରିବର୍ଣ୍ଣିତ ରହସ୍ୟପୂର୍ଣ୍ଣ କୁମନ୍ତ୍ରଣା ଦୃଷ୍ଟ ଅଜ୍ଞାତ ତନ୍ତ୍ରୀକୃତ ଉପାଦାନରେ ବଳଢ଼ିତ ହୋଇ ନିହିତ ଅଛି । ଏହି ଶିକ୍ଷାର ବିଜ୍ଞାନାଦି ଚର୍ଚ୍ଚାରେ ବହୁ ବହୁ ବନ୍ଧ, ସଡ଼କ, ବାଟ, ଘାଟ, ସୁଦୃଶ୍ୟ ପୋଲ ବା ଶଂଖ, ବଡ଼ ବଡ଼ ଅଟ୍ଟାଳିକା, ତାରଡାକ, ଜଳଯାନ, ସ୍ଥଳଯାନ, ବ୍ୟୋମଯାନାଦି ନାନାପ୍ରକାର ଗାଡ଼ି ନିର୍ମିତ ହୋଇଅଛି । ଏହି ପ୍ରତ୍ୟେକର ନାମ ଗଣୁ ଗଣୁ ବଳ ବୟସ ଯିବ, କାଗଜ କଲମ ଅଭାବ ପଡ଼ିବ, ତଥାପି ପ୍ରତ୍ୟେକର ନାମ ଗଣି ହେବ ନାହିଁ । ତେବେ ଏହି ଭୌତିକ ଦୃଶ୍ୟରେ ଆଜିର ମାନବ ବିମୋହିତ ହୋଇ ଏହାକୁ ଉନ୍ନତିର ପ୍ରକୃଷ୍ଟ ପନ୍ଥା ବୋଲି ଢୋଲ ପିଟୁଅଛି । ଆତ୍ମଦେବ ! ଏ ଉନ୍ନତି କାହାର ? ଆପଣଙ୍କର ନା ? ତାହା କଦାଚ ନୁହେଁ । ହୋଇବାର ମଧ୍ୟ ଉପାୟ ନାହିଁ । କାରଣ ବାଟ ଘାଟ ଇତ୍ୟାଦି ଭୂପୃଷ୍ଠର

ପରିବର୍ତ୍ତନ, ଗମନାଗମନର ସୁବିଧା ବୈଷୟିକ ବ୍ୟାପାରାଦିର ସହାୟକ ଏହା ସ୍ୱୀକାର୍ଯ୍ୟ, ମାତ୍ର ଏହାର ପରିମିତ ବା ନିୟମିତ ସୀମା ଅଛି । ଆଜି ମଧ୍ୟ ଖାଇବା ପିଇବାର ଅଭାବରେ ଲକ୍ଷ ଲକ୍ଷ ପ୍ରାଣ ହାହାକାର କରିବା, ଲକ୍ଷ ଲକ୍ଷ ପ୍ରାଣୀ ପ୍ରାଣସମ୍ପର୍କ ଶରୀରକୁ ଅକାଳେ ଛୁଟାଇ ଦେବାକୁ ବାଧ୍ୟ ହେଉନ୍ତି ପଛକେ, ତାହାର ଗ୍ରାସାଚ୍ଛାଦନର ଅର୍ଥ ଏହି ଭୌତିକ ଦେଖାଣିଆଡ଼େ ବା ସେହି କଳ ତାମସୀ ପ୍ରବୃତ୍ତିର ଦୂତମାନଙ୍କର ଏକ-ଦିଗିଆ ଏକଚୁଟିଆ ଉପକାରଆଡ଼େ ଯେ ବ୍ୟୟିତ ହେବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଏହି ପୈଶାଚିକ ପ୍ରବୃତ୍ତି ଗ୍ରାସିତ ନୈତିକତାଭିନ୍ନ ଈଶ୍ୱରରାଜ୍ୟର ବ୍ୟବସ୍ଥା-ସମ୍ମତ ଜ୍ଞାନ, ଧର୍ମ, ନ୍ୟାୟ ଓ ବିବେକ, ବିଗ୍ରହ ପ୍ରଭୃତି କଦାଚ ଅନୁମୋଦନ କରିବେ ନାହିଁ ।

ତେବେ ବଡ଼ ବଡ଼ ଘର, କୋଠା, ଅଟ୍ଟାଳିକା ପ୍ରଭୃତିରେ ରହିଲେ 'କୁଆ' କଦାଚ 'ଗରୁଡ଼' ହୋଇ ନ ପାରିଲା ପରି, ମନୁଷ୍ୟ ଚତୁର୍ବାହୁ, ଚତୁର୍ମୁଖ, ତ୍ରିକାଳଦର୍ଶୀ, ତ୍ରିଗୁଣାତୀତ ବା ତ୍ରିଲୋକୀ ହୋଇ ପାରିବ ନାହିଁ, ବା ତଦ୍ରୂପ ବାସଭବନ ତାକୁ ମହାଜ୍ଞାନୀ ବା ମହାପୁରୁଷ ଆକାରରେ ଗଢ଼ିଦେବ ନାହିଁ । ସୁତରାଂ ଏହା ଗରିବ ରକ୍ତ-ଶୋଷଣର ମହାଶ୍ମଶାନ ସ୍ଥାନର ନାମାନ୍ତର ମାତ୍ର, ଆଜି ମଧ୍ୟ ପୃଥିବୀଦେବୀର ହୃଦୟ ବିଦାରକ ବୋଝ ସ୍ୱରୂପ ଅଟେ । ଏହା ଭୂପୃଷ୍ଠର ପରିବର୍ତ୍ତନ ଘଟାଇଅଛି, ଆଜି ମଧ୍ୟ ଆତ୍ମାର ଉନ୍ନତିର ସଙ୍ଗ ଏଥିରେ ଏହି ଭୌତିକ ବିକାରମୟ ଦୃଶ୍ୟରେ ଖଟି ନ ପାରେ । ଯେତେ ଯେତେ ପ୍ରକାରର ଯାନବାହନ, ଯେତେ ଯେତେ ପ୍ରକାରର କଳ-କୌଶଳ, ଯେତେ ଯେତେ ପ୍ରକାରର ଅସ୍ତ୍ରଶସ୍ତ୍ରାଦି ବା ଯେତେ ଯେତେ ପ୍ରକାରର ଅନ୍ୟାନ୍ୟ ଚମତ୍କାର ଦ୍ରବ୍ୟାଦି ଉପସ୍ଥିତ ଦିନରେ ଜଡ଼ବିଜ୍ଞାନ ପ୍ରସବ କରୁଅଛି, ତହିଁରେ ଯେଉଁ ଯେଉଁ ଧାତ୍ୱାଦି ବା ବାଷ୍ପ ପ୍ରଭୃତି ଲାଗିଅଛି, ସେହିମାନଙ୍କର ବରଂ ତଦ୍ରୂପ ଉନ୍ନତି; ଆଜି ଆତ୍ମାର ଉନ୍ନତି ବୋଲି ଯଦି ତାହାକୁ କୁହାଯାଏ, ତେବେ ଆତ୍ମା କାଷ୍ଠ ପାଷାଣ ଲୌହମୟ ପଦାର୍ଥରୂପେ ପ୍ରକଳ୍ପିତ ହେଲେ ସିନା ହେବ । ଆତ୍ମଦେବ ତହିଁରେ କଦାଚ ରାଜି ହେବେ ନାହିଁ । ଅନ୍ୟାନ୍ୟ ବିଷୟ ଶିକ୍ଷା ଘୁରିପଇସା ଅକାଳେ । ତାହା ନୋହି-ପାରିଲେ ତଦ୍ରୂପ ଶିକ୍ଷିତ ମଧ୍ୟରୁ କାହାକୁ କାହାକୁ ଚୌର୍ଯ୍ୟ, ଶଠତା ପ୍ରଭୃତି ନାନା କୁତ୍ସିତ୍ସାରେ କୁତ୍ସିତଭାବରେ ଅର୍ଥ ନିମିତ୍ତ ପ୍ରବର୍ତ୍ତିବାର ଦେଖାଯାଏ । ଏ ଶିକ୍ଷାମୂଳରେ ଭୋଗ, ବିଳାସିତା, ଗର୍ବ, ମୋହ, ଆଡ଼ମ୍ବର ପ୍ରଭୃତିର ଉପାଦାନ ବିଜଡ଼ିତ ଥିବାରୁ ଏବଂ ଜ୍ଞାନ, ଧର୍ମ, ତ୍ୟାଗ, ତିତିକ୍ଷା ଓ ବିବେକ ପ୍ରଭୃତିର ଅଭାବ ଅଥଚ ସଦାଚାର ଯେ ପରିମିତ ବ୍ୟବହାରାଦିର ସମ୍ପର୍କ ନ ଥିବାରୁ ଏସବୁ ବିଭ୍ରାଟର ସୂତ୍ରପାତ ହେଉଅଛି । ଏ ଶିକ୍ଷାର ଏକ ପରଦାରେ କୁହୁକ ଶକ୍ତି ଅଛି । ବାରିକମିସ୍ତ୍ରୀ ପ୍ରଭୃତି ବିଭାଗରେ ବା ଅନ୍ୟାନ୍ୟ କଳକାରଖାନାର କାର୍ଯ୍ୟାଳୟରେ ଅନେକ ଲୋକ କର୍ମ କରିବାର ଦେଖାଯାଏ । ଏଥିରେ କୁଲି ବା ମଜୁରିଦାର ସଂଖ୍ୟା ଅଧିକ । ଆଉ ବିଜ୍ଞାନବିଦ୍ୟା-ଶିକ୍ଷିତ ଲୋକର ସଂଖ୍ୟା ମଧ୍ୟ କିଛି ପରିମାଣରେ ଥାଏ । ମାତ୍ର ଏହାକୁ ଦେଖିବାକୁ ଗଲେ

ଅଶିକ୍ଷିତ ଶ୍ରମଜୀବୀ ଏବଂ ଶିକ୍ଷିତ ମସୀଜୀବୀ ଉଭୟେ ଅଳ୍ପ ଓ ବଦ୍ଧିତ ପରିମାଣରେ ପାରିଶ୍ରମିକ ମାତ୍ର ପାଇ ସନ୍ତୁଷ୍ଟ । କୁଲିର ପଇସା ଶାଗଭାତକୁ ନଅଣ୍ଟ । ଶିକ୍ଷିତର ଟଙ୍କା ପୋଷାକ ପରିଚ୍ଛଦାଦି ଆଡ଼ମ୍ବରକୁ ଓ ଭୋଗ ବିଳାସିତାକୁ ପୂରଣ କରିବା ପାଇଁ ନିତାନ୍ତ ଅକ୍ଷମ । ମାତ୍ର କଳକାରଖାନାର ଯେ ଅଧିକାଂଶ, ଲାଭ ତାହାର ଘରେ । ଯେଉଁମାନେ କଳକାରଖାନାଦିର ଉଦ୍ଭାବକ, ଚାଳକ ବା ପ୍ରତିପୋଷକ, ସେହି ଦଳ ଉକ୍ତ ମୂଳ ଜିନିଷାଦିର ନିର୍ମାଣ କୌଶଳଟିକୁ ଆପଣା ଚୂଳମୁଣ୍ଡରେ ପୋତି ରଖିଛନ୍ତି । ଆଉମାନଙ୍କୁ ପାରିଶ୍ରମିକ ଓ ପାରିତୋଷିକର ମୋହ ଦେଖାଇ କାର୍ଯ୍ୟଘରରେ 'କୁରୁମ' କରି ସାରଲେଣି । ଯେଉଁ ଦେଶରେ ଏହି 'କୁରୁମ'କାରୀ ଧର୍ମ ସମ୍ପ୍ରଦାୟ ରହିଅଛନ୍ତି, ସେମାନେ ଏ ପୃଥିବୀରେ ସବଂଶ ସର୍ବାଧିକାରୀ ହୋଇଅଛନ୍ତି । ଆଉ ନିରୀହ ସରଳପ୍ରାଣ ଶ୍ରମଜୀବୀ, କୃଷିଜୀବୀ ବା ଅନ୍ୟାନ୍ୟ ପ୍ରକାର ବ୍ୟବହାରଜୀବୀ ପ୍ରଭୃତି ସବୁପ୍ରକାରର ଶିକ୍ଷିତ ଅଶିକ୍ଷିତ ଲୋକମାନେ ଏହି ସବଂଶ ସର୍ବାଧିକାରୀମାନଙ୍କର ଆଜ୍ଞାବହ ବଂଶଗତ ଭୃତ୍ୟ ବା ଦାସାନୁଦାସ ଅଥବା ଚିର କ୍ରୀତଦାସର ଉପାଧିସୂଚକ ଚିହ୍ନାଙ୍କିତ କାଗଜ ଟିକିଏ ପାଇ ଆପଣା ଆପଣାକୁ ଚରିତାର୍ଥ ମନେ କରି ଦିନକରେ ଦଶ ଥର କର୍ମକ୍ଷେତ୍ରରୂପ ସ୍ୱର୍ଗକୁ ସ୍ୱଦେହରେ ଯାଉଅଛନ୍ତି ପୁଣି ଆସୁଅଛନ୍ତି; ଏହିରୂପେ ଆଧୁନିକ ଶିକ୍ଷାର ମୋହକୁ ଯେ ସେ ଜିନିଷ ବୋଲି ମନେ କରିବାକୁ ହେବନାହିଁ । ଏହା କଳ ତାମସୀପ୍ରବୃତ୍ତି ପ୍ରବାହର ଅନିବାର୍ଯ୍ୟ ବେଗବାନ୍ ଗତିର ଦମ୍ ସ୍ୱରୂପ ଅଟେ । ଏହି ମହାମୋହ ଯାହାକୁ କୀଟ-କୀଟାଣୁରେ ପରିଣତ କରିଅଛି, ସେ ଯେପରି ଏଥିରେ ମୁଗ୍‌ଧ ଆଉ ଯାହାକୁ ଗଣ୍ଡଭେରବ-ଠାରୁ ବଡ଼ କରିଅଛି ସେ ମଧ୍ୟ ଏଥିରେ ଅଜ୍ଞାନନିଦ୍ରା ଯିବା ସ୍ୱାଭାବିକ । ପୁଣି ଏହି ମୋହ ଗଣ୍ଡଭୈରବକୁ ସିନା ଖାଲି ହାତୀ ଗିଳାଇ ଖୁସି କରାନ୍ତି, କିନ୍ତୁ କ୍ଷୁଦ୍ରଗୁଡ଼କ ଉଷା ପାଇଯାନ୍ତି । ତାହାହେଲେ ଏ ମହାମୋହବଳରେ ଗଣ୍ଡଭୈରବଦଳ ବଳୀୟାନ ହୋଇ ସ୍ଥଳଜନ୍ତୁ ହାତୀ, ଓଟଠାରୁ ପୋକ, ଜୋକ ପର୍ଯ୍ୟନ୍ତ ଓ ଜଳଜନ୍ତୁ କେଉଣ୍ଟିଠାରୁ ରାଘବ ପ୍ରଭୃତି ତିମିଙ୍ଗିଳଗିଳ ପର୍ଯ୍ୟନ୍ତ ଗ୍ରାସ କରି ଆହୁରି ଆକାଶରୁ ଗ୍ରହ, ନକ୍ଷତ୍ର, ଧୂମକେତୁ ପ୍ରଭୃତି ଗ୍ରାସ କରିବାକୁ କଳ, ବଳ, ଛଳ, କୌଶଳାଦି ସଂଗ୍ରହ କରିବାରେ ଅଗ୍ରସର ହେଲେଣି । ଏହି ଶିକ୍ଷା ଦୀକ୍ଷାଦିର ପ୍ରଶଂସା ଯାହାଙ୍କ ହୃଦୟରେ ସର୍ବ ସ୍ଥାନ ବ୍ୟାପ୍ତ କରି ଦଣ୍ଡା, ଗୋହିରୀ ଉଛୁଳାଇ ବହିଯାଉଅଛି, ସେମାନେ ଗଣ୍ଡଭୈରବ ପରି ସମ୍ମୁଖରେ କୀଟକୀଟାଣୁ ହୁଅନ୍ତୁ ବା ହାତୀ ଘୋଡ଼ା ହୁଅନ୍ତୁ, କମ୍ପା କେଉଣ୍ଟି, ରାଘବ ତିମିଙ୍ଗିଳାଦି ହୁଅନ୍ତୁ, ସମସ୍ତେ ସେହି ସୁବିସ୍ତୃତ କରାଳ-ବଦନ ଗହ୍ୱରରୁ ଉବୁରି ନ ରହନ୍ତୁ ପଛକେ, ମୋହମୁଗ୍‌ଧ ହୋଇ ପତଙ୍ଗ ଅଗ୍ନି ଦେଖି ଡେଇଁଲାପରି ତହିଁରେ ଇଚ୍ଛାପୂର୍ବକ ପ୍ରବେଶ କରୁଅଛନ୍ତି । ଏହି କଳ ତାମସୀ ପ୍ରବୃତ୍ତିର ମହାମୋହ ଏହିରୂପେ ଭକ୍ଷ ଓ ଭକ୍ଷକ ଦୁଇଟି ଦଳ ସୃଷ୍ଟି କରିଅଛି । ଅଥଚ ଉଭୟେ ଏଥିରେ ସମାନ ମୁଗ୍‌ଧ । ଯେ ଭକ୍ଷିଲା ସେ ଖୁସି, ଯେ ଭକ୍ଷିତ ହେଲା ସେ ମଧ୍ୟ ଖୁସି । ଧନ୍ୟ ବିଚିତ୍ର ଲୀଳା ! ଏ କଳ ତାମସୀ ପ୍ରବୃତ୍ତିର ସୀମା ଏହିଠାରେ କି ? ଏହି ଉପସ୍ଥିତ ଦିନର ଶିକ୍ଷା ଦୀକ୍ଷାଦି

ସମ୍ବନ୍ଧେ ଆଲୋଚନା କରି ଶେଷରେ ଏତିକି ମାତ୍ର ବକ୍ତବ୍ୟ ଯେ ଏଥିରେ ଅସଂଖ୍ୟ ଅସଂଖ୍ୟ ନରନାରୀ ପ୍ରବୃତ୍ତି ସହିତ ମାତି ଯାଇଥିବାରୁ ଏହା ପ୍ରକୃଷ୍ଟ ଶିକ୍ଷାରୂପେ ହୃଦୟରେ ସ୍ଥାନାଧିକାର କରିସାରିଅଛି । ଏଥିରେ ଯେଉଁ ଭୌତିକ ଜ୍ଞାନ, ଭୌତିକ ବ୍ୟବହାରାଦିର ସମ୍ବନ୍ଧ, ତାହା ସୁଖକର ଓ ମନୋମୁଗ୍ଧକର ହୋଇ ଯାଇଅଛି । ବାଳକ ଧୂଳି ଖେଳିବାକୁ ଓ ଧୂଳିଗୋଡ଼ିକୁ ବଡ଼ ଭଲ ପାଇ ତହିଁରେ ବଡ଼ଲିପ୍ତ ଥାଏ । ମାତ୍ର ଅଭିଭାବକ ବା ଗୁରୁଶ୍ରେଣୀୟମାନଙ୍କ ଚକ୍ଷୁରେ ତାହା ହେୟ । ସେ ବାଳକକୁ ତହିଁରୁ ନିବର୍ତ୍ତାଇବାକୁ ଚେଷ୍ଟା କରନ୍ତି ମାତ୍ର ବାଲ୍ୟପ୍ରବୃତ୍ତି ସେ ନିବୃତ୍ତିକୁ ଭଲପାଏ ନାହିଁ । ବରଂ ତହିଁରେ ଦୁଃଖ ପ୍ରକାଶ କରେ । ଏହି ମନ ନିତାନ୍ତ ବାଳକ ବୋଲି ଜ୍ଞାନରାଜ୍ୟର ଧାରଣା । ଏ ମନ ଜ୍ଞାନ, ଧର୍ମ ସଂସ୍କାରରୁ ଅଲଗା ରହିଲେ ଏ କେବଳ ଇନ୍ଦ୍ରିୟସଙ୍ଗୀମାନଙ୍କୁ ଘେନି ଭୌତିକ ଜଗତସ୍ଥ ବସ୍ତୁରୂପ ଧୂଳିରେ ଖନ୍ଦି ଦର୍ଶନାଦି କ୍ରୀଡ଼ାରେ ସର୍ବଦା ମାତି ରହିଥିବ । ସେହି ମତାଣି ସ୍ୱାଭାବିକ; ଏଥିରେ ଏହି ଶତବର୍ଷ ମଧ୍ୟରେ କଳି ତାମସୀ ବୃତ୍ତିର ଶେଷବେଗ ମିଶି ଯିବାରୁ ମନୁଷ୍ୟ କେବଳ ଏହି ଭୌତିକତାରେ ମାତିଯାଇଅଛି । ଏହି ଶିକ୍ଷା, ଅଗ୍ନିକୁ ବାୟୁ ସାହାଯ୍ୟ କଲାପରି ଏହି ମତାଣିରେ ଉତ୍ତରୋତ୍ତର ପ୍ରବର୍ତ୍ତାଇ ଦେଉଅଛି । ଏବଂ ଏହି ଭୌତିକତାରୁ ଆଉ ଅଧିକ ବୈଚିତ୍ର୍ୟ ଦେଖାଯାଇ ପାରିବ ବୋଲି ଆଶା କରି ଏହି ଶିକ୍ଷାର ଓ ଚର୍ଚ୍ଚାର ଆଦର କ୍ରମଶଃ ବଢ଼ୁଅଛି । ଏହିରୂପେ ଭୌତିକତା ପ୍ରତି ଶିକ୍ଷା ଆସକ୍ତ ହୋଇ ବିଜଡ଼ିତ ହୋଇ ରହିଅଛି । ଆଜିକାଲିର ମନୁଷ୍ୟକୁ ସେହି ଉଭୟ ଦିଗରେ ଦଉଡ଼ାଇ ଦଉଡ଼ାଇ କ୍ଳାନ୍ତ କଲାଣି । ଆଗକୁ ଅସୀମ ଦୂର ଅଛି ବୋଲି ଆଶା କୁହୁକରେ ପଡ଼ି କ୍ରମେ କ୍ରମେ ମନୁଷ୍ୟ ସେହିଆଡ଼େ ଆଗାବଢ଼ା ହେଉଅଛି । ପ୍ରବୃତ୍ତିର ବ୍ୟାମୋହକତା ଏହିପରି ଚିରନିର୍ଦ୍ଦିଷ୍ଟ ରହିଅଛି । ଦେଖିବାକୁ ଗଲେ ବାଳକର ଧୂଳିଖେଳ ଯେପରି ଅର୍ଥଶୂନ୍ୟ ଓ କେବଳ କାଳହାରକ ଅଟେ, ସେହିପରି ଏହି ଭୌତିକ ଶିକ୍ଷା ତହିଁର ଫଳ । ଏହା ଭୌତିକ ପ୍ରୀତି ସମ୍ପାଦନ କରୁଅଛି, ଏଥିରୁ ଭୋଗ ବିଳାସିତାଦିରେ କାଳାତିପାତ ହେଉଛି । ଦେହଟି ସୁସଜ୍ଜିତ ସୁନ୍ଦର ବସ୍ତ୍ର ଅଳଙ୍କାରମଣ୍ଡିତ ହୋଇଥିଲେ କଅଣ ହେବ, ତାହା ଯଦି ବାତରୁକ୍ଷ ପୀଡ଼ାରେ ପୀଡ଼ିତ ଓ ସଦା ସଂଜ୍ଞାହୀନ, ବାତୁଳ ଅବସ୍ଥାରେ ଦଶଦିନ କୋଠାରେ ଥାଉ ପଛକେ ତହିଁରେ କିଛି ସୁଖ ନାହିଁ । ମାଟି ଗୋଶାଣୀ ପରି ଦେଖାଣିଟିଏ ହେବ ସିନା ! ସେହିପରି ଭୌତିକତାରେ ଭୋଗବିଳାସ ଗର୍ବ, ମୋହ ଆଡ଼ମ୍ବର ପ୍ରଭୃତି ଥାଉ, ସେଥିରେ କିଛି ଯାଏ ଆସେ ନାହିଁ । ଆତ୍ମଜ୍ଞାନ ଓ ଆତ୍ମଶାନ୍ତି ଅଭାବରେ ସେ ଦେହ ଖାଲି ମାଟି ଗୋଶାଣୀରେ ପରିଣତ ହୋଇ ଜନମନ ହରଣ କରୁଅଛି, ମାତ୍ର କାର୍ଯ୍ୟରେ କଡ଼ାକର ଗୁଣ ନାହିଁ—ଏହା ଧ୍ରୁବ ନିଶ୍ଚିତ ।

## ୧୧୧ ପାଠ—ମୋହମୟ ଅନ୍ଧକାରପୂର୍ଣ୍ଣ ଦୁଃଖବିଜଡ଼ିତ ଗର୍ଭରେ ଆତ୍ମସରଣ

ଆକାଶ ସର୍ବଜଗତକୁ ସ୍ଥାନ ଦେଇ ରଖିବାର ଅବସର ପ୍ରଦାନ କରିଅଛି ବୋଲି ତାହାର ନାମ ଆକାଶ ବା ଅବକାଶ । ଚିଦାକାଶ ଆତ୍ମାକୁ ତଦୀୟ ବିଦ୍‌ଗର୍ଭରେ ସ୍ଥାନ

ଦେଇ ଆତ୍ମପଦବୀ ଦାନ କରିଅଛୁ । ଆତ୍ମାର ଆତ୍ମସ୍ଥ ଅବସ୍ଥାର ନାମ ନିତ୍ୟ ବର୍ତ୍ତମାନ । ଅର୍ଥାତ୍ ଆତ୍ମା ଏଥିରେ ଅବସର ପ୍ରାପ୍ତ ହୋଇଅଛନ୍ତି । ଏ ଅବସର ନିତ୍ୟ ମାତ୍ର ଏହି ଆତ୍ମାରେ ଅନ୍ତଃକରଣ ଉଦିତ ହୋଇ ତାହାର ନିଜ ଗୁଣ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ, ଧର୍ମିତ୍ୱ ଓ ନିର୍ଦ୍ଧନତ୍ୱର ଅନ୍ତର୍ଗତ ଧର୍ମକୁ ପ୍ରକାଶ କରି ତତ୍ସହିତ ସେହି କର୍ତ୍ତୃତ୍ୱାଦିର ଆଧାର ପିଣ୍ଡ ବ୍ରହ୍ମାଣ୍ଡ ସମ୍ବନ୍ଧାତ୍ମକ ଶରୀରକୁ ବିଜଡ଼ିତ କରି ଏକତ୍ର ଗୋଟିଏ ମିଶ୍ର ବିଚିତ୍ର ଶରୀରପଟକୁ ସେହି ଆତ୍ମାଠାରେ ସ୍ଥାପନ କରିଅଛୁ । ଯେପରି ବିମଳାକାଶରେ କଳ୍ପିତ ନଗରାଦିର ଶରୀର ମୃଗତୃଷ୍ଣାରୂପେ ସ୍ଥାପିତ ଥାଏ, ମାତ୍ର ସେହି ମୃଗତୃଷ୍ଣାର ଦୃଶ୍ୟବସ୍ତୁ ଥିବାରୁ ତାହା ଆକାଶରେ ଅଛି ବୋଲି କୁହାଯାଏ, ଅଥଚ ପଦାର୍ଥବସ୍ତୁ ବା ତାହା ସତ୍ତ୍ୱବାନ୍ ନୁହେ ବୋଲି ନାହିଁ ବୋଲି କହି କେବଳ ବିମଳାକାଶ ସ୍ୱଚ୍ଛ ଏକରୂପରେ ଅଛି, ତାହା ଅର୍ଥାତ୍ ମୃଗତୃଷ୍ଣାକଳ୍ପିତ ନଗରାଦି ନାହିଁ—ଏପରି କହିବା ବଡ଼ ଠିକ୍ । ତେବେ ଆକାଶରେ ମୃଗତୃଷ୍ଣା ନଗର କେବଳ ଦୃଷ୍ଟିରେ ଅଛି, ଆଉ ଜ୍ଞାନତଃ ତାହା ନାହିଁ । ସୁତରାଂ ଆକାଶ ସତ୍ୟ, ତହିଁରେ ମୃଗତୃଷ୍ଣା ନଗରାଦି ଅଛି ଏବଂ ନାହିଁ । ଏ ଉଭୟ ଭାବ ଯେପରି କୌତୁକପ୍ରଦ ସେହିପରି ଆତ୍ମା ନିତ୍ୟ ବର୍ତ୍ତମାନ, ଅର୍ଥାତ୍ ତାଙ୍କର ତଦ୍ରୂପ ନିତ୍ୟବର୍ତ୍ତମାନ ଆତ୍ମସ୍ଥାବସ୍ଥା ନିତ୍ୟ ଅବକାଶମୟ । ତହିଁରେ ଅନ୍ତଃକରଣ ପରିବର୍ତ୍ତମୟ କାଳମୟ ସହିତ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ, ଧନିତ୍ୱ, ନିର୍ଦ୍ଧନତ୍ୱ ପ୍ରଭୃତି ଭାବସବଳିତ ପିଣ୍ଡ-ବ୍ରହ୍ମାଣ୍ଡ ସମ୍ବନ୍ଧାତ୍ମକ ମାୟିକ ଜଗଦାକାର ଶରୀରକୁ ଯେଉଁ ଯେଉଁ ଚିତ୍ରପଟ ସ୍ଥାପନ କରିଅଛି, ତାହା ବୈଷୟିକ କାଳ୍ପନିକ ଚକ୍ଷୁରେ ଅଛି ବୋଲି ପ୍ରତୀତ ହେଉଅଛି । ସୁତରାଂ ତାହାର ଆତ୍ମା ସଙ୍ଗରେ ଦୃଶ୍ୟବସ୍ତୁ ମାତ୍ର ଅଛି । ଆଉ ପଦାର୍ଥବସ୍ତୁ ଅର୍ଥାତ୍ ଆତ୍ମସତ୍ତ୍ୱ ନ ଥିବାରୁ ତାହା ବାସ୍ତବରେ ଆତ୍ମାରେ ନାହିଁ । ଆତ୍ମା ନିତ୍ୟ ବର୍ତ୍ତମାନ ଅର୍ଥାତ୍ ନିତ୍ୟ ଅବକାଶ ଉପଭୋଗ କରୁଅଛନ୍ତି । ଅବସର ଅର୍ଥ କାର୍ଯ୍ୟ ନ ଥିବା ବେଳ । ଏହି ଅନ୍ତଃକରଣଗତ ବୈଷୟିକ ବ୍ୟାପାରାଦିକୁ କାଳମୟ ଅନିତ୍ୟ ଅସ୍ଥାୟୀ ବୋଲି ଚିହ୍ନାଇ ଦେଇ ପ୍ରମାଣ କରି ଦେଉଅଛନ୍ତି । ଆଉ ମଧ୍ୟ ଏହି କାଳମୟ ପ୍ରକାଶିତ ବୈଷୟିକ ବ୍ୟାପାରାଦିର ଅସ୍ଥାୟିତ୍ୱ ଅର୍ଥାତ୍ ପରିବର୍ତ୍ତନଶୀଳ କ୍ଷଣସ୍ଥାୟିତ୍ୱକୁ ଆତ୍ମା ଆପଣାଠାରେ ବୈଷୟିକ ଚକ୍ଷୁରେ ଅଛି ଏବଂ ତତ୍ତ୍ୱଜ୍ଞାନ ଚକ୍ଷୁରେ ନାହିଁ ବୋଲି ଦେଖି ସ୍ୱୟଂ ଆତ୍ମସ୍ଥ ନିତ୍ୟବର୍ତ୍ତମାନଶୀଳ ନିତ୍ୟାବକାଶ ଉପଭୋଗ କରୁଅଛନ୍ତି । ଆକାଶରେ ମୃଗତୃଷ୍ଣା ନଗରର ଦୃଶ୍ୟ ପରି ଆତ୍ମାରେ ଅନ୍ତଃକରଣଗତ ବ୍ୟାପାରାଦିର ଦୃଶ୍ୟ ପ୍ରତୀୟମାନ ହେଉଅଛି । ସୁତରାଂ ଏହା ଆତ୍ମାରେ ଅଛି ଏବଂ ନାହିଁ, ଉଭୟଭାବ ପ୍ରଦାନ କରୁଅଛି । ଏହାର ନାମ ମାୟିକ ଲୀଳା । ଏହା ଆତ୍ମାପକ୍ଷରେ କୌତୂହଳପ୍ରଦ, ଆଉ ମୋହପ୍ରଦ ନୁହେ । ଆତ୍ମାର ଅବକାଶ ଅର୍ଥାତ୍ ନିତ୍ୟାବସର ମଧ୍ୟରେ ପ୍ରକୃଷ୍ଟାର୍ଥତଃ ଜୈବ ଚିଦାକାଶ ଗର୍ଭରେ ଏହି ଅନ୍ତଃକରଣ ତଦ୍‌ଗତ ସଂସାରମୟ ଭାବ ସହିତ ନୃତ୍ୟ କରୁଥିଲେ ମଧ୍ୟ ଆତ୍ମା ସେହି କ୍ରୀଡ଼ାକୌତୁକାଦିର ଦ୍ରଷ୍ଟା । ଆଉ ସେହି କ୍ରୀଡ଼ାଦି ଆତ୍ମା ନୁହେ । ଯେଉଁ ଆତ୍ମାର ଭୌତିକ ଜଗଦାଦି ସହିତ ଏହିପରି କାଳ୍ପନିକ କୌତୁକ ଦୃଶ୍ୟ-ଦ୍ରଷ୍ଟା

ସମ୍ବନ୍ଧ, ସେହି ଆତ୍ମା ଆଜକାଲି ଜନର ଭୌତିକ ଶିକ୍ଷାଦୀକ୍ଷାରେ ଏକାନ୍ତ ପ୍ରମତ୍ତ ହୋଇ ରହି ଆତ୍ମଜ୍ଞାନବଞ୍ଚିତ ହୋଇଥିବାର ଦେଖି ବର୍ତ୍ତିବାକୁ ଗଲେ ବୋଧ ହୋଇପାରେ ଏହା କେବଳ କଳି ତାମସୀ ପ୍ରବୃତ୍ତିର ମୋହାନ୍ଧକାରମୟ ଅମାନିଶାର ଶେଷ ଭାଗ । ନୋହିଲେ ସୂର୍ଯ୍ୟଦେବଙ୍କୁ କିଏ ଏପରି ଲୁଚାଇ ଦେଇପାରେ ? ମାତ୍ର ଏ କ୍ଷଣର ଆର ପାଖରେ ସେହି ସହସ୍ର ରଶ୍ମିଧାରୀ ଜଗନ୍ମଣ୍ଡଳ ତମୋପହାରୀ ଜ୍ୟୋତିର୍ମୟ ଜ୍ଞାନାଦିତ୍ୟ ବିରାଜମାନ ଥାଇ ଦର୍ଶନ ଦେଉ ନ ଥିଲେ କଅଣ ହେବ ? ତାଙ୍କରି କିରଣ ବିସ୍ତାରର ପୂର୍ବ ଲକ୍ଷଣ ଦେଖାଗଲାଣି । ସୁଷୁପ୍ତିରେ ସର୍ବପ୍ରକାର ସତ୍ୟ ମିଥ୍ୟାନ୍ତଃକରଣ ବ୍ୟାପାରାଦି ଲୁପ୍ତ ଥାଏ । ସ୍ୱପ୍ନରେ ତଦ୍ରୂପ ମିଥ୍ୟା ବ୍ୟାପାର ସତ୍ୟବତ୍ ପ୍ରତୀୟମାନ ହୁଏ; ଜାଗରଣ ଏତଦୁଭୟର ଭାବକୁ ଯଥା ଯଥା ପ୍ରକାରରେ ପ୍ରକାଶ କରି ନିଜ ଅବସ୍ଥା ଅନ୍ତର୍ଗତ ଶବ୍ଦ, ସ୍ପର୍ଶାଦି ବିଷୟମାନଙ୍କୁ ମଧ୍ୟ ସତ୍ୟରୂପେ ପ୍ରକାଶ କରେ । ଏହିରୂପେ ତୁରୀୟ ବା ଆତ୍ମସଂସ୍ଥଦଶା ନିତ୍ୟାବକାଶ ରୂପେ ଆତ୍ମାକୁ ସ୍ୱରୂପ ସତ୍ୟାକାରରେ ନିର୍ଦ୍ଦିଷ୍ଟ ରଖି ଉକ୍ତ ସୁଷୁପ୍ତ୍ୟାଦି ଦଶାତ୍ରୟକୁ ତଦୀୟଭାବ ସହିତ ନିର୍ଲିପ୍ତ ଆତ୍ମାରେ କଳ୍ପିତ ବ୍ୟାବହାରିକ ସତ୍ୟରୂପେ ପ୍ରତିବିମ୍ବ ସ୍ୱରୂପ ପ୍ରକଟ କରାଏ । ଏହି ଆତ୍ମଦେବ କଳିତାମସ ପ୍ରବୃତ୍ତି-ପ୍ରବାହରେ ଆତ୍ମଲକ୍ଷ୍ୟଭ୍ରଷ୍ଟ ହୋଇ ଉପସ୍ଥିତ ଜନର ଶିକ୍ଷା ଦୀକ୍ଷା ଦ୍ୱାରା ଯଦି କେବଳ ଭୌତିକ ଜ୍ଞାନ, ଭୌତିକ ଭାବ, ଭୌତିକ ସ୍ପୃହା, ଭୌତିକ ପ୍ରୀତିର ଭୌତିକ ସୀମା ଗଣ୍ଡି ମଧ୍ୟରେ ଜ୍ଞାନାନ୍ଧତା ସହକାରେ ଆବଦ୍ଧ ରହି ଖାଲି ଭୋଗ ବିଳାସିତାଦିକୁ ପରମ ପୁରୁଷାର୍ଥସାଧକ ବୋଲି ଯେନ ବସନ୍ତି, ତେବେ କହିବାକୁ ହେବ ତାଙ୍କର ଏହି ଉପସ୍ଥିତ ସଂସାର ଜାଗରଣ ତାଙ୍କ ନିଜାତ୍ମବୋଧ ତୁରୀୟ ଦଶା ତୁଳନାରେ ଏକପ୍ରକାର ବିଜାତୀୟ ସ୍ୱପ୍ନପରି ।

ଜାଗରଣରେ ସିନା ସ୍ୱପ୍ନର ସ୍ମରଣ କୌତୂହଳଦାୟକ, ଆଉ ସ୍ୱପ୍ନରେ ନୁହେ । ଜ୍ଞାନଦଶାରେ ସିନା ସଂସାରର ଜାଗରଣ କୌତୂହଳପ୍ରଦ, ଆଉ ଜ୍ଞାନାଭାବେ ଆତ୍ମତ୍ୱ ବା ନିଜତ୍ୱ ଅନିଶ୍ଚିତ ବା ଲୁପ୍ତଭାବାହ୍ୱାନ୍ତ ଥିବାରୁ ସଂସାର କେବଳ ଦୁଃଖ, ମୋହ ପାପଗ୍ରସ୍ତ ଅନ୍ଧାର ପରି ସିନା ବୋଧ ହେବ । ସ୍ୱପ୍ନଦଶାପନ୍ନ ଲୋକ ସ୍ୱପ୍ନକୁ ହିଁ ସତ୍ୟ ବୁଝିଥିଲା ପରି ଏହି ଶିକ୍ଷା, ଦୀକ୍ଷାର ବୈଷୟିକ ଜ୍ଞାନ ଅଟେ । ଆତ୍ମତତ୍ତ୍ୱ ଜ୍ଞାନାନଭିଜ୍ଞ ଉପସ୍ଥିତ ଜନର ଶିକ୍ଷିତ ଦୀକ୍ଷିତ ଲୋକ ପକ୍ଷରେ ବଡ଼ ସତ୍ୟ ଓ ପ୍ରୀତିକର ଅଟେ । ଏହା ସଂଘଟିତ ହେବା ମଧ୍ୟ ସ୍ୱାଭାବିକ । ତେବେ ପବିତ୍ର ଭାରତ ପକ୍ଷରେ ଏ ଜନ କଳି ତମସାଚ୍ଛନ୍ନ ଅମା ନିଶାଠାରୁ ବଳି ଘୋର ଅନ୍ଧାରିଆ । ମାତ୍ର ପେଚକବର୍ଗ ଏଥିରେ ବଡ଼ ଆହ୍ଲାଦିତ ହୁଅନ୍ତି । ଯାହାହେଉ ଏ ଶିକ୍ଷା ଦୀକ୍ଷାରେ ଅବଶ୍ୟ ଉପକାର ଅଛି । ମାତ୍ର ଏହାର ମାତ୍ରା ସୀମାତିକ୍ରମ କରି ଜ୍ଞାନକୁ ବୁଡ଼ାଇ ଏକଚାଟିଆ ଆଧିପତ୍ୟ କରିବାଟା କଳି ତାମସୀ ପ୍ରବୃତ୍ତିର ଶେଷ ଅଙ୍କକୁ ସୂଚନା କରୁଅଛି ।

ସଂସାରୀ ପକ୍ଷରେ ଶିକ୍ଷା ଦୀକ୍ଷାଦି ବ୍ୟତୀତ ବ୍ୟବସ୍ଥାଦି ଏବଂ ଲୌକିକ ବ୍ୟବହାରୀୟ ମାତ୍ର ପ୍ରଭୃତ୍ତି ବିଧିସଙ୍ଗତଭାବେ ପାଳିତ ଓ ରକ୍ଷିତ ହେବା ଏକାନ୍ତ ପ୍ରୟୋଜନ । ଶିକ୍ଷା ଦୀକ୍ଷାଦି ସମ୍ବନ୍ଧେ କେତେକ ଆଲୋଚନା କରାଗଲା, ଏବେ ବ୍ୟତୀତ ବ୍ୟବସ୍ଥାଦି ସମ୍ବନ୍ଧେ ମନୋନିବେଶ ପୂର୍ବକ କିଛି ସମାଲୋଚିତ ହେଉ ।

## ୧୧୨ ପାଠ—କଳି-ବ୍ୟବସ୍ଥା

ମନେ କରାଯାଉ ଗୋଟିଏ ମାତ୍ର ଲୋକ ଏକାକୀ ବିଜନ କାନନରେ ବା ଅନ୍ୟତ୍ର ଦେଶରେ ବାସ କରି ରହି ଧର୍ମଚିନ୍ତାରେ ପ୍ରବୃତ୍ତ ଅଛି । ସେ ଇଚ୍ଛା କରେ, ତାକୁ ଯେପରି କେହି ଦେଖନ୍ତୁ ନାହିଁ ବା ସେ କାହାକୁ ଦେଖିବାକୁ ନ ପାଏ । ଆଉ ମଧ୍ୟ ସେ ନିର୍ବିଘ୍ନରେ ଶମ, ଦମାଦି ସାଧନରେ ରହି ଯଦୃଚ୍ଛାପ୍ରାପ୍ତ ଫଳମୂଳାଦିରେ ଓ ପର୍ବତ ଝରଣାଜଳରେ କ୍ଷୁଧା ପିପାସାଦି ନିବୃତ୍ତି କରି ଆନନ୍ଦରେ କାଳାତିପାତ କରେ । ଦେଖିବାକୁ ହେବ ତା ପକ୍ଷରେ ବ୍ୟତୀତ ବ୍ୟବସ୍ଥାଦି କିଛି ଆବଶ୍ୟକ ନାହିଁ । ସେହି ଆଦର୍ଶରେ ଯଦି ସାଧାରଣ ମନୁଷ୍ୟ ସମୟ କ୍ଷେପଣ କରିବାକୁ ଗୃହାନ୍ତ ତେବେ ଚଳିବ ନାହିଁ । 'ବହୁତ ଲୋକ ପର୍ବ ମିଳି, ଅବଶ୍ୟ ଉପୁଜଇ କଳି' । ଖାଦ୍ୟପେୟାଦିରେ, ବସନ ବାସାଦିରେ ପରସ୍ପରବିରୁଦ୍ଧ ମତର ପ୍ରତିଯୋଗିତା ଆରମ୍ଭ ହେବା ସମ୍ଭବ । ମନୁଷ୍ୟ ଆପେ ଆପେ ମୀମାଂସିତ ବିଧିରେ ସେ ସବୁ ସଂପାଦନ କରିବାକୁ କ୍ଷମ ହେଲେ ବିରୁଦ୍ଧବାଦ ଜନ୍ମଲାଭ କରି ପାରନ୍ତା ନାହିଁ । ଏଥି ସକାଶେ ମନୁଷ୍ୟକୁ ଶମ, ଦମ, ତିତିକ୍ଷାଦି ଏବଂ ସମତା, ମୈତ୍ରୀ, ସ୍ୱାଧୀନତାଦି, ଅହିଂସା, ସତ୍ୟ, ଅକ୍ରୋଧ, ଜ୍ଞାନ, ଧର୍ମ, ନ୍ୟାୟ, ଦୟା, କ୍ଷମା, ପରୋପକାର, ଶ୍ରଦ୍ଧା, ପ୍ରେମ ଓ ଅକୃତ୍ରିମ ସନ୍ତୋଷାଦି ସର୍ବପ୍ରକାର ସାତ୍ତ୍ୱିକ ଭାବାଦିକୁ ମନୁଷ୍ୟର ନିଜ ସ୍ୱଭାବରେ ମିଶ୍ରିତ କରି ପବିତ୍ର ଜୀବନ ଗଠନ କରିବା ଆବଶ୍ୟକ । ଏଭଳି ଆଦର୍ଶର ଅନୁକରଣ କରିବାକୁ ହେଲେ ବାଲ୍ୟାବସ୍ଥାରୁ ତଦନୁରୂପ ଶିକ୍ଷା, ଦୀକ୍ଷା-ସାଧନ, ସଦାଚାର, ନିୟମ ଓ ସନ୍ଥଙ୍କ ସେବା ଏବଂ ସଦ୍‌ଗୁରୁ ସେବାଦି ନିତାନ୍ତ ପ୍ରୟୋଜନ । ଆର୍ଷ ଯୁଗରୁ ବୈଦିକ ଶାସନର ସମୟ ଏ ସମ୍ବନ୍ଧେ ବଡ଼ ଉପାଦେୟ । 'ଆଉ ଲୋଡ଼ିଲେ କାହିଁ ଟି ସେ କଥା; ପିଠି ଜାଣିବ କାହୁଁ ପେଟ ବ୍ୟଥା ।'

କଳିତାମସ ପ୍ରବୃତ୍ତିର ମହାମୋହ ଭାରତର ଏ ପବିତ୍ର ଦିନକୁ ଅନ୍ଧକାର ଅମାବାସ୍ୟା ରାତ୍ରିରେ ପରିଣତ କରିଅଛି । ମନୁଷ୍ୟର ରାଜସ-ତାମସ-ପ୍ରଧାନ ପ୍ରବୃତ୍ତିର ମୋହ ମନୁଷ୍ୟକୁ କାମ, କ୍ରୋଧ, ଲୋଭ ହାରି ଓ ଇନ୍ଦ୍ରିୟପରାୟଣତା, ବିଳାସିତା, ଗର୍ବ ପ୍ରଭୃତି ଅସତ୍ ଭାବରେ ବିଜଡ଼ିତ କରି ରଖିଅଛି । ଏହି ଭାବ ଯେଉଁ ପ୍ରବୃତ୍ତିମୟ ଉପାଦାନକ ଭଣ୍ଡାରରୁ ବାହାରି ମନୁଷ୍ୟର ହୃଦୟକୁ ଅଧିକାର କରଣାନନ୍ତର ସଂସାରରେ ଲୀଳା ଖେଳାଦି ବିସ୍ତାର କରିବାର ପାଇଲା, ସେହି ମହାଭଣ୍ଡାର ଅନୁରୂପ ଶିକ୍ଷା ଓ

ଶିକ୍ଷକ ଅନୁରୂପ କର୍ମ ଓ କର୍ମଶିକ୍ଷକ ଅନୁରୂପ ବିଧିବିଧାନ ଓ ବିଧିବିଧାନ ସ୍ରଷ୍ଟା ଇତ୍ୟାଦିର ପ୍ରଦର୍ଶନୀ ସଂସାରରେ ଖୋଲିଦେଲା । ଅସୀମ ଲୋଭ ବିଳାସିତାଦିରୁ ଜାତ ହେଲା ସୁଖ । ଭୋଗ ସଂସ୍କାରର ଏକାନ୍ତ ସନ୍ନିଷ୍ଟତା ବା ସମାଭୂତତାର ଯେ ଭାବ ତାହାହିଁ ବିଳାସିତା । ସୁଖଭୋଗ ଇନ୍ଦ୍ରିୟଦ୍ୱାରମାନଙ୍କରେ ସଂସାଧିତ ହୁଏ । ଇନ୍ଦ୍ରିୟଦ୍ୱାରବିଦ ଦେହ ଦେହସ୍ଥ ଅଛି । ଦେହର ବାହ୍ୟଜଗତ ଓ ଜାଗତିକ ବସ୍ତୁ ସମ୍ବନ୍ଧରୁ ଇନ୍ଦ୍ରିୟମାନେ ସୁଖ ସାଧନ ତତ୍ପର ହୁଅନ୍ତି । ଏହିରୂପେ ଏ ସମସ୍ତର ପରସ୍ପର ସମ୍ବନ୍ଧଦ୍ୱାରା ମାଟିଦେହ ମାଟିମୟ ଜଗତରେ ଜଡ଼ୀଭୂତ ରହି ମାଟିରେ ଗଡ଼ାଗଡ଼, ପଡ଼ାପଡ଼, ଭିଡ଼ାଭିଡ଼, କାମୁଡ଼ା-କାମୁଡ଼ି ଓ ଦୌଡ଼ାଦୌଡ଼ି କରି ସଡ଼ିସାଡ଼ି ଯାଉଅଛି । ମନୁଷ୍ୟ ଦେଖୁନାହିଁ, ଭାବୁନାହିଁ, ସେ ଆସିଅଛି ଏକା ଯିବ ଏକା । ମୂଳରୁ ଯେଉଁ ପ୍ରକାର ମାଟି ଓ ଗୁରଖଣ୍ଡ କାଠିକୁ ସଙ୍ଗରେ ଆଣିଅଛି, ତାକୁ ଗଲାବେଳେ ମାଟି ଉପରେ ପକାଇ ଦେଇ ଚାଲିଯିବ । ମାଟି କାଠିକୁ କୁକୁର, ବିଲୁଆ ଖାଆନ୍ତୁ ବା ସର୍ବଭକ୍ଷକ ଅଗ୍ନି ଖାଉ, ଅଥବା ମାଟି ତଳେ ପୋତାଯାଉ, ଶେଷରେ ତାହା ଯେଉଁ ମାଟିରୁ ଆସେ ସେହି ମାଟିରେ ମାଟି ହୁଏ । କେବଳ ଅଢ଼ାଇ ଦିନକୁ ବଢ଼ାଇ କରି ଏହି ମାଟିକୁ ଆତ୍ମଭ୍ରମ ସହକାରେ 'ମୁଁ' ବୋଲି ଅଭେଦ ଆତ୍ମଭାବ ସ୍ଥାପନ ପୂର୍ବକ ଆତ୍ମାଧାରଣ କଲାରୁ ସେହି ମାଟିର ପୂଜା ସକାଶେ ଅର୍ଥଲାଭ ଉଦ୍ଦେଶ୍ୟରେ ତାହାକୁ କେତେବେଳେ ନଦୀ, ସାଗର, ପର୍ବତାଦିରେ, କେତେ-ବେଳେ ଅଗମ୍ୟ କାନନରେ, କେତେ କେତେବେଳେ ଜଳରେ ସ୍ଥଳରେ ଆକାଶରେ, କେତେବେଳେ ହିଂସା କୋପବାଦ, ଛନ୍ଦ, କପଟାଦି ଅମାନୁଷିକ ସାହସପୂର୍ଣ୍ଣ କୁକ୍ରିୟା-ଦିରେ, କେତେ କେତେବେଳେ ବା ଗ୍ରାମ ନଗରାଦିରେ ଭ୍ରମଣ କରାଉଅଛି । ଏହି ଭ୍ରମ-ସଂଘର୍ଷରୁ ମତବାଦ ଓ ମତାନୈକ୍ୟ ସଂସାରରେ ସର୍ବପ୍ରକାର ବିଭ୍ରାଟ ଘଟାଉଅଛି । ଏହି ବିଭ୍ରାଟ ସମାଧାନ ନିମିତ୍ତ ବିଚାର ବ୍ୟବସ୍ଥାଦି ଦରକାର ପଡ଼ିବା ସ୍ୱାଭାବିକ କଥା । ତେବେ ଏହି ବିଚାରର ସ୍ଥାନ ପକ୍ଷ, ବିପକ୍ଷ ବା ପ୍ରତିପକ୍ଷ, ଉପପକ୍ଷମାନଙ୍କ ମଧ୍ୟରେ ନିର୍ଣ୍ଣୀତ ହୋଇ ଗ୍ରାମ୍ୟ ସୀମା ମଧ୍ୟରେ ଯେ କୌଣସି ଦେବାଳୟାଦିରେ ବା ବୃକ୍ଷମୂଳରେ ହେଲେ କୌଣସି କ୍ଷତି ନାହିଁ । ପକ୍ଷମାନେ ଆପେ ଆପେ ନିଜ ନିଜର କଥା ଭଲରୂପେ ଅନୁଭବ କରିଅଛନ୍ତି । ସୁତରାଂ ସତ୍ୟ, ଧର୍ମ ଏବଂ ନ୍ୟାୟକୁ ବିଚାରାସନର ପୀଠଦେବତାରୂପେ ବରଣ ଓ ସ୍ଥାପନ କରି ଆପେ ଆପେ ଆପଣାର ଦୋଷ ବା ତ୍ରୁଟି-ସ୍ୱୀକାର ପୂର୍ବକ ମୁହିଁ ତୁହିଁ ତୁହିଁ କଲେ ସେହିଠାରେ ତତ୍‌କ୍ଷଣାତ୍ ଯେ ଯାହାର ପ୍ରତିକାର ବା ଲାଭ-ହାନି ପାଇଯାନ୍ତେ । ମାତ୍ର କଳିତମସାଚ୍ଛନ୍ନ ଗର୍ବ ଓ ଉଗ୍ରତା, ଦମ୍ଭ ଓ ଅବିବେକାଦି ମିଶି ପକ୍ଷମାନଙ୍କ ସାତ୍ତ୍ୱିକ ଭାବ ସଙ୍ଗେ ଯୁଦ୍ଧ କରି ବିଜୟୀ ହେଲାରୁ ପକ୍ଷମାନେ ପରସ୍ପରଠାରେ ଆପଣା ଆପଣା ମଧ୍ୟରେ କେଜାଣି କଅଣ କେତେଗୁଡ଼ାଏ ଆହୁରି କରିକରି ହେବେ ବୋଲି କଳବାନା ମୁଣ୍ଡରେ ବାନ୍ଧନ୍ତି । ତେବେ ହେଲେ ଏଠାରେ ଅପକ୍ଷପାତୀ ଭଦ୍ର ପଞ୍ଚ ଏକତ ବସି ବୁଝିଦେବା ଉଚିତ । ତାହା ହେଲେ ମଧ୍ୟ ତହିଁରେ କାହାର ମନ ବାଧ୍ୟ ହେବ ବୋଲି ସ୍ୱୀକାର କରୁନାହିଁ ।

କଳି ତାମସ ବଡ଼ ମନ୍ଦ ଜନକ । ସେ ଯେଉଁଠାରେ ଧନର ଆଧିକ୍ୟ ସେହିଠାରେ କପଟ ବଞ୍ଚକତା କରି ଧର୍ମ ଲୋକକୁ ଧନ ବ୍ୟୟଦ୍ୱାରା ମିଥ୍ୟା ଜାଲ ଫିସାଦ, ଫରେବ ଓ କୃତ୍ରିମାଦି ସାହାଯ୍ୟରେ ସତ୍ୟକୁ ହରାଇ ମିଥ୍ୟାର ଜୟ କରାଇ ଦେବାର ଦମ୍ଭ ପ୍ରଦାନ କରୁଅଛି । ଅର୍ଥହୀନ ପ୍ରାଣୀ ଅର୍ଥବ୍ୟୟ ଭୟରେ ଘରୋଇ ବିଚାରର ଇଚ୍ଛା କଲେ ମଧ୍ୟ, ଧର୍ମ ନାରାଜ ହେବାରୁ ଉଭୟେ ଏକଦଶାପନ୍ନ । ସୁତରାଂ ବିଚାରର ବ୍ୟବସ୍ଥାର ସ୍ଥାନ ଗ୍ରାମ୍ୟ ଦେବାଳୟାଦି ନିକଟରୁ ବହୁଦୂରକୁ ଘୁଞ୍ଚି ଯାଉଅଛି, ପକ୍ଷମାନଙ୍କୁ ଦଉଡ଼ାଇ ଦଉଡ଼ାଇ ମାରୁଅଛି, ଏବଂ ଧନହାନି, ମାନହାନି, ଧର୍ମହାନି, ସ୍ୱାସ୍ଥ୍ୟହାନି, ମନଶ୍ଚିନ୍ତା, ଦୁଃଖ ଓ କେତେ କେତେ ଗଧପାଦଧରା, ବାରଦ୍ୱାର ଶୁଣ୍ଢି ପିଣ୍ଡା ଆଶ୍ରୟ ପ୍ରଭୃତି ସଂଘଟନ କରୁଅଛି । ସେହିଠାରେ ଝିଟିପିଟିଠାରୁ ଶାଳଗ୍ରାମ ପର୍ଯ୍ୟନ୍ତ ଓ ଖଟୁଲିଠାରୁ ଖଟୁଲି ହାଅଁ ପର୍ଯ୍ୟନ୍ତ କୁଜା, କଣା, କେମ୍ପାଠାରୁ ଖାମକାୟ ପର୍ଯ୍ୟନ୍ତ ସର୍ବସ୍ୱ ଅର୍ଥର ପ୍ରୟୋଜନ । ‘ମା’ ମଲରୁ ଲୋକ ଯେପରି ଅଳ୍ପ ସମୟ ଦୁଃଖ କନ୍ଦଳାଦି କରି ପରେ ଶୁଦ୍ଧାଦି କ୍ରିୟାର ବ୍ୟୟ ନିର୍ବାହାର୍ଥ ଅର୍ଥସଂଗ୍ରହ ଉଦ୍ଦେଶ୍ୟରେ ବାରଆଡ଼େ ଭ୍ରମଣ କରେ, ଋଣ କରି ଶେଷକୁ ବଡ଼ ଅର୍ଥାଭାବରେ ଦୁଃଖିତ ହୁଏ, ସେହିସବୁ ଭ୍ରମଣରେ ଓ ଶୁଦ୍ଧକାର୍ଯ୍ୟାଦି ଓ ବ୍ୟବସାୟାଦିରେ ମାତୃବିୟୋଗ ଭୁଲିଯିବାକୁ ପଡ଼େ । ଏଠାରେ ବିଚାର ସ୍ଥାନରେ ମାମଲା ସଂଘଟିତ ହେଲରୁ ସେ ସମ୍ବନ୍ଧେ ଅର୍ଥସଂଗ୍ରହ ଓ ଦୌଡ଼ାଦୌଡ଼ି ଓ ନାନାପ୍ରକାର ଗଧପାଦଧରା ଏବଂ ମହାବଳଦର୍ଶନାଦିରେ ପ୍ରକୃତ ଘଟନା ଓ ତହିଁର ବିହିତ ପ୍ରତିକାର ବା ହାନି ଲାଭ ପ୍ରଭୃତିକୁ ଭୁଲିଯାଇ ବୃଥା ଚଷୁକୁଟା ଓ ମରୁଭୂମି ବା ଅରଣ୍ୟାଦିରେ ମାତିଯିବାକୁ ହୁଏ; ଶେଷରେ ପ୍ରତିକାରର ଆକାର ହାଅଁ ଗଡ଼ୁ ଚଡ଼ୁ ମାଙ୍କଡ଼ପରି ହୁଏ । ଯାହା ହୁଏ ଜବର୍ଦ୍ଦସ୍ତ ଠେଙ୍ଗା ଶିର ଉପରେ ଧାରଣ କରି ଘରେ ପହଞ୍ଚି, ‘ବୈର ମା ଲାଜେ ନ କାନ୍ଦେ, ଯେବେ କାନ୍ଦେ ତେବେ ଦ୍ୱାର ବନ୍ଦ କରି କାନ୍ଦେ’ ଏହିପରି ବାକ୍ୟର ଅନୁବର୍ତ୍ତୀ ହୁଏ । ମାଡ଼ ସିନା ଠାଏ ବଥାଏ, ମାତ୍ର ଏ ଅନର୍ଥକ ଅର୍ଥହାନି ସବୁଠାରେ ସବୁବେଳେ ସର୍ବାଙ୍ଗରେ ସର୍ବାଶ୍ରିତ ବ୍ୟଥା ପ୍ରଦାନ କରୁଥାଏ । ଏ ଅପବ୍ୟବହାର, ଅର୍ଥାପଚୟ, ମାନ ଓ ସ୍ୱାସ୍ଥ୍ୟାଦିର ଅପଚୟ ପ୍ରଭୃତି ଯେପରି ପକ୍ଷ ପ୍ରତିପକ୍ଷାଦିମାନେ ଅଙ୍ଗେ ଅଙ୍ଗେ ନିର୍ବାହ କରି ହୃଦୟଙ୍ଗମ କରନ୍ତି, ସେହିପରି ପାରିପାର୍ଶ୍ୱିକବର୍ଗ ଗ୍ରାମବାସୀ, ଉପଗ୍ରାମନିବାସୀ, ଦାଣ୍ଡିଆ, ହାଟୁଆ, ବାଟୁଆ ପ୍ରଭୃତିଙ୍କଠାରୁ ଆରମ୍ଭ କରି ବିଚାରସ୍ଥାନାଶ୍ରୟୀ ଝିଟିପିଟିଠାରୁ ଶାଳଗ୍ରାମ ପର୍ଯ୍ୟନ୍ତ, ଖଟୁଲିଠାରୁ ଖଟୁଲିହାଅଁ ପର୍ଯ୍ୟନ୍ତ, ଉଡ଼ାବୁଡ଼ାଠାରୁ ଜଡ଼ଦ୍‌ଗବ ପର୍ଯ୍ୟନ୍ତ ଏବଂ କଙ୍କରଠାରୁ ମହାପ୍ରଭୁ ଖାଳପ୍ରଭୁ ପର୍ଯ୍ୟନ୍ତ, ସମସ୍ତେ ଦେଖି ଶୁଣିଲେ ଶିଖି-ପଢ଼ି ବୁଝିବାକୁ କ୍ଷମ ହେଉଅଛନ୍ତି ସନ୍ଦେହ ନାହିଁ । ମାତ୍ର ସେ ବିଚାରସ୍ଥାନର ସମସ୍ତେ ‘ଡେଇଁ ଶୋଇବ ଯେ, ତାକୁ ଉଠାଇବ କିଏ’ ଏହି ମାତର ପଦଧୂଳିଝଡ଼ା ଦାସଠାରୁ ବଳି ଆହୁରି ନିକୃଷ୍ଟତର ଉପାଧିରେ ଭୂଷିତ ହେଉଅଛନ୍ତି । ଯେ ଯାହାର ଅର୍ଥ ଗ୍ରହଣ କରି ସନ୍ତୋଷ; ଅର୍ଥହିଁ ଉପାସ୍ୟ ଦେବତା, ସେହି ଦେବତାଙ୍କୁ ତୋଷ କରିବାକୁ ନରବଳି ଦାନ ହେଉ ବା ମହାପାତକ ଅର୍ଜନ କରାଯାଉ,

ଜନ୍ମା କର୍ତ୍ତବ୍ୟ, ସତ୍ୟବୁଦ୍ଧି, ଧର୍ମ, ନ୍ୟାୟ ସତ୍ୟାଦିଙ୍କର ଜଳାଞ୍ଜଳି ଦେଉଛନ୍ତି ଆଉ, ସେହି ସ୍ଥାନର ପାଠୁଆ, ବଡ଼ପାଠୁଆ, ଅପାଠୁଆ ପ୍ରଭୃତି ସମସ୍ତେ ଅର୍ଥଲୋଭରେ ଓ ଅର୍ଥସଂଗ୍ରହରେ ଅନ୍ଧ ହୋଇ ମଇଳା ଦରିଣ୍ଡୁଅଛନ୍ତି । ଦେଖୁ ଦେଖୁ ଅନ୍ଧ, ଜାଣୁ ଜାଣୁ ଅଜଣାପରି ଆଜକାଲିର ଲୋକ କେତେ ଆଖିଥିଲା ଅନ୍ଧ ଓ କେତେ ବିଦ୍ୟାବୁଦ୍ଧି ଥିବା ପଶୁ ହୋଇଅଛନ୍ତି । ମାନବୀୟ ଆତ୍ମା ! ଆପଣ କେଉଁ ସ୍ଥାନରେ ? କେଉଁଠାରେ ସର୍ବଦା ଆପଣଙ୍କର ନିବାସ । ସେହି ଜ୍ଞାନଭୂମି ପୀଠରେ ଆପଣ ଥାଇ ଭୌତିକ ଦେହରେ ଆତ୍ମଭ୍ରମବୁଦ୍ଧି ସ୍ଥାପନପୂର୍ବକ ଦେହ ସମ୍ବନ୍ଧ ମୃଣ୍ମୟ ଜଗତରେ ପଡ଼ି କିଂଭୂତ-କିମାକାର ହେଲେଣି । ଏହା କଳି ତାମସ ପ୍ରବୃତ୍ତିର ଅନ୍ଧକାରଗ୍ରସ୍ତ ବଧିର ଅନ୍ତର୍ଭଗ ପରି ଆପଣଙ୍କ ପକ୍ଷରେ ସୂଚିତ ହେଉଅଛି ।

## ୧୧୩ ପାଠ—କଳିର ଆହମକି

ଏହାପରେ ଗୋଟିଏ ଆଖ୍ୟାୟିକା ପ୍ରତି ମନୋନିବେଶ କରାଯାଉ—ଏକ ବିଚିତ୍ର ଘଟନାର ସୁଦୃଶ୍ୟ ଏଠାରେ ଏହି ଦେଖ ଯେ ଗୋଟିଏ 'ପୋକ' ଘାସ ଉପରେ ଖେଳୁଅଛି, ଗୋଟିଏ ବଡ଼ 'ବେଙ୍ଗ' ତାକୁ ଖାଇବାକୁ ଦୂରରୁ ଡିଆଁମାରି ଦଉଡ଼ିବାର ଚେଷ୍ଟା କରୁଅଛି, ଆଉ ମଧ୍ୟ ଏଣେ 'ବେଙ୍ଗ'କୁ ଗୋଟିଏ 'ସାପ' ଗିଳିବାକୁ ଧାଇଁଅଛି, ପୁଣି ତେଣେ 'ସାପ'କୁ ଗୋଟିଏ 'ନେଉଳ' ଟିକଟିକି କରି କାଟିବା ପାଇଁ ଛକି ଛକି ବୁଲୁଅଛି, ପୁଣି ତେଣେ ନେଉଳକୁ ଗୋଟିଏ କୁକୁର ଦେଖି ତାକୁ ଧରିବା ପାଇଁ ଚେଷ୍ଟା କରୁଅଛି, ଆଉ ମଧ୍ୟ 'କୁକୁର'କୁ ଖାଇବା ପାଇଁ ଗୋଟିଏ ହେଣ୍ଟାବାଘ ବଣବୁଦାରେ ଛକି ରହିଅଛି, ପୁଣି ବାଘକୁ ମାରିବା ପାଇଁ ଏଣେ ଜଣେ ବାଣୁଆ ବନ୍ଧୁକରେ ଗୁଳି ସଜାଡ଼ି ରଖିଅଛି । ଏପରି ସ୍ଥଳେ ପୋକଟିକୁ ବାଦ୍ ଦେଲେ ବାକି ସମସ୍ତେ ଅର୍ଥାତ୍ ବେଙ୍ଗଠାରୁ ବାଣୁଆ ପର୍ଯ୍ୟନ୍ତ ସମସ୍ତେ ଲୋଭପରବଶ ହୋଇ ହିଂସାକାର୍ଯ୍ୟସାଧନରେ ତତ୍ପର ହୋଇଅଛନ୍ତି । ତାମସା ଦେଖ, ପୋକକୁ ଯଦି ବେଙ୍ଗ ଖାଇଯାଏ, ଏବଂ ପରେ ବେଙ୍ଗକୁ 'ସାପ', ସାପକୁ 'ନେଉଳ', ନେଉଳକୁ 'କୁକୁର', କୁକୁରକୁ 'ବାଘ' ମାରିଦିଏ ଏବଂ ସର୍ବଶେଷରେ ବାଘକୁ ବନ୍ଧୁକଧାରୀ ବାଣୁଆ ଗୁଳି ମାରି ସଂହାର କରେ, ତେବେ ଲୋଭ ଓ ହିଂସାର ବଶବର୍ତ୍ତୀ ହୋଇ ବେଙ୍ଗଠାରୁ ବାଘ ପର୍ଯ୍ୟନ୍ତ ସମସ୍ତେ ମଲେ, ଅଥଚ ମନ୍ଦମାନଙ୍କ ସଂସର୍ଗ ବା ନିକଟସ୍ଥ ହେତୁ ନିର୍ଦ୍ଦୋଷ ପୋକ ବିଚରାଟି ମଧ୍ୟ କାଳମୁଖରେ ପତିତ ହେଲା ଓ ଜୟ ପତାକା ବନ୍ଧୁକ-ଧାରୀର ମୁଣ୍ଡରେ ବିନା ପବନରେ ଫର ଫର ହୋଇ ଉଡ଼ିଲା । ଏଠାରେ ବେଙ୍ଗଠାରୁ ବାଘ ପର୍ଯ୍ୟନ୍ତ ସମସ୍ତେ ଯଦି ଲୋଭ ଆଉ ହିଂସାରୂପ ମହାପାପ ବୁଦ୍ଧିକୁ ପରିତ୍ୟାଗ କରି ଲୋଭ ଆଉ ହିଂସା କଦାଚ ଭଲ ଫଳଦାୟୀ ନୁହେଁ ଅଥଚ ମୃତ୍ୟୁର ନିଦାନ ବୋଲି ବୁଝନ୍ତେ, ଆଉ କେହି କାହାପ୍ରତି ହିଂସାସାଧନ ନ କରି ଆତ୍ମରକ୍ଷାରେ ନିର୍ଲୋଭ ଭାବରେ ନିୟୋଜିତ ହୋଇ ଯେ ଯାହାର ରକ୍ଷାମାର୍ଗ ଧରି ପଳାଇ ଯାଆନ୍ତେ, ତେବେ ସମସ୍ତେ

ବଞ୍ଚିଯାନ୍ତେ, କାହାରି କିଛି ମନ୍ଦ ଘଟିପାରନ୍ତା ନାହିଁ । ଅଥଚ ବନ୍ଧୁକଧାରୀ ଏମାନଙ୍କ ଲୋଭ, ହିଂସାରୂପ ଓ ତ୍ୟାଗରୂପ ମହା ଧର୍ମବଳରେ ମୁଁହ କସରି ପକାଇ ବନ୍ଧୁକଟିକୁ ଏକ ହାତରେ ଓ ଅନ୍ୟ ହାତରେ କପାଳକୁ ଠୁକି ଯାଉ ପଛକେ, ହିଂସା ଓ ଲୋଭରୂପ ପାପକବଳରୁ ରକ୍ଷା ପାଇଯାନ୍ତା । ଏହିପରି ବଡ଼ ସାନକୁ ଗ୍ରାସିବା ମହାପାପ । ସଂସାରରେ ସମସ୍ତେ ବଡ଼ ଓ ପରସ୍ପର ତୁଳନାରେ ସମସ୍ତେ ସାନ । ଏହି ବୃଥାକଳ୍ପିତ ବଡ଼ ସାନ ଧାରଣାର ଭ୍ରମକୁ ପରିତ୍ୟାଗ କରି, ଲୋଭ ହିଂସା ପ୍ରବୃତ୍ତିକୁ ଛାଡ଼ିବା ଉଚିତ । ସତ୍ୟ, ଧର୍ମ, ନ୍ୟାୟ ପ୍ରଭୃତି ମାନନୀୟ, ପାଳନୀୟ, ରକ୍ଷଣୀୟ, ସେବନୀୟ ଓ ଆଦରଣୀୟ ଅଟେ । ବର୍ତ୍ତମାନ ବିଚାର ବ୍ୟବସ୍ଥା ସ୍ଥାନରେ ବିଚାର ନାମରେ ଅନେକ ଅବିଚାର, ନ୍ୟାୟ ନାମରେ ଅନ୍ୟାୟ, ସତ୍ୟ ବଦଳରେ ମିଥ୍ୟା, ପ୍ରତିକାର ପରିବର୍ତ୍ତେ କେବଳ ଆଖିବୁଜା ଓ ଆଖିଠାରି ଅନାୟତ୍ତ ଅର୍ଥହାନି ଘଟୁଅଛି । ଅର୍ଥକୁ ଯଥା ପ୍ରୟୋଜନ-ମତେ ଖର୍ଚ୍ଚ ଢଗରେ ଯୋଗାଇ ନ ପାରିଲେ ତାହାର କଥା ଯେତେ ସତ୍ୟ ହେଉ ପଛକେ, ଜୟଲକ୍ଷ୍ମୀ ତାହାରିଠାରୁ ଅସୀମ ଦୂରରେ ଅବସ୍ଥାନ କରନ୍ତି । ଆଉ ଟଙ୍କା ଅଜାଡ଼ି ପାରିଲେ ଦିଅଁ ଚିହ୍ନି ଯଥାବିଧି ପୂଜାଦି ଦାନକରି ଜାଣିଲେ ମିଥ୍ୟାଟି ସତ୍ୟ ଆକାରରେ ପରିଣତ ହୋଇ ଅର୍ଥବ୍ୟୟପୃଷ୍ଠ ଆଡ଼େ ବିଜୟପତାକା ଉଡ଼ପଡ଼େ । ଗରିବ ଯଦି ଧନୀଦ୍ୱାରା ଆକ୍ରାନ୍ତ ହୁଏ, ଆଉ ତଦ୍ଦ୍ୱାରା ତାହାର ଧନହାନି, ମାନହାନି, ପ୍ରାଣହାନି କି ସ୍ୱତ୍ୱହାନି ପ୍ରଭୃତି ଯେ କୌଣସି ପ୍ରକାର କ୍ଷତି ଘଟୁ ପଛକେ ସେ ତୁନି ହୋଇ ସବୁ ପୀଡ଼ା, ଲାଞ୍ଛନା, ହାନି ପ୍ରଭୃତି ସହ୍ୟ କରି ମୁଁଣ୍ଡ ଆଉଁସି ଘରେ ତା ଦୁଃଖରେ ତାପ ନିଶ୍ୱାସ ଛାଡ଼ି ଛାଡ଼ି ମୁହଁ ମାଡ଼ି ପଡ଼ିରହେ, ଧନୀ ଇଚ୍ଛାପୂର୍ବକ ଗରିବକୁ ଯାହା ଇଚ୍ଛା ତାହା କରିପାରିବାକୁ ପରମେଶ୍ୱରଙ୍କଠାରୁ ସନନ୍ଦ ପାଇଅଛି ବୋଲି ମନେକରେ । ଧନବଳରେ ବର୍ତ୍ତମାନ ବିଚାରବ୍ୟବସ୍ଥାଦି ସହଜରେ କିଣାଯାଇ ପାରୁଅଛି । ବୁଦ୍ଧି ଉପାୟ ପ୍ରଭୃତି ପଇସା ଦେଲେ ଦୁଆର ମୁହଁରେ ନଡ଼ବଡ଼ ହେଉଅଛନ୍ତି । ମିଥ୍ୟାସାକ୍ଷୀ, ସତ୍ୟ ଆକାର ଧାରଣ କରି ପଇସା ବଳରେ ସର୍ବତ୍ର ପୂଜିତ ଓ ଆଦୃତ ହେଉଅଛି । ଏ ସବୁରେ ଧର୍ମ, ନ୍ୟାୟ ଓ ସତ୍ୟ କେଉଁ ଅଜ୍ଞାତ ସ୍ଥାନରେ ଲୁଚି ମାନରକ୍ଷା କରୁଅଛନ୍ତି, ତାହାର ଠିକଣା ନାହିଁ; ତାହା ମଧ୍ୟ କେହି ଖୋଜୁନାହାନ୍ତି । ଖାଲି ଅର୍ଥ ଖୋଜା ଲାଗିଛି । ଯେ କୌଣସି ପ୍ରକାରେ ଅର୍ଥ ହସ୍ତଗତ କରିବାକୁ ସମସ୍ତେ ବ୍ୟାକୁଳ । ତହିଁରେ ମୂର୍ଖତାର ପାଣ୍ଡିତ୍ୟ, ଅନ୍ୟାୟୀର ନ୍ୟାୟତ୍ୱ, ପାପୀର ପୁଣ୍ୟ, ଅସୁରର ଦେବତ୍ୱ ପ୍ରଭୃତି କିଣିବାକୁ ମିଳୁଅଛି ।

ବର୍ତ୍ତମାନ ସଂସାରରେ ଦେଖାଯାଏ ବିଚାର ବ୍ୟବସ୍ଥା ପଦ୍ଧତିର ସ୍ୱାଧୀନତା ନାହିଁ । ଏହା ଶୃଙ୍ଖଳାବଦ୍ଧ ଭୃତ୍ୟତାର ଶୃଙ୍ଖଳାବଦ୍ଧ ହସ୍ତରେ କ୍ରୀତ କାଷ୍ଠପିତୁଳା ପରି ନୃତ୍ୟ କରୁଅଛି । ବର୍ତ୍ତମାନ ବିଚାର ବ୍ୟବସ୍ଥା ପଦ୍ଧତି ଭୃତ୍ୟ ଶ୍ରେଣୀୟ ନାନାବିଧ ବିଶେଷତ୍ୱ ପରିଚାୟକ ପ୍ରଭୁ ପଦବ୍ୟଞ୍ଜକ ଉପାଧି ପ୍ରଭୃତିରେ ବିଭୂଷିତ । ଅର୍ଥଗ୍ରାହୀ ଦାସ-ମାନଙ୍କ ଦ୍ୱାରା ପରିଚାଳିତ ହେବାର ଦେଖା ଯାଉଅଛି । ଅର୍ଥଦାତାର ଇଙ୍ଗିତ ସ୍ୱରୂପ

ଅଙ୍ଗୁଳି ନିର୍ଦ୍ଦେଶ ସୀମା ମଧ୍ୟରେ ଅର୍ଥଗ୍ରାହୀ ଅର୍ଥରକ୍ଷାନୁରୋଧରେ ରଚି ଯାହା କିଛି ବ୍ୟବସ୍ଥା ନାମରେ କରିବାକୁ ବାଧ୍ୟ ହେବା ତା ପକ୍ଷରେ ସ୍ୱାଭାବିକ ନିୟମ । ଏଥିରେ ଅର୍ଥଗ୍ରାହୀର ନିଜର ଜ୍ଞାନ ବିବେକ ଓ କର୍ତ୍ତବ୍ୟବୁଦ୍ଧିର ସ୍ୱାଧୀନତାକୁ ସ୍ଥାନ ବା ସମୟ ସୁଯୋଗ ଆଦି କିଛି ନାହିଁ । ଏହାପରେ ବିଚାର ସ୍ଥାନଠାରୁ ବହୁଦୂରର ଘଟଣା ଧନ, ଧର୍ମ, ଶରୀର କି ସମ୍ପତ୍ତି ସମ୍ବନ୍ଧରେ ହେଉ ବା ଅନ୍ୟ ଯେ କୌଣସି ସମ୍ବନ୍ଧରେ ହେଉ, ତାହାର ପ୍ରକୃତ ଆକାର ତାହାର ସେହି ଜନ୍ମସ୍ଥାନଠାରେ ଦେଖିବାକୁ ମିଳିବା ଅଧିକ ସମ୍ଭବ । ତାହା ଦେଖିବା ପ୍ରଥା ବଡ଼ କ୍ଷୀଣ ଓ ବିରଳ ଅଥଚ ବହୁଅର୍ଥବ୍ୟୟସାପେକ୍ଷ । ସୁତରାଂ ସେ ପ୍ରଥା ନାହିଁ କହିଲେ ଚଳେ । ବିଚାର ସ୍ଥାନକୁ ଘଟଣାର ଆକାର ଶବ୍ଦରେ ନିର୍ମିତ ହୋଇ ଅଣାଯାଏ ଏବଂ ମାହାଲିଆ ମୁକୁନ୍ଦଦେବ ଉପାଧିଧାରୀ କେତେକ ଲୋକ, ସେହି ଆକାରକୁ ନାନା ପ୍ରକାର ବିକାରଭାବାପନ୍ନ ଅଳଂକାରରେ ଭୂଷଣ କରି ବିଚାର ସ୍ଥାନରେ ଥୋଇଦିଅନ୍ତି । ସେ ସମ୍ବନ୍ଧରେ ସତ୍ୟ ନାମର ଦୋହାଇ ଧରିତ ସବୁ ମିଛ-ଯାକ ପଢ଼ିଖିଆ ବା ଭଡ଼ାଟିଆ ଶ୍ରେଣୀସ୍ଥ ସାକ୍ଷୀଙ୍କ ଦ୍ୱାରା ପ୍ରକାଶ କରିବାର ପନ୍ଥା ଫିଟି ଗଲଣି । ପ୍ରକୃତ ମୂଳ ସତ୍ୟ ଘଟନା ସହିତ ଏହି ବର୍ଣ୍ଣନାର ପ୍ରଭେଦ ଆକାଶ ପାତାଳ ପରି । ଯାହା ହେଉ ଏହି ମିଥ୍ୟା ବିବରଣ ବହୁ ମୂଲ୍ୟବାନ ବେଦବାକ୍ୟ ପରି ସ୍ୱର୍ଣ୍ଣାକ୍ଷରରେ ଅଙ୍କିତ ହୁଏ । ବଡ଼ ଘରର ବଡ଼ ଆଡ଼ମ୍ବର ବଡ଼ ବଡ଼ ପୋଷାକ ପରିଚ୍ଛଦ ମଣ୍ଡିତ ବଡ଼ ବଡ଼ ମୁଣ୍ଡର ବଡ଼ ବଡ଼ ଲୋକ ଓ ଆସନ ପାଦାସନର ଦୃଶ୍ୟାଦି ଉଚ୍ଚ ଭାବ ପୋଷଣର ଧାରଣାକୁ ବଦ୍ଧମୂଳ କରି ଦେଉଅଛି । ତାକହାକ ହାସପ୍ରଦ ଅଟେ । ଏହିସବୁ ଦୃଶ୍ୟ ସହିତ କାଗଜ କଲମ ଓ କାଳିର ବ୍ୟବହାରରେ ଜିବରୁ ଶିର ପର୍ଯ୍ୟନ୍ତ ଅଙ୍କିତ ହୋଇ ଘଟନାଟି ଯେପରି ଏକ ବିଜାତୀୟ ନବ କଳେବର ଧାରଣ କରି ମିଶିଯାଇଅଛି, ଏହି ପରି ଭାବ ସେହି ଦୃଶ୍ୟରେ ବିମୋହିତ ହେବାକୁ ହୁଏ । ଏହି ମୋହପ୍ରଦ ନବକଳେବର ସଙ୍ଗେ ସତ୍ୟ ଘଟନାର ସମ୍ପର୍କ ବଡ଼ ଅଳ୍ପ । ଯାହା ହେଉ, ଗୋଟାଏ ସମାବେଶ ଦ୍ୱାରା ସବୁ ଘୋଡ଼େଇ ହୋଇ ପଡ଼ୁଅଛି । ଫଳାଫଳ ଏହି ଅନୁସାରେ ଗାଁ ପରିମଳ ଧୋବା କୁଠରୁ ଜଣାପଡ଼ିଲପରି । ବ୍ୟବସ୍ଥା ବିଚାର ପଦ୍ଧତିର ପ୍ରାଣ, ସତ୍ୟ, ଧର୍ମ, ନ୍ୟାୟ ଏବଂ ଅପକ୍ଷପାତିତା ଓ ଭ୍ରମ ପ୍ରମାଦାଦିର ରହିତ୍ୟ ତହିଁର ଅଙ୍ଗ ସ୍ୱରୂପ । ପୁଣି ଦୟା, କ୍ଷମା, ଏବଂ ସ୍ୱାଧୀନତାହିଁ ତାହାର ସୌନ୍ଦର୍ଯ୍ୟ । ଏ ସବୁ ଅଭାବରେ ବିଚାର ବ୍ୟବସ୍ଥାଦି ନିଷ୍ପ୍ରାଣ, ଅଙ୍ଗଶୂନ୍ୟ ଏବଂ ବିଶ୍ରୀବିଶିଷ୍ଟ ଅଟେ । ଆଜକାଲି ଅର୍ଥର ପ୍ରଲୋଭନ ଏବଂ ଅବୈଧ ଗୁପ୍ତ ସ୍ୱାର୍ଥଯୁକ୍ତ କାର୍ଯ୍ୟସିଦ୍ଧି ବିଚାର ବ୍ୟବସ୍ଥାଦିକୁ ପ୍ରାଣଶୂନ୍ୟ, ଅଙ୍ଗଶୂନ୍ୟ ଓ ଶ୍ରୀଶୂନ୍ୟ କରିଅଛି । ଗାଁ ମୁଣ୍ଡ ମଶାଣିର ବରଗଛରେ ଗୋସାଣୀ ଥିବା ପ୍ରବାଦ ରଟିଥିଲେ । କେତେକ ଅଜ୍ଞ ଲୋକ ଲାଭ କାମନାରେ ସେହି ବରଗଛମୂଳରେ ଗୋସାଣୀ ଉଦ୍ଦେଶ୍ୟରେ ନାନାବିଧ ପୂଜା ଉପଚାର ନେଇ ପୂଜା କରି ନାନା ପ୍ରକାର ଆସ୍ଫାଳନ କରନ୍ତି । ମାତ୍ର ଗୋସାଣୀ କିଏ ଦେଖିଥାଏ କି ନା ଅଥଚ ଫଳ କଅଣ ମିଳେ କି ନା, ତାହା କେହି ବୁଝନ୍ତି ନାହିଁ । ସେହିପରି ଆଜକାଲି ନାମରଟନାହିଁ ସାର । ଆଡ଼ମ୍ବର ପୂଜା ଉପଚାର,

ପାଦ୍ୟ, ଅର୍ଘ୍ୟ, ଧୂପ, ଦୀପ ଓ ନୈବେଦ୍ୟାଦି ସାର । ଏତଦ୍ଦ୍ୱାରା ଅର୍ଥବ୍ୟୟ ଓ ଦୁଃଖ-କଷ୍ଟ ଲଭନ୍ତି ସାର, ଆଉ କିଛି ନାହିଁ । ଆଡ଼ମ୍ବର ସମାରୋହ ଦର୍ଶନରେ ଏସବୁ ସାର ବିଜଡ଼ିତ ନ ଥିବାରୁ ତାହା ସଂସାର ବସ୍ତୁ ହୋଇଅଛି । ମନୁଷ୍ୟ ଈଶ୍ୱରର ବ୍ୟବସ୍ଥା-ପଦ୍ଧତିର ପବିତ୍ର ନାମ ଉପରେ ବିଶ୍ୱାସ ଓ ନିର୍ଭର କରି ପ୍ରକୃତ ଫଳଲାଭ କାମନାରେ ବହୁ ଅର୍ଥ ଅନର୍ଥକ ବ୍ୟୟ କରଣାନନ୍ତର ଶେଷ ଫଳ ଗୋଟିଏ ସମାରୋହପୂର୍ଣ୍ଣ ସୁଆଙ୍ଗ ଦେଖାଣିରେ ପରିଣତ ବା ପରିବର୍ତ୍ତିତ ହେଉଅଛି । ପ୍ରବୃତ୍ତିର ଧର୍ମାନୁସାରେ ଯେଆଡ଼େ ପ୍ରବର୍ତ୍ତି ଯିବାକୁ ହୁଏ, ସେ ଆଡ଼ର ଦୋଷାଦୋଷ ହଠାତ୍ ଧରାପଡ଼ି ପାରେ ନାହିଁ । ପରେ ସେହି ଦୋଷ ଦୁଃଖ କଷ୍ଟ ରୂପରେ ଅସହ୍ୟ ଯନ୍ତ୍ରଣାପ୍ରଦ ହେବାରୁ ଚୈତନ୍ୟ ଉଦୟ ହୋଇଥାଏ । ଏଥିରେ ପୁଣି କେହି କେହି ଅଦୃଷ୍ଟ ଉପରେ କେହି କେହି ବା ଅନୁସନ୍ଧାନ ଲବ୍ଧ ଅନ୍ୟାନ୍ୟ କାରଣ ଉପରେ ତଦ୍ରୂପ ଦୁଃଖମୟ ଫଳକୁ ଚାପିଦେଇ ନିଜ ପ୍ରବୃତ୍ତିର ଦୋଷ ଧରି ସ୍ଥିର କରିବାକୁ ଅକ୍ଷମ ହୁଅନ୍ତି । ଏହିପରି ଏ ସଂସାର ପ୍ରବୃତ୍ତି ପ୍ରବାହରେ ଭାସମାନ ହୋଇ ତାହାର ସ୍ରୋତର ଗତିରୁ ଅନ୍ୟ ବିପରୀତ ଆଡ଼କୁ ଫେରିବା ବଡ଼ କଷ୍ଟକର ଅଟେ ।

ଈଶ୍ୱରର ବ୍ୟବସ୍ଥା ପଦ୍ଧତିର ଏ ତ ଗଲା ସାଧାରଣ କଥା । ଏହାପରେ ଏଥିରେ ପୁଣି ବିଶେଷ ବିଶେଷ ପ୍ରକାରର ବିକାର ଆକାରବଦ୍ଧ ଅଛି । ସ୍ୱାର୍ଥାନ୍ଧତା ସବୁଆଡ଼େ ପଥପ୍ରଦର୍ଶକ ହୋଇଅଛି । ତଦନୁସାରେ ଅର୍ଥଦାତାର ଅର୍ଥଦ୍ୱାରା ଅର୍ଥଗ୍ରାହୀ ତାର ଈଶ୍ୱରର ବ୍ୟବସ୍ଥାଦିର ପରିଚାଳନା କରୁଅଛି । ଯଦି ଅର୍ଥଦାତାର ସ୍ୱକୀୟ ଅର୍ଥସାଧନ ସମ୍ବନ୍ଧେ ଈଶ୍ୱରର ବ୍ୟବସ୍ଥାଦିର ପ୍ରୟୋଜନ ହେଲା ତେବେ ତାହା ଅର୍ଥଦାତାର ପଦାଙ୍କାନୁସରଣକାରୀ ତଦନୁଗତ ତନ୍ମୟ ଅଙ୍ଗୁଳି ନିର୍ଦ୍ଦେଶଦ୍ୱାରା ପରିଚାଳିତ ଦାସ ବା ଦାସାନୁଦାସ ହସ୍ତରେ ଶୃଙ୍ଖଳାବଦ୍ଧ ମୁଷ୍ଟି ଭିତରେ ଅର୍ପିତ ହେଲା । ତେବେ ତଦ୍ରୂପ ଈଶ୍ୱରର ବ୍ୟବସ୍ଥା ଯେଉଁ ଆକାର ପ୍ରକାରରେ ଗଣିତ ହେବା ଉଚିତ, ତାହା ସହଜରେ ଅନୁମେୟ ବା ସର୍ବ ପ୍ରକାରେ ସୁଦୃଢ଼ ସୁନିଶ୍ଚିତ ଅଟେ । ତେବେ ଏଥିରେ ଦୁଃଖ କରି ମୁଣ୍ଡ ପିଟିଲେ ବା ଆତ୍ମହତ୍ୟା ପର୍ଯ୍ୟନ୍ତ କଲେ ମଧ୍ୟ କିଛି ଲାଭ ନାହିଁ । ଏଥିରୁ କଳି ତାମସ ପ୍ରବୃତ୍ତି ପ୍ରବାହର ବେଗ କେଡ଼େ ପ୍ରବଳତର ଗତିକୁ ପ୍ରାପ୍ତ ହେଲାଣି, ଏତିକି ମାତ୍ର ଠଉରାଇ ନେଲେ ଯଥେଷ୍ଟ ହେବ । ଏବେ ପ୍ରକୃତରେ ଈଶ୍ୱରର ବ୍ୟବସ୍ଥା ପଦ୍ଧତି ଜିନିଷଟି କଅଣ ଦେଖାଯାଉ । ଦେହ ସକାଶେ ମନ ପ୍ରାଣ, ଜୀବନର ମଙ୍ଗଳ ସକାଶେ ବିଧି-ବ୍ୟବସ୍ଥାଦିର ସୃଷ୍ଟି । ଦେହରେ ବହୁତ ଅଭାବ ବିଜଡ଼ିତ ଅଛି । ସେ ସବୁ କ୍ଷୁଧା, ପିପାସା, ଅଜ୍ଞାନ, ଅବିଦ୍ୟାଦି ଆକାରରେ ଦେହ ସଙ୍ଗେ ସଙ୍ଗେ ନିବଦ୍ଧ ରହିଅଛି । ଏସବୁ ଅଭାବ ପୂରଣ କରିବା ପାଇଁ ସଙ୍ଗେ ସଙ୍ଗେ ପ୍ରକୃତି ଦେବୀର ପ୍ରସାଦ ସ୍ୱରୂପ ଏହିପରି ଦୃଶ୍ୟମାନ ବାହ୍ୟଜଗତ ଓ ଅନ୍ତର୍ଜଗତ ଅଖଣ୍ଡ ଦଣ୍ଡାୟମାନ ରହିଅଛି । ଏଥିରୁ ଭୋଗ ଓ ଜ୍ଞାନ ସମ୍ବନ୍ଧୀୟ ସବୁ ଅଭାବ ମୋଚନ ହେଉଅଛି, ଯାହାଦ୍ୱାରା

ତାହାର ନାମ ବିଧି ବ୍ୟବସ୍ଥା ପଦ୍ଧତି । ପ୍ରତି ଲୋକ ଏହି ବ୍ୟବସ୍ଥାଦିର ପ୍ରଣେତା ହେବାକୁ ଅନଧିକାରୀ ଓ ଅନୁପଯୁକ୍ତ । ସେହି ହେତୁ ଏହା କହିବାକୁ ଗଲେ ଭଗବତ୍‌ଦତ୍ତ ପ୍ରତିଭା ବା ମହତ୍ ଜ୍ଞାନଦ୍ୱାରା ନିରୂପିତ ହେବାର ବିଷୟ । ଏହି ସଂସାର ଜ୍ଞାନ, ଧର୍ମ, ନ୍ୟାୟ, ସତ୍ୟ, ଦୟା, କ୍ଷମାଦି ବହୁ ବହୁ ସଦ୍‌ଗୁଣ ଉପରେ ପ୍ରତିଷ୍ଠିତ ଏବଂ ସେହି ସେହି ସଦ୍‌ଗୁଣ ପ୍ରକୃତିରୁ ଶିକ୍ଷା ହୁଏ । ଏହି ସଦ୍‌ଗୁଣମାନ ସଂସାର ଓ ସଂସାରସ୍ଥ ପ୍ରାଣୀମାନଙ୍କର ରକ୍ଷଣ, ପାଳନ ଓ ମଙ୍ଗଳ ନିମିତ୍ତ ପ୍ରକୃତି ଧାରଣ କରି ମନୁଷ୍ୟକୁ ତାହାସବୁ ଗ୍ରହଣ କରିବାକୁ ଅପ୍ରାର୍ଥିତ ଭାବେ ଯାଚୁଅଛି । ସମସ୍ତେ ତାହା ବୁଝି ପାରନ୍ତି ନାହିଁ । କୌଣସି କୌଣସି ସତ୍ତ୍ୱଗୁଣାତ୍ମକ ପ୍ରତିଭାଶାଳୀ ମହାପୁରୁଷ ଈଶ୍ୱର କୃପାରୁ ତାହା ବୁଝିବାକୁ କ୍ଷମ ହୋଇ ବିଧିବ୍ୟବସ୍ଥାଦି ପ୍ରଣୟନ କରନ୍ତି । ବିଧିବ୍ୟବସ୍ଥାନୁମୋଦିତ ବିଷୟର ପଦ୍ଧତ୍ୟାଦି ସାକ୍ଷାତ ଭାବରେ ଈଶ୍ୱର ଆଜ୍ଞା ବା ତହିଁର ପ୍ରତିଲିପି କହିଲେ ଚଳେ । ଏହା ଯେପରି ଜ୍ଞାନ, ଧର୍ମ, ନ୍ୟାୟ, ସତ୍ୟ, ଦୟା, କ୍ଷମା ସର୍ବପ୍ରାଣୀର ସମାନ ଉପକାର ସାଧନ, ପ୍ରେମ ଓ ଶ୍ରଦ୍ଧାଦି ସଦ୍‌ଗୁଣାବଳୀରେ ବିଭୂଷିତ ଉପଦେଶରେ ପରିପୂର୍ଣ୍ଣ, ସଂସାର ମଧ୍ୟ ସେହିପରି-ଜ୍ଞାନଧର୍ମାଦି ସଦ୍‌ଗୁଣାବଳୀରେ ପ୍ରତିଷ୍ଠିତ ହୋଇ ମନୁଷ୍ୟକୁ ସେହିସବୁ ସତ୍ୟ, ଜ୍ଞାନ ଓ ଧର୍ମାଦି ସଦ୍‌ଗୁଣାଦିରେ ଅଳଂକୃତ ହେବାକୁ ସବୁବେଳେ ଇଙ୍ଗିତ କରୁଅଛି । ଏହା ସବୁ ଜାଣିବାକୁ, ପ୍ରତିପାଳନ କରିବାକୁ ମନୁଷ୍ୟ ଆତ୍ମତଃ, ସ୍ୱଭାବତଃ, ଜନ୍ମତଃ ଦାୟୀ ଅଟେ । ଏହାର ଅଭାବରେ ମନୁଷ୍ୟ ପଶୁଠାରୁ ହୀନ ଅଟେ । ଏହି ସତ୍ୟ ଧର୍ମ ସନାତନ ବିଧିବ୍ୟବସ୍ଥାଦି ବହୁକାଳ ସଂସାରରେ ପ୍ରଚଳିତ ହୋଇ ସଂସାରକୁ ଅମୃତମୟ, ମଙ୍ଗଳମୟ ଓ ପବିତ୍ରମୟ କରି ରଖିଥାଏ । ମାତ୍ର ଚତୁର୍ଥଯୁଗର ଚତୁର୍ଥାବସ୍ଥାରେ ସେ ସବୁର ବ୍ୟତିକ୍ରମ ଘଟେ । ଏ ସମ୍ବନ୍ଧେ ଆଗରୁ ଆଲୋଚନା କରାଯାଇଅଛି । ଆଜିକାଲି ବିରାଡ଼ି କହି ବୁଲୁଅଛି, ସେ ନିରାମିଷାହାରୀ, ଗଙ୍ଗାସ୍ନାନକାରୀ, ଚାନ୍ଦ୍ରାୟଣ ବ୍ରତାବୃତୀ, ସଦାପରୋପକାରୀ, ଅଥଚ ଗୃହଶୂନ୍ୟ ଅଟେ । ଏହି ବ୍ରତ ପାଳନ କରି ସେ ପରୋପକାରାର୍ଥ ଦେଶବିଦେଶ ଭ୍ରମଣ କରୁଅଛି । ଏଥିରେ ସରଳପ୍ରାଣ ଓ ନିରୀହ ପକ୍ଷୀବଂଶ ବିମୋହିତ ହେବା ବିଚିତ୍ର ନୁହେ । ଶେଷକୁ ବିରାଡ଼ିକୁ ଗୃହରେ ସ୍ଥାନ ଦେଇ ଆତିଥ୍ୟ କରୁ କରୁ ପକ୍ଷୀବଂଶ ନିର୍ମୂଳ । ଏହି ଆଦର୍ଶରୁ ଦେଖାଯାଏ ମନୁଷ୍ୟ ବିରାଡ଼-ବୈଷ୍ଣବ ବେଶ ପର୍ଯ୍ୟନ୍ତ ସାଜି ଆଜି ପୃଥିବୀରେ ବିଚରଣ କରୁଅଛି । କେବଳ ସ୍ୱାର୍ଥସିଦ୍ଧି ସବୁ କର୍ମର, ସବୁ ଧର୍ମର ଓ ସବୁ କାର୍ଯ୍ୟର ଏମନ୍ତ କି ଶିକ୍ଷା ଦୀକ୍ଷା ଓ ବିଧିବ୍ୟବସ୍ଥାଦିର ଭିତରେ ଗୁପ୍ତଭାବରେ ଛପି ଛକି ରହି ନାନା ପ୍ରକାର କୂଟ କପଟ, ଛନ୍ଦ, ପ୍ରବଞ୍ଚନା, ବିଶ୍ୱାସଘାତକତା, କୃତ୍ରିମ ମିଥ୍ୟା, ଜାଲ ଫିଶାଦ୍, ଫରେବ୍ ଜୁଆଚୋରି, ଚୌର୍ଯ୍ୟ, ଦମ୍ଭ, ଗର୍ବ, ଭୟ ପ୍ରଦର୍ଶନ, ତାଡ଼ନ, ପୀଡ଼ନ, ବଳ ଓ ଦର୍ପ ଇତ୍ୟାଦି ସବୁ ପ୍ରକାରର ସମ୍ପୃତାଦିକୁ ଅସ୍ତ୍ର-ଶସ୍ତ୍ର ରୂପେ ବ୍ୟବହାର କରି କଳି ତାମସୀ ପ୍ରବୃତ୍ତି ପ୍ରବାହର ଭୀଷଣ ଦୌଡ଼ାଟିରେ ଜଗତରେ ଚଳାଇଅଛି । ଏହାଦ୍ୱାରା ସବୁ ବିକାରଗ୍ରସ୍ତ ହୋଇଅଛି ।

## ୧୧୪ ପାଠ—ଦୁଃଖରୁ ଚୈତନ୍ୟୋଦୟ

ଏହା ସଂସାରର ଏକ ସ୍ୱଭାବସିଦ୍ଧ ନିୟମ ଯେ, ବାଳକ ଥରେ କଷ୍ଟ ପଡ଼ିଦେଲେ ତାହା ମନେ ରହିପାଏ ନାହିଁ । ଚୋର ଥରେ ଅଧେ ଚୋରିରେ ଧରା ପଡ଼ିପାରେ ନାହିଁ । ଅର୍ଥାତ୍ ସବୁ କଥା ପୂର୍ଣ୍ଣତାକୁ ପ୍ରାପ୍ତ ହେଲେ ପ୍ରକାଶ ହୋଇପଡ଼େ । ଏହି ଅବ୍ୟବସ୍ଥା ଓ ଅବିଚାର ପ୍ରଭୃତି କଷ୍ଟଦାୟକ କଳି ତାମସ ପ୍ରବୃତ୍ତିର ଅନ୍ଧକାରାବରଣରେ ଢାଙ୍କି ହୋଇ ରହିଥିଲା । ବାରମ୍ବାର ପୁନଃ ପୁନଃ ସବୁଦିନ ସବୁବେଳେ ସବୁ ମାସରେ ସବୁ ବର୍ଷରେ ଅନୁଷ୍ଠିତ ହୋଇ ହୋଇ ଅତି ପୂର୍ଣ୍ଣାକାର ଧାରଣ କରିବାରୁ ତାହା ଭଲରୂପେ ଶତାଧିକ ବର୍ଷାନ୍ତେ ନିଜାକାରରେ ପ୍ରକଟିତ ହୋଇ ସର୍ବସାଧାରଣର ନୟନଗୋଚର ଓ ଜ୍ଞାନଗୋଚର ହୋଇ ପଡ଼ିଲାଣି । ଏଥିରୁ ପ୍ରାଣୀବର୍ଗର ମନୋବେଦନା, ହୃଦୟ ଦୁଃଖ ଓ ଦୈହିକ କଷ୍ଟାଦି ମଧ୍ୟ ପୁଞ୍ଜୀଭୂତ ହୋଇ ଅଶେଷ ପୂର୍ଣ୍ଣାକାରରେ ପରିଣତ ହେଲାଣି । ଏହି ଉଭୟ ଦିଗର ଉଭୟ ପ୍ରକାରର ପୂର୍ଣ୍ଣତା ମହାପୂର୍ଣ୍ଣାକାରରେ ଦେଖାଯାଇ ପ୍ରକୃତିର ସୂକ୍ଷ୍ମ, ସ୍ଥୂଳ ଉଭୟ ସ୍ତରରେ ଭେଦ କରି ପରମେଶ୍ୱରଙ୍କ ଆଧ୍ୟାତ୍ମିକ ରାଜ୍ୟରେ ସେହି ଚିନ୍ମୟ ପୀଠରେ ଧର୍ମ, ଜ୍ଞାନ, ରତ୍ନାଦିଖଚିତ ମହାସିଂହାସନ ତଳରେ ଉପସ୍ଥିତ ହେଲାଣି । ଏଥିରେ ଧର୍ମ, ପବିତ୍ର ରତ୍ନ ସିଂହାସନ ଦୋଳାୟମାନ ସିଂହାସନାସୀନ ଯୋଗେଶ୍ୱର ହରି ପରମେଶ୍ୱରଙ୍କର ଯୋଗନିଦ୍ରାଳସ୍ୟ ଭଗ୍ନ ହେଲାଣି । ଏହି ବାର୍ତ୍ତା ସଂସାରରେ ସବୁଆଡ଼େ ପ୍ରଚରିତ ହୋଇ ନିରୀହ, ସରଳ ମାନବବର୍ଗଙ୍କୁ ଜାଗରିତ କରାଇ ଦେବାର ଲକ୍ଷଣ ଦେଖାଯାଇ ସାରିଲାଣି ।

ସଂସାରରେ ଆଜିକାଲି ସର୍ବତ୍ର ଆଧୁନିକ ଶିକ୍ଷା, ଦୀକ୍ଷା ଏବଂ ବିଚାରର ବ୍ୟବସ୍ଥାଦି କେବଳ ସ୍ୱାର୍ଥସାଧନମୂଳକ । ଦାତା ବା କର୍ତ୍ତା, ଗ୍ରହୀତା ବା କୃତ ସମସ୍ତେ ଏହି ଅର୍ଥାନ୍ଧ ଦୃଷ୍ଟିରେ ସଂସାରକୁ ଦେଖୁଅଛନ୍ତି ଓ ଯାହା କିଛି କରିବାର ତାହା କରୁଅଛନ୍ତି । ଏହି ବିଶ୍ୱ ସର୍ବସ୍ୱାର୍ଥଗ୍ରାସୀ ବ୍ୟବସ୍ଥା ଅବସ୍ଥାରୁ ବଳି ହୀନତମ ଅଟେ । ଏହା ବ୍ୟବସ୍ଥାପକ ସମ୍ପ୍ରଦାୟର ଏକଦେଶିଆ ବା ଏକଗୁଟିଆ ସ୍ୱାର୍ଥସିଦ୍ଧିଦାୟକ ଅଟେ । ଏହାର ପରିଚାଳକ ମୁଷ୍ଟିମେୟ ନିମ୍ନସୋପାନାଧିକାରୀ ଅପଦେବତାମାନେ ଆତ୍ମମୃରିତାଦି ଚରିତାର୍ଥକରଣୋପଯୋଗୀ ଯଥାପରିମିତ ଉଚ୍ଛିଷ୍ଟ ହବିର୍ଭାଗ ପ୍ରାପ୍ତ ହୋଇ ପରମାହ୍ଲାଦରେ ଅହର୍ନିଶ କର୍ତ୍ତବ୍ୟସାଧନ-ପରାୟଣ ଥାଇ କାଳାତିପାତ କରୁଅଛନ୍ତି । ଏହିପରି ଗୁପ୍ତମନ୍ତ୍ରପୂତ ସୂତ୍ରରେ ଛଳ, ବଳ, କୌଶଳାଦି ସାହାଯ୍ୟରେ ଏତଦ୍ରୂପ ଅବ୍ୟବସ୍ଥା ଓ ବ୍ୟବସ୍ଥାର ଦୋହାଇ ଦେଇ ନିର୍ଲଜ୍ଜ ଭାବରେ ପାପଜୀବନ ଧାରଣ କରି ପରିକ୍ଲିଷ୍ଟ ହୋଇ ପଡ଼ି ରହିଅଛି । ଯାହା ସାଧାରଣ ଭାବରେ ସର୍ବସାଧାରଣ ମନୁଷ୍ୟ ଜାତିର ସର୍ବକାଳ ସକାଶେ ମଙ୍ଗଳମୟ ତାହା ହିଁ ବ୍ୟବସ୍ଥା । ମାତ୍ର ଆଜିକାଲିର ଅବ୍ୟବସ୍ଥାତ୍ମକ ବ୍ୟବସ୍ଥା 'ଶକୁନି' ପରି ସର୍ବସଂସାରର ଅନ୍ନଜଳସଂସ୍ଥାପକ ପଦାର୍ଥ ସମଷ୍ଟିକୁ ତାହାର ନିଜାୟତ୍ତାଧୀନ ରଖିବାର ଚେଷ୍ଟାରେ ସର୍ବତୋନନ୍ତରୂପ ଏବଂ ଅନନ୍ତବାହୂଦରବକ୍ତ୍ରନେତ୍ରବିଶିଷ୍ଟ ହୋଇ ବନ, ଜଙ୍ଗଲ,

ପର୍ବତ ଏବଂ ଜଳସ୍ଥଳଆକାଶାଦି ଉଦରସ୍ଥ କରିବାର ଦୁଃସାହସ ଓ ଦୁରାକାଂକ୍ଷା ବିସ୍ତାର କରିଅଛି । ସର୍ବଜଗତର ସମସ୍ତଙ୍କର ପୁଞ୍ଜିପାଣ୍ଠିକୁ ନିଜ ଖାତାରେ ଲିପିବଦ୍ଧ କରି ସବୁ-ବେଳେ ସେହି ଖାତାଟି ଉପରେ ଏକାଗ୍ର ଦୃଷ୍ଟି ସ୍ଥାପନ ପୂର୍ବକ ଗୁପ୍ତମନ୍ତ୍ରଣା ଭିତରେ ଭିତରେ ଘୁଣ୍ଡୁ ଘୁଣ୍ଡୁ କରୁଅଛି । କି ସୂତ୍ରେ, କିପରି, କେଉଁଆଡ଼ୁ ଆକର୍ଷଣ କରିଗଲେ ଅଜଗର ନିଜ ସ୍ଥାନରେ ଥାଇ ଯଥେଚ୍ଛା ଉଦର ପୂରଣ କରିପାରିବ, ଏହାର ନାମ ଉକ୍ତ ଅବ୍ୟବସ୍ଥାମୟ ବ୍ୟବସ୍ଥାର ଚତୁରତା । ଏ ଚତୁରତାର ମୂଳରେ ନ୍ୟାୟ, ଧର୍ମ, ଜ୍ଞାନ, ସତ୍ୟ ଓ ପରୋପକାରାଦିର ସତ୍ତା ନ ଥିବାରୁ ଏହି ବ୍ୟବସ୍ଥାଟିକୁ ମୂର୍ତ୍ତିମାନ ଭୟଭ୍ରମାଦି ବିଗ୍ରହ ରୂପରେ ଓ କରାଳ କାଳ ଦୂତ ଆକାରରେ ପ୍ରକାଶ କରି ସଂସାରକୁ ସର୍ବଦା ସନ୍ତପ୍ତ ଓ ଉଦ୍‌ବେଳିତ କରି ରଖିଅଛି । ଏହି ବ୍ୟବସ୍ଥାବିଧି ବା ନିୟମ-ସମ୍ବନ୍ଧୀୟ ମାହା ଟିକିଏ ପଦାକୁ ବାହାରିଲେ ତାହା ଦେଖିବା, ଶୁଣିବା କିମ୍ବା ଜାଣିବା ମାତ୍ରେ ଲୋକ ଗ୍ଲାନିଆଁ ହୋଇ ଯାଉଛନ୍ତି । କେଜାଣି ଏଥିରେ କଅଣ ଅର୍ଥକ୍ଷତି କିମ୍ବା ମାନହାନି ଘଟିବ । କେତେ ଗଧପାଦଧରା, କେତେ କେତେ ରାହୁ କେତୁ ଦର୍ଶନ, କେତେ କେତେ ପ୍ରକାରର ଭେଟି ବା ଉପଢୌକନ ଓ କେତେ କେତେ ଲାଞ୍ଚ ବା ଉତ୍କୋଚ ଦେବ, କେଉଁଠାରେ ଚାଲିବ, କେତେ ହାଇରାଣ-ହରକତ ହେବ, କେତେ ଅନାହାର ଉନିଦ୍ର ରହିବାକୁ ହେବ, କେତେ କେଉଁଆଡ଼େ ଦଉଡ଼ାଦଉଡ଼ି କରିବ, କେତେ ଆଡ଼େ କଅଣ ଭୋଗିବାକୁ ହେବ ତାହାର ସୀମା ନାହିଁ ।

'କେରାଣି' ଗୁଡ଼ି 'ବାଲିଆ' ଧରିଲାପରି, ଏ ବ୍ୟବସ୍ଥାରେ କେରାଣି ବ୍ୟୟ ବହୁତ ହେଉଅଛି । ତାହା ମୁଦ୍ରାଧିକ୍ୟ ବଳରେ ଏ ବ୍ୟବସ୍ଥାକୁ ଅବସ୍ଥିତ, ଜୀବିତ ରଖିଅଛି । ଯେତେବେଳେ ଏଥିରେ କାହାରିକୁ କିଛି ଆନ୍ତରିକ ଶ୍ରଦ୍ଧା ଦେଖାଇବାକୁ ଓ ଭକ୍ତି, ପ୍ରୀତି ଦେଖାଇବାକୁ ପଡ଼ୁନାହିଁ, ଯେତେବେଳେ ଏ ସବୁ ବିପରୀତ ଭାବ ଅର୍ଥବାହୁଲ୍ୟ ଗଣ୍ଠି ଶୈଥିଲ୍ୟ ହେଲେ ଏ ବ୍ୟବସ୍ଥାରେ ପେଟ ଭିତର ମଇଳାଯାକ ସବୁ ପଦାକୁ ବାହାରି ପଡ଼ି ସଂସାରଯାକ ଦୁର୍ଗନ୍ଧରେ ପୂର୍ଣ୍ଣ ହୋଇଯିବ । ସୁତରାଂ ଏହା ନିକଟବର୍ତ୍ତୀ ଦିନ ପୂର୍ବରୁ ଏ ପାପପୂରିତ ଉଦର ପରିଷ୍କାର ହୋଇଗଲେ କିଛି ଭଲ ହୁଅନ୍ତା ନାହିଁ କି ?

ପରମେଶ୍ୱରନିର୍ମିତ ଏହି ସଂସାରକୁ କ୍ଷୁଦ୍ର ମାନବ ଏତେଗୁଡ଼ାଏ ମୋର କରି ଏକବସ୍ତିଆ ଭାବରେ ପତିତ ହୋଇ ସଂସାରଯାକ ଦୁର୍ଗନ୍ଧରେ ପୂର୍ଣ୍ଣ ହୋଇଯିବ ବୋଲି ତାହାର ମନରେ ଲେଶମାତ୍ର ଆଶଙ୍କା ହୁଏ ନାହିଁ । ମୋତେ କିଏ ଗଢ଼ିଲା ଓ କି ନିମିତ୍ତ ସଂସାରକୁ ଆଣିଲା ଏବଂ ମୋ ଆସିବା ପୂର୍ବରୁ ଏ ସଂସାରକୁ ଆଗରୁ ଗଢି ଥୋଇଅଛି, ପୁଣି ମାତୃସ୍ତନରେ ଆଗରୁ ସ୍ତନ୍ୟ ସାଇତି ରଖିଅଛି । ନ୍ୟାୟ, ଧର୍ମ, ଜ୍ଞାନ, ସତ୍ୟ, ଦୟା, କ୍ଷମା ସର୍ବପ୍ରାଣୀର ଉପକାର ବ୍ରତ ଆଦର୍ଶରେ ମନୁଷ୍ୟକୁ ଯେପରି ସଂସାରକୁ ସେହିପରି ଗଠନ କରିଅଛି । ଆଦ୍ୟରେ ସୁଖମୟ ଜନ୍ମ ଏବଂ ଶେଷରେ କରାଳ ଦୁଃଖମୟ

ମୃତ୍ୟୁକୁ ଚକ୍ଷୁଆଗରେ ଥୋଇ ଦେଇଅଛୁ । ମଧ୍ୟସମସ୍ତ ଝିକଟରେ ମନୁଷ୍ୟ ଜନ୍ମ ପୂର୍ବରୁ ଏବଂ ମରଣ ପରପାରର ଅନ୍ଧକାରକୁ ବିସ୍ମରଣ କରି ଜୁଳୁଜୁଳିଆ ପୋକର ଆଲୋକ-ଝିକିକ ମଧ୍ୟରେ କେଡ଼େ ମୋହଗ୍ରସ୍ତ ହୋଇଅଛୁ, ଏହା କଳି ତାମସ ପ୍ରବୃତ୍ତିର ଶେଷ ଧକ୍କା ।

ଆଜକାଲି ସଂସାରର ବ୍ୟବସ୍ଥା ପଦ୍ଧତି 'ବଣୁଆ କେଳା'ର ବ୍ୟବସ୍ଥାରୁ ନିକୃଷ୍ଟ । କସ୍ତାଧମ ଗୋଟିଏ ବା ଅଧିକ ବାଜ ବା ସଞ୍ଚାଣ ପକ୍ଷୀ ପୋଷିଥାଏ । ତାଙ୍କର ଦ୍ୱାରା ପକ୍ଷୀବଂଶକୁ ମରାଇ ନିର୍ମୂଳ କରେ, ଆଉ ସେହି ମୃତ ପକ୍ଷୀମାନଙ୍କ ମାଂସରେ କସ୍ତ ବଂଶ ହୃଷ୍ଟପୁଷ୍ଟ ହୋଇ ଘୁଷୁରି ପରି ହୋଇଅଛନ୍ତି ଓ ପରିତ୍ୟାଗଯୋଗ୍ୟ ହାଡ଼, ଗୋଡ଼ ଆଦିକୁ ରେକେଟି ରେକେଟି ଶେଷରେ ପୋଷିତ ସଞ୍ଚାଣମାନଙ୍କ ଦ୍ୱାରା ପୁଣି ଥରେ ରେକେଟାଇ ମନେ ମନେ ବଡ଼ ଗର୍ବଭାବ ବହନ କରନ୍ତି । ପୁଣି ଯେଉଁ ସ୍ୱଜାତିମାରୁ ପକ୍ଷୀମାନେ ପିଞ୍ଜରାବଦ୍ଧ ହୋଇ ସୁନ୍ଦର ପିଞ୍ଜରାବାସକୁ ଧାତୁନିର୍ମିତ ଆବାସ ବୋଲି ମନେ କରନ୍ତି ଓ ସ୍ୱଜାତିମାରୁ ନାମକୁ ପ୍ରଶଂସିତ ବୋଲି ଭାବି ନିଜର ସମାଜ-ଦ୍ରୋହିତାର-ପତାକାକୁ ପିଞ୍ଜରାବାସରେ ବାନ୍ଧି ମନ-ପବନରେ ଫରଫର ଉଡ଼ାନ୍ତି, ସେହିମାନଙ୍କର ଧନ, ବଳ, ଗର୍ବ, ମୋହ, ଜୀବନ, ଯୌବନ ଓ ଜନ୍ମକୁ ଧନ୍ୟ । ଏଣୁ ଏହି ସ୍ୱଜାତିମାରୁ, ସ୍ୱସମାଜଦ୍ରୋହୀ ପୋଷା ପକ୍ଷୀମାନଙ୍କୁ ବଚନାତୀତ ମହାପାପୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏମାନଙ୍କର ଶିକାର ମାଂସରେ, ଏପରି କି ହାଡ଼ରେ ଗୋଡ଼ରେ ମଧ୍ୟ ଭାଗ ନାହିଁ । ତେବେ ହେଲେ ଏମାନେ ମନରୁ ତିଳେ ମାତ୍ର ଗର୍ବ ଛାଡ଼ନ୍ତି ନାହିଁ । କଥାରେ କହନ୍ତି 'ଢୋଲ ଖାଏ ମାଡ଼, ହାଡ଼ ଖାଏ କଉଡ଼' । ସେହିପରି କସ୍ତ ଖାଇବ ମାଂସ, ଏମାନେ ଖାଇବେ ଯମଦ୍ୱାରରେ ମାଡ଼ । ତାହା ପରେ ଅଧିକ ବୈଚିତ୍ର୍ୟର ବିଷୟ ଏହି ଯେ, କସ୍ତ ଅହିଂସକ ବୋଲି ଯମଦ୍ୱାରେ ପ୍ରମାଣିତ ହୋଇପାରେ, ମାତ୍ର ଏମାନଙ୍କର ସେଥିରେ କୌଣସି ପ୍ରକାର ଉପାୟାନ୍ତର ନାହିଁ କି ଉଦ୍ଧାରର ମଧ୍ୟ ବାଟ ନାହିଁ । ଧନ୍ୟ ସ୍ୱଜାତିମାରୁ ସଞ୍ଚାଣ ପକ୍ଷୀ ! ତୁମ୍ଭଙ୍କୁ ଧନ୍ୟ ଓ ତୁମ୍ଭର ବୁଦ୍ଧି, କୌଶଳ, ଜନ୍ମ, ବଳ କୁଳକୁ ଧନ୍ୟ ! ଏହିପରି ଆଜକାଲିର ବ୍ୟବସ୍ଥାନୁସାରେ ମନୁଷ୍ୟକୁ ସ୍ୱଜାତି-ମାରୁ କରି ଶିକ୍ଷା, ଦୀକ୍ଷା ଓ ଅର୍ଥପ୍ରଲୋଭନ ଦ୍ୱାରା ତିଆରି କରାଯାଉଅଛି । ମନୁଷ୍ୟ ମଧ୍ୟ ତାହାହିଁ କରୁଅଛି ଓ ତଦ୍ରୂପ ପ୍ରସ୍ତୁତ ହେଉଅଛି । ଏତଦ୍ରୂପ ଅର୍ଥଲୋଭୀ ମନୁଷ୍ୟର ପାପ କିଏ କଳନା କରିପାରେ ? ସଂସାର ଯେତେବେଳେ ଏତେଦୂର ଅଧୋଗତି ଲାଭ କଲାଣି, ମନୁଷ୍ୟ, ମନୁଷ୍ୟକୁ ହିଂସ୍ରକ ଓ ଘାତକ ଜୀବରେ ପରିଣତ କରାଇ ସାରିଲାଣି । ଏହି ପରିଣତି ପୁଣି ଶିକ୍ଷା, ଦୀକ୍ଷା ଓ ବ୍ୟବସ୍ଥାସମ୍ମତ; ସେତେବେଳେ ଏଥିରୁ ନିଷ୍କୃତି ଲଭିବା ନିରୀହ ସରଳ ସମାଜ ପକ୍ଷରେ ବଡ଼ ସହଜ ନୁହେ । ଦେହସ୍ଥ ଏକ ଅଧମାଙ୍ଗ ଦ୍ୱାରା ପାପ ମୈଥୁନାଦି ସାଧିତ ହୋଇ ତାହାର ଫଳରେ ଯେପରି ସର୍ବାଙ୍ଗକୁ ବ୍ରଣମୟ ଓ ଦୁର୍ଗନ୍ଧ ହେବା ଦେଖାଯାଏ, ସେହିପରି ମାନବ ସମାଜର ଅଳ୍ପସଂଖ୍ୟକ ମହାଶୟ ଲୋଭୀଙ୍କ ପାପାଚରଣରେ ଆଜ ମାନବସମାଜ କ୍ଲିଷ୍ଟ ଓ ଦୁଃଖଭୋଗୀ ।

ମୋଟ ଉପରେ ଦେଖିବାକୁ ଗଲେ ଅଭାବ ହିଁ ସାଧାରଣ ମନୁଷ୍ୟ ସମାଜକୁ ଅଧୀନସ୍ଥ ପାଦତଳ ଓ ପଦଦଳିତ ଦାସ ବା ଦାସାନୁଦାସ ରୂପେ ଆୟତ୍ତ କରି ରଖି-ଅଛି । ଏହି ଅଭାବପ୍ରସୂତ ଭୟ ଏତେ ପ୍ରବଳ ଯେ ଅଭାବ ପରିବର୍ତ୍ତେ ଯାହାର ଭାବ ସଙ୍ଘଟିତ ହୋଇଅଛି, ସେ ସେହି ଭାବକୁ ବହୁ ପରିମିତ ଦୀର୍ଘାକାରରେ ବଢ଼ାଇ ଚିରକାଳ ଦୃଢ଼ ଭାବେ ସ୍ଥାପନ କରି ରଖିଥିବାର ଯତ୍ନଶୀଳ ଓ ପ୍ରୟାସୀ ହେଉଅଛି । ଅଭାବ ସ୍ଥାନରେ ତାହା ମୋଚନର ଇଚ୍ଛା ତ ସ୍ୱାଭାବିକ । ତେବେ ଏହି ଅଭାବ ସଂସାରର ଚକ୍ର-ସ୍ୱରୂପ ହୋଇ ସଂସାରକୁ ଚଳାଉଅଛି । ଏହି ଚଳନର ନାମ ହିଁ ସଂସାରଯାତ୍ରା । ଏହାର ଅଭାବରେ ସଂସାର ନିଶ୍ଚଳ ଓ କ୍ରୀଡ଼ାଶୂନ୍ୟ ପୁତ୍ତଳିକା ପରି ଜଡ଼ାକାରରେ ରହିଥାନ୍ତା । ଏହିରୂପେ ଅଭାବ ଏବଂ ଭାବ ଉଭୟ ହିଁ ସଂସାରର କ୍ରୀଡ଼ା ଉଦ୍ଦୀପକ । ଏକ ଆଡ଼େ ମନୁଷ୍ୟ, ଅଭାବମୟ ବିଗ୍ରହାକାରରେ ପ୍ରକୃତିରାଜ୍ୟରେ ଅଭ୍ୟାଗତ ସ୍ୱରୂପ ଯୋଡ଼କର ହୋଇ ଉପସ୍ଥିତ ହୋଇଅଛି । ଅନ୍ୟଆଡ଼େ ପରମେଶ୍ୱରଙ୍କର ସକରୁଣ ଇଚ୍ଛାରୂପ ଇଚ୍ଛାମୟୀ ପ୍ରକୃତି ଦେବୀ ସେହି ଅଭାବ ପୂରଣ କରିବା ନିମିତ୍ତ ସେହି ଅସୀମ ଅହେତୁକ ଦୟାର ଆଦର୍ଶରେ ଏହି ବିଶ୍ୱ ସଂସାରକୁ ଅଖଣ୍ଡ ସ୍ତମ୍ଭାକାରରେ ଦଣ୍ଡାୟମାନ କରି ଦେଉଅଛି । ମନୁଷ୍ୟର ଅଭାବ ପୂରଣ କରିବା ନିମିତ୍ତ ଅଭାବ ସ୍ଥାନରେ ସଂସାରରୁ ଭାବାତ୍ମକ ଉପକରଣ ସାମଗ୍ରୀ ଆଣି ଖଞ୍ଜାଖଞ୍ଜି କରିଦେଇ ମନୁଷ୍ୟକୁ ସଂସାର ସଙ୍ଗେ ଏକାଧାରରେ ଏକଭାବମୟ କରାଇ ଦେବାର ବିଧାନ ବା ପ୍ରକ୍ରିୟା କୌଶଳର ନାମ ହିଁ ବ୍ୟବସ୍ଥା ବୋଲି ସର୍ବମତସ୍ୱୀକାର୍ଯ୍ୟ । ଏହି ଅଭାବର ଆକାର ଦେଖ । କ୍ଷୁଧା, ପିପାସା ରୂପ ଅଭାବ ପୂରଣ ପାଇଁ ଅନ୍ନ, ଜଳ, ବାସ ବସନାଦିରେ ଅଭାବ ମୋଚନାର୍ଥ ଗୃହ ଏବଂ ବସ୍ତ୍ରାଦି, ଅଜ୍ଞାନ ସ୍ଥାନରେ ଜ୍ଞାନ, ଅଧର୍ମ ସ୍ଥାନରେ ଧର୍ମ, ଅସଚ୍ଚରିତ୍ର ଜାଗାରେ ସଚ୍ଚରିତ୍ର ଗଠନ, ମୂର୍ଖତା ବଦଳରେ ସତ୍‌ଶିକ୍ଷା, ଅନ୍ୟାୟ ବଦଳରେ ନ୍ୟାୟ ରାଖି ଅଭାବର ହରଣ ଓ ଭାବର ପୂରଣ କରିବାକୁ ହୋଇଥାଏ । ଏହି ସ୍ଥାନରେ ବ୍ୟବସ୍ଥାର ନିମନ୍ତ୍ରଣ । ଏହି ବ୍ୟବସ୍ଥାକୁ ମାନବ ସମାଜ ସାଦରରେ ଓ ଭକ୍ତିଭାବରେ ଆହ୍ୱାନ କରୁଅଛି । ଆଜି ମଧ୍ୟ ଏହି ବ୍ୟବସ୍ଥା ପରମେଶ୍ୱରଦତ୍ତ ଏବଂ ପ୍ରକୃତି ଦ୍ୱାରା ମାନବୀୟ ଜଗତକୁ ପ୍ରେରିତ ହୋଇଅଛି । ସାଗରର ଅବିଶ୍ରାନ୍ତ ତେଉ ପରି ପୁନଃ ପୁନଃ ନୂତନ ନୂତନ ଜଳରେ ସମାଗତ ହେଉଅଛି । ଏହି ସ୍ୱର୍ଗୀୟ ପୂତତମ ଆଶୀର୍ବାଦକୁ ଯଦି ମନୁଷ୍ୟ କେହି ବା କେହି ସ୍ୱକୀୟ ସ୍ୱେଚ୍ଛାଚାରିତା, ଆତ୍ମମ୍ଭରିତା, ବିଳାସିତା, ଗର୍ବ ବା ମୋହ ବଳରେ ବିକାରଗ୍ରସ୍ତ କରି ନିରୀହ ସରଳପ୍ରାଣ ସମାଜକୁ ପ୍ରବଞ୍ଚନା ସହକାରେ ହେୟ କରି ଅଭାବରେ ବିଜଡ଼ିତ ରଖିବାକୁ ଏବଂ ନିଜ ନିଜର ଭାବକୁ ବହୁ ବହୁ ପରି-ମାଣରେ ବଢ଼ାଇବାକୁ ସଦା ସଚେଷ୍ଟ ରହେ, ତେବେ ଏହି ନିର୍ଦ୍ଦିଷ୍ଟ ସ୍ୱେଚ୍ଛାଚାରୀ ପାପୀ, ଦଳ ଯେ ଈଶ୍ୱରଙ୍କ ଏବଂ ପ୍ରକୃତିର ଆଦେଶ ପୂର୍ବ ଲଙ୍ଘନକାରୀ, ଅଥଚ ଯେପରି ମନୁଷ୍ୟ ଦୃଷ୍ଟିରେ ସେହିପରି ପରମେଶ୍ୱର, ପ୍ରକୃତି ଦୃଷ୍ଟିରେ ନିତାନ୍ତ ଅଭିଶପ୍ତ ଓ ଘୃଣିତ, ଏଥିରେ ସନ୍ଦେହ ନାହିଁ । ଏହାର ଫଳରେ ସଂସାରରେ ମତଭେଦ, ଅନୈକ୍ୟ, ହିଂସା,

ଦ୍ୱେଷ, ଛନ୍ଦ, କପଟ ପ୍ରଭୃତିକୁ ପ୍ରବୃତ୍ତିର ପ୍ରବାହ ଧାବମାନ ହେଉଅଛି, ଏଥିରେ ସାଧାରଣ ମନୁଷ୍ୟସମାଜ ସନ୍ତପ୍ତ । ମାତ୍ର ପରମେଶ୍ୱର ସୃଷ୍ଟିର ଉଦ୍ଦେଶ୍ୟ ଏହା କଦାଚ ନୁହେ । ଏ ଗୋଳମାଳ ନିରୀହ ସରଳପ୍ରାଣ ମନୁଷ୍ୟ ସମାଜଦ୍ୱାରା ଚେଷ୍ଟା ବଳରେ ନିବୃତ୍ତ ହୋଇ ନ ପାରିଲେ ବା ପାପୀସମାଜ ଆପଣା ଆପଣା ଦୋଷ, ପାପ, ଅପରାଧକୁ ସ୍ମରଣ କରି ଦୁଃଖପ୍ରକାଶ ସହିତ ଏହି ପାପର ପ୍ରାୟଶ୍ଚିତ୍ତ ନ କଲେ ପରମେଶ୍ୱର ଓ ପ୍ରକୃତି ତୁଷ୍ଟ ହୋଇ ରହିପାରନ୍ତି ନାହିଁ । ନଗଣ୍ୟ କୀଟାଣୁତୁଲ୍ୟ ମାନବର ଆଦେଶ ବା ଅଭିମତ ରକ୍ଷିତ ବା ପ୍ରତିପାଳିତ ନ ହେଲେ ସେ ମାନବ, ଭାଇ ପ୍ରତି ଅଗ୍ନିଶର୍ମା ହେଉଅଛି । ପରମେଶ୍ୱର ତାଙ୍କ ସୃଷ୍ଟ ସଂସାରରେ ଓ ପ୍ରାଣୀସମାଜରେ ତାଙ୍କ ଆଜ୍ଞା ବା ଅଭିମତ ପରିପାଳିତ ବା ସୁରକ୍ଷିତ ନ ହେଲେ ବା ସଂସାରସ୍ଥ ପବିତ୍ର ସାତ୍ତ୍ୱିକ କଳକାର ବ୍ୟତିକ୍ରମ ଘଟିଲେ ପାପ ସଂହାରକାରୀ ରୁଦ୍ର କୋପାନଳ ମୂର୍ତ୍ତି ଧାରଣ କରି ଅବତାର ବିଗ୍ରହା-କାରରେ ଏହି ସଂସାରସ୍ଥ ମାନବର ପାପକ୍ଷୟ ଓ ଧର୍ମସ୍ଥାପନ କରିବାକୁ ବୈକୁଣ୍ଠ ଧାମରୁ ଭୌତିକ ଜଗତରେ ବିରଜମାନ କରନ୍ତି । ଏହା ତାଙ୍କର ସ୍ୱଭାବସିଦ୍ଧ ଲୀଳା ।

ଏହି ଲୀଳା ଦ୍ୱାରା ଦୁଷ୍କୃତି ଓ ଦୁଷ୍କୃତର ବିନାଶ ଏବଂ ସାଧୁ, ସଜ୍ଜନ, ସରଳ, ନିରୀହ ମନୁଷ୍ୟର ପରିତ୍ରାଣ ଏବଂ ଏହି ଉଭୟବିଧ ଧର୍ମକ୍ରିୟା ସଂସାଧନ ଦ୍ୱାରା ଧର୍ମରକ୍ଷା ଓ ପାଳନାଦିର ବ୍ୟବସ୍ଥା ସଂଘଟିତ ଓ ସମ୍ପାଦିତ ହୁଏ । ରେ ପାପ ! ଏ ସଂସାର ତୋହର ନୁହେଁ ବା ତୋହର ଲୀଳାକ୍ଷେତ୍ର ନୁହେଁ, ଏହା ତୋହର ପ୍ରାୟଶ୍ଚିତ୍ତ ପୀଠ । ରେ ପାପ ! ତୋତେ ଶତ ଶତ ଧିକ୍‌କାର । ତହିଁରେ ହିରଣାକ୍ଷ, ରାବଣ ଓ କଂସ ପ୍ରଭୃତି ମହାପ୍ରତାପୀ ପ୍ରଭୃତିଙ୍କୁ ଧରି ମାଟି ପିତୁଳା ପରି କେତେ କେତେ ପ୍ରକାରରେ ତାମସୀ-ନୃତ୍ୟ କରି ଯାଇଅଛୁ, ତହିଁରେ ତୋହର କପଟ ଲାଞ୍ଛନା ସହିତ ବିନାଶ ଘଟିଅଛି, ତଥାପି ତୁହି ନିର୍ଲଜ ହୋଇ ସଂସାରରେ ବୁଲୁଅଛୁ । ଛାଗଳ, ଗର୍ଦ୍ଦଭ ଓ କୁକୁର ପରି କେତେବେଳେ ହେଲେ ତୋହର ସେହି ସ୍ୱଭାବସିଦ୍ଧ ଅଭ୍ୟସ୍ତ ଦୁଷ୍ଟ ବୃତ୍ତି ବଦଳୁନାହିଁ । ତୋତେ ବାରମ୍ବାର ଶତ ଶତ ଧିକ୍‌କାର । ରେ, ରେ, ରେ ପାପ ! ମହାପାପ ! ତୋତେ ପୁଣି ଶତ ଶତ ନମସ୍କାର । କେତେ କେତେ ଯୋଗୀ, ମୁନି, ଋଷି, ତପସ୍ୱୀ ଓ ଯୋଗୀନ୍ଦ୍ର ପ୍ରବରବୃନ୍ଦ ଶତ ଶତ କଳ୍ପ ଧ୍ୟାନ କରି ଯେଉଁ ପଦାରବିନ୍ଦ ଦର୍ଶନ ଲାଭ କରିବାକୁ ଅକ୍ଷମ, ସେହି ପବିତ୍ର ପଦଧୂଳି ପ୍ରଦାନ କରି ଏହି ଭୌତିକ ଜଗତକୁ କୃତାର୍ଥ କରିବା ନିମିତ୍ତ ସ୍ୱୟଂ ସେହି ଭଗବାନ ହରି ବୈକୁଣ୍ଠଧାମ ଲୀଳା ତ୍ୟାଗ କରି ତୋହରି ଯୋଗୁଁ ସିନା ଏ ମୃଣ୍ମୟ ଜଗତରେ ବାରମ୍ବାର ଅବତାର ଗ୍ରହଣ କରୁଅଛନ୍ତି ଓ ତୁ ସମୂଳେ ବିନଷ୍ଟ ହୋଇ ସୁଦ୍ଧା ସଂସାରକୁ ସୁଖୀ ଓ ପବିତ୍ର କରାଉଅଛୁ । ତୋ ପରି କିଏ ଅଛି କହ । ସଂସାରର ମଙ୍ଗଳ ନିମିତ୍ତ ନିଜର ବିନାଶ ବରଣ କରିବ, ଏପରି କିଏ ? ଏକା ତୁହି ସିନା ଆଖି ଆଗରେ ନାଚୁଅଛୁ । ତୋର କୃପା ନ ହେଲେ କରୁଣାନିଧାନ ହରି କି ସହଜରେ ବୈକୁଣ୍ଠ ଛାଡ଼ି ମର୍ତ୍ତ୍ୟଧାମକୁ ଆସନ୍ତେ ? ବୈକୁଣ୍ଠ କେଉଁଠାରେ ?

ମର୍ତ୍ତ୍ୟଧାମ ବା କାହିଁ ? ଏ ଉଭୟର ଦୂରତା ମାପି ମାପି ତ ଯୁଗ ଯୁଗ, କଳ୍ପ କଳ୍ପ ନଅଣ୍ଟ ହେବ । ଅତଏବ ରେ ପାପ ! ତୋତେ ବାରମ୍ବାର ନମସ୍କାର । ଧନ୍ୟ ପ୍ରଭୁ ତୁମ୍ଭର ବିଚିତ୍ର ଲୀଳା ଓ ବିଚିତ୍ର ସୃଷ୍ଟି ! ସେ ସୃଷ୍ଟିରେ ନିନ୍ଦା ଓ ପ୍ରଶଂସାର ଭେଦାଭେଦ କେଜାଣି କିପରି କିଏ ? ଆପଣଙ୍କୁ ସର୍ବଦା ଶତ ଶତ ନମସ୍କାର ।

ଏହି ପରମେଶ୍ୱର ରାଜ୍ୟରେ ମାନବଜାତୀୟ ସମସ୍ତ ଭାଇଭଉଣୀ ମଧ୍ୟରେ ପରସ୍ପର ଏକ ବିଶ୍ୱରରେ ଯଦି ଅବିରୋଧ ଭାବାପନ୍ନ ସର୍ବବାଦୀ ସ୍ୱାଧୀନ ସମ୍ମତ ସର୍ବ-ମତାନୁମୋଦନ କ୍ରମେ ସମସ୍ତେ ସମସ୍ତଙ୍କର ସୁଖଦୁଃଖାଦିରେ ସମସୁଖ ଓ ସମଦୁଃଖ ଅନୁଭବ କରି ସମସହାନୁଭୂତି ପରିପୂର୍ଣ ହୁଅନ୍ତେ, ଆଉ ଯଦି ତଦନୁସାରେ ପରସ୍ପରର ଦୁଃଖବିମୋଚନ ଓ ସମସୁଖସମ୍ପାଦନ ନିମିତ୍ତ ସମବାୟ ଯତ୍ନ, ଚେଷ୍ଟା ଵିଚାରଆଦି କାର୍ଯ୍ୟରେ ପରିଣତ ହୁଅନ୍ତା ଏବଂ ତଦନୁସାରେ ବ୍ୟବସ୍ଥାଦି ପ୍ରଣୟନ ହେଉଥାଆନ୍ତା, ପୁଣି ସେହି ବ୍ୟବସ୍ଥାଦିରେ ସମସ୍ତଙ୍କର ଓ ପ୍ରତ୍ୟେକର ସୁଖ ଏବଂ ସଂସାରର ଯାବତୀୟ ପରିମିତ ଆବଶ୍ୟକମତ ଜୀବନଧାରଣ ଉପଯୋଗୀ ଇନ୍ଦ୍ରିୟବେଗ ସୀମା ମଧ୍ୟରେ ଶମ, ଦମ, ନିୟମାଧୀନ ପ୍ରଣାଳୀ ଅନୁସାରେ ଯଥାଯୋଗ୍ୟ ମତ ଅବଲମ୍ବିତ ହେଉଥାନ୍ତା, ତାହାହେଲେ ଉକ୍ତରୂପ ବିଧିବ୍ୟବସ୍ଥା ପଦ୍ଧତି ଯେପରି ଈଶ୍ୱରାନୁମୋଦିତ, ସେହିପରି ମାନବସମାଜର ସମସୁଖ-ଦାୟୀ ଓ ସମକଲ୍ୟାଣକାରୀ ହେଉଥାଆନ୍ତା । ମାତ୍ର ରେ କଳତାମସ ପ୍ରବୃତ୍ତି ! ତୁ ଆଜକାଲି ସେପରି ପବିତ୍ର ଭାବର କାର୍ଯ୍ୟ କରିବାକୁ ନଦେଇ ସ୍ୱେଚ୍ଛାଚାରିତା, ଆତ୍ମମ୍ଭରିତା, ବିଳାସିତା ଓ ଜଟିଳ, କୁଟିଳଭାବପୂର୍ଣ୍ଣ କୁମନ୍ତ୍ରଦାନରେ ମୁଷ୍ଟିମେୟ ମୋହମୁଗ୍ଧ ଜୀବକୁ ଅଜ୍ଞାନ ସହଚରର ସହିତ ଶିଷ୍ୟ ଓ ସଙ୍ଗୀ କରିଦେଇ ସେମାନଙ୍କଦ୍ୱାରା ସବୁ ଗୁପ୍ତଭାବରେ ସାଧନ କରାଉଅଛୁ, ଭେଦ ବଢ଼ାଉଅଛୁ । ଏକଆଡ଼େ କୁବେର, ଏକଆଡ଼େ ଫକୀର କରାଇ ଦେଉଅଛୁ । ଅଳ୍ପ ଲୋକ ପରମେଶ୍ୱରଙ୍କଠାରୁ ସନନ୍ଦ ପାଇଥିଲପରି ମନକୁ ମନକୁ ଚଟ୍ଟିଚଲି, ଗୋଡ଼ପକା, ଉଙ୍କେଇବୋପା ବେଶ ସାଜ 'ମାହାଲିଆ ମୁକୁନ୍ଦ' ଉପାଧି ଧାରଣ-ପୂର୍ବକ 'ମାରିପାରିଲେ ମହାପାତ୍ର ଗୃହ୍ଣିଥିଲେ ଜଳକା' ମତ ଧରି, ପୂତନା ମାଉସୀ ଧରଣରେ ଉପରେ ମିଷ୍ଟବାଣୀ ଭିତରେ ବିଷକୁମ୍ଭ ଖଣି ରଖି 'ବିଷକୁମ୍ଭ ପୟୋମୁଖ' ହୋଇ ଗୋଟିଏ ଆଡ଼ମ୍ବରପୂର୍ଣ୍ଣ ବଡ଼ ଗୃହ ମଧ୍ୟରେ ବସି ଘରଆଡ଼ କାଳଦୂତ ପ୍ରହରୀ ଜଗାଇଦେଇ କୂଟମନ୍ତ୍ରର ସାହାଯ୍ୟ ନେଇ ବ୍ୟବସ୍ଥା ପ୍ରଣୟନ କରିଅଛନ୍ତି । ତାହା କଲ୍ୟାଣକର ହେବା ଦୂରେ ଥାଉ, ସର୍ବସାଧାରଣ ମନୁଷ୍ୟ ସମାଜର ଅପ୍ରୀତିଭାଜନ ହେଉଅଛି । ଏହିଠାରୁ ସମୁଦାୟ ଅଶାନ୍ତି ଅବିଶ୍ୱାସ ଅଶ୍ରଦ୍ଧାଦି ସବୁ 'ଅ' ଯାକ ଜାତ ହେଉଅଛି । ରେ କଳ-ତାମସ ! ଏ ସବୁ ତୋହରି ଲୀଳା । ନୋହିଲେ ଭାଇ ଭାଇ ମଧ୍ୟରେ ପରମେଶ୍ୱରଙ୍କ ଅଭିଭାବକତ୍ୱରେ ଏକା ସଂସାରବାସରେ ଏ ଭେଦପୂର୍ଣ୍ଣ କାଳକୂଟ ବ୍ୟବସ୍ଥା ଜାତ ହୋଇ ଘରଭଙ୍ଗା କଳି କାହିଁ ବାହାରି ପାରନ୍ତା ? ତୋତେ ପୁଣି ବିହାନ୍ତିଆ ଶତ ଶତ ନମସ୍କାର । ଆଧୁନିକ ଶିକ୍ଷା, ଦୀକ୍ଷା ଏବଂ ବିଧି ବ୍ୟବସ୍ଥାଦିର ଧରଣକୁ ଦେଖିଲେ ଏହା ପୃଥିବୀର

ସର୍ବସ୍ଥାନକୁ ଅଧିକାର କରି ବସିଯାଇ ସାରିଲାଣି । ଏହା ଏକ ସ୍ଥାନରେ ନୁହେ କି ଏକ ଦେଶରେ ନୁହେ, ସର୍ବତ୍ର ଏକ ଗୁରୁର ଚେଲାପରି ସମସ୍ତେ ସବୁଆଡ଼େ ଏକଧରଣ ଧରି ନାଚିଅଛନ୍ତି । ସେହି ଉଦରମ୍ଭରିତା, ସେହି ଭଲ ପୋଷାକପୋଡ଼ା କଳେବର, ସେହି ଆଡ଼ମ୍ବର ପରିପୂର୍ଣ୍ଣ ଗୃହ ଓ ଯାନବାହନାଦିରେ ମାଟି ଗୋସାଣୀକୁ ଥୋଇ ଦେଖାଇ ହୋଇ ଗର୍ବରେ ଅଷ୍ଟାବକ୍ରାବତାର ଗ୍ରହଣ, ଏ ସବୁ ଆୟୋଜନ ନିମିତ୍ତ କୃତ୍ରିମ କପଟାଦିଦ୍ୱାରା ପରସ୍ୱାପହରଣ ପରାୟଣ ପୌରୁଷେୟ ଇତ୍ୟାଦି ନାନାପ୍ରକାର ବିଜୟ ଦୁନ୍ଦୁଭି ସର୍ବତ୍ର ନିନାଦିତ ହେଉଅଛି । ପତ୍ରାବୃତ କୁଟୀରଗାରଠାରୁ ଆରମ୍ଭ କରି ଅମରାବତୀ ପର୍ଯ୍ୟନ୍ତ, ଏଣ୍ଡୁଅଠାରୁ କଙ୍କଡ଼ାବିଛୁକୁ ନେଇ ନରଶାର୍ଦ୍ଦୂଳ ଜରଦ୍‌ଗ ଅଜଗରାଦି ପର୍ଯ୍ୟନ୍ତ ସେହି ଏକପ୍ରକାରର ଶିକ୍ଷା, ଦୀକ୍ଷା ଓ ବ୍ୟବସ୍ଥା ବଳରେ ପଦ୍ଧତି ଦେଶ, କାଳ, ପାତ୍ର-ଭେଦରେ ଏକପ୍ରକାର ଅଭିପ୍ରାୟ ସାଧନରେ ପ୍ରବୃତ୍ତ ହୋଇଅଛି । ଦିନକୁ ଦିନ ଏହି ସଂସ୍କାର କ୍ରମେ କ୍ରମେ ଅଧିକରୁ ଅଧିକ ବେଗରେ ଗର୍ତ୍ତ କରି ମାଟିରେ ସମସ୍ତଙ୍କୁ ଉପରୁ ଟାଣି ସଂଲଗ୍ନ କରିଦେଲାଣି । ଏବେ ଏଆଡ଼କୁ ସେହି ଗର୍ତ୍ତ ତଳମୁହାଁ ହୋଇ କ୍ରମେ ଗଭୀରତର ହେବାକୁ ଲାଗିଲେ ବୋଧହୁଏ ମନୁଷ୍ୟ ସମାଜକୁ ମାଟିଭିତରେ ଗାତ ଖୋଳି ଜୀବନ୍ତ ସମାଧି ଦେଇ ଅତ୍ୟଳ୍ପ ଦିନ ମଧ୍ୟରେ ସଂସାରକୁ ଏକ ମହା-ଅଜ୍ଞାନାତ୍ମକ ଶ୍ମଶାନ-ଭୂମିରେ ପରିଣତ କରିଦେବ । ଅଗ୍ନିକୁ ଭଲ ମଣି ପତଙ୍ଗ ଡେଇଁଲାପରି ଏହିଆଡ଼େ ଶ୍ରେଷ୍ଠମାନେ ଏବଂ ତଦ୍ରୂପ ବଡ଼ ଆଦର୍ଶରେ ତଳଆମାନେ ଗତି କରୁଅଛନ୍ତି । ଏ ସବୁରୁ ଦେଖାଯାଏ ଏ ପୂର୍ବ ସୂଚନାନୁଯାୟୀ କଳି ତାମସୀ ପ୍ରବୃତ୍ତିର ବେଗର ଶେଷ ଧକ୍କା ମନୁଷ୍ୟକୁ ଅନାବୃତ୍ତ କରି ଦେଇ ସାରିଲାଣି । ଏହିଠାରେ "ସମସ୍ତେ ହୋଇ ଏକମୁଖ, ବୋଲନ୍ତି ନାରାୟଣ ରଖ" । ଆଉ ବିଳମ୍ବ ସହ୍ୟଯୋଗ୍ୟ ନୁହେ । ଯାହା ହେଉ, ଏହି ଅବସ୍ଥା ଧର୍ମୋଦୟର ପୂର୍ବାଭାସର ଲକ୍ଷଣ ଭିନ୍ନ ଆଉ କିଛି ନୁହେ । ତେବେ ଏହି ସନ୍ଧିକ୍ଷଣରେ ଆଗକୁ ଚାହିଁ ଆଶ୍ୱସ୍ତ ହେବାକୁ ହେବ । ହତାଶ ବା ନିରୁତ୍ସାହର କିଛି କାରଣ ନାହିଁ । ଧର୍ମ ସ୍ୱୟଂ ନିଜ ନାମକୁ ସାର୍ଥକ କରିବା ନିମିତ୍ତ ସଂସାରରେ ଉଦୟ ହେବ, ଏହା ତାହାର ସ୍ୱଭାବ । ସେହି ଉଦୟର ଆଭା ପ୍ରକାଶ ପାଇଲାଣି । ଲେମ୍ବୁକୁ ଅତି ଚିପୁଡ଼ି ଚିପୁଡ଼ି ତାହା ପିତା ହୋଇଯିବାରୁ ତାକୁ ତ୍ୟାଗ କରିବାର ଅଭିପ୍ରାୟ ତ୍ୟାଗଧର୍ମବେଗରେ ପ୍ରେରିତ ହୋଇ କାର୍ଯ୍ୟକ୍ଷେତ୍ରରେ କର୍ମାରମ୍ଭ କଲାଣି । ବାଧାବିଘ୍ନ ତ ସ୍ୱାଭାବିକ । ମାତ୍ର ପରମେଶ୍ୱରଙ୍କ ବିଚିତ୍ର ମାୟାର ପରାକାଷ୍ଠା ଏହିଠାରେ ଦେଖାଦେଲାଣି । ଏକ ତ୍ୟାଗଧର୍ମ ଯେପରି ଏକଆଡ଼େ ମନ୍ଦକୁ ତ୍ୟାଗ କରିବାର ପ୍ରୟାସ ପାଉଅଛି, ସେହିପରି ଅନ୍ୟଆଡ଼େ ମନ୍ଦର ମନ୍ଦରଗିରି ମନ୍ଥନକୁ ମଧ୍ୟ ହେୟଜ୍ଞାନ କରି ତ୍ୟାଗ କରୁଅଛି । ଅସହ୍ୟ ଦୁଃଖ, କଷ୍ଟ, ଯନ୍ତ୍ରଣା, ଲାଞ୍ଛନା, ମାନହାନି, ଧନହାନି, ସ୍ୱାସ୍ଥ୍ୟହାନି, ଏମନ୍ତ କି ପ୍ରାଣହାନି ପର୍ଯ୍ୟନ୍ତକୁ ଲକ୍ଷ୍ୟ ନ କରି ସେହି ତ୍ୟାଗଧର୍ମ ବଳରେ ଏ ସମସ୍ତ ଗୁରୁତର ଅପଚୟକୁ ମଧ୍ୟ ସେହି ଏକ ତ୍ୟାଗ ଯଜ୍ଞାହୁତିରେ ତ୍ୟାଗ କରୁଅଛି । ଅନ୍ଧକାର ଶେଷବେଳକୁ ସୂର୍ଯ୍ୟୋଦୟର ପୂର୍ବାଭାସ ସ୍ୱରୂପ କ୍ଷୀଣାଲୋକ ଉଭଆଡ଼େ ଅର୍ଥାତ୍ ପୂର୍ବଦିଗରୁ ପଡ଼ିଥାଏ ।

ତାହାହିଁ ପୂର୍ବରୁ ଉଚ୍ଚ ହୃଦୟରେ ଦେଖାଗଲାଣି । ଚନ୍ଦ୍ରବଂଶର କଥା ଏବଂ ଚନ୍ଦ୍ରାତପ, ଚନ୍ଦ୍ରଚନ୍ଦ୍ରାନ୍ତର କଥା ଓ ଗୀତ, ଗୁମ୍ଫାର କଥା କିମ୍ବା ପଶ୍ଚିମବଙ୍ଗର କଥା ଅନ୍ୟ ରକମ । ସେ ସବୁ ମନ୍ଦ ସ୍ଥାନରେ ଏବଂ ଅନ୍ଧାରପ୍ରିୟ ପେଚକ ଭବନାଦିରେ ଅନ୍ଧାରକୁ ନିମନ୍ତ୍ରଣ କରି କୋଡ଼େଇ ରଖିବାକୁ ହୋଇଥାଏ । ହେଲେ କଅଣ ହେବ, ଅଳ୍ପକ୍ଷଣପରେ ସେହି ସବୁ କୁତ୍ସିତ ଧାମାଦିରେ ମଧ୍ୟ ଆଲୋକର ଚମକ ପଡ଼ିଯାଏ । ଏବେ ସେହି ଚମକ ପଡ଼ିଗଲାଣି, ଅଥଚ ଆଲୋକ ଦେଖା ଦେଇନାହିଁ । ଆଜ କଳିଯୁଗାବ୍ଦ ୫୦୨୫ କାର୍ତ୍ତିକ ମାସ ୧୩ ଦିନ । ହେ ପବିତ୍ର ଧର୍ମାଲୋକ, ବିଳମ୍ବ ଆଉ କେତେ ଅଛି ?

## ୧୧୫ ପାଠ—ସତ୍ୟଧର୍ମାଗମର ଉପଗତପ୍ରାୟ ଆସନ୍ନ ଭବିଷ୍ୟତକୁ ସାଦର ପ୍ରେମାଲିଙ୍ଗନ

ଏହି ନବୋଦିତ ତ୍ୟାଗଧର୍ମ ନୂତନ ନୁହେ । ଏହା ଆମ୍ଭର ନିତ୍ୟ ସହଚର । ବୈଦିକ ନିତ୍ୟ ସନାତନ ଶାଶ୍ୱତ ଧର୍ମ ଗୋଲକପତି ଚତୁର୍ଦ୍ଦଶ ଭୁବନାଧୀଶ୍ୱର ଚରାଚର ସମେତ ଅନନ୍ତକୋଟି ବିଶ୍ୱ ସଂସାର ବ୍ରହ୍ମାଣ୍ଡର ନାଥ, ସର୍ବଶକ୍ତିମାନ୍, ସର୍ବୈଶ୍ୱର୍ଯ୍ୟଶାଳୀ ଭଗବାନ ହରି ବୈକୁଣ୍ଠ ବିଭବଲୀଳା ପରିତ୍ୟାଗ ପୂର୍ବକ ଅଜପର ନ୍ୟାୟ, ଧର୍ମ, ଜ୍ଞାନ, ସତ୍ୟ, ଦୟାଦିର ଗ୍ଳାନି ଓ ମ୍ଲେଚ୍ଛତାର ପ୍ରାଦୁର୍ଭାବ ଏବଂ ସାଧୁ ସଦାଚାର ସମ୍ପନ୍ନ ମହାତ୍ମାମାନଙ୍କର ନିର୍ଯାତନ ଦିନରେ ଧର୍ମୋଦ୍ଧାର ଏବଂ ସଂସାରର ଓ ସଂସାରସ୍ଥ ପ୍ରାଣୀ ତଥା ମାନବବର୍ଗର ଉପକାର ସାଧନାର୍ଥ ଅକଥନୀୟ ଓ ଅଚିନ୍ତ୍ୟ ତ୍ୟାଗର ଆଦର୍ଶ ସ୍ୱରୂପ ମହା ସନ୍ନ୍ୟାସ ଯୋଗ ଧାରଣ କରି ସଂସାର ଦେଶରେ ଭୌତିକ ରାଜ୍ୟର ଏହି ଭାରତବର୍ଷ ମଧ୍ୟରେ ଅବତାର ଗ୍ରହଣ କରନ୍ତି । କାହିଁ ବୈକୁଣ୍ଠ ଧାମ, କାହିଁ ତାହାର ତ୍ୟାଗ ! ଆଉ ଭୌତିକ ଜଗତ ବା କଅଣ କେଉଁଠାରେ ? ବୈକୁଣ୍ଠନାଥ ସଂସାରରେ ସଚ୍ଚିଦାନନ୍ଦ, ସତ୍ୟଜ୍ଞାନାନନ୍ତ ବିଗ୍ରହ ଭୌତିକ ଦେହାକାରରେ ଭୌତିକ ଜଗତରେ ବିରାଜମାନ । ଯେଉଁ ତ୍ୟାଗ ବା ସନ୍ନ୍ୟାସ ଧର୍ମ ଭଗବାନ ହରିଙ୍କୁ ବୈକୁଣ୍ଠଲୀଳା ତ୍ୟାଗ କରାଇ ପରୋପକାର ବ୍ରତ ସାଧନାର୍ଥ ଭୌତିକ ସଂସାରକୁ ବିଜେ କରାଇ ଆସୁଅଛି, ସେହି ତ୍ୟାଗ ରୂପ ସନ୍ନ୍ୟାସ ଓ ପରୋପକାର କିପରି ପୂଜନୀୟ ଶ୍ରେଷ୍ଠତମ ଧର୍ମ, ଏହା କହିବା, ଶୁଣିବା ଓ ଜାଣିବାକୁ ତପସ୍ୟା ବା ସାଧ୍ୟ କାହାର ଅଛି ? ଆଜ ଏହି ବିଷୟତକ ଧାରଣ କରି ଗ୍ରନ୍ଥ ପବିତ୍ର ହେଲା ।

ତ୍ୟାଗର ଅର୍ଥ 'ନ୍ୟାସ'; ସତ୍ ନ୍ୟାସର ଅର୍ଥ ମନ୍ଦର ତ୍ୟାଗ, ଏବଂ ଉତ୍ତମର ଗ୍ରହଣ; ଅର୍ଥାତ୍ ଉତ୍ତମ ତ୍ୟାଗ ବା ସନ୍ନ୍ୟାସ ସହଯୋଗର ଅର୍ଥ ମିଶାମିଶି । ଏହି ମିଳାମିଶାର ବିପରୀତ ଅସହଯୋଗ, ଅର୍ଥାତ୍ ମନ୍ଦର ସହଯୋଗ ତ୍ୟାଗ । ସୁତରାଂ ଏହି ଅସହଯୋଗ ସନ୍ନ୍ୟାସର ନାମାନ୍ତର ବା ଅର୍ଥାନ୍ତର ଭିନ୍ନ ଆଉ କିଛି ନୁହେ । ଏହି ଅସହଯୋଗ ବା ସନ୍ନ୍ୟାସ ଉପକାରମୂଳକ ଓ ପରୋପକାରମୂଳକ ଅଟେ ।

ଏହାର ଏତେ ମାହାତ୍ମ୍ୟ ଯେ ଏହା ପରମେଶ୍ୱରଙ୍କର ଆଦରଣୀୟ ଓ ପାଳନୀୟ ବ୍ରତ-ସ୍ୱରୂପ ଧର୍ମ ଅଟେ । ସେହି ହେତୁରୁ ଭଗବତ୍‌ଭକ୍ତପ୍ରାଣଶ୍ରେଷ୍ଠ ମନୁଷ୍ୟ, ମୁନି, ଋଷି, ତପସ୍ୱୀ, ଯୋଗୀ ଓ ଜ୍ଞାନୀମାନଙ୍କର ଏହି ତ୍ୟାଗ ଓ ପରୋପକାରବ୍ରତ ଧର୍ମସାଧନାକାରରେ ଅବଲମ୍ବନୀୟ, ସେବ୍ୟ ଓ କରଣୀୟ ହୋଇ ଆଦୃତ ହୋଇଅଛି । ଏହି ତ୍ୟାଗ ବା ସନ୍ନ୍ୟାସ ଅର୍ଥାତ୍ ଅସହଯୋଗ ଧର୍ମ ବଳରେ ଯେପରି ଆତ୍ମଶୁଦ୍ଧି ଓ ଆତ୍ମସିଦ୍ଧି, ସେହିପରି ପରୋପକାର ସିଦ୍ଧି ଲାଭ ହୁଏ । ଏହି ତ୍ୟାଗ ଦୁଇ ପ୍ରକାର, ଯଥା –(୧) ନିଷ୍କାମ ତ୍ୟାଗ (୨) ସକାମ ତ୍ୟାଗ । ନିଷ୍କାମ ତ୍ୟାଗୀ ଯୋଗୀମାନେ କର୍ମବୈରାଗ୍ୟ, ଭକ୍ତିବୈରାଗ୍ୟ ଏବଂ ଜ୍ଞାନବୈରାଗ୍ୟ ରୂପ ଚୂଡ଼ାନ୍ତ ଶ୍ରେଷ୍ଠତମ ମହାସନ୍ନ୍ୟାସ ଯୋଗବଳରେ ସଂସାର, ଦେହ, ପ୍ରାଣ, ଇନ୍ଦ୍ରିୟ, ଅନ୍ତଃକରଣ ଏବଂ ତତ୍‌ସଂସୃଷ୍ଟ ଜୀବୋପାଧିର ସହଯୋଗ ପର୍ଯ୍ୟନ୍ତ ତ୍ୟାଗ କରି ଆତ୍ମାକୁ ବ୍ରହ୍ମ ସହିତ ଅଭେଦ ବୋଧକରନ୍ତି । ସନକାଦି ଚତୁଷ୍ଟୟ ବ୍ରହ୍ମର୍ଷି ଏହି ଯୋଗର ଆଦର୍ଶ ସଂସାରରେ ଜୀବର ଉପକାର ନିମିତ୍ତ ରଖି ଦେଇ ଯାଇଅଛନ୍ତି । ଭଗବାନ ହରି ଏହି ନିଷ୍କାମ ସନ୍ନ୍ୟାସ ଯୋଗବଳରେ ସଂସାରରେ ଦେହଧାରୀ ହୋଇ ଅସୁରମାନଙ୍କଦ୍ୱାରା ଅସହ୍ୟ କଷ୍ଟ ଯନ୍ତ୍ରଣାଦି ଭୋଗକଲେ ସୁଦ୍ଧା ସେ ସମସ୍ତକୁ ଏକଆଡ଼େ ତ୍ୟାଗ କରି ଅନ୍ୟଦିଗରେ ସଂସାରର ତଥା ସଂସାରୀମାନଙ୍କ ପ୍ରଭୃତିଙ୍କର ପରମ ଉପକାର ସାଧନ କରନ୍ତି । ଅଥଚ ଏହି ଉପକାର ଭୋଗରେ ସେ ସ୍ୱୟଂ ନିଃସମ୍ବନ୍ଧ, ତେବେ ଏ ଦୁଇଟି ଆତ୍ମାର ଧର୍ମ । ଏହିରୂପେ ନିଷ୍କାମ ସନ୍ନ୍ୟାସ ଯୋଗର ଏହାହିଁ ମାହାତ୍ମ୍ୟ ଯେ ତାହାର ବଳରେ ପରୋପକାର, ସିଦ୍ଧି ସ୍ୱତଃ ଉପସ୍ଥିତ ହୁଏ । ସନ୍ନ୍ୟାସ, ତ୍ୟାଗ ବା ଅସହଯୋଗ ଧର୍ମ ଏବଂ ପରୋପକାର, ଏ ଉଭୟେ ପରସ୍ପର ଛନ୍ଦାଛନ୍ଦି ଓ ଜଡ଼ାଜଡ଼ି ହୋଇ ରହିଅଛନ୍ତି । ଏ ଉଭୟ ସମବାୟ ସମ୍ବନ୍ଧ ବିଶିଷ୍ଟ ।

ତ୍ୟାଗ ବିନା ପରୋପକାର ନାହିଁ, ତ୍ୟାଗ ବିନା ଧର୍ମ ନାହିଁ, ସୁତରାଂ ତ୍ୟାଗ, ପରୋପକାର ଏବଂ ଧର୍ମ, ଏ ତିନହେଁ ଏକଣେ ଏକ ଜ୍ଞାନପକ୍ଷରେ ଏକାଧାରରେ ଗ୍ରନ୍ଥିତ ଓ ଏକତାବସ୍ଥିତ ରହିଅଛନ୍ତି । ମହାମତି ଧ୍ରୁବ ନିତାନ୍ତ ବାଲ୍ୟାବସ୍ଥାରୁ ମାତୃକୋଡ଼ ଓ ରାଜ-ଭବନ ତ୍ୟାଗ କରି ଯେଉଁ ସନ୍ନ୍ୟାସଧର୍ମର ଆଦର୍ଶ ରଖିଅଛନ୍ତି ତାହା ସକାମ ସନ୍ନ୍ୟାସ ଅଥବା କାମନାଯୁକ୍ତ ଅସହଯୋଗ ଅଟେ । ଏହି ଯୋଗବଳରେ ଧ୍ରୁବ, ହରିମୟ ଜୀବନ ପ୍ରାପ୍ତ ହୋଇ-ଥିଲେ । ପବନକୁ ବହିବାର ଦେଖି କହିଥିଲେ—ହେ ବାୟୁଦେବ ! ତୁମ୍ଭେ ବଡ଼ ଆନନ୍ଦରେ ଦଉଡ଼ୁଅଛ, ବୋଧହୁଏ ହରିଙ୍କି ଦେଖିବା ପାଇଁ ତୁମ୍ଭର ମନ ବଳଅଛି । ତୁମ୍ଭର ସଙ୍ଗେ ସଙ୍ଗେ ଦୌଡ଼ିଲେ ମୁଁ ହରିଙ୍କୁ ଦେଖିବି । ପୁଣି ବୃକ୍ଷଲତା ପ୍ରଭୃତିଙ୍କୁ ହଲିବାର ଦେଖି ସେମାନଙ୍କୁ କହିଥିଲେ—ହେ ବୃକ୍ଷଲତାଗଣ ! ତୁମ୍ଭେମାନେ ତ ଘରି ଖୁସି ହେଉଛ ? କଅଣ ସଚ୍ଚିଦାନନ୍ଦମୟ 'ହରି' ଏଠାକୁ ଆସିବେ କି ? ସେଇଥିପାଇଁ ତୁମ୍ଭେମାନେ ଅତି ଆନନ୍ଦରେ ନୃତ୍ୟ କରୁଅଛ । ମୋତେ ଟିକିଏ ସଙ୍ଗରେ ନିଅ ! ତୁମ୍ଭ ସଙ୍ଗଲାଭରେ ମୁଁ ସେହି ପ୍ରେମମୟ ହରିଙ୍କୁ ଦେଖି ପାରିବି । ମୃଗଶାବକମାନଙ୍କୁ ଦଉଡ଼ିବାର ଦେଖିଲେ ସେମାନଙ୍କ ସଙ୍ଗେ ସଙ୍ଗେ ଦଉଡ଼ୁଥିଲେ ଏବଂ ସେମାନଙ୍କୁ କହୁଥିଲେ – ହେ ଶାବକମାନେ,

ବଡ଼ ଆନନ୍ଦରେ ଦଉଡ଼ୁଅଛ, ବୋଧହୁଏ ହରିଙ୍କୁ ଦେଖିବା ପାଇଁ ଦଉଡ଼ୁଅଛ । ତାହା ନ ହେଲେ ତୁମ୍ଭମାନଙ୍କ ମନରେ ଏଡ଼େ ଆନନ୍ଦ କେଉଁଆଡ଼ୁ ଆସନ୍ତା ? ମୁଁ ତୁମ୍ଭ ସଙ୍ଗରେ ଦଉଡ଼ିବି, ସାଙ୍ଗ ହୋଇ ହରିଙ୍କୁ ଦେଖିବା । ଏହିପରି ସବୁ ପ୍ରକାର ଦର୍ଶନ କରି କରି ଏବଂ ସବୁଥିରେ ହରିଙ୍କର ପୂର୍ତ୍ତି ଅନୁଭବ କରି, କ୍ଲାନ୍ତ ହୋଇ ଶେଷରେ ମହର୍ଷିମାନଙ୍କର ଶୁଭକ୍ଷଣରେ ଦର୍ଶନ ଲଭ କଲେ । ତାହା ପରେ ମହର୍ଷିମାନଙ୍କଠାରୁ ଜ୍ଞାନୋପଦେଶ ଲଭ କରି ଏକାଗ୍ର ଚିତ୍ତରେ ହରିଙ୍କ ଧ୍ୟାନରେ ନିମଗ୍ନ ହେଲେ । କେତେ କେତେ ମାୟିକ ଭୟ ହାସାହର ଦୃଶ୍ୟ ଅନୁଭବ କଲେ । ସବୁ ତ୍ୟାଗ କଲେ । ଶେଷରେ ଦୟାମୟ ହରି ଦର୍ଶନ ଦେଲେ । ସିଦ୍ଧିଲଭ ହେଲ । ଶେଷ ଜୀବନରେ ମାତାଙ୍କୁ ନେଇ ସ୍ୱଦେହରେ ସ୍ୱର୍ଗକୁ ଗଲେ ଏବଂ ସେଠାରେ ସ୍ୱର୍ଗସୁଖସମ୍ପଦ ଭୋଗ କଲେ ; ଏବେ ମଧ୍ୟ କରୁଅଛନ୍ତି ଏବଂ ଏହିପରି ମଧ୍ୟ ଭୋଗ କରୁଥିବେ । ଏହାହିଁ ତାହାଙ୍କର କାମନା ଥିଲ । ଏହା ସକାମ ତ୍ୟାଗଧର୍ମର ଆଦର୍ଶ । ରାଜରାଜାଧୀଶ୍ୱର ଶିରୋମଣି ସଦୃଶ ମହାରାଜ 'ହରିଶ୍ଚନ୍ଦ୍ର' ସର୍ବଶ୍ରେଷ୍ଠ ମହାତ୍ୟାଗର ଅବତାର ଥିଲେ । ସତ୍ୟପାଳନ ସକାଶେ ରାଜୈଶ୍ୱର୍ଯ୍ୟ ତ୍ୟାଗ କରି ଶେଷକୁ ଏକମାତ୍ର ସ୍ତ୍ରୀ ଓ ରାଜକୁମାରଙ୍କୁ ବିସର୍ଜନ ଦେଇ ସର୍ବଶେଷରେ ସ୍ୱୟଂ ଶ୍ମଶାନ ପ୍ରହରୀ କାର୍ଯ୍ୟକୁ ସାଦରେ କର୍ତ୍ତବ୍ୟଜ୍ଞାନରେ ଗ୍ରହଣ କରିଥିଲେ । ତ୍ୟାଗ ଓ ସହିଷ୍ଣୁତାର ଚୂଡ଼ାନ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏକ ଅନ୍ଧକାର ରାତ୍ରିରେ ଗୋଟିଏ ସ୍ତ୍ରୀ ତାହାର ମୃତ ବାଳକକୁ ଧରି ସେହି ହରିଶ୍ଚନ୍ଦ୍ର ରକ୍ଷିତ ଶ୍ମଶାନରେ ଉପସ୍ଥିତ ହେଲ । ରାତ୍ରିରେ ପାପବଧ ବାଳକକୁ ସ୍ତ୍ରୀଲୋକଟି ଶ୍ମଶାନରେ ପକାଇ ଦେବା ଅନୁମାନ କରି ଧର୍ମାବତାର ପ୍ରହରୀ ଉପସ୍ଥିତ ହୋଇ ସ୍ତ୍ରୀଟିକୁ ପ୍ରହାର କରିବାକୁ ଉଦ୍ୟତ ହେଲରୁ ସେ କହିଲ, ଆଉ କ୍ରନ୍ଦନ କଲ—ମୁଁ ହରିଶ୍ଚନ୍ଦ୍ର ରାଜାଙ୍କର ରାଣୀ । ରାଜ୍ୟ ଗଲ, ସ୍ୱାମୀବିଚ୍ଛେଦ ଘଟିଲ । ଏକମାତ୍ର ବାଳକ ସର୍ପଦଂଶନରେ ପ୍ରାଣ ହରାଇଲ । ଶେଷକୁ ଶ୍ମଶାନରେ ଚଣ୍ଡାଳ ହାତରେ ମୋର ମୃତ୍ୟୁ ଆସି ଉପସ୍ଥିତ ହେଲ । ହା ଧର୍ମ, ହା ଧର୍ମ ! ଏହି କି ତୋହର ସତ୍ୟବ୍ରତପାଳକ ପ୍ରତି ତୋହର ପୁରସ୍କାର ? ରାଜା ହରିଶ୍ଚନ୍ଦ୍ର ଏହା ଶୁଣି, ମହାତ୍ୟାଗଧର୍ମ ସିଂହେନ୍ଦ୍ର ହରିଶ୍ଚନ୍ଦ୍ର ହା, ହତୋସ୍ମି କହି ତଳେ ପଡ଼ିଗଲେ । ସ୍ତ୍ରୀଲୋକଟି ସେହି ପ୍ରହରୀ ମହାପୁରୁଷଙ୍କୁ ଆପଣାର ସ୍ୱାମୀ ବୋଲି ଚିହ୍ନିପାରି ଚରଣତଳେ ନିପତିତ ହେଲେ । ଉଭୟେ ଚିହ୍ନାଚିହ୍ନି ହୋଇ ମହାତ୍ୟାଗର ପରାକାଷ୍ଠା ଏହିଠାରେ ଧର୍ମକୁ ଚିହ୍ନାଇଦେଇ ପରମେଶ୍ୱରଙ୍କୁ ନିର୍ଦ୍ଦୟ ବୋଲି ସ୍ଥିରକଲେ । ଏକ ଚିତା ପ୍ରଜ୍ୱଳିତ କରି ନିଜ ଦେହର ସଂସ୍କାର କରିନେବା ଲଗି କାଷ୍ଠ ଅଗ୍ନିରେ ସ୍ଥାପନ କରି ରାଣୀ ବାଳକକୁ ଧରି ସ୍ୱାମୀ ସହିତ ଅଗ୍ନିକୁ ଝାମ୍ପ ଦେବାକୁ ଚେଷ୍ଟା କଲରୁ ଆଉ ସ୍ୱର୍ଗର ସିଂହାସନ ସ୍ଥିର ହୋଇ ରହି ପାରିଲନାହିଁ । ସ୍ୱୟଂ ଭଗବାନ ହରି ପାର୍ଶ୍ୱବର୍ଗ ଓ ଦେବଗଣ ସହିତ ସେଠାରେ ଉପସ୍ଥିତ ହୋଇ କହିଲେ, "ଅଗ୍ନି ନିର୍ବାପିତ ହେଉ, ରାଜା ହରିଶ୍ଚନ୍ଦ୍ର ରାଣୀ ଓ ପୁନର୍ଜୀବିତ ବାଳକ ସହିତ ତାଙ୍କର ସାମ୍ରାଜ୍ୟ—ତୁଳ୍ୟ ବୃକ୍ଷଲତାଦି ଚରାଚର ପ୍ରଜା, ପାତ୍ର, ମିତ୍ର ଓ ଅମାତ୍ୟାଦି ସର୍ବପ୍ରାଣୀ ବିଶିଷ୍ଟ

ହିଷ୍ଟପ୍ସ ସ୍ୱର୍ଗ ଆଦର୍ଶରେ ବିଶ୍ୱକର୍ମାନିର୍ମିତ ନିତ୍ୟ ସ୍ଥାୟୀ ମହାମଣ୍ଡଳରେ ରାଜା ହୋଇ ସିଂହାସନ ଅଳଂକୃତ କରନ୍ତୁ । ବିଗତ ଦୁଃଖମୟ ଘଟନାବଳୀ ତାଙ୍କ ପକ୍ଷରେ ସ୍ୱପ୍ନତୁଲ୍ୟ ଅଳୀକ ବୋଲି ପ୍ରଶଂସିତ ହେଉ, ଏବଂ ତାଙ୍କ ଅନୁଷ୍ଠିତ ମହାତ୍ୟାଗ ଓ ସହିଷ୍ଣୁତାର ଆଦର୍ଶ ଯୁଗେ ଯୁଗେ, ଲୋକଶିକ୍ଷାର୍ଥ ସ୍ୱର୍ଣ୍ଣାକ୍ଷରରେ ଅଙ୍କିତ ହୋଇ ରହିଥାଉ ।" ସେହିପରି ହେଲା । ଆଜି ସେହି ହିଷ୍ଟପ୍ସ ସ୍ୱର୍ଗରେ ସେହି ରାଜା ହରିଶ୍ଚନ୍ଦ୍ର ସେହିପରି ବିରାଜମାନ ରହିଅଛନ୍ତି । 'ପ୍ରହ୍ଲାଦ' ବାଳକଭକ୍ତର ତ୍ୟାଗ ଓ ସହିଷ୍ଣୁତାର କଥା ଆଜିକାଲି ପ୍ରତି ମୁଖରେ ମୁଖରିତ ହେଉଅଛି । 'ପ୍ରହ୍ଲାଦ' ରାଜୈଶ୍ୱର୍ଯ୍ୟ ପ୍ରଲୋଭନ ଏବଂ ସର୍ବ-ପ୍ରକାର ସୁଖ ତ୍ୟାଗ କରି ପରମ ସହିଷ୍ଣୁତା ଓ ତିତିକ୍ଷା ଅବଲମ୍ବନ ପୂର୍ବକ ଅସହନୀୟ ଦୁଃଖ, କଷ୍ଟ ଓ ଯନ୍ତ୍ରଣାଦିକୁ ଏମନ୍ତ କି ମରଣ ପର୍ଯ୍ୟନ୍ତ ଭ୍ରୂକ୍ଷେପ ନ କରି ସେ ସବୁର ବିପରୀତ ଭାବାତ୍ମକ ସୁଖ ସମ୍ଭୋଗାଦି ଏବଂ ଜୀବିତ ଆଶାକୁ ତ୍ୟାଗ କରିଣାନନ୍ତର ହିରଣାକ୍ଷକୁ ଏକାଗ୍ର ତପୋନିଷ୍ଠା ବଳରେ ସ୍ତମ୍ଭରୁ ନୃସିଂହ ମୂର୍ତ୍ତି ଦେଖାଇ ଚମତ୍କୃତ କରିଥିଲା । ପରେ ଅନାଚାର, ଅବିଚାର, କଦାଚାର ଓ କୁଶିକ୍ଷାଦିର ଆଧାର ହିରଣାକ୍ଷ ନିଜର ସହଜାତ ମନ୍ଦ ଗୁଣାଦି ସହିତ ସଂହୃତ ହୋଇଥିଲା । ତାତ୍ପର୍ଯ୍ୟ ଏହି ଯେ, ମନ୍ଦଗୁଣ ବଢ଼ି ବଢ଼ି ତହିଁର ଅବସାନ ବେଳକୁ ସଙ୍କେତ ସ୍ୱରୂପ ତ୍ୟାଗ, ସହିଷ୍ଣୁତାଦି ଧର୍ମାଲୋକର ଚିହ୍ନ କୌଣସି କୌଣସିଠାରେ ଉଦିତ ହୋଇଥାଏ, ଏହା ଈଶ୍ୱର ସୃଷ୍ଟିର ନିୟମ । ମହାପ୍ରଭୁ ଶ୍ରୀରାମଚନ୍ଦ୍ର ଚଉଦ ବର୍ଷ ବନବାସର କଷ୍ଟକୁ ସହିଷ୍ଣୁତା ସହକାରେ ଗ୍ରହଣ କରି ରାଜାଭିଷେକକୁ କ୍ଷଣକରେ ତ୍ୟାଗ କରିଥିଲେ, ଦୁରନ୍ତ ରାବଣ ଛପନଗଣ୍ଡା ଯୁଗର ସର୍ବ ସୁଖ ସମ୍ପଦ ଭୋଗ କରିବା ପାଇଁ ବର ପାଇଥିଲା, ମାତ୍ର ଚଉଦଗଣ୍ଡା ଯୁଗ ଭୋଗ କାଳ ମଧ୍ୟରେ ଏତେ ଅନ୍ୟାୟ, ଅବିଚାର ପରଧନ ହରଣ, ପରସ୍ତ୍ରୀହରଣ ପ୍ରଭୃତି କୁତ୍ସିତ୍ସାପୂର୍ଣ୍ଣ ଅଧମ ଆଚରଣ କରିଥିଲା ଯେ ପୃଥିବୀ ଆଉ ସହ୍ୟ କରିବାକୁ ଅକ୍ଷମ ହୋଇ ଉଠିଲା । ଶେଷରେ ଜଗଲ୍ଲକ୍ଷ୍ମୀ ତଥା ବୈକୁଣ୍ଠଲକ୍ଷ୍ମୀ ବୈଦେହୀଙ୍କୁ ମଧ୍ୟ ମତ୍ତଗର୍ବାଧିକ୍ୟରେ ହରିନେଇ ନେଇ ବିଶ୍ୱବନ୍ଦ୍ୟା ସେହି ମହାଲକ୍ଷ୍ମୀଙ୍କୁ ଅଶୋକବନରେ ସର୍ବପ୍ରକାର ଦୁଃଖ, କଷ୍ଟ ଓ ପତିବିଚ୍ଛେଦ ଯନ୍ତ୍ରଣା ସହିତ ବନ୍ଦୀକରି ରଖିଥିଲା । ଶେଷରେ ପ୍ରଭୁ ରାମଚନ୍ଦ୍ରଙ୍କର ତ୍ୟାଗ ଓ ସହିଷ୍ଣୁତା ଧର୍ମବଳରେ ପ୍ରଭୁ ଲକ୍ଷ୍ମଣଙ୍କର ବାରବର୍ଷବ୍ୟାପୀ ଆହାର, ମୈଥୁନ ଓ ନିଦ୍ରାଦି ତ୍ୟାଗରୂପ ମହାତ୍ୟାଗ ଧର୍ମ ପ୍ରଭାବରେ ଅଥଚ ମହାବୀର ହନୁମାନ, ଜାମ୍ବବାନ ଓ ବିଭୀଷଣାଦି ଅନେକ ଅନେକ ବୀରଭକ୍ତମାନଙ୍କର କଷ୍ଟସହିଷ୍ଣୁତା ଓ ସର୍ବତ୍ୟାଗ ତଥା ପ୍ରାଣତ୍ୟାଗ ସ୍ୱୀକାର ଭଳି ଶେଷ ସୀମାନ୍ତ ତ୍ୟାଗଧର୍ମ ମହତ୍ତ୍ୱ ଦ୍ୱାରା ଅନାଚାର, କଦାଚାର, ଅବିଚାର ଓ ଅଧର୍ମାଚାର ପ୍ରଭୃତି ଏ ସବୁ ପାପର ମୂର୍ତ୍ତିମାନ ଅବତାର ରାବଣର ସବଂଶ ସଂହାରରୂପ ପ୍ରାୟଶ୍ଚିତ୍ତ ବିଂଶାଳିଶ ଗଣ୍ଡା ଯୁଗ ଭୋଗ ବାକି ଥାଉଁ ଥାଉଁ ଅତି ଶୀଘ୍ର ସଂଘଟିତ ହେଲା । ଅଧର୍ମାନ୍ଧକାର ଅତି ପ୍ରଗାଢ଼ ହେଲାବେଳକୁ ଧର୍ମାଲୋକର ଚିହ୍ନସ୍ୱରୂପ ତ୍ୟାଗ ବା ଅସହଯୋଗ ଓ ସହିଷ୍ଣୁତାଦି ଉଦିତ ହେବାର ଦେଖାଗଲେ ସଙ୍ଗେ ସଙ୍ଗେ ସଂଦୃଷ୍ଟ ହୋଇଥାଏ ଯେ ଅନ୍ଧକାରର ବିନାଶବେଳ ଯେପରି

ଏହି ଉପସ୍ଥିତ ହେଲା । ସେଠାରେ ବଳ, ବୀର୍ଯ୍ୟ, ଦମ୍ଭ, ଗର୍ବ, କଳ କୌଶଳ ଓ ପୁରୁଷକାର ପ୍ରଭୃତି ବା ପ୍ରଜାପତି ସ୍ୱୟମ୍ଭୁଙ୍କ ଦତ୍ତ ବର ପ୍ରଭୃତି ପାପରୂପ ଅଧର୍ମ ପରାଜୟର ପୂତିଗନ୍ଧମୟ ନରକ ଗର୍ଭରୁ ଆହୁର ତଳକୁ । ସେହି ମହାତଳରେ ପାପ, ପାପୀ ଓ ଅଧର୍ମ ଏବଂ ଅଧର୍ମୀର ଶେଷ ସ୍ଥାନ ମାଟିପିଣ୍ଡର 'ଅଢ଼ାଇ ଦିନିଆ ବଢ଼ାଇ କଣ୍ଟି ଲୁଚହିଁ' ।

କଂସ ପ୍ରଭୃତି ବଡ଼ ବଡ଼ ପ୍ରତାପୀ, ଅଧର୍ମୀ, ଅନ୍ୟାୟୀମାନଙ୍କର ପତନ ଏହି ଅନତିଦୂର ଅତୀତରେ ଘଟିଥିଲା । କଂସର କୁମନ୍ତ୍ରଣାରେ ପିତୃଦେବ ପ୍ରହରୀ ଦେବ ହୋଇଥିଲେ । ଭଗିନୀପତି ପରମଧାର୍ମିକ ବସୁଦେବ ସହଧର୍ମିଣୀ ଦେବକୀ ସହିତ ସଦାଲଗ୍ନ ଶୃଙ୍ଖଳାବଦ୍ଧ ହୋଇ ନିର୍ଜନ ଶ୍ରୀଘରବାସ ଉପଭୋଗ କରୁଥିଲେ । କେତେ କେତେ ନିର୍ଦ୍ଦୋଷ ସଦ୍ୟପ୍ରସୂତ ଶିଶୁ ହତ୍ୟା କରାଯାଉଥିଲେ । ଏକଆଡ଼େ ପାପାନ୍ଧକାର କ୍ରମେ ପ୍ରଗାଢ଼ ହେବାକୁ ଲାଗିଲା, ଅନ୍ୟଆଡ଼େ କଷ୍ଟସହିଷ୍ଣୁତା ଓ ସର୍ବତ୍ୟାଗ ଏବଂ ଏକହରି-ନିଷ୍ଠାର ଚିହ୍ନ ଦେଖାଦେଲା । ଅଳ୍ପଦିନରେ ପୁଣି ଦୁର୍ଯ୍ୟୋଧନାଦିଙ୍କ ଆଡ଼େ ଗର୍ବ, ମୋହ, ବଡ଼ିମା ଓ ଆଡ଼ମ୍ବରାଦିର ଓ ଭ୍ରାତୃସ୍ନେହ ସମୂଳେ ଉଚ୍ଛେଦ କରି ଧର୍ମପ୍ରାଣ ପାଣ୍ଡବମାନଙ୍କୁ ବନବାସ ଦେବାର ପାପବୁଦ୍ଧି ଅଥଚ ଅବିଚାର, ଅନାଚାରାଦି ଅଧର୍ମର ଯେପରି ସୀମା ପର୍ଯ୍ୟନ୍ତ ଉନ୍ନତି ହୋଇଥିଲା, ସେହିପରି ଅନ୍ୟଆଡ଼େ 'ଧର୍ମରାଜ ଯୁଧିଷ୍ଠିରାଦି' ପାଣ୍ଡବ-ମାନଙ୍କର ଦେଶତ୍ୟାଗ, ନାମ ଉପାଧି ପର୍ଯ୍ୟନ୍ତ ତ୍ୟାଗ, ଗୁପ୍ତବାସ, ଅସ୍ତ୍ର ଶସ୍ତ୍ର ତ୍ୟାଗ ଏବଂ ନାନାପ୍ରକାର କଷ୍ଟ ଓ ଅପମାନ, ସହିଷ୍ଣୁତାଦି ଏକତ୍ର ମିଶି ଏକ ମହାତ୍ୟାଗଧର୍ମରେ ପରିଣତ ହୋଇଥିଲା । ଏହି ତ୍ୟାଗ ଧର୍ମବଳରେ ଏବଂ ଶ୍ରୀମଦ୍ ଭଗବଦ୍ ଗୀତା ଧର୍ମ, ଜ୍ଞାନ, ଯୋଗ ପ୍ରାଦୁର୍ଭାବରେ ମହାବଳ ପ୍ରଭାବ ସମନ୍ୱିତ ଦୁର୍ଯ୍ୟୋଧନ ସର୍ବ ପ୍ରକାର ବଳ, ଦର୍ପ, ଗର୍ବ, ମୋହ, ପାପାଚାର, ଅନାଚାରାଦି ସହିତ ସବଂଶରେ, ସସୈନ୍ୟରେ ସମସ୍ତ ଦୁଷ୍ଟ ଅସୁରଗଣଙ୍କୁ ଘେନି ସମୂଳେ ଉତ୍ପାଟିତ ହୋଇଥିଲା । ଅତଏବ ଏସବୁର ଆଦର୍ଶରୁ ଦେଖାଯାଏ, ଅଜ୍ଞାନପୂର୍ଣ୍ଣ ପାପାନ୍ଧକାର ବେଳରେ ତ୍ୟାଗଧର୍ମାଦି ଜ୍ଞାନାଲୋକ ଆକାରରେ ପ୍ରକାଶ ହେଲାରୁ ସେହି ଅନ୍ଧକାରର ଅବସ୍ଥାନ ଉପସ୍ଥିତ ହୁଏ । ବର୍ତ୍ତମାନ ଏଠାରେ ବିଶେଷ ଲେଖିବା ବାହୁଲ୍ୟ, ମାତ୍ର ଶାସ୍ତ୍ର ପୁରାଣାଦିରେ ଏହି ପବିତ୍ର ତ୍ୟାଗର ଆଦର୍ଶ ଏତେ ବହୁତ ପରିମାଣରେ ମିଳେ, ଯାହା ବର୍ଣ୍ଣନାତୀତ, ଅଥଚ ବର୍ଣ୍ଣାତୀତ ଅଟେ । ଦୁଃଖର ବିଷୟ, ଆଜକାଲିର କୁଶିକ୍ଷାରେ ଓ ଦୁଃଶିକ୍ଷାବଳରେ ଏହି ପବିତ୍ର ଆର୍ଷଗ୍ରନ୍ଥପ୍ରତି ଅନାଦର ଅବହେଳା ଜାତ ହୋଇଅଛି । କାଳେ ସେ ସବୁ ପାଠରେ ମାତିଗଲେ ଉପସ୍ଥିତ କୁଶିକ୍ଷା, କୁଦୀକ୍ଷା, ଅନାଚାର, ଅବିଚାରାଦି ପାପ ପ୍ରତି ଲୋକ ମନରେ ଘୃଣା ଜାତ ହେବ ଓ ତହିଁର ସେବାରୁ ନିବୃତ୍ତି ଜନ୍ମିବ । ଏହି ଭୟରେ କଳି ତାମସୀ ପ୍ରବୃତ୍ତି ନିଜ ଗୁଣ ବଢ଼ାଇବା ପାଇଁ ତତ୍ପର ଦୂତଗଣଦ୍ୱାରା ଏପରି କଠୋର ବ୍ୟବସ୍ଥା କରି

ଦେଇଅଛୁ । ବର୍ତ୍ତମାନ ସଂସାରର ସବୁଆଡ଼ରେ, ସବୁଦିଗରେ ଓ ଅଧଃ ଊର୍ଦ୍ଧ୍ୱରେ ଯେଉଁଠାରେ ଯେଉଁ ପରିମାଣରେ କଳି ତାମସାନ୍ଧକାର, ଅବିଚାର, ଅନାଚାର, ପାପାଚାର, କୁଶିକ୍ଷା, କୁଦୀକ୍ଷା, କୁଗର୍ବ, ମୋହ, ସ୍ୱେଚ୍ଛାଚାର ଓ ପରଧନହରଣ, ପରରାଜ୍ୟଗ୍ରାସ ଏବଂ ସ୍ୱାର୍ଥସିଦ୍ଧି ନିମିତ୍ତ ପର ପ୍ରାଣନାଶ ପ୍ରଭୃତି ପାପ ସହିତ ମିଶ୍ରଣ କରି ଘୋର ପାପ ବୁଡ଼ାଇ ରଖିଅଛୁ, ସେହିଠାରେ ସେହି ପରିମିତ ପାପକୁ ନିବାରଣ କରିବା ପାଇଁ ଯେଉଁ ପରିମାଣରେ ଯେଉଁଭଳି ତ୍ୟାଗ ଧର୍ମ ଆବଶ୍ୟକ, ସେହିଠାରେ ସେହି ଅନୁରୂପେ ତ୍ୟାଗ, ଧର୍ମାଲୋକ ଉଦୟ ହୋଇ ସାରିଲାଣି । ଏହି ଉଦୟର ଲକ୍ଷଣ ଦେଖି ଏହି କଳି ତାମସ ଅନାଚାର, କଦାଚାର, ଅବିଚାର, ଦୁଃଖ, କଷ୍ଟ, ଲାଞ୍ଛନା, ଯନ୍ତ୍ରଣା, ଅପମାନ ଓ ନିର୍ଯାତନାଦି ଯେତେ ପରିମାଣରେ ବଢ଼ାଇ ପ୍ରୟୋଗ କରୁଅଛୁ, ତ୍ୟାଗ, ସହିଷ୍ଣୁତାଦିଦ୍ୱାରା ଜ୍ଞାନାଲୋକ ସେତିକି ସେତିକି ବେଶୀ ବେଶୀ ପରିମାଣରେ ବଢ଼ି ବଢ଼ି ଅଜ୍ଞାନାନ୍ଧକାରକୁ ହଟାଇ ହଟାଇ, ଘୁଞ୍ଚାଇ ଘୁଞ୍ଚାଇ ନେବାର ପ୍ରୟାସ ପାଉଅଛୁ । ବର୍ତ୍ତମାନର ଉପସ୍ଥିତ ଦିନରେ ଏହା ଦେଖି ମନେ ହେଉଅଛୁ, ନିଆଁକୁ ଯେତେ ବାଡ଼େଇଲେ ତାହା ସେତିକି ଗତିରେ ଜଳି ଉଠୁଥାଏ । ଏ ଘଟନାରେ ପେଟକ ସଂପ୍ରଦାୟ, ଅଥବା କାଳଗ୍ରହିତର-ଦଳ, ଭୂତ ପ୍ରେତ ଓ ପିଶାଚମାନେ ଏବଂ କଳି ତାମସ ଦାସ ପ୍ରଭୃତି ଦୂତମାନେ ମନେ ମନେ ଗଗଡ଼େ ଗଗଡ଼େ ପିଠା ଖାଇ କହୁଥିବେ, ନା ନା, ଏ କଳି ତମସାଚ୍ଛନ୍ନ ଅନ୍ଧକାର ଗଲେ ଆମ୍ଭମାନଙ୍କର ସର୍ବନାଶ ଘଟିବ । ଅତଏବ ଏହା ଅଛୁ, ଅଛୁ । ମାତ୍ର ଜ୍ଞାନୀମାନେ, ସାଧୁ ପରମହଂସମାନେ କହିଲେଣି, ଦୁଇଗୁଣ ପରିମାଣରେ ଦୃଢ଼ କରି କୁହାଯାଉ ଏହି ଅନ୍ଧକାର ଅ, ଅ, ଛୁ, ଛୁ, ଅ, ଅ, ଛୁ, ଛୁ, ବୋଲି । ଏହିପରି ଅବସ୍ଥାରେ ରେ କଳିତାମସ ! ତୁ ନିଜେ କହିପାରୁ ତୋହର ସ୍ଥିତି ଆଉ କେତେ ବାକି ? ଏ ପ୍ରଶ୍ନଟି ଅସଙ୍ଗତ କାରଣ 'ସୀତା ହରଣ ରାବଣ ମରଣ' ଏହା ରାବଣର କପାଳରେ ଲେଖାଥିଲା । ଆଉ ମଧ୍ୟ ତାହାର ଘରଦ୍ୱାର ଚାରିଆଡ଼େ ଠାବେ ଠାବେ ଲେଖାଥିଲା, ରାବଣ ପ୍ରତିଦିନ ଏହାକୁ ମଧ୍ୟ ପଢ଼ୁଥିଲା । ଏହାପରେ କଂସକୁ ନାରଦ ମହର୍ଷି ଏବଂ ଦୁର୍ଗା କହିଥିଲେ—ରେ କଂସ, ତୋହର ମରଣ ବଡ଼ ନିକଟ । ତଥାପି ରାବଣ ଓ କଂସ କ୍ଷଣକ ପାଇଁ ସ୍ୱୀକାର କରି ନ ଥିଲେ ଯେ ସେମାନେ ନିଶ୍ଚୟ ମରିବେ । ଧର୍ମରାଜ ମଧ୍ୟ କହିଅଛନ୍ତି ନିଜ ମରଣ କେହି ସ୍ୱୀକାର କରେ ନାହିଁ । ସୁତରାଂ ଏ ପ୍ରଶ୍ନ ଅସଙ୍ଗତ । ତେବେ ପୂର୍ବେ ପବିତ୍ର ଧର୍ମାଲୋକ ପ୍ରକଟ ହୋଇଅଛନ୍ତି ଯେ ତାଙ୍କ ଉଦୟର ବିଳମ୍ବ କେତେ ? ଏଥିରେ ସେ ସ୍ୱୟଂ ଉତ୍ତର ଦେଇପାରନ୍ତି ଅଜ୍ଞାନ ପାପ ଅନ୍ଧକାର ଥାଉଁ ଥାଉଁ ଯେତେବେଳେ ତ୍ୟାଗାଦି ଧର୍ମ ଆକାରରେ ଜ୍ଞାନାଲୋକର ଆଭାସ ପରିଦୃଷ୍ଟ ହୁଏ, ସେତିକିବେଳେ ନିଶ୍ଚୟ କରାଯିବ ଉପରୋକ୍ତ ଦୃଷ୍ଟାନ୍ତ ଓ ଆଦର୍ଶାନୁଯାୟୀ ସେହି ଆଲୋକର ପଛେ ପଛେ ସହସ୍ର ରଶ୍ମିଧାରୀ ଧର୍ମଜ୍ଞାନାଦିତ୍ୟର ଉଦୟ ହୋଇଅଛୁ । ସେହି ଜ୍ଞାନ ଜ୍ୟୋତିର୍ମୟ ମହାପ୍ରଭୁଙ୍କୁ ଏହିଠାରେ ଅସଂଖ୍ୟ ଅସଂଖ୍ୟ ପ୍ରଣାମ ।

## ୧୧୭ ପାଠ—ଲୋକଯାତ୍ରା ଏବଂ ସଂସାରଯାତ୍ରା ସମ୍ବନ୍ଧୀୟ ବ୍ୟାବହାରିକ ନୀତି

ମନୁଷ୍ୟ ସମାଜ ସାଧାରଣତଃ ଆଦର୍ଶ ଓ ଅନୁକରଣର ଅଧୀନ ଅଥଚ ପ୍ରିୟ । ସମାଜ ମଧ୍ୟରେ ଉଚ୍ଚ ବୋଲି ଯାହାକୁ ମାନି ନେବାକୁ ସମାଜ ବା ସଂସାର ଦେଖାଇ ଦିଏ, ଅଥଚ ସେହିପରି ଉଚ୍ଚ ବୋଲି ବିଘୋଷିତ ହେବାକୁ ଯେଉଁମାନେ ବଳ ପ୍ରୟୋଗ ବା ପ୍ରୀତି ଭକ୍ତିଦ୍ୱାରା ମନୁଷ୍ୟସମାଜକୁ ବାଧ୍ୟ କରନ୍ତି ବା ଆକର୍ଷଣ କରନ୍ତି, ସେହିମାନଙ୍କ ପ୍ରଦର୍ଶିତ ବା ଆଦିଷ୍ଟ କି ଉପଦିଷ୍ଟ, ଆଦର୍ଶ ବା ଅନୁକରଣାଦିକୁ ଶ୍ରେଷ୍ଠ ବୋଲି ଗଣ୍ୟ କରିବାକୁ ହୁଏ । ମାନବ ସମାଜ ଏତଦ୍ରୂପ ଶ୍ରେଷ୍ଠମାନଙ୍କ ଆଦର୍ଶ ବା ଅନୁକରଣଯୁକ୍ତ ନୀତିର ଅନୁବର୍ତ୍ତନ କରନ୍ତି । ଆଜିକାଲି ଶ୍ରେଷ୍ଠ ବୋଲି ଯେଉଁ ଆଦର୍ଶ ଓ ଅନୁକରଣାତ୍ମକ ନୀତିକୁ ମାନ୍ୟ କରିବାକୁ ହେଉଅଛି, ତତ୍ ପ୍ରଚଳିତ ଓ ପ୍ରଚଳିତ ଶିକ୍ଷା, ଦୀକ୍ଷା, ପ୍ରଚାର, ବିଚାର ବ୍ୟବସ୍ଥାଦି ସମ୍ବନ୍ଧେ ଆଲୋଚନା କରାଯାଉଅଛି:—ମନୁଷ୍ୟ ସ୍ୱୟଂ ବ୍ୟକ୍ତିଗତ ଜ୍ଞାନଦ୍ୱାରା ପ୍ରଥମରୁ ଶିକ୍ଷା, ଦୀକ୍ଷା, ବିଚାର ଓ ବ୍ୟବସ୍ଥାଦି ଗଠନ କରିବାକୁ ଅକ୍ଷମ । ମନୁଷ୍ୟ ଯେତେ ବଡ଼ ପ୍ରତିଭାଶାଳୀ ହୋଇ ପଛକେ, ତାକୁ ପ୍ରଥମରୁ ସମାଜ ପ୍ରଚଳିତ ଶିକ୍ଷା ଦୀକ୍ଷାଦି ହୃଦୟଙ୍ଗମ କରିବାକୁ ହୋଇଥାଏ । ପରେ ସେ ତହିଁରୁ ଭଲ, ମନ୍ଦ ବାଛିପାରେ । ମାତ୍ର ସ୍ଥୂଳବୁଦ୍ଧି ଲୋକ, ପ୍ରଚଳିତ ଶିକ୍ଷା ଦୀକ୍ଷାର ସଂସ୍କାର ସୀମାର ଗଣ୍ଡି ମଧ୍ୟରେ ଚିରକାଳ ପଡ଼ି ରହିବାକୁ ବାଧ୍ୟ ହୁଏ । ଏବେ ବର୍ତ୍ତମାନ ଶିକ୍ଷା, ଦୀକ୍ଷା ଓ ବିଚାର ବ୍ୟବସ୍ଥାଦିରୁ ଫଳାଫଳ ସାଧାରଣତଃ ଅନୁଭବ କରାଯାଉଅଛି । ତହିଁର ପରିବର୍ତ୍ତନକୁ ସମସ୍ତେ ସାଧାରଣତଃ ଲୋଡ଼ୁଅଛନ୍ତି । ବିଶ୍ୱ ନିୟନ୍ତ୍ରୁ ଶକ୍ତି ତହିଁର ବିଧାନ କରୁଅଛି ଓ ତାହା କରିବା ତାହାର ଧର୍ମ ଓ ନିୟମ ମଧ୍ୟ ଅଟେ । ବର୍ତ୍ତମାନ ଆତ୍ମନିର୍ଭରଶୀଳତା ସହକାରେ ଆତ୍ମକର୍ତ୍ତବ୍ୟାବଧାରଣ ପୂର୍ବକ ବ୍ୟବହାରିକ ନୀତିର ଅନୁସରଣ କରିବାକୁ ହେବ । ଆଧ୍ୟାତ୍ମିକ ଭାବରେ ଆତ୍ମଜ୍ଞାନ ଓ ଆତ୍ମଧର୍ମ କଅଣ ଏବଂ କିପରି, ଅଥଚ ତାହାର ପରିବର୍ତ୍ତନ ହେଲେ ତାହାର ଅନୁଭୂତି କିପରି, ଏହା ସାଧାରଣ ମନୁଷ୍ୟ ସହଜରେ ବୁଝି ପାରେ ନାହିଁ । ମାତ୍ର ପ୍ରକୃତିଦତ୍ତ ଇନ୍ଦ୍ରିୟ ପ୍ରତି ବୈଷୟିକ ଜ୍ଞାନ ସହଜରେ ଉପଲବ୍ଧ ହୁଏ । ଏହି ବୈଷୟିକ ଜ୍ଞାନ ବା ବୈଷୟିକ ଭୋଗ ଆଧ୍ୟାତ୍ମିକତାର ବିରୋଧୀ ନ ହେବା ଜ୍ଞାନୀର ବିଚାର୍ଯ୍ୟ ଓ କର୍ତ୍ତବ୍ୟ । ମନୁଷ୍ୟ ମାତ୍ରେ ପ୍ରତ୍ୟେକେ ଏହା ପାଳନ କରିବା ଉଚିତ । ମାତ୍ର ସାଧାରଣ ସଂସାରୀ ମୁଖ୍ୟ ଭାବରେ ବୈଷୟିକ ସୁଖ ସମ୍ଭୋଗ ଦିଗରେ ପରିଚାଳିତ ହୋଇଥାଏ । ଏହି ପରିଚାଳନାକୁ ପ୍ରକୃତିର ପ୍ରତିକ୍ଷଣଦତ୍ତ ପ୍ରତ୍ୟକ୍ଷ ସଜାଗତ ଚେତନା ଚେତାଇ ଦେଉଅଛି । ସୁତରାଂ ସହଜରେ ମନୁଷ୍ୟ ସୁଖକୁ ଚିହ୍ନି ସେହିଆଡ଼େ ଲକ୍ଷ୍ୟ କରି ଗତି କରୁଅଛି । କ୍ଷୁଧା ବେଳେ ଭଡ଼ ନିଆଁ ହାଣ୍ଡିଏ ବା କାକବିଷ୍ଠା ଡେଲଉଣିଏ କି ପଲମେ ଆଗରେ ଥୋଇଦେଲେ କେହି ଖାଇବ ନାହିଁ । ତୃଷାବେଳେ କିରାସିନ ଭଲ କଡ଼ା ତରଳ ବସ୍ତୁ ବା ଆଉଟା

ଧାତୁଦ୍ରବ୍ୟ କେହି ପାନ କରିବ ନାହିଁ । କଣ୍ଟକାବୃତ ବଲ୍‌କଳ କମ୍ବା ବସ୍ତ୍ର କେହି ପରିଧାନ କରିବ ନାହିଁ । ବିଷ୍ଠାଗର୍ତ୍ତ ମଧ୍ୟରେ ବାସ କରିବାକୁ କେହି ସ୍ୱୀକାର କରିବ ନାହିଁ । ବାତୁଳର ବ୍ୟବହାରକୁ କେହି ଅନୁକରଣ କରିବାକୁ ଇଚ୍ଛା କରିବ ନାହିଁ । ଏ ସବୁରୁ ବୁଝାଯାଏ, ପ୍ରାକୃତିକ ଇଚ୍ଛା ବିରୁଦ୍ଧରେ ମନୁଷ୍ୟ ପରିଚାଳିତ ହୋଇ ନ ପାରେ । ପ୍ରତ୍ୟେକଠାରେ ଏହିପରି ଇଚ୍ଛା ଦତ୍ତ ଅଛି । ମନୁଷ୍ୟମାନେ ସଙ୍ଗେ ସଙ୍ଗେ ଏ କଥା ମଧ୍ୟ ବୁଝି ରଖିଥିବା ଉଚିତ । ତେବେ ମନୁଷ୍ୟର ସର୍ବଦା ବଡ଼ ସାବଧାନ ହୋଇ ରହିଥିବା ଧର୍ମତଃ କର୍ତ୍ତବ୍ୟ । ଯେପରି ଏକର ପ୍ରାକୃତିକ ଇଚ୍ଛାବିରୁଦ୍ଧ, ସୁଖ ସମ୍ଭୋଗାଦି ବିରୁଦ୍ଧ, ଧର୍ମବିରୁଦ୍ଧ, କର୍ତ୍ତବ୍ୟବୁଦ୍ଧି ବିରୁଦ୍ଧ ଓ ଜ୍ଞାନବିରୁଦ୍ଧ, କର୍ମ ଓ ବୈଷୟିକ ଭୋଗ କି ଜ୍ଞାନାଦି ଅନ୍ୟଦ୍ୱାରା ଅର୍ଥାତ୍ ପ୍ରତ୍ୟେକେ କହନ୍ତୁ, ମୋହର ନିଜଦ୍ୱାରା କୌଣସି ପ୍ରକାରେ ବିଶେଷତଃ ମୋହର ନିଜର ଅଭାବ ଓ ଆପଦବେଳେ ମଧ୍ୟ ଅନୁଷ୍ଠିତ ନ ହେଉ କି କରା ନ ଯାଉ । ସବୁ ଦେହରେ ଓ ପ୍ରତ୍ୟେକ ଦେହରେ ମୁଁ ବୋଲି ମନୁଷ୍ୟ ଆପଣାକୁ ଭାବୁଅଛି ଓ କହୁଅଛି । ଏକ 'ମୁଁ' ଭାବ ଓ ଏକ 'ମୁଁ' ନାଦ ସବୁ ଦେହରେ ସମଭାବେ ବିଦ୍ୟମାନ ରହିଅଛି । ଏହି ହିସାବରେ ବୁଝି ବସିଲେ 'ମୁଁ' ଯାହା କରିବି କି ଯେଉଁ ସୁଖଦୁଃଖାଦି ଅନୁଭବ କରିବ, ତାହା ଯେପରି ମୋହର ହେଲା ବୋଲି ମୁଁ ଜାଣୁଅଛି, ସେହିପରି ନିଜ ନିଜ କର୍ମକୁ ବା ଭୋଗକୁ ପ୍ରତ୍ୟେକେ ଓ ସମସ୍ତେ ଜାଣୁଅଛନ୍ତି । ମୋର ଦୁଃଖ ଇଚ୍ଛାବିରୁଦ୍ଧ ବିଷୟ ମୁଁ ଲୋଡ଼ୁନାହିଁ ; ଅର୍ଥାତ୍ ପ୍ରତି ଦେହରେ ସେହି ଏକ 'ମୁଁ' ଭାବ ଓ 'ମୁଁ' ନାଦ 'ମୁଁ' ରୂପେ ପ୍ରତିଷ୍ଠିତ ହୋଇଥାଇ କହୁଅଛି ତଥା ଅର୍ଥାତ୍ 'ମୁଁ' କହୁଅଛି, ବିରୁଦ୍ଧ ବିଷୟ ତ୍ୟାଜ୍ୟ ଓ ଅଗ୍ରାହ୍ୟ ଅଟେ । ତେବେ ସଂସାରରେ ଯାହା ଏକର ଭଲପାଇଁ ଅନ୍ୟ ମନ୍ଦ ରୂପେ ଦଣ୍ଡାୟମାନ ହେବ, ସେପରି କାର୍ଯ୍ୟର ବା ଭୋଗର ସ୍ଥାନ କେଉଁଠାରେ ? 'ମୁଁ' ଭାବ ଓ 'ମୁଁ' ନାଦ ବିରାଜମାନ ଥିବା ଜାଗାରେ ନାହିଁ କି ରହିବା ଅପ୍ରାକୃତିକ; ତେବେ କେଉଁଠାରେ ? 'ମୁଁ' ନ ଥିବା ସ୍ଥାନରେ ଏଥିର ଉତ୍ତର ହେବ । 'ମୁଁ' ନ ଥିବା ସ୍ଥାନ କାହିଁ ? କେଉଁଠାରେ ସେଭଳି 'ମୁଁ' ନ ଥିବା ସ୍ଥାନ ନାହିଁ । ଯହିଁ ଦେଖିବ ତହିଁ ସେହି ଏକ 'ମୁଁ' 'ହିଁ' ଭାବରୂପେ ଓ ନାଦରୂପେ ବିରାଜମାନ । ତେବେ 'ମୁଁ' ନ ଥିବା ସ୍ଥାନ ଶବଦେହ । ରେ ଅଜ୍ଞାନ ! ତୋର ଯେଉଁ ଦେହରେ ପୂର୍ଣ୍ଣାଧିକାର ସେହି ଦେହକୁ ଶତ ଧିକ୍‌କାର । ସେହି ଦେହ ମଧ୍ୟ ଶବଶବ୍ଦବୋଧକ, ଅର୍ଥାତ୍ ଶବ ଦୁଇ ପ୍ରକାର । (୧) ନିର୍ଜୀବ 'ମୁଁ' ଭାବ ଓ ନାଦ ନ ଥିବା ଦେହ (୨) ଅଜ୍ଞାନତାପୂର୍ଣ୍ଣ 'ମୁଁ' ଭାବ ଓ ନାଦବିଶିଷ୍ଟ ଜୀବ ଥିବା ଦେହ । ପ୍ରଥମ ପ୍ରକାରଟି ନିର୍ଦ୍ଦୋଷ, ଦ୍ୱିତୀୟ ପ୍ରକାରଟି ପୂର୍ଣ୍ଣ ଦୋଷୀ । ଅର୍ଥାତ୍ ପ୍ରଥମଠାରୁ ଦ୍ୱିତୀୟଟି ନିତାନ୍ତ ଅଧମ ଓ ଘୃଣ୍ୟ ଅଟେ । ପ୍ରଥମଟି କୁକୁର, ବିଲୁଆ ଭଳି ପ୍ରାଣୀବିଶେଷର ଉପକାରୀ, ମାତ୍ର ଦ୍ୱିତୀୟଟି ସର୍ବଜଗତର ଅହିତକାରୀ ଅଟେ ।

ବୁଝି ବିଚାରିବାକୁ ଗଲେ ମନୁଷ୍ୟ ଯେଉଁ କାର୍ଯ୍ୟ କରିବ, ତାହା ଯେପରି ନିଜର ମଙ୍ଗଳ ବା ସୁଖଦାୟୀ, ଅନ୍ୟ ପକ୍ଷରେ ସେପରି ମଙ୍ଗଳଜନକ ହେବ, ଏହା କର୍ତ୍ତବ୍ୟ ।

କେବଳ ନିଜର ସୁଖ ଇଚ୍ଛାରେ ଯାହା କରାଯାଏ, ତାହା ଆତ୍ମମ୍ଭରିତାର ପରିଚ୍ୟାୟକ ଅଟେ । ସଂସାର କେବଳ ନିଜର ନୁହେ ବା ଜଣକ ସକାଶେ ନୁହେ; ସୁତରାଂ ସଂସାରରେ ଭୌତିକ ଅଂଶ ନେଇ ଯେ ଯାହା କରୁ, ତହିଁରେ ସେହି କର୍ତ୍ତାର ଏବଂ ସଂସାରର ଯଥା ପରିମାଣରେ ମଙ୍ଗଳ ସମ୍ପର୍କ ରହିବା ଧର୍ମସଙ୍ଗତ । ସଂସାର ସର୍ବସାଧାରଣଙ୍କ ନିମିତ୍ତ ତିଆ ହୋଇଅଛି । ଏହା ଦେଖି ଏହାକୁ ଈଶ୍ୱରଦତ୍ତ ସର୍ବସାଧାରଣ ଭୋଗ୍ୟ ମହାଭଣ୍ଡାର ରୂପେ ବିଚାରିବା ଉଚିତ । ସୁତରାଂ ସାଧାରଣ ଉପକାର କର୍ମହିଁ ଈଶ୍ୱରାର୍ପଣଯୋଗ୍ୟ । ଏହିରୂପେ ଈଶ୍ୱରଙ୍କ ରାଜ୍ୟର କର୍ମଫଳ ସେହିଠାରେ ଅର୍ପଣ କରିବା ଉଚିତ । ଭଗବାନ ସୁଖ ଦୁଃଖ ଭୋଗରୁ ବହୁ ଦୂରରେ । ମାତ୍ର ସଂସାରର ସାଧାରଣ ଯେ ସୁଖ ଦୁଃଖ, ତାହା ତାଙ୍କର ବୋଲି ସେ ବୁଝନ୍ତି । ଏହିହେତୁ ମନୁଷ୍ୟ ଯାହା କରିବ, ତାହା ସଂସାରର ଉପକାର ଅର୍ଥରେ କରିବା ଉଚିତ । ସେହି ଉପକାର ଯେଉଁ ଅଂଶ ଭାଗରେ ପଡ଼ିବ, ସେ ତାହାହିଁ ଭୋଗିବାର ସତ୍ତ୍ୱବାନ୍ । ନିଜେ ଯାହା କରିବ ତହିଁରେ ସମୁଦାୟ ଫଳ ଆପେ ଭୋଗ କଲେ ତାହାର ନାମ ବିଷୟୀ ଭୋଗ । ଆଉ ସେ ଈଶ୍ୱର ରାଜ୍ୟରେ ପର ଧନୋପଭୋଗୀ ଚୋର । ଏହାପରେ ନିଜର ଉପକାର ପାଇଁ ଅନ୍ୟର ଅପକାର ସାଧନ କଲେ ସେ କାର୍ଯ୍ୟର ନାମ ଈଶ୍ୱରଦ୍ରୋହ ପୈଶାଚୀ କ୍ରିୟା । କାହାର ସୁଖ ଦୁଃଖ ସ୍ଥାୟୀ ନୁହେ—ଏହା ଈଶ୍ୱର ନିୟମ । ପରିବର୍ତ୍ତନ ପ୍ରକୃତିର ସ୍ୱଭାବ । କର୍ମ ଯେପରି ଭୌତିକ ଜଗତରେ ବିଲୀନ ହେଉଅଛି, କର୍ମ ଫଳ ରୂପ ଭୋଗାଦି ମଧ୍ୟ ସେହିପରି କ୍ଷଣିକ ଦର୍ଶନ ଦେଇ ପ୍ରକୃତିର ସ୍ୱ ଅଙ୍ଗରେ ଲୟ ପାଉଅଛି । ସମସ୍ତ ଅତୀତ କାଳଗର୍ଭରେ କବଳିତ ହେଉଅଛି । ମନୁଷ୍ୟର ପ୍ରବୃତ୍ତିଯୁକ୍ତ କର୍ମମାନେ ସଂସ୍କାର ରୂପେ ମନୁଷ୍ୟର ହୃଦୟରେ ଦାଗପରି ଲାଗି ରହୁଅଛି । ଅତଏବ ମନୁଷ୍ୟର ସାବଧାନ ହେବା ଉଚିତ, ଏହି ସଂସ୍କାର ତାହାର ଯେପରି ପାପମୟ କଳଙ୍କ ଦାଗରେ ପରିଣତ ନ ହୁଏ ।

ମନୁଷ୍ୟର ରହିବା ନିମିତ୍ତ ଗୃହ ଏକାନ୍ତ ଆବଶ୍ୟକ । ଆଉ ମଧ୍ୟ ତାହା ସ୍ୱାସ୍ଥ୍ୟକର ହେବା ଉଚିତ ଓ ଚଳନୋପଯୋଗୀ ହୋଇଥିବା ମଧ୍ୟ ବାଞ୍ଛନୀୟ । ଏହା-ବୋଲି ଏତକ ସଂପାଦନ ସକାଶେ ଯେତିକ ଦରକାର, ସେତିକ ବ୍ୟୟର ପରିମିତ ସୀମାରେ ରହିବା ବିଧେୟ । ଆଉ ଆଡ଼ମ୍ବର ଓ ବଡ଼ିମା ଦେଖାଇ ହେବାକୁ ସୀମାତିରିକ୍ତ ବ୍ୟୟରେ ତାହା ହେବା ନ୍ୟାୟସଙ୍ଗତ ନୁହେ । ଅତିରିକ୍ତ ଅର୍ଥରେ ସଂସାରର ଅନ୍ୟ ଉପକାର ସାଧିତ ହେବାର ପଥ ତଦ୍ଦ୍ୱାରା ରୁଦ୍ଧ ହେଲା । ଫଳରେ ଅସହାୟ, ଅଶକ୍ତ, ଦୁଃଖୀ, ଗରିବ ପ୍ରଭୃତିଙ୍କୁ ଅଭ୍ୟାଗତାଦିର ଅନ୍ନ ତଦ୍ଦ୍ୱାରା ବୃଥାରେ ମାଟିରେ ପରିଣତ ହେଲା । ଅନ୍ନର ନାମ ବହିଃପ୍ରାଣ; ଅନ୍ନାଭାବ ପ୍ରାଣର ଅଭାବରୂପ ମୃତ୍ୟୁ ସୁନିଶ୍ଚିତ । ତେବେ ସେପରି ଆଡ଼ମ୍ବରପୂର୍ଣ୍ଣ ଅନର୍ଥକ ବହୁବ୍ୟୟସାଧ୍ୟ ଗୃହ ଗରିବ ଲୋକର ପ୍ରାଣକୁ ମାଟିରେ ପୋତି ରଖିଲା । ଅତଏବ ତାହା ସାକ୍ଷାତ ଯମଭୁବନ । ଦେଖାଯାଉଅଛି, ଏକ ସ୍ଥାନରେ ସପ୍ତତଳହର୍ମ୍ୟ ଦଣ୍ଡାୟମାନ; ତାହାର ସଂଲଗ୍ନରେ ଆରପାଖରେ ପର୍ଣ୍ଣକୁଟୀରରେ

ଅନ୍ନାଭାବେ ଅର୍ଦ୍ଧଜୀବିତ ଶୁଷ୍କରକ୍ତ, ମାଂସପିଣ୍ଡବିଶିଷ୍ଟ, ହାଡ଼କଙ୍କାଳସାର ଦୁଃଖୀର ଆର୍ତ୍ତନାଦ—ଏହା ଈଶ୍ୱରାନୁମୋଦିତ ନୁହେ । ଏହା ମନୁଷ୍ୟର ରାକ୍ଷସୀ ସ୍ୱଭାବ ବିଶିଷ୍ଟ ସ୍ୱେଚ୍ଛାଚାରିତା, ଆତ୍ମମ୍ଭରିତା, ବିଳାସିତା ଓ ଗର୍ବ-ଆଡ଼ମ୍ବରପ୍ରିୟତାର କାର୍ଯ୍ୟ । ମନୁଷ୍ୟ ମିତବ୍ୟୟୀ, ସରଳପ୍ରାଣ, ସାତ୍ତ୍ୱିକକର୍ମୀ ଓ ପରୋପକାରୀ ହେବା ଧର୍ମ । ଆଜି-କାଲର ଶିକ୍ଷା, ଦୀକ୍ଷା, ବ୍ୟବସ୍ଥା, ଉଚ୍ଚ ଆଦର୍ଶ ଓ ଉଚ୍ଚ ଅନୁକରଣବିଶିଷ୍ଟ ସଂସାରକୁ ଉପରଲିଖିତ ରାକ୍ଷସୀଭାବରେ ଓ ପୈଶାଚିକ କ୍ରିୟାଦିରେ ଲିପ୍ତ କରି ଅଜ୍ଞାନାନ୍ଧକାରରେ ବୁଡ଼ାଇ ରଖିଅଛି । ଏହିପରି ଆଡ଼ମ୍ବର, ଗର୍ବ, ମୋହାଦିର ପରିତୃପ୍ତିକ ଜ୍ୱଳନ୍ତ ଚିହ୍ନ ସ୍ୱରୂପ ଅଟ୍ଟାଳିକା ଅନର୍ଥକ ବ୍ୟୟସାଧ୍ୟ ବାସ, ବସନ, ଭୂଷଣ, ଯାନ, ବାହନ, ଆସନ ଓ ନାନାବିଧ ଉପକରଣରେ ଯେଉଁ ଅଟ୍ଟାଳିକା ଅକାରଣରେ ବ୍ୟୟ ସଞ୍ଚିତ ବିନଷ୍ଟ ହେଲା ତାହା ଖାଲି ବିନଷ୍ଟ ହେଲା ନାହିଁ, ସଙ୍ଗେ ସଙ୍ଗେ ଅସଂଖ୍ୟ, ଅସଂଖ୍ୟ ଗରିବ, ଦୁଃଖୀ, ନିଃସହାୟ, ଅଶକ୍ତ, ଅତିଥି ଏବଂ ଅଭ୍ୟାଗତାଦି ପୋଷ୍ୟମାନଙ୍କର ଅନ୍ନ, ସ୍ୱାସ୍ଥ୍ୟ, ରକ୍ତ, ମାଂସ ଓ ପ୍ରାଣାଦି ଈଶ୍ୱର ନିର୍ମିତ ଓ ଅନୁଗୃହୀତ ସଜୀବ ବସ୍ତୁକୁ ବିନଷ୍ଟ କଲା । ତେବେ ଏହିସବୁ ଆଡ଼ମ୍ବର ପୂର୍ଣ୍ଣ ପଦାର୍ଥରେ ମୋହିତ ହେବା ପାପ ସଞ୍ଚୟ ଭିନ୍ନ ଆଉ କିଛି ନୁହେଁ । ଏହା ସୁଦୃଶ୍ୟ ନୁହେ । ଏହା ଦୟାର ପାତ୍ର ନିର୍ଦ୍ଦୋଷ, ସରଳ ଓ ନିରୀହ ଜୀବର ପ୍ରାଣ ସଂହାରକ ସୁତୀକ୍ଷ୍ଣ ଅସ୍ତ୍ର ଶସ୍ତ୍ର ସ୍ୱରୂପ ଅଟେ । ଏହାର ବ୍ୟବହାରୀ ଭଗବାନ୍ ରାଜ୍ୟରେ ଦୟା, ନ୍ୟାୟ, ସତ୍ୟାଦି ପ୍ରତିଷ୍ଠିତ ଭୂମଣ୍ଡଳରେ ଆତତାୟୀର ସହୋଦର ଓ ସମାନ ଅଟେ । ଏହିସବୁ ମୋହ, ଦୋଷାତ୍ମକ ଆଡ଼ମ୍ବରପୂର୍ଣ୍ଣ ଦୃଶ୍ୟରେ ଗରିବ ଶ୍ରେଣୀୟ ପ୍ରାଣୀମାନଙ୍କର ଅସନ୍ତୋଷ ଓ କଳ୍ପନା ରେଖା ରେଖାକେ ଅଙ୍କିତ ହୋଇଅଛି । ପୁଣି ଅନ୍ୟଆଡ଼େ ଏହି ଅଟ୍ଟାଳିକା ଅର୍ଥଲୋଭ, ମୋହ, ନିର୍ଦ୍ଦୟା ଓ ଅବିଚାର, କୂଟ, କପଟ ଓ ନାନାବିଧ କୃତ୍ରିମ ଉପାୟଦ୍ୱାରା ଅନେକର ସରଳ, ନିରୀହ ପ୍ରାଣୀ ଆଡ଼ରୁ ଅପହୃତ ହୋଇଅଛି ।

ଧନବାହୁଲ୍ୟ କାହାର ସହଜାତ ବସ୍ତୁ ନୁହେ । ସଂସାରକୁ ଏତେଗୁଡ଼ାଏ ମୋର କରି ବିମୋହିତ ହେବା ମାନବୀୟ ଆତ୍ମାର ଧର୍ମ ନୁହେ । ମୋର ଭାବ ଦେଖିବା ଉଚିତ ଯେ ମୁଁ ଯଦି ସବୁ ସଂସାରଟିକୁ ମୋର କରି ଧରି ବସିବାକୁ ଇଚ୍ଛା କରେ, ତେବେ କଅଣ ଏ ବିଶାଳ ସାମଗ୍ରୀ ଏକା ମୋହରି ପାଇଁ ବହୁଯୁଗ ପୂର୍ବରୁ ତିଆରି ହୋଇ ରହିଥିଲା ? ତାହାହେଲେ ମୁଁ ଏକା ଏ ସଂସାରରେ ତ ଥାଆନ୍ତି ? ସେପରି ହୋଇଥିଲେ ସପ୍ତତଳ ହର୍ମ୍ୟାଦିର ଦୃଶ୍ୟ କେଉଁଠାରେ, ମୋହର ଆଡ଼ମ୍ବର ବା କେଉଁଠାରେ ଥାଆନ୍ତା ? କିଏ ଦେଖନ୍ତା, ମୁଁ କାହାକୁ ଦେଖାଇ ହୁଅନ୍ତି ? ଏ ସବୁ ଐନ୍ଦ୍ରଜାଲିକ ଦୃଶ୍ୟର ଅସ୍ତିତ୍ୱ ମୋ ମନରେ କ୍ଷଣକ ପାଇଁ ସ୍ୱପ୍ନରେ ସୁଦ୍ଧା ନ ଥାନ୍ତା ବା ମୁଁ କଳ୍ପନାରେ ଆଣି ପାରନ୍ତି ନାହିଁ । ଏହା ଅନନ୍ତପାର ସଂସାର ସଙ୍ଘଟନ । ଅନନ୍ତ-ବିଧ ଅନନ୍ତ ଜୀବ ଅନନ୍ତ ଶସ୍ୟଫଳବିଶିଷ୍ଟ ହୋଇଥିବାରୁ ଏହି ଅନନ୍ତମୟ ଜଗତ

ଦୃଶ୍ୟ ମଧ୍ୟରେ ମୁଁ ନଗଣ୍ୟ କୀଟାଦପି କୀଟାଣୁ । ଏତେ ବଡ଼ ଭଗବତ୍ ନିର୍ମିତ ମହାକୀର୍ତ୍ତିକୁ ଏହା ମୋର ବୋଲି ଧରି ରଖିବାର ଚେଷ୍ଟା ବା ଇଚ୍ଛା କରିବା ମୋ ପକ୍ଷରେ ମହାପାପ ଅପରାଧ, ଦୋଷ, କୃତଘ୍ନତା, ଅଜ୍ଞତା, ମୂଢ଼ତା ଓ ଆତତାୟିତା ଭିନ୍ନ ଆଉ କିଛି ନୁହେ ; ଅଜ୍ଞାନ, ମୋହ, ଅହଙ୍କାର, ଆତ୍ମମ୍ଭରିତା, ସ୍ୱେଚ୍ଛାଚାରିତା ଓ ବଳାପିତାଦି ଭିନ୍ନ ଆଉ କିଛି ନୁହେ । ପିଶାଚ, ରାକ୍ଷସ, ଭୂତ, ପ୍ରେତ ଓ ଅସୁରାଦିଙ୍କର ସ୍ୱାଭାବିକ ଗୁଣ ଓ କ୍ରିୟାନ୍ତ ଏବଂ ଲକ୍ଷଣ, ଏପରି ଜ୍ଞାନ, ଧର୍ମ, ସତ୍ୟ, ଦୟା, କ୍ଷମା, ନିର୍ଲୋଭ ପରୋପକାରିତାର ତ୍ୟାଗ ଏବଂ ସନ୍ତୁଷ୍ଟତା, ସରଳତାଦି ଦେବଭାବ, ଦୈବୀ କ୍ରିୟାନ୍ତ ଇତ୍ୟାଦି ଦେବାଦ୍ଭୁତ ଲକ୍ଷଣ ସ୍ୱରୂପ ଅଟେ । ଏହି ପବିତ୍ର ଭାରତରେ ପରମେଶ୍ୱର-ଅବତାର ଭୂମିରେ ପୂଜ୍ୟପାଦ ମହର୍ଷି, ଦେବର୍ଷି, ବ୍ରହ୍ମର୍ଷିମାନଙ୍କର ବେଦଶାସିତ ପୂତ ଭାରତଖଣ୍ଡରେ ଏ ମହାପାପାତ୍ମକ ଘୃଣ୍ୟ ଆଦର୍ଶ କିପରି ଦେଖାଗଲା ? ଏହା ଅଳ୍ପଦିନ ମଧ୍ୟରେ ଦେଶ ଦେଶାନ୍ତରରୁ ବିଶେଷତଃ ଅନାର୍ଯ୍ୟ ରାଜ୍ୟରୁ ବିଶେଷତଃ ପଶ୍ଚିମ ପ୍ରାନ୍ତସ୍ଥ ଧର୍ମ(ଧର୍ମଦେବ ପ୍ରବର୍ତ୍ତ ଉଦିତ ହୋଇ ପଶ୍ଚିମରେ ବୁଡ଼ନ୍ତ)ବୁଡ଼ା ପ୍ରଦେଶ-ମାନଙ୍କରୁ ଆମଦାନି ହୋଇଅଛି । ମନୁଷ୍ୟ ଆଦର୍ଶର ଅନୁକରଣ କରିବାକୁ ଭାରି ଦୌଡ଼ ମାରିଥାଏ । ଏହି ହେତୁରୁ ଏ ପବିତ୍ର ଧର୍ମ, ଜ୍ଞାନ ଓ ବୈରାଗ୍ୟପୂତ ଭୂମିରେ ଏ ପାପାଦର୍ଶ ତେର ମୂଳ ସହିତ ଲାଗି ରହିଅଛି ।

ପର ସମ୍ପଦକୁ 'ବିଷକୁମ୍ଭ ପୟୋମୁଖ' ହୋଇ ଅପହରଣ କରିବାକୁ ହେଲେ ବିଦେଶୀକୁ ନିଜର ବଡ଼ିମା, ଗରିମାଦି ଉଚ୍ଚଭାବ ଦେଖାଇବା ସକାଶେ ଭାରି ଆଡ଼ମ୍ବରର ପ୍ରଦର୍ଶନୀ ଖୋଲି ଦେବାକୁ ହୋଇଥାଏ । ତଦ୍ୱାରା ନିରୀହ ସରଳ ସମାଜକୁ ପ୍ରତାରିତ, ପ୍ରଲୋଭିତ ଓ ବୃଥା ଆଶ୍ୱାସିତ ହେବା ସ୍ୱାଭାବିକ । ଏହିରୂପେ ସମାଗତ ବିଦେଶୀମାନେ ଆଡ଼ମ୍ବର ପୂର୍ଣ୍ଣ ବଡ଼ ବଡ଼ ଘର, ବହୁମୂଲ୍ୟର ପୋଷାକ-ପରିଚ୍ଛଦ ଏବଂ ଯାନବାହନ ଓ ଆସବାବ ଦେଖାଇ ଅର୍ଥାକର୍ଷଣର ନାନାବିଧ ଉପାୟମାନ କାର୍ଯ୍ୟରେ ପରିଣତ କରିବାକୁ ଲାଗିଲେ । ଏହି ଦୃଷ୍ଟିରେ ପରଦେଶରେ ପରଦେଶୀର ଅର୍ଥ ଅପହରଣ କରିବାକୁ ହେଲେ କେତେକ ଅର୍ଥୀୟ ଓ ସ୍ୱାର୍ଥୀୟ ଗୃହିମାନଙ୍କୁ ଆୟତ୍ତ କରି ତାଙ୍କ ସନ୍ତୋଷାର୍ଥ ଧୋବାମଣ୍ଡା, ଘୋଡ଼ା ଅଣ୍ଡା ଏବଂ ସବୁ ପ୍ରକାରର ଭଣ୍ଡା ଜିନିଷମାନ ପୁରସ୍କାର ଦେବାକୁ ହୋଇଥାଏ । ଏହିରୂପେ ଗୃହିମାନଙ୍କର ନବଯୁଗ ଉନ୍ନତି ଶବ୍ଦକୁ ସଙ୍ଗେ ଯେମିତି ଉପସ୍ଥିତ ହେଲା ଓ ପୁରସ୍କୃତ କଲା । ଏହା ସଙ୍ଗେ ସଙ୍ଗେ ଗୃହିଙ୍କର ସହିତ ଗୋଲାମୀ ଅମୃତ ରସାବଳୀ ଅଭେଦଭାବେ ମିଶିଗଲା । ସ୍ୱର୍ଗ ଓ ମର୍ତ୍ତ୍ୟକୁ ଏକ ଅଭେଦାଙ୍ଗ-ବିଶିଷ୍ଟ କରି ଗଢ଼ିଦେଲା । ସେହିଠାରୁ ସବୁପ୍ରକାରର ଆଡ଼ମ୍ବର ଜ୍ଞାନ, ବୈରାଗ୍ୟର ମାତୃଭୂମିକୁ ସମ୍ୟକ୍ ପ୍ରକାରରେ ସମାଚ୍ଛନ୍ନ କଲା । ତହିଁରୁ ଏ ସମୁଦାୟ ପାପମୟ ଆଡ଼ମ୍ବରପୂର୍ଣ୍ଣ ସମାବେଶ ଦ୍ୱାରା ଏହି ପବିତ୍ର ଭାରତ ଶୃଙ୍ଖଳାବଦ୍ଧ ହୋଇ ସବୁପ୍ରକାର ଦୁର୍ଦ୍ଦଶାଗ୍ରସ୍ତ ହୋଇ କଷ୍ଟଭୋଗ କରୁଅଛି । ଏକଆଡ଼େ ନିରୀହ ସରଳପ୍ରାଣ ଶ୍ରମଜୀବୀ

ଓ କୃଷିଜୀବୀ ପ୍ରଭୃତି ସମାଜର ସର୍ବନାଶ ଘଟୁଅଛି । ଅନ୍ୟପକ୍ଷରେ ଶୁଣିମାନଙ୍କର ଅର୍ଥାତ୍ କରବାଣ ଶୁଣି, ଗୋଲାମ ଶୁଣି, ଠକପ୍ରବଞ୍ଚକ ଶୁଣି ଓ ଶୁଣିଗୁରୁ ମହାଶୁଣି ଦଳର ବଡ଼ ବଡ଼ ଘର, ବଡ଼ ବଡ଼ ପୋଷାକ ଓ ଯାନାସବାଦି ଆଡ଼ମ୍ବର ବଢ଼ି ବଢ଼ି ଯାଉଅଛି । ବର୍ତ୍ତମାନ ଟିକିଏ ପଛ କଥା ପକାଇବାକୁ ହେଉ । ଏ ଆଡ଼ମ୍ବରାଦି ଅସୁର ସ୍ୱଭାବର ଲକ୍ଷଣ; ଦେବଭାବର ଲକ୍ଷଣ ମଧ୍ୟ ଉଲ୍ଲେଖ ହୋଇଅଛି । ଅସୁର ଭାବାପନ୍ନ ପାପର ପରିତ୍ୟାଗ ଏବଂ ଦେବଭାବଯୁକ୍ତ ପୁଣ୍ୟର ପ୍ରବେଶ ଏହି ସନ୍ଧି ସମୟର ଲକ୍ଷଣ ଓ ଅବସ୍ଥା ସଂସାରଯାକ ଦେଖା ଦେଇଥିବା ବିଷୟ ମଧ୍ୟ ଲେଖା ଯାଇଅଛି । ଏବେ ଏଇ ସନ୍ଧ୍ୟନ୍ତ ସ୍ଥାନରେ ଓ ସମୟରେ ଯଥାର୍ଥ କର୍ତ୍ତବ୍ୟ ପାଳନ କରିବା ବିଧେୟ ଅଟେ । ଆଉ ମୋହମୟ ଆଡ଼ମ୍ବରରେ ଓ ପର ପ୍ରଲୋଭନ ଅବସ୍ଥାରେ ବୁଡ଼ିରହିବା ବେଳ ଆଉ ନାହିଁ ।

ସାତ ସାଗର ପାର ହୋଇ ସାତ ସତୁରି ନଦୀ ଓ ପର୍ବତ ଲଙ୍ଘନ କରି ଦୁରନ୍ତ କଳି ତାମସୀ ପ୍ରବୃତ୍ତି ରୂପ ଅସୁର ରାବଣ, ମାୟା ସନ୍ନ୍ୟାସୀ ରୂପ ଧାରଣପୂର୍ବକ ସୀତା-ହରଣ ରୂପକ ଭିକ୍ଷାଥାଳ ସହିତ ପବିତ୍ର ଭାରତରେ ପ୍ରବେଶ କରିଶାନନ୍ତର ବୈକୁଣ୍ଠ-ଲକ୍ଷ୍ମୀରୂପିଣୀ ଭାରତଲକ୍ଷ୍ମୀ ଧର୍ମଜ୍ଞାନରୂପା ସୀତାଙ୍କୁ ହରଣ କରି ସାରିଲାଣି । ଏବେ ପୁଣି ସେହି ମାୟାମୃଗ ଦୃଶ୍ୟରେ ବିମୋହିତ ହେଲେ ନିଜର ଅସ୍ତିତ୍ୱ ରହିବା ସୁକଠିନ । ପୁଣି ଯେଉଁ ଆଡ଼ମ୍ବରପୂର୍ଣ୍ଣ ଦୃଶ୍ୟାଦି କଂସାକୁ ରୂପା, ପିତ୍ତଳକୁ ସୁନା, କାଚକୁ ମଣି-ମୁକ୍ତା-ହୀରକ ଏବଂ କେଜାଣି କଅଣ ଗୁଡ଼ାକୁ ପବିତ୍ର କାର୍ପାସ ବସ୍ତ୍ର ବୋଲି ଭ୍ରାନ୍ତ ଜନ୍ମାଇ ପ୍ରଲୋଭିତ ଓ ପ୍ରତାରିତ କରାଉଅଛି ସେହି ମାୟା-ମୃଗ ଦୃଶ୍ୟରେ ଆଉ ଆକୃଷ୍ଟ ହେବା ବଡ଼ ଭୁଲ । ଏହି ମାୟିକ ଦୃଶ୍ୟ ଭାରତରେ ଯୋଗ ହେବାରୁ ଏହି ଉଭୟ ସହଯୋଗକୁ ମଣି କାଞ୍ଚନ ବା କ୍ଷୀର ଶର୍କରା ସଂଯୋଗ ବୋଲି ବ୍ୟାବହାରିକ ଦୃଷ୍ଟିରେ ଏ ପର୍ଯ୍ୟନ୍ତ ଭ୍ରମ ସହିତ ବିଚାରିବାକୁ ହେଉଥିଲା । ଏବେ ଜ୍ଞାନଦୃଷ୍ଟିରେ ଅର୍ଥାତ୍ ତ୍ୟାଗ ବା ଅସହଯୋଗ ଧର୍ମଦୃଷ୍ଟିରେ ଦେଖିଲେ ଏହି ସଂଯୋଗ ଦଳିତ ଆବର୍ଜନା ପରି ଦେଖାଯିବ । ସୁତରାଂ ଏ ସହଯୋଗ ସର୍ବଥା ତ୍ୟାଜ୍ୟ ଅଟେ ।

ଏ ଦେଶର ସନାତନ ଧର୍ମ ପ୍ରଣାଳୀ ଏହି ଯେ ସାଧାରଣ ଇନ୍ଦ୍ରିୟ ଭୋଗାପ-ଭୋଗକୁ ଏବଂ ସଂସାର ମୋହକୁ ବାନ୍ତ୍ୟଶନ ବା କାକବିଷ୍ଠା ସମାନ ଜ୍ଞାନରେ ତ୍ୟାଗକରି ଶମଦମାଦି ସାଧନ ଆଶ୍ରୟପୂର୍ବକ ଆତ୍ମସମାଧି ଅଭ୍ୟାସ ବଳରେ ଆତ୍ମବ୍ରହ୍ମ ଅଭେଦ ଜ୍ଞାନଦ୍ୱାରା ଆତ୍ମଶୁଦ୍ଧି କରିବା ପରେ କୃତକୃତ୍ୟ ହେବାକୁ ହୁଏ । ଏପରି ଦେଶରେ ବିଦେଶଜାତ ମାୟିକ ବସ୍ତୁ ଦୃଶ୍ୟାଦିରେ ଅଥଚ ଅତିରିକ୍ତ ପରିମାଣରେ ବିମୋହିତ ହୋଇ କଷ୍ଟୋପାର୍ଜିତ ଧନ ସେହିଆଡ଼େ ଅଜାଡ଼ି ଦେବା ଦ୍ୱାରା ସ୍ୱୟଂ ନିରନ୍ନ ଓ ନିର୍ବସ୍ତ୍ର ହେବା କେଡ଼େ ଅନୁତାପ ଓ ମହାପାପର ବିଷୟ ନୁହେ ।

ଅତଏବ ଏସବୁ କଳ ତାମସୀ ପ୍ରବୃତ୍ତିପ୍ରସୂତ ମାୟିକ ଦୃଶ୍ୟରେ ବ୍ୟାମୋହ-ଗ୍ରସ୍ତମାନଙ୍କୁ ଏକାବେଳକେ ସର୍ବତୋଭାବେ ତ୍ୟାଗକରି ଆତ୍ମଶୁଦ୍ଧି ନିମିତ୍ତ ଆତ୍ମନିର୍ଭରଶୀଳ ଓ ସନ୍ତୁଷ୍ଟ ହୋଇ କର୍ତ୍ତବ୍ୟାବଧାରଣ କରିବା ବିଧେୟ । ନିଜଦ୍ୱାରା ବା ଆତ୍ମୀୟ ପରିବାରଦ୍ୱାରା ଅଥବା ସ୍ୱଗ୍ରାମୀୟ ଏବଂ ଅଞ୍ଚଳୀୟ ସ୍ୱଦେଶସ୍ଥ ଲୋକମାନଙ୍କଦ୍ୱାରା ସ୍ୱଦେଶଜାତ-ପ୍ରସ୍ତୁତ ଦ୍ରବ୍ୟାଦି ବ୍ୟବହାରୀୟ ବସ୍ତୁରୂପେ ପରିଣତ କରିବା ଉଚିତ । ଏଥିରେ ଅର୍ଥର ଅପଚୟ ଘଟିପାରିବ ନାହିଁ । ଦେଶର ଓ ସମାଜର ଅର୍ଥ ଏକ ସ୍ଥାନରେ ରହିଯିବ । ସୀମା ପାରହୋଇ ପାରିବ ନାହିଁ । ଅଥଚ ଏକ ପ୍ରକାର ପରିମିତ ବ୍ୟୟରେ ଓ ଏକ ପ୍ରକାର ଏକ ଜାତୀୟ ଦ୍ରବ୍ୟାଦିରେ ସମସ୍ତଙ୍କୁ ସମଭାବରେ ରହି ଚଳିବାକୁ ହେବ । ମୋହ, ଆଡ଼ମ୍ବରାଦିର ମାୟିକ ବିଶେଷତ୍ୱ ଲୋପ ପାଇଯିବ । ଧନୀର ଧନବୃଦ୍ଧି ଚେଷ୍ଟା ଓ ଗରିବର ଅଭାବ ରହିବ ନାହିଁ । ଆଉ ମଧ୍ୟ କୌଣସି ପକ୍ଷକୁ ଧନଚିନ୍ତା ବ୍ୟାକୁଳ କରିପାରିବ ନାହିଁ । ପରସ୍ପର ସହାନୁଭୂତି, ସମତା ଓ ମୈତ୍ରୀ ପ୍ରତିଷ୍ଠିତ ହେବ । ଯେଉଁ ଦୁର୍ଲଭ ନିତ୍ୟଧର୍ମ ଏ ଦେଶ ପକ୍ଷରେ ସୁଲଭ, ତାହା ବର୍ତ୍ତମାନ ଭାରତର ସର୍ବଭାବରେ ବିକଶିତ, ସୁଶୋଭିତ, ସୁବାସିତ, ମନୋରମ ଶ୍ୱେତ କମଳାବଳୀରୂପେ ଜାଜ୍ୱଲ୍ୟମାନ ହେଉଅଛି ଓ ହେଉଥିବ । ବର୍ତ୍ତମାନ କଳ ପାପପଙ୍କର ପରିମାଣ ଭାରତରେ ତାଳବୃକ୍ଷାରୁ କୁତ୍ସିତ ଆଦର୍ଶ ଓ ଅନୁକରଣଦ୍ୱାରା ବଳି ପଡ଼ିଲାଣି । ଏହାର ତ୍ୟାଗ ସର୍ବଥା କର୍ତ୍ତବ୍ୟ ।

ଏହି ପାପମୟ ସ୍ୱେଚ୍ଛାଚାରିତା ଓ ଆତ୍ମମ୍ଭରିତାର ଆଦର୍ଶ ଟିକିଏ ଆହୁରି ଦେଖାଯାଉ । ଏହି ଭାରତ ସନ୍ତାନ ମଧ୍ୟରୁ କାହାକୁ କାହାକୁ ଦୈନିକ କୋଡ଼ିଏ ତିରିଶ ଟଙ୍କାର ବିଦେଶୀନିର୍ମିତ କାଳକୂଟୋପମ ମଦ୍ୟପାନ କରିବାକୁ ହୋଇଥାଏ । ଏହାର ଉପଯୋଗୀ ଖାଦ୍ୟ ସେହିପରି ଦଶ କି ପନ୍ଦର କି କୋଡ଼ିଏ ଟଙ୍କା ଧରାଯାଇପାରେ । ଏହିପରି ଜଣକର ଦୈନିକ ଅଖାଦ୍ୟ-ଖାଦ୍ୟ, ଅପେୟ-ପେୟ ପାନାଦିରେ ଅର୍ଦ୍ଧଶତ ମୁଦ୍ରା ଚାଲିଗଲା । ଏହି ଆଦର୍ଶ ଦୀକ୍ଷାଗୁରୁଙ୍କ କଥା ଶୁଣିବାକୁ ହେଲେ ଜଣାଯିବ ଯେ ଏମାନେ ସାକ୍ଷାତ କଳିଦାନବ ଓ ଦାନବେନ୍ଦ୍ର ମହାସୁର ଅଟନ୍ତି । ଏମାନଙ୍କ ମଧ୍ୟରେ କେହି କେହି ଜଣେ ଜଣେ ଦିନକରେ ଅର୍ଦ୍ଧଶତ ବା ତତୋଧିକ ମୁଦ୍ରାର ମଦ୍ୟ ଅଥଚ ସେହି ପରିମିତ ନାନା ଦେଶ ବିଦେଶର ପଶୁପକ୍ଷୀ ବିଶେଷର ହାଡ଼, ଗୋଡ଼, ଚର୍ମ, ମାଂସ ଓ ଚର୍ବି ପ୍ରଭୃତି ଦ୍ୱାରା ନିର୍ମିତ ଆହାର ଉଦରସ୍ଥ କରି ପାପଦଗ୍ଧ ଶରୀରକୁ ପରିତୋଷ କରନ୍ତି । ଏହାର ତୁଳନାରେ ଏ ଦେଶର ଲୋକ ଦୈନିକ ଗୋଟିଅଣା କିମ୍ବା ଆଠଅଣାର ଖାଦ୍ୟପେୟର ବ୍ୟୟ ନିର୍ବାହ କରିବା ସ୍ଥଳେ ଏଭଳି କେତେଜଣ ଲୋକର ବ୍ୟୟ ଯେଭଳି ଜଣେ ଦିନକରେ କରୁଅଛି । ଆଜିକାଲି ଅଙ୍କ ବିଦ୍ୟାରେ ବଡ଼ ବଡ଼ ଉପାଧି ସହିତ ଅନେକେ ତ ଉତ୍ତୀର୍ଣ୍ଣ ହେଉଅଛନ୍ତି । ବୋଧହୁଏ ଏହିସବୁ ହିସାବ ଠିକ୍ କରି ଆଦର୍ଶ ଦୀକ୍ଷାଗୁରୁଙ୍କ ପୂଜନ, ଅଭିବାଦନ ଓ ଅଭିନନ୍ଦନରେ ମାତିବା ତହିଁର ସାର୍ଥକତା ପ୍ରମାଣିତ କରୁଅଛି । ବୁଝାଯାଏ ଏ ନରମହାବଳଶ୍ରେଣୀୟ ଏକ ଲୋକ, ଦିନକରେ ଏ

ଦେଶୀୟ ସରଳ, ନିସ୍ୱାଦ ସାଧାରଣ ମନୁଷ୍ୟଶ୍ରେଣୀର ଅନ୍ତ କମ୍‌ରେ ଏକଶତ, ଦେଢ଼ଶତ କିମ୍ବା ଦୁଇଶତ ଲୋକର ଖାଦ୍ୟ ମାରିଦେଉଅଛୁ । ଘରର ମୂଲ୍ୟ ତ ଲକ୍ଷ ଲକ୍ଷ, କୋଟି କୋଟି ସଂଖ୍ୟାରୁ ଅତିରିକ୍ତ ହେଉଅଛୁ । ଲୁଗା ସମ୍ପର୍କୀୟ ପୋଷାକ ପରିଚ୍ଛଦର ମୂଲ୍ୟ ଶତ, ଶତ କିମ୍ବା ସହସ୍ର ସହସ୍ର ଓ ଲକ୍ଷ ଲକ୍ଷ ମୂଲ୍ୟରେ ଲକ୍ଷିତ ହେଉଅଛୁ । ବାକି ବିଳାସିତାଦିରେ କେତେ ଯେ ଯାଉଅଛୁ ତାହାର ପରିମାଣ କରିବା ସହଜସାଧ୍ୟ ନୁହେ । ଏସବୁ ମୋଟ କଲେ ବୋଧହୁଏ ଏ ଦେଶର ସହସ୍ରାଧିକ ଲୋକର ବ୍ୟୟ ଗୋଟିଏ କଳ-ଦୂତକୁ ନଅଣ୍ଟ । ତେବେ ଏହି ଆଦର୍ଶ ଓ ଘିକ୍ଷାର ଆଦର୍ଶୀ ଓ ଘିକ୍ଷୁ-ଜ୍ଞାନ-ଚକ୍ଷୁରେ ବୁଭୁକ୍ଷୁ ଦେଶର ଲୋକ ପକ୍ଷରେ ନବଗ୍ରହ, ଉପଗ୍ରହ ଓ ଧୂମକେତୁାଦିର ସୃଷ୍ଟିସମଷ୍ଟି ଏକାଙ୍ଗ-ବଶିଷ୍ଟ-ଅପଗ୍ରହ ମୂର୍ତ୍ତିର ଜ୍ୟେଷ୍ଠ ସହୋଦର ବୋଲି ବିବେଚିତ ହେବ, ନା ଏଥିରୁ ଆଉ ଅଧିକ କିଛି କୁହାଯାଇ ପାରେ ? ତେବେ ଏଥିରୁ କିଛି ଊଣା ହୋଇ ନ ପାରେ, ଏହା ସୁନିଶ୍ଚିତ ଅଟେ । ଏବେ ଏହି ଆଦର୍ଶ ଓ ଘିକ୍ଷାଦି ତ୍ୟାଗର ଯେଉଁ ସ୍ୱର୍ଗୀୟ ଘୋଷଣା ବାଣୀ ସଂସାରର ଏକ ସ୍ଥାନରୁ ବାହାରି ସର୍ବତ୍ର ପ୍ରଚରିତ ହେଲାଣି ଓ ହେଉଅଛୁ, ଏବଂ ପ୍ରତ୍ୟେକର ପଞ୍ଚେ ପଞ୍ଚେ ପ୍ରତିଷ୍ଠିତ ହୋଇ କର୍ତ୍ତବ୍ୟ ଧର୍ମଜ୍ଞାନରେ କାର୍ଯ୍ୟରେ ପରିଣତ ହେଲାଣି ଓ ହେଉଅଛୁ, ତାହା ପ୍ରକୃତି ଗର୍ଭରୁ ଅନନ୍ତ ମୁଖରେ ନିନାଦିତ ହେଉଅଛୁ । ଆଉ ମଧ୍ୟ ଅସଂଖ୍ୟ ଅସଂଖ୍ୟ ଦେହରେ, ଅସଂଖ୍ୟ ଅସଂଖ୍ୟ କର୍ମେନ୍ଦ୍ରିୟରେ ନିନାଦ କରାଯାଉଅଛୁ । ଏହା ବିଶ୍ୱନିୟନ୍ତାଙ୍କର ପ୍ରତ୍ୟକ୍ଷ ଆଦେଶ ଓ ପ୍ରବର୍ତ୍ତନା ରୂପେ ପ୍ରବର୍ତ୍ତି ଯାଉଅଛୁ । ଏହା ସତ୍ୟର ପରମ ସତ୍ୟ ଅଟେ । ଶୀତ ଋତୁ ହେଲେ ସମସ୍ତେ ବାଧ୍ୟ ହୋଇ ଶୈତ୍ୟ ଭୋଗ କରନ୍ତି, ଏବଂ ଦିନ ହେଲେ ସମସ୍ତେ ଦେଖିବାକୁ କ୍ଷମ ହୁଅନ୍ତି, ମାତ୍ର ହେ ପେଚକବର୍ଗ ! ତୁମ୍ଭେ କାନ୍ଦିଲେ ସୁଦ୍ଧା କିଛି ଫଳ ମିଳିବ ନାହିଁ, ପୁଣି ତୋତେ ଅନ୍ତ୍ୟଜ ଶବରମାନେ ଧରିନେବେ । ଟିକିଏ ପୂର୍ବେ ତୋହର କୁତ୍ସିତ ରବ ଯାହା ଅମଙ୍ଗଳସୂଚକ ବୋଲି ସୂଚିତ ହେଉଥିଲା, ତାହା ଏବେ ଦିନ ହେଲାରୁ ଜଣାଗଲା । ତୋହର ନିଜର ଅମଙ୍ଗଳ ନିମିତ୍ତ ଯେ ଗାତ ଖୋଳେ ବିଧାତାର ବିଧି ନିର୍ବନ୍ଧରାଜ୍ୟରେ ସେହି ଗାତରେ ଆପେ ନିଜେ ପଡ଼ି ମରେ । ଏ ସଂସାର ଅହଂକାରୀର ନୁହେ କିମ୍ବା ସ୍ୱାର୍ଥାନ୍ଧ, ଆତ୍ମମ୍ଭରୀ, ବିଳାସୀ, ପରମାରୁ ଓ ପରସ୍ୱାପହାରୀ ପ୍ରଭୃତି କାହାରି ନୁହେ । ଏହା ପରମେଶ୍ୱରଙ୍କର; ଏବଂ ତଦୀୟ ପବିତ୍ର ବିଧାନ ମୂର୍ତ୍ତିସ୍ୱରୂପ ଧର୍ମ, ଜ୍ଞାନ, ସତ୍ୟ, ନ୍ୟାୟ, ଦୟା, କ୍ଷମା, ପରୋପକାର ଓ ବୈଧ ବିଧି ବ୍ୟବସ୍ଥା ଓ ନିୟମାଦିର କ୍ରୀଡ଼ାଭୂମି ସ୍ୱରୂପ ଅଟେ ବୋଲି ତାଙ୍କରଦ୍ୱାରା ନିର୍ଦ୍ଦିଷ୍ଟ କରାଯାଇଅଛୁ । ଏବେ ଆତ୍ମଦର୍ଶନ ଓ ଆତ୍ମଜ୍ଞାନ ସ୍ମରଣ କରି ଏହି ପରିଦୃଶ୍ୟମାନ ପ୍ରକୃତି ଦେବୀର ମୂର୍ତ୍ତି ଦର୍ଶନ ଓ ନିଜ ଦେହର ଶିକ୍ଷାଣୁରୁ ଉପଲବ୍ଧି କରି ପୂର୍ବକ ପାପାଦର୍ଶ ଓ ପାପଶିକ୍ଷାକୁ ସମୂଳେ ତ୍ୟାଗ କରିବା ଧର୍ମତଃ କରଣୀୟ ଅଟେ । ଏହି ଜ୍ଞାନାଲୋକ ବେଳରେ ନର-ପେଚକ ହୋଇ ରହିଥିବା ଅଜ୍ଞାନ ମୂଢ଼ତାର ପରିଚୟ ଅଟେ ।

ଏବେ ଦେଖାଗଲା, ଯେଉଁ କର୍ମ ଓ ଭୋଗ ନିଜର ଓ ଅନ୍ୟର ମଙ୍ଗଳଜନକ, ସେହିଭଳି କର୍ମ ଓ ଭୋଗ କରଣୀୟ, ଅଥବା ପକ୍ଷେ ନିଜର ମଙ୍ଗଳଦାୟୀ କେବଳ ହୋଇ ପଛକେ ଅନ୍ୟର କଷ୍ଟନାଦାୟୀ ଯେପରି ନ ହୁଏ, ସେଭଳି କର୍ମ ଓ ଭୋଗ କରଣୀୟ ଅଟେ । ଆଉ ଯାହା ନିଜର ମଙ୍ଗଳ ଓ ଅନ୍ୟ ପକ୍ଷରେ ଅମଙ୍ଗଳ ଓ ଉଭୟ ପକ୍ଷରେ ନିଷିଦ୍ଧ ତାହା ଏକାନ୍ତ ତ୍ୟାଜ୍ୟ ଅଟେ । ଏପରି ଦ୍ରୋହ-ବର୍ଜିତ-ଶାନ୍ତ-ପ୍ରଦ କର୍ମ ଏବଂ ଭୋଗ ମନୁଷ୍ୟପଦବାଚ୍ୟ ମାନବର କର୍ତ୍ତବ୍ୟ ଅଟେ । ଏଥିର ଫଳ ଓ ଏହାର ବିପରୀତ ଭାବାତ୍ମକ କର୍ମ ଏବଂ ଭୋଗର ଫଳ ବର୍ଣ୍ଣନା କରାଯାଇଅଛି । ଅତଏବ ନିଜର ଓ ସଂସାରର ହିତଦାୟକ ଅଥଚ ପରମେଶ୍ୱର ପ୍ରକୃତିର ଆଦିଷ୍ଟ ଓ ଉପଦିଷ୍ଟ କର୍ମ ଏବଂ ଭୋଗ ମନୁଷ୍ୟର ସର୍ବଥା ପାଳନୀୟ ଅଟେ । ଏହି ନୀତି ଯେ ତ୍ୟାଗ ଏବଂ ସତ୍ୟ, ଜ୍ଞାନ, ଧର୍ମାଦି ଉପରେ ପ୍ରତିଷ୍ଠିତ, ଏହା ସଂପୂର୍ଣ୍ଣ ବୁଝି ରଖିବା ଉଚିତ । ବର୍ତ୍ତମାନ ପ୍ରଚଳିତ ଶିକ୍ଷା, ଦୀକ୍ଷା, ଆଦର୍ଶ, ଅନୁକରଣ ଏବଂ ବ୍ୟବସ୍ଥା ବିଗୁଡ଼ି ଯେ ଧର୍ମ ଓ ନ୍ୟାୟାଦିର ଅଧିକାଂଶ ପରିମାଣରେ ବିପରୀତ, ତାହା ମଧ୍ୟ ବୁଝି ହୃଦୟଙ୍ଗମ କରିବା ବିଧେୟ ଅଟେ ।

ଏସବୁ ବିବେଚନା କଲେ ସ୍ଥିର କରାଯିବା ଉଚିତ ଯେ ଯାହା ଅକରଣୀୟ ଏବଂ ଅକର୍ତ୍ତବ୍ୟ ହୋଇ ନିଶ୍ଚୟ କରାଯାଇପାରେ, ତାହା ତ୍ୟାଗ କରିବା ବା ତହିଁ ସଙ୍ଗେ ଅସହଯୋଗ କରିବା ଧର୍ମତଃ ଏବଂ ନ୍ୟାୟତଃ କର୍ତ୍ତବ୍ୟ ଅଟେ । ଧର୍ମ ଓ ନ୍ୟାୟ ଲଙ୍ଘନ କରି ପଶୁତୁଲ୍ୟ ପାପ ଜୀବନ ଧାରଣ କରିବା ମନୁଷ୍ୟ ପକ୍ଷରେ ନିତାନ୍ତ ଲଜ୍ଜାକର ଓ ନିନ୍ଦାଜନକ ଅଟେ, ଆଉ ମଧ୍ୟ ଅମଙ୍ଗଳ ଓ କଷ୍ଟଦାୟକ ଅଟେ । ହେ ମାନବମାନେ ! ଅନୁଗ୍ରହ କରି ନ୍ୟାୟ ଅବଲମ୍ବନ କରିବା ତୁମ୍ଭର ଧର୍ମ ଓ କର୍ମ । ଏହା 'ନୀତି', ତୁମ୍ଭଙ୍କୁ ପ୍ରାର୍ଥନା କିମ୍ବା ଆରାଧନା କରୁନାହିଁ । ପରମେଶ୍ୱର ପ୍ରକୃତି ରାଜ୍ୟରେ ଅନ୍ୟାୟ ଦୃପ ଈଶ୍ୱରାଜ୍ଞା-ନିଷିଦ୍ଧ ଏବଂ ପ୍ରକୃତି ଯେ ତାହା ସକାଶେ କଠିନ ନିର୍ଗହ ଆଗରେ ରଖିଦେଇ-ଅଛି, ତାହା ବୁଝି ହୃଦୟଙ୍ଗମ କରିବା ସର୍ବସମ୍ମତିକ୍ରମେ ଏବଂ ସର୍ବତୋଭାବେ କର୍ତ୍ତବ୍ୟ ଅଟେ ।

ଯାହାହେଉ ଏକାବେଳକେ ମନ୍ଦର ତ୍ୟାଗ ଟିକିଏ କଷ୍ଟକର ବୋଲି ମନ୍ଦାଭ୍ୟାସୀ ନିଜର କାପୁରୁଷତା ସାହାଯ୍ୟରେ କହିପାରେ । ଦେଖାଯାଉ ଯେଉଁ ଲୋକ ବହୁଦିନରୁ ମଦ୍ୟ ଅହିଫେନ ପ୍ରଭୃତି ନିଶାଦ୍ରବ୍ୟ ସେବନ କରି ରକ୍ତମାଂସକୁ ବିଷରେ ପରିଣତ କରାଇ ସାରିଲାଣି, ସେ ଆଜି ତ୍ୟାଗ ଧର୍ମର ନାମ ଶୁଣିବା ମାତ୍ରକେ ତାହା ତ୍ୟାଗ କଲେ ତାହାର କଷ୍ଟ ବୋଧ ହୋଇପାରେ । ଆଉ ମଧ୍ୟ ବହୁଦିନର ପୁରୁଣା ପାପୀ, ମିଥ୍ୟା-କପଟ-ଜାଲ୍, ଫେସାଦ୍, ଦଗାବାଜି, ଚୌର୍ଯ୍ୟ ଓ ଜବରଦସ୍ତି ଇତ୍ୟାଦି ଦ୍ୱାରା ଯେ ବିପୁଳ ଅର୍ଥାଗମର ପନ୍ଥା ଫିଟାଇ ଦେଇ ବସି ବକ ମାଛକୁ ଲକ୍ଷ୍ୟ କରି ରହିଲାପରି ରହିଁ ରହିଅଛି, ସେ କିପରି ହଠାତ୍ ତହିଁରୁ ନିବର୍ତ୍ତି ପାରିବ ? ଅଭ୍ୟାସ ଯେ ସ୍ୱଭାବରେ ପରିଣତ ହୁଏ ତାହା ଭଲ ହେଉ ବା ମନ୍ଦ ହେଉ, ସ୍ୱଭାବକୁ ଅତିକ୍ରମ କରିବା ସହଜ ନୁହେଁ । ମାତ୍ର ଠିକ୍

ବୁଝିବା ଦ୍ୱାରା ମନୁଷ୍ୟର ଯଦି ସତ୍ୟଜ୍ଞାନ ପ୍ରତି ବିଶ୍ୱାସ ସ୍ଥାପିତ ହେବ, ତେବେ ସେ ମରୁ ବା ସରୁ କିମ୍ବା ତାହାର ଶତ ଅନିଷ୍ଟ ହେଉ ପଛକେ, ଜ୍ଞାନର ଏତିକି ବଡ଼ ମାହାତ୍ମ୍ୟ ଓ ସାମର୍ଥ୍ୟ ଅଛି ଯେ, ତଦ୍ୱାରା ସବୁ ଆଡ଼େଇଯିବ । ସୁତରାଂ ଜ୍ଞାନ ସଂପାଦନ ଏକାନ୍ତ ସହାୟ, ଜ୍ଞାନର ସହାୟତା ଅବଲମ୍ବନ କଲେ ଜ୍ଞାନ ଓ ଦୟାର ସାଗର ସ୍ୱରୂପ ପ୍ରଭୁ ପରମେଶ୍ୱର ସେହି ଜ୍ଞାନ ସହାୟତା ସଙ୍ଗରେ ସ୍ୱୟଂ ସାହାଯ୍ୟ କରନ୍ତି । ଏହା ତାହାଙ୍କର ଧର୍ମ । ପ୍ରକୃତି ମଧ୍ୟ ଅନୁକୂଳ ହୁଏ । ଏହା ପ୍ରକୃତିର ଗୁଣ, ଏହା ସତ୍ୟର ପରମ ସତ୍ୟ । ଅବିଶ୍ୱାସ, ଅଜ୍ଞାନ, ଅକର୍ତ୍ତବ୍ୟ ପରି ଶତ୍ରୁ ମନୁଷ୍ୟର ଦ୍ୱିତୀୟ ନାହିଁ । ସଂସାର କାହାର ଅଧୀନ ନୁହେଁ, କି ଅବିଶ୍ୱାସ, ଅଜ୍ଞାନ, ଅଧର୍ମ ଅକର୍ତ୍ତବ୍ୟପୂର୍ଣ୍ଣ ମନ୍ଦଚିରାଭ୍ୟାସର ଅଧୀନ ନୁହେ । ମାତ୍ର ଦେଖାଯାଉଅଛି ଯେ କାଳ ପରିବର୍ତ୍ତନ, ମତି ପରିବର୍ତ୍ତନ କିମ୍ବା ପ୍ରକୃତିର ପରିବର୍ତ୍ତନ ଉପରେ ଅଥବା ଦୈବୀ ସଂଘଟିତ ପରିବର୍ତ୍ତନ ଉପରେ କାହାର ବଳ ନାହିଁ ।

ମନୁଷ୍ୟର ଦୈହିକ ପରିବର୍ତ୍ତନକୁ କି ପେଟର କୃମି କୀଟାଣୁ ବାଧା ଦେଇପାରେ ? ଏହିଭଳି ଅଭାବ୍ୟ, ଅଚିନ୍ତ୍ୟ, ଅକଥ୍ୟ ଓ ଅସମ୍ଭାବ୍ୟ ପରିବର୍ତ୍ତନ ସଂସାରକୁ ବହୁ ପରିମାଣରେ ଘେରି ରହିଅଛି, ଯହିଁରେ ମନୁଷ୍ୟର ବ୍ୟକ୍ତିଗତ କିମ୍ବା ସମବାୟ ଚେଷ୍ଟା କିଛି କରି ପାରୁନାହିଁ । ତେବେ ଏହି ବଳୀ ଦୈବ ସଂଯୋଜିତ ଘଟନାଚକ୍ର ଆବର୍ତ୍ତନଦ୍ୱାରା ଯଦି ମନ୍ଦକର୍ମକୁ, ମନ୍ଦଭୋଗକୁ, ମନ୍ଦବସ୍ତୁର ଚିନ୍ତାଦିକୁ ତ୍ୟାଗ ନ କଲେ ରକ୍ଷା ହେବ ନାହିଁ ବୋଲି ମନୁଷ୍ୟ ଆଖିରେ ଦେଖିବ, ବୁଝିବ ଓ ଭାବିବ, ତେବେ ତାହାକୁ ଅଗତ୍ୟା ମନ୍ଦର ତ୍ୟାଗ ଧର୍ମ ଅବଲମ୍ବନ କରିବାକୁ ହେବ । ନୋହିଲେ ପତଙ୍ଗ ଅଗ୍ନିରେ ପଡ଼ି ପୋଡ଼ି ଗଲାପରି ତାହାର ଅବସ୍ଥା ଘଟିବ, ଏଥିରେ ସନ୍ଦେହ ନାହିଁ । ମନୁଷ୍ୟ ଚିରାଭ୍ୟସ୍ତ ସ୍ୱଭାବ ସୀମାରେ ଆବଦ୍ଧ ରହି ମନେ କରିଥାଏ, ଯାହା ଦୈବାତ୍ ସଂସାରକୁ ଘଟିବ, ତହିଁରେ ସମସ୍ତେ ଯେପରି ଭୁକ୍ତଭୋଗୀ ହେବେ, ସେ ମଧ୍ୟ ସେହିପରି ଭୁକ୍ତଭୋଗୀ ହେବ । ସେଥିପାଇଁ ସେ କାହିଁକି ପୂର୍ବ ମୁହୂର୍ତ୍ତରୁ ଅଭ୍ୟାସାଧୀନ ସୁଖକୁ ବିସର୍ଜନ କରିବ ? ହଠାତ୍ ମୃତ୍ୟୁ ଘଟିପାରେ, ବା ଯାହା ତାହା ହୋଇପାରେ । ଏହା ବୋଲି ଉପସ୍ଥିତ ସୁଖକୁ ତ୍ୟାଗ କରିବା ବାତୁଳତା ଭିନ୍ନ ଆଉ କିଛି ହୋଇ ନ ପାରେ । ଟଙ୍କାଥଳି ଅଣ୍ଟାରେ ବାନ୍ଧି ରଖି କେତେକ ଲୋକଙ୍କୁ ମୃତ ଅବସ୍ଥାରେ ପଡ଼ି ରହିଥିବାର ଦେଖାଯାଏ । ତେବେ ଆର୍ଥିକ ସୁଖ ଇଚ୍ଛା ସହଜରେ ପରିମିତ ସୀମାକୁ ଆସିବା ଦୁଃସାଧ୍ୟ । ଏହା ଏକ ଦୁରତିକ୍ରମଣୀୟ ମୋହ ।

ଆତ୍ମା, ଅଜ୍ଞାନଦ୍ୱାରା ସର୍ବଦା ପରାଧୀନ, ଅର୍ଥାତ୍ ମୋହଗର୍ଭିକ ଇନ୍ଦ୍ରିୟ ସଂସ୍କାର ସୁଖର ଅଧୀନ ଏବଂ ଇନ୍ଦ୍ରିୟଶାସିତ ଦେହର ଅଧୀନ । ଏହିରୂପେ ଆତ୍ମଦେବ ସ୍ୱାଧୀନତା-ରତ୍ନ ହରାଇ ବିଶେଷରେ ତାହାକୁ ସମ୍ପୂର୍ଣ୍ଣ ବିସ୍ମରଣ କରି ଅଜ୍ଞାନ ମୋହାଦିର ଅଧୀନତା ଏବଂ ତହିଁରୁ ଇନ୍ଦ୍ରିୟ ସୁଖ ସମ୍ଭୋଗାଦିର ଅଧୀନତା, ପୁଣି ତହିଁରୁ ପାଞ୍ଚ-ଭୌତିକ ଦେହର ଅଧୀନତା, ତହିଁରୁ ଜାଗତିକ ମୃଣ୍ମୟ ବସ୍ତୁର ଅଧୀନତାଦିକୁ

ବରଣ କରି ଭୌତିକ ଦାସତ୍ୱର ଦାସାନୁଦାସତ୍ୱ ସ୍ୱୀକାର କରୁଅଛନ୍ତି । ଏହି ହେତୁରୁ ଇନ୍ଦ୍ରିୟବେଗ ବଡ଼ ପୁରୁଷାର୍ଥ ସାଧକ ହୋଇଅଛି । ଆତ୍ମା ଆତ୍ମଜ୍ଞାନଦ୍ୱାରା ଆତ୍ମ-ସ୍ୱାଧୀନତା ଲାଭ କଲେ ସିନା ସେ ନିଜବୋଧରୂପ ବିଶିଷ୍ଟ ଆତ୍ମା ; ତଦଭାବେ ବ୍ରହ୍ମର୍ଷି ଚଣ୍ଡାଳର ଅଧୀନ ହେଲାପରି, ରାଜା ଶବରର ଦାସ ହେଲାପରି, ଆତ୍ମଦେବ ଜଡ଼-ଦେହର ଅଜଡ଼ୀୟ ସାମଗ୍ରୀର ଦାସ ହୋଇଅଛନ୍ତି । ଯଥାର୍ଥ ଜ୍ଞାନ ଆତ୍ମାର ଏକମାତ୍ର ନିତ୍ୟ ସମ୍ବଳ । ପୂର୍ବବର୍ଣ୍ଣିତ ଆତ୍ମସଂବାଦରୁ ଆତ୍ମଦର୍ଶନ ଲାଭକରି ସଂସାରରେ କର୍ତ୍ତବ୍ୟ-ପଥରେ ଚାଳିତ ହେବା ଆତ୍ମାର ସ୍ୱଭାବସିଦ୍ଧ ଧର୍ମ । ଏବେ ସେହି ଧର୍ମାଲୋକ ଉଦୟ ହେବାର ଲକ୍ଷଣ ଦେଖାଗଲାଣି । ଏହା ମଧ୍ୟ ଆଲୋଚିତ ହୋଇଅଛି । ସୁତରାଂ ମୋହ, ନିଦ୍ରା, ଆଳସ୍ୟ ପରିହାର ପୂର୍ବକ ବର୍ତ୍ତମାନ ପୂର୍ବକ୍ଷଣରୁ ସାବଧାନ ହେବା ଉଚିତ । ନ ହେଲେ ଛାଗଳ ପରି ଦୁର୍ଦ୍ଦଶା ପ୍ରାପ୍ତ ହେବ ।

ଛାଗଳକୁ ପଶୁପ୍ରୋକ୍ଷଣ ମନ୍ତ୍ର ଦିଆଗଲାପରେ ଭଲ ସରୁ ଉଆଁଗୁଡ଼ିକ, କଅଁଳଦୁବ ଓ ବରକୋଳି ପତ୍ର ଖାଇବାକୁ ଦିଆଯାଏ । ଛାଗଳ ଆସନ୍ନ ମୃତ୍ୟୁକୁ ନ ଭାବି, ନ ଦେଖି, ବଡ଼ ସୁଖରେ ତାହାକୁ ଖାଉ ଖାଉ ତହିଁରୁ କିଛି ପେଟ ଭିତରେ, କିଛି ପାଟିରେ ଅର୍ଦ୍ଧଚର୍ବିତ ଅବସ୍ଥାରେ ଆଉ ଅକ୍ଷତଭାବରେ ମୁହଁ ଆଗକୁ ବାହାରି ଦିଶୁ ଥାଉ ଥାଉ ମୁଣ୍ଡଗଣ୍ଡି ଅଲଗା ଅଲଗା ହୋଇଯାଏ । ଏବେ ଅନ୍ଧ ବିଷୟବିଷ-କୂପ-ମଗ୍ନ-ପ୍ରାଣୀ ସେହିଠାରୁ ସେହିପରି ସଂସାରଗତିର ଲକ୍ଷଣ ଦେଖି ଦେଖି ନ ଦେଖିଲା ପରି ଜାଣି ବୁଝି ବୁଝି ନ ଜାଣି ନ ବୁଝିଲାପରି ମୋହନିଦ୍ରାରେ ମୃତବତ୍ ପଡ଼ିରହିବା ଉଚିତ ନୁହେଁ । ଏ ସମ୍ବନ୍ଧେ ପ୍ରତ୍ୟକ୍ଷଭାବେ ଅନେକ ଆଲୋଚନା କରାଯାଇଅଛି ।

ବର୍ତ୍ତମାନ ଆତ୍ମନିର୍ଭରଶୀଳ ହୋଇ ଧୈର୍ଯ୍ୟ ଓ ସହିଷ୍ଣୁତା ଅବଲମ୍ବନ ପୂର୍ବକ ଶମ, ଦମ ଓ ତ୍ୟାଗବ୍ରତ ଧାରଣ କରି, ପରିମିତ ଭାବେ ସଂସାରଯାତ୍ରା ଯଥାବିଧି ନିର୍ବାହ କରିବାକୁ ହେବ । ବିଶେଷ ପ୍ରକାରେ ଅଧିକାଂଶ ସମୟ ଜ୍ଞାନ, ଧର୍ମ, ସତ୍ୟ ଇତ୍ୟାଦି ସତ୍ସାଧନରେ ଆତ୍ମନିୟୋଗ କରିବାକୁ ହେବ । ପରୋପକାର ମହା କର୍ତ୍ତବ୍ୟ । ପରନିର୍ଭର-ଶୀଳତା, କୁତ୍ସିତ ସଂସ୍କାର, କଦର୍ଯ୍ୟ ଶିକ୍ଷା ଓ ପାପାଦି ସେବା ଏବଂ ଏକାନ୍ତ ଅର୍ଥଗୃଧ୍ନୁ-ତାର ଭାବ ଯହିଁରେ ପରିପୂର୍ଣ୍ଣ ତଦ୍ରୂପ ଘୃଣିତ ସେବା ଓ ଦାସତ୍ୱ ସର୍ବଥା ପରିତ୍ୟାଜ୍ୟ । ମହାରୋଗୀ ଅପଥ୍ୟ ପରିତ୍ୟାଗ କରି ଉପାଦେୟ ଔଷଧ ଓ ପଥ୍ୟାଦିର ବ୍ୟବସ୍ଥାଧୀନ ରହିଲେ ଅବଶ୍ୟ ଉପକାର ପ୍ରାପ୍ତ ହୋଇଥାଏ । ବିଳାସିତାଦିର ତ୍ୟାଗ ସର୍ବାଗ୍ରେ ଉଚିତ । ସେହି ତ୍ୟାଗ ସଙ୍ଗେ ସଙ୍ଗେ ବିଦେଶଜାତ ମନୋମୁଗ୍ଧକର ମହାକାଳ ସଦୃଶ ବସନ, ଭୂଷଣ, ଯାନ ଆସନାଦି ଭୋଗ୍ୟ ଓ ଉପଭୋଗ୍ୟ ଉପକରଣାଦି ଧୀରେ ଧୀରେ ଅଥବା ଶୀଘ୍ର ମଙ୍ଗଳ ନିମିତ୍ତ ଯଥାସମ୍ଭବ ପରିତ୍ୟାଗ କରିବା ଉଚିତ । ସ୍ୱୀୟ ନିର୍ମିତ ଉପକରଣାଦିରେ ସଂସାରଲୀଳା ନିର୍ବାହ କଲେ ଅର୍ଥାଭାବ ଘଟିବ ନାହିଁ । ଅର୍ଥାଭାବ ନ ହେଲେ ନୀଚ ସେବା ଓ କୁତ୍ସିତ ସଙ୍ଗଦୋଷଯୁକ୍ତ କୁସଂସ୍କାରମୟ ସ୍ଥାନକୁ

ତ୍ୟାଗ କରିବା ସହଜସାଧ୍ୟ ହେବ । ଏହାଦ୍ୱାରା ଅଧିକାଂଶ ସମୟ ଅବସର ମିଳିବ । ନିଜର ବହୁମୂଲ୍ୟ ସମୟ ପର ସେବାରେ ଓ ପରାଧୀନ କାର୍ଯ୍ୟରେ ପରକାର୍ଯ୍ୟ ସିଦ୍ଧି ନିମିତ୍ତ ଅପବ୍ୟୟିତ ହେବ ନାହିଁ । ତହିଁ ମଧ୍ୟରେ ଜ୍ଞାନ, ଧ୍ୟାନ ଓ ଧର୍ମଚର୍ଚ୍ଚାଦିରେ ନିଯୁକ୍ତ ହେବାକୁ ହେବ । ଏହିରୂପେ ଆତ୍ମଶୁଦ୍ଧି ହେବ । ହରାଇଥିବା ଅମୂଲ୍ୟ ଜ୍ଞାନ-ଧନ ଅନିତ୍ୟ ଘୃଣ୍ୟ ଧନାଶା ତ୍ୟାଗ ସଙ୍ଗେ ସଙ୍ଗେ ପରାଧୀନତା ପଳାଇ ଯିବାରୁ ଅଚିରେ ପୁଣି ଫେରି ଆସି କରତଳଗତ ହେବ । ଜ୍ଞାନଦ୍ୱାରା ସର୍ବସିଦ୍ଧି ଲଭ ହୁଏ । ଅଜ୍ଞାନାତ୍ମକ ସ୍ୱବିଳାସିତା, ତହିଁରେ ଜଡ଼ ଭୌତିକ ବସ୍ତୁ ସଂଗ୍ରହର ବ୍ୟାମୋହକତା, ତହିଁରୁ ଅର୍ଥଗୃଧ୍ନୁତା, ତହିଁରୁ ନାନାପ୍ରକାର ଦାସତ୍ୱ, ତହିଁରୁ ନିଜର ହିତାହିତ ଜ୍ଞାନର ବିରୋଧୀ କୁକର୍ମାଦି, ତହିଁରୁ କୁସଂସ୍କାର ପାପଭାବ ଓ ସର୍ବପ୍ରକାର ମିଥ୍ୟାଦି କ୍ରମେ କ୍ରମେ ଜାତ ହୋଇ ମାନବୀୟ ଆତ୍ମାକୁ କଳୁଷିତ କରିଅଛି । ଏସବୁ ସ୍ୱାଧୀନ ଆତ୍ମା ପକ୍ଷରେ ମହାବେଗରୁ ବଳ ଅତୁଳନୀୟ ଦୁଃଖର ଆସ୍ପଦ ଅଟେ । ଏହି ଦୁଃଖଶାନ୍ତିର ଉପାୟ ନିଜ ହସ୍ତରେ । ତ୍ୟାଗ ଏହାର ପ୍ରଧାନ ଉପାୟ । ଏହି ତ୍ୟାଗ ବା ଅସହଯୋଗ ବା ସନ୍ନ୍ୟାସ ପ୍ରାଚୀନ ଆର୍ଷୋପଦିଷ୍ଟ ସାର ଧର୍ମ । ଏହି ଲୁପ୍ତ ଧର୍ମ ଏବେ ତାହାର ଉତ୍ଥାନ ବେଳ ହେଲାରୁ ଆବାଳ-ବୃଦ୍ଧ-ବନିତାଦି କ୍ରମେ କ୍ରମେ ଆଚଣ୍ଡାଳ ପରମହଂସ ପର୍ଯ୍ୟନ୍ତ ଦେଶବିଦେଶବ୍ୟାପୀ ପ୍ରକଟିତ ହେଲାଣି । ଏହି ଶୁଭକ୍ଷଣର ମାହେନ୍ଦ୍ର ଯୋଗ ଆଉ ଘୃଣ୍ୟ ଆଳସ୍ୟରେ ବୃଦ୍ଧ ଆତ୍ମାକୁ ମହାଘୋର-କଳଙ୍କତାମସୀ-ପ୍ରବୃତ୍ତିମୟ-ପାପରେ ବୁଡ଼ାଇ ଗଡ଼ ସଡ଼ିଯିବା କଦାପି ଉଚିତ ନୁହେଁ । ହରୟେ ନମଃ ।

ଆତ୍ମଦେବ ସର୍ବତ୍ର ଅଥଚ ଏହିଠାରେ ଅହଂବୋଧରୂପେ ସାକ୍ଷାତ ବିରାଜମାନ । ଏହି ଆତ୍ମା ସର୍ବଦ୍ରଷ୍ଟା, ଅର୍ଥାତ୍ ସର୍ବପ୍ରକାର ସ୍ଥୂଳ ସୂକ୍ଷ୍ମାତ୍ମକ ପଞ୍ଚଭୂତମୟ ଜାଗତିକ ସର୍ବପ୍ରକାର ବସ୍ତ୍ୱାଦିର ଦ୍ରଷ୍ଟା ବା ଉପଦ୍ରଷ୍ଟା । ଏହି ଆତ୍ମା ଅନ୍ତଃକରଣ ଦ୍ରଷ୍ଟା, ଅନ୍ତଃକରଣ ପ୍ରାଣେନ୍ଦ୍ରିୟାଦିର ଦ୍ରଷ୍ଟା । ଇନ୍ଦ୍ରିୟଭୌତିକ ଦେହ ଓ ଜଗତର ସମ୍ବନ୍ଧକୁ ଶବ୍ଦ ସ୍ପର୍ଶାଦି ବୈଷୟିକ ଜ୍ଞାନାକାରରେ ପରିଣତ କରି ଅନ୍ତଃକରଣକୁ ତଦ୍ରୂପ ଜଗଦାକାର ଦୃଶ୍ୟ ଦେଖାଉଅଛି । ଦ୍ରଷ୍ଟା ଆତ୍ମଦେବ ଏହିରୂପେ ପରମୀଶ ଦ୍ରଷ୍ଟୃତ୍ୱ ଯୋଗେ ସର୍ବଦ୍ରଷ୍ଟା ବା ଉପଦ୍ରଷ୍ଟାପଦବାଚ୍ୟ ଅଟନ୍ତି । ଦ୍ରଷ୍ଟା ସ୍ୱରୂପତଃ ଦୃଶ୍ୟରୁ ଅଲଗା । ଦର୍ଶନ ଏତଦୁ-ଭୟର ମଧ୍ୟସ୍ଥ ବ୍ୟବଧାନ ସ୍ୱରୂପ ଅଟେ । ବାସ୍ତବପକ୍ଷେ ଜ୍ଞାନମୟ ଘନ କଳେବରାତ୍ମକ ଆତ୍ମା ସୂକ୍ଷ୍ମ ବା ସ୍ଥୂଳ ଜଡ଼ ବସ୍ତୁରୁ ପୃଥକ୍ । ଏହିରୂପେ ଅନ୍ତଃକରଣରୁ ଆରମ୍ଭ କରି ସ୍ଥୂଳ ଜଗତ ଓ ଜାଗତିକ ବସ୍ତୁ ସମୁଦାୟ ପର୍ଯ୍ୟନ୍ତ ସମୁଦାୟ ଜଡ଼ସୃଷ୍ଟି ଓ ଜଡ଼ ଭୌତିକ ସୃଷ୍ଟ ପଦାର୍ଥାଦିରୁ ଆତ୍ମା ପୃଥକ୍ ଓ ସମ୍ବନ୍ଧବିହୀନ ମୁକ୍ତ ଓ ଅନାସକ୍ତ ଅଟନ୍ତି । ସୁତରାଂ ଜଡ଼ ଦେହ ଭୌତିକ ଜଗତରୁ ମୃଣ୍ମୟ ହେଉ ବା ପ୍ରସ୍ତର ଇଷ୍ଟକାଦିନିର୍ମିତ ହେଉ, ସର୍ବପ୍ରକାର ବାସଗୃହାଦିରୁ ଆତ୍ମା ପୃଥକ୍ । ଏସବୁ ଆତ୍ମାରେ ଲାଗିନାହିଁ ବା ଆତ୍ମା ଏଥିରେ ଲିପ୍ତ ହୋଇ ନ ପାରନ୍ତି । ଏହିରୂପେ ବସନ, ଭୂଷଣ, ଯାନ, ଆସନ, ନାନାବିଧ ଦ୍ରବ୍ୟ

ଓ ଭୋଗ୍ୟ ଏବଂ ଉପଭୋଗ୍ୟାଦି ସମସ୍ତ ପଦାର୍ଥରୁ ଆତ୍ମା ଅଲଗା ଏବଂ ଏ ସବୁ ସମ୍ବନ୍ଧୀୟ ବୈଷୟିକ ଇନ୍ଦ୍ରିୟ ହେତୁ ଶବ୍ଦ ସ୍ପର୍ଶାତ୍ମକ ଜ୍ଞାନାଦିରୁ ମଧ୍ୟ ଆତ୍ମା ଅଲଗା । ଏସବୁ ବସ୍ତୁ ବୈକାରିକ କାରଣ କାର୍ଯ୍ୟାକାରରେ ଜଗତରୁ ଅଲଗା ବୋଲି ପ୍ରତୀୟମାନ ହେଉଥିଲେ ସୁଦ୍ଧା ତାହାସବୁ ସେହି ଜଗତ ସହିତ ଅଭିନ୍ନ । ଏହା ଜଗତର କ୍ଷୁଦ୍ର କ୍ଷୁଦ୍ର ଅଙ୍ଗ, ପ୍ରତ୍ୟଙ୍ଗ ଓ ଉପାଙ୍ଗରୂପେ ସେହି ଜଗଦାକାରରେ ସର୍ବଦା ସଂଲଗ୍ନ ରହିଅଛି । ଆତ୍ମା ଏତଦ୍ରୂପ ସର୍ବାଙ୍ଗ ଓ ସର୍ବାଳଙ୍କାର ବିଭୂଷିତ ଜଗନ୍ମୟୀ, ଭଗବତୀ ପ୍ରକୃତି ଦେବୀର ଜଗଦାକାର ବିଶ୍ୱମୂର୍ତ୍ତିକୁ ଦର୍ଶନ କରୁଅଛନ୍ତି । ମାତ୍ର ଏଥିରେ ମୋର ଏହା ବୋଲି ଭାବ ଚିତ୍ତରେ ଲିପ୍ତ ଥିବାପରି ଜ୍ଞାନ କରିବା ଆତ୍ମାପକ୍ଷରେ କେବଳ କଳ୍ପନାଭିନ୍ନ ଆଉ କିଛି ନୁହେ । ଏହି କଳ୍ପନା ମୋହାତ୍ମକ ସଂସାର ଲୀଳା ଛଳରେ ସତ୍ୟ ବୋଲି ଧରି ନିଆ ଯାଇଅଛି । କେବଳ ଆଧୁନିକ ଶିକ୍ଷା, ଦୀକ୍ଷା, ସଙ୍ଗ, ଆଦର୍ଶ ଓ ଅନୁକରଣ ଦୋଷରୁ ବିଳାସିତା, ସ୍ୱେଚ୍ଛାଚାରିତା ଓ ଆତ୍ମମ୍ଭରିତାଦି ଦୋଷମାନେ ଜାତ ହୋଇ ଜ୍ଞାନମୟ ଆତ୍ମାକୁ ଏତଦ୍ରୂପ ଜଡ଼ମୟ ଧାରଣାଦିରେ ଲିପ୍ତ କରିଅଛନ୍ତି । ଏବେ ଏହା ଭ୍ରମରୁ ନିବର୍ତ୍ତି ଏଥିର ପାରମାର୍ଥିକ ସତ୍ୟ ଭାବକୁ ତ୍ୟାଗ ବା ଅସହଯୋଗ ଧର୍ମଦ୍ୱାରା ପରିତ୍ୟାଗ କରିବା ଉଚିତ । ଗୃହ, ବସନ, ଆସନ, ଯାନ, ଭୂଷଣ, ବାହନ, ସର୍ବପ୍ରକାର ଗୃହୋପକରଣ ଓ ଖାଦ୍ୟପେୟାଦି ସର୍ବପ୍ରକାର ବସ୍ତୁକୁ ନିଜଦ୍ୱାରା କରାଇ ବ୍ୟବହାର କରିବା ଉଚିତ । ନିଜେ ଅକ୍ଷମ ହେଲେ ଅଞ୍ଚଳୀୟ ବା ସ୍ୱଦେଶୀୟ ପଦାର୍ଥ ବ୍ୟବହାର କରିବା ବିଧେୟ ଅଟେ । ଏହିସବୁ ପଦାର୍ଥ ନିଜ ଗ୍ରାମୀୟ, ଅଞ୍ଚଳୀୟ ବା ସ୍ୱଦେଶୀୟ ଉପାଦାନରେ ନିର୍ମିତ ହେବା ଏକାନ୍ତ ବାଞ୍ଛନୀୟ । ଏହା ମୋଟାମୋଟି ହେଉ, ବା ସୁନ୍ଦର ଅସୁନ୍ଦର ହେଉ, ବା ଯେ କୌଣସି ପ୍ରକାର ହେଉ, ତାହା ପବିତ୍ର ଅଟେ । ବୃଥା ମାୟିକ ତାରତମ୍ୟ ଜ୍ଞାନରେ ବା ଇତର ବିଶେଷ ଭେଦରେ ଅଥବା ବିଶେଷତ୍ୱ ଅବିଶେଷତ୍ୱ ମୋହରେ ମୁଗ୍ଧ ହୋଇ ଅନର୍ଥକ ଅପବ୍ୟୟ କରି ସବୁ ବିଷୟରେ ପରମୁଖାପେକ୍ଷୀ ହୋଇ ରହିବା କାପୁରୁଷତା ଅଟେ । ଆଡ଼ମ୍ବରରେ ଆତ୍ମାର ସମ୍ବନ୍ଧ ନାହିଁ । ଅନାଡ଼ମ୍ବରରେ ସରଳ, ସହଜ, ମିତ୍ରଭାବରେ ସମତା, ମୈତ୍ରୀଗୁଣରେ ଭାଇ ଭାଇ ପରସ୍ପର ସହାନୁଭୂତି ଓ ସମବେଦନାପୂର୍ଣ୍ଣ ହୋଇ ଏକତ୍ରେ ବାସ କଲାପରି ସ୍ୱଦେଶରେ ଓ ସ୍ୱଦେଶୀ ସେବାରେ ନିଯୁକ୍ତ ରହିଥିବା ବିଶ୍ୱପ୍ରକୃତିର ଅନୁକୂଳ ଅଭିମତ ବୋଲି ବୁଦ୍ଧିରଖି କର୍ତ୍ତବ୍ୟପାଳନ କରିବା ବାଞ୍ଛନୀୟ ଓ ବିଧେୟ ଅଟେ ।

## ଆତ୍ମମିତ୍ର ଓ ଆତ୍ମଶତ୍ରୁ

(ଆତ୍ମମିତ୍ର ଅର୍ଥାତ୍ ପ୍ରେମ, ଏବଂ ଆତ୍ମଶତ୍ରୁ ଅର୍ଥାତ୍ କାମ, କ୍ରୋଧାଦି ଷଡ଼ରିପୁବର୍ଗ)

ଯାହାଦ୍ୱାରା ନିଜକୁ ଭୁଲି ଯାଇ ପ୍ରେମାସ୍ପଦ ବସ୍ତୁ ସହିତ ଓ ତଦାକାରାକାରିତ ପରିଣାମବଳରେ ଭେଦଶୂନ୍ୟ ଭାବରେ ଏକ ଏବଂ ଦ୍ୱୈତ ହୀନ ରହିତ ଅଭିନ୍ନତା ସମ୍ପେ

ମିଶି ତନ୍ମୟ ହୋଇ ଭବଗ୍ରାହ୍ୟତ୍ୟ ଓ ସ୍ମୃତିଗ୍ରାହ୍ୟତ୍ୟ ଦଶା ଉଚ୍ଛିନ୍ନ ହେବାରୁ ଯେ ଦଶା ବା ଯେ ଜ୍ଞାନବେଗ ହେଉଅଛି କିଛି ଜଣା ପଡ଼େନାହିଁ, ଅଥଚ ଅକୃତ୍ରିମ ସର୍ବଅପେକ୍ଷାଶୂନ୍ୟ, ଅଭବ୍ୟ, ଅକଥ୍ୟ ଓ ଅଚିନ୍ତ୍ୟାତ୍ମକ ସଦଜାନନ୍ଦ ମାତ୍ରରେ ଏକାଗ୍ର ମଗ୍ନ ଥିବା ବୋଧହୁଏ, ତାହାର ନାମ ପ୍ରେମ । ପ୍ରେମ ଆନନ୍ଦର ନାମାନ୍ତର ମାତ୍ର । ପ୍ରେମ ଓ ଆନନ୍ଦ ଏକାର୍ଥ-ବାଚକ । ପ୍ରେମ ଚିନ୍ମୟ ସାଗରରେ ଢେଉ ବା ଲହରୀ ସ୍ୱରୂପ ଅଟେ । ଏହି ପରମା ଶକ୍ତି ବିଶୁଦ୍ଧି ସତ୍ତ୍ୱାତ୍ମିକା ଅଟେ । ମୂଳ ପ୍ରକୃତି ଦେବୀର ରୂପ ଦୁଇଭାବବିଶିଷ୍ଟ ହୋଇ ଦୁଇଭାଗରେ ପ୍ରକଟିତ ହୋଇଅଛି । ଉତ୍କୃଷ୍ଟ ବା ପ୍ରଥମ ପ୍ରକାରର ଚିତ୍‌ଶକ୍ତି ନାମ୍ନୀ ବିଦ୍ୟାଶକ୍ତି—ଏହା ସ୍ୱରୂପତଃ ଚିଦାକାଶ । ନିକୃଷ୍ଟ ବା ଦ୍ୱିତୀୟ ପ୍ରକାର ଅବିଦ୍ୟାଶକ୍ତି—ଏହା ଅଜ୍ଞାନାକାଶ ବା ଅନ୍ତରାକାଶ ଆକାର ବିଶିଷ୍ଟ ଅଟେ । ଏହି ଦୁଇ ପ୍ରକାର ଶକ୍ତିରେ ଏକା ପରମବ୍ରହ୍ମ ଦୁଇପ୍ରକାର ଉପାଧି ଧାରଣ କରିଅଛନ୍ତି । ବିଶୁଦ୍ଧ ଶୁଦ୍ଧାତ୍ମିକା ଅର୍ଥାତ୍ ବିଦ୍ୟା ବା ଚିତ୍‌ଶକ୍ତିରୂପ ଉପାଧିରେ ପରମାତ୍ମା ଏବଂ ରଜୋତମଗୁଣାତ୍ମିକା ଅବିଦ୍ୟା-ଶକ୍ତିରେ ଉପହିତ ହୋଇ ସେହି ପରମବ୍ରହ୍ମ ଜୀବାତ୍ମା ନାମ ଧାରଣ କରିଛନ୍ତି । ଏହି ପରମାତ୍ମା ନିୟାମକ, ଏବଂ ଜୀବାତ୍ମା ନିୟମାବଦ୍ଧ । ଏହିରୂପେ ଜୀବାତ୍ମା ପରମେଶ୍ୱରା-ଧୀନରେ ବିଦ୍ୟା ଏବଂ ଅବିଦ୍ୟା ଏହି ଦୁଇଶକ୍ତିର ସନ୍ଧିରେ ଅବସ୍ଥିତ । ସତ୍ତ୍ୱାଧିକ୍ୟରେ ଏହି ଜୀବାତ୍ମା ନିଜର ଚିଦାଭାସତ୍ୱ ଉପଲବ୍ଧି କରିପାରନ୍ତି । ଆଉ ରଜୋତମାଧିକ୍ୟରେ ଅବିଦ୍ୟାଯୁକ୍ତ ହୋଇ ଅନ୍ତଃକରଣ ସହିତ ସଂଯୁକ୍ତପ୍ରାପ୍ତ ହୋଇ ରହିଅଛନ୍ତି—ଏହା ସଂସାରିତ୍ୱ । ଜୀବାତ୍ମା ଶମ ଦମାଦି ସାଧନବିଶେଷଣ ହୋଇ ସତ୍ତ୍ୱଶୁଦ୍ଧି ପ୍ରାପ୍ତ ହେଲେ ସମାଧି ସମ୍ପନ୍ନ ଆତ୍ମଲୟ ଯୋଗ ଦ୍ୱାରା ପ୍ରଥମତଃ ଚିଦାଭାସ ଅର୍ଥାତ୍ ଚିନ୍ମୟ-ସାଗରର ଉନ୍ମୁଖୀନ ହୁଅନ୍ତି । ଏହି ଉନ୍ମୁଖୀନତା ଜ୍ଞାନ ବୈରାଗ୍ୟ ଆଶ୍ରୟରେ ଏକାଗ୍ରଭାବ ପ୍ରାପ୍ତ ହେଲେ ଜୀବାତ୍ମା ଚିଦାନନ୍ଦମୟ କୈବଲ୍ୟରସ ଅନୁଭବ କରନ୍ତି । ଏହା ଜୀବାତ୍ମାର ଚିଦାଭାସତ୍ୱ ସ୍ୱରୂପାନୁଭୂତି । ଏହିଠାରେ ପ୍ରେମ ନାମରେ ପଦାର୍ଥ ତାହା ଅନୁଭୂତ ହୁଏ । ଆଉ ଅବିଦ୍ୟା ସହଯୋଗରେ ଏହି ପ୍ରେମ ଲୁକ୍‌କାୟିତ ଥାଇ, ବହୁରୂପା ନାୟିକା ପରି ଜୀବାତ୍ମା ପୁରୁଷକୁ କାମାକାରରେ ମୋହିତ କରେ । ଏହି ମୋହରୁ ଅନ୍ତଃକରଣ ସହିତ ଅଭେଦତା ଜାତ ହୁଏ । ଏହାର ନାମ 'ଅସ୍ମିତା' । ଏହିଠାରେ ସଂସାରଦର୍ଶନ ଅର୍ଥାତ୍ ଦେହେନ୍ଦ୍ରିୟାଦି ସହିତ ସଂସାର ସଂଯୋଗ । ଏହି ଯୋଗରୁ ସର୍ବପ୍ରକାର ସୁଖ, ଦୁଃଖ ଓ ମୋହାଦିର ସୃଷ୍ଟି । ଏଥିରୁ ସ୍ପଷ୍ଟ ଦେଖାଯାଏ, ଏହି ସୃଷ୍ଟି ଜଡ଼ାତ୍ମକ ହେଉ, ବା ସୁଖ ଦୁଃଖ ମୋହାତ୍ମକ ହେଉ, ବା ଯେପରି ବୋଲି କୁହାଯାଉ, ଏହାର ଉତ୍କୃଷ୍ଟ ଅର୍ଥ ପ୍ରେମାତ୍ମକ । ଏହି ପ୍ରେମ ସର୍ବ ବିଶ୍ୱାତ୍ମକ ଓ ସର୍ବ ଜୀବାତ୍ମକ ଅଥଚ ସର୍ବ ବସ୍ତ୍ୱାତ୍ମକ ଅଟେ । ଯାହା କିଛି ଅନୁଭୂତ ବା ଜ୍ଞାତ ହେଉଅଛି ସେ ସମସ୍ତ ପ୍ରେମମିଶ୍ରିତ ଅଟେ । ପ୍ରେମବିନା ଅନୁଭୂତି ପ୍ରଭୃତି କିଛି ସାଧିତ ହୋଇ ନ ପାରେ ବା ପ୍ରେମବିନା କୌଣସି ଅନୁଭୂତି ରୁଚିକର ହୋଇ ନ ପାରେ ।

ଯେପରି କୌଣସି ଅଜ୍ଞାତ ସ୍ଥାନର ଭଣ୍ଡାରରୁ କ ଗୁପ୍ତସ୍ରୋତେ ସ୍ୱର୍ଗଗଙ୍ଗାମୃତ ଅବିରତ ଝରି ଝରି ଜିହ୍ୱା ବା ରସେନ୍ଦ୍ରିୟକୁ ସବୁବେଳେ ଆର୍ଦ୍ର ଏବଂ ସଜଳ କରି ରଖିଅଛି, ଅଥଚ ସେହି ଜଳ ବା ସ୍ନେହ ଯେପରି ସ୍ୱାଦୁ ଓ ସୁମିଷ୍ଟ ରସବିଶିଷ୍ଟ, ସେପରି ବାହାରରେ ଅନ୍ୟ କୌଣସି ସ୍ଥାନରେ ନାହିଁ ବା ମିଳି ନ ପାରେ । ପୁଣି ଦୈହିକ ବିକାରାଦିରେ ସେହି ଜଳୀୟ ରସର ସ୍ୱାଦୁ କୌଣସି ପ୍ରକାରରେ ବିକୃତ ହେଲେ ବା ଜିହ୍ୱା ଶୁଷ୍କ ହୋଇ ତଦ୍ରୂପ ରସଶୂନ୍ୟ ହେଲେ ପାନିତମାନ ଅସ୍ୱାଦୁମୟ ବିକାରରେ ବିକୃତ ହୁଏ । ଆଉ କୌଣସି ପଦାର୍ଥର ସ୍ୱାଦୁ ତଦ୍ରୂପ ଅନୁଭୂତ ହୁଏନାହିଁ । ଏଥିରୁ ବୁଝାଯାଉଅଛି ଯେ ଜିହ୍ୱାର ଜଳ ସ୍ୱତଃ ଯେପରି ସ୍ୱାଦୁରସବିଶିଷ୍ଟ, ବାହାରର କୌଣସି ପଦାର୍ଥ ସେପରି ନୁହେ । ଅଥଚ ସେହି ପ୍ରକୃତିଦତ୍ତ ଜିହ୍ୱାର ସ୍ୱାଦୁରସ ବାହାରର ଖାଦ୍ୟ-ପେୟାଦି ବସ୍ତୁ ସମସ୍ତଙ୍କୁ ତାହାର ସଙ୍ଗେ ମିଶାଇ ସେହି ସ୍ୱତଃସିଦ୍ଧ ସ୍ୱାଦୁରସ ସହିତ ସବୁ ଖାଦ୍ୟାଦି ପଦାର୍ଥର ରସକୁ ସ୍ୱାଦୁମୟ କରିଦିଏ । ଆଉ ମଧ୍ୟ ସେହି ମିଶ୍ରରସ ରୁଚିକର ହୁଏ । ତଦଭାବେ ଅମୃତ ରସାବଳି ପର୍ଯ୍ୟନ୍ତ ଅରୁଚିକର ହୁଏ ।

ପ୍ରେମ-ସ୍ନେହ ସହିତ ଏହିପରି ଜ୍ଞାନାନୁଭୂତି ସମ୍ବନ୍ଧେ ସମୋପମବିଶିଷ୍ଟ ଅଟେ । ଏହି ପ୍ରେମ ଅନ୍ତଃକରଣ ସହିତ ମିଶି ଅନ୍ତଃକରଣକୁ ରୁଚିମୟ କରୁଅଛି । ଏହି ପ୍ରେମ ତଦ୍ରୂପ ରୁଚିକର ଅନ୍ତଃକରଣର ସହଯୋଗରେ ପ୍ରାଣେନ୍ଦ୍ରିୟାଦିକୁ, ଦେହସଂସାରାଦି ଭୌତିକ ଜଡ଼ଦୃଶ୍ୟାଦିକୁ ଏବଂ ଏତତ୍ ସମ୍ବନ୍ଧଜାତ ଗନ୍ଧ ସ୍ପର୍ଶାଦିକୁ ରୁଚିକର, ଆକର୍ଷକ ଓ ମନୋହର ଭାବରେ ଗ୍ରହଣଯୋଗ୍ୟ କରାଉଅଛି । ପ୍ରେମର ଅନୁଭୂତି ଆଗ ସ୍ଥିରୀକୃତ ହେଲାପରେ ଏସବୁ କଥାର ସତ୍ୟତା ଅକ୍ଷରେ ଅକ୍ଷରେ ଉପଲବ୍ଧି ହେବ । ଏହି ପ୍ରେମର ମାଧୁର୍ଯ୍ୟରୁ ରୁଚି ଜାତ ହେଉଅଛି । ପ୍ରେମ ଅଭାବରେ ସର୍ବ ଜଗତ ଶୁଷ୍କ ବସ୍ତୁରୁ ବଳି ଅଗ୍ରାହ୍ୟ ଓ ଅରୁଚିକର ହୋଇଥାନ୍ତି । ଏହି ପ୍ରେମର ବୈପରୀତ୍ୟ ଅରୁଚିକର ଏବଂ ଅଗ୍ରାହ୍ୟ ବା ତ୍ୟାଜ୍ୟ ଅଟେ । ଏହିରୂପେ ଏହି ପ୍ରେମ ରୁଚି, ଅରୁଚି, ଭଲ, ମନ୍ଦ, ସୁଖ, ଦୁଃଖ, ଜ୍ଞାନ, ଅଜ୍ଞାନ, ମିତ୍ର, ଶତ୍ରୁ ଓ ଆତ୍ମୀୟ, ଅନାତ୍ମୀୟ ଇତ୍ୟାଦି ସର୍ବପ୍ରକାର ଅବିରୋଧୀୟ ଏବଂ ବିରୋଧୀୟ ତଥ୍ୟ ନିରୂପଣର ମୂଳ ନିଦାନ ସ୍ୱରୂପ ଆତ୍ମାର ଏକମାତ୍ର ହିତକାରୀ ବନ୍ଧୁ ରୂପେ ସର୍ବଦା ଆତ୍ମାର ସଙ୍ଗେ ସଙ୍ଗେ ନିତ୍ୟ ବିରାଜିତ ରହିଅଛି । ଏହି ପ୍ରେମର ମାହାତ୍ମ୍ୟ ଅତୀବ ରହସ୍ୟପୂର୍ଣ୍ଣ ଅଟେ । ଆଉ ମଧ୍ୟ ସାଧୁ ମହାତ୍ମାମାନଙ୍କର ନିତ୍ୟ-ପୂଜିତ, ଅମୂଲ୍ୟ ମହାରତ୍ନ ସ୍ୱରୂପ ଅଟେ । ଏହା ଯେଉଁଠାରେ ଅବ୍ୟକ୍ତ, ସେଠାରେ ସମସ୍ତ ଅନ୍ଧକାରପୂର୍ଣ୍ଣ ଅଟେ । ଏହି ପ୍ରେମ ସତ୍ତ୍ୱଯୁକ୍ତ ହୋଇ ଏହାର ପ୍ରାଦୁର୍ଭାବ ଘଟିଲେ ଏହା ମାନବୀୟ ଆତ୍ମାକୁ ଦେବର୍ଷ୍ୟାଦି ରୂପେ ଉନ୍ନତ କରାଉଅଛି । ଆଉ ମଧ୍ୟ ଏହି ପ୍ରେମ ରଜୋତମଃଯୁକ୍ତ ହେଲେ ଏହି ମାନବୀୟ ଆତ୍ମାକୁ ଭୂତ, ପ୍ରେତ ଓ ଅସୁରାଦି ରୂପେ ପରିଣତ କରାଇ ଜଡ଼ଭୌତିକ ଦେହରେ ମୃଣ୍ମୟ ଜଗତ ଓ ଜାଗତିକ ଉପକରଣାଦିରେ ଏବଂ ବୈଷୟିକ ସୁଖ ଦୁଃଖ ମୋହମୟ ତାପାଦିରେ ନିବଦ୍ଧ କରି ମନୁଷ୍ୟକୁ ଖ୍ୟାପଣ

ସନ୍ଧ୍ୟାସାକାରରେ ନଗ୍ନ ନୃତ୍ୟଅଛି । ଆଜକାଲି ଏହି ପୈଶାଚିକ ତାଣ୍ଡବର ନାମ ମନୁଷ୍ୟର ଉନ୍ନତି ।

ଜଡ଼ମୋହରେ ଜଡ଼ସଂସାରର ଏକାଗ୍ର ମମତାରେ ଓ ଭୌତିକ ସୁଖ ଦୁଃଖ ମୋହାଦି ତାପରେ ବିଜଡ଼ିତ ରହିଥିବା ଅବସ୍ଥା ମନୁଷ୍ୟର ପତିତାବସ୍ଥା ଅଟେ । ଆଜକାଲି କଳି ତାମସୀ ପ୍ରବୃତ୍ତିର ଘୋରାନ୍ଧକାର ମାନବାସୁର-ଅନ୍ଧ-ଦଳର ଶିକ୍ଷା, ଦୀକ୍ଷା, ଆଦର୍ଶ ଅନୁକରଣାଦିର ମୋହରେ ସାଧାରଣ ଆର୍ଯ୍ୟ ବଂଶଜମାନଙ୍କୁ ମଧ୍ୟ ମୋହିତ କରି ପତିତ କରି ସାରିଲାଣି । ଏବେ ଏଗୁଡ଼ାକୁ ବୁଝି ଏବଂ ତ୍ୟାଗ କରିବା ବିଧେୟ ଅଟେ । ଏହାର ତ୍ୟାଗ ଏବେ ବିଧିନିର୍ଦ୍ଦିଷ୍ଟ ବ୍ୟବସ୍ଥା ଦ୍ୱାରା ପ୍ରବଳ ଭାବରେ ପ୍ରବର୍ତ୍ତିତ ହେଲାଣି । ଏହା ମଧ୍ୟ ମନୁଷ୍ୟ ସମାଜକୁ ସାବଧାନ କରାଇ ଦେଉଅଛି, ଏଥିରେ ଚେଇଁ ଶୋଇଲେ ସେହି ମୋହନିଦ୍ରା ମହାନିଦ୍ରାରେ ପରିଣତ ହେବ । ରେ ପ୍ରବଞ୍ଚନା, ରେ ଦମ୍ଭ, ଗର୍ବ, ରେ ବଡ଼ିମା ! ତୋହର ତ ଏଇ ଶେଷ ଦିନ ଉପସ୍ଥିତ ହେଲାଣି । ମଦ ପରିତ୍ୟକ୍ତ ହେବ, ତେବେ ମଦଘଡ଼ାର ଅବସ୍ଥା କଅଣ ହେବ ? ପ୍ରେମ ! ତୁମ୍ଭଠାରେ ଶତ ଶତ କ୍ଷମା-ପ୍ରାର୍ଥନା । ତୁମ୍ଭର ଆଖ୍ୟାୟିକାରେ ଅମୃତ ଭଣ୍ଡାରର ପାଖରେ ଏହି ଯେଉଁ ତ୍ୟାଜ୍ୟ ଆବର୍ଜନା ଟିକିଏ ରଖାଗଲା, ଏହା ଉପସ୍ଥିତ ଦିନର ପ୍ରବର୍ତ୍ତନା; ଅତଏବ ଏହା କ୍ଷମାଯୋଗ୍ୟ । ଏହି ପ୍ରେମର ବର୍ଣ୍ଣନା ନାନାବିଧ ଶାସ୍ତ୍ର ପୁରାଣାଦିରୁ ଶିକ୍ଷା କରି ହୃଦୟଙ୍ଗମ କରିବା ଉଚିତ । ଏହା ବହୁଶ୍ରମସାଧ୍ୟ ।

ଏବେ ରିପୁବର୍ଗର ବର୍ଣ୍ଣନାପ୍ରତି ମନୋଯୋଗ କରିବାକୁ ଅବଧାନ କରାଯାଉ । ଏହି ରିପୁବର୍ଗ କାମକ୍ରୋଧାଦି ଷଡ଼ରିପୁ ନୁହନ୍ତି, ଏମାନେ ଆତ୍ମାର ମଧ୍ୟ ରିପୁ ନୁହନ୍ତି । ଏମାନେ ରିପୁର ରିପୁ ମହାରିପୁ ଅଟନ୍ତି । ଏମାନେ କାମ କ୍ରୋଧାଦିର ରିପୁ । ଏମାନଙ୍କର ନାମ ନିଷ୍କାମ, ଅକ୍ରୋଧ, ନିର୍ଲୋଭ, ନିର୍ମୋହ, ଅଗର୍ବ ଏବଂ ପରଶ୍ରୀକାତରତାଶୂନ୍ୟ ଅଟେ । ଏମାନେ ଏକାକୀ ରହିପାରନ୍ତି ନାହିଁ । ଏକ ପରିବାର ମଧ୍ୟରୁ କନିଷ୍ଠ କେତେ-ଜଣ ଯେପରି ଅଲଗା ରହିଲେ ସେହି ଉଭୟ ଦଳର କଷ୍ଟ ହୁଏ, ସେହିପରି ଏମାନେ ସେହି ପବିତ୍ର ପରିବାର ମଧ୍ୟରେ କନିଷ୍ଠତର । ଶ୍ରେଷ୍ଠମାନଙ୍କର ନାମ ଧର୍ମଜ୍ଞାନ, ବୈରାଗ୍ୟ ବା ତ୍ୟାଗ, ସହିଷ୍ଣୁତା, ନ୍ୟାୟ, ସତ୍ୟ, ଦୟା, କ୍ଷମା, ପ୍ରୀତି, ଶ୍ରଦ୍ଧା, ଆହ୍ଲାଦ, ସମତା, ସ୍ୱାଧୀନତା, ଅଗୃପଲ୍ୟ, ଶାନ୍ତି, ତୁଷ୍ଟି, ପୁଷ୍ଟି, ସନ୍ତୋଷ, ଶୁଦ୍ଧତା, ସରଳତା, ନମ୍ରତା, ପରୋପକାରିତା, ନିଷ୍ପାପ, ଧୈର୍ଯ୍ୟ, ଆଡ଼ମ୍ବରଶୂନ୍ୟତା, ଶମଦମାଦି ସାଧନପରାୟଣତା, ତିତିକ୍ଷା, କ୍ଲେଶସହିଷ୍ଣୁତା, ପ୍ରସନ୍ନତା, ହର୍ଷ, ସଦାଚାର, ସତ୍ସଙ୍ଗ, ସତ୍ସେବା, ପୂଜା, ଆରାଧନା, ନିରାଳସ୍ୟ ଏବଂ ଭକ୍ତି ଇତ୍ୟାଦି । ଏମାନଙ୍କ ମଧ୍ୟରେ ପରସ୍ପର ଏପରି ଘନିଷ୍ଠ ସମ୍ବନ୍ଧ ଯେ ଏଥିରୁ ଗୋଟିଏ ଯେଉଁଠାରେ ପୂର୍ଣ୍ଣାବୟବରେ ଓ ପୂର୍ଣ୍ଣମାତ୍ରାରେ ବିରାଜମାନ, ସେଠାକୁ ସମସ୍ତେ କ୍ରମେ କ୍ରମେ ଆକୃଷ୍ଟ ହୁଅନ୍ତି । ଏମାନେ ସମସ୍ତେ ଏକତ୍ରେ ପ୍ରେମର ସାହଚର୍ଯ୍ୟ କରନ୍ତି । ପ୍ରେମ ଏହି ରୂପେ ଏଦଳର ଅଧିନାୟକ ଅଟେ । ପ୍ରେମ ଏମାନଙ୍କୁ ଘୁଞ୍ଚ ରହି-

ପାରେ ନାହିଁ । ଆଉ ମଧ୍ୟ ଏମାନେ ପ୍ରେମକୁ ଗୁଢ଼ ବିଚାରନ୍ତି ନାହିଁ । ଏ ସମସ୍ତଙ୍କୁ ଯେବେ ଆତ୍ମା ଐଶ୍ୱର୍ଯ୍ୟଶାଳୀ ଏବଂ କେଡ଼େ ମହତ୍ କର୍ମୀ ଓ କପରି ଅନନ୍ତ ଉପଭୋଗୀ, ଏହା ଦେଖି ବିଚାରିବାକୁ ଗଲେ, ଆତ୍ମ ଭକ୍ତି ସ୍ୱତଃ ଉଦୟ ହୋଇଥାଏ । ପରମେଶ୍ୱର ରାଜ୍ୟରେ ଆତ୍ମାର ଏହିସବୁ ଦୈବୀ ସମ୍ପଦ; ଏହା ଅଭାବେ ଆତ୍ମା ହୀନ, ମ୍ଳାନ ଓ କ୍ଲିଷ୍ଟ ହୁଏ । ଏହି ଦୈବୀ ସମ୍ପଦ ଆତ୍ମାସହିତ ଆତ୍ମାର ନିତ୍ୟ ସମ୍ପର୍କ । ପାର୍ଥିବ ସମ୍ପଦ ଅନିତ୍ୟ, ପରିବର୍ତ୍ତନୀୟ, କ୍ଷଣସ୍ଥାୟୀ ଓ କ୍ଷଣଭଙ୍ଗୁର ଅଥଚ କ୍ଷଣମୃଗଧିକର ଅଟେ । ସୁତରାଂ ଏହା ଦୈବୀ ସମ୍ପଦ ତୁଳନାରେ ସମ୍ପଦ ପଦବାଚ୍ୟର ଅଯୋଗ୍ୟ, ଅର୍ଥାତ୍ କିଛି ନୁହେ କହିଲେ ଚଳେ । ଏବେ ଏହି ଦୈବୀ ସମ୍ପଦାଦିର ସାଧାରଣ ପରିଚୟ ଏବଂ ଏହା ସହିତ ଆତ୍ମାର କପରି ନିତ୍ୟ ସମ୍ବନ୍ଧ ଏହା ଅବଧାରିତ ହେଉ ।

(୧) **ଧର୍ମ**—'ଧର୍ମ' ଅର୍ଥାତ୍ ଯାହାଦ୍ୱାରା ସବୁ ଧୃତ ହୋଇଅଛି; 'ସବୁ' କହିଲେ ଅବଶିଷ୍ଟ କିଛି ମାତ୍ର ନ ରହି ଯାହା ସମସ୍ତଙ୍କୁ ବୁଝାଏ, ସେ ସମସ୍ତଙ୍କୁ ଲକ୍ଷ୍ୟ କରାଯାଉ । 'ଧୃତ'ର ଅର୍ଥ ଆଗ ଧାରଣ କରାଯାଇଥିବାରୁ ସବୁ ତଦାକାରରେ ଓ ତଦ୍ରୂପରେ ସୁରକ୍ଷିତ ଓ ପ୍ରକାଶିତ ହୋଇଅଛି, ଏବଂ ସେହି ହେତୁରୁ ଯାହା ଧାରଣୀୟ, ରକ୍ଷଣୀୟ ଏବଂ ପାଳନୀୟ ଅଟେ, ତାହାହିଁ 'ଧର୍ମ' । ଏହି ଧର୍ମ ବଳରେ ପରମେଶ୍ୱର, ପରମାତ୍ମାରୂପେ; ଜୀବାତ୍ମା, ଜୀବାତ୍ମାରୂପେ; ପ୍ରକୃତି, ପ୍ରକୃତିରୂପେ; ବିଦ୍ୟା, ବିଦ୍ୟାରୂପେ; ଅବିଦ୍ୟା, ଅବିଦ୍ୟାରୂପେ; ଅନ୍ତଃକରଣ, ଅନ୍ତଃକରଣରୂପେ; ପ୍ରାଣେନ୍ଦ୍ରିୟାଦି, ପ୍ରାଣେନ୍ଦ୍ରିୟାଦିରୂପେ; ଦେହାଦି ଏବଂ ବ୍ରହ୍ମାଣ୍ଡାଦି ତଦ୍ରୂପେ ଓ ସେହି ସେହି ଆକାର ପ୍ରକାରାଦିରେ ପରିଧୃତ ଓ ପରିରକ୍ଷିତ ହୋଇ ପ୍ରକାଶିତ ହୋଇଅଛନ୍ତି । ଏହି ଧର୍ମ-ବଳରେ ପରିବର୍ତ୍ତନ ଓ ପରିଣାମ ମାୟିକ ବସ୍ତୁ ଉପରେ ନିତ୍ୟସ୍ଥାୟୀ ଆଧିପତ୍ୟ ପ୍ରାପ୍ତ ହୋଇଅଛି । ଏହି ଧର୍ମବଳରେ ବଳୀୟାନ୍ ପରିବର୍ତ୍ତନ ମାୟିକ ପିଣ୍ଡବ୍ରହ୍ମାଣ୍ଡାଦିକୁ ନାନାବିଧ ଆକାର ପ୍ରକାରରେ, ନାନାବିଧ ପରିଣାମାନ୍ତର ସଂସାରଚକ୍ରରୂପେ ବ୍ୟକ୍ତ କରି ଆତ୍ମାକୁ ତଦ୍ରୂପ ମାୟିକ ଅନିତ୍ୟ ଓ ଅସତ୍ ଜଗଦାକାର ପ୍ରତିବିମ୍ବ ଦୃଶ୍ୟରେ ମୋହିତ କରିବା ଦ୍ୱାରା ସେହି ମାୟିକ ଦୃଶ୍ୟରୁ ପ୍ରତିନିବୃତ୍ତ ହେବା ସକାଶେ ଆଉ ଆତ୍ମସଂସ୍ଥାର ରହିବା ନିମିତ୍ତ ଜ୍ଞାନୋପଦେଶ ପ୍ରଦାନ କରୁଅଛି । ଅତଏବ ଆତ୍ମା ମାୟିକ ପ୍ରଲୋଭନରେ ନ ଭୁଲି ଆତ୍ମସଂପ୍ରତିଷ୍ଠିତ ରହିଥିବା ଆତ୍ମାର ଧର୍ମ । ଏହି ଆତ୍ମଧର୍ମ ଲୋକକଥିତ ଧର୍ମ । ଏ ଧର୍ମ ସେ ଧର୍ମ ଭଳି ବାକ୍‌ବିନୋଦ ଧର୍ମ କି ନା କେ ଜାଣେ । ଏହା ଜ୍ଞାନାତ୍ମକ ଓ ପରିବୋଧାତ୍ମକ ନିତ୍ୟ ଆତ୍ମଧର୍ମ । ଦୃଢ଼ ଗବେଷଣା ସହକାରେ ଆତ୍ମଧୈର୍ଯ୍ୟ ଅବଲମ୍ବନ ପୂର୍ବକ ଆତ୍ମନିଷ୍ଠ ହୋଇ ଚିନ୍ତା କରି ଦେଖିଲେ ବୁଝାଯାଏ ଯେ ଆତ୍ମା ପୂର୍ବ ବର୍ଣ୍ଣନା ଅନୁସାରେ ଯେପରି ନିତ୍ୟ ପ୍ରେମାନନ୍ଦମୟ, ସେହିପରି ନିତ୍ୟ ଧର୍ମମୟ ଅଟନ୍ତି । ଧର୍ମ ଆଉ ପ୍ରେମ କେତେବେଳେ ହେଲେ ଆତ୍ମାରୁ ଅଲଗା ନୁହନ୍ତି । ଆତ୍ମା ପ୍ରେମ ବଳରେ ସର୍ବମୟ ଓ ଏହି ତନ୍ମୟତ୍ୱ ଯୋଗେ ସମସ୍ତେ ଆତ୍ମାମୟ ଅଥଚ ସବୁ ବା ଏତଦ୍ରୂପ-ସର୍ବସ୍ୱରୂପତଃ

ଆତ୍ମା ନୁହେ । ଆତ୍ମା, ଆତ୍ମାଧର୍ମବଳରେ ଆତ୍ମରୂପେ ଧୃତ ଓ ସୁରକ୍ଷିତ ଥିବାରୁ ଆତ୍ମାର ସର୍ବମୟତ୍ୱ ଓ ସର୍ବର ଆତ୍ମମୟତ୍ୱ ନିତ୍ୟଭାବେ ଧୃତ ଓ ପରିରକ୍ଷିତ ହୋଇ ଏହି ତନ୍ମୟତ୍ୱ ଚିରପ୍ରସିଦ୍ଧ ରହିଅଛି । ଏହିରୂପେ ପ୍ରେମ ଓ ଧର୍ମ ଆତ୍ମା ସହିତ ନିତ୍ୟବିଜଡ଼ିତ ଓ ନିତ୍ୟସମ୍ବନ୍ଧବିଶିଷ୍ଟ ଅଟନ୍ତି ।

(୨) **ଜ୍ଞାନ**— ପରଂବ୍ରହ୍ମ, ପରମାତ୍ମତତ୍ତ୍ୱ, ଆତ୍ମତତ୍ତ୍ୱ, ଜୀବାତ୍ମତତ୍ତ୍ୱ ଏବଂ ପ୍ରକୃତିତତ୍ତ୍ୱ ଓ ଦେବାତ୍ମ (ଯାହା ସର୍ବକାର୍ଯ୍ୟ-କାରଣ ଓ ସର୍ବକାରଣ-କାରଣାତ୍ମକ ବସ୍ତୁ) ତତ୍ତ୍ୱାଦିର ନିଷ୍ପତ୍ତି ଯାହାଦ୍ୱାରା ସମ୍ପାଦିତ ହୁଏ, ତାହାକୁହିଁ ଜ୍ଞାନ କହନ୍ତି । ଏ ସବୁ ସୂକ୍ଷ୍ମତମ ତତ୍ତ୍ୱର ପ୍ରଦର୍ଶନ ଜ୍ଞାନର ଶୁଦ୍ଧ ସତ୍ତ୍ୱାତ୍ମକ ନିର୍ମଳାଲୋକର କାର୍ଯ୍ୟ । ଏହା ଜ୍ଞାନର ସର୍ବଶ୍ରେଷ୍ଠତମ ପ୍ରଥମ ସୋପାନ ଅଟେ । ରଜସ, ତାମସାତ୍ମକ ମଳିନାଲୋକ ଜ୍ଞାନର ନିକୃଷ୍ଟ ସୋପାନ । ଏତଦ୍ରୂପ ଜ୍ଞାନଦ୍ୱାରା ଅନ୍ତଃକରଣ ପ୍ରାଣେନ୍ଦ୍ରିୟ ଓ ଦେହ ସମ୍ବନ୍ଧୀୟ ଓ ଜାଗତିକ ପଦାର୍ଥାଦିର ବିକାଶ ସଂଘଟିତ ହୁଏ । ମୋଟ ଉପରେ ଯାହା ସବୁ ଜଣାଇ ଦିଏ, ତାହା ଜ୍ଞାନ ଅଟେ । ପ୍ରେମ, ଧର୍ମ ଏବଂ ଜ୍ଞାନ, ଏମାନେ ଆତ୍ମାରେ ଏକାଧାରରେ ଯୁଗପତ୍ ବିଦ୍ୟମାନ ରହିଅଛନ୍ତି । ଅଗ୍ନିରେ ଉଷ୍ଣତା ଏବଂ ଆଲୋକ ଥିଲାପରି ଆତ୍ମାର ଏମାନେ ନିତ୍ୟ ସହଯୋଗୀ । ଶବ୍ଦସ୍ପର୍ଶାଦି ବୈଷୟିକ ଜ୍ଞାନ; ସୁଖଦୁଃଖାଦି ଇତରବିଶେଷ ଜ୍ଞାନ; ପଠନ ମନନାଦିର ଜ୍ଞାନ ଇତ୍ୟାଦି ବିଶୁଦ୍ଧ ଜ୍ଞାନ ନୁହେ । ଏ ସବୁ ମିଶ୍ର ବା ବୈକାରିକ ଅଟେ । ମନେକର ଶର୍କରା ଏକମାତ୍ର ବିଶୁଦ୍ଧ ସ୍ୱାଦୁବିଶିଷ୍ଟ ଅଟେ । ତାହା ଯେପରି ନାନାପ୍ରକାର ଅସ୍ୱାଦୁବିଶିଷ୍ଟ ଅଟା, ମଇଦା, ଚୂଡ଼ା ଓ ମୁଢ଼ି ଇତ୍ୟାଦିରେ ମିଶ୍ରିତ ହୋଇ ନାନାପ୍ରକାର ଇତର ବିଶେଷ-ଶ୍ରେଣୀୟ ମିଷ୍ଟ ଖାଦ୍ୟରୂପେ ବ୍ୟବହୃତ ହୋଇଥାଏ, ସେହିପରି ବିଶୁଦ୍ଧ ଜ୍ଞାନାମୃତ ସ୍ୱରୂପତଃ ସମରସ ବିଶିଷ୍ଟ ଅଟେ । ଆଜି ମଧ୍ୟ ଏହା ଶବ୍ଦଜ୍ଞାନ ଓ ଶ୍ରବଣ ଜ୍ଞାନାଦିରୂପେ ସଂସାରରେ ବ୍ୟବହାର କରାଯାଉଅଛି । ଏହି ଶୁଦ୍ଧ ଜ୍ଞାନ ଅନ୍ତଃକରଣାଦିର ସମ୍ବନ୍ଧ ଧରିବା ପୂର୍ବେ ଆତ୍ମଜ୍ଞାନାକାରରେ ଥାଏ, ପରେ ଅନ୍ତଃକରଣାଦି ସହଯୋଗରେ ଲୋକପ୍ରଚଳିତ ନାନାବିଧ ଜ୍ଞାନାକାରରେ ଉପନୀତ ହୁଏ । ଏହିରୂପେ ପ୍ରେମ, ଧର୍ମ ଓ ଜ୍ଞାନ (ସୂର୍ଯ୍ୟାଲୋକ, ଚନ୍ଦ୍ରାଲୋକ, ଅଗ୍ନ୍ୟାଲୋକାଦି ଭୌତିକାକାଶକୁ ଦୀପ୍ତିମାନ କଲାପରି) ଆଧ୍ୟାତ୍ମିକ ଜଗତକୁ ଦୀପ୍ତିମାନ କରୁଅଛନ୍ତି ।

(୩) **ବୈରାଗ୍ୟ**— ଆତ୍ମା ଧର୍ମ, ଜ୍ଞାନ ଏବଂ ପ୍ରେମଯୁକ୍ତ ହେବା ମାତ୍ରେ ବୈରାଗ୍ୟ ସେହି ସଙ୍ଗେ ସଙ୍ଗେ ଉଦିତ ହୁଏ । ବୈରାଗ୍ୟର ଅର୍ଥ ରାଗଶୂନ୍ୟତା । ଦେହେନ୍ଦ୍ରିୟ ସଂସାର ସମ୍ବନ୍ଧରୁ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ ବିଶିଷ୍ଟ ସୁଖ, ଦୁଃଖ ମୋହାତ୍ମକ ଯେଉଁ ଭାବ ଅନ୍ତଃକରଣକୁ ତନ୍ମୟ କରେ, ସେହି ଭାବର ଆସକ୍ତିର ନାମ 'ରାଗ' । ଏହି ରାଗରାହିତ୍ୟର ନାମ ବୈରାଗ୍ୟ । ଏହି ବୈରାଗ୍ୟଦ୍ୱାରା ଆତ୍ମାରେ ବିଷୟ-କଳଙ୍କ ଲାଗିପାରେ ନାହିଁ । ସୁତରାଂ ଆତ୍ମା ସର୍ବଦା ପ୍ରେମ, ଧର୍ମ ଓ ଜ୍ଞାନଯୁକ୍ତ ଥାଇ

ଆତ୍ମସଂସ୍ଥ ରହିଥାନ୍ତି । ପଦ୍ମପତ୍ରରେ ଚିକ୍‌କଣ ଗୁଣ ଥିବାରୁ ତାହା ଜଳରେ ଥିଲେ ସୁଦ୍ଧା ଜଳ ଯେପରି ତହିଁରେ ଲାଗିପାରେ ନାହିଁ, ବୈରାଗ୍ୟ ବଳରେ ସେହିପରି ଆତ୍ମାରେ ବିଷୟ ଜଞ୍ଜାଳ ଲାଗିପାରେ ନାହିଁ । ଏହିପରି ଆତ୍ମା, ପ୍ରେମ, ଧର୍ମ, ଜ୍ଞାନ ଏବଂ ବୈରାଗ୍ୟଯୁକ୍ତ ହେଲାରୁ ସହିଷ୍ଣୁତାଦି ସମସ୍ତ ସଦ୍‌ଗୁଣମାନ ତହିଁରେ ପ୍ରକାଶିତ ହୋଇ ଅନୁବର୍ତ୍ତନ କରନ୍ତି । ଅନ୍ତଃକରଣ ସଙ୍ଗ ତ୍ରିଗୁଣ ସଙ୍ଗ । ଏମନ୍ତକି ପ୍ରକୃତି ସଙ୍ଗ ପର୍ଯ୍ୟନ୍ତ ବିରାଗ ବା ତ୍ୟାଗ କରିବା ଆତ୍ମାପକ୍ଷରେ ପ୍ରକୃଷ୍ଟ ବା ମହାବୈରାଗ୍ୟ ଅଟେ । ଏହାର ଅର୍ଥ—ଅନ୍ତଃକରଣ ଓ ତ୍ରିଗୁଣାଦିକୁ ଏକାବେଳକେ ବାହାର କରି ଦେବା ନୁହେଁ । ଏମାନଙ୍କର ସଙ୍ଗାସକ୍ତି ପରିତ୍ୟାଗ କରଣୀୟ । ବୈରାଗ୍ୟଦ୍ୱାରା ଅନ୍ତଃକରଣାଦି ସଙ୍ଗରେ ଅନାସକ୍ତ ହେବା ଏହାର ଅର୍ଥ । ଏତଦ୍ରୂପ ସଙ୍ଗ ବା ଆସକ୍ତି, ଆତ୍ମାରୁ ପରିତ୍ୟକ୍ତ ହେଲେ ଆତ୍ମା ଅନ୍ତଃକରଣଗତ ବିଷୟ-ବାସନା ଓ ସଂସ୍କାରାଦି ହେତୁ ରାଜସ, ତାମସ, ଭୋଗାତ୍ମକ ସୁଖ, ଦୁଃଖ ଓ ମୋହାଚ୍ଛନ୍ନଶୀଳ୍ୟ ବନ୍ଧନରୁ ମୁକ୍ତିଲାଭ କରନ୍ତି । ପୁଣି ଏତଦ୍‌ଦ୍ୱାରା ଅନ୍ତଃକରଣ ଓ ପ୍ରାଣେନ୍ଦ୍ରିୟାଦି ସତ୍ତ୍ୱ-ଶୁଦ୍ଧ-ବିବେକାଧୀନ ରହି ନିୟମିତ ସୀମାବଦ୍ଧ ଓ ବିଧିନିର୍ଦ୍ଦିଷ୍ଟ ମାର୍ଗରେ ବିଚରଣ କରିବାକୁ ବାଧ୍ୟ ହୁଅନ୍ତି । ଏହିରୂପେ ବୈରାଗ୍ୟ ଅନ୍ତଃକରଣଗତ ଦେହ ସଂସାର ବନ୍ଧନରୁ ଆତ୍ମାକୁ ଅଲଗା ରଖି ମଧ୍ୟରେ ଅଭେଦ୍ୟ ପ୍ରାଚୀରବତ୍ ଦଣ୍ଡାୟମାନ ରହି ଆରପାଖରେ ଆତ୍ମାକୁ ପ୍ରେମ, ଧର୍ମ, ଜ୍ଞାନରେ ନିତ୍ୟ ବିଜଡ଼ିତ କରି ସ୍ୱୟଂ ସେହି ଆତ୍ମା ସହିତ ସଂଯୁକ୍ତ ରହିବାପରେ ଏଥିରେ ପ୍ରେମ, ଧର୍ମ, ଜ୍ଞାନ ଓ ବୈରାଗ୍ୟାଦି ପରମାର୍ଥଚତୁଷ୍ଟୟ ଆତ୍ମାର ବ୍ୟବଧାନରହିତ ଅଦୂର ନିକଟ ସଙ୍ଗୀ ଓ ପରିଚରରୂପେ ପ୍ରତିଷ୍ଠିତ ରହି ସର୍ବଦା ଆତ୍ମାକୁ ଆତ୍ମଭାବେ ସୁପ୍ରତିଷ୍ଠିତ କରି ରଖନ୍ତି । ଅଥଚ ସହିଷ୍ଣୁତା, ନ୍ୟାୟାଦିରୁ ଆରମ୍ଭ କରି ଭକ୍ତି ପର୍ଯ୍ୟନ୍ତ ଉଲ୍ଲିଖିତ ଓ ଅପେକ୍ଷିତ ଅନ୍ୟାନ୍ୟ ସଦ୍‌ଗୁଣମାନ ଏକତ୍ର ମିଳିତ ହୋଇ ଅନ୍ତଃକରଣ ସହିତ ଏକାନ୍ତ ସାହଚର୍ଯ୍ୟ କରିବାକୁ ଶୁଭାଗମନ କରନ୍ତି । ଏହିରୂପେ ଅନ୍ତଃକରଣ, ସହିଷ୍ଣୁତା, ନ୍ୟାୟ, ସତ୍ୟ, ଦୟା, କ୍ଷମା ଓ ପ୍ରୀତି ପ୍ରଭୃତି ସର୍ବପ୍ରକାର ସର୍ବସଂଖ୍ୟକ ସଦ୍‌ଗୁଣରତ୍ନାବଳୀରେ ବିଭୂଷିତ ହୋଇ ଆତ୍ମାର ଆଶ୍ରୟ ଗ୍ରହଣ କରେ । ଆତ୍ମଦେବ ! ଏତଦ୍ରୂପ ସର୍ବସଦ୍‌ଗୁଣ-ସମନ୍ୱିତ ଶୁଦ୍ଧାନ୍ତଃକରଣ ବିଶିଷ୍ଟ ହୋଇ ପ୍ରେମ, ଧର୍ମ, ଜ୍ଞାନ ଓ ବୈରାଗ୍ୟ ସୁଶୋଭିତ ପବିତ୍ର କଳେବର ଧାରଣପୂର୍ବକ, ଜଡ଼ ଭୌତିକ ଜଗତରେ ଆଧ୍ୟାତ୍ମିକ ରାଜ୍ୟର ଆଦର୍ଶ ପ୍ରଦର୍ଶନ କରନ୍ତି । ସେହି ଆତ୍ମଦେବଙ୍କୁ ଏହିଠାରେ ନମସ୍କାର ।

ଏଥିରୁ ବୁଝି ରଖିବା ଉଚିତ ଯେ ପ୍ରେମ, ଧର୍ମ, ଜ୍ଞାନ ଓ ବୈରାଗ୍ୟ, ଏମାନେ ଆତ୍ମାର ନିତ୍ୟ ସହଯୋଗୀ ଏବଂ ସହିଷ୍ଣୁତାଦିଠାରୁ ଭକ୍ତି ପର୍ଯ୍ୟନ୍ତ ଆଉ ଅପେକ୍ଷିତ ଅନ୍ୟାନ୍ୟ ସମସ୍ତ ସଦ୍‌ଗୁଣମାନେ ଏକତ୍ରେ ବିଶୁଦ୍ଧାନ୍ତଃକରଣର ସହଯୋଗୀ ଅଟନ୍ତି । ଆତ୍ମା ପ୍ରେମାଦି ଚତୁଷ୍ଟୟ ବିଶିଷ୍ଟ ହେଲାରୁ, ଏତଦ୍ରୂପ ପବିତ୍ର ସହଯୋଗୀଗଣଙ୍କ ସହିତ ଅନ୍ତଃକରଣ, ଆତ୍ମାକୁ ସମ୍ୟକ୍ ପ୍ରକାରରେ ଅଭ୍ୟାଗତ ଗୁରୁଦେବ ସ୍ୱରୂପ ବରଣ କରି

ତଥୋପଯୁକ୍ତ ପବିତ୍ର ଅନ୍ତଃ ସଞ୍ଚାର କରିବାକୁ ଆନନ୍ଦ ସହିତରେ ଅନୁଗତ ହୁଏ । ଏହା ତାହାର ଧର୍ମ, ଏହାହିଁ ଆତ୍ମାର ଆତ୍ମପଦବୀ ଏବଂ ଏତଦ୍ରୂପ ଅନ୍ତଃକରଣହିଁ ସଂସାରରେ ସ୍ୱର୍ଗୀୟ ଆଦର୍ଶ । ଆଜକାଲି ଏହି ଆଦର୍ଶ କେଉଁଠାରେ ? ଆଉ ଏହାର ଅନୁକରଣର ସ୍ଥାନ ବା କେଉଁଆଡ଼େ ? ବର୍ତ୍ତମାନ ଭାରତର ବିଲୟପ୍ରାପ୍ତ ଅମୂଲ୍ୟଧନର ପୁନର୍ବୋଦୟବେଳ ଆସି ଉପସ୍ଥିତ ହେଲାଣି । ପ୍ରେମାନନ୍ଦ ଅନୁଭବ କରିବା ଆତ୍ମାର ଧର୍ମ । ଆତ୍ମା ପ୍ରେମ ସଙ୍ଗ ଅନୁଭବ କଲାରୁ ଧର୍ମ ଉପସ୍ଥିତ ହୁଏ । ଆତ୍ମପ୍ରେମ ଓ ଆତ୍ମଧର୍ମ-ବିଶିଷ୍ଟ ହେବାର ନାମହିଁ ଆତ୍ମଜ୍ଞାନ । ଏହିରୂପେ ପ୍ରେମ, ଧର୍ମ ଏବଂ ଜ୍ଞାନ ଆତ୍ମାରେ ସମ୍ପାଦିତ ହେଲାରୁ ବୈରାଗ୍ୟ ଜାତ ହୁଏ । ଏହି ପ୍ରେମ, ଧର୍ମ ଓ ଜ୍ଞାନକୁ ଆତ୍ମାରେ ଦୃଢ଼ଭାବେ ବାନ୍ଧି ରଖିବାକୁ ସ୍ୱତଃ ଉଦୟ ହୁଏ । ଏହି ପ୍ରେମାଦିତ୍ରୟ ବୈରାଗ୍ୟର ସାପେକ୍ଷ । ବୈରାଗ୍ୟ ଏହି ତିନିର ସଦା ଅପେକ୍ଷିତ ସଙ୍ଗୀ । ଏହି ପ୍ରେମ, ଧର୍ମ, ଜ୍ଞାନ ଏବଂ ବୈରାଗ୍ୟ ଗୁରହେଁ ଏକ ସୂତ୍ରରେ ଗ୍ରଥିତ ଏବଂ ଏକାଧାରସ୍ଥ ଏକ ମଣିରତ୍ନମାଳା ପରି ଆତ୍ମାରେ ଶୋଭା ପାଉଅଛନ୍ତି । ବୈରାଗ୍ୟର କାର୍ଯ୍ୟ ସବୁଆଡ଼େ ଆତ୍ମାର ହିତବିଧାନ କରେ । ଏକଆଡ଼େ ବୈରାଗ୍ୟ ପ୍ରେମାଦିତ୍ରୟକୁ ଆତ୍ମାରେ ନିୟନ୍ତ୍ରିତ କରି ଦୃଢ଼ କରି ରଖେ, ଏବଂ ଅନ୍ୟଆଡ଼େ ଅନ୍ତଃକରଣକୁ ବିଷୟ-ମଳଶୂନ୍ୟ କରି ଦେବାରୁ ତାହା ବିଶୁଦ୍ଧଭାବ ପ୍ରାପ୍ତ ହୁଏ । ଅନ୍ତଃକରଣ ଶୁଦ୍ଧ ହେଲାରୁ ପୂର୍ବଲିଖିତ ସହିଷ୍ଣୁତାଠାରୁ ଭକ୍ତି ପର୍ଯ୍ୟନ୍ତ ଏବଂ ଅନ୍ୟ ସକଳ ସଦ୍‌ଗୁଣମାନେ ଅନ୍ତଃକରଣରେ ସ୍ୱତଃ ଉଦୟ ହୋଇ ତାହାକୁ ସମ୍ପୂର୍ଣ୍ଣ ନିର୍ମଳ ଜ୍ୟୋତିର୍ମୟ କରି ଦିଅନ୍ତି । ଆତ୍ମା ଏହିରୂପେ ପ୍ରେମାଦି ବିଶିଷ୍ଟ ଓ ବିଶୁଦ୍ଧ ଅନ୍ତଃକରଣଯୁକ୍ତ ହୋଇ ଯେପରି ସର୍ବଦା ସବୁବେଳେ ଆତ୍ମାନନ୍ଦ ସମ୍ଭୋଗ କରୁଅଛି, ସେହିପରି ବିଷୟାନନ୍ଦ ମଧ୍ୟ ଉପଭୋଗ କରୁଅଛନ୍ତି, ଅର୍ଥାତ୍ ଏଥିରେ ଆତ୍ମାର କେବଳୀଭାବ ସର୍ବଦା ସମଭାବେ ବିଦ୍ୟମାନ ରହିଅଛି । ଆତ୍ମାର ଏତଦ୍ରୂପ ଗୋଟିଏ ଆଦର୍ଶ କୋଟିଏ ସ୍ଥାନକୁ ଉଜ୍ଜ୍ୱଳ କରିପାରେ ।

ଏବେ (୪) ସହିଷ୍ଣୁତାଠାରୁ (୩୭) ଭକ୍ତି ପର୍ଯ୍ୟନ୍ତ ସଦ୍‌ଗୁଣମାନଙ୍କର ପରିଚୟ ସଂକ୍ଷିପ୍ତରେ ଦିଆଯାଉଅଛି ।

(୪) **ସହିଷ୍ଣୁତା**—ସହିବା ଗୁଣର ନାମ ସହିଷ୍ଣୁତା । ଆତ୍ମଭ୍ରଷ୍ଟ କରିବାକୁ ପ୍ରକୃତି ଯେତେ ପ୍ରକାର ପ୍ରଲୋଭନ ଏବଂ ଅସହ୍ୟ କଷ୍ଟ-ଯନ୍ତ୍ରଣାଦି ପ୍ରଦାନ ଦ୍ୱାରା ଆତ୍ମାକୁ ପରୀକ୍ଷା କରେ, ଏହି ସହିଷ୍ଣୁତା ଆଶ୍ରୟରେ ଆତ୍ମା ସେ ସବୁରୁ ଉତ୍ତୀର୍ଣ୍ଣ ହୁଅନ୍ତି । ଦେହ, ପ୍ରାଣ ଓ ମନର କଷ୍ଟ ପ୍ରଭୃତି ଅସହ୍ୟ ହେଲେ ସହିଷ୍ଣୁତା ଅବଲମ୍ବନ ପୂର୍ବକ, ଦେହ, ପ୍ରାଣ ଓ ମନକୁ ବିଚଳିତ ନ କରି, ଆସନବଦ୍ଧ ହୋଇ ଆତ୍ମଚିନ୍ତାରେ ନିମଗ୍ନ ରହିବା ଉଚିତ । ତଦ୍ରୂପ ସ୍ଥିର, ଦୃଢ଼, ଧ୍ୟାନ ମଧ୍ୟରେ ସମୁଦାୟ କଷ୍ଟରୂପ କାଷ୍ଠ ସେହି ଧ୍ୟାନ-ପୂତ ଜ୍ଞାନାଗ୍ନିରେ ଭସ୍ମସାତ୍ ହୋଇଯାଏ । ଏଥିରେ ଅଭାବ୍ୟ ଓ ଅକଥ୍ୟ ସାହାଯ୍ୟ ପରମେଶ୍ୱରଙ୍କ ଆଡ଼ୁ ମିଳେ । ଏହା ନିତ୍ୟ ନିୟମ ଅଟେ । ଆମ୍ଭ ସଂସ୍ଥାନ ସୁରକ୍ଷା

ପକ୍ଷରେ ସହିଷ୍ଣୁତା ଏକ ପ୍ରଧାନ ସହାୟ । ଏହାପରେ ଉକ୍ତ କଷ୍ଟ ଯନ୍ତ୍ରଣାଦିରୁ ମୁକ୍ତ ହେବାକୁ ଯଦି କ୍ରିୟାକୌଶଳାଦି ଆବଶ୍ୟକ ହୁଏ, ତେବେ ତାହାସବୁ ତଦ୍ରୂପ ଧ୍ୟାନରୁ କୌଣସି ପ୍ରକାରେ କାହାଦ୍ୱାରା ହେଲେ ନିଷ୍ପାଦିତ ହୋଇ ଯାଇଥାଏ; ଏଥିରେ ସନ୍ଦେହ ନାହିଁ । ଏ ହେତୁ ସହିଷ୍ଣୁତା ସର୍ବଥା ଅବଲମ୍ବନୀୟ ଅଟେ । ଏହା ଅନ୍ତଃକରଣାଗାରର ଏକ ପ୍ରଧାନ ସମୁଜ୍ଜ୍ୱଳ ରତ୍ନ ଅଟେ । ଏହାଦ୍ୱାରା ସଂସାରରେ ଅମିତ୍ର ବା ଘୃଣ୍ୟ ହୋଇ କେହି ବା କିଛି ରହି ନ ପାରେ ।

(୫) **ନ୍ୟାୟ**—ନ୍ୟାୟର ମାହାତ୍ମ୍ୟ ସମସ୍ତେ ବୁଝନ୍ତି । ଏହାଦ୍ୱାରା ବ୍ୟକ୍ତିଗତ ବୈଷମ୍ୟ, ପକ୍ଷପାତିତା ଓ ସ୍ୱାର୍ଥପରତା ତ୍ୟକ୍ତ ହୁଏ ଏବଂ ମନୁଷ୍ୟସମାଜର ସମକଲ୍ୟାଣ ସାଧିତ ହୁଏ । ଏହା ମନୁଷ୍ୟତ୍ୱର ପ୍ରତିଷ୍ଠାତା ଏବଂ ଏହି ନ୍ୟାୟ ସଂସାରର ପ୍ରକୃତ ଶାସକ ଅଟେ । ଏହାର ମର୍ଯ୍ୟାଦା ଯେଉଁଠାରେ ନାହିଁ, ସେ ଯେତେ ଦେଖାଇ ହେଉ ପଛକେ, ସେ ଦ୍ୱିପଦ ପଶୁ ଅଟେ । ନ୍ୟାୟ ଅନ୍ତଃକରଣରାଜ୍ୟରେ ସାକ୍ଷାତ୍ ଈଶ୍ୱରବତାର ସ୍ୱରୂପ ଅଟେ । ଏହା ଯେଉଁ ହୃଦୟରେ ନାହିଁ, ସେ ନାସ୍ତିକ ଓ ପାଷଣ୍ଡ, ପିଶାଚ ମାତ୍ର ।

(୬) **ସତ୍ୟ**—ସତ୍ୟ, ଆତ୍ମାର ଜ୍ଞାନାଲୋକ । ଏହାଦ୍ୱାରା ଆତ୍ମା ଆତ୍ମାରୂପେ, ଦେହ-ସଂସାରାଦି-ନିର୍ଦ୍ଦିଷ୍ଟ ଦେହ-ସଂସାରାଦିରୂପେ, ଅର୍ଥାତ୍ ଯାହା ଯେପରି ଠିକ୍ ତାହା ସେହିପରି ପ୍ରକାଶିତ ହୁଏ । ଏତଦ୍ୱାରା ମିଥ୍ୟା, କପଟ, ଛନ୍ଦ, ପ୍ରବଞ୍ଚନା ଓ ପରଅନିଷ୍ଟାଦି ନିବାରିତ ହୁଏ । ଏହାଦ୍ୱାରା ମନୁଷ୍ୟ ସର୍ବସାଧାରଣର ହିତକାଂକ୍ଷୀ ମିତ୍ରରୂପେ ପୂଜିତ ହୁଏ । ଏହାଦ୍ୱାରା ଅନ୍ତଃକରଣ ପ୍ରଶାନ୍ତ ଓ ନିର୍ମଳ ହୁଏ ଅଥଚ ସକଳ ସଦ୍‌ଗୁଣମାନେ ସତ୍ୟଦ୍ୱାରା ଆକୃଷ୍ଟ ହୋଇ ଅନ୍ତଃକରଣରେ ମିଳିତ ହୁଅନ୍ତି ଏବଂ ମନୁଷ୍ୟ କ୍ଳିଷ୍ଟ ଚିନ୍ତାରୁ ନିବୃତ୍ତି ଲାଭକରେ । ସତ୍ୟହିଁ ପରମ ଧର୍ମ, ସତ୍ୟହିଁ ସବୁ ଜ୍ଞାନ ଏବଂ ଐଶ୍ୱର୍ଯ୍ୟର ନିଦାନ, ସତ୍ୟ ଅବିକୃତ ଆନନ୍ଦର ଭଣ୍ଡାର, ଆଉ ମଧ୍ୟ ସତ୍ୟ ମହାତପ ନାମରେ ଆଖ୍ୟାତ ଅଟେ ।

(୭) **ଦୟା**—ଦୟା ଏହି ଭୌତିକ ଜଗତରେ ପରମେଶ୍ୱର ଓ ପ୍ରକୃତି ଦେବୀର ମୂର୍ତ୍ତିମାନ କଳେବରର ପ୍ରତ୍ୟକ୍ଷ ଆଦର୍ଶ; ଏହା ଦୁଃଖତାପାଦିର ଶାଣିତ ଅସ୍ତ୍ର ଓ ବିନାଶକ । ଏହି ଦୟାର ଚିହ୍ନସ୍ୱରୂପ ଦେହ ଓ ସଂସାର ସମ୍ବନ୍ଧ ତରଦଣ୍ଡାଦିମାନ । ଯାହା ଦେଖ, ତହିଁରେ ଦୟାର ସତ୍ତା ଅନୁଭବ କରାଯାଉଅଛି । ସ୍ୱାର୍ଥପରତା, ବିଳାସିତା, ଓ ସ୍ୱେଚ୍ଛାଚାରିତାଦି ଅସଦ୍‌ଗୁଣମାନେ ଈଶ୍ୱରଦତ୍ତ ଦୟାରସାମୃତପୂର୍ଣ୍ଣ ସଂସାରରେ ଗରଳ ସ୍ୱରୂପ ହେଲେ ମଧ୍ୟ ତାହା ସବୁ ସେମାନଙ୍କ ଆଧାରଭାଣ୍ଡ ସହିତ ଅଳ୍ପକାଳ ମଧ୍ୟରେ ସେହି ଦୟାର ମାହାତ୍ମ୍ୟବଳରେ ଧରାପଡ଼ି ବିନାଶପ୍ରାପ୍ତ ହୁଅନ୍ତି । ଦୟା ଜଗତର ତଥା ପ୍ରାଣୀସମାଜର ସଦାକଲ୍ୟାଣକାଂକ୍ଷୀ ମାତାପିତା ସ୍ୱରୂପ । ଭଗବାନ ହରି ଓ ଭଗବତୀ ପ୍ରକୃତି ଦେବୀ, ଅବ୍ୟକ୍ତରୂପ ହୋଇ ସୁଦ୍ଧା ଏହି ଦୟାରୂପରେ ସାକ୍ଷାତ୍

ବ୍ୟକ୍ତିରୂପ ଧାରଣ କରିଅଛନ୍ତି । ଏହାଦ୍ୱାରା ପ୍ରାଣୀବର୍ଗର ପାଳନ, ରକ୍ଷଣ ଓ ସମ୍ପାଦନ କରୁଅଛନ୍ତି । ମନୁଷ୍ୟ ଏହି ଦୟାମୃତ ସମ୍ପାଦନ କରି ଓ ସେବା କରି ପବିତ୍ରାନ୍ତଃକରଣ ହୋଇ ମନୁଷ୍ୟପ୍ରତି ତଥା ସର୍ବଜୀବ ପ୍ରତି ସଦୟ ହେବା ଉଚିତ । ତାହା ନ ହେଲେ ମନୁଷ୍ୟ, ଈଶ୍ୱରଦ୍ରୋହୀ ରାକ୍ଷସର ହିଂସ୍ର ପାପକଳେବର ଭିନ୍ନ ଆଉ କିଛି ନୁହେ । ଦୟା ସବୁ କର୍ମ ଓ ସବୁ ଧର୍ମ ଏବଂ ସବୁପ୍ରକାର ପୁଣ୍ୟରୁ ବଳି ମହତ୍ ଅଟେ । ମୁଁ ଦୟା ସର୍ବଦା ଲୋଡ଼ୁଅଛି । ଦୟା ଈଶ୍ୱରଦତ୍ତ ଚନ୍ଦ୍ରରୂପେ ସର୍ବତ୍ର ବିରାଜିତ ହୋଇ ରହିଅଛି । ଦୟା ସର୍ବ ପ୍ରାଣୀକୁ ସୁରକ୍ଷା କରିଅଛି । ସମସ୍ତେ ଈଶ୍ୱର ରାଜ୍ୟରେ ଦୟାର ଭିକାରୀ; ତେବେ ପର ବେଳକୁ 'ମୁଁ' ଦୟା ପ୍ରତିପାଳନ ନ କରିବା ମୋର ଈଶ୍ୱରଦ୍ରୋହିତା ଓ ମହାପାପକାରିତା ଅଟେ ।

(୮) **କ୍ଷମା**--କ୍ଷମା, ଦୟା ଏବଂ ସହିଷ୍ଣୁତାର ସହୋଦର । କ୍ଷମା ଦୋଷୀର, ପାପୀର, ଦୁଷ୍କୃତର ଓ ସବୁପ୍ରକାର ମନ୍ଦଦଗ୍ଧଚାରୀର ଓ ମନ୍ଦକର୍ମୀର କ୍ଲେଶ ନିବାରକ-ଅମୃତ-ରସାଞ୍ଜନ ସ୍ୱରୂପ ଅଟେ । ଗୁରୁତର ଦୋଷର ପ୍ରାୟଶ୍ଚିତ୍ତ ଏପରି କ୍ଷମାସହକାରେ ହେବା ଉଚିତ, ଯେପରି କି ସେହି ଦୋଷ ସଂଶୋଧିତ ହୋଇ ଦୋଷମାର୍ଜିତ ବୁଦ୍ଧି ଓ ଜ୍ଞାନଲାଭ କରିବାକୁ ସୁଯୋଗ ପାଇ ପାରିବ । କ୍ଷମା ଗୁଣ ଅନ୍ତଃକରଣର ସ୍ଥିରତା ରକ୍ଷାକରେ । କ୍ଷମାଶୀଳତାଦ୍ୱାରା ଶତ୍ରୁ ମିତ୍ରରୂପରେ ପରିଣତ ହୁଏ ଓ କ୍ଷମାଶୀଳତାଦ୍ୱାରା 'କ୍ରୋଧ' ବିନଷ୍ଟ ହୁଏ । କ୍ଷମାଦ୍ୱାରା ମଧ୍ୟ କ୍ଷତି ସ୍ୱୀକାର କରିବାକୁ ହୁଏ । କ୍ଷମା ନ ଥିଲେ ମନୁଷ୍ୟ ପ୍ରେତରୁ ବଳି କ୍ରୂର ଓ କଠିନହୃଦୟ ହୁଏ । କ୍ଷମା, ସଂସାରକୁ ଶାନ୍ତିପୂର୍ଣ୍ଣ ଦେବ-ଧାମରୂପେ ପ୍ରକାଶ କରେ । କ୍ଷମା ଅସନ୍ତୋଷକୁ ସ୍ଥାନ ଦିଏ ନାହିଁ । କ୍ଷମା, ସୁଶୀତଳ-ଗଙ୍ଗୋଦକ ପରି ଅନ୍ତଃକରଣର ସମସ୍ତ ତପ୍ତ-ପ୍ରବୃତ୍ତିମାନଙ୍କୁ ସୁଶୀତଳ କରି ରଖିଥାଏ ।

(୯) **ପ୍ରୀତି**, (୧୦) **ଶ୍ରଦ୍ଧା**—ଉଭୟେ ପରସ୍ପର ସାପେକ୍ଷ; ପ୍ରୀତି ଯେଉଁଠାରେ ଶ୍ରଦ୍ଧା ସେହିଠାରେ; ପ୍ରୀତି ଓ ଶ୍ରଦ୍ଧାଦ୍ୱାରା ସବୁଠାରେ ମମତା ବିସ୍ତୃତ ହୁଏ । ସର୍ବଦେହରେ ଜୀବାତ୍ମାର ଅଧିଷ୍ଠାନ ଦର୍ଶନ କରି, ସର୍ବତ୍ର ପ୍ରୀତି ଓ ଶ୍ରଦ୍ଧା ସ୍ଥାପନ କରିବା ବିଧେୟ ଅଟେ । ପ୍ରୀତି ଓ ଶ୍ରଦ୍ଧାଦ୍ୱାରା ପରସ୍ପର ଭେଦ ରହିତ ହୁଏ । ଏହାଦ୍ୱାରା ପରୋପକାର, ପରସେବା ଓ ଦାନ ଇତ୍ୟାଦି ଅନୁଷ୍ଠିତ ହୁଏ, ଆଉ ମଧ୍ୟ ତ୍ୟାଗସ୍ୱୀକାରିତା ଜାତ ହୁଏ । ପ୍ରୀତି ଶ୍ରଦ୍ଧାନ୍ତଃକରଣର ସୁମଧୁର ଅମୃତରସ ସ୍ୱରୂପ ଅଟେ । ଏହା ଅନ୍ତଃକରଣକୁ ନିର୍ମଳ କରେ । ହୃଦୟ ସବୁବେଳେ ଆହ୍ଲାଦରେ ପୂର୍ଣ୍ଣ ଥାଏ । ପ୍ରୀତି ଓ ଶ୍ରଦ୍ଧାର ବର୍ଣ୍ଣନା ଭାଷାରେ ଅବର୍ଣ୍ଣନୀୟ ଅଟେ । ଏହାର ଆଦର୍ଶ ଅତୁଳନୀୟ ଅଟେ । ଏହା ଯେଉଁଠାରେ ପ୍ରାଣୀର ମମତା ପର୍ଯ୍ୟନ୍ତ ହେୟ କରାଏ, ସେଠାରେ ଯେତେ ନିକୃଷ୍ଟ ହେଲେ ମଧ୍ୟ ଉତ୍କୃଷ୍ଟରୁ ଉତ୍କୃଷ୍ଟତର ଦେଖାଯାଏ । ପଶୁ, ପକ୍ଷୀ ପ୍ରଭୃତି ଏଥିରେ ମନୁଷ୍ୟର ଆନୁଗତ୍ୟ ସ୍ୱୀକାର କରନ୍ତି । ପ୍ରୀତି ଓ ଶ୍ରଦ୍ଧା ଅଶ୍ରାବ୍ୟକୁ ସୁଶ୍ରାବ୍ୟ କରିଦିଅନ୍ତି । କୁଦୃଶ୍ୟକୁ ସୁଦୃଶ୍ୟରୂପେ, ଦୁର୍ଗନ୍ଧକୁ ସୁଗନ୍ଧରୂପେ, କୁରୂପକୁ ସୁରୂପରୂପେ, ଅସ୍ପୃଶ୍ୟକୁ ସ୍ପୃଶ୍ୟ

ଆକାରରେ ଏବଂ ଅସ୍ୱାଦୁ ଓ ଅରୁଚକରକୁ ସୁସ୍ୱାଦୁ ଓ ରୁଚକର ବୋଲି ପ୍ରତିପନ୍ନ କରନ୍ତି । ପ୍ରୀତି ଓ ଶ୍ରଦ୍ଧା ଆତ୍ମାର ସ୍ଥାନ । ପ୍ରୀତି ଯେଉଁ ସ୍ଥାନରେ, ଆତ୍ମା, ହୃଦୟ ଓ ମନ-ପ୍ରାଣାଦି ସେଇଠାରେ ଆବଦ୍ଧ । ପ୍ରୀତି ଓ ଶ୍ରଦ୍ଧାକୁ ବହୁ ଦୂର ବଡ଼ ନିକଟ, ଅସାଧ୍ୟ ସହଜସାଧ୍ୟ, ଅଦେୟ ଦେୟ, ଅକର୍ତ୍ତବ୍ୟ କର୍ତ୍ତବ୍ୟ, ଅଗମ୍ୟ ସୁଗମ୍ୟ ଏବଂ କୁଭବ ସୁଭବରେ ଦେଖାଯାଏ । ଏହି ଉଭୟ ଗୁଣର ବର୍ଣ୍ଣନାରେ ଏବଂ ଅନୁଭବରେ ସଂସାର ପୂର୍ଣ୍ଣ ହୋଇଅଛି । ଏହି ପ୍ରୀତି ଏବଂ ଶ୍ରଦ୍ଧା ପରମେଶ୍ୱରଠାରେ ଅର୍ପିତ ହେଲେ, ବିନା କର୍ମରେ, ବିନା ଭକ୍ତିରେ, ବିନା ଜ୍ଞାନରେ ଓ ବିନା ଯୋଗସମାଧି ପ୍ରଭୃତିରେ ଆତ୍ମାବ୍ରହ୍ମ ଲୟପ୍ରାପ୍ତ ହୁଅନ୍ତି । ଏହି ପ୍ରୀତି ଓ ଶ୍ରଦ୍ଧା ସର୍ବଦା ଆବାହନୀୟ, ସେବ୍ୟ, ପୂଜ୍ୟ, ବନ୍ଦନୀୟ, ରକ୍ଷଣୀୟ ଏବଂ ଏକାନ୍ତ ପାଳନୀୟ, ମାନନୀୟ, ଅଥଚ ନମସ୍କରଣୀୟ ଅଟେ । ଏହା ସଙ୍ଗେ ସଙ୍ଗେ ଏହାର ଆଧାରଭୂତ ଭଣ୍ଡାର ପ୍ରକୃତି ପରମେଶ୍ୱରଙ୍କୁ ସତତ ପ୍ରଣାମ, ଭୂମିଷ୍ଟ ଦଣ୍ଡବତ, ନମସ୍କାର । ଶ୍ରୀହରୟେ ନମଃ ।

(୧୧) **ଆହ୍ଲାଦ**—ଆନନ୍ଦ, ପ୍ରୀତି ଓ ଶ୍ରଦ୍ଧାର ଆଦର୍ଶ ଏବଂ ବିକାଶ, ଅଥଚ ଏହି ତିନର ସମ୍ବନ୍ଧରୁ ଆହ୍ଲାଦର ଜନ୍ମ ।

(୧୨) **ସମତା ବା ସାମ୍ୟ**—ଏକ ଆତ୍ମା ଜୀବରୂପେ ସର୍ବ ମନୁଷ୍ୟ ଦେହରେ ଏକ ଆତ୍ମଭାବେ ବିରାଜମାନ । ସବୁ ମନୁଷ୍ୟଙ୍କୁ ପ୍ରକୃତି ସମାନ କରି ଦେଖୁଥିବାରୁ ସମସ୍ତଙ୍କ ପାଇଁ ସ୍ଥୂଳ, ସୂକ୍ଷ୍ମ ଜଗଦାକାରରେ ସମସ୍ତଙ୍କର ସମ ଉପକାର ସାଧନୋପଯୋଗୀ ହୋଇ ବିରାଜମାନ କରିଅଛି । ପୁଣି ସବୁ ଦେହରେ ପାଞ୍ଚଭୌତିକାଂଶ, ପଞ୍ଚପ୍ରାଣ, ଦଶେନ୍ଦ୍ରିୟ ଓ ଅନ୍ତଃକରଣ ଚତୁର ସ୍ଥାପନ କରି ସମସ୍ତଙ୍କୁ ଏକ ନିରାକାରରେ ଗଠନ କରିଅଛି । ବୈଷମ୍ୟ କେବଳ ସମ୍ପ୍ରଦାୟର ଛଳନା ମାତ୍ର । ଅତଏବ ବୈଷମ୍ୟ ପ୍ରକୃତି ପରମେଶ୍ୱରଙ୍କର ଆଜ୍ଞାବିରୁଦ୍ଧ ଅଟେ । ସୁତରାଂ ସାମ୍ୟ ମାନବ ଜାତିର ଜ୍ଞାନାଙ୍ଗ ଓ କର୍ମାଙ୍ଗ ସ୍ୱରୂପ ଅଟେ । ଏତଦ୍ଭାବ ଭୌତିକ ସଂସାର ସ୍ୱର୍ଗସ୍ଥାନୀୟ ଅଟେ । ମନୁଷ୍ୟ ଜାତି ଏକଭ୍ରାତୃତା ସୂତ୍ରରେ ଆବଦ୍ଧ ଅଟନ୍ତି । ସମସ୍ତେ ପରସ୍ପରର ସମଉପକାରୀ ଅଟନ୍ତି । ସମବେଦନାନୁଭୂତି ଓ ସମସହାନୁଭୂତିପରିପୂର୍ଣ୍ଣ ଓ ସର୍ବାଂଶରେ ସମାନ ଅଟନ୍ତି । ଏହା ମାନବ ସୃଷ୍ଟି ଓ ସଂସାର ଦର୍ଶନରୁ ଈଶ୍ୱରେଚ୍ଛା ବୋଲି ସ୍ପଷ୍ଟ ଜଣାପଡ଼ୁଅଛି । ଭେଦକାରୀ ଈଶ୍ୱରଦ୍ରୋହୀ ଓ ଅପ୍ରାକୃତ, ଅପଜୀବ ଭିନ୍ନ ଆଉ କିଛି ହୋଇ ନ ପାରେ ।

(୧୩) **ସ୍ୱାଧୀନତା**—ମନୁଷ୍ୟ ମାତ୍ରେ ନିଜ ଆତ୍ମାର ଅଧୀନ, ଅଥଚ ପରମାତ୍ମା ଆତ୍ମାରୂପେ ବ୍ୟଷ୍ଟି ବା ଅଂଶ ଭାବେ ସମସ୍ତ ମନୁଷ୍ୟଠାରେ ଅବସ୍ଥିତ ଅଛି । ସୁତରାଂ ଆତ୍ମା, ପରମାତ୍ମାର ଅଧୀନ, ଆଉ ଏକ ପ୍ରକୃତି ଦେବୀର ଅଧୀନ । ପରମାର୍ଥତଃ ମନୁଷ୍ୟର ଆତ୍ମା ଅପର ମନୁଷ୍ୟର କଦାଚ ଅଧୀନ ନୁହେ । ତେବେ ଲୌକିକ ବ୍ୟବହାର ଅନୁସାରେ ପ୍ରୀତି, ଶ୍ରଦ୍ଧା, ଭକ୍ତି ଓ ଆହ୍ଲାଦର ପ୍ରବର୍ତ୍ତନାରେ ବଡ଼ ଭାଇର ସାନ ଭାଇ

ଅନୁଗତ ହେଲାପରେ ମନୁଷ୍ୟ ପ୍ରେମାଧୀନ ଅଟେ । ଉପ୍ସାଧୀନ, ଅନିଚ୍ଛାଧୀନ କିମ୍ବା ଯେ କୌଣସି ଅସତ୍ ପ୍ରଲୋଭନ କିମ୍ବା ମୋହାଧୀନ ହେବା ଅଥବା ମନୁଷ୍ୟ ମନୁଷ୍ୟଙ୍କୁ ତଦ୍ରୂପ ଅଧୀନତା ସ୍ୱୀକାର କରାଇ ରଖିବା କୌଣସିମତେ ବିଧେୟ ନୁହେ । ସ୍ୱାଧୀନତା ସ୍ୱାତ୍ମାଧୀନତାର ନାମାନ୍ତର, ମାତ୍ର ଭାବାନ୍ତର ନୁହେ । ଅତଏବ ମନୁଷ୍ୟର ସ୍ୱାଧୀନତା କ୍ଷୁଣ୍ଣ କରିବା ମନୁଷ୍ୟର ଅଧର୍ମ, ଅନ୍ୟାୟ ଅଥଚ ପ୍ରକୃତ ପରମେଶ୍ୱର ଆଜ୍ଞାବିରୁଦ୍ଧ ଓ ଦ୍ରୋହର କାର୍ଯ୍ୟ ଅଟେ ।

(୧୪) **ଅଗୃପଲ୍ୟ**—ମନୁଷ୍ୟ ବୈଷୟିକ ଜ୍ଞାନ, ବୈଷୟିକ କର୍ମ, ବନ୍ଧୁ କୁଟୁମ୍ବାଧିକ୍ୟ ଜାତୀୟ ସ୍ଥାବରାସ୍ଥାବର ସମ୍ପତ୍ତି ଏବଂ ଏ ସମ୍ବନ୍ଧରୁ ନିଜର ବିଶେଷତ୍ୱ କଳ୍ପନାରେ ସେହି ବୈଶିଷ୍ଟ୍ୟ ଦ୍ୱାରା ଆପଣାକୁ ସୁଷ୍ଟୁ ପର ପଙ୍କ ବୋଲି ହୋଇ ମୋଟା ହେଲାପରେ ଫୁଲିଣିଆ ଜ୍ଞାନ କରିବାରୁ ଚପଳଭାବ ଅବଲମ୍ବନ କରେ । ଏହି ଗୃପଲ୍ୟ ଅଭାବର ନାମ ଅଗୃପଲ୍ୟ । ଏହା ମନୁଷ୍ୟତାର ଏକ ପ୍ରଧାନ ଅଙ୍ଗ ଓ ସମ୍ପାଦନୀୟ ଅଟେ ।

(୧୫) **ଶାନ୍ତି**—ଅନ୍ତରେନ୍ଦ୍ରିୟର ସଂଯମ ଓ ବାହ୍ୟେନ୍ଦ୍ରିୟର ଦମନ ଏବଂ ସତ୍‌-କର୍ମାନୁଷ୍ଠାନ ଦ୍ୱାରା ଭଗବଦ୍‌ଭକ୍ତି ଓ ଜ୍ଞାନ ସାଧନ ଏବଂ ପରିମିତ ବ୍ୟବହାର, ସତ୍ସଙ୍ଗ ସେବା ଇତ୍ୟାଦି ସଦନୁଷ୍ଠାନ ବଳରେ ଅନ୍ତଃକରଣର ଯେଉଁ ବିକ୍ଷେପରାହିତ୍ୟ, ତାହାର ନାମ ଶାନ୍ତି । ଏହା ଅଭାବରେ ମନୁଷ୍ୟ ଅସୁର ପଦବାଚ୍ୟ ଅଟେ ।

(୧୬) **ତୁଷ୍ଟି** (୧୭) **ପୁଷ୍ଟି** (୧୮) **ସନ୍ତୋଷ**—ତୁଷ୍ଟିଦ୍ୱାରା ପୁଷ୍ଟି ବର୍ଦ୍ଧନ ଏବଂ ଏତଦୁଭୟର ସଂଯୋଗରେ ସନ୍ତୋଷ ଲାଭ ହୁଏ । ମାନସିକ ଅଭାବ ନ ଥିବା ଅବସ୍ଥାରୁ ତୁଷ୍ଟି ଜାତ ହୁଏ । ଏହିରୂପେ ତୁଷ୍ଟି, ପୁଷ୍ଟି ଓ ସନ୍ତୋଷ ପରମେଶ୍ୱର-ସାପେକ୍ଷ । ଏତଦ୍ଦ୍ୱାରା ଅନ୍ତଃକରଣର ସଂକୀର୍ଣ୍ଣତା ଦୂରୀଭୂତ ହୁଏ, ଏବଂ ଅନ୍ତଃକରଣ ସମସ୍ତ ସଦ୍‌ଗୁଣମାନଙ୍କୁ ଅକ୍ଷତ ଭାବରେ ଧାରଣ କରିବାକୁ କ୍ଷମ ହୁଏ; ସନ୍ତୋଷ ନନ୍ଦନ-ବନ ସ୍ୱରୂପ; ଏଥିରେ ଅନ୍ତଃକରଣ ଅମୃତତ୍ୱ ପ୍ରାପ୍ତ ହୁଏ । ପୁଷ୍ଟି ଅନ୍ତଃକରଣକୁ ସ୍ୱାସ୍ଥ୍ୟ-ସମ୍ପନ୍ନ କରେ । ଏହି ତିନି ଗୁଣ ଏକତ୍ରେ ଅନ୍ତଃକରଣର ଯଥାର୍ଥ ଆଧ୍ୟାତ୍ମିକ ବଳ ସ୍ୱରୂପ, ବିଷୟ ସଂଗ୍ରହରୁ ଜାତୀୟ ତୁଷ୍ଟି, ପୁଷ୍ଟି ଓ ସନ୍ତୋଷଲାଭ ହୋଇ ନ ପାରନ୍ତି । ଆତ୍ମଜ୍ଞାନ ଓ ଅଭ୍ୟାସ ଏବଂ ବୈରାଗ୍ୟାଦିରୁ ଏମାନେ ଅବିକୃତ ଅବୟବ ସମ୍ପନ୍ନ ହୋଇ ଅନ୍ତଃକରଣକୁ ଅଳଂକୃତ କରନ୍ତି ।

(୧୯) **ଶୁଦ୍ଧତା**—ବିଳାସ, ସ୍ୱେଚ୍ଛାଚାର, ମୋହ, ଗର୍ବ, ଆଡ଼ମ୍ବର, ଅପରିସୀମ ଓ ଅନିୟମିତ ବିଷୟ ଲାଳସା, କୁକର୍ମ, କୁଭାବ, ଅସଦାଚାରାଦି ତ୍ୟାଗଦ୍ୱାରା ଅନ୍ତଃକରଣର ଯେଉଁ ନିର୍ମଳ ସଂସ୍କାରପନ୍ନ ଭାବର ଉଦୟ ହୁଏ, ତାହାର ନାମ ଶୁଦ୍ଧତା ।

(୨୦) **ସରଳତା**—ସତ୍ୟକଥନ, ବାଦ, ଛନ୍ଦ, କପଟ, କଳହ ଓ ଦ୍ୱନ୍ଦ୍ୱାଦି ତ୍ୟାଗ ଏବଂ ସଦ୍ଭାବ ଓ ସନ୍ନିଷ୍ଠା ଦ୍ୱାରା ସରଳତା ଉତ୍ପନ୍ନ ହୁଏ । ଏହି ସରଳତାରେ

ଅନ୍ତଃକରଣର ଭାର ବଡ଼ ଲଘୁ ହୋଇଯାଏ ଓ ଅନ୍ତଃକରଣ ଆତ୍ମା ପକ୍ଷରେ ପୁଷ୍ପମାଳ ସ୍ୱରୂପ ଉତ୍ତମ ଧାରଣୀୟ ହୁଏ । ଏହା ଅଭ୍ୟାସ ନ କଲେ ମନୁଷ୍ୟ ବଡ଼ କ୍ଳିଷ୍ଟମନା ଓ ଅନାଦୃତ ହୁଏ ।

(୨୧) **ନମ୍ରତା**—ମୁଁ ଦେଖୁଅଛି ମୋହର ଦେହ ମାଟିପିଣ୍ଡ; ରୋଗ, ତାପ ଓ କ୍ଳେଶାଦିର ଆଧାର, ଅଥଚ କ୍ଷଣବିନାଶଶୀଳ । ମୁଁ ଏ ସଂସାରଧାମରେ ଅସଂଖ୍ୟ ଅସଂଖ୍ୟ ପ୍ରାଣୀ ମଧ୍ୟରେ ଗୋଟିଏ ନଗଣ୍ୟ କୀଟାଣୁ ଓ ଅଜ୍ଞାନ ମୋହରେ ଆଚ୍ଛନ୍ନ । ମୁଁ ଏ ଦେହରେ ଯୋଗ ବିଯୋଗ ହେବାକୁ କିଛି ଜାଣୁ ନାହିଁ । କି ସୂତ୍ରରେ ଏ ଦେହ ଓ ସଂସାରର ସଂଘଟନ ଏବଂ ଏଥିରେ ମୋହର ସମ୍ବନ୍ଧ ବା କିପରି, ଆଉ ମୋହର ଭବିଷ୍ୟତ୍ ଅଜ୍ଞାତ ଅନ୍ଧକାରଗ୍ରସ୍ତ, ପୁଣି ମୁଁ ସର୍ବଦା ଅସ୍ୱାଧୀନ ଓ ଦୁରନ୍ତଜ୍ଞାନ; ମୋହର ମସ୍ତକ ଦେଶାଧିକାରୀ ଶାସକ ଇନ୍ଦ୍ରିୟବର୍ଗ ସର୍ବଦା ତାଡନା କରୁଅଛନ୍ତି; ପ୍ରାଣ ତ ସର୍ବଦା ଚଞ୍ଚଳ ଗତିରେ ଯାତାୟାତ କରି ବାହାରି ଯିବି ବୋଲି କ୍ଷଣକୁ କ୍ଷଣ ଧମକ ଚମକ କରୁଅଛି । ମନ ପୁଣି ସବୁଠାରୁ ବେଗବାନ ହୋଇ ଅଦମ୍ୟ ଗତି କରି କେତେବେଳେ କେଉଁଆଡ଼େ ନେଇ ଯାଉଅଛି, ମୁଁ ତାହା ଜାଣିବାକୁ ଅକ୍ଷମ ଅଟେ । ଏହି ଭଗବତ-ମାୟା ସଂସାରରେ 'ମୁଁ' ସର୍ବଦା କିଂକର୍ତ୍ତବ୍ୟବିମୂଢ଼, ଦୀନ, ହୀନ, ଅଭ୍ୟାଗତରୁ ବଳି ଅକିଞ୍ଚନ । ଏଥିରେ 'ନମ୍ରତା' ମୋର ଏକମାତ୍ର ସମ୍ବଳ ଓ ସହାୟ, ଅତଏବ 'ମୁଁ' ଏହି ନମ୍ରତା ଆଶ୍ରୟରେ ସବୁଠାରେ ସବୁବେଳେ ସମସ୍ତ ମନୁଷ୍ୟ ପାଖରେ, ତୃଣାଦପି ଅଧିକ ନ୍ୟୂନତା ସ୍ୱୀକାର କରି ଚଳିବି । ଆଉ ମଧ୍ୟ ମାନନୀୟ ଆତ୍ମାଠାରୁ ଆଶୀର୍ବାଦ ଭିକ୍ଷା କରି ପରମେଶ୍ୱରଙ୍କଠାରେ ସମର୍ପିତ ହେବି । ଭଗବାନ ହରି ପ୍ରପନ୍ନପ୍ରତି ସଦୟ ହୋଇ ମଙ୍ଗଳ ବିଧାନ କରନ୍ତୁ, ଏହାହିଁ ମୋହର ପଠନ, ସ୍ତବନ, ବନ୍ଦନ, ଅଭିବାଦନ ଓ ନିବେଦନ-ରୂପ ଦୀକ୍ଷାମନ୍ତ୍ର ହେଉ—ଏହା ନମ୍ରତା ଶିଖାଉଅଛି ।

(୨୨) **ପରୋପକାର**—ଭଗବାନ ହରି ସର୍ବଘଟରେ ଆତ୍ମାବୟବ ସମ୍ପନ୍ନ ହୋଇ ସାକ୍ଷାତ୍ ବିରାଜେ ହୋଇଛନ୍ତି । ମୁଁ ନଗଣ୍ୟର ଆତ୍ମପର ଭେଦ ବ୍ୟାବହାରିକ ବୁଦ୍ଧିରେ ଦେଖାଯାଉଥିଲେ ସୁଦ୍ଧା ଆତ୍ମତଃ ମୁଁ ବା କିଏ ? ତୁମେ ଓ ସେ ବା କିଏ ? ଅତଏବ ଉପଚିକୀର୍ଷା ବୃତ୍ତିର ବିଦ୍ୟମାନତା ସଂସାରରେ ସର୍ବତ୍ର ଥିବା ଦର୍ଶନ କରି ଏବଂ ଉପକାର ଲେଶ ବା ଇଚ୍ଛା ମୋର ପରି ସମସ୍ତଙ୍କଠାରେ ଥିବା ବୁଝି ଏକ ଲକ୍ଷ୍ୟରେ, ଏକ ପରମେଶ୍ୱର ଉଦ୍ଦେଶ୍ୟରେ, ସଂସାର ହିତରେ ଯଥାସାଧ୍ୟ ଚେଷ୍ଟା କରିବା ମୋର କର୍ତ୍ତବ୍ୟ । ସେହି ହିତକର କାର୍ଯ୍ୟରୁ ଯେଉଁ ଉପକାର ସାଧିତ ହେବ, ତାହା ସଂସାରର ମନୁଷ୍ୟସମାଜର ଭୋଗାଧିକାରର ଅନ୍ତର୍ଗତ । 'ମୁଁ' ଅବଶ୍ୟ ତହିଁରେ ସାମାନ୍ୟ ଅଂଶ-ଭାଗୀ । ଏହି ଜ୍ଞାନରେ ଓ ଏହି ଦୃଷ୍ଟିରେ ମୁଁ ସଂସାରର ଦାସ । ସଂସାର ମୋହର ଜନ୍ମ, ସ୍ଥିତି ଓ ବିନାଶର ନିଦାନ-ଭୂମି । ମୁଁ ସଂସାର ଛଡ଼ା ମୋର ନୁହେ । ସମସ୍ତେ ସଂସାରର, ସଂସାର ଈଶ୍ୱରଙ୍କର ଏବଂ ପର, ପର ନୁହେ ; ପର—ପରମେଶ୍ୱର । ପରୋପକାର

ଶବ୍ଦଟି ସଂସାରରେ ଅପଭ୍ରଷ୍ଟ ଭାବରେ ବ୍ୟବହୃତ ହେଉଅଛି । ଏହା ପରୋପକାର ନୁହେ । ଏହାର ପ୍ରକୃଷ୍ଟ ଅର୍ଥ ଏହି ଯେ ଏହା ପରମେଶ୍ୱରୋପକାର ଶବ୍ଦର ନାମାନ୍ତର ମାତ୍ର । ସଂସାର ତଥା ସର୍ବଜୀବର ଉପକାର ନିମିତ୍ତ ଈଶ୍ୱରାଜ୍ଞାନୁମୋଦନକ୍ରମେ ମନୁଷ୍ୟାଦି ଜୀବକୁ ଧାରଣ କରି ପରିଦୃଷ୍ଟ ହେଉଅଛୁ । ମନୁଷ୍ୟ ଉପକାର ବ୍ରତକୁ ସଂସାର ତସ୍କରୁ ଦେଖିଅଛୁ । ତେବେ ସେହି ଉପକାର ବ୍ରତକୁ ଦେଖି ସଂସାରରେ ଭ୍ରମମୁଗ୍ଧ ହୋଇ ଲକ୍ଷ ଲକ୍ଷ, କୋଟି କୋଟି ଅର୍ଥ ଆବଦ୍ଧ କରି ଏକ ସ୍ଥାନରେ ରଖିଅଛୁ । ମନୁଷ୍ୟ ଉପକାର ବ୍ରତ ସଂସାର ଉଦ୍ଦେଶ୍ୟରେ ପାଳନ କରିବାକୁ କର୍ତ୍ତବ୍ୟତଃ ଓ ଧର୍ମତଃ ବାଧ୍ୟ । ଅତଏବ ପରୋପକାର ପାଳନୀୟ ପବିତ୍ର ମହାବ୍ରତ ଅଟେ । ସେ ଦେଖୁଛି, ହାତୀ ଘୋଡ଼ା ନୁହେଁ, ସେହି ମୁଠାଏ ଅନ୍ନ, ଢୋକେ ପାଣିରେ ତାହାର ପାପାଗ୍ନି-ଦଗ୍ଧ-ଉଦର ପୂରି ଯାଉଅଛି; ତେବେ କୋଟି କୋଟି ଜୀବର ଅନ୍ନ ସେ ଅବରୋଧ କରିବାଦ୍ୱାରା ହର କୋପାନଳର ପତଙ୍ଗ ହେବାକୁ ଆପେ ଖୁସି ମଣୁଅଛି । ଏହିପରି ଧର୍ମ-କୃପଣ ଲୋକ ଆଜକାଲି ଯୁଗରେ ବହୁତ ମାତିଗଲେଣି । ସଂସ୍କାରକ ଅଗ୍ନି ପ୍ରଜ୍ୱଳିତ ହେଲେଣି ।

(୨୩) **ନିଷ୍ପାପ**—ଆତ୍ମାର ଦେହାତ୍ମାଭିମାନ ପ୍ରଥମରୁ ପାପ ନାମରେ ଆଖ୍ୟାତ ଅଟେ । ଦୈହିକ ବିଳାସିତା ଦ୍ୱିତୀୟ ପାପ ଅଟେ । ସେହି ବିଳାସିତା ଚରିତାର୍ଥ କରିବା ନିମିତ୍ତ କୂଟ, ପାଶବିକ ବଳ ଓ ଆସୁରୀ ମାୟା କୌଶଳାଦି ପ୍ରୟୋଗଦ୍ୱାରା ପର ପ୍ରାଣପୋଷକ ଅର୍ଥର ଅପହରଣ ତୃତୀୟ ମହାପାପ ନାମରେ ନାମିତ ଅଟେ । ସଂସାରର ଉପକାର ନ କରିବା ଈଶ୍ୱରାଜ୍ଞା ଲଙ୍ଘନରୂପ ଚତୁର୍ଥ ମହାପାପ ଅଟେ । ଅସଂଯତ ଓ ଇନ୍ଦ୍ରିୟପରାୟଣ ସ୍ୱାର୍ଥପରତା ଏବଂ ଅସତ୍ ଚରିତ୍ରାଦି ପଞ୍ଚମ ପାପ । ଏ ଉତ୍ତାରୁ ନାନାବିଧ କର୍ତ୍ତବ୍ୟ ପାଳନର ଆଳସ୍ୟ ଇତ୍ୟାଦି ନାନାବିଧ ଉପ-ପାତକାଦି ପାପ ନାମରେ କଥିତ । ଅନ୍ତଃକରଣରୁ ଏସବୁ ପରିତ୍ୟାଗ କରି ବିଶୁଦ୍ଧ-ହୃଦୟ ଧାରଣପୂର୍ବକ ପରମେଶ୍ୱର ଭକ୍ତ୍ୟାଦିରେ ନିୟୋଜିତ ହେବାର ନାମ ନିଷ୍ପାପ ।

(୨୪) **ଧୈର୍ଯ୍ୟ**—କାମ, କ୍ରୋଧାଦି ସର୍ବପ୍ରକାର କୁପ୍ରବୃତ୍ତି ପ୍ରଭୃତିରେ ପ୍ରମତ୍ତ ନ ହୋଇ ସର୍ବପ୍ରକାର ପ୍ରଲୋଭନ ଓ ମୋହାଶା ପରିତ୍ୟାଗପୂର୍ବକ ସର୍ବଦା ଆତ୍ମସଂସ୍ଥ ରହିଥିବାର ନାମ ଧୈର୍ଯ୍ୟ ।

(୨୫) **ଆଡ଼ମ୍ବରଶୂନ୍ୟତା**—ସଂସାରୀୟ ବ୍ୟବହାର ଓ ଲୋକଯାତ୍ରା-ନିର୍ବାହରେ ଆଡ଼ମ୍ବର ଦେଖାଇ ହେବା ପରିତ୍ୟାଗ କରି ଓ ଶାନ୍ତ, ସଂଯମ, ଶିଷ୍ଟାଚାର ଯଥା ପରିମିତ ଭାବରେ ଆଚରଣ କରିବାଦ୍ୱାରା ଅନ୍ତଃକରଣକୁ ନିର୍ମଳ ଓ ପବିତ୍ର ରଖି ନମ୍ର ଓ ବିନୟୀ ହେବାର ନାମ 'ଆଡ଼ମ୍ବରଶୂନ୍ୟତା' । ଆଜକାଲି ଧର୍ମ ଆଡ଼ମ୍ବର ଦେଖାଇବାକୁ ଲୋକମାନେ ଯଥାସର୍ବସ୍ୱ ପଣ କରୁଅଛନ୍ତି ।

(୨୬) **ଶମ, ଦମାଦି ସାଧନପରାୟଣତା**—ଶମର ଅର୍ଥ, ଅନ୍ତଃକରଣ-ଗତ ରାଜସ ତାମସାତ୍ମକ ବିଷୟ ବେଗ ନିବୃତ୍ତି; ଦମର ଅର୍ଥ, ବାହ୍ୟେନ୍ଦ୍ରିୟାଦିର ଅନାବଶ୍ୟକ ଅବୈଧଚାଳନାଦିର ପ୍ରତିରୋଧ ଇତ୍ୟାଦି ସାଧନଦ୍ୱାରା, ଅନ୍ତଃକରଣ ନିର୍ମଳ, ପବିତ୍ର, ବିକ୍ଷୋଭଶୂନ୍ୟ ଓ ସ୍ଥିର ହେଲେ ଆତ୍ମା, ପରମାତ୍ମା ଭକ୍ତି ଓ ଜ୍ଞାନାଦି ସଂପାଦନ କରିବାକୁ ସମର୍ଥ ହୁଏ । ଏହି ଶମ ଦମାଦି ସାଧନ ସମ୍ବନ୍ଧେ ବହୁ ବିଧି ବ୍ୟବସ୍ଥାଦି ଶାସ୍ତ୍ର ପୁରାଣ ଓ ଦର୍ଶନାଦିରେ ଉପଦିଷ୍ଟ ହୋଇଅଛି । ଆଜକାଲର ମୋହମୟ ଶିକ୍ଷା, ଦୀକ୍ଷା, ଆଦର୍ଶ ଅନୁକରଣାଦିରେ ଭ୍ରମଯୁକ୍ତ ନ ହୋଇ ସେହିସବୁ ପବିତ୍ର ଆର୍ଷ ଗ୍ରନ୍ଥାଦି ପଠନ ସେବନ କରିବା ପ୍ରବର୍ତ୍ତିଯିବା ବଡ଼ ଉପାଦେୟ ଓ ଆତ୍ମାର ହିତକର ଅଟେ । ଏହାର ଦିନ ମଧ୍ୟ ଆସିଗଲା ।

(୨୭) **ତିତିକ୍ଷା**—ଜ୍ଞାନ, ଧର୍ମାଦି ସଂପାଦନାର୍ଥ ଯେଉଁସବୁ ଆଧ୍ୟାତ୍ମିକ ସାଧନା ପ୍ରୟୋଜନ, ସେ ସକାଶେ ସବୁପ୍ରକାର ଦୈହିକ ଓ ମାନସିକ ସୁଖ ସଂଭୋଗାଦିକୁ ଓ ଦୁଃଖ କଷ୍ଟାଦିକୁ ତ୍ୟାଗ କରିବାର ଯେ ଅଭ୍ୟାସ ତାହା ତିତିକ୍ଷା ।

(୨୮) **କ୍ଲେଶରାହିତ୍ୟ**—ଦେହସମୂହରେ ଅବିଦ୍ୟା ସଂସ୍କାର ଓ ବାସନାମୟ କାର୍ଯ୍ୟଦ୍ୱାରା ଯେଉଁ ଆତ୍ମାଭିମାନ ନିତ୍ୟ ବଦ୍ଧ ରହିଅଛି ତାହା ପ୍ରଥମ କ୍ଲେଶ । ଅନ୍ତଃକରଣ ସହିତ ଆତ୍ମାର ଯେଉଁ ଅଭେଦ ସଂଯୋଗ ତାହା ଦ୍ୱିତୀୟ କ୍ଲେଶ, ଏଥିରୁ କର୍ତ୍ତୃତ୍ୱ, ଭୋକ୍ତୃତ୍ୱାଦିଜନିତ ସୁଖ, ଦୁଃଖ ମୋହାତ୍ମକ ହୃଦ୍‌ବିକ୍ଷେପ ଜାତ ହୁଏ । ତୃତୀୟ କ୍ଲେଶର ନାମ ବିଷୟାସକ୍ତି, ଅର୍ଥାତ୍ ଇନ୍ଦ୍ରିୟମାନଙ୍କଦ୍ୱାରା ସଂପାଦିତ କର୍ମ ଏବଂ ଭୋଗାଦିରେ ଯେଉଁ ଦୃଢ଼ ଅଭିଳାଷ ଏବଂ ଏତଦ୍ରୂପ ଇନ୍ଦ୍ରିୟ ଭୋଗାଦିର ପ୍ରତିବନ୍ଧକ ଉପସ୍ଥିତ ହେଲେ, ତନ୍ନିବାରଣାତ୍ମକ ଯେଉଁ ଦ୍ୱେଷ ଉଦୟ ହୁଏ ତାହା ଚତୁର୍ଥ କ୍ଲେଶ । ଏହି ଚାରିପ୍ରକାର କ୍ଲେଶରେ ବୁଡ଼ି ରହିଗଲାରୁ ସ୍ଥୂଳ ଦେହମାତ୍ରରେ ଯେଉଁ ଅଟଳ ବିଶ୍ୱାସ ସହିତ ଦୃଢ଼ ଆତ୍ମଭ୍ରମ ଜାତ ହୁଏ ତାହା ପଞ୍ଚମ କ୍ଲେଶ । ଏହି ପାଞ୍ଚ ପ୍ରକାର କ୍ଲେଶର ଯେଉଁ ଅଭାବ ତାହାହିଁ କ୍ଲେଶରାହିତ୍ୟ ଅଟେ । ଏହାଦ୍ୱାରା ଆତ୍ମା ବ୍ରହ୍ମାନନ୍ଦ କୈବଲ୍ୟ ରସ ଉପଭୋଗ କରିବାକୁ ଉପଯୁକ୍ତ ଓ କ୍ଷମ ହୁଅନ୍ତି । ବାହ୍ୟ ଧର୍ମଚିହ୍ନ ଧାରଣାଦିରେ ଓ ବାହ୍ୟଧର୍ମ-କ୍ରିୟାଦିରେ ଧର୍ମଭାବର ଗୌଣ ପ୍ରକାର ଲକ୍ଷିତ ହୁଏ । ଅଥଚ ଏ ସବୁ ଧର୍ମ ଚିହ୍ନାଦିରେ ପରପ୍ରବଞ୍ଚନା ଓ ଆତ୍ମପ୍ରତାରଣା ଛପି ରହିବା ବଡ଼ ସହଜ ଉପାୟ ଅଟେ ।

(୨୯) **ପ୍ରସନ୍ନତା, (୩୦) ହର୍ଷ**—ପ୍ରସନ୍ନତା ଓ ହର୍ଷ ପରସ୍ପର ଧରାଧରି । ନିଜର ଅଥଚ ପର ସମ୍ବନ୍ଧରେ ବା ଯେ କୌଣସି ପ୍ରକାରେ ହେଉ, କାୟିକ, ମାନସିକ, ବାଚନିକ ଦୁଃଖ କଷ୍ଟାଦିର ଅଭାବ ସ୍ଫୁରଣ ଅବସ୍ଥାରେ ପ୍ରସନ୍ନତା ଓ ହର୍ଷ ଉଭୟେ ଉପସ୍ଥିତ ହୁଅନ୍ତି । ଶତ୍ରୁ କି ନିଃସମ୍ପର୍କୀୟ ଲୋକର ଦୁଃଖାଦିରେ, ଦୁରାତ୍ମାର ଯେଉଁ

ହର୍ଷାଦି ଜାତ ହୁଏ ବୋଲି ଶୁଣାଯାଏ, ସେହି ହର୍ଷାଦି ହର୍ଷପଦବାଚ୍ୟ ନୁହେଁ । ତାହା ସବୁ ଏଠାରେ ଅପଦ୍ରବ ଜ୍ଞାନରେ ତ୍ୟାଜ୍ୟ, ହେୟ ଓ ଘୃଣ୍ୟ ଅଟେ । ସେ ସବୁ ଅନ୍ତଃକରଣର ମଳବିଶେଷ ଭିନ୍ନ ଅନ୍ୟ କିଛି ନୁହେ । ତଦ୍ରୂପ ମଳଯୁକ୍ତ ଅନ୍ତଃକରଣ ଦ୍ୱାରା ଧର୍ମସାଧନ, ମନୁଷ୍ୟତ୍ୱ ଲାଭ ପ୍ରଭୃତି ହୋଇ ନ ପାରେ ।

(୩୧) **ସଦାଚାର**—ଏଠାରେ ସଦାଚାର କହିଲେ, ବର୍ଣ୍ଣାଶ୍ରମ ଧର୍ମ, ବିନା ନିମନ୍ତ୍ରଣରେ ଆସି ସ୍ୱୟଂ ଉପସ୍ଥିତ ହେବ । ଧର୍ମଦେବ, ବର୍ଣ୍ଣାଶ୍ରମ ଧର୍ମରୂପରେ ସଦାଚାରର ରୂପ ମଣିମୟ-ରତ୍ନ-ସିଂହାସନ ଉପରେ ସର୍ବଦା ସୁପ୍ରତିଷ୍ଠିତ । ମାତ୍ର ବର୍ଣ୍ଣାଶ୍ରମ ଧର୍ମର ବ୍ୟବସ୍ଥା ସମ୍ବନ୍ଧରେ କୋଟି କୋଟି ଗ୍ରନ୍ଥ ରହିଅଛି । ସୁତରାଂ ପିପୀଲିକା ହିମାଳୟ ପର୍ବତକୁ ସମୂଳେ ଉତ୍ପାଟନ କରି ଟେକି ଧରି ଦେଖାଇଲା ପରି ଏ ଗ୍ରନ୍ଥ ପକ୍ଷରେ ତାହା ଅସମ୍ଭବ । ତେବେ ଏତିକି କୁହାଯାଇପାରେ, ପୂଜ୍ୟପାଦ ରେଣୁଦେବ ଓ ମହର୍ଷିପ୍ରବର-ମାନେ ଯେଉଁ ଯେଉଁ ଗ୍ରନ୍ଥ ସଦାଚାରର ବର୍ଣ୍ଣନାରେ ପୂର୍ଣ୍ଣକରି ରଖି ଯାଇଅଛନ୍ତି, ତାହା ସବୁ ପଠନୀୟ ଏବଂ ଆଲୋଚନୀୟ; ପୁଣି ଉପଯୁକ୍ତ ସଦୁପଦେଶ ସହିତ କରଣୀୟ ଅଟେ । ମୋଟ ଉପରେ କହିବାକୁ ଗଲେ, ଯେଉଁ ଆଚାର ଦ୍ୱାରା ଦୈହିକ ବାହ୍ୟ ଶୁଦ୍ଧି, ଓ ମାନସିକ ଅନ୍ତଃ ଶୁଦ୍ଧି, ସଂଗୃହୀତ ଓ ସଂରକ୍ଷିତ ହୁଏ ଏବଂ ତଦ୍ଦ୍ୱାରା ଆତ୍ମଶୁଦ୍ଧି ସମ୍ପାଦିତ ହେଲାରୁ ମନୁଷ୍ୟ ବିମଳାନ୍ତଃକରଣ ପ୍ରାପ୍ତ ହୋଇ ପରମେଶ୍ୱର ଧ୍ୟାନ ଧାରଣାଦିରେ ଆତ୍ମନିୟୋଗ କରିବାକୁ ଉପଯୁକ୍ତ ହୁଏ, ଅଥଚ ସଂସାରର ପ୍ରୀତି ଓ ଉପକାର ସାଧନ କରେ, ତାହାହିଁ ସଦାଚାର । ସଂସାରରେ କାହାରି ଦୈହିକ ଓ ମାନସିକ କଷ୍ଟ ଜାତ ନ ହୋଇ ବରଂ ନିଜର ଏବଂ ସାଧାରଣର ମଙ୍ଗଳଜନକ କର୍ମ ଆଚରଣ କରିବା ସଦାଚାରର ଅନ୍ତର୍ଗତ । ବିନୟ ସହିତ ସତ୍ୟକଥନ, ଧର୍ମସମ୍ମତ ହିତାହିତ ଜ୍ଞାନ ସହିତ ସକଳ କ୍ରିୟାର ଅନୁଷ୍ଠାନ, ପାଳନୀୟର ପାଳନ, ଅସହାୟ ଓ ଅଶକ୍ତର ଅଭାବକୁ ଯଥାଶକ୍ତି ପୂରଣ, ବୟୋଜ୍ୟେଷ୍ଠ, ଜ୍ଞାନଜ୍ୟେଷ୍ଠ ଓ ପୂଜ୍ୟମାନଙ୍କୁ ନମସ୍କରଣ, କନିଷ୍ଠ ଓ ଇତରେତର-ମାନଙ୍କ ପ୍ରତି ସଦୟ ଓ ସସ୍ନେହ ଆଦର୍ଶ ପ୍ରଦର୍ଶନ, ସାଧାରଣତଃ ସକଳପ୍ରକାର କପଟ, ଛନ୍ଦ ଓ ଶଠତାଦି ମନ୍ଦଭାବର ବିସର୍ଜନ, ଏବଂ ପରୋପକାର ଶିକ୍ଷାଦାନ ଓ ପ୍ରଚାର ସାଧନାଦି ସଦାଚାର ନାମରେ କଥିତ ଅଟେ ।

(୩୨) **ସତ୍ସଙ୍ଗ**—ସତ୍ସଙ୍ଗ, ସବୁ ଶିକ୍ଷା ଦୀକ୍ଷାରୁ ବଳି ଫଳପ୍ରଦ ଅଟେ । ସତ୍ସଙ୍ଗରେ ସବୁପ୍ରକାର ଶୁଭକର ଆଦର୍ଶ ଅନାୟାସରେ ପ୍ରାପ୍ତି ହୁଏ । ବହୁ ସନ୍ଦେହ ଦୂରୀଭୂତ ହୁଏ । ସତ୍ସଙ୍ଗର ଅର୍ଥ ଆତ୍ମାର ସଙ୍ଗ, ଆତ୍ମଜ୍ଞାନୀର ସଙ୍ଗ ଏବଂ ସାତ୍ତ୍ୱିକ ଧର୍ମ, ସାତ୍ତ୍ୱିକ ଜ୍ଞାନ, ସାତ୍ତ୍ୱିକ କର୍ମ ଓ ସାତ୍ତ୍ୱିକ ଆଦର୍ଶାଦିର ସଙ୍ଗ । ଏଠାରେ ସଙ୍ଗର ଅର୍ଥ ସଦା ସହଯୋଗ, ଅର୍ଥାତ୍ କ୍ଷଣକ ପାଇଁ ସତ୍ସଙ୍ଗ ତ୍ୟାଗ କରିବାର ନୁହେ । ଆଜିକାଲି ମଦୁଆର ସଙ୍ଗ, ପାଟାଚୋର, ଜବୀ, ଆଡ଼ମ୍ବରର ସଙ୍ଗ ବଡ଼ ସମ୍ମାନସୂଚକ ଏବଂ ପ୍ରିୟକର

ହୋଇଅଛି । କେହି କେହି ପଛରେ ବଳେ ବଳେ ଗୋଡ଼ାଇ ଗୋଡ଼ାଇ ଏପରି ସଙ୍ଗ ମଧ୍ୟ କରୁଅଛନ୍ତି । ଛି, ଛି, ଛି ! ସେ ସଙ୍ଗକୁ ଶତ ସହସ୍ରଥର ଛି !!!

(୩୩) **ସତ୍ସେବା**—ଗୁରୁଜନ ସେବା, ତୀର୍ଥାଟନ ସେବା, ଧର୍ମଜ୍ଞାନୀ, ଆତ୍ମଜ୍ଞାନୀ, ସାଧୁ ମହାତ୍ମାମାନଙ୍କର ସେବା, ଅସହାୟ ଅଶକ୍ତର ସେବା, ପରୋପକାରୀର ସେବା, ଅତିଥି ଅଭ୍ୟାଗତ ପ୍ରପନ୍ନର ସେବା, ଗୋ ସେବା ଏବଂ ସର୍ବତୋଭାବେ ଯଥୋପଯୁକ୍ତ ପରିମାଣରେ ସର୍ବପ୍ରାଣୀର ସେବା ପ୍ରଭୃତି ସତ୍ସେବା ନାମରେ ନାମିତ ଅଟେ । ଏ ସେବାରେ ନିଜର ପ୍ରତ୍ୟୁପକାର ଓ କୌଣସି ପ୍ରକାରର ଲାଭର ଆଶା ନ ଥାଇ ଏହା ନିଷ୍କାମ ହେବା ଉଚିତ ଅଟେ ।

(୩୪) **ପୂଜା,** (୩୫) **ଆରାଧନା**—ପୂଜା ଓ ଆରାଧନା ଉଭୟେ ଏକାଙ୍ଗ, ବିଶିଷ୍ଟ ଅନୁଷ୍ଠାନ । ପୂଜା ପରମେଶ୍ୱରର ପୂଜା । ଜୀବାତ୍ମା ପୂଜକ ସୁମଧୁର ଶବ୍ଦାତ୍ମକ ଶଙ୍ଖ ଓ ଘଣ୍ଟାନାଦ ସର୍ବପ୍ରକାର ପବିତ୍ର ନାଦ । କୋମଳ ତଳ୍ପଜନିତ ସର୍ବପ୍ରକାର ସୁସ୍ପର୍ଶ୍ୟ ଭୋଗ, ମନୋହର ମଙ୍ଗଳମୟ ପବିତ୍ର ସୁଦୃଶ୍ୟାଦି, ସର୍ବପ୍ରକାର ସୁମିଷ୍ଟ ଅମୃତୋ-ପମ ରସାଦି ଏବଂ ସର୍ବପ୍ରକାର ସୁବାସାଦି, ସବୁ ପ୍ରକାରର ସାତ୍ତ୍ୱିକ କର୍ମାଦି, ପବିତ୍ର ହୃଦୟାଦି, ଜ୍ଞାନ ଧ୍ୟାନ ସିଦ୍ଧ୍ୟାଦି ସହିତ ଆତ୍ମାକୁ ଭଗବତ୍ ପରମେଶ୍ୱରଙ୍କଠାରେ ନିବେଦନ ଓ ସମର୍ପଣ କରି ସେହି ପ୍ରଭୁଙ୍କୁ ଆତ୍ମସର୍ବସ୍ୱ ଓ ଆତ୍ମମୟରୂପେ ଦର୍ଶନ କଲେ ତାହାହିଁ ପରମେଶ୍ୱର ପୂଜା । ଏହି ପୂଜାର ଅନୁକଳ୍ପରେ ଭୌତିକ ସଂସାରରେ, ପରମେଶ୍ୱରଙ୍କ ସର୍ବୋଚ୍ଚ ଆଦର୍ଶସ୍ଥାନରେ ମଧ୍ୟ ପୂଜା କରାଯାଇଥାଏ । ଦେବପୂଜା, ସାଧୁ, ମହାତ୍ମା, ଗୁରୁ, ବିପ୍ର, ଗୋ ଓ ଅଭ୍ୟାଗତ ପୂଜାଦି ମଧ୍ୟ ଈଶ୍ୱର ଉଦ୍ଦେଶ୍ୟରେ, ସେହି ସେହି ସ୍ଥାନରେ ନିବେଦିତ ହେଲେ ତାହାର ନାମ ପୂଜା ବୋଲି ବୁଝିବାକୁ ହେବ । ଏତଦ୍ରୂପ ପୂଜା ଜୀବାତ୍ମାର ଆତ୍ମକର୍ତ୍ତବ୍ୟର ଅନ୍ତର୍ଗତ । ଏହିରୂପ କର୍ତ୍ତବ୍ୟ ପାଳନ ସଙ୍ଗେ ସଙ୍ଗେ ଅର୍ଚ୍ଚନ, ବନ୍ଦନ, ସ୍ତବନାଦି ସର୍ବାଙ୍ଗ ସେବାର ନାମ 'ଆରାଧନା' । ଦେହ ସଂସାରାଦି, ଜ୍ଞାନ ସାଧନାଦି ସବୁ ପ୍ରକାର ଜ୍ଞାତବ୍ୟ ଓ ବୋଧ ଇତ୍ୟାଦି ଯାହାଙ୍କ କୃପାର ଚିହ୍ନ, ସେହି ପରମେଶ୍ୱରଙ୍କୁ ପୂଜା, ଆରାଧନା କରିବା କ୍ଷୁଦ୍ର ମାନବର ଏକାନ୍ତ ଧର୍ମ ଓ କର୍ତ୍ତବ୍ୟ ।

(୩୬) **ଧର୍ମାଦିସାଧନ**—ଜ୍ଞାନ ସଞ୍ଚୟ ଓ କର୍ତ୍ତବ୍ୟ ପାଳନାଦିରେ ଯେଉଁ ଐକାନ୍ତିକ ପ୍ରବୃତ୍ତି ଚେଷ୍ଟା ଓ ଅବାଧ ଯତ୍ନାଦି ସହକାରେ ଅନୁଷ୍ଠାନ, ତାହାର ନାମ ନିରାଳସ୍ୟ । ଖାଲି ସଂସାରୀୟ କର୍ମ ନିର୍ବାହ ପ୍ରକୃଷ୍ଟ ନିରାଳସ୍ୟ ନୁହେ ।

(୩୭) **ଭକ୍ତି**—ଭକ୍ତିର ମହିମା ବର୍ଣ୍ଣନା ଏଠାରେ ଅସମ୍ଭବ । ଭକ୍ତି ନବ ପ୍ରକାରରେ ଅନୁଷ୍ଠିତ ହୁଏ ବୋଲି ପ୍ରସିଦ୍ଧି ଅଛି । ତାହା ଅସଂଖ୍ୟ ଅସଂଖ୍ୟ ଗ୍ରନ୍ଥରେ ଶେଷ ହୋଇନାହିଁ, ହେବାର ମଧ୍ୟ ନୁହେ । ସଂକ୍ଷେପତଃ ଭକ୍ତିବାର ନାମ

'ଭକ୍ତି' । ଏ ଭଜନ ଜୀବନ ଥିବାଯାଏ ଲଗି ରହିଅଛି । ସ୍ଥୂଳତଃ ଭଜନ ତ୍ରିବିଧ--ସାତ୍ତ୍ୱିକ, ରାଜସ, ତାମସ—ଏହା ବ୍ୟକ୍ତ । ଅବ୍ୟକ୍ତ ଭଜନ ଅନ୍ୟ ପ୍ରକାର; ଏହା ନିର୍ଗୁଣ ଏବଂ ନିଷ୍କାମ ବର୍ଣ୍ଣନାତ୍ମକ ନୁହେ, ଅଥଚ ଅସ୍ପଷ୍ଟ ଧ୍ୱନ୍ୟାତ୍ମକ ନାଦ । ଯାହା ସବୁପ୍ରକାର ଜୀବ ମୁଖରେ ଏବଂ ସମୟ ବା ଅବସ୍ଥା ବିଶେଷରେ, ମନୁଷ୍ୟ ମୁଖରେ ଶୁଣା ଯାଉଥାଏ, ତାହା ତାମସ ଭଜନ । ମନୁଷ୍ୟର ସମ୍ବୋଧ ବାକ୍ୟ ବା ମାରାତ୍ମକ ମନ୍ତ୍ରାଦି ତାମସ ଭଜନର ଅନ୍ତର୍ଗତ । ଲୌକିକ ବ୍ୟବହାର ସମ୍ବନ୍ଧୀୟ କଥା ପ୍ରଭୃତି ରାଜସ ଭଜନ । ଦେଖାଇ ହେବା ନିମିତ୍ତ ଅଥଚ ଅର୍ଥଜ୍ଞାନ ବିନା ଯେଉଁ ଶାସ୍ତ୍ର ପୁରାଣାଦିର ସତ୍ତ୍ୱବିଷୟକ ପ୍ରବନ୍ଧ ବା ଧର୍ମ ପୁସ୍ତକାଦି ବା ଧର୍ମ ମନ୍ତ୍ରାଦି ପାଠ କରାଯାଏ, ତାହା ମଧ୍ୟ ରାଜସ ଭଜନର ଅନ୍ତର୍ଗତ । ଶ୍ରଦ୍ଧା ସହିତ ବା ଅର୍ଥଜ୍ଞାନ ସହିତ ଯେଉଁ ଧର୍ମ ବିଷୟକ ଗ୍ରନ୍ଥାଦି ପାଠ କରାଯାଏ, ବା ପରମେଶ୍ୱରର ନାମାଦି ପ୍ରାର୍ଥନା, ସ୍ତବନ ବା ବନ୍ଦନାଦି ଆକାରରେ ଉଚ୍ଚାରଣ କରାଯାଏ, ତାହା ସାତ୍ତ୍ୱିକ ଭଜନ । ସବୁ ପ୍ରକାରର ସବୁ ଜୀବର ବିଶେଷତଃ ମନୁଷ୍ୟର ପ୍ରାଣବାୟୁରେ ହଂସନାଦାତ୍ମକ ଯେଉଁ ଅବ୍ୟକ୍ତ ଶବ୍ଦ ନାସାରନ୍ଧ୍ର ବାଟେ ଗୁପ୍ତଭାବରେ ବିନା ଯତ୍ନ ଚେଷ୍ଟାରେ ଅଥଚ ଅଜଣାରେ ମଧ୍ୟ ନିଜ ଇଚ୍ଛାପୂର୍ବକ କ୍ରୀଡ଼ା କରୁଅଛି, ତାହା ନିର୍ଗୁଣ ବା ନିଷ୍କାମ ଭଜନ । ଏସବୁ ପ୍ରକାରର ଭଜନ ପ୍ରାକୃତ; ଏହା ଜୀବୋପାଧିସାପେକ୍ଷ । ପ୍ରକାରରହିତ ଆଉ ଏକ ଭଜନ ଅଛି, ତାହା ମହା-ନିତ୍ୟ ଭଜନ । ଏହା ଅନପେକ୍ଷ ଓ ସ୍ୱତଃ ବିରାଜମାନ ପ୍ରଣବାତ୍ମକ, ଅଥଚ ବୋଧଗମ୍ୟ । ମାତ୍ର ଏହା ସବୁ ପ୍ରକାର ଭଜନର ଲୟଭୂମି ସ୍ୱରୂପ ଏବଂ ଜୀବୋପାଧିର ମଧ୍ୟ ଲୟସ୍ଥାନ ଅଟେ । ଏହିସବୁ ଭଜନର ଯେ ଭାବ ତାହାହିଁ ଭକ୍ତି । କର୍ତ୍ତୃତ୍ୱାଭିମାନ ତ୍ୟାଗ କରି ହରି ସର୍ବତ୍ରାଧିଷ୍ଠିତ ଥିବାର ଲକ୍ଷ୍ୟରେ ଅଥଚ ସେହି ସର୍ବମୟ ଜ୍ଞାନାକାର ବିଶ୍ୱମୂର୍ତ୍ତିଙ୍କ ଉଦ୍ଦେଶ୍ୟରେ ସବୁ ପ୍ରକାରର ପ୍ରତ୍ୟୁପକାର ବା ଫଳାକାଂକ୍ଷା ବିନା ସଂସାର ସମ୍ବନ୍ଧରେ ବା ସଂସାରୀୟ ପ୍ରାଣୀ ସମ୍ବନ୍ଧରେ ଯେଉଁସବୁ ଉପକାରଜନକ ସେବା ଶୁଶ୍ରୂଷାତ୍ମକ କର୍ମ ଶ୍ରଦ୍ଧା ସହିତ କର୍ତ୍ତବ୍ୟଜ୍ଞାନଦ୍ୱାରା ଆଚରଣ ବା ଅନୁଷ୍ଠାନ କରାଯାଏ, ତାହା ମଧ୍ୟ ଭକ୍ତିପଦବାଚ୍ୟ ଅଟେ । ଏଥିରେ ଭକ୍ତ ବୋଲି ନାମଧାରୀ ହେବା ଦୋଷାବହ; ସୁତରାଂ ଭକ୍ତି ସଂସାରରେ ଅଛି, ଅଥଚ ଭକ୍ତ କେହି ନାହିଁ ।

ଆଜକାଲି ଦେଶଭକ୍ତ ବୋଲି ଇଚ୍ଛାପୂର୍ବକ ଚହ୍ଲାଇ ହେବାକୁ ଅନେକେ ଲାଳାୟିତ । ଅଥଚ ଭକ୍ତର ସଚ୍ଚା ଚିହ୍ନ ଖୋଜି ବୁଲି ଅନୁସନ୍ଧାନ କଲେ ବଡ଼ ଅଳ୍ପ ସ୍ଥାନରେ ତାହା ଲକ୍ଷିତ ହୁଏ । କାଳ ବୈପରୀତ୍ୟ ! ଏହି ସପ୍ତବିଂଶତି ମହତ୍ ଗୁଣ ବିଶିଷ୍ଟ ଉଚ୍ଚଭାବାତ୍ମକ ଅମୂଲ୍ୟ ରତ୍ନସ୍ୱରୂପ ଅନ୍ତଃକରଣର ପବିତ୍ର ଅଳଙ୍କାର ଉପରେ ପ୍ରଦର୍ଶିତ ହେଲା । ଏତକରେ ସେ ସବୁର ନାମ ଓ ସଂଖ୍ୟା ଶେଷ ହୋଇନାହିଁ । ଆହୁରି ଅନେକ ଅନେକ ସଦ୍‌ଗୁଣ ରହିଅଛି । ସେ ସବୁ ନାନାଦିଗରୁ ସଂଗ୍ରହ କରି ହୃଦୟରେ ଧାରଣ କରିବାକୁ ହେବ । ଏହି ସମସ୍ତ ସଦ୍‌ଗୁଣ ହୃଦୟରେ ପରିସ୍ଫୁଟ ଭାବରେ ବିରାଜମାନ

କଲେ ଆତ୍ମା ନିର୍ମଳ ଜ୍ୟୋତିର୍ମୟ ହୋଇ ସଂସାରରେ ଦେବୋପମ ଆଦର୍ଶର ଜୀବନ୍ତ ବିଗ୍ରହାକାରରେ କ୍ରୀଡ଼ା କରନ୍ତି । ସଂସାର ଘର ପାରିଜାତ ପୁଷ୍ପମାଳାରେ ପରିଣତ ହୁଏ । ଏହାଦ୍ୱାରା କାମ, କ୍ରୋଧାଦି ରିପୁବର୍ଗ ନିଷ୍କାମ ବା ସତ୍‌କାମ, ଅକ୍ରୋଧ, ଅଲୋଭ ବା ନିର୍ଲୋଭ, ଅମୋହ, ଅଗର୍ବ ଏବଂ ନିର୍ମାତ୍ସର୍ଯ୍ୟାଦିରେ ପରିବର୍ତ୍ତିତ ହୁଅନ୍ତି । ଏହିସବୁ ସଦ୍‌ଗୁଣ ସଂଗ୍ରହ କରିବା ମନୁଷ୍ୟର ମନୁଷ୍ୟତା, ହୃଦୟର ହୃଦୟବତ୍ତା, ଜ୍ଞାନର ଜ୍ଞାତୃତା, କର୍ତ୍ତବ୍ୟର କୃତାର୍ଥତା, ଚରିତର ଚରିତାର୍ଥତା ଏବଂ ତାହା ସହିତ ପୁରୁଷର ପୁରୁଷାର୍ଥତା ଯୁକ୍ତ ଅଟେ । ଏହି ଅମୂଲ୍ୟ ଧନ ଆତ୍ମାର ନିତ୍ୟ ସହଗାମୀ ଏବଂ ଇହ ପର ଉଭୟକାଳର ଉପକାରୀ ଓ ସାହାଯ୍ୟକାରୀ ଅଟେ । ଏହା ଉପାର୍ଜନ ସକାଶେ ଦୈହିକ, ମାନସିକ କଷ୍ଟ ସହ୍ୟ କରିବାକୁ ହୁଏ ନାହିଁ, ସମୟ ନଷ୍ଟ ହୁଏ ନାହିଁ ଅଥବା କାହାର କିଛି ଅସନ୍ତୋଷ ବା କଷ୍ଟ ଜନ୍ମାଇବାକୁ ପଡ଼େ ନାହିଁ । ଆଜି ମଧ୍ୟ ସ୍ଥାନାନ୍ତର ଖୋଜ ଅନୁସନ୍ଧାନ କରିବାର ଅପେକ୍ଷା ନ ଥାଏ ; ଆର୍ଥିକ ସାହାଯ୍ୟ ଲୋଡ଼ାହୁଏ ନାହିଁ । ଅଥଚ ଏହାର ସଂରକ୍ଷଣ ସକାଶେ ଅଭେଦ୍ୟ ଦୁର୍ଗ ପ୍ରୟୋଜନ ନ ଥାଏ, ରଖିବାକୁ ଘର ଲୋଡ଼ାହୁଏ ନାହିଁ । କେହି ଅପହରଣ କରିବାର ଆଶଂକା ଏକାବେଳକେ ନ ଥାଏ । ଏହା ସତ୍ପାତ୍ରରେ ଦେୟ ଓ ଦାନଦ୍ୱାରା ଏହା ପରିମାର୍ଜିତ ଏବଂ ପରିବର୍ଦ୍ଧିତ ହୋଇଥାଏ । ଏହି ସମସ୍ତ ସଦ୍‌ଗୁଣ ଅନ୍ତଃକରଣରେ ଦତ୍ତ ଅଛି । ଉର୍ବର ଭୂମି ଯେପରି କର୍ଷିତ ନ ହେଲେ ବା ତହିଁରେ ଉପଯୁକ୍ତ ବୀଜବପନ କରା ନ ଗଲେ ତାହା ପତିତ ହୋଇ ତୃଣମୟ ଭୂମିରେ ପରିଣତ ହୁଏ; ଅଥବା ନିଜ ଗୃହରେ ପୈତୃକ ସଞ୍ଚିତ ବହୁମୂଲ୍ୟ ଧାତୁଦ୍ରବ୍ୟ ଓ ମଣିମୁକ୍ତାଦି ସମ୍ପତ୍ତି ସଂରକ୍ଷିତ ଥିଲେ ମଧ୍ୟ ତାହା ଅବହେଳିତ ଦୋଷରେ ବା ଦେଶର ଅବ୍ୟବହାର୍ଯ୍ୟ କାଳରେ ଯେପରି ଅପଦାର୍ଥ ହୋଇ ନ ଥିଲା ପରି ପଡ଼ି ରହିଥାଏ, ସେହିପରି ହୃଦୟଦେଶସ୍ଥିତ ପରମେଶ୍ୱରଦତ୍ତ ଏହି ସଦ୍‌ଗୁଣମାନ ଜ୍ଞାନଚର୍ଚ୍ଚାଦି-ଦ୍ୱାରା ପ୍ରକାଶ କରା ନ ଗଲେ ବା ଦେଶର ମୋହମୟ ଭୌତିକଧନ ସଂଗ୍ରହର ଏକମାତ୍ର ପ୍ରବୃତ୍ତି-ପୂର୍ତ୍ତି-ପ୍ରବାହକାଳରେ ସେ ସବୁର ଅନାବଶ୍ୟକତା ଲକ୍ଷିତ ହୋଇ ତାହା ଅବହେଳିତ ଭାବରେ ରହିଥିଲେ, ନ ଥିଲାପରି ପ୍ରତୀୟମାନ ହୁଏ । ବର୍ତ୍ତମାନ ବିଳାସିତା ଯୁଗରେ ଅର୍ଥସଂଗ୍ରହ ମାତ୍ର ପୁରୁଷାର୍ଥ ଅଟେ । ପୁରୁଷାର୍ଥ ପରିଶୂନ୍ୟ କାଳରେ ମ୍ଳେଚ୍ଛ-ସଙ୍ଗ ଓ ଅସତ୍ କର୍ମର ଆଦର୍ଶ ଅନୁକରଣ ହେତୁରେ ସେହି ପ୍ରକୃଷ୍ଟ ପୌରୁଷେୟ ପୋଷକ ସଦ୍‌ଗୁଣମାନ ଅନ୍ତଃକରଣରେ ବିଦ୍ୟମାନ ଥିଲେ ସୁଦ୍ଧା ବ୍ୟବହାର ଦୋଷରୁ ତାହା ଚିହ୍ନା ନ ଯାଇ ନ ଥିଲା ପରି ରହିଅଛି । ଏବେ ଭୌତିକତାର ଯୁଗ ଲୋପହେବାକୁ ବସିଲାଣି । ସେହି ଅମୂଲ୍ୟ-ସଦ୍‌ଗୁଣ-ରତ୍ନରାଜି ଅନୁସନ୍ଧାନ କରି ନିର୍ଣ୍ଣୟ କରିବା ଏବଂ ତହିଁର ସେବା ଓ ଚର୍ଚ୍ଚାଦି ଅଭ୍ୟାସ କରିବା ଉଚିତ ।

ବର୍ତ୍ତମାନ ଏହି ସଦ୍‌ଗୁଣମାନେ କିପରି ଉଦ୍ଭବ ହୁଅନ୍ତି ଏବଂ କିପରି ପରିବର୍ଦ୍ଧିତ ଓ ପରିମାର୍ଜିତ ହୁଅନ୍ତି, ସେ ସମ୍ବନ୍ଧେ ଆଲୋଚନା କରାଯାଉ । ଅନ୍ତଃକରଣ ଏକ ହେଲେ

ସୂକ୍ଷ୍ମ ତାହା ବୃତ୍ତିଭେଦରେ ଯେପରି ବୁଦ୍ଧ୍ୟହଂକାରାଦି ଗୁଣପ୍ରକାରରେ ବିଭକ୍ତ, ସେହିପରି ଗୁଣମାନେ ତିନି ହେଲେ ସୂକ୍ଷ୍ମ ତାହା ବୃତ୍ତିଭେଦରେ ନାନାପ୍ରକାର ଗୁଣବୃତ୍ତିରେ ବିକାଶପ୍ରାପ୍ତ ହୁଅନ୍ତି; ସତ୍ତ୍ୱଗୁଣର ଧର୍ମ ଜ୍ଞାନ, ରଜୋଗୁଣର ଧର୍ମ ବିଷୟାଭିଳାଷ ବା ଭୋଗଲାଳସା, ଏବଂ ତମୋଗୁଣର ଧର୍ମ କର୍ମ-ବିକ୍ଷେପ । ପଦାର୍ଥ ଭିନ୍ନ ଭିନ୍ନ ପ୍ରକାରରେ ଓ ଭିନ୍ନ ଭିନ୍ନ ଅବସ୍ଥା ବିଶେଷରେ ସଂଯୋଗ ପ୍ରାପ୍ତ ହେଲେ ସେହି ଯୋଗଫଳ ନାନାପ୍ରକାର ଆକାର ଓ ନାନାପ୍ରକାର ଗୁଣକୁ ଧାରଣକରି ମୌଳିକତାକୁ ଲୋପ କରେ । ଏଠାରେ ଅନ୍ତଃକରଣ ସଙ୍ଗେ ଗୁଣତ୍ରୟ ଯୋଗହେବାରୁ ସେହି ଯୋଗଫଳ ଗୁଣମାନଙ୍କ ନ୍ୟୂନାଧିକ୍ୟ ପରିମାଣରେ ନାନାବିଧ ସତ୍ତ୍ୱ, ରଜଃ ତାମସିକ ଗୁଣ ବୃତ୍ତିରୂପେ ପ୍ରକଟିତ ହୁଅନ୍ତି । ସତ୍ତ୍ୱଗୁଣର ଆଧିକ୍ୟରେ ସେହି ସେହି ଗୁଣବୃତ୍ତିମାନେ ଉପରିଲିଖିତମତେ ସପ୍ତତ୍ରିଂଶ ଗୁଣବୃତ୍ତି ଆକାରରେ ପ୍ରକାଶିତ ହୁଅନ୍ତି । ଏହି ସପ୍ତତ୍ରିଂଶଟି ମାତ୍ର ପୂର୍ଣ୍ଣ ଶିକ୍ଷା ନୁହେ, ଆହୁରି ଅନେକ ଅନେକ ପ୍ରକାରର ଅସଂଖ୍ୟ ଅସଂଖ୍ୟ ସଦ୍‌ଗୁଣବୃତ୍ତିମାନଙ୍କର ନାମ ଓ ସଂଜ୍ଞାଦି ନାନା ଗ୍ରନ୍ଥାଦିରୁ ଏବଂ ସତ୍ସଙ୍ଗ ଚର୍ଚ୍ଚାରୁ ସଂଗ୍ରହ କରିବାକୁ ହେବ । ଏହିରୂପେ ବହୁତ ବହୁତ ସଦ୍‌ଗୁଣବୃତ୍ତି ଲାଭ ହେବାରୁ ସେ ସବୁ କିପରି ଅଭ୍ୟାସଦ୍ୱାରା ଆୟତ୍ତାଧୀନ କରି ରଖିବାକୁ ହୁଏ, ତାହା ଶିକ୍ଷା କରିବା ଏକାନ୍ତ କର୍ତ୍ତବ୍ୟ ଅଟେ ।

ଅଭ୍ୟାସ ଏବଂ ସଂସ୍କାର, ଏହି ଦୁଇଟିର ସମବାୟ ସମ୍ବନ୍ଧ । ଅଭ୍ୟାସ ପୁନଃ ପୁନଃ ସାଧନ କରି ତାହା ଦୃଢ଼ ହେଲେ ସଂସ୍କାରରେ ପରିଣତ ହୁଏ । ପୁଣି ସଂସ୍କାରାନୁଯାୟୀ ଅଭ୍ୟାସ ଅନୁବର୍ତ୍ତନ କରି ଅନୁଷ୍ଠିତ ହୋଇଥାଏ—ଏହିରୂପେ ଏ ଉଭୟର ନିତ୍ୟ ସମ୍ବନ୍ଧ । ପୁନଃ ପୁନଃ ଅଭ୍ୟାସର ଯୋଗଫଳହିଁ ସଂସ୍କାର । କର୍ମଭାବ ସଂସ୍କାରର ଅଧୀନ । ଏହିରୂପେ ସତ୍ତ୍ୱଗୁଣାତ୍ମକ ଭାବକୁ ବୃଦ୍ଧି କରିବା ନିମିତ୍ତ ସତ୍ତ୍ୱଗୁଣାତ୍ମକ କ୍ରିୟା ଅନୁଷ୍ଠାନ କରିବା କର୍ତ୍ତବ୍ୟ । ସତ୍ତ୍ୱଭାବ ଓ ସତ୍ତ୍ୱକ୍ରିୟାରୁ ସାତ୍ତ୍ୱିକ ସଂସ୍କାର ଉଦୟ ହୁଏ । ଏହି ସାତ୍ତ୍ୱିକ ସଂସ୍କାର ସହକାରେ ଉପରିବର୍ଣ୍ଣିତ ସତ୍ତ୍ୱାତ୍ମକ ସଦ୍‌ଗୁଣ ବୃତ୍ତିମାନଙ୍କୁ ସେମାନଙ୍କର ନାମ, ସଂଜ୍ଞା, ଗୂଢ଼ଭାବ, କ୍ରିୟା, ଧର୍ମ ଏବଂ ସ୍ୱରୂପ ଲକ୍ଷଣାଦି ସହିତ ଥରେ ଥରେ ଆମୂଳ କରି ସ୍ମରଣ କରି ଯିବାକୁ ହେଉଥିବ । ଏହି ସ୍ମରଣରୁ ସର୍ବଦା ମନନ ଅଭ୍ୟାସ କରିବାକୁ ହୁଏ । ଏହି ମନନାଭ୍ୟାସ ସଂସ୍କାରରେ ପରିଣତ ହୁଏ । ଏତଦ୍ରୂପ ସତ୍ ସଂସ୍କାରକୁ ଉକ୍ତ ସଦ୍‌ଗୁଣ ବୃତ୍ତିମାନେ ଅନ୍ତଃକରଣକୁ ଉର୍ବରଭୂମି ପ୍ରାୟ ପବିତ୍ର କ୍ଷେତ୍ରରୂପରେ ପରିଣତ କରି ତହିଁରେ ଜ୍ଞାନ, ବୈରାଗ୍ୟାଦି ରତ୍ନମୟ ଫଳରୂପେ ସମୁଦ୍ଭୂତ ହୋଇ କ୍ରମେ ବର୍ଦ୍ଧିତ ଓ ମାର୍ଜିତ ହେଉଥାନ୍ତି । ଏହିରୂପେ ଉକ୍ତ ସପ୍ତତ୍ରିଂଶ ସଦଗୁଣ ବୃତ୍ତି ଅନୁକ୍ତ ଅଥଚ ଅପେକ୍ଷିତ । ସମସ୍ତ ସଦ୍‌ବୃତ୍ତିମାନଙ୍କୁ ସ୍ମରଣ ମନନ କରୁ କରୁ ସେମାନେ ଅନ୍ତଃକରଣରେ ସ୍ଥାନପ୍ରାପ୍ତ ହୋଇ ଦୃଢ଼ଭାବେ ସଂସ୍ଥାପିତ ହୁଅନ୍ତି— ଏହା ସୂକ୍ଷ୍ମ ବୃତ୍ତିମାନଙ୍କର ଧର୍ମ । ଏଥିରେ ବାହ୍ୟାଡ଼ମ୍ବର ପୂର୍ଣ୍ଣ ବାହ୍ୟକ୍ରିୟା ଏକାନ୍ତ

ଅନାବଶ୍ୟକ । ଖଟା ବା ଅମ୍ଳ, କଷ୍ଟାଦି ଆସ୍ବର ଜାତୀୟ ରୁଚିକର ପଦାର୍ଥ ପାଖରେ ନ ଥାଉ ପଛକେ, ତାହା ଚାଖିବା କି ଖାଇବାର ମନେ ପକାଇଲେ ଯେ ଯେପରି ଜିଭ ତଳେ ଲାଗିଗଲା ପ୍ରାୟ ଜଣାଯାଇଥାଏ ଓ ଜିଭରୁ ପାଣି ଗଡ଼ିପଡ଼େ, ସେହିପରି ଏ ସଦ୍‌ଗୁଣ ବୃତ୍ତିମାନେ ସେମାନଙ୍କର ସଂଜ୍ଞା ଏବଂ ଗୁଣ, ଭାବ ଲକ୍ଷଣାଦି ସମ୍ବନ୍ଧ ସ୍ମରଣ, ମନନ ଏବଂ ଶ୍ରବଣ, ପଠନାଦି ସତ୍‌ସଙ୍ଗରେ ସତ୍‌କ୍ରିୟା ଏବଂ ସଦ୍‌ବ୍ୟବହାରାଦିରେ ପୁନଃ ପୁନଃ ଅଭ୍ୟସ୍ତ ହେବା ସହଜ ଅଟେ । ଅତଏବ ସତ୍ସଙ୍ଗ, ପୁରାଣାଦିର ଶ୍ରବଣ, ପଠନ ଏବଂ ସ୍ମରଣ, ମନନାଦି କର୍ତ୍ତବ୍ୟ । ସଦ୍‌ଗୁଣ ବୃଦ୍ଧି ନିମିତ୍ତ ଆଉ ଏକ ଉପାୟ ଏହି ଯେ—ମନୁଷ୍ୟ ହେଲେ କାହାଠାରେ ଅବଶ୍ୟ କୌଣସି ନା କୌଣସି ସଦ୍‌ଗୁଣ ଜଣାପଡ଼ିଲା ଭଳି କିଛି ଅଧିକ ପରିମାଣରେ ରହିଥିବା ଉଚିତ । ସେହି ଲୋକ ସେହି ସଦ୍‌ଗୁଣଟିକୁ କାର୍ଯ୍ୟରେ ପରିଣତ କରିବାକୁ ବେଶୀ ଅଭ୍ୟାସଶୀଳ ଓ ଯତ୍ନବାନ ହେବା ଉଚିତ; ତହିଁରେ ଗୋଟିଏ ସେହି ଗୁଣ ବୃଦ୍ଧି ପାଇବ ।

ଗୋଟିଏ ସଦ୍‌ଗୁଣ ବଢ଼ିଗଲାରୁ ତାହାର ନିକଟ ସମ୍ପର୍କ ବିଶିଷ୍ଟ ଅନ୍ୟ ସଦ୍‌ଗୁଣକୁ ଆକର୍ଷଣ କରିବ । ଏହିପରି ଯୋଡ଼ିଏ ଗୁଣ ଏକତ୍ର ହେଲାରୁ ସେମାନଙ୍କର ଆନୁଷଙ୍ଗିକ ଓ ଆପେକ୍ଷିକ ଅନ୍ୟାନ୍ୟ ନିକଟ ସମ୍ପର୍କଯୁକ୍ତ ସଦ୍‌ଗୁଣମାନେ ଆକୃଷ୍ଟ ହୋଇ ତହିଁରେ ମିଶିଯିବେ । ଏହିପରି କ୍ରମେ କ୍ରମେ ସଦ୍‌ଗୁଣମାନେ ପରସ୍ପର ଟଣାଟଣି ହୋଇ ମାନବୀୟ ଅନ୍ତଃକରଣକୁ ସେମାନଙ୍କର ଲୀଳାକ୍ଷେତ୍ରରେ ପରିଣତ କରି ଅନ୍ତଃକରଣକୁ ସଦ୍‌ଗୁଣମୟ କରିଦେବେ । ସଦ୍‌ଗୁଣ ବୃତ୍ତିମାନଙ୍କର ଏପରି ଏକ ଧର୍ମ ଅଛି ଯେ ଗୋଟିଏ ଯେଉଁଠାରେ ଉଦୟ ହେବ, ତାହାର ନିକଟ ସମ୍ବନ୍ଧଯୁକ୍ତ ଅନ୍ୟମାନେ ସେହିଠାରେ ଦେଖାଦେବେ । କ୍ରୀଡ଼ାସକ୍ତ ଓ ଅଧ୍ୟୟନଶୀଳ ଗୋଟିଏ ବାଳକ ତଦ୍ରୂପ କର୍ମଭୂମିରେ ପହଞ୍ଚିଲେ ତାହାର ସଙ୍ଗୀମାନେ ତଦ୍ରୂପ ସମପ୍ରବୃତ୍ତି ବିଶିଷ୍ଟ ବୋଲି ସେହିଠାରେ ଉପସ୍ଥିତ ହୁଅନ୍ତି । ମନେକର, ଜଣକଠାରେ ଟିକିଏ ଦୟାର ଆଧିକ୍ୟ ଅଛି (ପରଦୁଃଖହରଣେଚ୍ଛା ଦୟା) । ଗୋଟିଏ କ୍ଷୁଧାର୍ତ୍ତକୁ ଦେଖି ସେ କିଛି ଖାଦ୍ୟ ତାକୁ ଦେବ; ସେଠାରେ ଉପକାର ଇଚ୍ଛା, ତ୍ୟାଗ ଇଚ୍ଛା, ଆଉ କିଛି ଦୈହିକ କଷ୍ଟହରଣେଚ୍ଛା ସେହି ଦୟା ସଙ୍ଗେ ସ୍ୱତଃ ଆସି ମିଶ୍ରିତ ହେବ । ଏହିପରି ଏ ଛୋଟେଟି ବୃତ୍ତିକୁ ଅଭ୍ୟାସ ସହକାରେ କାର୍ଯ୍ୟରେ ଲଗାଉ ଲଗାଉ କ୍ରମେ କ୍ରମେ ଅନ୍ୟାନ୍ୟ ସଦ୍‌ଗୁଣ ସେଠାରେ ବିଶ୍ରାମ କରିଯିବେ । ଅଭ୍ୟାସର ଧର୍ମ ଏହି ଯେ, ଯାହା ଅଭ୍ୟାସ କରାଯିବ, କ୍ରମେ କ୍ରମେ ତାହା ସୁସାଧ୍ୟ ଲାଗୁଥିବ; ଆଉ ମଧ୍ୟ ବଢ଼ି ବଢ଼ି ଯାଉଥିବ । ଅତଏବ ସଦଭ୍ୟାସରେ ସଦ୍‌ଗୁଣ ବୃତ୍ତିମାନେ ପରିବର୍ଦ୍ଧିତ ହୁଅନ୍ତି । ଉତ୍ତମ ସଙ୍ଗ ଏଥିର ପ୍ରଧାନ କାରଣ । ଉତ୍ତମ ସଙ୍ଗକୁ ସତ୍‌-ଆଦର୍ଶ ଦେଖି ଶିଖି ଅନୁକରଣ କରିବାକୁ ହୁଏ ।

ମନୁଷ୍ୟ ଆଦର୍ଶ, ଅନୁକରଣ ଓ ଅଭ୍ୟାସର ଅଧୀନ—ଏହା ଏକାନ୍ତ ମହା-ସତ୍ୟ ଅଟେ । ଆଜକାଲି ପେଟର ଯୋଗରେ, ପେଟ୍ରୁର ଯୁଗରେ, ଇନ୍ଦ୍ରିୟପରାୟଣତା,

ବିଳାସିତା, ଗର୍ବ, ମୋହ, ଆଡ଼ମ୍ବର ଦାନରେ ମନୁଷ୍ୟ ଦେହଧାରୀ ମ୍ଳେଚ୍ଛ, ରାକ୍ଷସ, ମଦ୍ୟଗତ ପ୍ରାଣ ସମ୍ପ୍ରଦାନର ଆଦର୍ଶ, ଅନୁକରଣ ମନରେ ଏତଦନୁରୂପ ମୋହ-ମୁଗ୍ଧ-ମାନବ ଉପରବର୍ଣ୍ଣିତ ପବିତ୍ର ବିଷୟକୁ ଏବଂ ସଦନୁଷ୍ଠାନ, ସଦଭ୍ୟାସ ଓ ସଦାଦର୍ଶଲଭ୍ୟ ସଦ୍‌ଗୁଣାବଳୀକୁ ଆରବୀୟ ଉପନ୍ୟାସ ଭଳି କଳ୍ପନାମୂଳକ ପ୍ରବନ୍ଧ ଭିତରେ ପକାଇ କହିବେ, ଏଗୁଡ଼ାକ କଥାର କଥା ମାତ୍ର; ଏଥିରେ ଫଟା କଉଡ଼ି କଡ଼ାଏ ଲାଭ ହେବ ନାହିଁ । କଉଡ଼ି ଆଜିକାଲି ବଡ଼ ପଦାର୍ଥ, ତଦ୍ୱାରା ଭଲ ଘର, ଭଲ ଯାନ, ବାହନ, ଆସନ, ଭଲ ପୋଷାକ ପରିଚ୍ଛଦ ମିଳୁଅଛି ! ଦେହକୁ ମଧ୍ୟ ନାନାପ୍ରକାର ସଜାଡ଼ି ଦେଖାଇ ହେବାକୁ ହେଉଅଛି । ଏତିକିରେ ମନୁଷ୍ୟ ମହତ୍ତ୍ୱର ରାଜ୍ୟକୁ ସସୀମ କରି ଅଣ୍ଟାରେ ଖୋସି ରଖିଲି ବୋଲି ମନେ କରୁଅଛି । ଏହା ଏହି ଭୌତିକ ଦୃଶ୍ୟ ଜଡ଼ ବସ୍ତୁର ମହତ୍ତ୍ୱ ହୋଇପାରେ, ମାତ୍ର ମାନବୀୟ ଆତ୍ମାର ମହତ୍ତ୍ୱ ନୁହେ । ଜଡ଼ୀୟ ଉପକରଣର ମହତ୍ତ୍ୱକୁ ମାନବୀୟ ଆତ୍ମାର ମହତ୍ତ୍ୱ ବୋଲି କଳ୍ପନାପୂର୍ଣ୍ଣ ଭ୍ରମଚକ୍ଷୁରେ ଦେଖିବା, ଅନ୍ଧ ଚଉଦ ବ୍ରହ୍ମାଣ୍ଡ ଦେଖିଲା ପରି କଥା ଭିନ୍ନ ଆଉ କିଛି ନୁହେ । ବାହ୍ୟ-ଶୁଦ୍ଧି, ଅନ୍ତଃଶୁଦ୍ଧି ଓ ଏତଦ୍‌କଳ୍ପେ ଆତ୍ମଶୁଦ୍ଧି ଦ୍ୱାରା ଯେଉଁ ମହତ୍ତ୍ୱ, ତାହା ଆତ୍ମାର ମହତ୍ତ୍ୱ; ଏ ମହତ୍ତ୍ୱ ଆତ୍ମାର ସର୍ବକାଳସ୍ଥାୟୀ ଅଟେ । ବର୍ତ୍ତମାନ କାଳରେ ତ୍ୟାଜ୍ୟ ମଳ, ମୂତ୍ର ଓ ବାନ୍ତ୍ୟାଶନାଦିକୁ ମନୁଷ୍ୟ ଅମୃତ ଭୋଜନ ପରି ଗ୍ରହଣ କରୁଅଛି । ଆଧ୍ୟାତ୍ମିକତାର ଉପକରଣ ସ୍ୱରୂପ ସଦ୍‌ଗୁଣମାନଙ୍କରେ ମହତ୍ତ୍ୱ ଅଛି ବୋଲି ବୁଝୁନାହିଁ; ଏହା ମ୍ଳେଚ୍ଛ-ସଂସ୍କାର ଫଳ । ଜଡ଼ର ରୂପାନ୍ତରିତ ଅବସ୍ଥାରେ ମହତ୍ତ୍ୱର ଆରୋପ କଲେ ତଦ୍ୱାରା ମନୁଷ୍ୟ ମହତ୍ତ୍ୱବାନ ହେବା ଦୂରର କଥା ! ମାତ୍ର ତହିଁରେ ମହତ୍ତ୍ୱ ଶବ୍ଦଟି ଅପବିତ୍ର ହେଲା । ଏହି ଅପବିତ୍ର ମହତ୍ତ୍ୱ ଆତ୍ମାଠାରୁ ବହୁ ଦୂରରେ ଅଛି । ମାନବୀୟ ଆତ୍ମା ଜଡ଼ବସ୍ତୁର ଅପବିତ୍ର ମହତ୍ତ୍ୱକୁ ନିଜର ମନେ କରିବାଦ୍ୱାରା ସ୍ୱୟଂ ଆପଣାକୁ ଜଡ଼ ବସ୍ତୁ ବୋଲି ପ୍ରକାରାନ୍ତରରେ ସ୍ୱୀକାର କରୁଅଛି । ମ୍ଳେଚ୍ଛ ସଙ୍ଗର, ମ୍ଳେଚ୍ଛ ଆଦର୍ଶର ଏହାହିଁ ଫଳ । ଏବେ ସେ ମୋହରାତ୍ରି ପାହିଗଲାଣି; ଦିବାଲୋକର ବ୍ୟବସ୍ଥା କରିଯାଉ ।

ଉପରବର୍ଣ୍ଣିତ ସଦ୍‌ଗୁଣମାନଙ୍କର ସ୍ମରଣ, ମନନ ଏବଂ ଅଭ୍ୟାସକୁ ନିର୍ଦ୍ଦିଷ୍ଟ ପ୍ରଣାଳୀ ଅନୁସାରେ ଅନୁଶୀଳନ କଲେ, ଅନ୍ତଃକରଣ ସ୍ୱଚ୍ଛ, ସରଳ ଏବଂ ସ୍ପନ୍ଦନ ରହିତ ହୁଏ । ଏଥିରେ ଦୁଷ୍ଟ ବୃତ୍ତି କଦାଚିତ୍ ଧୈର୍ଯ୍ୟକୁ ନଷ୍ଟ କରି ବାହାରକୁ ଅର୍ଥାତ୍ ବାହ୍ୟେନ୍ଦ୍ରିୟକୁ ସ୍ପର୍ଶ କଲାବେଳକୁ ପୁଣି ଆତ୍ମା ଧୈର୍ଯ୍ୟକୁ ସ୍ମରଣ ଏବଂ ଅବଲମ୍ବନପୂର୍ବକ ସେହି ଦୁଷ୍ଟ ବୃତ୍ତିକୁ ପ୍ରତ୍ୟାହାର କରିବା ନିମିତ୍ତ ଟିକିଏ 'ବିଷ୍ଟୁ' ଭଳି ସ୍ଥିର ରହିଯିବାକୁ ହେବ । ଏଥିରେ ଦେହକୁ, ଇନ୍ଦ୍ରିୟମାନଙ୍କୁ, ନିଃଶ୍ୱାସ, ପ୍ରଶ୍ୱାସ ବାୟୁକୁ ଏବଂ ଏତତ୍ ସହକାରେ ମନକୁ ମଧ୍ୟ ତୃଷ୍ଣୀଭାବ ଅବଲମ୍ବନ କରିବାକୁ ହୋଇଯିବ । 'ବିଷ୍ଟୁ' ଭଳିବାର ଧର୍ମାନୁସାରେ ଦେହେନ୍ଦ୍ରିୟାଦି ସ୍ଥିର ହେବା ଏକପ୍ରକାର ନିୟମାଧୀନ । ଏହାପରେ ସେହି ଦୁଷ୍ଟ ବୃତ୍ତିର ବିପରୀତ ଭାବାତ୍ମକ ସଦ୍‌ଗୁଣ ବୃତ୍ତିକୁ ସେହି ସଙ୍ଗେ ସଙ୍ଗେ ସ୍ମରଣ କରିବାକୁ

ଆରମ୍ଭ କଲାରୁ ଅନ୍ତଃକରଣ ସେହିଠାରେ ସେହିକ୍ଷଣି ବଦଳଯିବ । ତତ୍ପରେ ସେହି ସ୍ଥାନରେ ସେହି ଦୁଷ୍ଟ ବୃତ୍ତି ମୂଳକ ଘଟନାକୁ ଏବଂ ସେହି ଘଟନାର ସମ୍ପର୍କକୁ ଉପସ୍ଥିତ କାର୍ଯ୍ୟ-କାରଣାଦିକୁ ଏବଂ ପାରିପାର୍ଶ୍ୱିକ ବ୍ୟକ୍ତିଗତ ଆଚରଣାଦିକୁ, ପୁଣି ସେହି ସଙ୍ଗେ ସଙ୍ଗେ ନିଜର ଦେହ ସହିତ ଉତ୍ତେଜନାଦିକୁ ଆତ୍ମଜ୍ଞାନଯୁକ୍ତ ଧୈର୍ଯ୍ୟଦ୍ୱାରା ପ୍ରଶମନ କରି, ସେହିସବୁ ଜାଗତିକ ଜଡ଼ଭୌତିକାତ୍ମକ ଦୃଶ୍ୟରୁ ସ୍ୱୟଂ ଦ୍ରଷ୍ଟା ଆତ୍ମା ପୃଥକ୍ ଏବଂ ନିର୍ଲିପ୍ତ ବୋଲି ଆପଣାକୁ ସ୍ଥିର କରିବାକୁ ହେବ । ଏହି ସାଧାରଣ ସାଧନାରେ ପରମେଶ୍ୱରୀ ପ୍ରକୃତିଦେବୀଙ୍କର ଆଶୀର୍ବାଦ ପୂର୍ଣ୍ଣମାତ୍ରାରେ ସାହାଯ୍ୟ କରିବାକୁ ଅଯାଚିତ ଭାବେ ଅଜ୍ଞାତ ବା ଅଦୃଶ୍ୟ ସୂତ୍ରରେ ପ୍ରସ୍ତୁତ ହୋଇ ରହିଥାଏ । ଏହି ଆଶୀର୍ବାଦାମୃତବଳରେ ସେହି ଦୁଷ୍ଟ ବୃତ୍ତି ଏବଂ ତନ୍ମୂଳକ ଘଟନା ଓ ସେହି ଘଟନା ସମ୍ପର୍କୀୟ କାର୍ଯ୍ୟକାରଣାଦି, ଆଉ ପାରିପାର୍ଶ୍ୱିକ ବିଷୟାଦି ବିଷମୟ ହୋଇଥିଲେ ସୁଦ୍ଧା ଗଙ୍ଗାଜଳରେ ପରିଣତ ହୁଏ । ଅନ୍ତଃକରଣରେ ସର୍ବଦା ସଦ୍‌ଗୁଣ ଓ ସତ୍ ପ୍ରବୃତ୍ତିମାନଙ୍କୁ ପୋଷି ରଖିବା ନିମିତ୍ତ ତତ୍ସମ୍ବନ୍ଧୀୟ ସ୍ମରଣ ମନନାଦି ଯେପରି ଏକାନ୍ତ ଆବଶ୍ୟକ, ସେହିପରି ସ୍ମରଣ ମନନାଦିର ଅଭ୍ୟାସକୁ ଅବ୍ୟାହତ ଓ ଦୃଢ଼ବଦ୍ଧ କରି ରଖିବା ନିମିତ୍ତ କ୍ରିୟାଶୁଦ୍ଧି ନିତାନ୍ତ ପ୍ରୟୋଜନ ଅଟେ ।

କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟାଦିକୁ ଦୋଷ, ଅପରାଧ ଏବଂ ପାପ ସଂପର୍କୀୟ କାର୍ଯ୍ୟରୁ ସର୍ବଦା ନିବୃତ୍ତ ଓ ସଂଯତ ରଖିବାକୁ ମନକୁ ସାବଧାନତା ସହିତ ସବୁବେଳେ ପ୍ରହରୀସ୍ୱରୂପ ନିଯୁକ୍ତ ରଖିବା ପ୍ରଥମ ସାଧନା । ଏଥିରୁ କ୍ରିୟାଶୁଦ୍ଧି, କ୍ରିୟାଶୁଦ୍ଧିରୁ ଅନ୍ତଃଶୁଦ୍ଧି ଏବଂ ଉଭୟଶୁଦ୍ଧିରୁ ଆତ୍ମଶୁଦ୍ଧି ସ୍ଥିର ରହିବା ସ୍ୱାଭାବିକ । ଏତଦ୍ୱାରା ସମସ୍ତ ସଦ୍‌ଗୁଣ-ବୃତ୍ତିମାନେ ଅନ୍ତଃକରଣ ସହିତ ନିତ୍ୟ ସଙ୍ଗୀରୂପେ ବିରାଜମାନ କରନ୍ତି । ଏହିରୂପେ ଏତଦ୍ରୂପ ସଦ୍‌ଗୁଣ ବୃତ୍ତିଯୁକ୍ତ ବିମଳ-ପବିତ୍ରାନ୍ତଃକରଣ ସାହାଯ୍ୟରେ ଆତ୍ମା, ଆତ୍ମ-ସ୍ଥାନ ଲାଭ କରନ୍ତି । ଏହି ଅମୂଲ୍ୟ ରତ୍ନଲାଭ ସଙ୍ଗେ ସଙ୍ଗେ ଆତ୍ମାର ନିତ୍ୟ ସହଚର ପ୍ରେମ, ଧର୍ମ, ଜ୍ଞାନ ଓ ବୈରାଗ୍ୟ ଏକତ୍ର ମିଶି ଆତ୍ମାର ଚିନ୍ମୟତ୍ୱ ଉପଲବ୍ଧି କରାଇ ଆତ୍ମାକୁ ଏହି ଦେହାନ୍ତଃକରଣାବଚ୍ଛିନ୍ନ ଓ ଏତଦ୍ଉପହିତ ଦେହୀ ପଦବାଚ୍ୟ ଜୀବାତ୍ମାକୁ ଆତ୍ମ-ପ୍ରେମ-କୈବଲ୍ୟାମୃତ ରସ ସଂଭୋଗରେ ଆପ୍ୟାୟିତ କରନ୍ତି । ଆତ୍ମା, ଭାବର ଭୋଗୀ । ସାରୁ, କଦଳୀ, ରସଗୋଲା, ସନ୍ଦେଶ ଯେତେ ଯାହା ଖିଆଯାଉ, ଯେତେ ଯାହା ସୁସ୍ୱାଦୁ ପାନୀୟ ପାନ କରାଯାଉ ପଛକେ, ଦେଖୁଥାଅ ସେ ସମସ୍ତ ମଳମୂତ୍ରର ପୂର୍ବାବସ୍ଥା ଓ ଅଦୂରପୂର୍ବର ସ୍ୱରୂପାବୟବିଭିନ୍ନ ଆଉ କିଛି ନୁହେ । କେବଳ ସେସବୁ ପ୍ରଥମରେ ମୂତ୍ର-ପୁରୀଷ-ପୂର୍ଣ୍ଣ ଉଦରରେ ଓ ପରେ ମଳମୂତ୍ରାକାରରେ ମୃଣ୍ମୟ ଜଗତରେ ଚିର ବିଶ୍ରାମ କରନ୍ତି । ଆଉ ଜିହ୍ୱା ସଂଯୋଗକ୍ଷଣରେ ଯେଉଁ ରସାତ୍ମକଭାବ ଅନ୍ତଃକରଣରେ ଉଦିତ ହୁଏ, ସେହି ଭାବକୁ ମାତ୍ର ଆତ୍ମଦେବ ଦର୍ଶନ କରି ସେହିକ୍ଷଣି ତ୍ୟାଗ କରନ୍ତି । ପୁଣି ସେହି ଭାବ ଅତୀତ କାଳ ଗର୍ଭରେ ନିକ୍ଷିପ୍ତ ହୋଇ ଚିରକାଳ ନିମିତ୍ତ ଆତ୍ମାଠାରୁ ଅଲଗା ହୋଇ ଅଦୃଶ୍ୟ ହୁଏ । ବିଷୟଭୋଗର ପରିଣାମ ଏହିପରି ହେଲେ ସୁଦ୍ଧା ଆତ୍ମା

ତତ୍ସମ୍ବନ୍ଧୀୟ ଭବର କ୍ଷଣ ଉପଭୋଗୀ ମାତ୍ର । ଯାହା ହେଉ, ଏହି ଦୁଇ ପ୍ରକାର ଭବ ଅର୍ଥାତ୍ ଅନିତ୍ୟ ବୈଷୟିକ ଭବର ମୂଲ୍ୟ କେତେ ? ଆଉ ସେହି କୈବଲ୍ୟାମୃତ ନିତ୍ୟରସର ଭବର ଅମୂଲ୍ୟ ମୂଲ୍ୟ କେତେ ? ପୁଣି ସେହି କୈବଲ୍ୟାମୃତ ନିତ୍ୟରସ, ଜ୍ଞାନାତ୍ମକ ସ୍ମରଣ, ମନନ, ଅଭ୍ୟାସଦ୍ୱାରା ସଂସିଦ୍ଧ (ଯାହାର ନାମ ରାଜାଧିରାଜ ଯୋଗ ଅଣସାଧନ ଧର୍ମ) ଆଉ ଅନିତ୍ୟ, କ୍ଷଣଦୃଶ୍ୟ ଓ ନଶ୍ୱର ବୈଷୟିକ ଭବ ସଂପାଦନୋପଯୋଗୀ ଉପକରଣାଦିର ଲଭ କେଉଁ, ଅସାଧ୍ୟ ସାଧନ ଓ କେତେ କେତେ ପ୍ରକାରର କଠୋର କର୍ମ ଏବଂ କେତେ କେତେ ପ୍ରକାରର ଦୁଶ୍ଚିନ୍ତା, ଦୁର୍ଭାବନା ଓ ପାପମୟ ଆଚରଣାଦି ପର୍ଯ୍ୟନ୍ତର ସାପେକ୍ଷ ତାହା ବର୍ଣ୍ଣନାତୀତ ଓ ବର୍ଣ୍ଣିତଶକ୍ତି ଅଟେ । ମାନବୀୟ ଆତ୍ମା ଆଜକାଲି ଏହି ଭୌତିକ ଲଭକୁ ମାନବୀୟ ପଦ କରି କଅଣ ଗ୍ରହଣ କରୁଛନ୍ତି ? ଯେଉଁ ଅଭିଶପ୍ତ ଆଦର୍ଶ ଓ ଅନୁକରଣରୁ ଏହି ଦୁରଭ୍ୟାସ ଓ ଦୁବଂଶପୂର ଜନ୍ମ ଏବଂ ପ୍ରଚୁର ବାହୁଲ୍ୟ ସଂବର୍ଦ୍ଧିତ ହୋଇଅଛି, ସେହି ପାପ ଏବଂ ପାପାଧାରର ନିଦାନ କରାଳ କାଳକୁ ଏବେ ତ୍ୱରିତ ଆଣି ଉପସ୍ଥିତ କରି ଦେଲଣି । ଏହିଠାରୁ ତାହା ସର୍ବତ ଅବହେଯୋଗ କରିବା ବିଧେୟ । ନଚେତ୍ ଘରପୋଡ଼ ଦେଖୁ ଦେଖୁ ଆଳସ୍ୟାବଲମ୍ବନ କରି ସେହି ଘରର ମାଟି କାମୁଡ଼ ଶୋଇପଡ଼ିଲେ ପୋଡ଼ପାଡ଼ ଗଲବେଳକୁ ଘଡ଼କ ଘଡ଼ ଘୋର ରଡ଼ ଛାଡ଼ିଲେ ଗୋଡ଼ ପୂରାଇ ରଖିବାକୁ ଦଉଡ଼ ଯିବାପାଇଁ କେହି ବାହା କାମୁଡ଼ ହେବ ନାହିଁ ।

ଆତ୍ମମିତ୍ର ଅର୍ଥାତ୍ ସଦ୍ଭାବ, ସଦ୍‌ଗୁଣ ଓ ସଦ୍‌ବୃତ୍ତିମାନଙ୍କ ବର୍ଣ୍ଣନା ଏବଂ ସେମାନଙ୍କର ରକ୍ଷଣ ପୋଷଣାତ୍ମକ ସ୍ମରଣ, ମନନାଦି ଅଭ୍ୟାସ ଏବଂ ସାତ୍ତ୍ୱିକ କ୍ରିୟାଦିରେ ଓ ସତ୍ପ୍ରସଙ୍ଗାଦିର ଅନୁବର୍ତ୍ତନ ସମ୍ବନ୍ଧୀୟ ବର୍ଣ୍ଣନାକୁ ଏହିଠାରେ ବିଶ୍ରାମ ଦେଇ ଏବେ ଆତ୍ମଶତ୍ରୁ ଅର୍ଥାତ୍ କାମ, କ୍ରୋଧାଦି ଶତ୍ରୁବର୍ଗର ଆଲୋଚନା ସଂକ୍ଷେପରେ ଆରମ୍ଭ କରିଯାଉଅଛି । କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ଏହି ଛଅଟି ରିପୁ ନାମରେ କଥିତ ହେଲେ ମଧ୍ୟ, ଗୋଟିଏ ବିଛୁଆତି ଗଛରୁ ବିଛୁଆତି ବଣ ମାଡ଼ିଗଲ ପରି ଏମାନେ ବହୁ ବହୁ ଅସଦ୍‌ଗୁଣ ପ୍ରସବ କରି ଅନ୍ତଃକରଣ କ୍ଷେତ୍ରକୁ ଅପବିତ୍ର ଓ କଳୁଷିତ କରି ଅଜ୍ଞାନାନ୍ଧକାରାଚ୍ଛନ୍ନ କରି ରଖନ୍ତି । ଅନ୍ତଃକରଣ ସହିତ ରାଜସ ତାମସ ଗୁଣ ଯୋଗରେ ମନ୍ଦଗୁଣଯୁକ୍ତ ଅନ୍ତର୍ବୃତ୍ତି ଅର୍ଥାତ୍ କାମ କ୍ରୋଧାଦି ରିପୁବର୍ଗ ଉଦୟ ହୁଅନ୍ତି । କାମ ଏବଂ ରାଜସାଧିକ୍ୟରୁ କ୍ରୋଧ, ମଦ, ମୋହ ଏବଂ ମାତ୍ସର୍ଯ୍ୟ ତାମସାଧିକ୍ୟରୁ ଜାତ । ରୂପାକାରିତ ପଦାର୍ଥରେ ଅହଂକାର ଏବଂ ମମକାର ସ୍ଥାପନର ନାମ କାମ । ଭୋଗ୍ୟବସ୍ତୁ ସଂଗ୍ରହ ଲାଳସା, ଲୋଭ ଅନୁକୂଳ ଘାତରୁ କ୍ରୋଧ ଜନ୍ମ । ମୋହର ଅର୍ଥ ସତ୍ ଏବଂ ଅସତ୍ କର୍ତ୍ତବ୍ୟ ଏବଂ ଅକର୍ତ୍ତବ୍ୟ, ଧର୍ମାଧର୍ମ, ନ୍ୟାୟାନ୍ୟାୟ ଇତ୍ୟାଦି ବିଷୟକ ଅଜ୍ଞାନ । ମୋହର ସ୍ଥୂଳ ଅର୍ଥ—ଜ୍ଞାନରାହିତ୍ୟ, ମଦର ଅର୍ଥ—ଗର୍ବ; ମାତ୍ସର୍ଯ୍ୟର ଅର୍ଥ—ପରଶ୍ରୀ-କାତରତା । କାମ, କ୍ରୋଧ, ଲୋଭ ସଂସାର ଯାହା ସମ୍ବନ୍ଧୀୟ ଲୌକିକ କର୍ମରେ ବୈଧ ଭବେ ପ୍ରୟୋଗ କରାଗଲେ ସଂସାରର ସାହାଯ୍ୟ କରିଥାଆନ୍ତି । ମାତ୍ର ମୋହ, ଗର୍ବ ଏବଂ

ମାତ୍ସର୍ଯ୍ୟ ବିଶୁଦ୍ଧ ତାମସ ଭାବାପନ୍ନ ଥିବାରୁ ତାହା ସର୍ବଥା ଜ୍ଞାନ ଧ୍ୱଂସକାରୀ, ସୁତରାଂ ସର୍ବତୋଭାବେ ତ୍ୟାଜ୍ୟ ଅଟନ୍ତି ।

ସଂସାରରେ ପୁତ୍ରପୁତ୍ରୀ ପ୍ରଭୃତି ଅପତ୍ୟ ସମ୍ବନ୍ଧ ରକ୍ଷା ନିମିତ୍ତ କାମପ୍ରବୃତ୍ତି ଏକାନ୍ତ କାର୍ଯ୍ୟକାରୀ । ଇନ୍ଦ୍ରିୟ ଚରିତାର୍ଥ ନିମିତ୍ତ ଏହାର ଯେଉଁ ଅପବ୍ୟବହାର, ତାହା ବ୍ୟଭିଚାର ଦୋଷର ଅନ୍ତର୍ଗତ । ନ୍ୟାଯ୍ୟ ପ୍ରାପ୍ୟ ବା ନ୍ୟାଯ୍ୟ ସ୍ୱତ୍ୱରେ ବା ସୁଖ ଶାନ୍ତି ପ୍ରଭୃତିରେ ଅନ୍ୟାୟ ସହକାରେ ପ୍ରତିବନ୍ଧ ବା ପ୍ରତିଘାତ ଆରମ୍ଭ ହେଲେ ତଦ୍ରୂପ ଦ୍ୱନ୍ଦ ବା ଆଘାତାଦିକୁ ନିବାରଣ କରିବା ପାଇଁ ଯେତେ ପ୍ରକାରର ସଦୁପାୟମାନ ପରାସ୍ତ ହେଲାରୁ କ୍ରୋଧ ଜାତ ହେବା ଅସ୍ୱାଭାବିକ ନୁହେ । ତେବେ କ୍ରୋଧର କାର୍ଯ୍ୟ ଯେତିକି ପରିମାଣରେ ପ୍ରୟୋଗ କରାଗଲେ ସେହି ଦ୍ୱନ୍ଦ ବା ଆଘାତାଦି ନିଦୂରିତ ହେବ, ତହିଁରୁ ଅଧିକ ଏକମାତ୍ର ପ୍ରୟୋଗ କରିବା ଅନୁଚିତ ଅଟେ । ରୋଗ ବିଶେଷରେ ବିଷ ମଧ୍ୟ ଅମୃତ ଫଳ ପ୍ରଦାନ କରେ । ମାତ୍ର ମାତ୍ରା ବଳିଲେ ତାହା ମାରାତ୍ମକ । ଲୋଭକୁ ନ୍ୟାୟସଙ୍ଗତ ପ୍ରାପ୍ୟ ବା ନ୍ୟାୟସଙ୍ଗତ ଦାବି ବା ସ୍ୱଳ୍ପଲବ୍ଧ ଅର୍ଥରେ ପ୍ରୟୋଗ କରିବା ଉଚିତ । ଅନ୍ୟଥା ଲୋଭ ମହାପାପ ଅଟେ । ଏଥିରୁ ସଂସାରରେ ବହୁତ ପ୍ରକାର ଅମିତ ଓ ବହୁତ ପ୍ରକାର ମନ୍ଦ କାର୍ଯ୍ୟ ବୃଦ୍ଧିପ୍ରାପ୍ତ ହେଉଅଛି । ପରରାଜ୍ୟପ୍ରବେଶକାରୀ ଲୋଭର ଦାସ । ଜ୍ଞାନ, ଦାନ ଅର୍ଥରେ ବା ଅନ୍ୟ ପ୍ରକାର ଉପକାର ସାଧନ ନିମିତ୍ତ ପର ରାଜ୍ୟରେ ପ୍ରବେଶ କରିବାର ଆଦର୍ଶ କଳିଯୁଗରେ ନାହିଁ କହିଲେ ଚଳିପାରେ । ସେହି ରକମ ଉପକାରିତାର ଆଗ ବଡ଼ ବଡ଼ ଅକ୍ଷରରେ ବିଜ୍ଞାପନ ଲେଖି ବାଣ୍ଟିବାର ବା ଚିତ୍କାର ଗଳଗର୍ଜନସୁଲଭ ବକ୍ତୃତାଦି ପ୍ରବୃତ୍ତ କରିବାର କାର୍ଯ୍ୟ ମହା ପ୍ରବଞ୍ଚକର କାର୍ଯ୍ୟ ଅଟେ । ପ୍ରବଞ୍ଚକର ସ୍ୱଭାବ କାରଣ ସଦ୍‌ଗୁଣକୁ ସମସ୍ତେ ଆକର୍ଷିତ ହେବା ସ୍ୱାଭାବିକ, ଆଉ ସଦ୍‌ଗୁଣ ସ୍ୱୟଂ ଦେଖାଇ ହେବାର ଜିନିଷ ନୁହେ । ଏହି ସମ୍ବନ୍ଧରେ ସନ୍ଦେହର ସ୍ଥାନ । ଏହି ପାପଗୁଡ଼ାକରେ କଳିଯୁଗ ଓ କଳିମାନବ ସର୍ବତ୍ର ଉତ୍ତେଇ ଉଦ୍‌ବେଇ ହେଉଅଛନ୍ତି ।

ଆଜକାଲି ଦେଖିବାକୁ ଗଲେ ଏହି ଛଅଟି ରିପୁ ଏବଂ ଏମାନଙ୍କଠାରୁ ଜାତ ହେଉଥିବା ଅନ୍ୟାନ୍ୟ ଅସତ୍ ଗୁଣ ଏବଂ ଅସତ୍ କର୍ମାଦି, ସଂସାରରେ ସବୁଠାରେ, ସବୁ ଜାତିରେ ବିଶେଷତଃ ଧର୍ମଧ୍ୱଜୀମାନଙ୍କଠାରେ ଓ ପୋଷାକ ପରିଚ୍ଛଦଗତପ୍ରାଣ ଆଡ଼ମ୍ବର ପ୍ରଦର୍ଶକ କଥିତ ଭଦ୍ରବେଶଧାରୀ ଅଧିକାଂଶଠାରେ ସମ୍ପୂର୍ଣ୍ଣ ଆଧିପତ୍ୟ ବିସ୍ତାର କରିଅଛି । ଅତୀବ ଦୁଃଖ ତାପର କଥା ଏହି ଯେ ଏପରି ଅନ୍ୟାୟୀମାନଙ୍କୁ ଅନ୍ୟାୟୀ ବୋଲି କହିଲେ ଅଥବା ଭରି ଥରି ଉତ୍ତମ ଭଦ୍ରଲୋକ ଓ ନ୍ୟାୟପରାୟଣ ବୋଲି ନ କହିଲେ ଏମାନେ ମାଟି ଖୋଳି, ବାହା କାମୁଡ଼ି, ଶିରତାଡ଼ନ କରି, ଏତେଦୂର ଅନିଷ୍ଟ କରନ୍ତି ଯେ ତହିଁରେ ଅନେକ ନିର୍ଦ୍ଦୋଷକୁ ମଧ୍ୟ ସ୍ଥଳବିଶେଷରେ ବଡ଼ ଅସହ୍ୟ ଆର୍ଥିକ, ଦୈହିକ ଓ ମାନସିକ କ୍ଷତି ସହ୍ୟ କରିବାକୁ ପଡ଼ିଥାଏ । କେତେକ ଘଟନାରେ ମଧ୍ୟ ପ୍ରାଣହାନିର

ଭୟ ଉପସ୍ଥିତ ହୋଇଥାଏ । ଏ ସବୁ ପୂର୍ଣ୍ଣ କଳିଚାମସର ଲକ୍ଷଣ । ଦେହେନ୍ଦ୍ରିୟ ଏବଂ ସଂସାର ସହଜରେ ଦେଖାଯାଉଅଛି । ଦୈହିକ ସୁଖକୁ ଇନ୍ଦ୍ରିୟମାନେ ସବୁବେଳେ ଶିଖାଇ ଚେତାଇ ଦେଉଅଛନ୍ତି, ଆଉ ବିଶ୍ୱ ସଂସାର ଏହି ସୁଖର ସମସ୍ତ ଉପକରଣ ଓ ଭୋଗ୍ୟ ବିଷୟାଦିକୁ ପଦାରେ ବାଡ଼ିରଖି ଚହ୍ଲାଇ ଦେଇ ମନେନ୍ଦ୍ରିୟାଦିକୁ ଆକର୍ଷଣ କରୁଅଛି । ସୁତରାଂ ବୈଷୟିକ ପ୍ରବୃତ୍ତି ଏବଂ ସେହି ପ୍ରବୃତ୍ତିର କ୍ରମବୃଦ୍ଧି ସହଜରେ ସାଧିତ ହେଉଅଛି । ଏଥିରେ ଶିକ୍ଷା, ଦୀକ୍ଷା ବା ପରାମର୍ଶ ଗ୍ରହଣାଦି ସେତେ ଅପେକ୍ଷା କରୁନାହିଁ । ପୁଣି ଏହି ଦୁଷ୍ପ୍ରବୃତ୍ତ୍ୟାଦିର ବୃଦ୍ଧି ସକାଶେ କୌଣସିଆଡ଼େ କିଛିମାତ୍ର ପ୍ରତିବନ୍ଧକ ନ ଥାଇ ବଡ଼ ମୁକ୍ତଭାବ ସବୁଦିଗରେ କ୍ରୀଡ଼ା କରୁଅଛି । କାଳବାୟୁ ଅନୁକୂଳ ବଡ଼ାସରେ ପରିଣତ ହୋଇଅଛି । ସଙ୍ଗ ଏବଂ ଶିକ୍ଷା, ଦୀକ୍ଷା ଓ ଆଦର୍ଶ ଅନୁକରଣାଦି ଏହି ମନ୍ଦ ପ୍ରବୃତ୍ତିମାନଙ୍କର ବଡ଼ ସହାୟତା କରୁଅଛି । ସମାଜଶାସନାଦି ଏ ସମ୍ବନ୍ଧେ ଲୋପ ପାଇଲାଣି । ମନ୍ଦ ପ୍ରବୃତ୍ତି ଏବଂ ଚରିତ୍ର ଦୋଷ ସଂଗ୍ରହ ଓ ବୃଦ୍ଧିର ନିବାରଣ ପାଇଁ ମୂଳରୁ କୌଣସି ଆଡ଼େ କିଛି ବ୍ୟବସ୍ଥାଦି ନାହିଁ ବା ଅନୁସନ୍ଧାନ କରି ଅନ୍ତର୍ବୃତ୍ତି ପରୀକ୍ଷା ଓ ସଂଶୋଧନ କରିବାର ପ୍ରଥା ବା ପ୍ରଣାଳୀ ଉଇଖିଆ ପୁସ୍ତକ ଭିତରେ ଅକର୍ମଣ୍ୟ ଓ ହେୟଜ୍ଞାନରେ ପଡ଼ି ସଡ଼ିଗଲାଣି । ତାହା କେହି ଉତ୍ଥାପନ କଲେ ବା କାର୍ଯ୍ୟାଦିରେ ପରିଣତ କଲେ, ତାହା ଅନଧିକାରଚର୍ଚ୍ଚା ଏବଂ ଦଣ୍ଡର ସଙ୍ଗରେ ପରିଗଣିତ ହେଉଅଛି । କାରଣ ତଦ୍ୱାରା ଅନ୍ୟ ସମ୍ଭାବନା ଜାଗାର ଅନ୍ୟାୟ ପରଧନ ଉଜାଡ଼ିବାର ସ୍ୱାର୍ଥଲାଭରେ ବାଧା ପଡ଼ୁଅଛି । ଏହିସବୁ କାରଣଯୋଗ ଏକତ୍ର ମିଶି ଦଳବଦ୍ଧ ହୋଇ ଘୋର କଳିକୁ ପତାକାଉଡ଼ା ଅଗ୍ରଗାମୀ ନେତାରୂପେ, ଆଗଚଲା ଆଗବୁଲା କାର୍ଯ୍ୟରେ ନିଯୁକ୍ତ କରି ବଡ଼ ସମାରୋହପୂର୍ଣ୍ଣ ଦିଗ୍‌ବିଜୟ ଯାତ୍ରା କରିଅଛି । ଏହିରୂପେ ମନ୍ଦଗୁଣ ସବଳ ହୋଇ ଅତି ମନ୍ଦରେ ପରିଣତ ହେଲାରୁ ତାହା କେବଳ ଅନିଷ୍ଟ ଓ ଦୁଃଖ, କଷ୍ଟ ଏବଂ ପାପତାପାଦିର କାରଣ ହୁଏ, ଅର୍ଥାତ୍ ମନ୍ଦର ବୃଦ୍ଧି ଅତି ମନ୍ଦ ଓ ବଡ଼ ଅମଙ୍ଗଳକର ଅଟେ ।

ମାତ୍ର ସଦ୍‌ଗୁଣମାନେ ସେପରି ନୁହନ୍ତି । ଏମାନଙ୍କର ବୃଦ୍ଧି ଅତୀବ ମଙ୍ଗଳପ୍ରଦ । ଧର୍ମ, ଜ୍ଞାନ ଏବଂ ଦୟା କ୍ଷମାଦି ସଦ୍‌ଗୁଣମାନେ ସ୍ୱୟଂ ସ୍ୱତଃ ମଙ୍ଗଳପ୍ରଦ ଅଟନ୍ତି । ଏମାନଙ୍କର ବୃଦ୍ଧି ଓ ଅତିବୃଦ୍ଧି କ୍ରମଶଃ ବିଶେଷ ପ୍ରକାରରେ ମଙ୍ଗଳଦାୟୀ । ଏହି ସନ୍ଧିରେ ମନୁଷ୍ୟର ଜ୍ଞାନର ନିବାସ ମନ୍ଦଆଡ଼େ, ଦେହେନ୍ଦ୍ରିୟ ଓ ସଂସାର ଜ୍ଞାନ ବହିର୍ଗ୍ରହ ଅଭାବରେ ଅତି ସହଜରେ ପ୍ରବର୍ତ୍ତି ଯିବାକୁ ଆଗେଇ ନେଇ ଯାଉଅଛନ୍ତି । ଏହା ବାହ୍ୟଆଡ଼େ ରହି ବାହ୍ୟ ପ୍ରବୃତ୍ତିକୁ ସାହାଯ୍ୟ କରୁଅଛି । ମାତ୍ର ଧର୍ମ, ଜ୍ଞାନ ଓ ଦୟା କ୍ଷମାଦି ବୃତ୍ତିର ସାପେକ୍ଷ, ବିବେକ ସାପେକ୍ଷ । ସତ୍‌ଶିକ୍ଷା ଓ ସଦନୁକରଣ ଏବଂ ସତ୍ସଙ୍ଗ ଓ ସଦନୁଷ୍ଠାନାଦି ସବୁପ୍ରକାର ସଦ୍ଭାବର ସାପେକ୍ଷ । ଏଗୁଡ଼ିକ ଦୁର୍ଲ୍ଲଭ କି ସହଜଲଭ୍ୟ ନୁହେ । ଏଥିରେ ଜ୍ଞାନର ପରିଚାଳନା ଏକାନ୍ତ ଆବଶ୍ୟକ । ଏହା ଅଦୃଶ୍ୟ ଓ ଅନ୍ତଃସ୍ଥ ଆଧ୍ୟାତ୍ମିକ ଜଗତର ପଦାର୍ଥ । ସୁତରାଂ ତାହା ହଠାତ୍ ଆୟାସବିନା ଦେହେନ୍ଦ୍ରିୟ

ଓ ସଂସାରବଦ୍ଧ ସ୍ଥୂଳ ବାହ୍ୟ ଜାଗତିକ ରାଜ୍ୟରେ ପଦାରେ ପଡ଼ିଥିଲା ପରି ଦେଖାଯାଏ ନାହିଁ । ଏହା ଜ୍ଞାନ ବିବେକାଦିଦ୍ୱାରା ଅନୁସନ୍ଧାନରେ ଦେଖାଯାଏ । ଏହିହେତୁ ସଦ୍‌ଗୁଣଯୁକ୍ତ ସତ୍‌ପ୍ରବୃତ୍ତିମାନ ନ ଥିଲା ପରି ମୂଢ଼ ଦୃଷ୍ଟିରେ ଅନୁଭୂତ ହୁଏ । ସୁତରାଂ ମାନବୀୟ ଜ୍ଞାନ ସତ୍‌ସମ୍ପର୍କ ଅଭାବରୁ ସଦ୍‌ଗୁଣାତ୍ମକ ସଦ୍‌ବୃତ୍ତିମାନଙ୍କୁ ଜାଣି ନ ପାରି ମୂଢ଼ତା ଅବଲମ୍ବନ ପୂର୍ବକ ବାହ୍ୟଜଗତ ଓ ବାହ୍ୟେନ୍ଦ୍ରିୟାଦିର ସମ୍ବନ୍ଧଜାତ ବାହ୍ୟ ଭୋଗାଦିରେ ପ୍ରଲୁବ୍ଧ ହୁଏ । ମୂଢ଼ତା ଇନ୍ଦ୍ରିୟ ଭୋଗରେ ନିମଜ୍ଜନ କରେ ଏବଂ ଇନ୍ଦ୍ରିୟଭୋଗ ମୂଢ଼ତାକୁ ସାଦରେ ନିମନ୍ତ୍ରଣ କରି ଆକର୍ଷଣ କରେ । ଏହିରୂପେ ଏ ଉଭୟେ ଏକତ୍ର ଜଡ଼ାଜଡ଼ି ହୋଇ ମାନବୀୟ ଜ୍ଞାନକୁ ବାହ୍ୟ ଜାଗତିକ ଭୋଗ ଓ କର୍ମଆଡ଼େ ଗଡ଼ାଇ, ସଡ଼ାଇ ପାପମୟ କରି ରଖିଅଛନ୍ତି । ଏତଦ୍ୱାରା ବାହ୍ୟଗ୍ରାହ୍ୟନା ସୁଲଭ ମନ୍ଦ ପ୍ରବୃତ୍ତିମାନେ ମାନବୀୟ ହୃଦୟରେ ସ୍ଥାନ ଲାଭ କରି କ୍ରମଶଃ ବୃଦ୍ଧିପ୍ରାପ୍ତ ହେଉ-ଅଛନ୍ତି ।

ଏସବୁ ଆଲୋଚନାରୁ ମନ୍ଦ ପ୍ରବୃତ୍ତିମାନଙ୍କର ବୃଦ୍ଧି ବଡ଼ ସହଜ । ସଦ୍‌ଗୁଣଯୁକ୍ତ ସତ୍ ପ୍ରବୃତ୍ତିମାନଙ୍କର ଲାଭ ଓ କ୍ରମବୃଦ୍ଧି, ଅପେକ୍ଷାକୃତ ବଡ଼ କଷ୍ଟସାଧ୍ୟ । ଏହା ପ୍ରତିପନ୍ନମାନ ହେଉଅଛି ଯେ ଏହି କାରଣରୁ ଆଜକାଲିର ଘୋର କଳିଦୋଷରେ ସବୁ ମନ୍ଦଗୁଣର ସବୁ ଉପାଦାନ ଉପକରଣଯାକ, ପଦାରେ ପଡ଼ି ମନ୍ଦର ଉନ୍ନତି ସାଧନ କରୁଅଛି; ପୁଣି ଦୁର୍ଭାଗ୍ୟବଶତଃ ଏହି ମନ୍ଦଗୁଣଗୁଡ଼ାକର ଉନ୍ନତି ମାନବୀୟ ଉନ୍ନତି ନାମକୁ ଧାରଣ କରିଅଛି । ଏହା ମନ୍ଦର ମନ୍ଦ, ଅତି ମନ୍ଦ । ଏବେ ଏ ସବୁ ଆଲୋଚନାରୁ ପୂର୍ବପ୍ରଦର୍ଶିତ ନିୟମାନୁସାରେ ସଦାଶ୍ରୟ ଗ୍ରହଣପୂର୍ବକ ସଦ୍‌ଗୁଣ ଓ ସତ୍ ପ୍ରବୃତ୍ତିଶାଳୀ ହେବା ବାଞ୍ଛନୀୟ; ଏହା ମଧ୍ୟ ରକ୍ଷାର ଉପାୟ ଅଟେ ।

ଆସୁରିକ ଅର୍ଥାତ୍ କାମ କ୍ରୋଧାଦି ଷଡ଼ରିପୁବର୍ଗ, ସେମାନଙ୍କ ସମଷ୍ଟିରୁ ଜାତ ହେବା ମିଥ୍ୟା, ପ୍ରବଞ୍ଚନା, କପଟ ଇତ୍ୟାଦି ମନ୍ଦଗୁଣମାନେ ଏବଂ ବିଳାସିତା, ସ୍ୱାର୍ଥପରତାଦି ଅସତ୍ ପ୍ରବୃତ୍ତିମାନେ ଏକତ୍ରରେ ମୂର୍ତ୍ତିମାନ ଶୟତାନ ବିଗ୍ରହାକାରରେ ସର୍ବତ୍ର ବିଚରଣ କରି ସଂସାରକୁ ତଥା ପ୍ରାଚୀନତମ ପବିତ୍ର ଧର୍ମ-ଜ୍ଞାନ-ପୀଠ ଭାରତକୁ ସୁଦ୍ଧା ପୈଶାଚିକ ତାଣ୍ଡବଲୀଳା କ୍ଷେତ୍ରରେ ପରିଣତ କରି ସାରିଲେଣି । ଏହିସବୁ ଅସତ୍ ପ୍ରବୃତ୍ତିମାନଙ୍କରୁ ଧନଲୋଭ କ୍ରମେ ବଢ଼ୁଅଛି । ଏହି ବୃଦ୍ଧି ପାପ ଏବଂ ଅଧର୍ମାଦିର ନାମାନ୍ତର ଗ୍ରହଣ କରି ବିନାଶକୁ ଶେଷ ଫଳରୂପେ ଗ୍ରହଣ କରୁଅଛି । ଏହା ଦେଖି ଦେଖି ଏବଂ କାର୍ଯ୍ୟରେ ପରିଣତ କରି କରି, ଅଙ୍ଗେ ଅଙ୍ଗେ ଭୋଗି ଭୋଗି କଳିଦୂତ ଶ୍ରେଣୀୟ ମନୁଷ୍ୟମାନେ କ୍ରମେ କ୍ରମେ ସେହି ବିନାଶ-କରାଳ-କାଳ-ମୁଖକୁ ଅତୀବ ଦ୍ରୁତ ଗତିରେ ଧାବମାନ ହେଉଅଛନ୍ତି । ଏହି ମୂଳ ଅନିଷ୍ଟର କାରଣ ଅତିରିକ୍ତ ଧନବୃଦ୍ଧି ଲାଳସାରୁ କୋଟି କୋଟି ପରିମାଣରେ ଅର୍ଥମାନ ଏବଂ କୋଟି କୋଟି ପ୍ରାଣୀର ଅନ୍ନଜଳ ସଂସ୍ଥାନ ବିନଷ୍ଟ କରି, ଏକ ଏକ ସ୍ଥାନରେ ରାକ୍ଷସ ପିଶାଚମାନଙ୍କ କର୍ତ୍ତୃତ୍ୱାଧୀନରେ ରାଶି ରାଶି ହୋଇ

ଜମା ହେଉଅଛି; ତାହା ଦେଖିଲେହିଁ ତଦ୍ଦ୍ୱାରା ପର ରାଜ୍ୟ, ପର ଧନ, ପର ଅନ୍ନ ଏବଂ ତତ୍ସଙ୍ଗେ ପରପ୍ରାଣ ପର୍ଯ୍ୟନ୍ତ ହରଣ କରିବାର ଦୁର୍ଦ୍ଦମନୀୟ ଦୁଷ୍ପ୍ରବୃତ୍ତି ବୃଦ୍ଧି ପାଉଅଛି । ଏହି ଦୁଷ୍ପ୍ରବୃତ୍ତି ସେହି ପାପଧନକୁ ବିଷାକ୍ତ ଗୋଳା, ଗୁଳି, ବାରୁଦ ଓ ନାନାବିଧ ପ୍ରାଣନାଶକ ଯନ୍ତ୍ରାଦିରେ ପରିଣତ କରୁଅଛି । ଏହି ପାପବୁଦ୍ଧି ଏବଂ ପାପପିପାସା ସମ୍ଭୂତ ଏହି ପାପଧନର ରୂପାନ୍ତରିତ ଗୋଳା ଗୁଳି ପ୍ରଭୃତିରେ ପାପସଂହାରକ ପରମେଶ୍ୱର କୋପାନଳ କାଳାଗ୍ନିରୂପେ, ସେହି କଳଦୂତ ପାପାଶୟ ଧନଲୋଭୀ ପିଶାଚମାନଙ୍କ ଦ୍ୱାରା ସଂସର୍ପିତ ହୋଇ ପ୍ରଚଣ୍ଡ-ପ୍ରଳୟ-ସାଧକାକାର ଧାରଣପୂର୍ବକ ସେହି ପାପଧନକୁ ତଦ୍ରୂପାନ୍ତରିତ ଗୋଳାଗୁଳି ସହିତ ସେହି ଲୋଭୀ ମାନବସମାଜକୁ ଏବଂ ତତ୍ସଂପର୍କୀୟ ଏବଂ ତଦ୍ଭାଗୀୟ ପକ୍ଷ ବିପକ୍ଷ ଦଳକୁ ଗୃହୁଁ ଗୃହୁଁ ଅଳ୍ପ ସମୟ ମଧ୍ୟରେ ଭସ୍ମାବଶେଷରେ ପରିଣତ କରୁଅଛି । ଏହି ଭସ୍ମର ମୂଲ୍ୟ କେତେ ? ଏହି ମୂଲ୍ୟହିଁ ସର୍ବଶେଷ ଫଳ ଅଟେ ।

ମନୁଷ୍ୟ ଦେଖୁଅଛି, ଏହି ଧନର ଅନ୍ତରିକ୍ତ ବୃଦ୍ଧିପାଇଁ ଏକ ଆଡ଼େ ନିଜର ଆତ୍ମାକୁ ନାନାବିଧ ଦୁର୍ଗ୍ଗ୍ରହ ଓ କୁକର୍ମଦ୍ୱାରା ଅପବିତ୍ର କରିବାକୁ ହେଲା, ଅଥଚ କୋଟି କୋଟି ପ୍ରାଣୀର ଅନ୍ନଜଳ ମାରିବାଦ୍ୱାରା ସେମାନଙ୍କ ପ୍ରାଣହାନିରୂପ ମହାପାପ ସଞ୍ଚୟ କରାଗଲା । ପୁଣି ଅନ୍ୟଆଡ଼େ ସମୁଦାୟ ଅର୍ଥ ସହିତ କୋଟି କୋଟି ପ୍ରାଣଯନ୍ତ୍ର ଭସ୍ମରେ ପରିଣତ ହେଲା । ଶେଷ ଫଳ ଭସ୍ମ ଭିନ୍ନ ଆଉ କିଛି ନୁହେଁ । ପୃଥିବୀ ତାହାର ଅବୟବ, ଦେଶ, ଗ୍ରାମ, ପ୍ରଦେଶ, ମହାଦେଶ ସହିତରେ କାଳ ସେହିପରି ରହିଅଛି । ଏହାକୁ ମୋହର ବୋଲି ଅଣ୍ଟିରେ ପୂରାଇବାକୁ ଜୀବାଣୁ କଳେବର ମାନବ ସଲୋଭ ଚେଷ୍ଟାକରି ଦେଖୁଅଛି ଭସ୍ମ ! ଅତଏବ ଲୋଭମୋହାଦି ଯେ ଆତ୍ମାର ଶତ୍ରୁ, ଏହାର ପରିଚୟ ଏହିଠାରେ ।

ତେବେ ଶତ୍ରୁ ସହିତ ସହଯୋଗ କରିବା ଅଧର୍ମ, ଅନ୍ୟାୟ, ଅକର୍ତ୍ତବ୍ୟ ଓ ପାପ ଏବଂ ଭସ୍ମ ପରିଣତି ଲାଭ ଭିନ୍ନ ଆଉ କିଛି ନୁହେଁ । ଶତ୍ରୁର ସଙ୍ଗୀ ସହକର୍ମୀ ଓ ସହଧର୍ମୀ ଇତ୍ୟାଦି ସମ୍ପର୍କୀୟ ଯାହା କିଛି, ସେହି ସମୁଦାୟ ସହିତ ଅସହଯୋଗ ବା ଅସମ୍ପର୍କ କରିବା ଏକାନ୍ତ ଧର୍ମ ଆଉ ସର୍ବାନ୍ତ କର୍ତ୍ତବ୍ୟ ଅଟେ । ଏହି ହେତୁ ଅନ୍ୟାୟ ଅସତ୍ୟାଦିକୁ ଆଉ ଟିକିଏ ଭଲ କରି ଚହ୍ଲାଇ ରଖିବା ଉଚିତ ।

ଆଜକାଲି ବଡ଼ ଆଶ୍ଚର୍ଯ୍ୟଜନକ, ଅତି ବଡ଼ ବୈପରୀତ୍ୟ ନିର୍ଲଜତା ସହିତ ମିଶି ମନୁଷ୍ୟ ସମାଜକୁ ହିଅଁ ଗଢ଼ା ମାଙ୍କଡ଼ ପରି ଏକ ଅପରୂପାକାରରେ ଧରି ମାରି ଗଢ଼ି ସାରିଲାଣି । ଲୋକମାନେ ସତ୍ୟ ଓ ନ୍ୟାୟ୍ୟାଦିର ସଂଜ୍ଞା ନ ଜାଣନ୍ତି ତାହା ନୁହେ, ମାତ୍ର ତାହା କଥାରେ ବା ପୋଥିରେ ରହିବାର ଜିନିଷ ବୋଲି ସ୍ଥିର କରି, ବ୍ୟବହାରରେ ତାହାର ନାମ ମନେ ପକାଇଲେ ଦାନା କନା ଗୁଡ଼ ଆଉ କଅଣ କିଛି ମିଳିପାରେ, ଅଥବା ବାଟ ଗୁଡ଼ ଲୁଚିକରି ବଣରେ ବୁଲିଲେ ଅବା ଚଳିପାରେ ବୋଲି ଧରି ସାରିଲେଣି । କଥାରେ ସତ୍ୟ ଓ ନ୍ୟାୟ୍ୟାଦିର ଦୋହାଇ ମାତ୍ର ଦେଲେ ଯଥେଷ୍ଟ ହେଲା ।

ମାତ୍ର କାର୍ଯ୍ୟରେ ତାହାର ସ୍ଥାନ ବୋକାର ବୋକରୁ ଭିତରେ ଶତଗଣ୍ଠି ପଡ଼ି ରହିଅଛି । ମାଲିମୋକଦ୍ଦମାରେ ବିଚାରର ସ୍ଥାନରେ ଉପକାର ପ୍ରତିକାର ପାଇବାକୁ ହେଲେ ବା ବ୍ୟବସାୟ ବ୍ୟବହାରାଦିରେ ଦୁଇପଇସା ମାରି ରଖି ନେବାକୁ ହେଲେ, ମିଛ, ଛନ୍ଦ, ପ୍ରବଞ୍ଚନାଦିର ସାହାଯ୍ୟ ବିନା ପରିତ୍ରାଣ ନାହିଁ । ପଇସା ଖର୍ଚ୍ଚ କରି ମିଛ ଶିଖିବାକୁ ଏବଂ ପଇସାକୁ ଉତ୍କୋଚ ଓ ଭେଟି ଇତ୍ୟାଦି ପାପନିର୍ଯ୍ୟାରେ ଉଡ଼ାଇ ମିଛକୁ ସତ ବୋଲି ଲେଖାଇ ନେଇ ସନନ୍ଦ ଥୋଇ ରଖିବାକୁ ଆଜିକାଲି ବାଧ୍ୟ ହେବାକୁ ହେଉଅଛି । ଏ ସ୍ଥଳେ ସତ୍ୟ ଓ ନ୍ୟାୟ କଥାରେ ରଖି କାର୍ଯ୍ୟରେ ତହିଁର ବିପରୀତ କରିବାକୁ କର୍ତ୍ତବ୍ୟ ହୋଇଅଛି । ସବୁ ପ୍ରକାରର ଶିକ୍ଷିତ, ଅଶିକ୍ଷିତ, ଗୃହୀ, ସନ୍ନ୍ୟାସୀ, ଧର୍ମୀ, ବିଧର୍ମୀ, ଆଡ଼ମ୍ବରୀ, ଅନାଡ଼ମ୍ବରୀମାନେ ଏହି ମାନ୍ତ ଭିତରେ ପକାଇ ସାରିଲେଣି । ଯେଉଁ କାର୍ଯ୍ୟର ସ୍ଥାନରେ ସତ୍ୟ, ନ୍ୟାୟ, ଧର୍ମର ସମ୍ପର୍କ ନାହିଁ, ତହିଁରେ ଆଜିକାଲି ସଂସାର ଏକବାରେ ଅଚଳ ହେବ । ଖାଲି ଧର୍ମଚିହ୍ନରକ୍ଷା ଉଦ୍ଦେଶ୍ୟରେ ଜନ୍ମ ଭିତରେ ଦୁଇ ଏକ ଥର ଧର୍ମ କି ନ୍ୟାୟ ବା ସତ୍ୟ ବୋଲି ତୁଣ୍ଡରେ ଧରିଲେ ଯଥେଷ୍ଟ ହେଲା । ଏହାର ଆଦର୍ଶ ସର୍ବୋଚ୍ଚ ସ୍ଥାନରୁ ମେଘ ବର୍ଷା ପାଣି ପରି ତଳ ଆଡ଼କୁ ବୋହି ଆସୁଅଛି । ତଳଦେଶ ବୁଡ଼, ସଡ଼ି, ପଚି ଯିବାକୁ ବାଧ୍ୟ ହେଉଅଛି । ଏହି ପଶ୍ଚିମା ମେଘ ଯେପରି ଜମାଟ ବାନ୍ଧିଅଛି, ଆଉ ସେହି ପଶ୍ଚିମା ବତାସ ଯେଡ଼େ ପ୍ରବଳ ଦେଖାଯାଉଅଛି, ଦକ୍ଷିଣା ବତାସ କେତେ ପରିମାଣରେ ବଢ଼ିଲେ ଯେ ତାହାର ଗତି ଫେରିବ, ଏହା ଅଳ୍ପ ବିଦ୍ୟାର ଅଜ୍ଞାତ ଓ ନ୍ୟାୟଶାସ୍ତ୍ର ମାର୍ଜିତ ବୁଦ୍ଧିର ଅଗମ୍ୟ ଅଟେ । ଏହିରୂପେ ସଂସାର, ସଂସାର ଯାତ୍ରା ବା ଲୌକିକ ବ୍ୟବହାର ସହିତ ଏକତ୍ରରେ ମିଥ୍ୟା ଓ ଅନ୍ୟାୟାଦି ଆଡ଼େ ଆଉ ଧର୍ମ ଓ ନ୍ୟାୟାଦି ଆଡ଼େ କଥାକୁ ମାତ୍ର ରହି ଦୁଇଭାଗରେ ବିଭକ୍ତ ହୋଇଅଛି । ଏ ବିଭାଗ ନୀତିରୂପେ ସ୍ଥାନାଧିକାର କରି କାର୍ଯ୍ୟକ୍ଷେତ୍ରକୁ କଳୁଷିତ କରି ସାରିଲାଣି । କାର୍ଯ୍ୟରେ ଅସତ୍ ଓ ଅନ୍ୟାୟ ବ୍ୟବହାର କରିବାକୁ ମନୁଷ୍ୟର ଅଭ୍ୟାସ ବଦ୍ଧମୂଳ ଓ ଦୃଢ଼ ହୋଇଗଲାଣି ।

ତେବେ ଆଉ ଉପାୟ କଣ ? ଉପାୟ ଏହି ଯେ 'ମାନିଲେ ଦେଅଁ ନ ମାନିଲେ ପଥର' । ମଦଖଟି ପାଖକୁ ଗଲେ ଯିନା ଦୁର୍ଗନ୍ଧ ଜଣାଯିବ, କିନ୍ତୁ ଦୂରରେ ରହିଲେ ? ଅତଏବ ମାନନୀୟ ଆତ୍ମା ! ଆପଣ ଜଡ଼ଭୌତିକବାଦସମ୍ମତ ଓ ପ୍ରଚଳିତ ଆଦର୍ଶ ଅନୁକରଣାଦିକୁ, ଜଡ଼ମୟ ଦୃଶ୍ୟଯୁକ୍ତ ଭୌତିକ ସମ୍ପଦାଦି ଓ ତନ୍ମୂଳକ ବିଳାସିତାଦିକୁ ପରିତ୍ୟାଗ ଓ ଅସହଯୋଗ କରି ସେହି ପାପ ଓ ପାପୀ, ସେହି ବ୍ୟବହାର ଓ ବ୍ୟବହାରୀ, ସେହି ଦୁର୍ନୀତି ଓ ଦୁର୍ନୈତିକକୁ ପ୍ରବଞ୍ଚନା, ମିଥ୍ୟା ଓ ଅସତ୍ୟାଦିମୂଳକ କାର୍ଯ୍ୟକାରଣାଦିକୁ ଉପରବର୍ଣ୍ଣିତ ସର୍ବପ୍ରକାର ଆତ୍ମଶତ୍ରୁରୂପକ ମନ୍ଦଗୁଣ ଓ ଦୁଷ୍ଟପ୍ରବୃତ୍ୟାଦିସମୂହକୁ ସମ୍ୟକ୍ ପ୍ରକାରେ ପରିବର୍ଜନ କରନ୍ତୁ । ଆଉ ମଧ୍ୟ ସମସ୍ତ ମନ୍ଦଗୁଣକୁ ମଦ୍ୟଜ୍ଞାନରେ ତ୍ୟାଗ କରି ସେହି ମନ୍ଦାଧାର ପାପକଳେବର ରୂପକ ମଦଘଡ଼ାକୁ ମଧ୍ୟ ତ୍ୟାଗ

କରନ୍ତୁ । ଏ ସମସ୍ତ ମନ୍ଦ ଓ ମନ୍ଦସଙ୍ଗୀର ସଙ୍ଗ ଓ ସଂପର୍କଯୁକ୍ତ ମନୁଷ୍ୟ ଓ ପଦାର୍ଥାଦିର ସମ୍ବନ୍ଧ ବିସ୍ମରଣ କରନ୍ତୁ । ଏହିରୂପେ ଆତ୍ମଶତ୍ରୁବର୍ଗଙ୍କୁ ସର୍ବଦେଶ ଓ ସମୂଳେ ଉଚ୍ଛେଦ କରି ନ ପାରିଲେ ଅସଙ୍ଗ ଶସ୍ତ୍ରକୁ କେବଳ ମୁଷ୍ଟିବଦ୍ଧ କରି ବ୍ୟବହାର କରିବାକୁ ବଦ୍ଧ-ପରିକର ହୁଅନ୍ତୁ । ଆଚାର, ବ୍ୟବହାର, କ୍ରିୟାଦିର ଶୁଦ୍ଧି, ମନଃଶୁଦ୍ଧି, ଦେହଶୁଦ୍ଧି, ଆତ୍ମଶୁଦ୍ଧି ସଂପାଦନାର୍ଥ ସମସ୍ତ ସଦ୍‌ଗୁଣ ଓ ସତ୍ପ୍ରବୃତ୍ତିମାନଙ୍କ ସାହାଯ୍ୟ ସର୍ବଦା ଯତ୍ନ ସହକାରେ ଗ୍ରହଣ କରନ୍ତୁ ।

## ଉପସଂହାର

ପୂର୍ବବର୍ଣ୍ଣିତ ସଦ୍‌ଗୁଣଯୁକ୍ତ ସତ୍‌ପ୍ରବୃତ୍ତି ଓ ଅସତ୍‌ଗୁଣଯୁକ୍ତ ଅସତ୍ ପ୍ରବୃତ୍ତିମାନଙ୍କ ସମ୍ବନ୍ଧରେ ଯାହା କୁହାଯାଇଅଛି, ତାହାର ସଂକ୍ଷିପ୍ତ ସାର ମର୍ମ ଏହାପରେ ଗ୍ରହଣ କରାଯାଉ । ଆଜି କଳିଯୁଗାବ୍ଦ ୫୦୨୫ ବର୍ଷର ଦିନରେ ସମସ୍ତ ମନୁଷ୍ୟ ସଂଖ୍ୟା ଅର୍ଦ୍ଧଶତାଧିକଶତ ଅର୍ଥାତ୍ ଦେଢ଼ଶତ କୋଟି ଅଟେ । ଏହି ଲୋକମାନଙ୍କ ସକାଶେ ସବୁ ଧର୍ମୀ-ଧର୍ମ ବିଚାର-ବ୍ୟବସ୍ଥାଦି ପ୍ରୟୋଜନ । ଏହି ଦେଢ଼ଶତ କୋଟି ପିଣ୍ଡ ସହିତ ବ୍ରହ୍ମାଣ୍ଡାତ୍ମକ ଏହି ବିରାଟ ଜଗଦାକାର ଶରୀର ବିରାଜମାନ ରହିଅଛି । ଏହି ସମୁଦାୟ ଦେଢ଼ଶତ କୋଟି ଲୋକ ପ୍ରତ୍ୟେକେ ଯଦି ପ୍ରତ୍ୟେକଙ୍କୁ ପଚାରି-ପଚାରି ହୁଅନ୍ତି କି ଭାଇ, ଆପଣ ଆପଣା ପିଣ୍ଡକୁ କେହି ଗଢ଼ିଥାଇଁ କି ? ଉତ୍ତର ହେବ 'ନା' । ସେ ସମ୍ବନ୍ଧେ ମୁଁ ପୂରା ଅଜ୍ଞ, ମୋତେ ତାହା କିଛି ଜଣାନାହିଁ । ଆଚ୍ଛା ଭାଇ, ଆଉ କିଏ କାହାକୁ ଏବଂ ଏ ସଂସାରକୁ କିଏ ଆମ ଭିତରୁ ଗଢ଼ିଅଛି କି ? ଉତ୍ତର ହେବ 'ନା', 'ନା', ନିଜ ଗଠନ ଅସମ୍ଭବ, ସେ କାହୁଁ ପରକୁ ଗଢ଼ିବ' ? ତେବେ ମୋତେ ବୁଝିବାକୁ ହେବ, ଆଉ ପ୍ରତ୍ୟେକଙ୍କୁ ଏବଂ ସମସ୍ତଙ୍କୁ ସେହିପରି ଜାଣିବାକୁ ହେବ ଯେ ଏକ ବିଚିତ୍ର ଅଘଟନ ଘଟନାପଟିୟସୀ-ନିପୁଣତା, ଯେଉଁ ମହିମାମୟ ଶକ୍ତିର ନିୟମରୁ ସମ୍ଭବ, ସେହି ଅକଥନୀୟ ଓ ଅଚିନ୍ତ୍ୟ ନିୟମର ଯେ ନିୟନ୍ତା, ସେହି ସର୍ବନିୟାମକ ମହାପୁରୁଷ ଏହି ସମୁଦାୟ ପିଣ୍ଡ-ବ୍ରହ୍ମାଣ୍ଡାତ୍ମକ-ମହାଚିତ୍ରର ମହାଚିତ୍ରକର ବୋଲି ସ୍ଥିର କରିବାକୁ ହେବ । ମନୁଷ୍ୟର କ୍ଷୁଧା, ପିପାସା, ବସ୍ତ୍ର ଓ ଗୃହାଦିର ଅଭାବ ମୋଚନ ପାଇଁ ପୃଥିବୀ ତତ୍ତ୍ୱରୁ ପୃଥିବୀ ନାନାବିଧ ରସମୟ ଭକ୍ଷ୍ୟାଦି ସହ, ଜଳତତ୍ତ୍ୱରୁ ଜଳ, ତେଜତତ୍ତ୍ୱରୁ ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନି, ବାୟୁତତ୍ତ୍ୱରୁ ପ୍ରାଣମୟ ବାୟୁ ଏବଂ ଶୂନ୍ୟତତ୍ତ୍ୱରୁ ଶବ୍ଦମୟ ଆକାଶାଦି ଅଖଣ୍ଡ ଦଣ୍ଡାୟମାନ ରହିଅଛି । ଏ ସମୁଦାୟ ସୃଷ୍ଟିସହ ସୃଷ୍ଟ ମାନବସମୂହ ଏକତ୍ରରେ କି ଅପୂର୍ବ ସୁନ୍ଦର ଦୃଶ୍ୟରେ ଦେଖାଯାଉଅଛନ୍ତି ! ଏହି ଦର୍ଶନରୁ ପ୍ରକୃତ ଜ୍ଞାନ, ଧର୍ମ ଓ କର୍ତ୍ତବ୍ୟାଦି ଶିକ୍ଷା କରାଯାଉଅଛି; ସେ କିପରି ଶିକ୍ଷା ? ହେଉ ସର୍ବନିୟନ୍ତା ମହାପୁରୁଷ କହୁଅଛନ୍ତି, ଏ ସମୁଦାୟ ସୃଷ୍ଟି ଓ ସୃଷ୍ଟ ପରମେଶ୍ୱରର ନିୟମାଧୀନ । ଏଥିରେ କାହାର ନିଜସ୍ୱ ଓ ପୈତୃକ ମଧ୍ୟ କିଛି ନାହିଁ । ଏହି ବିରାଟ ବିଶ୍ୱ ବ୍ରହ୍ମାଣ୍ଡ ପରମେଶ୍ୱରର ସ୍ୱତ୍ତ୍ୱ । ଏହାର

ଉପସ୍ୱତ୍ୱାଦିରେ ଭଗବତ୍ ସୃଷ୍ଟ ପ୍ରତ୍ୟେକ ମନୁଷ୍ୟ ସମାନ ଭାବରେ ସମଭାଗୀ ଏବଂ ସମଭୋଗୀ ଅଟନ୍ତି । ଏହା ଅବିଭକ୍ତ ସର୍ବସାଧାରଣ ଉପସ୍ୱତ୍ୱ ବିଶିଷ୍ଟ ଈଶ୍ୱରଦତ୍ତ ସମ୍ପତ୍ତି । କଥା ଏତିକି ଯେ, ଏହା ଉପଭୋଗ କରିବାକୁ ପ୍ରତ୍ୟେକରେ ନିୟମ ଗଢ଼ି ବସିଲେ କିଛି ହୋଇ ନ ପାରେ ; ଏଣୁକରି ପ୍ରତ୍ୟେକ ପରିବାରରେ, ପ୍ରତ୍ୟେକ ଗ୍ରାମ, ଦେଶ ଓ ପ୍ରଦେଶାଦିରେ କେନ୍ଦ୍ର କେନ୍ଦ୍ର ସର୍ବସାଧାରଣ ପ୍ରାଣଙ୍କାମି ମୁରବି ବା ଅଭିଭାବକ-ରୂପେ ସେହି ଈଶ୍ୱର ନିୟମାଧୀନକ୍ରମେ ଉପସ୍ଥିତ ଥିବା ସ୍ୱାଭାବିକ ।

ସେ ମୁରବି କିପରି ? ଯେ ଦୁଃଖୀ, ଶୋଷୀ ଓ ଭୋଗୀ ଦେଖିବା ମାତ୍ର ମନେ କରିବ, ଏମାନେ ମୋ ଅପେକ୍ଷା ଅଧିକ ପରିମାଣରେ ଦୁଃଖୀ, ଶୋଷୀ ବା ଭୋଗୀ ହେବାର ଦେଖିବା ମୋର ଅଧର୍ମ ଓ ଅନ୍ୟାୟ, ଅଥଚ ମୁରବି ପଦର ଲଘୁତାର ପରିଚୟକ ଅଟେ । ବିଶେଷରେ ଏହା ଈଶ୍ୱରାଜ୍ଞାଲଙ୍ଘନରୂପ ମହାପାପରେ ପରିଗଣିତ । କାରଣ ଈଶ୍ୱର ଦୟାର ଦାନ ସମସ୍ତଙ୍କ ପ୍ରତି ସମାନ । ମୁରବି ସେହି ଦୟାର ଆଦର୍ଶରେ କାର୍ଯ୍ୟ କରିବାକୁ ବାଧ୍ୟ । ତାହାର ସ୍ୱାର୍ଥାନ୍ଧତା ଗ୍ରହଣ କରିବାର ବିଶେଷତ୍ୱ କିଛି ନାହିଁ । ମୁରବି ସମସ୍ତଙ୍କୁ ନିଜଠାରୁ ସବୁ ବିଷୟରେ ନ୍ୟୂନଭାବାପନ୍ନ କରି ରଖିବା ଅଥବା ଦେଖିବା ଅଧର୍ମ, ଅନ୍ୟାୟ ବୋଲି ବୁଝି ଆପଣାକୁ ସମସ୍ତଙ୍କଠାରୁ ନ୍ୟୂନଭାବାପନ୍ନ କରି ରଖି, କାର୍ଯ୍ୟତଃ ବା ଫଳତଃ ନ୍ୟୂନ ହୋଇ ରହିଥିବା ସମୁଚିତ ଅଟେ । ମୁରବିର ଛତ୍ରାଧୀନ ସମସ୍ତଙ୍କର ମଧ୍ୟ ସେହିପରି ପରସ୍ପର ସମତା ରକ୍ଷା କରିବା କର୍ତ୍ତବ୍ୟ ଓ ନ୍ୟାୟସଙ୍ଗତ ଅଟେ । ଆଶ୍ଚର୍ଯ୍ୟର କଥା ଏହି ଯେ ଏ ସଂସାର ସ୍ୱତଃ ବ୍ୟକ୍ତିଗତ ପାର୍ଥକ୍ୟ ଏବଂ ସେହି ପାର୍ଥକ୍ୟାନୁଯାୟୀ ରୁଚିଗତ, ଭାବଗତ ଓ କର୍ମଗତ ପାର୍ଥକ୍ୟ ସର୍ଜନା କରୁଅଛି । ଏହି ପାର୍ଥକ୍ୟ ପ୍ରାକୃତିକ ବୈଷମ୍ୟରୁ ସମ୍ଭୂତ । ଏହି ବିଷମଭାବ ପ୍ରକୃତିର ସଂସାର ବୈଚିତ୍ର୍ୟ; ଏହି ବୈଚିତ୍ର୍ୟର ନାମାନ୍ତରହିଁ ସଂସାର । ତାହା ହୋଇ ନ ଥିଲେ ଏ ସଂସାର ସଂସାରରୂପେ ପ୍ରକୃତିର କ୍ରୀଡ଼ାମନ୍ଦିର ବୋଲି ଜଣା ପଡ଼ୁ ନ ଥାନ୍ତା ।

ପୁଣି ଏହି ବୈଷମ୍ୟ ପ୍ରାକୃତିକ ବସ୍ତୁରେ ଅର୍ଥାତ୍ ସଂସ୍କାର ଭାବରୁଚି ଏବଂ କର୍ମାଦିରେ ଓ ଭୋଗାଦିରେ ପରିଲକ୍ଷିତ ହୁଏ, ଆଉ ଆତ୍ମାରେ ନୁହେଁ । ଆତ୍ମା ସମଭାବାପନ୍ନ, ସର୍ବଘଟରେ ସମାନ, ତେବେ ଏହା ପ୍ରାକୃତିକ ବୈଷମ୍ୟ ଦର୍ଶନ କରି ତହିଁରେ ଭ୍ରାନ୍ତ ନ ହୋଇ ସେହି ଆତ୍ମଗତ ସମତା ରକ୍ଷା କରିବା ଆତ୍ମାପକ୍ଷରେ ଧର୍ମତଃ ଓ ଆତ୍ମତଃ କର୍ତ୍ତବ୍ୟ ଅଟେ । ଏହି ବୈଷମ୍ୟ ପ୍ରକୃତିର ପରୀକ୍ଷା । ମାୟିକଲୀଳା ଦର୍ଶନ ମାତ୍ର ଏହି ପରୀକ୍ଷାର ଉଦ୍ଦେଶ୍ୟ । ଏହି ଆତ୍ମଭାବ ଓ ପ୍ରକୃତିଗତ ବୈଷମ୍ୟ, ଏହି ଉଭୟ ସନ୍ଧିରେ ଆତ୍ମାର ସ୍ଥାନ । ସୁତରାଂ ଆତ୍ମା ଆତ୍ମଭାବେ ଆତ୍ମସ୍ଥ ରହି ପ୍ରାକୃତ ବୈଷମ୍ୟ ଦର୍ଶନ କରି ତହିଁରେ ହେୟ, ହ୍ରାସ ପ୍ରକାଶ କରଣାନନ୍ତର ସ୍ୱୟଂ ବିଷମଭାବାପନ୍ନ ହୋଇ ନ ଯିବା ଉକ୍ତ ପରୀକ୍ଷାର ଫଳ ସ୍ୱରୂପ ଅଟେ । ପରୀକ୍ଷୋତ୍ତୀର୍ଣ୍ଣ ଆତ୍ମାବସ୍ଥା ଆଉ

ସେହି ବୈଷମ୍ୟ ଦୃଶ୍ୟରେ ଭ୍ରମପଟଳ ବିମ୍ବଗ୍ରଧ ହୋଇ ଆତ୍ମା ସ୍ୱୟଂ ଆପଣାକୁ ଦେହମୟ-ଜ୍ଞାନ କରିବା ଆତ୍ମାପକ୍ଷରେ ସେହି ପରୀକ୍ଷାର ଅନୁତ୍ତୀର୍ଣ୍ଣ ଅବସ୍ଥା । ଏହି ଅନୁତ୍ତୀର୍ଣ୍ଣତାର ନାମାନ୍ତର ପଶୁତା ବା ପାଶବିକତା । ମାନବୀୟ ଆତ୍ମାର ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ-ହେବାହିଁ ମନୁଷ୍ୟତା ଆଉ ଆତ୍ମବିଶେଷତ୍ୱ ଅଟେ । ତାହା ନ ହେଲେ ହାତ ଯୋଡ଼ାକଲୁ ନେଇ ମନୁଷ୍ୟ ଚତୁଷ୍ପଦ ପଶୁ । ପଶୁମାନଙ୍କର ଏହି ବୈଷମ୍ୟକୁ ଅତିକ୍ରମ କରିବାର ବୁଦ୍ଧି, ଜ୍ଞାନ ଓ ବିବେକ ନ ଥିବାରୁ ସେହି ଜୀବ ପଶୁପଦବାଚ୍ୟ ଅଟେ ।

ତେବେ ମାନବୀୟ ଆତ୍ମାର ପ୍ରକୃତି ବର୍ଣ୍ଣନାନୁଯାୟୀ ଜ୍ଞାନ, ଧର୍ମ ଓ ବୈରାଗ୍ୟାଦି ଆଶ୍ରୟ କରିବା ସ୍ୱଧର୍ମ । ତହିଁର ଅନ୍ୟଥା ବିଧର୍ମ ବା ପାଶବ ଧର୍ମ ଅଟେ । ମନୁଷ୍ୟ ପୂର୍ବୋକ୍ତ ପ୍ରକୃତିସୃଷ୍ଟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନ ପାରିବା କାରଣ ପୂର୍ବୋକ୍ତ ସଦ୍‌ଗୁଣାବଳୀ ସହ ସତ୍‌ପ୍ରବୃତ୍ତ୍ୟାଦିର ଅଭାବ, ଆଉ ଅସତ୍‌ଗୁଣ ଓ ଅସତ୍ ପ୍ରବୃତ୍ତ୍ୟାଦିର ସଙ୍ଗ ବା ସହଯୋଗ । ସୁତରାଂ ଉକ୍ତ ଅସତ୍ ଗୁଣାବଳୀ ଓ ଅସତ୍ ପ୍ରବୃତ୍ତ୍ୟାଦି ତ୍ୟାଜ୍ୟ ଅଟେ । ଯଦି ସେହି ଅସତ୍ ଗୁଣ ଅଭ୍ୟାସ ବଶରୁ ମନୁଷ୍ୟ କହେ, ସେ ଅସତ୍ ଉପାସନା ଦ୍ୱାରା ଧନରେ, ସୁଖ ସମ୍ଭୋଗ ବିଳାସିତାଦିରେ ବଡ଼ ହୋଇଅଛି, ଏହା ଗୁରୁତ୍ୱ କାହିଁକି ? ମାତ୍ର ତାହାର ଦେଖିବା ଓ ଭାବିବା ଉଚିତ ଯେ ସେ ବେଶୀ ଧନ କାହୁଁ ପାଇଲା ? ତାହାର ମୂଳରେ ପରପ୍ରତାରଣା ଓ ଆତ୍ମବୈଷମ୍ୟ ରହିଅଛି । ଯେତେବେଳେ ଘରର କର୍ତ୍ତା ଦେଖିବ ଗୃହୀଲୋକ ଟୋକାଟି ଉଦାସ ଭାବାପନ୍ନ ନିରୀହ ଗୃହକଙ୍କର ଅନ୍ନ, ଜଳ ମାରି ନିଜେ ଭ୍ରମବଶରେ ପଡ଼ି ବଡ଼ ହେବାପାଇଁ ସବୁ ସାଧାରଣ ଭୋଗ୍ୟ ସମ୍ପତ୍ତିକୁ ତାହାର ନିଜ କର୍ତ୍ତୃତ୍ୱାଧୀନରେ ରଖିଅଛି, ଯେତେବେଳେ କର୍ତ୍ତା ତାକୁ ପରସ୍ୱାପହାରୀ, ଧର୍ମ-ନିୟମ ଲଙ୍ଘନକାରୀ, ଦୋଷୀ ବୋଲି ସାବ୍ୟସ୍ତ କରି ଦୋଷୀକୁ ସମୁଚିତ ଦଣ୍ଡ ଦେଇ ଅର୍ଥଗୁଡ଼ିକୁ ଅଭାବ ଥିବା ଆଡ଼େ ନେଇ ବଣ୍ଟନ କରିଦେବ । ଏହି ଦିନ ଅତି ନିକଟ ହେଲାଣି । ଜଡ଼ାକାର ପିଣ୍ଡ 'ମୁଁ' କର୍ତ୍ତା ବୋଲି ଆପଣାକୁ ଠିକ୍ କରି ବସି ଈଶ୍ୱରାଧିକାରରେ ଆସ୍ଥାନ ରଖି ନିଜେ ସର୍ବାଧିକାରୀ ମହାରାଜ ହୋଇଅଛି । ଏହାର ପ୍ରାୟଶ୍ଚିତ୍ତ ଏହିଠାରେ ହେବ । ବର୍ତ୍ତମାନ ସମସ୍ତ ବିପରୀତାକାରିତ ବୈଷମ୍ୟର ଲୀଳାରେ ପରିଣତ । ଅସଦ୍‌ଗୁଣଯୁକ୍ତ ଅସତ୍ ପ୍ରବୃତ୍ତିମାନଙ୍କର ସହଯୋଗ ଏବଂ ସଦ୍‌ଗୁଣ ଓ ସତ୍ ପ୍ରବୃତ୍ତ୍ୟାଦିର ବିସ୍ମରଣ ଓ ବିୟୋଗ ଏହି ବିପରୀତାତ୍ମକ ବୈଷମ୍ୟର ହେତୁ ଅଟେ । ଏବେ ଏହି ଅସତ୍ ଗୁଣାଦିର ସମ୍ପର୍କ ଆସ୍ତେ ଆସ୍ତେ ସଦ୍‌ଗୁଣ ଅଭ୍ୟାସ କରିବା ଦ୍ୱାରା ତୁଟାଇ ଦେଇ ଆତ୍ମଶୁଦ୍ଧି ସମ୍ପାଦନ କରିବା ଏକାନ୍ତ କର୍ତ୍ତବ୍ୟ ଅଟେ । ଏହି କର୍ତ୍ତବ୍ୟ ବାଣୀ କହିବାକୁ ଗଲେ ହେଉଣିତ କୋଟି ମନୁଷ୍ୟ ସମସ୍ତେ ବୁଝି ସାରିଲେଣି । ସେହି ଦୈବୀ ନିୟମ, ହୃଦୟରେ ସମସ୍ତଙ୍କର ଏହି କର୍ତ୍ତବ୍ୟ-ଜ୍ଞାନ ଚେତାଇ ଦେଲାଣି । କାର୍ଯ୍ୟରେ ଅନେକଆଡ଼େ କହିବାକୁ ଗଲେ ସବୁଆଡ଼େ ଏହି ଚେତନାର ଲକ୍ଷଣ ଦେଖା ଗଲାଣି । ଅଳ୍ପସଂଖ୍ୟକ ପରସ୍ୱାପହାରୀ ଏବଂ ପ୍ରକୃତିଦତ୍ତ ସୀମା ଓ ପରମେଶ୍ୱର ଆଜ୍ଞା-

ଲଙ୍ଘନକାରୀ, ସ୍ୱେଚ୍ଛାଗ୍ରସ୍ତ ଭ୍ରାନ୍ତ ପୂର୍ବାଭ୍ୟାସସିଦ୍ଧ ମନ୍ଦଗୁଣାଦିକୁ ପରିତ୍ୟାଗ ନ କରିବାରୁ ପ୍ରାକୃତିକ ନିୟମାଧୀନ-ମୃତ୍ୟୁ ସେମାନଙ୍କ ମସ୍ତକକୁ କମ୍ପାଇ ଦେଲାଣି । ତେବେ ସୁଦ୍ଧା ସେମାନେ ଚେତନାନୁଯାୟୀ ଯଥାର୍ଥ କର୍ତ୍ତବ୍ୟ ପଥରେ ଚାଲିବାକୁ ଅସ୍ୱୀକାର କରୁଅଛନ୍ତି । ଏହା ମାରାତ୍ମକ ପରିଣାମର ଉପସ୍ଥିତ ଲକ୍ଷଣ ଭିନ୍ନ ଆଉ କିଛି ନୁହେ । ଏବେ ପୂର୍ବଲିଖିତ ସଦ୍‌ଗୁଣାଧୀନ ସତ୍‌ପ୍ରବୃତ୍ତି ମାର୍ଗରେ ବିଚରଣ କରିବା ସର୍ବତୋଭାବେ ବିଧେୟ ।

ପରିଶେଷରେ ଶେଷ ବକ୍ତବ୍ୟ ଏହି ଯେ ସମସ୍ତ ସଦ୍‌ଗୁଣ ଓ ଅସତ୍ ଗୁଣମାନେ ସବୁବେଳେ ଏକାଧାରରେ ଅନ୍ତଃକରଣ କ୍ଷେତ୍ରରେ ରହିଅଛନ୍ତି । ଯେପରି ପୃଥିବୀ ଆଉ ସୂର୍ଯ୍ୟ କେତେବେଳେ ହେଲେ ଅସମ୍ବନ୍ଧ ନୁହନ୍ତି, ମାତ୍ର ସୃଷ୍ଟିସଂସ୍ଥାନର ପ୍ରକାର ବିଶେଷରୁ ସେହି ସର୍ବକାଳସ୍ଥାୟୀ ସୂର୍ଯ୍ୟାଲୋକ ପୃଥିବୀର ଏକଆଡ଼କୁ ଆଲୋକମୟ କରିଥିବା ବେଳେ ତାହାର ବିପରୀତ ଦିଗ ଅନ୍ଧକାରାଚ୍ଛନ୍ନ ଥାଏ, ସେହିପରି ଆତ୍ମଜ୍ଞାନାଲୋକ-ବିଶିଷ୍ଟ ଆତ୍ମା ଆଉ ଅନ୍ତଃକରଣ କ୍ଷେତ୍ର କୌଣସି କ୍ଷଣରେ ଅସମ୍ବନ୍ଧ ନୁହନ୍ତି । ମାତ୍ର ଜ୍ଞାନାଲୋକର ଉଦୟର ଅର୍ଥ ତାହାର ସ୍ଫୁରଣ । ଜ୍ଞାନଦ୍ୱାରା ଯେତେବେଳେ ଯାହା ସ୍ଫୁରଣ କରାଯାଏ, ସେତିକି ବେଳରେ ସେହି ବସ୍ତୁର ବା ବିଷୟର ବିକାଶ ବୋଲି ଧରାଯାଏ । ଆଉ ଅନ୍ୟ ବସ୍ତୁ ବା ବିଷୟ ଉପସ୍ଥିତ ହେଲେ ସୁଦ୍ଧା ତାହା ଅନୁଦିତ ବା ଅପ୍ରକାଶିତ ଥିଲାପରି ରହିଥାଏ; ଆଉ ପ୍ରଜ୍ଞାପ୍ୟମାନ ହୋଇପାରେ ନାହିଁ । ଏ ସ୍ଥଳରେ ପାର୍ଥକ୍ୟ ଏହି ଯେ ଜ୍ଞାନାଲୋକ ଅସୀମ, ମାତ୍ର ସୂର୍ଯ୍ୟାଲୋକ ସେପରି ନୁହେ । ସୂର୍ଯ୍ୟାଲୋକ ଆବରଣ ଭେଦ କରି ସ୍ୱୟଂ ଆବରଣାବୃତ ବସ୍ତୁକୁ ପ୍ରକାଶ କରିବାକୁ ଅକ୍ଷମ । ଆଉ ଆତ୍ମ-ଜ୍ଞାନାଲୋକ ମୁକ୍ତଭାବରେ ଯାହା କିଛି ସବୁକୁ ସ୍ଫୁରଣ କଲାମାତ୍ରେ ତାହା ପ୍ରକାଶ କରିବାକୁ ସମ୍ପୂର୍ଣ୍ଣ କ୍ଷମ ଅଟେ । ବିସ୍ମରଣାତ୍ମକ ଅଜ୍ଞାନ ମାତ୍ର ଜ୍ଞାନାଲୋକ ପକ୍ଷରେ ଆବରଣ ସ୍ୱରୂପ ଅଟେ । ମାତ୍ର ସ୍ଫୁରଣ ମାତ୍ରେ ଯାହା ସ୍ଫୁଟ ହେଲା ତାହା ପ୍ରକାଶିତ ହେଲା ବା ତାହାର ବିକାଶ ସାଧିତ ହେଲା । ଅଥଚ ଏତଦ୍ରୂପ ସ୍ଫୁରଣ ପକ୍ଷରେ ଆତ୍ମା ସ୍ୱାଧୀନ ଏବଂ ମୁକ୍ତ । ସୁତରାଂ ଅର୍ଥତଃ ଆତ୍ମା ଆଚରଣରହିତ ଏବଂ ନିଜର ଇଚ୍ଛାବଶରେ ଓ ଲୀଳାଛଳରେ ସେ କଦାଚିତ୍ ଆବରଣଯୁକ୍ତ ହୁଅନ୍ତି । ପୁଣି ସର୍ବଦା ଆବରଣମୁକ୍ତ ଥାଆନ୍ତି । ଇଚ୍ଛାବିହାରର ପରିଚୟ ଏହିଠାରେ ।

ଏବେ ଆତ୍ମା ସ୍ୱୀୟ ଆତ୍ମଜ୍ଞାନାଲୋକ ଦ୍ୱାରା ଏକାଧାର ସ୍ୱରୂପ ଏକ ଅନ୍ତଃକରଣ କ୍ଷେତ୍ର ସ୍ୱରୂପ ସ୍ଥିତ ପୂର୍ବବର୍ଣ୍ଣିତ ସମସ୍ତ ସତ୍ତ୍ୱଗୁଣାତ୍ମକ ସଦ୍‌ବୃତ୍ତି ଏବଂ ରାଜସତାମସାତ୍ମକ ଅସତ୍ ପ୍ରବୃତ୍ତିମାନଙ୍କୁ ଏକକାଳରେ ଯୁଗପତ୍ ଦର୍ଶନ କରନ୍ତୁ । ଆଉ ସମସ୍ତଙ୍କୁ ଚିହ୍ନି ଚିହ୍ନି ସେମାନଙ୍କର ଲକ୍ଷଣ, ଗୁଣ, ଧର୍ମ ଏବଂ ସ୍ୱଭାବ ଓ କ୍ରିୟାଦିକୁ ନିରୂପଣ କରନ୍ତୁ । ଏହିରୂପେ ଧୀରସ୍ଥିରଭାବେ ଅଭ୍ୟାସ କରିବାର ନାମ ଜ୍ଞାନାଭ୍ୟାସ ଏବଂ ଏହାହିଁ ଜ୍ଞାନାନୁଶୀଳନ ଓ ମହା ସାଧନା ଅଟେ । ଗୋଟିଏ ସ୍ଥାନରେ ଗୋଡ଼, ଗୋବର,

ବାଲିଗେରେଡ଼ା, କଉଡ଼ି, ଅଧଲି, ପଇସା, ଟଙ୍କା, ମୋହର, ମଣି, ମୁକ୍ତା, ହୀରକାଦି ସବୁପ୍ରକାର ପଦାର୍ଥ ପଡ଼ିଅଛି ବୋଲି ମନେ କରିପାରି । ସେ ସମସ୍ତଙ୍କୁ ଏକାବେଳକରେ ଦେଖି ଏବଂ ସମସ୍ତଙ୍କର ଗୁଣ, ଲକ୍ଷଣ ଏବଂ ମୂଲ୍ୟ ଓ ଉପକାରିତାଦି ନିରୂପଣ କରିପାରି । ତେବେ କଅଣ କଅଣ ଗ୍ରାହ୍ୟ ଆଉ ଆଦରଣୀୟ ଏବଂ କଏ କଏ ହେୟ ଓ ଅନାଦୃତ, ସେହିଠାରେ ଉପଲବ୍ଧି ହେବ । ଅତଏବ ଏଥିରୁ ସ୍ପଷ୍ଟ ବୁଝାଗଲା ଅନ୍ତଃକରଣର ହିଙ୍ଗାପୂତନ ମଧ୍ୟରେ ସଦ୍‌ଗୁଣମାନେ ରତ୍ନ ପରି, ଆଉ ଅସଦ୍‌ଗୁଣମାନେ ଗୋଡ଼ି, ଗୋବର ପରି ପଡ଼ି ରହିଅଛନ୍ତି । ତେବେ ସତ୍‌ର ଗ୍ରହଣ, ରକ୍ଷଣ ଏବଂ ସହଯୋଗ ଏବଂ ଅସତ୍‌ଗୁଣ ଓ ଅସତ୍ ପ୍ରବୃତ୍ତ୍ୟାଦି, ଅସତ୍‌ଭାବ ଓ ଅସତ୍‌କ୍ରିୟାଦି ଅଥଚ ଏତଦ୍ରୂପ ଅସତ୍ ଲୋକ ଓ ତତ୍ପ୍ରିୟ ଅସତ୍ ନିୟମାଦି ଅର୍ଥାତ୍ ସବୁପ୍ରକାର ସମସ୍ତ ଅସତ୍ ସମାଦିକୁ ସୁଦ୍ଧା ତ୍ୟାଗ, ହେୟ, ଘୃଣା ଓ ଅସହଯୋଗ କରିବା ଆତ୍ମତଃ କର୍ତ୍ତବ୍ୟ ଅଟେ । ଦେଖାଗଲା, ସମୂହ ବା ସମ୍ୟକ୍ ଦର୍ଶନ ଏହି ଆତ୍ମା କର୍ତ୍ତବ୍ୟାବଧାରଣର ମୂଳଭିତ୍ତି ସ୍ୱରୂପ ଅର୍ଥାତ୍ ମୁଗ୍ଧଭାବରେ ଗୋଟିଏ ପ୍ରବୃତ୍ତିର ବଶ୍ୟତା ସ୍ୱୀକାର କଲେ ତାହା ତମାନ୍ଧକୂପ ପତନ ଓ ନିମଜ୍ଜନର ନିଦାନ ସ୍ୱରୂପ ଅଟେ ।

ଏତଦ୍ରୂପ ସମସ୍ତ ସତ୍ ଓ ଅସତ୍ ଗୁଣମାନଙ୍କୁ ଏକାବେଳକେ ଦର୍ଶନ କରି ସତ୍ ସହିତ ଯୋଗ ଏବଂ ଅସତ୍ ସହିତ ଅସହଯୋଗ କରିବା କର୍ତ୍ତବ୍ୟ ବୋଲି ଯାହା ବୁଝାଗଲା ଏହା ପ୍ରଥମ ସାଧନା । ଦ୍ୱିତୀୟ ସାଧନା ଏହି ଯେ ସମସ୍ତ ସଦ୍‌ଗୁଣବୃତ୍ତି ଓ ଅସତ୍‌ଗୁଣ ବୃତ୍ତ୍ୟାଦିକୁ ଅନ୍ତଃକରଣ କ୍ଷେତ୍ରରେ ଏକାବେଳକେ ଦେଖି ପ୍ରତ୍ୟେକ ଅସଦ୍‌ଗୁଣ, ଗୋଟିକୁ ତହିଁର ଠିକ୍ ବିପରୀତ ସଦ୍‌ଗୁଣ ବୃତ୍ତିଦ୍ୱାରା ଗୋଟି ଗୋଟି କରି ଜୟ କରିବାକୁ ହେବ । ଏହିରୂପେ ଅନ୍ତଃକରଣରୂପ ଯୁଦ୍ଧକ୍ଷେତ୍ରରେ ଆଧ୍ୟାତ୍ମିକ ସମର ଆରମ୍ଭ କରି ଆତ୍ମା ପ୍ରତ୍ୟେକ ମନ୍ଦଗୁଣକୁ ତହିଁରେ ବିପରୀତ ସଦ୍‌ଗୁଣ ଦ୍ୱାରା ଅର୍ଥାତ୍ ସମସ୍ତ ରାଜସ ତାମସାତ୍ମକ ମନ୍ଦ ପ୍ରବୃତ୍ତିମାନଙ୍କୁ ଶୁଦ୍ଧ ସତ୍ତ୍ୱାତ୍ମକ ସଦ୍‌ଗୁଣଯୁକ୍ତ ସତ୍‌ପ୍ରବୃତ୍ତିଦ୍ୱାରା ପରାଜୟ କରଣାନନ୍ତର ମନ୍ଦ ସ୍ଥାନରେ ସତ୍‌ର ଅଧିକାର ସ୍ଥାପନ କରାଇ ସର୍ବାନ୍ତଃକରଣକୁ ସନ୍ନ୍ୟସ୍ତ କରାଇବାକୁ ହେବ । ଏତଦ୍ରୂପ ଯୁଦ୍ଧ ଜୟ କରିବାକୁ ହେଲେ ତୃତୀୟ ସାଧନା ଆବଶ୍ୟକ । ତୃତୀୟ ସାଧନା ଏହି ଯେ ମୋଟରେ କହିବାକୁ ଗଲେ ବାହ୍ୟାନ୍ତର ଇନ୍ଦ୍ରିୟମାନଙ୍କର ସଂଯମ ଓ ଦମନ ଏବଂ ଏତଦ୍ୱାରା ଅନ୍ତଃଶୁଦ୍ଧି ଏବଂ ବାହ୍ୟ ଶୁଦ୍ଧି ସଂପାଦନ ଆବଶ୍ୟକ । ଏହି ଶୁଦ୍ଧି ସଂପାଦନ କରିବାକୁ ଗଲେ ଯାହା ଆବଶ୍ୟକ ତାହା ଚତୁର୍ଥ ସାଧନ । ଚତୁର୍ଥ ସାଧନରେ ଦୈହିକ ଅର୍ଥାତ୍ ରାଜସ ତାମସାତ୍ମକ କର୍ମ, ଭୋଗ, ସଙ୍ଗ, ବ୍ୟବହାର, ଖାଦ୍ୟ ପେୟାଦି ଏବଂ ଏତତ୍ ସମ୍ବନ୍ଧୀୟ ରାଜସ ତାମସାତ୍ମକ ଆଦର୍ଶ ଅନୁକରଣ ଓ ଅନୁବର୍ତ୍ତନାଦି ତ୍ୟାଗ କରିବାକୁ ହେବ । ନ ହେଲେ ଅଗତ୍ୟା ସ୍ୱାଧୀନ ସମ୍ମତି ବିନା ସଂସାରର କର୍ମ-ଚକ୍ରାବର୍ତ୍ତନ ଦ୍ୱାରା ଅନାୟତ୍ତ ଭାବେ

ତଦ୍ରୂପ କୌଣସି ରଜସ-ତାମସାତ୍ମକ କର୍ମ ବା ଭୋଗାଦି ବା ସଙ୍ଗାଦି କରିବାକୁ ବାଧ୍ୟବାଧକତା ଥିଲେ ତାହା ନିର୍ମୋହ ଓ ଆନ୍ତରିକ ବିରତି ସହିତ କରିବାକୁ ହେବ । ଏତଦ୍ଦ୍ୱାରା ଦୈହିକ ଶୁଦ୍ଧି ସମ୍ପାଦିତ ହେବ । ଏହି ସାଧନା ଚତୁଷ୍ଟୟ ଆୟତ୍ତ କଲେ ମନୁଷ୍ୟ ପକ୍ଷରେ ଏହି ଭୌତିକ ସଂସାର ଆଧ୍ୟାତ୍ମିକ କ୍ଷେତ୍ରରେ ପରିଣତ ହୋଇଯିବ ।

ଏ ସାଧନା ଚତୁଷ୍ଟୟ ପରସ୍ପର ସାପେକ୍ଷ । ଏହାର ସାଧନରେ ଅନ୍ୟମାନଙ୍କର ସାଧିତ ହେବାର ମାର୍ଗ ପରିଷ୍କାର ହୋଇ ଆସେ, ଆଉ ଏତଦ୍ଦ୍ୱାରା ମନୁଷ୍ୟ ଯାହା ହୋଇଯାଏ, ଏବଂ ଯେପରି ଶାନ୍ତି ଓ ପ୍ରେମାଦି ଅନୁଭବ କରେ, ତାହା ସେହି କେବଳ ଉପଲବ୍ଧି କରେ । ଏହାକୁ କଥାରେ କୁହାଯାଇ ନ ପାରେ ବା ଅନ୍ୟ କେହି ବୁଝି ପାରେ ନାହିଁ । ଦୈହିକ ଶୁଦ୍ଧି ସମ୍ବନ୍ଧରେ ଆଉ ଏକ ପ୍ରକାର କର୍ମ ଉଲ୍ଲେଖଯୋଗ୍ୟ । ଯହିଁରେ ରଜସ ତାମସର ସମ୍ପର୍କ ଥିଲେ ମଧ୍ୟ ତାହା ଶୁଦ୍ଧିକର ଅଟେ । ସଂସାରସ୍ଥ ପ୍ରାଣୀବର୍ଗର ଉପକାର ସାଧନ ଓ ତତ୍ପ୍ରତି ଦୟାର ନିଦର୍ଶନ ଓ ଆଦର୍ଶ ସ୍ୱରୂପ ଏହି ଈଶ୍ୱର ନିର୍ମିତ ପିଣ୍ଡବ୍ରହ୍ମାଣ୍ଡାତ୍ମକ ବିଶ୍ୱଯନ୍ତ୍ରର କୌଶଳ-ପୂର୍ଣ୍ଣ ଦୃଶ୍ୟରୁ ପରୋପକାର ଏକ ଅଦ୍ୱିତୀୟ ମହା ପବିତ୍ରବ୍ରତ ଅଥଚ ଈଶ୍ୱରାନୁମୋଦିତ ବୋଲି ଶିକ୍ଷା କରି ସେହି ପରମପୁରୁଷଙ୍କ ଅନୁଷ୍ଠିତ ପରୋପକାର ସାଧନ ଆଦର୍ଶାନୁସାରେ ଓ ତଦୀୟ ଅନୁମୋଦନ ଓ ଇଚ୍ଛାନୁଯାୟୀ ସେହି ପରୋପକାର ଅର୍ଥାତ୍ ମାନବ ସାଧାରଣର ଭୋଗ ଏବଂ ଜ୍ଞାନଲାଭ ସିଦ୍ଧି ଲକ୍ଷ୍ୟରେ କର୍ତ୍ତୃତ୍ୱାଭିମାନଶୂନ୍ୟ ହୋଇ ଈଶ୍ୱରାଜ୍ଞା ପାଳନ ଉଦ୍ଦେଶ୍ୟରେ ଯେଉଁ କର୍ମ ଅନୁଷ୍ଠାନ କରାଯାଏ, ତାହା ରଜସ ତାମସାତ୍ମକ ହେଉ ବା ମତାନ୍ତରରେ ଅନ୍ୟ ଯେ କୌଣସି ପ୍ରକାରର ହେଲେ ସୁଦ୍ଧା ତାହାକୁ ବିଶୁଦ୍ଧ ଓ ଦୋଷରହିତ କର୍ମରେ ଧରି-ନେବାକୁ ହେବ । ସୃଷ୍ଟିପାଳନ ଉଦ୍ଦେଶ୍ୟରେ ବଡ଼ ଗ୍ରୀଷ୍ମ, ତୋଫାନ ବା ଝଡ଼ ବର୍ଷା-ଦିରେ କେତେକ ପ୍ରାଣୀର ପ୍ରାଣକଷ୍ଟ ବା ବିନଷ୍ଟ ହେଲେ ସୁଦ୍ଧା; ତାହା ଯେପରି ସାଧାରଣତଃ ଉପକାର ଅର୍ଥରେ ସଂଘଟିତ ହୋଇଥାଏ, ସେହିପରି ସାଧାରଣ ଉପକାର ଓ ସାଧାରଣ ଭୋଗ ଏବଂ ଜ୍ଞାନସିଦ୍ଧିଲାଭ ଉଦ୍ଦେଶ୍ୟରେ ଅନୁଷ୍ଠିତ କର୍ମଦ୍ୱାରା ଯାହାର ଯାହା ହେଉ ପଛକେ ସେହି କର୍ମ ଶୁଦ୍ଧକର ଅଟେ । ଏହିଭଳି ଶୁଦ୍ଧକର-କର୍ମ ସାଧିତ ହେବ ବୋଲି ମହର୍ଷିପ୍ରବର ମହାତ୍ମା ଦଧୀଚୀ ଇଚ୍ଛାପୂର୍ବକ ନିଜର ମସ୍ତକକୁ ଦେହରୁ ଅଲଗା କରି କାଢ଼ି ଦେଇଥିଲେ । ଭଗବାନ ହରି ଶ୍ରୀକୃଷ୍ଣଚନ୍ଦ୍ର ନିଜର ଜ୍ୟେଷ୍ଠପୁତ୍ର 'ପ୍ରଦ୍ୟୁମ୍ନ'କୁ ଚକ୍ରଦ୍ୱାରା ଛେଦନ କରିଥିଲେ ।

ଉପରୋକ୍ତ ସତ୍ ସାଧନାଦିଦ୍ୱାରା ବିଶୁଦ୍ଧାନ୍ତଃକରଣ ହୋଇ ବିଶୁଦ୍ଧ କର୍ମାଦିର ଅନୁଷ୍ଠାନକାରୀ ଦେବୋପମ ମହାତ୍ମାମାନେ ସଂସାରରେ ମୁରବି, ତତ୍ତ୍ୱାବଧାରକ, ଜନ-ନାୟକ, ସାଧାରଣ ନେତା, ବ୍ୟବସ୍ଥାପକ, ବିଚାରକ କିମ୍ବା ଯେ କୌଣସି ପ୍ରକାରର କର୍ତ୍ତାମହାଶୟ ହେବା ଈଶ୍ୱରାନୁମୋଦିତ ଏବଂ ବାଞ୍ଛନୀୟ ଅଟେ । ଏହି ସବୁ ଉଚ୍ଚତମ

ଯଦ୍ୟପି ଏହିପରି ମହାତ୍ମାମାନଙ୍କର ପଦଧୂଳିକୁ ପଦକରୂପେ ଶିରୋଧାର୍ଯ୍ୟ କରି ପବିତ୍ର ହେବାକୁ ସେହି ମହାତ୍ମାମାନଙ୍କୁ ସବିନୟ ନିମନ୍ତ୍ରଣ କରନ୍ତୁ । ସଂସାର ମଧ୍ୟ ସସମ୍ଭ୍ରମ ସହିତ ବରଣ କରେ । ଆଜିକାଲିର ହର୍ତ୍ତାକର୍ତ୍ତା ବିଧାତାମାନଙ୍କ ଆଦର୍ଶପରି ଗୋଡ଼ ଧୂଆଇ ଚଡ଼ାଦହି ଖାଇଲାଭଳି ବ୍ୟବସ୍ଥା ବଡ଼ ଅସୁନ୍ଦର ଅଟେ । ଅସୁନ୍ଦର ବିନା ତାଙ୍କ ପକ୍ଷରେ, ସଂସାରପକ୍ଷରେ ମାରାତ୍ମକ ଅଟେ । ଗୋଟିଏ ଉଚ୍ଚପଦ ଲାଭ କରିବାକୁ ବର୍ତ୍ତମାନ କେତେ ଅର୍ଥବ୍ୟୟ, କେତେ ମାନବ୍ୟୟ ଏବଂ କେତେ କେତେ ବୁଦ୍ଧି, ବିଦ୍ୟା, ଛଳ, ବଳ, କୌଶଳ, ସମୟତାନର ବ୍ୟୟ, କେତେ ସୁଖ, ଶାନ୍ତି ଓ ସ୍ୱାସ୍ଥ୍ୟବ୍ୟୟ, କେତେ କେତେ ସ୍ତୁତି ଓ ଅଭିବାଦନ, ଧୂପ, ଦୀପ, ନୈବେଦ୍ୟାଦିର ବ୍ୟୟ, କେତେ କେତେ ଗୋଡ଼ଘଷା, ତେଲଲଗା, କେତେ କେତେ ପ୍ରକାରର ଗୋଲାମି ଓ କେତେ କେତେ ରକମର ଗଧପାଦଧରା ଓ ବାରମ୍ବାର ଶୁଣ୍ଡିପିଣ୍ଡାବିବାଦ କୁକର୍ମ ସହ୍ୟ କରିବାକୁ ହେଉଅଛି, ତାହା ଅକଥନୀୟ ଅଟେ । ଶୋଷ ଜଳାଶୟ ନିକଟକୁ ଯାଏ ମାତ୍ର ଜଳାଶୟ ଶୋଷ-ନିକଟକୁ ଯାଏ ନାହିଁ । ଆଜିକାଲିର ନୀଳବର୍ଣ୍ଣ ଶୃଗାଳଙ୍କଠାରେ ପରୋପକାର ଧର୍ମର ଚିହ୍ନ ଅତି ବିରଳ । ସେହିହେତୁ ଏମାନେ ନିଜେ ନିଜେ ବହୁ ବ୍ୟୟ ସ୍ୱୀକାର କରି ଉଚ୍ଚପଦ ପାଇଁ ଶାଗୁଣା, ବିଲୁଆ ଓ କୁକୁର ପରି ଇତସ୍ତତଃ ହେଉଅଛନ୍ତି । ଏହାଙ୍କୁ ତ ସଂସାର ବରଣ କରୁନାହିଁ, ବରଂ ନିଷେଧ କରୁଅଛି । ଖାଲି ନିଷେଧ ନୁହେଁ, ବହୁ ଘାତ-ପ୍ରତିଘାତ, କଷ୍ଟ, ଯନ୍ତ୍ରଣା, ଦୁଃଖ, ଅପମାନ ଏମନ୍ତ କି ପ୍ରାଣନାଶ ପର୍ଯ୍ୟନ୍ତ ସ୍ୱୀକାର କରି ନିଷେଧ କରିବାରୁ ନିବର୍ତ୍ତୁ ନାହିଁ, ତଥା ନିର୍ଲଜ୍ଜତାର ଦାସାନୁଦାସମାନେ ଗୋଡ଼ଧୂଆ ପଦବୀ ଗ୍ରହଣରୁ ନିବର୍ତ୍ତୁ ନାହାନ୍ତି ।

ଦେଖିବାକୁ ଗଲେ ଆଜିକାଲିର ଦେଢ଼ଶତ କୋଟି ଲୋକ ଉପରେ ଏହିପରି ଗୋଡ଼ଧୂଆ ଦେଢ଼ଶତ ଗୋଟି ଲୋକ ସେମାନଙ୍କ ଭାଗ୍ୟପୀଠରେ ବିଧାତାର ଆସନ ମାଡ଼ିବସି-ଅଛନ୍ତି । ସ୍ୱାର୍ଥପରତା ଓ କୂଟ-ପ୍ରବଞ୍ଚନାଦି ବ୍ୟବସ୍ଥା-ଶାସ୍ତ୍ରର ମଙ୍ଗଳାଚରଣ ହୋଇଅଛି । “ଅନ୍ଧାର ଘରେ ମହାକାଳିଆ, କିଏ ନେଉଛି କାହା ଓଳିଆ” ଘଟନାରେ କୋଳାହଳ ରବ ସାଗର, ଅଗାର ସଂସାର ବାହାର ଭିତର, ଗ୍ରାମ, ନଗର, ବନ, ପ୍ରାନ୍ତର, ପର୍ବତାଦି ଧ୍ୱନିତ ପୂରି ରହିଅଛି । ଏହାରି ଫଳରେ ମତଭେଦ, ମତବାଦ, ବିସମ୍ବାଦ, କଳହ, ମାରପିଟ ଏମନ୍ତକି କୋଟି କୋଟି ନରହତ୍ୟା ଓ ଅନନ୍ତ କୋଟି ମୁଦ୍ରାବ୍ୟୟ ସୁଦ୍ଧା ଘଟି ଯାଉଅଛି । ଏହି ଅନ୍ଧାରିଆ ଦୁଃଖରେ, ‘ସମସ୍ତେ ହୋଇ ଏକମୁଖ, ବୋଲନ୍ତୁ ନାରାୟଣ ରଖ’ ଏହି ମହାମନ୍ତ୍ରର ଜପ ଦେଢ଼ଶତ କୋଟି ଲୋକଙ୍କର ମୁଖରୁ ବାହାରୁ-ଅଛି । ହୃଦୟ ଓ ପ୍ରାଣର ଆବେଗରେ ବାହାରିବାରୁ ସେହି ସ୍ୱର୍ଗସିଂହାସନ ଟଳିଗଲାଣି । ସେହି ସନାତନ ନିତ୍ୟଧର୍ମର ଦିନ ଆସିଲାଣି । ଧର୍ମର ପୀଠ ନୈତିକତା, ସଂସାରର ଉପସ୍ଥିତ ଦୁର୍ନୀତି ଓ କଦାଗ୍ରହାଦି ଉଠି ତାହାର ସ୍ଥାନରେ ଆଗମୀତ ସ୍ଥାପିତ ହେବାର ଯୋଗାଡ଼ ଚାଲିଲାଣି । ସବୁଠାରେ ବଡ଼ ବଡ଼ ମଶାଲ ଓ ଦୀପାବଳୀ ଜଳିଉଠି ଝଲଝଲ

ଉବ ପଡ଼ୁଥିଲାଣି । ମାତ୍ର ଅନ୍ଧାର ବିନାଶ ବେଳରେ ବିପରୀତ ବୁଦ୍ଧି କାଢ଼ି କଡ଼ମଡ଼ ହେଉଅଛି । ପରମେଶ୍ୱର ମାତ୍ରର ପୋଷକ, ସେହିଠାରୁ ମାତୃକୋଷର ସାହାଯ୍ୟ ସ୍ୱରୂପ ଜ୍ଞାନ ପ୍ରସ୍ରରର ସ୍ରୋତ ବହିଆସି, ମାନବ ହୃଦୟରେ ପ୍ରବେଶ କଲାଣି । 'ବହିଗଲା ପାଣି ଯାଉ ଛେଣିକ, ବନ୍ଧ ବନ୍ଧାଇଲେ ରହୁ ଏଣିକ' ଦୀକ୍ଷା ଆରମ୍ଭ ହେଲାଣି । ଏବେ ସତ୍ତ୍ୱଗୁଣର ସାଧନ ଓ ଅସତ୍ତ୍ୱଗୁଣର ତ୍ୟାଗ ସର୍ବଶେଷ କର୍ତ୍ତବ୍ୟରୂପେ ଆଦୃତ ହେଉ ।

ଧର୍ମ, ଜ୍ଞାନ, ବୈରାଗ୍ୟ, ଦୟା, କ୍ଷମାଦି ଷଡ଼ଗୁଣମାନେ ଏହିଠାରେ ଟିକଏ ଯୋଗାସନାବଲମ୍ବନପୂର୍ବକ ବିଶ୍ରାମ ଲାଭ କରନ୍ତୁ । ଏହିଠାରେ ପରେ ବାଟବରଣ କରି ହୃଦୟାଗାରକୁ ନିମନ୍ତ୍ରଣ କରି ନିଆଯିବ । ଇତିମଧ୍ୟରେ ଗୃହପରିଷ୍କାର କାର୍ଯ୍ୟ ଶେଷ ହେଉ । ଘୋର କଳିର ଧବଳ ମଳ ବାହାରି ଯିବାର ବେଳ ହେଲାଣି । ପାପ ନିର୍ଲଜ୍ଜ ଭାବରେ ନାମକୁ ମାତ୍ର ରହିଅଛି । ଏହି 'ଅଛି' ଶତ ଶତ ଅ-ଅ-ଛି-ଛି ରେ ପରିଣତ ହେଲାଣି ।

## ୧୧୮ ପାଠ—ବର୍ଣ୍ଣାଶ୍ରମ ବିଧିସମ୍ମତ ଆଧ୍ୟାତ୍ମିକତା

ଐହିକ ଜୀବଲୋକରେ ସ୍ୱାସ୍ଥ୍ୟ ଏକମାତ୍ର ପ୍ରୟୋଜନୀୟ ପଦାର୍ଥ । ଆଜିକାଲି ଦୈହିକ ସ୍ୱାସ୍ଥ୍ୟମାତ୍ରରେ ଏହା ପର୍ଯ୍ୟବସିତ ହୋଇଅଛି । ଦୈହିକ ସ୍ୱାସ୍ଥ୍ୟ ନିମିତ୍ତ ଯାହା କିଛି ମନୁଷ୍ୟ କରୁଅଛି । ଦେହକୁ ଆତ୍ମ-ସର୍ବସ୍ୱ କରି ଜାଣିବା ହେତୁ କେବଳ ଦେହ-ପ୍ରାଣ ସମ୍ବନ୍ଧୀୟ ସ୍ୱଚ୍ଛନ୍ଦତା ସ୍ୱାସ୍ଥ୍ୟର ନାମକୁ ଅଧିକାର କରି ବସିଅଛି । ଏହି ମୋହ ପ୍ରକୃତ ସ୍ୱାସ୍ଥ୍ୟକୁ ଜଣାଇ ଦେଉନାହିଁ । ଫଳରେ କେବଳ ଦୈହିକ ସ୍ୱାସ୍ଥ୍ୟ ସମ୍ପାଦନ ସକାଶେ, ମନୁଷ୍ୟ ଭ୍ରମି ଭ୍ରମି ସୁସ୍ଥତା ବା ସୁଖ ଶାନ୍ତି କିଛି ଭୋଗ କରି ପାରୁନାହିଁ । ରୋଗରୁ ଔଷଧ ବଳପଡ଼ି ମାରାତ୍ମକ-ଦଶାକୁ ବଳେ ଧରିଆଣି ଥୋଇଲା ପରି ଦୈହିକ ସ୍ୱାସ୍ଥ୍ୟ ନିମିତ୍ତ ନାନାବିଧ ବୈଷୟିକ-ସୁଖ-ସମ୍ଭୋଗ କାମନା ମନୁଷ୍ୟକୁ ଅସାଧ୍ୟ ଅଥଚ ଅନ୍ତହୀନ କର୍ମ-ବାହୁଲ୍ୟ ଚକ୍ରରେ ପକାଇ ପେଷଣ କରି କରି ହିତରେ ବିପରୀତ ଫଳ ଭୋଗ କରାଉ-ଅଛି । ବର୍ତ୍ତମାନ କଳି ଧବଳ-ମଳର ଆଦର୍ଶ ଓ ଅନୁକରଣ ଦୋଷରୁ ଏତଦ୍ରୂପ ବିପରୀତ ଘଟଣାସମୂହ ଘଟିଅଛି ଓ ଘଟୁଅଛି । ଏବେ ପ୍ରକୃତ ସ୍ୱାସ୍ଥ୍ୟ ସମ୍ବନ୍ଧରେ ବିଚାର କରାଯାଉ-ଅଛି । ଦୈହିକ ସ୍ୱାସ୍ଥ୍ୟ ହିଁ ଯେ ପ୍ରକୃତ ସ୍ୱାସ୍ଥ୍ୟପଦବାଚ୍ୟ ଏହା କଦାଚ ନୁହେ । ସ୍ୱାସ୍ଥ୍ୟ ପାଞ୍ଚ ପ୍ରକାର, ଯଥା—(୧) ଦୈହିକ ସ୍ୱାସ୍ଥ୍ୟ, (୨) ପ୍ରାଣର ସ୍ୱାସ୍ଥ୍ୟ, (୩) ମାନସ ସ୍ୱାସ୍ଥ୍ୟ (୪) ପ୍ରକୃତିଗତ ସ୍ୱାସ୍ଥ୍ୟ (୫) ଆତ୍ମସ୍ୱାସ୍ଥ୍ୟ । ଏହି ପାଞ୍ଚପ୍ରକାର ସ୍ୱାସ୍ଥ୍ୟ ପ୍ରତ୍ୟେକେ ପରସ୍ପର-ସାପେକ୍ଷ ଅର୍ଥାତ୍ ପ୍ରତ୍ୟେକଟିରେ ଅବଶିଷ୍ଟ ଚାରି ଚାରିଟି ଅନୁପ୍ରବିଷ୍ଟ ହୋଇ ରହିଅଛି । ଗୋଟିକର ଅସ୍ୱାସ୍ଥ୍ୟରେ ଅପର ଚାରିଟିର ସ୍ୱାସ୍ଥ୍ୟ ରହିବା ଅସମ୍ଭବ ।

ଏହି ପଞ୍ଚାଙ୍ଗ ବଶିଷ୍ଟ ସ୍ୱାସ୍ଥ୍ୟ ପ୍ରକୃତ ସ୍ୱାସ୍ଥ୍ୟ ଅଟେ । ଏଥିରୁ ଗୋଟିକର ଅଭାବ ହେଲେ ଆତ୍ମଦେବ ଆତ୍ମସୁସ୍ଥତା ଅନୁଭବ କରିପାରନ୍ତି ନାହିଁ । ଏହା ସହଜରେ ବୁଝାଯାଏ, ଯଥା:—(୧) ଦେହ ଅସୁସ୍ଥ ଥିଲେ ସବୁ ଦୁଃଖମୟ (୨) ପ୍ରାଣର ଅସୁସ୍ଥତା ପ୍ରାଣର ଅନ୍ତରାୟ ବିକ୍ଷେପ, ପ୍ରକ୍ଷେପାଦି ଓ ବାୟୁବେଗାଦି ବଡ଼ କଷ୍ଟ (୩) ଦେହ ଓ ପ୍ରାଣ ସୁସ୍ଥ ଥିଲେ ମଧ୍ୟ ମାନସ ଦୁଃଖ ବଡ଼ ଅସହ୍ୟ ବୋଧହୁଏ । ମିତ୍ରବିୟୋଗ, ଧନାପବ୍ୟୟ ଏବଂ କାର୍ଯ୍ୟ ଅସିଦ୍ଧାବସ୍ଥା ଅତୀବ ତାପପ୍ରଦ । କଥାରେ କହନ୍ତି, ବନ ପୋଡ଼ିଲେ ସମସ୍ତେ ଜାଣନ୍ତି, ମନ ପୋଡ଼ିଲେ କେହି ଜାଣେନାହିଁ । (୪) ପ୍ରକୃତିଗତ ଅସ୍ୱାସ୍ଥ୍ୟ ଅର୍ଥାତ୍ ସତ୍ତ୍ୱଗୁଣର ଅଭାବ ଓ ତାମସ, ରାଜସ ଗୁଣର ଆଧିକ୍ୟରେ ଯେଉଁ ମୋହାଚ୍ଛନ୍ନ କର୍ମ ଏବଂ ଭୋଗ ଉପଭୁକ୍ତ ହେଉଥାଏ, ସେହି ଅବସ୍ଥାରେ ଆତ୍ମା ପାପମୟ ଦୁଃଖରେ ମହାଦୁଃଖୀ । ପ୍ରଥମୋକ୍ତ ତିନି ଅବସ୍ଥାରେ ଯେ ଦୁଃଖ, ତାହା ସ୍ଥୂଳ ଥିବାରୁ ସମସ୍ତେ ବଡ଼ ସହଜରେ ଜାଣନ୍ତି । ଚତୁର୍ଥ ପ୍ରକାରର ପ୍ରକୃତିଗତ ଅସ୍ୱାସ୍ଥ୍ୟକୁ ମୋହ ଆବରଣ କରି ଜଣାଇ ନ ଦେବାରୁ ମୂଢ଼ ବ୍ୟକ୍ତିମାନେ ଜାଣି ପାରନ୍ତି ନାହିଁ । ଏଥିରୁ ଅବଶିଷ୍ଟ ଚାରି ପ୍ରକାରର ଅସ୍ୱାସ୍ଥ୍ୟପାକ ସୂକ୍ଷ୍ମଭାବରେ ଜାତ ହୋଇ ଇହ-ପର ଉଭୟ କାଳକୁ ଦୁଃଖର କାରଣ ହୁଅନ୍ତି । ଏହି ଚାରିପ୍ରକାର ଦୁଃଖ ସମଷ୍ଟିରୁ ବା ଏକ କି ଏକାଧିକର ଯୋଗରୁ ଯେଉଁ ତାପର ଉଦ୍ଭବ ହୁଏ ତତ୍ସହିତ ସମ୍ପର୍କଦ୍ୱାରା ଆତ୍ମ ଅସ୍ୱାସ୍ଥ୍ୟ ଉପଲବ୍ଧି ହୁଏ । ଶେଷୋକ୍ତ ଦୁଇପ୍ରକାରର ଅସ୍ୱାସ୍ଥ୍ୟ ନିବାରଣ ଚେଷ୍ଟା ଆଜକାଲି ଏକାନ୍ତ ବିରଳ । ଭୌତିକତା ବା ଜଡ଼ବାଦ ବ୍ୟାମୋହ ଏଥିର ଏକମାତ୍ର କାରଣ ।

ଯେଉଁ ଯେଉଁ ପ୍ରକାରର ସହଜ, ସରଳ କର୍ମରେ, ସାତ୍ତ୍ୱିକ ସୁଖ ଭୋଗାଦିରେ, ପ୍ରାଣଧାରଣ ଓ ଦେହରକ୍ଷଣର ଉପଯୋଗୀ ଖାଦ୍ୟପେୟାଦି ଓ ବାସ ବସନାଦିରେ ଏବଂ ଜ୍ଞାନ ଚିନ୍ତାଦି ଶାନ୍ତିଭାବାପନ୍ନ ମାନସବୃତ୍ତିନାଦିରେ ମନୁଷ୍ୟର ସଂସାରଯାତ୍ରା ଅତିବାହିତ ହେବା ସହଜ, ତାହାର ଉପାୟମାନ ଆଗରେ ପଡ଼ିଅଛି । ମନୁଷ୍ୟ ଆପଣା ହସ୍ତରେ ଜିହ୍ୱାଚ୍ଛେଦନ କରି ବାଗ୍ମୀ-ପ୍ରବର ହୋଇ ନ ପାରିଲି ବୋଲି ମୁଣ୍ଡ ବାଡ଼େଇ ହେଲେ କଅଣ ହେବ ? ସରଳ, ସାତ୍ତ୍ୱିକ, ପରିମିତ ଖାଦ୍ୟାଦିରେ ଓ ପେୟାଦିରେ ଦୈହିକ ସ୍ୱାସ୍ଥ୍ୟରକ୍ଷା କରିବା ଉଚିତ, ଯାହାକି ଅବଶିଷ୍ଟ ଚାରିପ୍ରକାରର ସ୍ୱାସ୍ଥ୍ୟ ସାଧନର ସହାୟତା କରିବ । ପୁଣି କୌଣସି ଅଂଶରେ ବିରୁଦ୍ଧ ଭାବାପନ୍ନ ହେବନାହିଁ । ପ୍ରାଣର ସ୍ଥିରତା ଦ୍ୱାରା ପ୍ରାଣର ସ୍ୱାସ୍ଥ୍ୟ ରକ୍ଷିତ ହୁଏ । ଏହେତୁ ପ୍ରାଣସଂଯମ ବା ପ୍ରାଣାୟାମାଦି ବା ଅଭାବପକ୍ଷେ ଏକାଗ୍ର ଓ ସ୍ଥିରଭାବରେ ପରମେଶ୍ୱର ନାମ ଓ ଗୁଣାନୁବାଦ ଅଭ୍ୟାସ କରିବାଦ୍ୱାରା ପ୍ରାଣ ସ୍ଥିର ହୁଏ ଏବଂ ତାହା ସ୍ୱାସ୍ଥ୍ୟନାମରେ କଥିତ ହୁଏ । ଏହି ଦୁଇ ପ୍ରକାର ସ୍ୱାସ୍ଥ୍ୟ ଲାଭଦ୍ୱାରା ମାନସ ସ୍ୱାସ୍ଥ୍ୟ ଉପଲବ୍ଧି ହୁଏ । ଏହିରୂପେ ଦେହର ଓ ପ୍ରାଣର ସ୍ୱାସ୍ଥ୍ୟ ରକ୍ଷିତ ହେବାରୁ ମନର ସ୍ୱାସ୍ଥ୍ୟ ସମ୍ପାଦନ ପ୍ରତି ବଡ଼ ସାହାଯ୍ୟ ମିଳିଯାଏ । ଏଥି ଉତ୍ତାରୁ ମନର ସ୍ୱାସ୍ଥ୍ୟନିମିତ୍ତ ଆତ୍ମବିଦ୍ୟାଦି ପଠନ ଶ୍ରବଣ, ରାଜସ ତାମସାତ୍ମକ

ଝୂର କର୍ମ ଓ ବିଷୟ ଭୋଗାଦିର ବର୍ଜନ ଏବଂ ଆତ୍ମଚିନ୍ତନ ଓ ଧ୍ୟାନାଦି ଅନୁଷ୍ଠିତ ହେବା ବିଧେୟ ଅଟେ । ଏଥିରେ ମନର ଶାନ୍ତି ଜାତ ହୁଏ । ଏହି ତିନପ୍ରକାର ସ୍ୱାସ୍ଥ୍ୟ ସାଧିତ ହେବା ଉତ୍ତାରୁ ପ୍ରକୃତିଗତ ରାଜସ ତାମସାତ୍ମକ ଅବୈଧ କର୍ମ ଏବଂ ଭୋଗାଦିର ବାସନା ଓ ସଂସ୍କାର ପରିତ୍ୟକ୍ତ ବା ପ୍ରଶମିତ ହୋଇ ଶୁଦ୍ଧ ସତ୍ତ୍ୱଗୁଣାତ୍ମକ ଜ୍ଞାନ, ଧର୍ମ, ବୈରାଗ୍ୟ, ଦୟା ଓ କ୍ଷମାଦିର ଆବିର୍ଭାବ ହୁଏ । ଏହି ଅବସ୍ଥାରେ ପ୍ରକୃତିଗତ ସ୍ୱାସ୍ଥ୍ୟ ସ୍ୱତଃସିଦ୍ଧ ହୁଏ । ଏହି ଚାରିପ୍ରକାର ସ୍ୱାସ୍ଥ୍ୟ ଏକତ୍ର ମିଶ୍ରିତ ହେଲାରୁ ଜୀବାତ୍ମାର ଚିତ୍‌ସଂବିତ୍ ଲାଭ ହୁଏ । ଏହା ଆତ୍ମା ଚିଦ୍ରୂପତତ୍ତ୍ୱ ଅର୍ଥାତ୍ ଆତ୍ମସଂସ୍ଥାନ ବା ଆତ୍ମସ୍ୱାସ୍ଥ୍ୟସଂଭୋଗ । ଏହି ପାଞ୍ଚ ପ୍ରକାର ସ୍ୱାସ୍ଥ୍ୟ ଆତ୍ମାର ଆତ୍ମଭାବାନୁମୋଦିତ ସ୍ୱଧର୍ମ । ଏହି ଆତ୍ମସ୍ୱାସ୍ଥ୍ୟ ବର୍ଣ୍ଣାଶ୍ରମ ଧର୍ମର ନାମାନ୍ତର ଅଟେ ।

ଉକ୍ତ ପାଞ୍ଚ ପ୍ରକାର ସ୍ୱାସ୍ଥ୍ୟ ଯେପରି ପରସ୍ପର ନିତ୍ୟ ସାପେକ୍ଷ, ସେହିପରି ଏମାନେ ଏକତ୍ରରେ ବର୍ଣ୍ଣାଶ୍ରମ ଧର୍ମର ସାପେକ୍ଷ । ବର୍ଣ୍ଣାଶ୍ରମ ଧର୍ମ ଏମାନଙ୍କର ଆଶ୍ରୟ । ଜୀବପ୍ରବାହ-ରକ୍ଷାର୍ଥ ଯେପରି ସ୍ତ୍ରୀ ଏବଂ ପୁରୁଷ ପରସ୍ପର ସାପେକ୍ଷ ଏବଂ ମଞ୍ଜି ଯେପରି ବୃକ୍ଷକୁ ଅପେକ୍ଷା କରେ ଏବଂ ବୃକ୍ଷ ଯେପରି ମଞ୍ଜି ଅଭାବରେ ହୋଇ ନ ପାରେ, ଉପଯୁକ୍ତ ଆଧାର ଅଭାବରେ ଯେପରି ଅନୁରୂପ ଆଧେୟ ରହି ନ ପାରେ (ଲୁଗାମୁଣିରେ ପାଣି ରହିଲାପରି), ଠିକ୍ ସେହିପରି ବର୍ଣ୍ଣାଶ୍ରମ ଧର୍ମ ଆଧାର ଆଉ ଉକ୍ତ ପଞ୍ଚଧା ସ୍ୱାସ୍ଥ୍ୟ ସହିତ ଆତ୍ମା ଏହି ବର୍ଣ୍ଣାଶ୍ରମଧର୍ମରୂପ ଆଧାରର ଆଧେୟ ଅଟେ ।

ଏବେ ବର୍ଣ୍ଣାଶ୍ରମ ଧର୍ମବିଧି ଆଲୋଚିତ ହେଉ । ମାତ୍ର କଥା ଏତିକି ଯେ, ଅଗସ୍ତି ସାତ ସମୁଦ୍ର ପିଇଲା ପରି ଏହା ଅତୀବ ଅସାଧ୍ୟ । କାରଣ ଏହି ବର୍ଣ୍ଣାଶ୍ରମ ବିଧି ପ୍ରାୟ ସମୁଦାୟ ଶାସ୍ତ୍ର-ପୁରାଣାଦିରେ ବେଦବେଦାନ୍ତ ଓ ଉପନିଷଦାଦିରେ ଏବଂ ଦର୍ଶନ ଇତିହାସ ପ୍ରଭୃତି ସମସ୍ତ ଆର୍ଷଗ୍ରନ୍ଥାଦିରେ ବିବୃତ ହୋଇ ଅସଂଖ୍ୟ ଅସଂଖ୍ୟ ପୁସ୍ତକାଦିର ଆକାରକୁ ପୂର୍ଣ୍ଣ କଲାପରେ ମଧ୍ୟ ସ୍ୱୟଂ ପୂର୍ଣ୍ଣ ହୋଇ ପାରିନାହିଁ; ସୁତରାଂ ଏହା ଏହି ନଗଣ୍ୟ ଗ୍ରନ୍ଥରେ ଏବଂ ଜୀଟାଣୁ ମୁଖରେ କାହୁଁ ସମ୍ଭବ ହେବ ? ତେବେ ଶ୍ଳେଟ ଶିଶୁ ବହୁ ଯୋଜନ ବିସ୍ତୀର୍ଣ୍ଣ କଳେବର ଚନ୍ଦ୍ରମାକୁ ଅପରିସୀମ ଦୂରରୁ ଯେପରି 'ଆରେ ଜହ୍ନମାମୁ' ବୋଲି ଡାକି ହସ୍ତବିସ୍ତାରପୂର୍ବକ ଧରିବାକୁ ଚେଷ୍ଟାକରେ, ସେହିପରି ଏ ଚେଷ୍ଟା ଏକପ୍ରକାରେ କୌତୂହଳପ୍ରଦ ହୋଇପାରେ, ଆଉ ଫଳପ୍ରଦ ହେବା ସମ୍ଭବ ନୁହେ । ପୁଣି ଆଉ ଗୋଟିଏ କଥା ଏହି ଯେ, ଏହି ବର୍ଣ୍ଣାଶ୍ରମବିଧି ଯେତେବେଳେ ବ୍ୟବସ୍ଥାଦିରୂପେ ପ୍ରଚଳିତ ହେଉଥିଲା, ଆଉ ଏହି ବିଧିର ରକ୍ଷାପ୍ରତି ବଡ଼ ଯତ୍ନ ନିଆ ଯାଉଥିଲା, ଏହା କିପରି ପାଳିତ ହେଉଅଛି କି ନା ଜାଣିବାକୁ ବିଚାରାଳୟ ବସିଥିଲା ଏବଂ ଧର୍ମବିଚାରକ ଓ ଉପଦେଶକ ନିଯୁକ୍ତ ଥିଲେ, ତ୍ରୁଟିଠାରେ ସମୁଚିତ ଦଣ୍ଡସ୍ୱରୂପ ପ୍ରାୟଶ୍ଚିତ୍ତ ପ୍ରଭୃତିର ଅନୁଷ୍ଠାନ କରାଯାଉଥିଲା, ସେତେବେଳେ ସିନା ଏହି ବର୍ଣ୍ଣାଶ୍ରମ ବିଧି ଓ ତତ୍‌ସମ୍ବନ୍ଧୀୟ ପୁସ୍ତକାଦି ଶୋଭା ପାଉଥିଲା; ଆଉ ବର୍ତ୍ତମାନ ସେହି ଦିନ ନାହିଁ ।

ଏହିକ୍ଷଣି ଅଜ୍ଞାନ ଗତି ହୋଇଅଛି ଏବଂ ବିଧିବ୍ୟବସ୍ଥା ସେହିପରି ଅନ୍ଧାରିଆ ହୋଇଅଛି । ଦୈହିକ ସ୍ୱାସ୍ଥ୍ୟ ଓ ସୁଖ ସମ୍ଭୋଗାଦି ଏ ଗତି ର ବ୍ୟବସ୍ଥା । ଏ ବ୍ୟବସ୍ଥା ପୁଣି ସମୁଦାୟ ମାନବ ଜାତିପ୍ରତି ନୁହେଁ । ଏହା ହଜାରେକେ ଜଣେ ବା ଶହକେ ଜଣକ ପାଇଁ କି ନା ସନ୍ଦେହ । ଏହି ମୁଷ୍ଟିମେୟ ଜୀବ ସ୍ୱାର୍ଥସିଦ୍ଧିମାତ୍ର ଲାଭ କରିବା ପାଇଁ ଭଡ଼ା, ଭଣ୍ଡ, କଡ଼ା କଡ଼ା କଥାରେ ଲେଖା ବ୍ୟବସ୍ଥା ନାମଧେୟ ପୁସ୍ତକାଦି ସର୍ବତ୍ର ସଜାଡ଼ାସଜାଡ଼ି କରି ରଖିଅଛନ୍ତି । ଏହି ଲେଖା ନିୟମାଦି ପୁଣି 'ମଡ଼ା'କୁ ସୁଦ୍ଧା ପାଳିବାକୁ ହେଉଅଛି । ଏହି ବ୍ୟବସ୍ଥାନୁଯାୟୀ ଅନେ୍ୟତର ନିରୀହ ଜୀବମାନେ ଅଷ୍ଟବନ୍ଧନୀରେ ଆବଦ୍ଧ ରହି ମାଟି କାମୁଡ଼ି ପଡ଼ିରହିଥିବେ । ପ୍ରାଣବିକଳରେ ବା ପ୍ରକୃତି ନିୟମାଧୀନ ବ୍ୟବସ୍ଥା ବା ଶାନ୍ତିନୀତିର ବିପରୀତ ଅଥଚ ଅସହ୍ୟ ଅନ୍ୟପ୍ରକାର କାରଣରେ ଟିକିଏ ହାତ ଗୋଡ଼ ଛଟପଟ କଲେ ବା ଗଁ, ଗାଁ, ସଁ, ସାଁ ହେଲେ ଆଜ୍ଞା ଅମାନ୍ୟ ବା ନିୟମ ଲଙ୍ଘନ ଦୋଷରେ ଚମଡ଼ା ଉଡ଼ିଯିବ । ଏହି ମାନବସଂକୁଳ ଜଗତରେ ଅଳ୍ପସଂଖ୍ୟକ ଲୋକର କେବଳ ଦୈହିକ ସୁଖ ସମ୍ଭୋଗ ଓ ବିଳାସିତା ଏବଂ ସ୍ୱେଚ୍ଛାଚାରିତା ପୂର୍ଣ୍ଣ-ମାତ୍ରାରେ ପୂର୍ଣ୍ଣ ହେବା ପାଇଁ ପରମେଶ୍ୱର ନିର୍ମିତ ଏହି ବିଶାଳକଳେବର ବିଶିଷ୍ଟ ବିଶ୍ୱ ଯେପରି ଦଖଲିବଦ୍ଧ ରହିଅଛି । ଏଥିରେ ପୁଣି ପାଞ୍ଚପ୍ରକାର ସ୍ୱାସ୍ଥ୍ୟ ସହିତ ବର୍ଣ୍ଣାଶ୍ରମବିଧିର ସ୍ଥାନ କେଉଁଠାରେ ?

ଏବେ ସେହି କାଳଗତି ପାହିଲାଣି । 'ଧର୍ମରବି' ଉଦୟ ହୋଇ ଆସୁଅଛନ୍ତି । ତେବେ ସେହି ବିଧିର ପୁନରୁତ୍ଥାନ ଏହିଠାରେ ହେବ । ଯେଉଁ ଦେହମାତ୍ରର ସୁଖ ନିମିତ୍ତ ଅଳ୍ପ ଲୋକ ନିଜ ନିଜର ସବୁ ପ୍ରକାରର ସୁବିଧା ବଳପୂର୍ବକ ମାଡ଼ି ବସିଅଛନ୍ତି, ଆଉ ଅସଂଖ୍ୟ ଅସଂଖ୍ୟ ମନୁଷ୍ୟର ପେଟର ଅନ୍ତ ପିଠିପଟରେ ଦେଖା ଦେଉଥିଲେ ସୁଦ୍ଧା ସେମାନଙ୍କର ମୁଣ୍ଡ ଝାଳ ଗୋଡ଼ରେ ମରି ଉପାର୍ଜିତ ହେଉଥିବା ଧନ ସମ୍ପତ୍ତି 'ତେଲିଆ ମୁଣ୍ଡରେ ତେଲ' ବର୍ଷିଲା ପରି ଚାଲି ଯାଉଅଛି, ସେହି ସର୍ବଗ୍ରାସୀ ମୋଟା ଦେହ ଏବଂ ସେହି ନିରନ୍ନ ହାଡ଼କଙ୍କାଳସାର ଶୁଷ୍କ ଚର୍ମବିଶିଷ୍ଟ ଶତ ଶତ ରୁଗ୍‌ଣ ଦେହ—ଏହି ଉଭୟ ପ୍ରକାରର ଏବଂ ସର୍ବପ୍ରକାର ସମସ୍ତ ମାନବର ଭୌତିକ ଦେହ ଏକସ୍ୱରରେ କହୁଅଛନ୍ତି, "ଆମର ଦିନ ଦିନକୁ ଦିନ କ୍ରମେ କ୍ରମେ ଘାନହାନ ଭାବରେ ସରି ସରି ଯାଉଅଛି । ଲୁଣ ପାଣିରେ ପଡ଼ି ମିଳାଇ ଯାଇ ପାଣି ହୋଇ ଗଲାପରି ଆମେ ମାଟିରେ ପଡ଼ି ପଡ଼ି ମାଟି ହୋଇ ଯିବାର ମୁହୂର୍ତ୍ତ ହେଉଛି ଏହି ଆଖି ଆଗରେ ଦେଖାଯାଉଅଛି ।" ଆତ୍ମଦେବ କହୁଅଛନ୍ତି, "ମୋର ଦିନ ଦିନକୁ ଦିନ କ୍ରମଶଃ ବଢ଼ି ବଢ଼ି ଯାଉଅଛି । ମୁଁ ଭବିଷ୍ୟତ ସୀମାରେଖାର ଆର ପାଖ ଦେଖିବାକୁ ଅଳ୍ପ ବୋଲି ଜ୍ଞାନ କରୁଅଛି । ଭବିଷ୍ୟତର ଅନ୍ତ ନାହିଁ ବୋଲି ଯଦି କଥା ଅଛି, ତଥାପି ସେହି ମହାବାକ୍ୟର ମୁହିଁ ଏକା ଅନ୍ତକାରୀ ଅଟେ ।" ଏଭଳି କଥାର ଅର୍ଥ ଏହି ଯେ, ମାଟି ଦେହ କ୍ଷଣଭଙ୍ଗୁର ଓ ନଶ୍ୱର ଅଟେ । ଆତ୍ମା ଅବିନଶ୍ୱର ଅଟେ । ତେବେ ଏ ଆତ୍ମାର ସ୍ୱାସ୍ଥ୍ୟରକ୍ଷାବିଧି

ରକ୍ଷା ନ କରି ବରଂ ତତ୍ସମ୍ବନ୍ଧୀୟ ବିଧି ବ୍ୟବସ୍ଥା ପ୍ରତି ହେୟ ପ୍ରଦର୍ଶନ କରିବା କପଟ ବେଳର କଥା । ଆଜି ଗୋଟିଏ ଦେହର ସ୍ୱାସ୍ଥ୍ୟ ସୁଖସମ୍ଭୋଗାଦି ରକ୍ଷା ନିମିତ୍ତ ଅଳ୍ପ ଲୋକ ମାତ୍ର ଉଠି ଅଧିକାଂଶ ଏବଂ ସର୍ବାଂଶ ନର ଜାତୀୟ ପ୍ରାଣୀର ଅବହେଳା କରିବା କପଟ ବେଳର ବ୍ୟବସ୍ଥା ? ଏହି ସନ୍ଧିରେ ବର୍ତ୍ତମାନ ଧର୍ମ ଗୋଡ଼ ଫୁଟାଇ ସେହି ପବିତ୍ର ସନାତନ ଧର୍ମ ଜ୍ୟୋତି ବିସ୍ତାର କରିବାକୁ ଆରମ୍ଭ କଲେଣି; ବର୍ତ୍ତମାନ ଆଳସ୍ୟ ତେଜି ଆଖି ଖୋଲି ଚାହିଁବା ସର୍ବତୋଭାବେ ବିଧେୟ ଅଟେ ।

ଉପରୋକ୍ତ ବିବରଣୀରୁ ଏହା ସ୍ପଷ୍ଟ ଜଣାଯାଉଅଛି ଯେ, ଦୈହିକ ସ୍ୱାସ୍ଥ୍ୟ ସମ୍ପାଦନ ନିମିତ୍ତ ଆଜିକାଲି ଯୁଗରେ ଯେପରି ଲାଗିପଡ଼ି ନାନାବିଧ କର୍ମ କରିବାରେ ମନୁଷ୍ୟ ସର୍ବଦା ନିଯୁକ୍ତ ଅଛି, ଆଉ ସେହି ସେହି କର୍ମକୁ ମୁଖ୍ୟ କର୍ତ୍ତବ୍ୟ ବୋଲି ସ୍ଥିର କରି ଯାଉଅଛି, ଅପର ଚାରି ପ୍ରକାର ଅର୍ଥାତ୍ ପ୍ରାଣାଦିର ସ୍ୱାସ୍ଥ୍ୟକୁ ସେପରି ନ ବୁଝି ତାହାକୁ ଗୌଣ କର୍ତ୍ତବ୍ୟ କର୍ମରେ ବା ତ୍ୟାଜ୍ୟ ଭାବରେ ହେୟ ଓ ଅନାଦର ବୋଲି ଜ୍ଞାନ କରୁଅଛି, ତେବେ ଦୈହିକ ଅସ୍ୱାସ୍ଥ୍ୟ ନିବାରଣ ପାଇଁ ଚିକିତ୍ସକ ନିମନ୍ତ୍ରଣ ଏକ ପ୍ରଧାନ ଅବଲମ୍ବନ ହୋଇଅଛି । ମାତ୍ର ପ୍ରାଣଗତ, ମନୋଗତ, ପ୍ରକୃତିଗତ ବା ଆତ୍ମଗତ ଅସ୍ୱାସ୍ଥ୍ୟ ଉପଶମ ପାଇଁ କୌଣସି କଥା ନାହିଁ । ଦୈହିକ ରୋଗ ନିବାରଣର ଔଷଧ ବାହାରେ ରହିଅଛି, ମାତ୍ର ବାକି ଚାରିପ୍ରକାର ରୋଗର ଔଷଧ ପଦାର୍ଥରେ ନାହିଁ । ଅଛି କେବଳ ଆପଣାଠାରେ, ଆତ୍ମକ୍ରିୟାରେ, ଆତ୍ମସାଧନାରେ ଓ ଆତ୍ମଜ୍ଞାନ, ଧ୍ୟାନାଦି ଧର୍ମାନୁଷ୍ଠାନରେ । ଦୁଃଖର କଥା ଏହି ଯେ ଆଜିକାଲିର ଲୋକ ଏହି ଧର୍ମକର୍ମାଦିକୁ ଖାମ୍‌ଖିଆଲିର ଅନ୍ଧକାରରେ ନିକ୍ଷେପ କରି କେବଳ ଦୈହିକ ମାତ୍ରକୁ ପରମ ପଦାର୍ଥ ବୋଲି ବୁଝି ଆତ୍ମାକୁ ବିସ୍ମରଣ କରିବାଟା ମୋହାଧିକ୍ୟ ଅବସ୍ଥା ଅଟେ । ଏହି ଅବସ୍ଥା ଉପସ୍ଥିତ ସମୟର ଶିକ୍ଷା, ଦୀକ୍ଷା, ବିଧି, ବ୍ୟବସ୍ଥାଦିର ଆଦର୍ଶ ଓ ଅନୁକରଣରୁ ଘଟିଅଛି । ଏଗୁଡ଼ାକ ଆତ୍ମା ପକ୍ଷରେ ନିଗଡ଼ ବନ୍ଧନରୁ ବଳି ଭାରବହ ଶୃଙ୍ଖଳା ପରି ହେଲାଣି । ଦୈହିକ ସ୍ୱାସ୍ଥ୍ୟ ଓ ସୁଖ-ସମ୍ଭୋଗ ସମ୍ବନ୍ଧୀୟ କ୍ରିୟାଦିକୁ ସହଜରେ ସମସ୍ତେ ବୁଝି ଆଦରି ଅଛନ୍ତି । ଏହାର ନାମ ଲୌକିକ କ୍ରିୟା ବା ସଂସାର ଯାତ୍ରା ଏବଂ ଅପର ଚାରିପ୍ରକାର ଅର୍ଥାତ୍ ପ୍ରାଣାଦିର ସ୍ୱାସ୍ଥ୍ୟସମ୍ପାଦକ କର୍ମାଦି ପ୍ରକୃଷ୍ଟ ଭାବରେ ଆତ୍ମସ୍ୱାସ୍ଥ୍ୟ ସମ୍ପର୍କୀୟ ଥିବାରୁ ଏହି ପ୍ରାଣାୟାମାଦି ଓ ମନନ, ଧ୍ୟାନାଦି ଏବଂ ଆତ୍ମଲୟାଦିର ଅନୁଷ୍ଠାନ ଧର୍ମକ୍ରିୟା ବା ବ୍ରହ୍ମକର୍ମନାମରେ ଅଭିହିତ ଅଟେ । ଆଜିକାଲି ମହାମୋହର ବିଷୟ ଏହି ଯେ ସଂସାରକ୍ରିୟା ଏବଂ ଧର୍ମକ୍ରିୟା ଦୁଇଭାଗରେ ବିଭକ୍ତ ହୋଇଅଛି ! ପ୍ରଥମଟିର ସଙ୍ଗେ ଦ୍ୱିତୀୟଟିର ସମ୍ପର୍କ ନାହିଁ, ଅଥଚ ପ୍ରଥମଟି କର୍ତ୍ତବ୍ୟ ମଧ୍ୟରେ ଏବଂ ଦ୍ୱିତୀୟଟି କର୍ତ୍ତବ୍ୟର ବାହାରେ ଖାମ୍‌ଖିଆଲି ଇଚ୍ଛା ଉପରେ ନିର୍ଭର କରିଅଛି । ବିଷ୍ଠାର ଆଦର ବଢ଼ୁଅଛି, ଅମୃତର ନାମ ମୃତପ୍ରାୟ ଲୁଚିଗଲାଣି । ଦୁଷ୍କୃତ ଜୀବର ଓ ଦୁଷ୍ଟବୁଦ୍ଧିପୂର୍ଣ୍ଣ ଦେଶରେ ସିନା ଏ ବ୍ୟବସ୍ଥାର ଆଦର, ଆଉ ମାନବୀୟ ସଂସାରରେ ଏହାର ଆଦର କାହିଁ ? ଏହା ଧର୍ମର

ଗ୍ଳାନି ଏବଂ ଅଧର୍ମର ଅଭ୍ୟୁତ୍‌ଥାନ । ଏ ସମସ୍ତ 'ହାକ୍ୱ ମଧୁସୂଦନ' ବୋଲି ଡାକୁଅଛୁ । ଭଗବାନ ହରି କହିଲେଣି, "ତଦାତ୍ମାନଂ ସୃଜାମ୍ୟହଂ" । ଏହି ଭୌତିକ-ସଂସାରରେ ଆତ୍ମା ପ୍ରଧାନ, ଆତ୍ମା ନିମିତ୍ତ ଦେହ-ସଂସାରର ସୃଷ୍ଟି, ଆଉ ମୃଣ୍ମୟ ପିଣ୍ଡ-ବ୍ରହ୍ମାଣ୍ଡ ନିମିତ୍ତ ଆତ୍ମଦେବ ସୃଷ୍ଟ ହୋଇନାହାନ୍ତି ! ଏହି ହେତୁ କେବଳ ଦୈହିକ ସ୍ୱାସ୍ଥ୍ୟ ବିଧାନ ଆତ୍ମପକ୍ଷରେ ଯଥେଷ୍ଟ ନୁହେ ବରଂ କିଛି ନୁହେ କହିଲେ ଚଳେ ।

ମାତ୍ର ଉପରିଲିଖିତ ପାଞ୍ଚପ୍ରକାର ସ୍ୱାସ୍ଥ୍ୟର ବିଧାନ ଏକସଙ୍ଗରେ, ଏକାଧାରରେ ଓ ସବୁକାଳ ସକାଶେ ଆତ୍ମା ପକ୍ଷରେ ଉପାଦେୟ ଅଟେ । ଏହି ହେତୁ ଉକ୍ତ ପାଞ୍ଚ ପ୍ରକାର ସ୍ୱାସ୍ଥ୍ୟ ସାଧନବିଧି ପରସ୍ପର ସାପେକ୍ଷ ଓ ସହାୟକ ଥିବାରୁ ଶକ୍ତ୍ୟନୁସାରେ ସବୁ ସମୟରେ ଅବିଭକ୍ତ ଭାବରେ ଅନୁଷ୍ଠିତ ହେବା ବାଞ୍ଛନୀୟ । ଅତଏବ ସଂସାରଯାତ୍ରା ସମ୍ବନ୍ଧୀୟ କ୍ରିୟା ଏବଂ ଧର୍ମକ୍ରିୟା ଉଭୟେ ଅଲଗା ଅଲଗା ନ ହୋଇ ପରସ୍ପର ଅବିରୋଧ ଓ ପରସ୍ପରର ସହାୟକ ଓ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଅପେକ୍ଷା ଓ ନିର୍ଭର କରି ଅନୁଷ୍ଠିତ ହେବା ବିଧେୟ ଅଟେ । ଏହି ପଞ୍ଚାଙ୍ଗ ବିଶିଷ୍ଟ ସ୍ୱାସ୍ଥ୍ୟସାଧନ ବିଧି ବ୍ୟକ୍ତିଗତ ଭାବରେ ଅନୁଷ୍ଠିତ ହେଲେ ତାହା ଯେପରି ସାଧକର ଉପକାରୀ, ସେହି ଆଦର୍ଶ ଅନ୍ୟାନ୍ୟଙ୍କ ପକ୍ଷରେ ସେହିପରି ଉପାଦେୟ ହେବା ଉଚିତ । ତଦ୍ୱାରା କୌଣସି ପ୍ରକାରେ କୌଣସି ଲୋକର କାହାରିଠାରୁ କୌଣସି ପରିମାଣର ଅସ୍ୱାସ୍ଥ୍ୟ ଜାତ ହେବା କଦାଚ ବିଧେୟ ନୁହେ । ଏ ବିଷୟରେ ସାବଧାନତା ସର୍ବଦା ପରିହାର କରିବା ଆବଶ୍ୟକ । ଆତ୍ମାର ଉପକାର ଅର୍ଥରେ ଜ୍ଞାନ, ଭୋଗ ଏବଂ କର୍ମ ସବୁବେଳେ ଏକାଧାରରେ ବିରାଜମାନ ରହିଅଛନ୍ତି । ମନୁଷ୍ୟ ଏମାନଙ୍କ ସାହାଯ୍ୟରେ ନିଜର ଏବଂ ସଂସାରର ଉପକାର ସାଧନ କରୁଥିବ । ଅନ୍ୟଥାଚରଣ ଅମନୁଷ୍ୟତା ବା ପଶୁତା ଭିନ୍ନ ଆଉ କିଛି ନୁହେ । ଏବେ ଏହି ପଞ୍ଚାଙ୍ଗବିଶିଷ୍ଟ ସ୍ୱାସ୍ଥ୍ୟସାଧନ ବିଧି ଆଧେୟରୂପେ ଆଗରୁ ଅଣାଗଲା । ଏଠାରୁ ଏହାର ଆଧାରରୂପ ବର୍ଣ୍ଣାଶ୍ରମ ବିଧାନ ସଂକ୍ଷେପରେ ଲେଖାଯାଉଅଛି ।

ବର୍ଣ୍ଣ ଚାରିପ୍ରକାର, ଯଥା:—ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ ଏବଂ ବ୍ରାହ୍ମଣ; ଆଉ ଆଶ୍ରମ ଚାରିପ୍ରକାର, ଯଥା:—ଗୃହସ୍ଥ, ବ୍ରହ୍ମଚର୍ଯ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ । ଦେଖିବାକୁ ଗଲେ ଏହି ଚାରିବର୍ଣ୍ଣ ଏବଂ ଚାରି ଆଶ୍ରମ ଏକେ ଏକେ ଆତ୍ମାର ସ୍ୱାଭାବିକ ଅବସ୍ଥା ବିଶେଷ ବିଶେଷ ଅଟେ । ଶୂଦ୍ରର ଧର୍ମ ସେବା, ବୈଶ୍ୟର ଧର୍ମ ସଂଚୟନ, କ୍ଷତ୍ରିୟର ଧର୍ମ ରକ୍ଷଣ, ପାଳନ ଏବଂ ଅହିତକର କାରଣର ତାଡ଼ନ ଓ ବ୍ରାହ୍ମଣର ଧର୍ମ ଜ୍ଞାନ ଧର୍ମାଦିର ଚର୍ଚ୍ଚା । ଏହାପରେ ଗୃହସ୍ଥର ଧର୍ମ ଆତ୍ମୀୟ ପାଳନ, ଦେବ, ପିତୃବର୍ଗ, ଗୁରୁବର୍ଗ, ଅଭ୍ୟାଗତ, ଅନାଥ ଓ ଅଶକ୍ତର ସେବା ଏବଂ ଶକ୍ତ୍ୟନୁସାରେ ସଂସାରର ଉପକାର ପ୍ରଭୃତି କରିବା ବିଧେୟ ଅଟେ । ବ୍ରହ୍ମଚର୍ଯ୍ୟ—ପରିମିତାହାର, ପରିମିତାଚାର, ପ୍ରାଣସଂଯମ, ଇନ୍ଦ୍ରିୟ-ଦମନ, ସ୍ୱାଧ୍ୟାୟ, ସତ୍ସଙ୍ଗ, ସର୍ବପ୍ରକାରର ସଦାଶୟ ଓ ସନ୍ନିଷ୍ଠା ଇତ୍ୟାଦି । ବାନପ୍ରସ୍ଥର

ଲକ୍ଷଣ:—ବନବାସ, ନିର୍ଜ୍ଜନ ସାଧନ-ତପସ୍ୟା ଅର୍ଥାତ୍ ଯୋଗାବଲମ୍ବନ । ସନ୍ନ୍ୟାସ:— ଆଧ୍ୟାତ୍ମିକ ସଂସାର ପକ୍ଷରେ ଆତ୍ମା ଏବଂ ବ୍ରହ୍ମର ଅଭେଦଜ୍ଞାନ, ସିଦ୍ଧି ସାଙ୍ଗ ହେଲା ପରେ ଜ୍ଞାନ ବୈରାଗ୍ୟ ଯୋଗଦ୍ୱାରା ତଦ୍ରୂପ ଅଦ୍ୱୈତ ତତ୍ତ୍ୱଜ୍ଞାନର ନ୍ୟାସ ଏବଂ ପ୍ରାକୃତ ସଂସାର ଆଦର୍ଶରକ୍ଷା ଦୃଷ୍ଟିରେ ବିଧିନିର୍ଦ୍ଦିଷ୍ଟ ସଦନୁଷ୍ଠାନ ଓ ସତ୍କର୍ମାନୁଷ୍ଠାନାଦି ସଙ୍ଗେ ସଙ୍ଗେ ତଦ୍ରୂପ କର୍ମାଦିର କର୍ତ୍ତୃତ୍ୱାଭିମାନ ସହିତ ତତ୍ତତ୍ କର୍ମର ଫଳ ଓ ଫଳ କାମନାଦି ନ୍ୟାସ, ଏତଦୁଭୟ ଜାଗତିକ (ସର୍ବପ୍ରକାର ବର୍ଣ୍ଣିତ ଓ ବର୍ଣ୍ଣନୋପଯୁକ୍ତ) ବିଷୟାଦିର ନ୍ୟାସର ନାମ ସନ୍ନ୍ୟାସ । କହିବାକୁ ହେଲେ କୁହାଯିବ, ସନ୍ନ୍ୟାସ ସର୍ବୋତ୍କୃଷ୍ଟ ଶେଷସାର ଆତ୍ମଧର୍ମ । ଦେଖିଲା-ବେଳକୁ ବୁଝି ବସିଲେ ସ୍ଥିର କରଯିବ ଯେ ଏହା ମନାତୀତ ଓ ବଚନାତୀତ ଅଟେ । ତେବେ କଅଣ କିଛି ନୁହେଁ ? ଏହି ଗୃହବର୍ତ୍ତୀ ଓ ଗୃହ ଆଶ୍ରମ ଉପରି ଆତ୍ମାର ସ୍ୱଭାବସିଦ୍ଧ ଅବସ୍ଥାର ଅନ୍ତର୍ଗତ ତାହା ଦେଖାଯାଉ ।

ଏହି ଆତ୍ମା ନବୀନ ସଂସାରପଦ ଗ୍ରହଣ କରିବାଦିନ ଅର୍ଥାତ୍ ମାତୃଗର୍ଭାସନ ତ୍ୟାଗକରି ଦ୍ୱିତୀୟ ମାତୃରୂପା ବସୁମାତାର କ୍ରୋଡ଼ ଆଶ୍ରୟ କରଣାନନ୍ତର ଭୌତିକ ସଂସାର ଦର୍ଶନ କରିବାକ୍ଷଣରୁ ଭୌତିକ ଦେହ ବିସର୍ଜନ ଓ ଚିରଦିନ ପାଇଁ ବିସ୍ମରଣ କରିବା ପର୍ଯ୍ୟନ୍ତ ଏ ମଧ୍ୟର ସର୍ବପ୍ରକାର ସଂସାରଲୀଳା ସ୍ଥୂଳତଃ ଚାରିଭାଗରେ ବିଭକ୍ତ କରାଯାଇ ପାରେ । ପ୍ରଥମ ଭାଗଟି ସେବାରେ ଅତିବାହିତ ହୁଏ ଅର୍ଥାତ୍ ଜନ୍ମପରେ ଶୈଶବାବସ୍ଥାରେ ଜ୍ଞାନାଜ୍ଞାନ, କର୍ତ୍ତବ୍ୟାକର୍ତ୍ତବ୍ୟ, ଧର୍ମାଧର୍ମ ଭେଦାଭେଦ କିଛି ଜ୍ଞାନ ନ ଥାଏ । କେବଳ ପୂର୍ବାଭ୍ୟସ୍ତ ସଂସ୍କାର ବଶରୁ ମଳମୂତ୍ର ତ୍ୟାଗାଦି, ଦର୍ଶନ, ସ୍ପର୍ଶନ ଓ କ୍ରନ୍ଦନାଦି କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟର ବ୍ୟାପାରାଦିରେ ପ୍ରାଣ ନିଯୁକ୍ତ ଥାଏ, ଅର୍ଥାତ୍ ଇନ୍ଦ୍ରିୟସେବା ମାତ୍ର ସେହି ଅବସ୍ଥାରେ ସମ୍ପାଦିତ ହୁଏ; ଆଉ ଅନ୍ୟାନ୍ୟ ବିଷୟର ଜ୍ଞାନ ସେ ସମୟରେ ବଡ଼ ଗୁପ୍ତଭାବରେ ରହିଥାଏ । ମାତଙ୍ଗମ ପ୍ରବୃତ୍ତ୍ୟାତ୍ମକ ମାନବୀୟ ଅବସ୍ଥା ଏହାର ଅନୁରୂପ । ଏ ଅବସ୍ଥା ପୁଣି କୃତ୍ରିମ ନୁହେ ଅଥଚ ପ୍ରାକୃତିକ । ତେବେ ମାନବୀୟ ଅବସ୍ଥାର ପ୍ରଥମ ଭାଗଟି ଶୂଦ୍ରତା ବା ଇନ୍ଦ୍ରିୟ ସେବାକାରିତ୍ୱ । ଟିକିଏ ଜ୍ଞାନ ବୃଦ୍ଧି ହେବା ପରେ ବାଲ୍ୟାବସ୍ଥାରେ ସାମାନ୍ୟତଃ ଖାଦ୍ୟପେୟାଦି ଚିହ୍ନାଯାଇ ପାରେ ଓ ତତ୍ତତ୍ ପଦାର୍ଥାଦିର ସଂଗ୍ରହ ଏବଂ ଏତଦ୍ରୂପ ସଂଗ୍ରହ ବିଷୟରେ ଅଳ୍ପ ଅଳ୍ପ ଜ୍ଞାନ ସଂଗ୍ରହ ମଧ୍ୟ ସଙ୍ଗେ ସଙ୍ଗେ ଘଟିଥାଏ । ଏ ସଂଗ୍ରହର ନାମ ସଞ୍ଚୟନ ଅର୍ଥାତ୍ ଏହା ବୈଶ୍ୟ ବୃତ୍ତି । ଯୌବନାବସ୍ଥାଟି ତୃତୀୟ ଭାଗ । ଏଥିରେ ଜ୍ଞାନ ଓ ଅର୍ଥାଦି ଆଉ ପୋଷ୍ୟମାନଙ୍କର ରକ୍ଷଣ ପାଳନ ଏବଂ ପ୍ରତିପକ୍ଷର ଦମନାଦି ସାଧିତ ହୁଏ । ପୁଣି ଏତତ୍ ସାଧନୋପଯୋଗୀ ଶକ୍ତି ଓ ବଳ ମଧ୍ୟ ଦତ୍ତ ହୋଇଥାଏ, ଏହା କ୍ଷାତ୍ରଧର୍ମ ଅର୍ଥାତ୍ ଏହା କ୍ଷତ୍ରିୟବୃତ୍ତି ଅଟେ । ଚତୁର୍ଥଦଶାରେ ପୂର୍ବୋକ୍ତ ଦଶାତ୍ରୟର କାର୍ଯ୍ୟ ଶିଥିଳ ହୋଇଯାଏ । ଇନ୍ଦ୍ରିୟ ଦେହର ଦୌର୍ବଲ୍ୟ ଉପସ୍ଥିତ ହୁଏ । ସଂସାରୀୟ ବିଷୟ ପ୍ରବୃତ୍ତି ହ୍ରାସ ହୁଏ । କେବଳ ଜ୍ଞାନ ଅବଶିଷ୍ଟ ରହିଥାଏ । ଜ୍ଞାନପ୍ରଧାନ ଦଶାଟି ବ୍ରାହ୍ମଣର ବୃତ୍ତି । ଏହିରୂପେ ଜୀବନ୍ତକାଳ ଚାରିଗୋଟି ଦଶାରେ ବିଭକ୍ତ ଅଥଚ ଏହା ଅକୃତ୍ରିମ ଅଟେ ।

ସେହିପରି ଦୈହିକ ବୃତ୍ତି ମଧ୍ୟ ଚାରିଭାଗରେ ବିଭକ୍ତ ଅଟେ :—(୧) କର୍ମପ୍ରବୃତ୍ତି (୨) ଅର୍ଥ ସଂଗ୍ରହ ଓ ଜ୍ଞାନ ସଂଗ୍ରହ ପ୍ରବୃତ୍ତି (୩) ଜ୍ଞାନର ରକ୍ଷଣ, ପାଳନ ଓ ଦାନ ଏବଂ ପ୍ରତିକୂଳାଚାରର ଦମନଶକ୍ତି (୪) ଧର୍ମ, ଜ୍ଞାନାଦିର ପ୍ରବୃତ୍ତି; ଅର୍ଥାତ୍ (୧) କର୍ମେନ୍ଦ୍ରିୟ; କର୍ମେନ୍ଦ୍ରିୟମାନେ କେବଳ କର୍ମମୟ । ଏମାନେ ନିଜର ସୁଖ, ଦୁଃଖ, ଭଲ, ମନ୍ଦ କିଛି ବୁଝନ୍ତି ନାହିଁ । ଦେହସର୍ବାଙ୍ଗ ପ୍ରାଣ ଏବଂ ମନାଦିର ସୁଖସନ୍ତୋଷ ସାଧନାର୍ଥ ଏମାନେ ସର୍ବଦା କର୍ମଶୀଳ ସେବକ । ଏହି ସେବା ବା ପରିଚର୍ଯ୍ୟା ସଙ୍ଗେ ସଙ୍ଗେ ଏମାନଙ୍କର ସଜୀବତା ଯେତିକି ପରିମାଣରେ ରକ୍ଷିତ ହୁଏ ସେତିକି ଏମାନେ ଅଯାଚିତ-ଭାବରେ ପାଇଯାନ୍ତି, ଆଉ ଅଧିକ କିଛି ଏମାନଙ୍କର ଦାବିମଧ୍ୟରେ ନାହିଁ । ସବୁବେଳେ ପରସେବା ଅର୍ଥାତ୍ ଜ୍ଞାନେନ୍ଦ୍ରିୟ, ପ୍ରାଣ, ଅନ୍ତଃକରଣ ଏବଂ ସର୍ବାଧିକାରୀ ଜୀବାତ୍ମାର ସେବା ଏମାନଙ୍କର ଏକମାତ୍ର ଧର୍ମ ଓ ସେବା ମଧ୍ୟରେ ପରିଗଣିତ ଅଟେ । ସୁତରାଂ କର୍ମେନ୍ଦ୍ରିୟ ଏ ଦେହଯନ୍ତ୍ର ସମୁଦାୟ ମଧ୍ୟରେ ସେବାକାରୀ ଓ ପରିଚର୍ଯ୍ୟାତ୍ମକ କର୍ମକାରୀ ଅର୍ଥାତ୍ ଶୂଦ୍ରବୋଲି ପରିଗଣିତ । ଯେହେତୁ ଉଚ୍ଚ ଉଚ୍ଚ ଜାତିର ସେବା ଏମାନଙ୍କର କର୍ତ୍ତବ୍ୟକର୍ମ । (୨) ବୈଶ୍ୟ (ଜ୍ଞାନେନ୍ଦ୍ରିୟ), (୩) କ୍ଷତ୍ରିୟ ଅନ୍ତକରଣ ଓ ପ୍ରାଣ ଏବଂ (୪) ବ୍ରାହ୍ମଣ (ଜ୍ଞାନପ୍ରଧାନ) ଜୀବାତ୍ମା । ଏହି ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଜାତିତ୍ରୟର ସେବା ଶୂଦ୍ର (କର୍ମେନ୍ଦ୍ରିୟ) ସର୍ବଦା ନିର୍ବାହ କରୁଅଛି । ଏହି ଶୂଦ୍ର ଦେହରୂପ ସଂସାରର ଧାରଣା ଓ ଅବଲମ୍ବନ । ଏହା ଅଭାବେ ଦେହ ଅଚଳ ଓ କେବଳ ଦୁଃଖମୟ ହୋଇଥାନ୍ତା । ଦ୍ୱିତୀୟରେ ବୈଶ୍ୟ—ବୈଶ୍ୟ ଜ୍ଞାନେନ୍ଦ୍ରିୟ ଅଟେ । ଏହି ବୈଶ୍ୟ ଅର୍ଥାତ୍ ଜ୍ଞାନେନ୍ଦ୍ରିୟ, ଭୌତିକ ଜଗତରୁ ଶବ୍ଦ ସ୍ପର୍ଶାଦି ବୈଷୟିକ ଜ୍ଞାନକୁ ହୃଦୟର ପ୍ରୀତିଯୋଗ୍ୟ ଧନ ବା ଅର୍ଥରୂପେ ସଂଗ୍ରହ ଓ ସଞ୍ଚୟ କରି ଅନ୍ତଃକରଣଠାରେ ଆତ୍ମାର ସନ୍ତୋଷ ନିମିତ୍ତ ସେମାନଙ୍କୁ ଯୋଗାଇଦିଏ । ତୃତୀୟତଃ—କ୍ଷତ୍ରିୟ; ଅନ୍ତଃକରଣ ଓ ପ୍ରାଣ ଏକତ୍ର କ୍ଷତ୍ରିୟ ପଦବାଚ୍ୟ । ଏହି କ୍ଷତ୍ରିୟର ଏପରି ଶକ୍ତି ସ୍ୱଭାବସିଦ୍ଧ ଅଟେ ଯେ ଏହାର ବଳରେ ଶୂଦ୍ର ଓ ବୈଶ୍ୟ ଅର୍ଥାତ୍ (କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ଦୁଇଜାତି) ନିଜ ନିଜ କର୍ମ ଅର୍ଥାତ୍ ସେବା ଓ ଅର୍ଥସଞ୍ଚୟନ ସମାଧାନ କରୁଅଛନ୍ତି । ଏହି କ୍ଷତ୍ରିୟଦ୍ୱାରା ଦେହସଂସାରର ସଂରକ୍ଷଣ, ପାଳନ ଓ ଶାସନ କରାଯାଉଅଛି । ଆଉ ମଧ୍ୟ ବ୍ରାହ୍ମଣ (ଜୀବାତ୍ମା)ର ଜ୍ଞାନ, ଧର୍ମାଦି ସାଧନର ସାହାଯ୍ୟ ମିଳୁଅଛି । ଅର୍ଥାତ୍ ଶୂଦ୍ର, ବୈଶ୍ୟ ଓ ବ୍ରାହ୍ମଣାଦି ଜାତିସମୂହ ଯେ ଯାହା କାର୍ଯ୍ୟର ନିୟମିତ ସୀମାମଧ୍ୟରେ ରହିଅଛନ୍ତି । ଏମାନେ ମଧ୍ୟ ଯଥେଚ୍ଛଭାବରେ ସୁଖ, ଶାନ୍ତି ଉପଭୋଗ କରୁଅଛନ୍ତି । ଏହାପରେ ଚତୁର୍ଥରେ ବ୍ରାହ୍ମଣ ଅର୍ଥାତ୍ ଦେହସ୍ଥ ବା ଦେହୀ ଜୀବାତ୍ମା । ଜୈବଚିତ୍ ସଂବିତ୍ ଅର୍ଥାତ୍ ଆତ୍ମାର ଚିନ୍ମୟତ୍ୱ ବା ଆତ୍ମଜ୍ଞାନ ଧର୍ମ, ବୈରାଗ୍ୟ, ଦୟା, କ୍ଷମାଦି ଶୁଦ୍ଧ ସତ୍ତ୍ୱମୟ ପ୍ରବୃତ୍ତିର ଅଧିକାରୀ ଯେ ସେହି ବ୍ରାହ୍ମଣ ପଦବାଚ୍ୟ; ସୁତରାଂ ଏହି ଜ୍ଞାନ ପ୍ରବୃତ୍ତିମାନେ ପ୍ରକାରାନ୍ତରରେ ଦେହସଂସାର ପକ୍ଷରେ ଏବଂ ଉପସ୍ଥିତ ପ୍ରସଙ୍ଗାନୁବୋଧରେ ବ୍ରାହ୍ମଣଜାତି ବୋଲି କୁହାଯାଉଅଛି । ଏହିରୂପେ ଏ ଦେହର

ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ଜୀବଦ୍ଦଶାବସ୍ଥାଟି ଶୂଦ୍ରାଦି ଚାରିଜାତିରେ ବିଭକ୍ତ ଏବଂ ଦୈହିକ ସଂସ୍ଥାନ ସମ୍ବନ୍ଧୀୟ ପ୍ରବୃତ୍ତି ମଧ୍ୟ ଚାରିଜାତିରେ ବିଭକ୍ତ ବୋଲି ପ୍ରଦର୍ଶନ କରାଗଲା ।

ବୁଝିବାକୁ ହେବ ଯେ ଏହି ଜୀବାତ୍ମା ଏହି ଦେହରେ କର୍ମେନ୍ଦ୍ରିୟଦ୍ୱାରା କର୍ମ ସାଧିତ ହେଉଥିବା ଅବସ୍ଥା ଅପେକ୍ଷାରେ ଶୂଦ୍ର; ଜ୍ଞାନେନ୍ଦ୍ରିୟ ଦ୍ୱାରା ବୈଷୟିକ ଜ୍ଞାନ ସଞ୍ଚୟ ବା ସଂଗ୍ରହାବସ୍ଥା ଉପଲକ୍ଷରେ ବୈଶ୍ୟ; ପ୍ରାଣାନ୍ତଃକରଣ ଦ୍ୱାରା କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଉପଭୁକ୍ତ ହେଉଥିବା ଅବସ୍ଥା ଲକ୍ଷରେ କ୍ଷତ୍ରିୟ ଏବଂ ଜ୍ଞାନ ଧର୍ମାଦି ଚର୍ଚ୍ଚା ଓ ଅଭ୍ୟାସ କରାଯାଉଥିବା ଅବସ୍ଥା ପକ୍ଷରେ ବ୍ରାହ୍ମଣ ଅଟେ । ଏହିରୂପେ ଦୈହିକ ପ୍ରକୃତିଗତ ସଂସ୍ଥାନ ଉପରୋକ୍ତ ଜାତିଚତୁଷ୍ଟୟ ବିଭାଗର ବଶବର୍ତ୍ତୀ ଅଟେ ଏବଂ ଏହି ବିଭାଗ ନୈସର୍ଗିକ ବା ପ୍ରାକୃତିକ ଅଟେ । ପରନ୍ତୁ ଲୋକ କଳ୍ପିତ ବା କୃତ୍ରିମ ନୁହେ । ପୁଣି ଏହି ଦୈହିକ ପ୍ରକୃତିଗତ ସଂସ୍ଥାନର ବିଭାଗାନୁଯାୟୀ ଆତ୍ମା ପ୍ରାକୃତିକ ଅଭ୍ୟାସ-ବଶତଃ ଚତୁର୍ଧା ବିଭକ୍ତ ହୋଇ ଶୂଦ୍ରାଦି ଜାତିଚତୁଷ୍ଟୟରେ ବିଭକ୍ତ ହୋଇଅଛନ୍ତି । (୧) ଏହି କର୍ମପ୍ରଧାନ ଶୂଦ୍ରତ୍ୱର ଲକ୍ଷଣ ଅର୍ଥାତ୍ କର୍ମେନ୍ଦ୍ରିୟଯୁକ୍ତ କର୍ମବାହୁଲ୍ୟ ଶ୍ରମଙ୍କାରୀ ଆଧ୍ୟାତ୍ମିକ ସଂସାରରେ ଜ୍ଞାନଦୃଷ୍ଟିରେ ଆତ୍ମାପକ୍ଷରେ ଶୈଶବାବସ୍ଥା ଅଟେ । (୨) ଏହି ସଂଗ୍ରହ ବା ସଞ୍ଚୟନ ପ୍ରଧାନ ବୈଶ୍ୟତ୍ୱର ଲକ୍ଷଣ ଅଟେ । ଜ୍ଞାନେନ୍ଦ୍ରିୟର ସହାୟତା ଦ୍ୱାରା ବୈଷୟିକ ଜ୍ଞାନ ସହକାରେ କୃଷି, ବାଣିଜ୍ୟ, ବେପାରାଦି ସମ୍ପାଦନ ପ୍ରଧାନ ପ୍ରବୃତ୍ତି ଆତ୍ମରାଜ୍ୟରେ ଆତ୍ମଦୃଷ୍ଟିରେ ଆତ୍ମାପକ୍ଷରେ ଆତ୍ମାର ବାଲ୍ୟାବସ୍ଥା ଅଟେ । (୩) ଏହି ରକ୍ଷଣ, ପାଳନ ବା ଦାନାଦି ସହିତ ବିଧାନ ନିୟମାଦିର ପ୍ରଭୁତ୍ୱ ଲକ୍ଷଣ ଅର୍ଥାତ୍ କ୍ଷତ୍ରିୟତ୍ୱ ବା କ୍ଷାତ୍ରଶକ୍ତି, ଜ୍ଞାନରାଜ୍ୟରେ, ଜ୍ଞାନଦୃଷ୍ଟିରେ ଆତ୍ମାର ଆତ୍ମଜ୍ଞାନ ତୁଳନାରେ ଯୌବନାବସ୍ଥା ଅଟେ । (୪) ଏହି ଧର୍ମ-ଜ୍ଞାନାଦି ପ୍ରଧାନ ଧର୍ମତ୍ୱର ଓ ବ୍ରହ୍ମତ୍ୱର ଲକ୍ଷଣ ଆତ୍ମଜଗତରେ ଆତ୍ମଜ୍ଞାନ ଦୃଷ୍ଟିରେ ଆତ୍ମାର ପରିପାକ ବା ବାର୍ଦ୍ଧକ୍ୟ ଦଶା ଅଟେ । ଏହି ବାର୍ଦ୍ଧକ୍ୟ ଆତ୍ମଜ୍ଞାନାବସ୍ଥାର ନାମାନ୍ତର ବୋଲି ବୁଝିବାକୁ ହେବ ।

ପ୍ରଣିଧାନ ପୂର୍ବକ ବୁଝିବାକୁ ଗଲେ ବୁଝା ଯାଉଅଛି ଆତ୍ମପ୍ରକୃତି ସ୍ୱତଃ ଚତୁର୍ଧା ବିଭକ୍ତ ହୋଇଅଛି । ଯଥା (୧) କର୍ମେନ୍ଦ୍ରିୟ (୨) ଜ୍ଞାନେନ୍ଦ୍ରିୟ (ଏତଦୁଭୟ ଇନ୍ଦ୍ରିୟ ସହିତ ଉଭୟର ଆଧାର ପାଞ୍ଚଭୌତିକ ଦେହକୁ ଏତଦନ୍ତର୍ଗତ କରି ରଖାଯାଇଅଛି) । କାରଣ କର୍ମ ଏବଂ ଜ୍ଞାନ ତୁଳନାରେ ଦେହ ଏହି ଇନ୍ଦ୍ରିୟମାନଙ୍କ ଯୋଗେ ଶରୀର-ପଦବାଚ୍ୟ ହୋଇଅଛି । ନଚେତ୍ ଏ ଦେହ ସାଧାରଣ ମୃତ୍‌ଖଣ୍ଡ ଭିନ୍ନ ଆଉ କିଛି ନୁହେ । (୩) ପ୍ରାଣାନ୍ତଃକରଣ ଏବଂ ଚତୁର୍ଥ ଜୀବୋପାଧିରୂପ ଜ୍ଞାନ । କର୍ମେନ୍ଦ୍ରିୟରେ ଜ୍ଞାନ ନାହିଁ । ସୁତରାଂ ଏହା ଜ୍ଞାନେନ୍ଦ୍ରିୟଠାରୁ ନିକୃଷ୍ଟ । (୨) ଜ୍ଞାନେନ୍ଦ୍ରିୟ ବୈଷୟିକ ଜ୍ଞାନର ସ୍ଥାନ, ଏଥିରେ କର୍ତ୍ତୃତ୍ୱ, ଭୋକ୍ତୃତ୍ୱାଦି ଜ୍ଞାନ ନ ଥିବାରୁ ଏହା ଅନ୍ତଃକରଣଠାରୁ ନିକୃଷ୍ଟ (୩) ଅନ୍ତଃକରଣ ଓ ପ୍ରାଣ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦିବିଶିଷ୍ଟ ଉପାଧି ସୁତରାଂ ଏହା

ଉପାଧିଧାରୀ ଆତ୍ମାଠାରୁ ନିକୃଷ୍ଟ । (୪) ଜୀବୋପାଧିରୂପ ଜ୍ଞାନ, ଏହା ଆତ୍ମଜ୍ଞାନର ସମୋପମ, ସୁତରାଂ ଏହା ସର୍ବୋତ୍କୃଷ୍ଟ ।

ଏହିରୂପେ ଆତ୍ମ ପ୍ରକୃତି ଉତ୍କୃଷ୍ଟାପକୃଷ୍ଟରୂପେ ଚାରିଭାଗରେ ସ୍ୱୟଂ ସଂସାରରେ ରଙ୍ଗ ପ୍ରଦର୍ଶନାର୍ଥ ବିଭକ୍ତ ହୋଇଅଛି । ଏହି ନିୟମାନୁସାରେ ଉତ୍କୃଷ୍ଟାପକୃଷ୍ଟ ଭାବେ ଦୈହିକ ପ୍ରକୃତି-ଗତ ଅବସ୍ଥା ମଧ୍ୟ, ଶୈଶବ, ବାଲ୍ୟ, ଯୌବନ ଏବଂ ବାର୍ଦ୍ଧକ୍ୟାଦି ଚାରିଭାଗରେ ବିଭକ୍ତ ହୋଇଅଛି । ଏହି ଆତ୍ମପ୍ରକୃତି ଓ ଦୈହିକ ପ୍ରକୃତି ପ୍ରତ୍ୟେକେ, ଉତ୍କୃଷ୍ଟାପକୃଷ୍ଟଭାବରେ ଚାରି ଚାରି ପ୍ରକାରରେ ବିଭକ୍ତ ହୋଇ କ୍ରମେ କ୍ରମେ—(୧) ଶୈଶବଟି କର୍ମ (୨) ବୈଷୟିକ ଜ୍ଞାନଟି ବାଲ୍ୟ (୩) ଉକ୍ତ କର୍ମଜ୍ଞାନର ପ୍ରବୃତ୍ତିଟି କ୍ଷତ୍ରିୟ ଅର୍ଥାତ୍ ଯୌବନ (୪) ଜ୍ଞାନ ଧର୍ମାଦି ସମନ୍ୱିତ ଆତ୍ମଜ୍ଞାନାଦିର ଅବସ୍ଥାଟି ବାର୍ଦ୍ଧକ୍ୟ ଇତ୍ୟାଦି—ଚାରି ପ୍ରକାର ଆକାରରେ ପ୍ରକଟିତ ହୋଇଅଛନ୍ତି । ଏହି ପ୍ରତ୍ୟେକ ପ୍ରତ୍ୟେକ ଭାଗରେ (୧) କର୍ମ ଅର୍ଥାତ୍ ଶ୍ରମଜୀବୀତ୍ୱ ବା ଶୂଦ୍ରତ୍ୱ (୨) ବୈଷୟିକ ଜ୍ଞାନ ଅର୍ଥାତ୍ ପରୋକ୍ତ ସଞ୍ଚୟନାଦି ଅର୍ଥାତ୍ ବୈଶ୍ୟତ୍ୱ (୩) ପ୍ରବୃତ୍ତି ଅର୍ଥାତ୍ କ୍ଷତ୍ରିୟତ୍ୱ (୪) ଜ୍ଞାନ ଧର୍ମଯୁକ୍ତ ଆତ୍ମଜ୍ଞାନ ଅର୍ଥାତ୍ ବ୍ରହ୍ମତ୍ୱାଦି ଉପାଧି ଚତୁଷ୍ଟୟ କ୍ରମିକ ଭାବରେ ଆରୋପ କରାଯାଇଅଛି ।

ଦେଖାଗଲା ଯେ ଏହି ଚାରିଭାଗ ମଧ୍ୟରୁ ଏକଭାଗର କ୍ରିୟା ବା ଅବସ୍ଥାଦି ଅନ୍ୟଭାଗର ଅବସ୍ଥାରେ ବା କ୍ରିୟାରେ ସମ୍ପୂର୍ଣ୍ଣରୂପେ ନାହିଁ, ଅଥବା ଏକଭାଗର ଅବସ୍ଥାଦି ସହିତ ଅନ୍ୟାନ୍ୟ ତିନିଭାଗର ଅବସ୍ଥାଦିର ମେଳ ନାହିଁ । ସେହିପରି ଶୂଦ୍ରତ୍ୱ ବା ଶୂଦ୍ର ସହିତ ବୈଶ୍ୟତ୍ୱ ବା ବୈଶ୍ୟର ଯେପରି ମେଳ ନାହିଁ । ଅର୍ଥାତ୍ କର୍ମେନ୍ଦ୍ରିୟର ଧର୍ମ ସଙ୍ଗେ, ଜ୍ଞାନେନ୍ଦ୍ରିୟର ଧର୍ମସଙ୍ଗେ ସେହିପରି ମଧ୍ୟ ମେଳ ନାହିଁ । କର୍ମେନ୍ଦ୍ରିୟରେ ଯାହା ହେଉଅଛି, ଜ୍ଞାନେନ୍ଦ୍ରିୟରେ ତାହା ହେଉନାହିଁ । ଏହିପରି ଚାରିଭାଗଯାକ ପରସ୍ପର ଭେଦସମ୍ପନ୍ନ ଅଟନ୍ତି । ଅତଏବ ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ ଏବଂ ବ୍ରାହ୍ମଣ, ଏହି ଚାରୋଟି ପୃଥକ୍ ପୃଥକ୍ ଉପାଧି ନାମ ବା ଜାତିଗତ ଭେଦ କୃତ୍ରିମ ବା କାଳ୍ପନିକ ହୋଇ ନ ପାରେ, ଏହା ପ୍ରାକୃତିକ । କଥା ଏତିକି ଯେ, ଏହି ଚାରିଭାଗ ମଧ୍ୟରେ ଏକଭାଗରେ ଅନ୍ୟ ତିନିଭାଗର ସମ୍ପର୍କ ଯେ ଏକାବେଳକେ କିଛି ନାହିଁ, ଏହା ନୁହେ । ପ୍ରତି ଏକ ଏକ ଭାଗ ସହିତ ଅନ୍ୟ ତିନିଭାଗର ନିତ୍ୟ ସମ୍ବନ୍ଧ, କାହାକୁ ଛାଡ଼ି କେହି ରହି ପାରିବେ ନାହିଁ । ପ୍ରତ୍ୟେକ ପ୍ରଧାନ ଭାଗ ସହିତ ଅନ୍ୟ ତିନିଭାଗ ଯଥାନ୍ୟୂନ ପରିମାଣରେ ସହଯୋଗ କରିଅଛି । ଅର୍ଥାତ୍ ଶୂଦ୍ରତ୍ୱ ବା କର୍ମ ବା ଶୈଶବକାଳ ସହିତ ଅପରାପର ତିନିର ସମ୍ବନ୍ଧ ଦୃଢ଼ଭାବେ ଆବଦ୍ଧ ରହିଅଛି । ଯେ ଯାହାକୁ ଯେଉଁ ପରିମାଣରେ ସାହାଯ୍ୟ କରିବା ଉଚିତ, ତାହା ସେହିପରି ହେଉଅଛି ।

ଏହିପରି ଚାରିଭାଗ କ୍ରମେ ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଚାରିଭାଇପରି ଏକ ପରିବାରଭୁକ୍ତ ଅଟନ୍ତି । ଅର୍ଥାତ୍ ସବୁଭାଗଯାକ ଏକ ପ୍ରକୃତିର ଏବଂ ଏକ ଆତ୍ମାର,

ଅଥଚ ଏକ ଦେହର ଯଥା ଯଥା ଭାଗ ବା ସ୍ଥାନ ଅଧିକାର କରିଅଛନ୍ତି । ମାତ୍ର ଏହା ବୋଲି କର୍ମେନ୍ଦ୍ରିୟ ଜ୍ଞାନେନ୍ଦ୍ରିୟ ନୁହେ । ଆଉ ଏ ଉଭୟ ଅନ୍ତଃକରଣ ପ୍ରାଣ ନୁହନ୍ତି ବା ଏ ତିନହେଁ ଜ୍ଞାନଧର୍ମାଦି ନୁହନ୍ତି । ଅର୍ଥାତ୍ ଶୂଦ୍ର ବୈଶ୍ୟ ନୁହେ ବା ବୈଶ୍ୟ କ୍ଷତ୍ରିୟ ନୁହେ । (୧) ଶୂଦ୍ର ବୃତ୍ତିର ଅର୍ଥ କର୍ମେନ୍ଦ୍ରିୟ ସମ୍ବନ୍ଧ କର୍ମ ବା ଶ୍ରମଜୀବିତ୍ୱ ଏବଂ ଜ୍ଞାନାବସ୍ଥା-ତୁଳନାରେ ଶୈଶବ (୨) ବୈଶ୍ୟ ବୃତ୍ତିର ଅର୍ଥ ଜ୍ଞାନେନ୍ଦ୍ରିୟ ସମ୍ବନ୍ଧ ବୈଷୟିକ ଜ୍ଞାନ ବା ଧନଧାନ୍ୟାଦି ଓ ବ୍ୟାପାରାଦି ସଂଗ୍ରହାତ୍ମକ ଜ୍ଞାତୃତା । କ୍ଷତ୍ରିୟ ଜ୍ଞାନ ତୁଳନାରେ ଏହା ବାଲ୍ୟାବସ୍ଥା । (୩) କ୍ଷତ୍ରିୟ ବୃତ୍ତିର ଅର୍ଥ ପ୍ରାଣାନ୍ତଃକରଣ ବୃତ୍ତି; ଅର୍ଥାତ୍ ପ୍ରଥମ ଓ ଦ୍ୱିତୀୟ ଉଭୟର ପ୍ରଭୁତ୍ୱ ଏବଂ ଚତୁର୍ଥ ବୃତ୍ତିର ପୋଷକତ୍ୱ ଅଥଚ ସବୁ ପ୍ରକାର ବୃତ୍ତିର ରକ୍ଷଣ-ଉପଯୋଗୀ ଶକ୍ତିଶାଳୀତ୍ୱ; ଜ୍ଞାନପକ୍ଷରେ ଏହା ଯୌବନାବସ୍ଥା । ପ୍ରାଣ ଓ ଅନ୍ତଃକରଣର ଧର୍ମ ଏହିପରି କର୍ତ୍ତୃତ୍ୱ ଓ ଜ୍ଞାତୃତ୍ୱାଦିମାନ ଅଟେ ବୋଲି ଏହା ସବୁ ବିଷୟର ନିୟାମକ । ଅତଏବ ଏସବୁ କ୍ଷତ୍ରିୟ ବୃତ୍ତିର ଅର୍ଥକୁ ପୂରଣ କରୁଅଛି । (୪) ବ୍ରାହ୍ମଣ ବୃତ୍ତିର ଅର୍ଥ ଆତ୍ମଜ୍ଞାନଶୀଳତା, ଉପଦେଶାଦି ଏବଂ ଧର୍ମ ଜ୍ଞାନାଦି ଏହାର ଧର୍ମ । ଜ୍ଞାନ ସମ୍ବନ୍ଧୀୟ ଅବସ୍ଥା ତୁଳନାରେ ଏହା ପରିପାକାବସ୍ଥା । ଏ ଅବସ୍ଥାନର ପୂର୍ବ ତିନି ଅବସ୍ଥାର ପ୍ରବୃତ୍ତି ସ୍ୱତଃ ନିବୃତ୍ତି ପ୍ରାପ୍ତ ହୋଇଥାଏ । ଏହି ପ୍ରକାରେ ଅନ୍ୟମାନେ ସଂଘଟିତ ହୁଅନ୍ତି । ଭଲରୂପେ ମନରେ ରଖାଯାଇଥାଉ ଯେ, ଆତ୍ମପ୍ରକୃତି ଓ ଦୈହିକ ପ୍ରକୃତି ଏବଂ ପ୍ରକୃତିଗତ ଧର୍ମ, କର୍ମଜ୍ଞାନ ଆଉ ଅବସ୍ଥାଦି ସମୁଦାୟ ବିଷୟ ବୃତ୍ତିଭେଦରେ ପୃଥକ ପୃଥକ ପ୍ରକାର ଭିନ୍ନ ଭିନ୍ନ ଭାବରେ ବିଭକ୍ତ ଅଟେ । ସେହି ସେହି ଭାଗମାନଙ୍କର ନାମ ଯଥାକ୍ରମେ ଶୂଦ୍ର ଜାତି, ବୈଶ୍ୟ ଜାତି, କ୍ଷତ୍ରିୟ ଜାତି ଏବଂ ବ୍ରାହ୍ମଣ ଜାତି ଅଟେ ।

ବର୍ତ୍ତମାନ ସମୁଦାୟ ମାନବ ଜାତିର ସମଷ୍ଟ୍ୟାତ୍ମକ ବିଶ୍ୱମୂର୍ତ୍ତିକୁ ଏକ ବିରାଟ୍-କଳେବର ରୂପେ ଦର୍ଶନ କରାଯାଉ । ଏହି ପରିଦୃଶ୍ୟମାନ ଭୂଗୋଳକକୁ ଏକ ପବିତ୍ର ତୀର୍ଥ ବା ପୁଣ୍ୟ କ୍ଷେତ୍ରରୂପେ ସ୍ଥିର କରି ଏଥିରେ ଏହି ବିଶ୍ୱମୂର୍ତ୍ତି ଦଣ୍ଡାୟମାନ ହୋଇ-ଅଛନ୍ତି ବୋଲି ବିବେକ ଚକ୍ଷୁରେ ଅବଲୋକନ କରି ପ୍ରଣାମ କରାଯାଉ । ଏହି ବିରାଟ-ମୂର୍ତ୍ତି ବା ବିଶ୍ୱରୂପ ଦର୍ଶନ କରି ଶିକ୍ଷା କରିବାକୁ ହେବ ଯେ, ଏହି ଦେବ ଜ୍ଞାନାଂଶରେ ଏକ ହେଲେ ମଧ୍ୟ ପ୍ରକୃତିଗତ, ସ୍ୱଭାବଗତ, କର୍ମଗତ ଏବଂ ଗୁଣାନୁସାରୀ ଭେଦଗତ ଦୃଷ୍ଟିରେ ଚତୁର୍ଧାରୂପ ଧାରଣ ପୂର୍ବକ ସଂସାରୀୟ ଲୋକଯାତ୍ରା ନିର୍ବାହାର୍ଥ ଭୌତିକ-ଜଗତ ପୃଷ୍ଠରେ ବିରାଜିତ ହୋଇ ମାନବାକାରରେ ସଂସାରକୁ ପୂର୍ଣ୍ଣ କରି କର୍ମ, ଜ୍ଞାନ, ଶକ୍ତି, ସାମର୍ଥ୍ୟ ଏବଂ ଆତ୍ମାନାତ୍ମ ବିବେକାଦି ଦ୍ୱାରା ସର୍ବପ୍ରକାର ଲୀଳା ପ୍ରଦର୍ଶନ କରାଉ-ଅଛନ୍ତି । ଅଥଚ ବ୍ୟକ୍ତିଗତ ଭେଦମୟ ଭାବରେ ସ୍ୱୟଂ ମଧ୍ୟ ଦର୍ଶନ କରୁଅଛନ୍ତି । କର୍ମ ଜ୍ଞାନାଦି ଅଭାବରେ ଏହି ସଂସାର କେବଳ ଜଡ଼ ଭୌତିକ ଆକାର ଧରି ଶ୍ମଶାନ ପରି ହୋଇଥାଆନ୍ତା । ସେହି ଚତୁର୍ଧାରୂପ କଅଣ ? ଏହି ଅସଂଖ୍ୟ କୋଟି ମାନବ ମଧ୍ୟରେ ସମସ୍ତେ ବା ପ୍ରତ୍ୟେକରେ, ଏକ ପ୍ରକାର କର୍ମୀ ବା ଏକପ୍ରକାର ଜ୍ଞାନୀ କିମ୍ବା ଏକ ପ୍ରକାର

ଶକ୍ତିଶାଳୀ ନୁହନ୍ତି । ଆଉ ମଧ୍ୟ ପ୍ରାକୃତିକ ନିୟମାନୁସାରେ ସେପରି ହୋଇପାରିବ ନାହିଁ । (୧) ଏକବିଭାଗ କେବଳ କର୍ମ, ପ୍ରାଣଭଳି ଅଟନ୍ତି, ଅର୍ଥାତ୍ ଅଳ୍ପ ଶିକ୍ଷା ଜ୍ଞାନଶିକ୍ଷା ପକ୍ଷରେ ସହଜବୋଧଗମ୍ୟ ଥିବାରୁ ଅନେକେ ଦେଖିଶିଖି କର୍ମ କରି ପାରନ୍ତି । ଏହି ଶ୍ରେଣୀଭୁକ୍ତ ଲୋକଙ୍କଦ୍ୱାରା, ସେବା ଶୁଶ୍ରୂଷାଦି ଭୃତ୍ୟଗିରିଠାରୁ ଆରମ୍ଭ କରି କୃଷିକାର୍ଯ୍ୟାଦି ପର୍ଯ୍ୟନ୍ତ ନାନାପ୍ରକାର ଦୈହିକ ଅଙ୍ଗଚାଳନା ସମ୍ବନ୍ଧୀୟ କର୍ମ ନିର୍ବାହିତ ହୋଇଥାଏ । ଏମାନେ ଶୂଦ୍ରଜାତିଭୁକ୍ତ । (୨) ଆଉ ଏକଶ୍ରେଣୀ ଏପରି ଏକପ୍ରକାର ବ୍ୟାବହାରିକ ବୁଦ୍ଧିସମ୍ପନ୍ନ ଯେ, ସେମାନେ ବେପାର ବାଣିଜ୍ୟାଦିରେ ଧନ ସଞ୍ଚୟ କରିବାରେ ବଡ଼ ନିପୁଣ । ତଦ୍ରୂପ କର୍ମ ଓ ଜ୍ଞାନଶୀଳ ସମ୍ପ୍ରଦାୟ ବୈଶ୍ୟଜାତି । (୩) ଅପର ଶ୍ରେଣୀ ବଳବୀର୍ଯ୍ୟ-ପ୍ରଧାନ ଏବଂ ଶକ୍ତି ସାମର୍ଥ୍ୟାଦିରେ ବଳୀୟାନ, ମଧ୍ୟ ଅନୁରୂପ ବୁଦ୍ଧିସମ୍ପନ୍ନ ଅଟନ୍ତି । ସେହିମାନେ ସବୁ ସମ୍ପ୍ରଦାୟର ଧନ, ମାନ, ପ୍ରାଣ ଏବଂ ଧର୍ମାଦି ରକ୍ଷାର ଉପଯୁକ୍ତ ହୁଅନ୍ତି; ସେମାନେ କ୍ଷତ୍ରିୟ ଜାତି । (୪) ଧର୍ମଜ୍ଞାନ ବା ଆତ୍ମ ବିବେକାଦି ଅଭାବରେ କୌଣସି କାର୍ଯ୍ୟର ଯଥାବିଧିବଦ୍ଧ ନିୟମ ରକ୍ଷା କରିବା ଅସଂଗତ; ସୁତରାଂ ଜ୍ଞାନ-ଧର୍ମାଦିରେ ଶିକ୍ଷିତ ହେବା ଅନ୍ୟ ଏକ ଶ୍ରେଣୀର ଆବଶ୍ୟକ । ଏମାନେ ସ୍ୱୟଂ ଜ୍ଞାନ-ଧର୍ମ-ସାଧନାଦିରେ ସିଦ୍ଧ; ଅଥଚ ତଦ୍ରୂପ ସତ୍ଚର୍ଚ୍ଚା ଓ ସଦାଦର୍ଶ ଏବଂ ସଦୁପଦେଶଦ୍ୱାରା ଅନ୍ୟାନ୍ୟ ସମ୍ପ୍ରଦାୟର ମଙ୍ଗଳ ବିଧାନକର୍ତ୍ତା ଅଟନ୍ତି; ଆଉ ସଂସାରର ମଙ୍ଗଳ ବିଧାନ ନିମିତ୍ତ ଭଗବତ୍ ପ୍ରୀତି ସମ୍ପାଦନ ଅର୍ଥରେ ନାନାବିଧ ସଦନୁଷ୍ଠାନ ମଧ୍ୟ କରନ୍ତି । ଏହି ଶ୍ରେଣୀୟ ଲୋକ ବ୍ରାହ୍ମଣ ନାମରେ ଖ୍ୟାତ ।

ଏହି ଜାତିବିଭାଗ ମାଟିଦେହ ଲକ୍ଷ୍ୟରେ କେବଳ ଆରୋପିତ ହେବାର ନୁହେଁ । ଏହା ପ୍ରକୃତିଭେଦରେ, ସ୍ୱଭାବଭେଦରେ, ଗୁଣ-କର୍ମ ଓ ଜ୍ଞାନାଦି ଭେଦରେ ପ୍ରବୃତ୍ତିର ଯେଉଁ ଭେଦ ସେହି ପ୍ରବୃତ୍ତିଗତ ଭେଦ ଅନୁସାରେ ନିର୍ଣ୍ଣୀତ ହୋଇଅଛି । ପୂର୍ବେ କୁହାଯାଇଅଛି, ଏବେ ଆଉ ଥରେ ମନେ କରାଯାଉ, ଯାହାର ପ୍ରଧାନତଃ କର୍ମପ୍ରବୃତ୍ତି ସେ 'ଶୂଦ୍ର' । ସେହି ପ୍ରବୃତ୍ତିବଶରେ ସେହି ଲୋକ ଆଜୀବନକାଳ ପ୍ରଧାନତଃ କର୍ମ ଅର୍ଥାତ୍ ଦୈହିକ ପରିଶ୍ରମ କରିବାକୁ ପ୍ରସ୍ତୁତ ଓ ତାହାର ପ୍ରବୃତ୍ତି ସେହି କାୟିକ ପରିଶ୍ରମକୁ ସର୍ବଦା ଲୋଡ଼ୁଥାଏ । ଆଉ ଅନ୍ୟାନ୍ୟ ପ୍ରବୃତ୍ତିନିୟ ତାହାଠାରେ ପ୍ରାୟ ଅଭାବ । ସୁତରାଂ ସେମାନେ ଶୂଦ୍ରଜାତି-ଭୁକ୍ତ ଅଟନ୍ତି । କୃଷିବାଣିଜ୍ୟ ଦ୍ୱାରା ଅର୍ଥସଂଚୟନ ପ୍ରବୃତ୍ତି ଯାହାର ପ୍ରଧାନ ସେ ବୈଶ୍ୟ ଅଟେ । ସେହି ଲୋକ ବଞ୍ଚିଥିବାଯାଏ ଏହି ବ୍ୟବସାୟାଦି ବ୍ୟତୀତ ଅନ୍ୟ ଆଡ଼େ ଅଧିକ ମନ ଦିଏ ନାହିଁ । ପ୍ରବୃତ୍ତିଦ୍ୱାରା ସେ ସେହିପରି ଗଠିତ; ସୁତରାଂ ସେ ବୈଶ୍ୟଜାତିଭୁକ୍ତ ଅଟେ । ବଳ, ବୀର୍ଯ୍ୟ, ଶକ୍ତ୍ୟାଦି ଓ ଅନୁରୂପ ବୁଦ୍ଧି ସହକାରେ ସର୍ବସାଧାରଣର ସର୍ବ ବିଷୟ ସୁରକ୍ଷା ଓ ନିୟମାବଦ୍ଧ କରିବାର ପ୍ରବୃତ୍ତି ଯାହାର ପ୍ରଧାନ, ସେ କ୍ଷତ୍ରିୟ ନାମରେ ପରିଚିତ ଅଟେ ! ଏହି ପ୍ରବୃତ୍ତି ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ସେହି ଲୋକର ଜାଗରୁକ ଥିବାରୁ ସେ କ୍ଷତ୍ରିୟ ଜାତିଭୁକ୍ତ ଅଟେ । ଜ୍ଞାନପ୍ରବୃତ୍ତିପ୍ରଧାନ ବ୍ରାହ୍ମଣ; ସଂସ୍କାରଠାରୁ

ମରଣ ପର୍ଯ୍ୟନ୍ତ ସମୁଦାୟ ଜୀବନ ଏହି ଜ୍ଞାନଧର୍ମାଦି ଅନୁଷ୍ଠାନରେ ଯେ ସର୍ବଦା ନିଯୁକ୍ତ ଥାଏ, ସେ ବ୍ରାହ୍ମଣ ଜାତିର ଅନ୍ତର୍ଗତ ଅଟେ ।

(୧) କର୍ମ (୨) ବ୍ୟବସାୟାତ୍ମିକା ବୁଦ୍ଧି (୩) ରକ୍ଷଣ ପାଳନାଦି ସାମର୍ଥ୍ୟ ଏବଂ (୪) ଆତ୍ମଧର୍ମାଦି ଜ୍ଞାନ—ଏହି ପ୍ରକାର ଚତୁଷ୍ଟୟ ପ୍ରବୃତ୍ତିର ଆକାରରେ ପରିଣତ ହୋଇ ପୂର୍ବୋକ୍ତ ସେହି ବିଶ୍ୱରୂପାତ୍ମକ ଜଗଦ୍ଦେବଙ୍କ ଚରିତ୍ର ପ୍ରବୃତ୍ତିଗତ ଭେଦ ଅନୁସାରେ ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ ଓ ବ୍ରାହ୍ମଣାଦି ଚତୁଷ୍ଟୟ ବିଭାଗରେ ବିଭକ୍ତ କରି ହୋଇଅଛି । ମାଟି ଦେହଟି ଜାତି ନୁହେ କିମ୍ବା ଜାତି ଜନ୍ମଟି ମାଟି ଦେହ ନୁହେ । ପ୍ରବୃତ୍ତିଗତ ଭେଦ ଜାତିଭେଦର କାରଣ । ଗୋଟିଏ ଦେହରେ କାର୍ଯ୍ୟଭେଦରେ ଯେପରି ଏକାଧିକ ଅଙ୍ଗ-ପ୍ରତ୍ୟଙ୍ଗ ଓ ଇନ୍ଦ୍ରିୟମାନଙ୍କର ସ୍ଥାନ ନିର୍ଦ୍ଦିଷ୍ଟ ଅଛି, ସେହିପରି ଏକ ମାନବ ସମଷ୍ଟ୍ୟାତ୍ମକ ବିଶ୍ୱଦେହରେ ପ୍ରବୃତ୍ତି ଭେଦରେ ଓ ପ୍ରବୃତ୍ତ୍ୟାନୁଯାୟୀ ମିକଲ୍ପନାଦି ଭେଦରେ ଚାରି ଜାତୀୟ ମନୁଷ୍ୟ ନିରୂପିତ ହୋଇଅଛନ୍ତି । କର୍ମ-ବ୍ୟବସାୟଜ୍ଞାନ-ନିୟମପ୍ରବର୍ତ୍ତନ-ରକ୍ଷଣ ଶକ୍ତ୍ୟାତ୍ମକ ପ୍ରଭୁତ୍ୱ ଏବଂ ଆତ୍ମତତ୍ତ୍ୱଦାନ ଏହି ଚାରୋଟି ନାମାନ୍ତରରେ ହେଉ ବା ଭାବାନ୍ତରରେ ହେଉ ବା ଯେ କୌଣସି ରକମରେ ହେଉ ସଂସାରକୁ ଏହା ଧାରଣା । ନଚେତ୍ ମନୁଷ୍ୟ ସଂସାର, ଅସଂସାର ଓ ଅଚଳ ହେବ । ଅତଏବ ଏହା ଏକ ସ୍ୱାଭାବିକ ବ୍ୟବସ୍ଥା ଯେ କର୍ମକପ୍ରଚାରରେ ଆତ୍ମା ଶୂଦ୍ର, ବ୍ୟାପାରିକଳ୍ପ ଅବସ୍ଥାରେ ବୈଶ୍ୟ, ପ୍ରଭୁତ୍ୱ ପାଳନାଦିରେ କ୍ଷତ୍ରିୟ ଏବଂ ଜ୍ଞାନସାଧନ ଅବସ୍ଥାରେ ବ୍ରାହ୍ମଣ ପଦବାଚ୍ୟ ଅଟେ ।

ଏହିରୂପେ ମାନବଜାତି ଚାରିଗୋଟି ବର୍ଣ୍ଣରେ ବିଭକ୍ତ । ଏକଜାତୀୟ ଲୋକ ଅନ୍ୟ ତିନି ଜାତିର କର୍ମ ଆଚରିପାରେ ବା ନିର୍ବାହ କରିପାରେ—ଏହା ଏକାବେଳକେ ଅସମ୍ଭବ ହୋଇ ନ ପାରେ; ମାତ୍ର ଏହା ଅତି ବିରଳ ଅଟେ । ସୁତରାଂ ମୋଟ ଉପରେ ଏହା ବ୍ୟବସ୍ଥାବହିର୍ଭୂତ ବୋଲି ଗଣ୍ୟ ହୁଏ । ସଂସ୍କାର ମାର୍ଜନା ଓ ପାଳନା ବା ଚର୍ଚ୍ଚାଦି ବିଶେଷରେ ନୀଚ ଜାତି ଉଚ୍ଚତମ ସୋପାନର ଉପଯୁକ୍ତ ହୋଇପାରେ । ମାତ୍ର ଏହା ସାଧାରଣତଃ ଦେଖାଯିବାର ଦୃଷ୍ଟାନ୍ତ ବଡ଼ ଅଳ୍ପ । ସେହିପରି ଉଚ୍ଚ ଜାତି ମଧ୍ୟ ମନ୍ଦ ଅଭ୍ୟାସ, ମନ୍ଦଚର୍ଚ୍ଚା ଓ ଅପରିମାର୍ଜନା-ଦୋଷରେ ନୀଚରୁ ଅଧମ ହୋଇପାରେ । ସୁତରାଂ ସେ ଅଚ୍ଛୁତ, ଭ୍ରଷ୍ଟ ଓ ପତିତ । ଏ ହେତୁ ଏହି ଅବାନ୍ତର ବ୍ୟାପାର ମୋଟ ଉପରେ ବାଦ୍ ଦିଆଯାଇ ସାଙ୍କର୍ଯ୍ୟ ଦୋଷ ନିବାରଣାର୍ଥ ଚାରି ବର୍ଣ୍ଣର ବ୍ୟବସ୍ଥା ସମ୍ୟକ୍ ରୂପେ ବର୍ଦ୍ଧିତ ରହିଥିବା ସ୍ୱାଭାବିକ ଅଟେ । ଏ ସଂସାର ସାଗର ସ୍ୱରୂପ ଅନନ୍ତ ପାରାବାର ଏବଂ ବିପରୀତ ଧର୍ମ ଜାତିକର୍ମାଦିଙ୍କ ଦ୍ୱାରା ଘାତ-ପ୍ରତିଘାତ ବଳରେ ସର୍ବଦା ଉଚ୍ଚ ଓ ନୀଚାତ୍ମକ ବୈଷମ୍ୟ ସୃଷ୍ଟିର ନିଦାନ ଭୂମି ଅଟେ । ଏ ଅବସ୍ଥାରେ ଏଥିରେ କର୍ମଗତ ଓ ଜନ୍ମଗତ ସାମ୍ୟ ରକ୍ଷା କରିବା ବଡ଼ ସହଜ ନୁହେ । ଏହି କାରଣରୁ ଏ ଚାରିଜାତି ବହୁବିଧ ଉପଜାତିରେ ବିଭକ୍ତ ହେବା ସମ୍ଭବ ଥିବାରୁ କାର୍ଯ୍ୟତଃ ତାହାହିଁ ହୋଇଥିଲେ ସୁଦ୍ଧା ମୋଟ ଉପରେ ଚାରିବର୍ଣ୍ଣର ଅସ୍ତିତ୍ୱ ସେହିପରି ରହିଅଛି ଓ ରହିଥିବା ମଧ୍ୟ ସ୍ୱାଭାବିକ

ଏବଂ ବାଞ୍ଛନୀୟ ଅଟେ । ଏହି ବର୍ଣ୍ଣ ବିଶେଷରେ ରକ୍ଷା ଅର୍ଥରେ ଖାଦ୍ୟ ପେୟାଦି ଓ କର୍ମାକର୍ମାଦି, ବ୍ୟବସାୟଭେଦାଦି ଏବଂ ଧର୍ମବିଧି ସାଧନ ନିୟମାଦି, ଜାତିଗତ ସର୍ବପ୍ରକାର ବିଷୟ ସମ୍ବନ୍ଧୀୟ ବ୍ୟବସ୍ଥାଦି ବିଧିମୂଳ ରହିଅଛି । ଏହା ରକ୍ଷା କରିବା ବିଶ୍ୱ ପ୍ରକୃତିର ଧର୍ମ । ଜାତୀୟ ସଂସ୍କାର ଅନୁସାରେ କର୍ମବିଭାଗ, କର୍ମାନୁସାରେ ଖାଦ୍ୟପେୟାଦିର ବିଶେଷତ୍ୱ ଏବଂ ତଦ୍ରୂପ ବିନିଶେଷତ୍ୱ ସେହି ସେହି ସଂସ୍କାରାନୁବର୍ତ୍ତୀ ପ୍ରକୃତିର ଧର୍ମ । ଅତଏବ କର୍ମ ଏବଂ ଭୋଗାଦି ଜାତି ବିଶେଷ ଭେଦରେ ଧର୍ମର ଅନ୍ତର୍ଗତ । ଧର୍ମଛଡ଼ା ହୋଇ କିଛି ନାହିଁ ।

ଅଙ୍ଗପ୍ରତ୍ୟଙ୍ଗାଦିର ଯଥା ସ୍ଥାନକ୍ରମେ ସେ ସମସ୍ତର ସମଷ୍ଟି ଗୋଟିଏ ଦେହରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ସେ ସବୁ ଅଙ୍ଗପ୍ରତ୍ୟଙ୍ଗାଦିକୁ ଅଲଗା ଅଲଗା କରି ଦେଖିଲେ ଦେହାକାର ବିଶିଷ୍ଟ ପଦାର୍ଥର ପୃଥକ୍ ନିରୂପଣ ଅସମ୍ଭବ । ସେହି ବିରାଟମୂର୍ତ୍ତି ଚତୁର୍ବର୍ଣ୍ଣର ଯଥାସ୍ଥାନ, ଏବଂ ସମଷ୍ଟିଦ୍ୱାରା ତଦ୍ରୂପ ରୂପବାନ । ଏହି ବର୍ଣ୍ଣଚତୁଷ୍ଟୟ ଉକ୍ତ ବିଶ୍ୱମୂର୍ତ୍ତିର ଚତୁରଙ୍ଗ ସ୍ୱରୂପ ଅଟେ । ଉପବର୍ଣ୍ଣାଦିମାନେ ପ୍ରତ୍ୟଙ୍ଗ ସ୍ୱରୂପ ବୋଲି ଦେଖିବାକୁ ହେବ । ପ୍ରତ୍ୟେକ ଜାତି ଏବଂ ପ୍ରତ୍ୟେକ ଜାତିଭୁକ୍ତ ପ୍ରତ୍ୟେକ ଲୋକ ଏକ ଦେହର ଅଙ୍ଗପ୍ରତ୍ୟଙ୍ଗପରି ପରସ୍ପରସାପେକ୍ଷ । ସୁତରାଂ ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ କ୍ରିୟା ଯେପରି ସେହି ଏକ ଦେହର ଉପକାରାର୍ଥ ସାଧିତ ହୁଏ, ସେହିପରି ପ୍ରତ୍ୟେକ ଲୋକର କ୍ରିୟା, ଯତ୍ନାଦି ସେହି ଏକ ବିଶ୍ୱମୂର୍ତ୍ତିର ଉପକାର ଲକ୍ଷ୍ୟରେ ପ୍ରୟୋଗ କରିବା ବିଧେୟ । ଦେଖିବାକୁ ଗଲେ ଫଳରେ ତାହାହିଁ ଘଟୁଅଛି । ଅର୍ଥାତ୍ ପ୍ରତ୍ୟେକ ଲୋକର କ୍ରିୟାକଳାପାଦି ସଂସାରର ଉପକାର ସାଧନ କରୁଅଛି । ଜଣେ ମୂଲିଆର କର୍ମଦ୍ୱାରା ଯେତେ ଫଳଶସ୍ୟାଦି ଜାତ ହୁଏ, ସେ ସମସ୍ତ କେତେ କେତେ କାରଣରେ, କେତେ କେତେ ପ୍ରକାରରେ, କେତେ କେତେ ଲୋକମୁଖରେ ପଡ଼ିଯାଏ, ତାହାର ବର୍ଣ୍ଣନା ଅନାବଶ୍ୟକ ଅଟେ । ଏକାକୀ ହୋଇ ବାକି ସମୁଦାୟ ଲୋକ ମଧ୍ୟରୁ କାହାର କାହାରି ସହିତ ଏବଂ ସଂସାର ସହିତ ସମ୍ପର୍କ ଉଚ୍ଛେଦ କରିବା, ମନରେ କଳ୍ପନା କଲାବେଳକୁ ନିଜର ଅସ୍ତିତ୍ୱ ଲୋପ ହେଲାପ୍ରାୟ ଜଣା ପଡ଼ିଯିବ । ଜଣକର ଯେପରି ଅପରାପର କେତେଜଣଙ୍କ ସଙ୍ଗେ ସମ୍ପର୍କ, ସେହିପରି ଅପରାପରମାନଙ୍କର ଅନ୍ୟୋନ୍ୟଭାବରେ ସଙ୍ଗେ ସମ୍ପର୍କ । ଏହି ହିସାବରେ ସଂସାରମଧ୍ୟରେ ସମସ୍ତଙ୍କ ସଙ୍ଗେ ସମସ୍ତଙ୍କର ଏବଂ ସମସ୍ତଙ୍କର ପରିଶ୍ରମ ଲବ୍ଧ ଉପାର୍ଜନସଙ୍ଗେ ସମସ୍ତଙ୍କର ସମ୍ପର୍କ ବଡ଼ ଗୁପ୍ତ ରହି ସଂପୂର୍ଣ୍ଣଭାବରେ ଧ୍ରୁବ ନିଶ୍ଚିତ ସତ୍ୟ ଆକାରରେ ଅକ୍ଷୁଣ୍ଣଭାବରେ ବିରାଜମାନ ରହିଅଛି । କେବଳ ଅହଂକାରାତ୍ମକ ଓ ମମକାରାତ୍ମକ ମୋହମୟ ଅଭିମାନଦ୍ୱାରା ଦେହସ୍ଥ ଜୀବ ବିଭିନ୍ନଦୃଷ୍ଟି ହେତୁ ଆପଣାକୁ ପୃଥକ୍ କରି ଦେଖୁଅଛି । ତଦ୍ରୂପ ଦର୍ଶନରୁ ଆତ୍ମମୁଗ୍ଧ, ସ୍ୱେଚ୍ଛାଚାରୀ ହୋଇଅଛି । ଏହି ଦୁଷ୍ଟବୁଦ୍ଧିରେ ସମ୍ବୃତାନର ସମ୍ବୃତାନ ଅ-ଛି-ଛି-ଛି ।

ଅର୍ଥସଞ୍ଚୟୀ ତଦ୍ରୂପ ସଞ୍ଚିତ ଓ ରକ୍ଷିତ ଅର୍ଥର କୋଷାଧ୍ୟକ୍ଷ ବା ଜଗୁଆଳି ସଦୃଶ ଅଟେ । ସବୁ ସ୍ଥାବରାସ୍ଥାବର ସମ୍ପତ୍ତି ସେହି ବିଶ୍ୱ-ମୂର୍ତ୍ତିଙ୍କର ସ୍ୱତ୍ୱାଧିକାର

ଓ ଭୋଗାଧିକାରର ଅନ୍ତର୍ଗତ । ଏହି ବିଶ୍ୱସଂସାର ତାଙ୍କର ଅସୀମ ଭଣ୍ଡାର ବା କୋଷାଗାରରୂପେ ଅଖଣ୍ଡଭାବରେ ଦଣ୍ଡାୟମାନ ରହିଅଛି । କେତେ କେତେ ଧନଲୋଭୀ କୃପଣ ମଧୁମକ୍ଷିକାର ଶିକ୍ଷ୍ୟାନ୍ତ ଗ୍ରହଣ କରି ନାଚ ନାଚ କୁଦ କୁଦ ଏହି ବିଶ୍ୱପନ୍ଥ ଗର୍ଭରେ ଅଦୃଶ୍ୟ ହେଲେଣି, ତଥାଚ ଏହି ବିରାଟ ମୂର୍ତ୍ତିର କୌଣସି ଅଂଶ ବା ଅଙ୍ଗପ୍ରତ୍ୟଙ୍ଗ କୌଣସିଠାରୁ ଟିକିଏ ହେଲେ ଖଣ୍ଡିଆ ହୋଇନାହିଁ କି ହେବ ବି ନାହିଁ । ଧନସମ୍ପତ୍ତି ପ୍ରଭୃତି କେହି ବୁଜୁଳା ବାନ୍ଧି ନେଇଯାଇ ପାରିନାହିଁ । ଏ ଆଡ଼କୁ କେହି ବା ନେଲେ ନେଇପାରେ । ତେବେ ସବୁକାଳେ ଏହି ବିରାଟ ମୂର୍ତ୍ତି ଏହିପରି ମାନବ ଯନ୍ତ୍ରରୂପ ଅଙ୍ଗପ୍ରତ୍ୟଙ୍ଗସଂପନ୍ନ ଓ ଧନରତ୍ନାଦି ସଂପଦଯୁକ୍ତ ହୋଇ ରହିଅଛି ଏବଂ ଅନିମେଷ-ଲୋଚନରେ ଏହି ଲୋକ-ସଂସାରଯାତ୍ରା ଦର୍ଶନ କରୁଅଛି; ଆଉ ମଧ୍ୟ ଉପଦେଶଛଳରେ କହୁଅଛି, "ମନୁଷ୍ୟ ! ତୁମ୍ଭେମାନେ ମୋର ଯେ ଯେଉଁ ଅଙ୍ଗପ୍ରତ୍ୟଙ୍ଗରୂପେ ମୋହରଦ୍ୱାରା ଜନ୍ମତଃ ନିର୍ଦ୍ଦିଷ୍ଟ ଅଛ, ସେ ସେହି ସେହି ଅଙ୍ଗ-ପ୍ରତ୍ୟଙ୍ଗର କାର୍ଯ୍ୟ କର; ତୁମେ ମୋର, ସବୁ କାର୍ଯ୍ୟ ମୋର ଓ ମୋହର ନିମିତ୍ତ, ଅଥଚ ଫଳଭୋଗାଦି ସବୁ ମଧ୍ୟ ମୋହର ବିଶ୍ୱୋଦରର ଅନ୍ତର୍ଗତ । ତୁମେ ଅଲଗା ହୋଇ କେହି ନାହିଁ ବା କାହାର ଅଲଗା କିଛି ଚିରସ୍ଥାୟୀ ସ୍ୱତ୍ତ୍ୱାଧିକାରଯୁକ୍ତ ଜିନିଷ ହୋଇନାହିଁ । ମୋହର ବିଶ୍ୱରୂପ ଦର୍ଶନ କର । ମୁଁ ଏହିରୂପେ ଅଙ୍ଗପ୍ରତ୍ୟଙ୍ଗରୂପ ଅନନ୍ତ ମାନବ ଓ ଅନନ୍ତବାହୁ ଉଦରବକ୍ତ୍ରନେତ୍ରବିଶିଷ୍ଟ ଓ ଅସୀମ ଧନରତ୍ନାଦିଯୁକ୍ତ ହୋଇ ନିତ୍ୟଭାବରେ ଚିରବିରାଜମାନ ରହିଅଛି । ତୁମ୍ଭେମାନେ କୀଟାଦପି କୀଟାଣୁ । ମୁଁ ମୋର ବୋଲି ଯାହା ଭାବୁଅଛ, ଏହା ତୁମ୍ଭର ପୂର୍ବ ଭ୍ରମ ଏବଂ ବିଶ୍ୱମୂର୍ତ୍ତିର ଅଙ୍ଗପ୍ରତ୍ୟଙ୍ଗରୂପେ ଯେ ଯେଉଁ ଜାତୀୟ ଅଙ୍ଗାଦିରୂପେ ଗଣ୍ୟ, ସେ ସେହି ଜାତୀୟ ସ୍ୱଭାବାଧୀନ କର୍ମ, କାୟମନୋବାକ୍ୟେ ଅନୁଷ୍ଠାନ କରିବା ତୁମ୍ଭର ଏକାନ୍ତ ଧର୍ମ ଅଟେ । ଧର୍ମ ଶାଙ୍କର୍ଯ୍ୟ ଓ କର୍ମ ଶାଙ୍କର୍ଯ୍ୟ ବା କର୍ତ୍ତବ୍ୟ ଶାଙ୍କର୍ଯ୍ୟାଦି ମୋହର ଅଙ୍ଗ ବୈକଲ୍ୟ ଓ ଅନଭିମତ ଅଟେ । ବାବା ! ସାବଧାନ ହୁଅ ଓ ଥାଅ । ମୋହ-ମହା-ଗର୍ବ ଶେଷ ହୋଇଗଲାଣି । (ଗ) ପ୍ରଥମ ଦ୍ୱିତୀୟରୂପେ ଲିଖିତ ଶୂଦ୍ର, ବୈଶ୍ୟ ଜାତିର ବୃତ୍ତି ଅର୍ଥାତ୍ କର୍ମ ଏବଂ ଧନସଞ୍ଚୟ ପ୍ରଭୃତି ଯଥା ନିୟମରେ କୃତ ଓ ରକ୍ଷିତ ହେଉଥିବ ଏବଂ ବ୍ରାହ୍ମଣ ଜାତିର ଜ୍ଞାନ-ଧର୍ମ-ଚର୍ଚ୍ଚାଦି ଓ ବୈଜ୍ଞାନିକ ସ୍ୱାଦି ସୁସମ୍ପାଦିତ ହେବାର ବାଧାବିଘ୍ନାଦି ନ ଘଟୁଥିବା ପ୍ରତି ସାବଧାନ ଥିବ ।"

ସବୁ ଜାତିର ସବୁ ଲୋକର ସୁଖ, ସ୍ୱାଚ୍ଛନ୍ଦ୍ୟ ସାଧିତ ହେଉଥିବା ପକ୍ଷରେ ଏକାଗ୍ର ତୀକ୍ଷ୍ଣ ଦୃଷ୍ଟି ରଖି ଏସବୁ ସମ୍ପାଦନ ନିମିତ୍ତ ବିଧି ନିୟମାଦି ଏବଂ ଶକ୍ତି-କୌଶଳାଦି ପ୍ରୟୋଗ କରିବା ଅକ୍ଷମ । ବଳୀୟାନ ଭୁଜ ସ୍ୱରୂପ ବୃତ୍ତି ବିଶିଷ୍ଟ କ୍ଷତ୍ରିୟଗଣ ସେହି ବିଶ୍ୱ-ମୂର୍ତ୍ତିଙ୍କର ଅନ୍ୟତମ ପ୍ରଧାନ ଅଙ୍ଗ ଅଟେ । ଏହି କ୍ଷାତ୍ରଶକ୍ତିଯୁକ୍ତ ମାନବ-ସମାଜ ସେହି ବିଶ୍ୱଦେବଙ୍କର ଉପଦେଶାନୁଯାୟୀ ତତ୍ପ୍ରତି ଉପକାର ସାଧନ ଅର୍ଥରେ ସଂସାରର ତଥା ସଂସାରସ୍ଥ ସର୍ବ ମାନବସମାଜର ଶାନ୍ତି, ସ୍ୱାସ୍ଥ୍ୟରକ୍ଷା ବିଧାନ କରିବାକୁ

କର୍ତ୍ତବ୍ୟତଃ ଏବଂ ଧର୍ମତଃ ବାଧ୍ୟ । ଏହି କର୍ତ୍ତବ୍ୟ ଓ ଧର୍ମପାଳନ ଦ୍ୱାରା ସଂସାରର ତଥା ମାନବ ସମାଜର ଅର୍ଥାତ୍ ସେହି ବିଶ୍ୱମୂର୍ତ୍ତିଙ୍କର ସର୍ବାଙ୍ଗୀନ ମଙ୍ଗଳ ସୁରକ୍ଷିତ ହୁଏ; ଅତଏବ କ୍ଷତ୍ରିୟ ସମାଜର ସେହି ବିଶ୍ୱମୂର୍ତ୍ତିଙ୍କର ଉଲ୍ଲିଖିତ ସେବା ସାଙ୍ଗ କରିବା ଏକାନ୍ତ ଧର୍ମ ଅଟେ । ଆଜି ରାଜତନ୍ତ୍ର, ଆତ୍ମମ୍ଭରିତା ଓ ସ୍ୱେଚ୍ଛାଚାରିତାଦି କ୍ଷୁଦ୍ରବୃତ୍ତିର ବଶବର୍ତ୍ତୀ ହୋଇ କୋଟି କୋଟି ମାନବର ସୁଖ, ଶାନ୍ତି ଅପହରଣ କରିବା ଦସ୍ୟୁତାର ପରିଚୟ ଭିନ୍ନ ଆଉ କିଛି ହୋଇ ନ ପାରେ । (୪) ସେହି ବିଶ୍ୱମୂର୍ତ୍ତିଙ୍କର ଅନ୍ୟତମ ଶ୍ରେଷ୍ଠ-ଅଙ୍ଗ ବ୍ରାହ୍ମଣ । ଜ୍ଞାନ, ଧର୍ମସାଧନ ଓ ପ୍ରଚାର ସେହି ଅଙ୍ଗର ଧର୍ମ ଅଟେ । ଯାଗ-ଯଜ୍ଞାଦି ଦ୍ୱାରା ମନ୍ତ୍ରପୂତ ଘୃତାକ୍ତ ବାଷ୍ପ ମେଘରେ ପରିଣତ ହୋଇ ଅମୃତମୟ ଜଳ ବର୍ଷା କରେ । ତଦ୍ଦ୍ୱାରେ ମନୁଷ୍ୟର ପବିତ୍ର ସ୍ୱାସ୍ଥ୍ୟ ଲାଭ ହୁଏ, ଏବଂ ଫଳ, ପୁଷ୍ପ, ଶସ୍ୟ ପ୍ରଭୃତି ଅମୃତମୟ ହୁଅନ୍ତି । ଜ୍ଞାନ ପ୍ରଚାର ଦ୍ୱାରା ସଂସାରସ୍ଥ ମାନବସମାଜ ନିଜ ନିଜ କର୍ତ୍ତବ୍ୟ ଓ ଧର୍ମପାଳନ କରିବାକୁ ଶିକ୍ଷା ପାଏ ଏବଂ ଏତଦ୍ଦ୍ୱାରା ସଂସାରର ସର୍ବାଙ୍ଗ ସୁରକ୍ଷିତ ହୁଏ । ଏହିରୂପେ ବର୍ଣ୍ଣଚତୁଷ୍ଟୟରୂପ ଅଙ୍ଗମାନଙ୍କରେ ଯଥାବିହିତ ଧର୍ମ ଓ କର୍ତ୍ତବ୍ୟ ପାଳିତ ହେବା ଦ୍ୱାରା ତଦ୍ରୂପ ଅଙ୍ଗବିଶିଷ୍ଟ କଳେବର ପୂର୍ଣ୍ଣ ଶାନ୍ତି ଅନୁଭବ କରନ୍ତି । ବର୍ଣ୍ଣଶାଙ୍କର୍ଯ୍ୟାଦି ଦ୍ୱାରା କର୍ତ୍ତବ୍ୟାଦି ସମ୍ପାଦନ ସମ୍ବନ୍ଧରେ ଗୋଳମାଳ ଘଟେ । କିଏ କଅଣ କରେ, କେଉଁଠାରେ କଅଣ ହୁଏ, ତଦ୍ଦ୍ୱାର କିଛି ନିୟମ ରହେନାହିଁ । ସୁତରାଂ ମୋଟ ଉପରେ ସଂସାର ଅଶାନ୍ତ ହୁଏ । ଅଶାନ୍ତିରୁ ଅଧର୍ମ ପୂର୍ଣ୍ଣ ହୁଏ, ସଂସାର ନରକାକାର ଧାରଣ କରେ । ଅଙ୍ଗ ପ୍ରତ୍ୟଙ୍ଗ ବା ଇନ୍ଦ୍ରିୟମାନଙ୍କର କାର୍ଯ୍ୟ ବିପରୀତ ପ୍ରକାରର ହେଲେ, ଅର୍ଥାତ୍ ଭୋଜନ କରିବାର ଦ୍ୱାର ଆଉ ମଳମୂତ୍ର ତ୍ୟାଗ ଦ୍ୱାରର ଭେଦ ନ ରହିଲେ ଦେହରକ୍ଷା ଅସମ୍ଭବ ହୋଇପଡ଼େ ।

•

ବାହ୍ୟଚକ୍ଷୁରେ ଏହି ଯେଉଁ ମାନବାତ୍ମକ ବିଶ୍ୱମୂର୍ତ୍ତି ଦର୍ଶନ କରାଗଲା, ଅନ୍ତର୍ଚକ୍ଷୁରେ ସେହି ବିଶ୍ୱ-ମୂର୍ତ୍ତି ଦର୍ଶନ କଲେ ଦେଖାଯାଏ, ଏହି ଦେହ ଅନ୍ତତଃ ପ୍ରବୃତ୍ତ୍ୟାତ୍ମକ ବିଶ୍ୱ-କଳେବର ଅଟନ୍ତି । ବାହ୍ୟ ଅନ୍ତର ବିକାଶର ତନ୍ତ୍ର ଭିନ୍ନ ଆଉ କିଛି ନୁହେ । ବାହ୍ୟାନ୍ତର ଭେଦର ଅର୍ଥ ଏହି ଯେ ବାହ୍ୟ ସ୍ଥୂଳ ଏବଂ ପାଞ୍ଚଭୌତିକ ଆଉ ଅନ୍ତର ସୂକ୍ଷ୍ମ ଏବଂ ଏଠାରେ ପ୍ରବୃତ୍ତ୍ୟାତ୍ମକ, ପୁଣି ସେହି ପ୍ରବୃତ୍ତି ସ୍ୱଭାବସିଦ୍ଧ ଅଟେ । ଏହି ସ୍ୱଭାବସିଦ୍ଧ ପ୍ରବୃତ୍ତ୍ୟାତ୍ମକ-ବିରାଟ ରୂପ ପୂର୍ବୋକ୍ତରୂପେ କର୍ମ ସଂପୃକ୍ତ ଚାରି ପ୍ରକାର ବୃତ୍ତିମୟ ଅଙ୍ଗବିଶିଷ୍ଟ ଅଟନ୍ତି ।

ଏହି ଚାରିପ୍ରକାର ଅନ୍ତଃସ୍ଥ ସୂକ୍ଷ୍ମ ବୃତ୍ତି ନିଜ ନିଜ ଲକ୍ଷଣ ଓ ସଂଜ୍ଞାନୁସାରେ ଶୂଦ୍ରାଦି ଚାରି ଜାତିରେ ବିଭକ୍ତ । ଅର୍ଥାତ୍ କର୍ମପ୍ରବୃତ୍ତି, ବୃତ୍ତିଭେଦ ବିଭାଗାନୁସାରୀ ଶୂଦ୍ର ସଂଜ୍ଞକ ଜାତିର ଅନ୍ତର୍ଗତ ଅଟେ । ଏହିପରି ଅପର ତିନି ବୃତ୍ତି ଅନ୍ୟ ତିନି ଜାତିସ୍ଥ ସଂଜ୍ଞାକୁ ବହନ କରିଅଛନ୍ତି । ପ୍ରବୃତ୍ତିର ବିକାଶ ଅନୁସାରେ ବାହ୍ୟରେ ଅର୍ଥାତ୍ ଦେହରେ ସେହି ପ୍ରବୃତ୍ତି ଜାତିସ୍ଥ କ୍ରିୟା ନିଷ୍ପନ୍ନ କରାଯାଉଅଛି; ଅର୍ଥାତ୍ ଅନ୍ତର୍ବୃତ୍ତି ଏବଂ ବୃତ୍ତ୍ୟନୁସାରୀ

ସତ୍‌କର୍ମ, ଏହି ଉଭୟ ବୃତ୍ତି ଏବଂ କର୍ମ ମଧ୍ୟରେ ଭେଦ ନାହିଁ । କର୍ମ-ପ୍ରବୃତ୍ତି ଉଦୟ-ବେଳେ ସ୍ଥୂଳଦେହ କର୍ମଆଡ଼େ ଏବଂ ସଞ୍ଚୟନବୃତ୍ତି ଉଦୟବେଳେ ଦେହ ସଞ୍ଚୟନ କ୍ରିୟାଆଡ଼େ ଗୃଳିତ ହେଉଅଛି । ଏହିରୂପେ ବୃତ୍ତିମୟ ବିଶ୍ୱକଳେବର ବୃତ୍ତିଚତୁଷ୍ଟୟ ଭେଦାନୁସାରେ ମାନବ ଦେହଧାରୀ ସମାଜକୁ ଚାରି ପ୍ରକାରରେ ଅର୍ଥାତ୍ ଶୂଦ୍ରାଦି ଚାରି ଜାତିରେ ବିଭକ୍ତ କରି ତଦ୍ଦ୍ୱାରା ସ୍ୱୟଂ ସଂସାରଲୀଳା ସମ୍ପାଦନାର୍ଥ ଚତୁର୍ଦ୍ଧା ମୂର୍ତ୍ତି ଧାରଣ କରିଅଛନ୍ତି । ସଂସ୍କାର ବିଶେଷ ତଦନୁରୂପ ଯଥାପ୍ରକାର କର୍ମର ହେତୁ ଅଟେ । କର୍ମପ୍ରବୃତ୍ତି ସଂସ୍କାରରେ ପରିଣତ ହୁଏ ଏବଂ ତଦ୍ରୂପ ସଂସ୍କାରାଧୀନ ପ୍ରବୃତ୍ତି ପୁନଃ ପୁନଃ ଅଭ୍ୟସ୍ତ କର୍ମଦ୍ୱାରା ସ୍ୱଭାବରେ ପରିଣତ ହୁଏ । ଏହି ସ୍ୱଭାବ ବଦ୍ଧମୂଳ ଓ ଦୃଢ଼ୀଭୂତ ହୋଇ ଜାତିସଂଜ୍ଞାକୁ ପ୍ରାପ୍ତ ହୁଏ । ଏହି ଅନୁସାରେ ମାନବ ଜାତି ଚାରି ଜାତିରେ ବିଭକ୍ତ ହୋଇଅଛି ।

ବର୍ତ୍ତମାନ ଦେଖାଯାଏ, କ୍ଷତ୍ରିୟବୃତ୍ତି ଏବଂ ବ୍ରାହ୍ମଣବୃତ୍ତି ଅର୍ଥାତ୍ ରକ୍ଷଣ, ପାଳନ, ବିଧାନ ଏବଂ ଆଧ୍ୟାତ୍ମିକତା ଏ ପାପ ମୁହୂର୍ତ୍ତରେ ଅନ୍ତରିତ ହୋଇଅଛି । କେବଳ ଧର୍ଷଣ ତାଡ଼ନାଦି ଦ୍ୱାରା ଭୟ ପ୍ରଦର୍ଶନ କରିବା କ୍ଷାତ୍ରଧର୍ମରେ ପରିଣତ ହୋଇଅଛି ଏବଂ ଖାମ୍-ଖିଆଲରେ କେତେ ପ୍ରକାର ଦୈହିକ କର୍ମ ଓ ବାହ୍ୟଚିହ୍ନ ବା ବାକ୍ ଚାତୁର୍ଯ୍ୟ ବିଶେଷ ଅଥବା ଗୀତ, ବାଦ୍ୟ, ନୃତ୍ୟାଦି ଆଧ୍ୟାତ୍ମିକତାର ପରିଚୟ ବା ପ୍ରଶ୍ରୟର ସ୍ଥାନ ହୋଇଅଛି । ଏହି ଉଭୟ ନଷ୍ଟାମି ଏବଂ ଭଣ୍ଡାମି ଦ୍ୱାରା ପ୍ରକୃତ କ୍ଷାତ୍ରଧର୍ମ ଓ ଆଧ୍ୟାତ୍ମିକତା ଲୁପ୍ତ ଯାଇଥିବା ହେତୁ ଶୂଦ୍ରବୃତ୍ତି ଏବଂ ବୈଶ୍ୟବୃତ୍ତି ମାତ୍ର ଜୀବିତ ରହିଅଛି । ପୁଣି ଏହି ଉଭୟ ବୃତ୍ତି ଧର୍ମ ସହିତ ନିଃସମ୍ପର୍କ ହୋଇଅଛି । କର୍ଣ୍ଣଧାର ଏବଂ ଅନୁକୂଳ ସମୀର ଅଭାବରେ ନାବ ଯେପରି ଅନିର୍ଦ୍ଦିଷ୍ଟ ଆଡ଼େ ଗତି କରେ ଓ ଶେଷରେ ନାଶପ୍ରାପ୍ତ ହୁଏ, ସେହିପରି କ୍ଷତ୍ରିୟତ୍ୱ ଏବଂ ବ୍ରହ୍ମତ୍ୱର ଶାସନ ଓ ଉପଦେଶ ଅଭାବରେ ପ୍ରଥମୋକ୍ତ ଜାତିଦ୍ୱୟର କର୍ମଧର୍ମାଦି ବିଲୁପ୍ତପ୍ରାୟ ହୋଇଗଲଣି । ସମୁଦାୟ ସଂସାରର ସମସ୍ତ ପ୍ରାଣୀମାନେ କେବଳ ଉଦର-ସର୍ବସ୍ୱ ହୋଇଅଛନ୍ତି । ଉଦର ପୋଷଣାର୍ଥ ଅର୍ଥ ଏବଂ ଅର୍ଥଲାଭ ନିମିତ୍ତ କର୍ମକୁ ସମସ୍ତେ ଆଦରିଛନ୍ତି । ବର୍ତ୍ତମାନ ସମସ୍ତେ ପ୍ରାୟ ଆତ୍ମଗତଭାବ ଓ ତଦ୍ରୂପ ଭାବାନୁଯାୟୀ ଆତ୍ମଧର୍ମକୁ ବିସ୍ମୃତ ହୋଇ କେବଳ ବିଳାସିତା ଓ ଉଦର ଚରିତାର୍ଥ ନିମିତ୍ତ ସ୍ୱେଚ୍ଛାଚାରୀ ହୋଇଅଛନ୍ତି । ଏହି ହେତୁ ଯେ କୌଣସି କର୍ମରେ ଚାରିକଡ଼ା ମିଳିବ, ସେହି ଆଡ଼େ ସମସ୍ତଙ୍କର ଏକାଗ୍ର ତୀକ୍ଷ୍ଣ ଦୃଷ୍ଟି ପଡ଼ିଅଛି । ଅଥଚ ସେହି କର୍ମରେ ଧର୍ମ ବା ଆଧ୍ୟାତ୍ମିକ ସମ୍ବନ୍ଧ ଆଦୌ ନାହିଁ । ସୁତରାଂ ଏତଦ୍ରୂପ ଧର୍ମଛଡ଼ା କର୍ମ କରି କରି ତାହା ଅଭ୍ୟାସଗତ କର୍ତ୍ତବ୍ୟରେ ପରିଣତ ହେବାରୁ ତତ୍ସମ୍ବନ୍ଧୀୟ ସଂସ୍କାର ବଦ୍ଧମୂଳ ହୋଇ ସ୍ୱଭାବରେ ଆକାର ଧାରଣ କଲଣି ।

ଏହିରୂପେ ଶୂଦ୍ରତ୍ୱ ଏବଂ ବୈଶ୍ୟତ୍ୱର ମିଶାମିଶି ସ୍ୱଭାବ ଶାଙ୍କର୍ଯ୍ୟ ଦୋଷରେ ଦୂଷିତ ହେବାରୁ ସଂସାର ସମୁଦାୟ କେବଳ କାୟିକ କର୍ମ ଏବଂ ଅର୍ଥ ସଞ୍ଚୟନ ସ୍ରୋତରେ ଭାସମାନ ହେଉଅଛି । ଏହି ହେତୁ ଯେ ବଡ଼ କର୍ମୀ ଏବଂ ଧନୀ,

ସେହି ଶ୍ରେଷ୍ଠତ୍ୱ ପ୍ରାପ୍ତ ହେଉଅଛି । ସୁତରାଂ କର୍ମ ଏବଂ ଧନସଞ୍ଚୟନରୁ ଆଧ୍ୟାତ୍ମିକତା ବା ବୈଧକର୍ତ୍ତବ୍ୟ-ଜ୍ଞାନ ବିଦାୟ ନେଇଅଛି । ଏହି କାରଣରୁ ବର୍ଣ୍ଣଗତଭାବ ଓ ବର୍ଣ୍ଣସମ୍ମତ ଧର୍ମକର୍ମାଦି ବିଲୁପ୍ତପ୍ରାୟ ହେବାରୁ ତାହା ଆଜି ବ୍ୟଙ୍ଗ-ବାକ୍‌ଜାଲରେ ପଡ଼ି ଆବଦ୍ଧ ହୋଇ ରହିଗଲାଣି । ଏହି ହେତୁ ବର୍ଣ୍ଣଗତ କର୍ମଧର୍ମାଦି କଥାରେ ମାତ୍ର ଆକାଶ-ନଗରସ୍ଥ ଭୂତବର୍ଣ୍ଣନା ପରି କଥିତ ହେଉଅଛି । ବର୍ଣ୍ଣ ଧର୍ମାଶ୍ରମର ଚିର-ବିଶ୍ରାମ-ସ୍ଥାନ ଭାରତ ଆଜିକାଲି ବୈଦେଶିକ ସଂସାର ଅନୁକରଣରୁ ଯେତେ ଏହି ଧର୍ମଛଡ଼ା ଆକାର ଧାରଣ କରିଅଛି, ସେତେବେଳେ ବିଦେଶଯାକ ଯେ କଅଣ ହୋଇଅଛି, ଏହା ସହଜରେ ଅନୁମେୟ ଅଟେ । ଅଥଚ ଦେଖା ବି ଯାଉଅଛି ଯେ ଫଳରେ ଧର୍ମ ନାହିଁ, କର୍ମ ନାହିଁ; କେବଳ ଅର୍ଥବାଦ ଧର୍ମ କର୍ମର ସ୍ଥାନକୁ ଅଧିକାର କରିଅଛି । ସେହି ଅର୍ଥବାଦ ସଂସାରରେ ନାନାପ୍ରକାର ବିଭିନ୍ନ ମତ ସୃଷ୍ଟି କରି ତହିଁରୁ ଶାନ୍ତି ବିଦୂରିତ ହେଲାଣି । ମାର, ହାଣ, କଟାକଟି, ଧର୍ଷଣ, ଦମନ, ତାଡ଼ନ ଓ ଅନ୍ୟାୟ ଦଣ୍ଡବିଧାନଦ୍ୱାରା ଏକ ଏକ ସମାଜ ନିଜେ ବଡ଼ ରହି ଅନ୍ୟମାନଙ୍କୁ ଯେ କୌଣସି ପ୍ରକାରେ ବାକ୍‌ଶୂନ୍ୟ ଓ ଅକର୍ମଣ୍ୟ କରି ମାଡ଼ମୁଡ଼ି ରଖି ନିଜ ନିଜର ଶାନ୍ତିନାମଧେୟ ସ୍ୱେଚ୍ଛାଚାରିତାକୁ 'ବାହାଲ' ରଖି ପାରିଲେ ସଂସାରର ଶାନ୍ତି ରକ୍ଷା ହେଲା ବୋଲି ପ୍ରଚାର କରିବାର ପ୍ରୟାସ ପାଉ-ଅଛନ୍ତି । ଏହି ଚାରିଆଡ଼ରୁ ଗୋଳମାଳ ଜାତ ହୋଇ ଭୂଗୋଲକଟାକୁ ଭସ୍ମରେ ପରିଣତ କରିବାର ଚେଷ୍ଟା ଲାଗି ରହିଅଛି । ଦୁର୍ବଳ ନିରୀହ ସମାଜ ଏହି ଉଗ୍ର ପାପପିଣ୍ଡ ଦଗ୍‌ଧ ଭସ୍ମକୁ ଦେହରେ ବୋଳି ହୋଇ 'ବାବାଜି' ସାଜିଲା ଦିନ ସେହି ପାଉଁଶରୁ ଶାନ୍ତି-ରସର ଆସ୍ୱାଦନ ଅନୁଭବ କରିବେ । ସେହି ଦିନ ନିକଟବର୍ତ୍ତୀ ହେବାର ଲକ୍ଷଣ ଆଖି ଆଗରେ ଉପସ୍ଥିତ ହେଲାଣି ।

•

ମାନବୀୟ ସମଷ୍ଟ୍ୟାତ୍ମକ ବିରାଟ-ମୂର୍ତ୍ତି କର୍ମ ଓ ସଞ୍ଚୟନାଦି ଚାରି ପ୍ରକାର ବୃତ୍ତିଦ୍ୱାରା ସୁରକ୍ଷିତ ରହିଥିବାର ଜନିତ ବର୍ଣ୍ଣବିଭାଗ ସେହି ଚାରୋଟି ବୃତ୍ତି ଚିହ୍ନ ବିଭାଗମାତ୍ର । ପ୍ରତି ଏକ ଏକ ବୃତ୍ତିକୁ ଏକ ଏକ ଲୋକ ଆଶ୍ରୟ କରି ରହିବା ମାନସ ବିକ୍ଷିପ୍ତ ବାହୁଲ୍ୟର ଅଭାବର ନିଦାନ ସ୍ଥାନ ସ୍ୱରୂପ ଅଟେ । ଏହି ଏକ ଏକ ବୃତ୍ତି ବିଶିଷ୍ଟ ଏକ ଏକ ଲୋକ ପରସ୍ପର ମିଶି ଗୋଟିଏ ଗୋଟିଏ ସମାଜରେ ଗଠିତ ହେଲେ ସମୁଦାୟ ମାନବ ସଂସାର ଚାରିବୃତ୍ତି ଅନୁସାରେ ଚାରିଭାଗରେ ବିଭକ୍ତ ହେବା ସ୍ୱାଭାବିକ । ଏଥିରେ ଚାରି ପ୍ରକାର ସମାଜର ପ୍ରତ୍ୟେକ ପ୍ରକାର ନିଜ ନିଜର ବୃତ୍ତି ଅବଲମ୍ବନ କଲେ ପ୍ରତ୍ୟେକ ଶ୍ରେଣୀୟ କର୍ମ ସୁଚାରୁରୂପେ ସାଙ୍ଗ ହେବା ସ୍ୱାଭାବିକ । ଆଉ ତଦ୍ୱାରା ନାନା ପ୍ରକାର ଛନ୍ଦ କୁଟିଳ ବାଦାଦିର ସ୍ଥାନ ବା ଅବସର ରହେ ନାହିଁ, ଅଥଚ ମନୋବୃତ୍ତିର ସ୍ୱାସ୍ଥ୍ୟ ସମ୍ପାଦିତ ହୁଏ; ସୁତରାଂ ତହିଁରୁ ଧର୍ମକର୍ମାଦିର ପ୍ରବୃତ୍ତି ବୃଦ୍ଧି ପାଇବାର ସୁଯୋଗ ମିଳେ । ଏହି ନିୟମ ପାଳନଦ୍ୱାରା ସଂସାରୀୟ ମାନବସମାଜର ସାଧାରଣ ଭାବରେ ଧର୍ମ-କର୍ମ ଓ ଅର୍ଥାଦି ସାଧନ-ମାର୍ଗ ସୁଗମ ହୁଏ । ପ୍ରତ୍ୟେକ ସମାଜ ତଥା ପ୍ରତ୍ୟେକ ସମାଜର ପ୍ରତ୍ୟେକ

ବ୍ୟକ୍ତି ନିଜ ନିଜର ଜାତୀୟ କର୍ମାନୁଷ୍ଠାନକୁ ଆପଣା ଜାତିର କର୍ତ୍ତବ୍ୟ ଏବଂ ଧର୍ମ ବୋଲି ଆଦର କରନ୍ତି । ଏହିରୂପେ ଗୁଣ ପ୍ରକାର ଜାତି ଓ ଗୁଣପ୍ରକାର ବୃତ୍ତି ଓ ଗୁଣପ୍ରକାର ଧର୍ମସାଧନ ସୁତ୍ରରୂପେ ନିବାନ୍ଧିତ ହେବାରୁ ସଂସାର ଶାନ୍ତିପୂର୍ଣ୍ଣ ନିୟମରେ ଆବଦ୍ଧ ରହିଅଛି । ସେହି ନିୟମରୁ ନୈତିକତାର ଆସନ ସ୍ଥିର ଓ ଦୃଢ଼ ହୁଏ । ନୈତିକତାରୁ ସଦାଚାରାଦି ଓ ସତ୍ ଭାବନାଦି ମନର ଅନୁବର୍ତ୍ତନ କରନ୍ତି । ଏଥିରୁ ମାନସ ସ୍ୱାସ୍ଥ୍ୟ ଓ ପ୍ରାଣାଦିର ସ୍ୱାସ୍ଥ୍ୟ ଜାତ ହୋଇ କ୍ରମେ ଆତ୍ମସ୍ୱାସ୍ଥ୍ୟ ସମ୍ପୂର୍ଣ୍ଣ ହୁଏ ।

ଆତ୍ମାର ଲକ୍ଷ୍ୟ ଆତ୍ମସ୍ୱାସ୍ଥ୍ୟ ଖାଲି ନୁହେ । ଏହା ମଧ୍ୟ ଆତ୍ମାର କର୍ତ୍ତବ୍ୟ ଏବଂ ଧର୍ମ ଅଟେ । ଏଥିରୁ ପୂର୍ବକଥିତ ଧର୍ମ-ଜ୍ଞାନ, ବୈରାଗ୍ୟ ଓ ଦୟା କ୍ଷମାଦି ଶୁଦ୍ଧ ସତ୍ତ୍ୱଗୁଣାତ୍ମକ ସଦ୍‌ବୃତ୍ତିମାନେ ଆତ୍ମାକୁ ଅଳଂକୃତ କରନ୍ତି । ଏଥିରେ ମାନବୀୟ ଭୌତିକ ଜଗତ ଆଧ୍ୟାତ୍ମିକ ସଂସାରାକାରରେ ଅନୁଭୂତ ହୁଏ ଏବଂ ସ୍ୱର୍ଗୀୟ ସୌନ୍ଦର୍ଯ୍ୟରେ ସମ୍ପୃକ୍ତ ହୋଇ ମାନବସମାଜକୁ କୃତାର୍ଥ କରେ । ଏହିରୂପେ ମାନବୀୟ ଜୀବାତ୍ମକ ବିଶ୍ୱକଳେବର, ଆତ୍ମସୁଖ, ଆତ୍ମସ୍ୱାସ୍ଥ୍ୟ, ଆତ୍ମଶାନ୍ତି ଓ ଆତ୍ମଶ୍ରାନ୍ତି ଉପଭୋଗ କରନ୍ତି । ଏହି ସ୍ୱର୍ଗୀୟ ମଙ୍ଗଳ ବର୍ଣ୍ଣଧର୍ମାନୁମୋଦିତ କର୍ତ୍ତବ୍ୟନିଷ୍ଠା ଉପରେ ନିର୍ଭର କରେ । ବର୍ତ୍ତମାନ ଗୁଣବର୍ଣ୍ଣ ମଧ୍ୟରୁ କ୍ଷତ୍ରିୟତ୍ୱ ଏବଂ ବ୍ରହ୍ମତ୍ୱ ଧର୍ମତଃ ହ୍ରାସ ଲଭିଥିବାରୁ ବୈଶ୍ୟତ୍ୱ ଏବଂ ଶୂଦ୍ରତ୍ୱ ଅର୍ଥାତ୍ ଦୈହିକ କର୍ମ ଓ ଅର୍ଥୋପାର୍ଜନ ଏବଂ କାର୍ପଣ୍ୟ ମିଶାମିଶି ହୋଇ କର୍ତ୍ତବ୍ୟ ଶଙ୍କର ରୂପ ଧାରଣ କରି ତଦ୍ରୂପ ଶାଙ୍କର୍ଯ୍ୟ ଦୋଷରେ ମାନବ ସମାଜକୁ ଦୂଷିତ କରି ରଖିଅଛି । ଏଥିରେ ସେହି ମାନବ ସମଷ୍ଟ୍ୟାତ୍ମକ 'ବିଶ୍ୱଦେବ' କ୍ଲିଷ୍ଟ ହୋଇ-ଅଛନ୍ତି । ଏ ଅବସ୍ଥା ଅପ୍ରାକୃତ ଥିବାରୁ ଏହାର ସଂଶୋଧନ ତାଙ୍କଦ୍ୱାରା ଅଚିରେ ସାଧିତ ହେବାର କଥା । ସେହି ସାଧନା ଆରମ୍ଭ ହେଲାଣି ।

ଆଜି ଗୋଟିଏ ମାତ୍ର କଥା ଏହି ଯେ ଶୂଦ୍ରର ସନ୍ତାନ ଶୂଦ୍ର ଓ ବୈଶ୍ୟର ସନ୍ତାନ ବୈଶ୍ୟ ହୋଇ ରହିଅଛି ଓ ରହିଥିବ । କିନ୍ତୁ ଦେଖିବାକୁ ଗଲେ ସଂସ୍କାର ଏପରି ଏକ ଜିନିଷ ଯେ ତାହା ତରଳରୁ ତରଳ ଏବଂ ସୂକ୍ଷ୍ମରୁ ସୂକ୍ଷ୍ମତମ ଓ ସବୁ ଅଠାଳିଆ ଠାରୁ ଆହୁରି ଅଧିକ ଅଠାଳିଆ ଅଟେ । ଥରେ ଯେଉଁ କର୍ମ, ଭୋଗ କି ଜ୍ଞାନ ଅଭ୍ୟାସ କରାଯାଏ, ରୁଚିକର ଅରୁଚିକର ଭେଦରେ ଏବଂ ଶିକ୍ଷିତା ଅନୁସାରେ ତାହା ଯଥା ପରିମାଣରେ ଯଥା ଯଥା ଦୀର୍ଘ ବା ଅଳ୍ପକାଳ ପର୍ଯ୍ୟନ୍ତ ଅନ୍ତଃକରଣରେ ଲାଗିରହିଥାଏ । ଏହି ନିୟମାନୁସାରେ ଶୂଦ୍ରାଦି ଜାତି ନିଜ ନିଜ ଜାତୀୟ କର୍ମ ଅଭ୍ୟାସ କରି କରି ତଦ୍ରୂପ କର୍ମସଂସ୍କାରକୁ ଜାତିଗତ-କର୍ତ୍ତବ୍ୟ ଏବଂ ଧର୍ମରେ ଅନ୍ତଃକରଣ ସହିତ ମିଶାଇ ତନ୍ମୟ-ପ୍ରାଣ ହୋଇଯାନ୍ତି, ଏହା ସଂସ୍କାର ଏବଂ ଅଭ୍ୟାସର ଧର୍ମ । ଏଥିରୁ ତଦ୍ରୂପ ଜାତୀୟ ସ୍ୱଭାବ ଓ ଜାତୀୟ ଜୀବନ ଗଠିତ ହୁଏ । ଏହିରୂପେ ପ୍ରତ୍ୟେକ ଜାତି ସ୍ୱଜାତୀୟ କର୍ତ୍ତବ୍ୟ-ଧର୍ମପରାୟଣ ହେବା ସ୍ୱାଭାବିକ ଅଟେ । ଏତଦ୍ରୂପ ଜାତ୍ୟନ୍ତର୍ଗତ ବ୍ୟକ୍ତିର ଔରସରୁ ଯେ ସନ୍ତାନ ଜାତ ହୁଏ, ସେ ପିତୃମାତୃର ସଂସ୍କାର ଅବଲମ୍ବନ କରି ଜନ୍ମ-

ଗ୍ରହଣ କରେ, ଏବଂ ପରେ ପିତୃଜାଣ୍ଟାପ୍ସ କର୍ମ ଓ ସହଯୋଗରେ କ୍ରମେ କ୍ରମେ ଶିକ୍ଷିତ ପରୀକ୍ଷିତ ହୋଇ ତଦ୍ରୂପ କର୍ମଦକ୍ଷତା ଲାଭ କରେ; ଏହା ସ୍ୱାଭାବିକ ନିୟମାଧୀନ ବ୍ୟବସ୍ଥା ।

ଏହିରୂପେ ସଂସାରରେ ବର୍ଣ୍ଣ, ଧର୍ମ, ନିୟମ ଚିରସ୍ଥାୟୀ ହେବାଦ୍ୱାରା କର୍ମ, ଅର୍ଥସଂଗ୍ରହ ନିୟମ ବ୍ୟବସ୍ଥାଦି ପ୍ରବର୍ତ୍ତନ ଓ ପାଳନ, ଆତ୍ମଧର୍ମ ଯାଜନ ଓ ପ୍ରଗୃତି ଆତ୍ମଧର୍ମଗତ ଓ ଆତ୍ମ ପ୍ରକୃତିଗତ କ୍ରିୟା ଏବଂ ଭାବ ମାନବସମାଜକୁ ଶାନ୍ତ-ସୁଖରେ ଚିର ବିଜଡ଼ିତ କରି ରଖେ । ଏହା ଭାରତ ପ୍ରଚଳିତ ସନାତନ ଧର୍ମ ଓ ପବିତ୍ର ବୈଦିକ ବ୍ୟବସ୍ଥା । ପ୍ରକୃତିର ତାମସ ଭାବାଧିକ୍ୟବଶତଃ ଏତଦୁକ୍ତ ଦୃଢ଼ ନିୟମ ବନ୍ଧନ ସତ୍ତ୍ୱେ କେତେ ପ୍ରକାର ଅବୈଧ ସନ୍ତାନ ସଂସାରରେ ଅର୍ଥାତ୍ ଭାରତରେ ମଧ୍ୟ ଜନ୍ମଗ୍ରହଣ କରନ୍ତି । ଏମାନଙ୍କର ଗୋଟିଏ ଅଲଗା ସମାଜ କାର୍ଯ୍ୟତଃ ଗଠିତ ହୋଇଯାଏ । ଏ ସମାଜରେ ବର୍ଣ୍ଣ ମଧ୍ୟ ଧର୍ମ-ବ୍ୟବସ୍ଥା ସ୍ଥାନ ପାଇ ପାରେନାହିଁ । ସୁତରାଂ ସ୍ୱେଚ୍ଛାଚାର ଏ ସମାଜର କର୍ଣ୍ଣଧାରରୂପେ କର୍ତ୍ତୃତ୍ୱ ପ୍ରକାଶ କରେ । ଏହି ସମାଜ ଅନାର୍ଯ୍ୟ ବା ଅନ୍ତ୍ୟଜ ନାମରେ ପରିଚିତ ଓ କଥିତ ହୁଅନ୍ତି । ବର୍ଣ୍ଣାଶ୍ରମ ଧର୍ମର ପବିତ୍ର ପୀଠ ଭାରତ ଆଜକାଲି ଅନାର୍ଯ୍ୟ ସଂସର୍ଗ ଓ ତଥାକଥିତ ଆଚରଣ, ଆଦର୍ଶ ଓ ଅନୁକରଣରୁ ପୁଣି ଏହି ଅନାର୍ଯ୍ୟ ଆଦର୍ଶ ସଭ୍ୟତାର ଚିହ୍ନ ବୋଲି ବ୍ୟବହୃତ ହେବା ପାପରୁ ଯଦ୍ରୂପ ଅବସ୍ଥା ପ୍ରାପ୍ତ ହେଲାଣି, ତାହା କହିବାକୁ ଗଲେ ଅପରାଧ ହେବାଭଳି କଥା ।

ଅଦ୍ୟ ଦିବସ ଏହି କ୍ଷଣରେ ପୃଥିବୀର ସବୁ ଦେଶ ପ୍ରଦେଶ ଓ ସବୁଆଡ଼କୁ ମନ-ନିୟନମସ୍ତ ହୋଇ ଏକାଗ୍ର ସ୍ଥିର ଦୃଷ୍ଟି ସହକାରେ ଅବଲୋକନ କରି ଦେଖାଯାଉ, ବର୍ଣ୍ଣାଶ୍ରମ ଧର୍ମ ଯେପରିକି ମୂଳରୁ କୌଣସି ସ୍ଥାନରେ ପ୍ରତିଷ୍ଠିତ ହୋଇନାହିଁ । ଏତେ-ବେଳେ କାହୁଁ ବା କେଉଁଆଡ଼ୁ ଆସିପାରେ ? ତେବେ ବୈଦିକ ମତରେ ସେହିସବୁ ଆଡ଼ ଯେ ଅନାର୍ଯ୍ୟ ଓ ଅନ୍ତ୍ୟଜ ପଦବାଚ୍ୟ, ଏହି କଥା ସହିତ ସେହି ଦିଗର ଗୁଣ-କ୍ରିୟା, ଆଚାର ବ୍ୟବହାର ଓ ତଦନୁରୂପ ଭାବାଦିର କଥାଗୁଡ଼ିଏ ଲେଖିକରି ଆକ୍ଷରିକ ବିକାର ଘଟାଇବା ଅପରାଧ ଅର୍ଜନ କରିବା ଭଲ ନୁହେ । ପ୍ରକାରାନ୍ତରେ ସେଗୁଡ଼ାକ କହିବା ମନୁଷ୍ୟ ପକ୍ଷରେ ଲଜ୍ଜାକର ଓ ନିନ୍ଦନୀୟ ବିଷୟ ଅଟେ । ସର୍ବ ଜୀବରେ ବିଶେଷତଃ ମନୁଷ୍ୟଠାରେ ଜୀବରୂପେ ହରି ବିରାଜମାନ ଅଛନ୍ତି । ଦୋଷଗୁଣ ନ ଧରି 'ଚ୍ଛିଣ୍ଡାକନାରେ ମୋତିବର, ମୂଲ୍ୟ କି ତୁଟଇ ତାହାର ?' ଜ୍ଞାନରେ ନୀରବ ରହିବା ଉଚିତ । ତେବେ ଯେଉଁଠାରେ ବର୍ଣ୍ଣାଶ୍ରମ ଧର୍ମର ସ୍ଥାନ ନାହିଁ, ଅଧିକନ୍ତୁ ଆଚାର ବ୍ୟବହାର କ୍ରିୟା-କଳାପାଦି ସହିତ ଏବଂ ଖାଦ୍ୟ ଓ ସବୁ ପ୍ରକାର ମତ ପଦ୍ଧତି ଧର୍ମର ସମ୍ପର୍କ ନାହିଁ, ସେହିଠାରେ ସ୍ୱେଚ୍ଛାଚାର, ସ୍ୱାର୍ଥପରତା ଓ ଏଥିରୁ ସର୍ବପ୍ରକାର ଗଣ୍ଡଗୋଳ, ଦର୍ପ, ଦମ୍ଭ, ଧର୍ଷଣ ଓ କର୍ଷଣାଦି ସହିତ ଅନୈତିକତା ଏକାଧିପତ୍ୟ କରିବା ସ୍ୱାଭାବିକ ଅଟେ । ଏହାରି ଫଳରେ ବର୍ତ୍ତମାନ ସଂସାର ପରିତାପିତ ଓ ପରିକ୍ଳିଷ୍ଟ ହୋଇ ଅଗ୍ନିପରୀକ୍ଷା ଦ୍ୱାରା

ପ୍ରାୟଶ୍ଚିତ୍ତ କରିବାକୁ ବସିଲଣି । ସନାତନ ବର୍ଣ୍ଣ-ଧର୍ମ-ବ୍ୟବସ୍ଥାକୁ ଏହିଠାରେ ବିଶ୍ରାମ ଦିଆଯାଉ ।

## ୧୧୪ ପାଠ—ଅଧ୍ୟାତ୍ମ-ଆଶ୍ରମବିଧି

ଆଶ୍ରମଧର୍ମ ଆତ୍ମାର ସ୍ୱାଭାବିକ ସଂସ୍ଥାନଗତ ଅବସ୍ଥା ଚତୁଷ୍ଟୟ ଭିନ୍ନ ଆଉ କିଛି ନୁହେ । ନିଜର ପରିବାରବର୍ଗର, ଆତ୍ମୀୟ-ବନ୍ଧୁକୁଟୁମ୍ବାଦିର, ପାଳନୀୟ ରକ୍ଷଣୀୟ-ମାନଙ୍କର, ସଂସାରୀୟ ମାନବ ସମାଜର ଯଥାଶକ୍ତ୍ୟନୁଯାୟୀ ବିଧିସମ୍ମତଭାବରେ ଉପକାର ସାଧନ କରିବା ଗୃହସ୍ଥର ଧର୍ମ; ଏବଂ ଶମ, ଦମ, ନିୟମ ଓ ଆସନାଦିଦ୍ୱାରା ଦୈହିକ ଶାନ୍ତି, ସ୍ୱାସ୍ଥ୍ୟ ସଂପାଦନ କରଣ ପୂର୍ବକ ଦେହକୁ ପ୍ରାଣାୟାମାଦି ସାଧନ ଆଡ଼କୁ ଉନ୍ମୁଖୀନ କରିବା ମଧ୍ୟ ଗୃହସ୍ଥାଶ୍ରମର ଧର୍ମ । ଏତଦୁଭୟର ଅନୁଷ୍ଠାନ ସଙ୍ଗେ ସଙ୍ଗେ ପ୍ରାସଙ୍ଗିକ, ଆନୁଷଙ୍ଗିକ, ଔପସର୍ଗିକ ନାନାପ୍ରକାରର ଅନେକ ଅନେକ ଗୃହ ସମ୍ବନ୍ଧୀୟ ଧର୍ମ, କର୍ମ, ଶାସ୍ତ୍ର ଓ ପୁରାଣାଦିସମ୍ମତ ବିଧି-ନିର୍ଦ୍ଦିଷ୍ଟଭାବରେ ସାଙ୍ଗ କରିବା ମଧ୍ୟ କର୍ତ୍ତବ୍ୟ ଅଟେ । ଆଶ୍ରମ-ଧର୍ମ ସମ୍ବନ୍ଧରେ ଏହା ଦୈହିକ ବା ଗାର୍ହସ୍ଥ୍ୟ-ଧର୍ମ ସାଧନର ପ୍ରଥମାବସ୍ଥା ଅଟେ । ବ୍ରହ୍ମଚର୍ଯ୍ୟ ଅର୍ଥାତ୍ ପ୍ରାଣାୟାମାଦି ସାଧନ; ଏଥିରେ ପ୍ରାଣର ଶାନ୍ତି, ସୁସ୍ଥତା ଉପସ୍ଥିତ ହୁଏ । ବାନପ୍ରସ୍ଥର ଅର୍ଥ ପ୍ରତ୍ୟାହାର, ଧ୍ୟାନ ଓ ଧାରଣା; ଏଥିରେ ଅନ୍ତଃକରଣର ଶାନ୍ତି, ସ୍ୱାସ୍ଥ୍ୟ ମଧ୍ୟ ସମ୍ପନ୍ନ ହୁଏ । ସନ୍ନ୍ୟାସ, ସମାଧି ସିଦ୍ଧି ବା ଆତ୍ମଲୟ; ଏଥିରେ ଆତ୍ମଶାନ୍ତି ଓ କୈବଲ୍ୟ ଅନୁଭୂତ ହୁଏ । ପ୍ରକୃତିଗତ ଶାନ୍ତି ଏହି ଆତ୍ମଶାନ୍ତିର ଅନ୍ତର୍ଗତ । ଏଥିରେ ଶୁଦ୍ଧ ସତ୍ତ୍ୱର ପୂର୍ଣ୍ଣ ବିଭବ ଏବଂ ରଜସ ତାମସର ଏକାନ୍ତ ଅଭାବ ଲକ୍ଷିତ ହୁଏ । ଅବସ୍ଥାବିଶେଷରେ ଗୁଣତ୍ରୟ ସାମ୍ୟଭାବ ପ୍ରାପ୍ତ ହୁଅନ୍ତି । ଏତଦ୍ଦ୍ୱାରା ଆତ୍ମକୈବଲ୍ୟ ଲାଭାର୍ଥ ଆତ୍ମାର ସ୍ଥିର ଶାନ୍ତି ସମ୍ପାଦିତ ହୁଏ । ଅନ୍ୟଥାରେ ଅନ୍ତଃକରଣ ବିଷୟଗତ କର୍ତ୍ତୃତ୍ୱ ଓ ଭୋକ୍ତୃତ୍ୱାଦି ଭାବ ରହିତ ହୋଇ ଶାନ୍ତି ଲାଭ କରେ ।

ଆଶ୍ରମଧର୍ମ ଚତୁଷ୍ଟୟ ଆତ୍ମଜ୍ଞାନ-ସିଦ୍ଧିପକ୍ଷରେ କ୍ରମେ କ୍ରମେ ଚାରୋଟି ସୋପାନ ସ୍ୱରୂପ ଅଟନ୍ତି । ପ୍ରକୃତିଗତ ଗୁଣତ୍ରୟର ଶୃଙ୍ଖଳା ଅଥବା ବିକ୍ଷୋଭରୁ ଗୁଣବୈଷମ୍ୟ ଜାତ ହୋଇ ଅନ୍ତଃକରଣକୁ କର୍ତ୍ତୃତ୍ୱ, ଭୋକ୍ତୃତ୍ୱାଦି ଅଭିମାନଦ୍ୱାରା ଚଞ୍ଚଳ କରେ । ଏହି ଅନ୍ତଃକରଣର କମ୍ପନରୁ ପ୍ରାଣେନ୍ଦ୍ରିୟାଦିର କମ୍ପନ, ତହିଁରୁ ଅଙ୍ଗପ୍ରତ୍ୟଙ୍ଗସମନ୍ୱିତ ଭୌତିକ ଦେହର କମ୍ପନ, ଏଥିରୁ ଜଡ଼ଜଗତ ତଥା ଜାଗତିକ ପଦାର୍ଥାଦିର ଚଳନ, କମ୍ପନ, ରୂପାନ୍ତର ବା ସ୍ଥାନାନ୍ତର ଗ୍ରହଣ ଇତ୍ୟାଦି ସଂଘଟିତ ହୁଏ । ଏହି ସମସ୍ତର ଚଳନ ଏକତ୍ରରେ ମିଶି ବାୟୁର ନାନାଦିଗ ଗତିର ଏବଂ ଜଳସ୍ରୋତର ନାନାଦିଗ ଗତିର ଆଘାତ ପ୍ରତିଘାତରେ ଚକ୍ରାବର୍ତ୍ତ ସୃଷ୍ଟି ହେବାପରି, ସଂସାର ବୈଚିତ୍ର୍ୟାକାରିତ ଚକ୍ର ସୃଷ୍ଟି କରେ । ଆତ୍ମା ଏହି ଚକ୍ରର ଦ୍ରଷ୍ଟାମାତ୍ର । ଆତ୍ମାର ଏହି ଦର୍ଶନ ଦୁଇ ପ୍ରକାରର ଅଟେ । ପ୍ରଥମ ଲିପ୍ତ ଓ ଦ୍ୱିତୀୟ ନିର୍ଲିପ୍ତ । ଆତ୍ମଦୃଷ୍ଟିର ମାହାତ୍ମ୍ୟ ଏହି ଯେ ତଦ୍ଦ୍ୱାରା

ଉଲ୍ଲିଖିତ ଜଗଦାକାର ଚିତ୍ତ ଲବ୍ଧଶ୍ରାଯ଼ ହୋଇ ଆତ୍ମମୟ ହୋଇଯାଏ, ଯେପରି ଖାଲି ଦର୍ପଣ ଗୃହ୍ଣିବାଦ୍ୱାରା ପ୍ରତିବିମ୍ବମୟ ଦୃଷ୍ଟ ହୁଏ । ଆତ୍ମା ଏହି ଚିତ୍ତ ଦର୍ଶନ କରି ମୋହ-ବଶତଃ ସେହି ଚିତ୍ତକୁ ସ୍ୱୟଂ ଆପେ ବୋଲି ଜ୍ଞାନ କରିବାର ନାମ ଲିପ୍ତଦର୍ଶନ । ଆତ୍ମା ଆତ୍ମଜ୍ଞାନ ସହକାରେ ଆତ୍ମସଂପ୍ରତିଷ୍ଠ ରହି ସେହି ଚିତ୍ତକୁ ସାଳଂକୃତା ନର୍ତ୍ତକୀ ପ୍ରାୟ ନିକଟସ୍ଥ ପୃଥକ୍ ବସ୍ତୁରୂପେ ଦର୍ଶନ କରି ତନ୍ଦ୍ୱାରେ ବିମୋହିତ ନ ହେଲେ ସେହି ଦର୍ଶନର ନାମ ନିର୍ଲିପ୍ତ ଦର୍ଶନ । ପ୍ରଥମ ଦର୍ଶନଟି ବନ୍ଧନ ଏବଂ ଦ୍ୱିତୀୟଟି ମୋକ୍ଷର ହେତୁ ଅଟେ ।

ଆତ୍ମା ସ୍ୱଭାବତଃ ମୁକ୍ତ ହେଲେ ସୁଦ୍ଧା ଅନାଦି ସଂସ୍କାର ଓ ଅଭ୍ୟାସ ବଳରେ ମାୟିକ ସ୍ୱଭାବ ବିଶିଷ୍ଟ ହୋଇ ଦେହ ସଂସାରାତ୍ମକ କର୍ମ ଏବଂ ଭୋଗରେ ଆତ୍ମଭାବ କଳ୍ପନା କରି ସୁଖୀ କିମ୍ବା ଦୁଃଖୀ ବୋଲି ଆପଣାକୁ ସ୍ଥିର କରିଅଛନ୍ତି । ଏହି କଳ୍ପନା-ମୂଳକ ସଙ୍ଘାତର ନାମାନ୍ତର ଭବାର୍ଥ ଆମ୍ଭେ ଏହି ସଂସାରୀ ମନୁଷ୍ୟ । ଆମ୍ଭେମାନେ ଏହିପରି ମନୁଷ୍ୟ ହୋଇଥାଉଁ । ଏଥିରୁ ଆଜି ଦିନର ମାନବ ସମାଜ କିପରି ମୂଢ଼ ଓ କ୍ଲିଷ୍ଟ ହୋଇଅଛି । ଜଡ଼ବାଦ, ମ୍ଲେଚ୍ଛସଂସର୍ଗ ଓ ଏଥିରୁ ପୁଣି ମୋହାଧିକ୍ୟ ପ୍ରବଳ ହୋଇ ଏହି ମୂଢ଼ତା ଓ କ୍ଲେଶକୁ ବହୁଗୁଣରେ ବୃଦ୍ଧି କରିଅଛି । ଏବେ ଦେଖିବାକୁ ହେବ ପ୍ରକୃତିଠାରୁ ଆରମ୍ଭ କରି ଦେହ ସଂସାରସ୍ଥ ପଦାର୍ଥ ପର୍ଯ୍ୟନ୍ତର ଚଳନରେ ଯେଉଁ ମୋହ ଉତ୍ପତ୍ତି ହୋଇଅଛି, ସେହି ମୋହର ନିବୃତ୍ତି ଆତ୍ମାର ଆତ୍ମଜ୍ଞାନ ପକ୍ଷରେ ଏକମାତ୍ର ହେତୁ ଅଟେ । ସେହି ହେତୁରୁ ଯମ, ନିୟମ ଓ ଆସନାଦି ଦ୍ୱାରା ଦେହର ସ୍ଥିରତା ଏବଂ ଶାନ୍ତି ଆନୟନ କରିବାକୁ ହେବ ଏବଂ ପରେ କ୍ରମେ କ୍ରମେ ପ୍ରାଣାୟାମାଦି ଦ୍ୱାରା, ପ୍ରାଣର ପ୍ରତ୍ୟାହାରାଦି ଦ୍ୱାରା, ଅନ୍ତଃକରଣର ଆତ୍ମଲୟ ଓ ସମାହିତତା ଦ୍ୱାରା ଆତ୍ମାର ଶାନ୍ତି ସମ୍ପାଦନ କରିବାକୁ ହେବ । ଅତଏବ ଗାର୍ହସ୍ଥ୍ୟ, ବ୍ରହ୍ମଚର୍ଯ୍ୟ, ବାନପ୍ରସ୍ଥ ଏବଂ ସନ୍ନ୍ୟାସାଦି ଆଶ୍ରମ ଧର୍ମବର୍ଣ୍ଣିତଚତୁଷ୍ଟୟ ଆତ୍ମାର ସ୍ୱଧର୍ମ ଅଟେ । ଏହା କାଳ୍ପନିକ ନୁହେ । ଉପଯୁକ୍ତ କାର୍ଯ୍ୟକାରଣ ଅଭାବରେ ଯଥାର୍ଥ ଫଳଲାଭ ଅସମ୍ଭବ ବା ଅସାଧ୍ୟ ଅଟେ ବୋଲି ଅବଧାରିତ ହେଲେ ସୁଦ୍ଧା ଧର୍ମକୁ ଛଳନା କରି ଏଆଡ଼େ ସେଆଡ଼େ ଇଚ୍ଛାପୂର୍ବକ ଭ୍ରମି ଭ୍ରମି ଆତ୍ମଜ୍ଞାନ ଲାଭ କିପରି ହୋଇପାରେ ? କମ୍ପନରୁ ଯେଉଁ ଜ୍ୱରର ପ୍ରକୋପ ବଢ଼ିଅଛି, ସେହି କମ୍ପନ ପ୍ରଶମିତ ବା ବନ୍ଦ ନ ହେଲେ ରୋଗ ଭଲ ହେବା ଅସମ୍ଭବ । ଅତଏବ ପ୍ରକୃତ୍ୟାଦିର କମ୍ପନରୁ ଯେଉଁ ମୋହାତ୍ମକ ଭବରୋଗ ଶେଷସୀମା ପର୍ଯ୍ୟନ୍ତ ବଢ଼ିଗଲାଣି, ସେହି କମ୍ପନକୁ ଆଶ୍ରମଧର୍ମାବଲମ୍ବନ ଦ୍ୱାରା ଉପଶମନ ନ କଲେ ରୋଗ ଆରୋଗ୍ୟ ବା ନିବୃତ୍ତି ହେବ ନାହିଁ । ଅର୍ଥାତ୍ ଉକ୍ତ ମାୟିକ ଶୃଙ୍ଖଳା ବା ବିକ୍ଷୋଭର ନିବୃତ୍ତି ନ ହେଲେ ଆତ୍ମଜ୍ଞାନ ନାହିଁ । ଆତ୍ମଜ୍ଞାନ ଅଭାବରେ ଶାନ୍ତି ବା ମୁକ୍ତି ଅସମ୍ଭବ ।

ଏବେ ଆଶ୍ରମ ଧର୍ମର ଅଭ୍ୟାସର ଆଶ୍ରୟ ନିଆଯାଉ । ଅଭ୍ୟାସ ଦୁଇ ଭାଗରେ ବିଭକ୍ତ, (୧) ଅନ୍ତର୍ମୁଖାଭ୍ୟାସ ଏବଂ (୨) ବହିର୍ମୁଖାଭ୍ୟାସ । ଆତ୍ମାର ଅନ୍ତଃକରଣ

ସହିତ ଜ୍ଞାନ, ଧର୍ମ, ବୈରାଗ୍ୟ ବଳରେ କ୍ରମେ ଶତ୍ରୁସଂହତ୍ ବା ଆତ୍ମକୈବଲ୍ୟଲାଭ ନିମିତ୍ତ ପରମାତ୍ମତତ୍ତ୍ୱ ଆଡ଼େ ଲକ୍ଷ୍ୟକୁ ଉନ୍ମୁଖୀନ କରିବାର ଯେ ସାଧନ, ତାହାର ନାମ ଅନ୍ତର୍ମୁଖାଭ୍ୟାସ ଏବଂ ଆତ୍ମାର ଅନ୍ତଃକରଣ ସହିତ ପ୍ରାଣେନ୍ଦ୍ରିୟାଦି ସାହାଯ୍ୟରେ କର୍ତ୍ତୃତ୍ୱାଭୋକ୍ତୃତ୍ୱାଦି ଅଭିମାନ ବିନା ଆତ୍ମଶୁଦ୍ଧି, ଅନ୍ତଃଶୁଦ୍ଧି ଏବଂ କ୍ରିୟାଶୁଦ୍ଧି ନିମିତ୍ତ ଶୁଦ୍ଧ ସାତ୍ତ୍ୱିକ ଯାଜନ ସାଧନାଦି ଆଡ଼େ ଜୀବନର ଲକ୍ଷ୍ୟକୁ ଉନ୍ମୁଖୀନ କରିବାର ନାମ ବହିର୍ମୁଖ ସାଧନ । ଅନ୍ତର୍ମୁଖାଭ୍ୟାସ ଜ୍ଞାନାଦି ସୂକ୍ଷ୍ମସାଧନ ସାପେକ୍ଷ ଅଟେ । ସୁତରାଂ ପ୍ରଥମରୁ ଅଭ୍ୟାସ କରିବା କଠିନ । ବହିର୍ମୁଖାଭ୍ୟାସ ବହିଃସ୍ଥ ଅର୍ଥାତ୍ ଦେହସ୍ଥ ପ୍ରାଣେନ୍ଦ୍ରିୟାଦି ସାହାଯ୍ୟରେ ଅନୁଷ୍ଠାନ କରିବାକୁ ହୁଏ । ଅତଏବ ଏହା ଅପେକ୍ଷାକୃତ ସୂକ୍ଷ୍ମ ଅଟେ । ଏ ହେତୁ ଏହା ମଧ୍ୟ ଅନ୍ତର୍ମୁଖାଭ୍ୟାସ ପ୍ରତି ଅନୁକୂଳ ହୁଏ ।

ପ୍ରାଣୀ ମାତ୍ରେ ଅଭ୍ୟାସ ଏବଂ ସଂସ୍କାରାଧୀନ । ସେହି ଅଭ୍ୟାସାଦି ମନୁଷ୍ୟକୁ ସ୍ଥୂଳ ଆଡକୁ ଅର୍ଥାତ୍ ବୈଷୟିକ କର୍ମ ଏବଂ ଭୋଗ ଆଡ଼କୁ ଆକୃଷ୍ଟ କରିଅଛି । ତେବେ ଅସାଧ୍ୟ ଅଥଚ ଚଞ୍ଚଳସ୍ୱଭାବ ଘୋଟକକୁ ଯେପରି କ୍ରମେ କ୍ରମେ ସ୍ଥିର କରିବାର ଶିକ୍ଷା ଦିଆଯାଏ, ସେହିପରି ପ୍ରାଣେନ୍ଦ୍ରିୟ ସହିତ ଦେହକୁ ସୁସଂଯତ ଭାବରେ ଯଥାବିହିତ କର୍ମ ଏବଂ ଭୋଗାଦିରେ ପ୍ରବର୍ତ୍ତାଇ ଏକଆଡ଼େ ସଂସାର ଯାତ୍ରା ଏବଂ ଅନ୍ୟ ଆଡ଼େ ଧର୍ମ-ଲକ୍ଷ୍ୟସାଧନ, କର୍ମାଦି ନିର୍ବାହର ଉପଯୋଗୀ କରାଇବା ଆତ୍ମତଃ କର୍ତ୍ତବ୍ୟ ଅଟେ । ସେହି ହେତୁ ଆତ୍ମାର ଆଶ୍ରମ ଧର୍ମ ସାଧନାର୍ଥ ଦୈନିକ କ୍ରିୟାର ନିୟମାନୁବର୍ତ୍ତୀ ହେବା ଉଚିତ । ସେହି କ୍ରିୟା ଯମ, ନିୟମ, ଆସନାଦି ନାମରେ ବିହିତ ଅଟେ । ଇନ୍ଦ୍ରିୟାଦି ସଂଯମର ଅର୍ଥ ଯମ ଅର୍ଥାତ୍ ଦେହ ଏବଂ ପ୍ରାଣାଦିର ସୁରକ୍ଷା ନିମିତ୍ତ ସାତ୍ତ୍ୱିକ କ୍ରିୟା ଏବଂ ଭୋଗ ସମ୍ପାଦନ କରିବା କର୍ତ୍ତବ୍ୟ । ଅଥଚ ତଦ୍ରୂପ କର୍ମ ଏବଂ ଭୋଗାଦି ସ୍ୱେଚ୍ଛାଚାରିତା ଏବଂ ବିଳାସିତାଦି ଦୋଷ ବିବର୍ଜିତଭାବରେ ବିଶେଷତଃ ଅପରାପର ସମ୍ପର୍କୀୟ ବା ନିଜ ସମ୍ପର୍କୀୟ ସର୍ବପ୍ରାଣୀର ତଥା ସଂସାରର ମତାନୈକ୍ୟ ଅପକାର ଅଭାବ ପ୍ରକାରରେ ସାଧିତ ହେବାର ବିଧେୟ । ନିୟମର ଅର୍ଥ ଯଥା ଧର୍ମାଦି ସମାହିତର ଏବଂ ସଂସାରର ବା ନିଜର ମଙ୍ଗଳଜନକ, ବିଶୁଦ୍ଧ ନୈତିକତାର ଅର୍ଥ ଦେହକୁ ପବଶଭାବରେ ରଖିଲେ ଦେହ ଅଟଳ, ଅଚଳ ଏବଂ ସ୍ଥିର ହୋଇ ରହେ । ଦେହର ସୁଖ, ଶାନ୍ତି ସମ୍ପାଦିତ ହୁଏ । ତାହାର ନାମ ଆମ୍ନ୍ୟାସ ବା ସନ୍ନ୍ୟାସ ମାସନ ଇତ୍ୟାଦି ।

ପୂର୍ବବର୍ଣ୍ଣିତ ଧର୍ମାଖ୍ୟାନରେ ମାନବ ସମଷ୍ଟ୍ୟାତ୍ମକ ବିଶ୍ୱମୂର୍ତ୍ତିକୁ ମାନବୀୟ ସଂସାରକାରରେ ଆରୋପ କରାଯାଇ ସେହି ମୂର୍ତ୍ତିର ବିରାଟ ଅଙ୍ଗ ସୁରକ୍ଷା ଓ ସଂସ୍ଥାନ ନିମିତ୍ତ ଶ୍ରମଜୀବୀତ୍ୱ, କୃଷିବାଣିଜ୍ୟଜୀବୀତ୍ୱ, ଅସି ଏବଂ ମସୀଜୀବୀତ୍ୱ ଓ ଜ୍ଞାନଜୀବୀତ୍ୱାଦି ଚାରିପ୍ରକାର ଆତ୍ମସ୍ୱଭାବାନୁମୋଦିତ ବୃତ୍ତି, ତଦନୁସାରେ ଚାରିପ୍ରକାରର କର୍ମବିଭାଗ ଏବଂ ଉକ୍ତରୂପ ବିଭାଗାନୁଯାୟୀ ଚାରିପ୍ରକାର ବର୍ଣ୍ଣରେ ମାନବ ସମାଜ ବିଭକ୍ତ ହୋଇ-

ଥିବାର ବ୍ୟବସ୍ଥା ବ୍ୟକ୍ତ କରାଯାଇଅଛି । ତଦ୍ରୂପ ସୃଷ୍ଟିପ୍ରକାର କର୍ମ ସଂସାରସ୍ଥ ମାନବସାଧାରଣର ମଙ୍ଗଳ ଏବଂ ଉପକାରାର୍ଥ ସାଧିତ ହେବାର ନିୟମ ଥିବାରୁ ତାହା ଜାତିଗତ ଧର୍ମାତ୍ମକ କର୍ତ୍ତବ୍ୟରେ ପରିଣତ ହୋଇଅଛି । ମନୁଷ୍ୟ ବ୍ୟକ୍ତିଗତଭାବରେ ଯାହା କରେ, ତାହା ସୂକ୍ଷ୍ମାନୁସନ୍ଧାନ ପୂର୍ବକ ଦେଖିବାକୁ ଗଲେ ସଂସାରଆଡ଼େ ଯଥା ପରିମାଣରେ ତହିଁର ଫଳ ପ୍ରଯୁକ୍ତ ହୋଇଥାଏ; ଏହା ପ୍ରକୃତିର ନିୟମ । ଏମନ୍ତ କି ମନୁଷ୍ୟ ଯାହା ଭକ୍ଷଣ କରେ, ମନେକରେ ସେ ତାହାର ନିଜର ଉଦର ପୂରଣାର୍ଥ ତାହା ଭକ୍ଷଣ କରି ତୃପ୍ତି ଲାଭ କଲା; ତହିଁରେ ଅନ୍ୟ କାହାର କିଛି ସମ୍ପର୍କ ନାହିଁ । ମାତ୍ର ତଦ୍ୱାରା ତାହାର ଯେଉଁ ଦୈହିକ ବଳ ସମ୍ପାଦିତ ହେଲା, ସେହି ବଳରେ ସେ ଯେଉଁ କର୍ମ କରିବ ସେହି କର୍ମର ଫଳ ସଂସାର ମଧ୍ୟରେ କାହାରି ନା କାହାରି ଆଡ଼କୁ ଆକୃଷ୍ଟ ହୋଇ ଚାଲିଯିବ । ଏହି ସମ୍ମିଶ୍ରଣ ବିଶ୍ୱପ୍ରକୃତିଦ୍ୱାରା ସବୁବେଳେ ସାଧିତ ହେଉଅଛି ।

ଜଣେ ଶ୍ରମଜୀବୀ ଦୈନିକ ମଜୁରି ନେଇ ଯେଉଁ କୃଷିକର୍ମାଦି ସମାପନ କରେ, ତହିଁର ଫଳ ସ୍ୱରୂପ ଶସ୍ୟ ବା ଫଳପତ୍ରାଦି ନାନାପ୍ରକାର ଲୋକମୁଖରେ ପଡ଼ିଯାଇଥାଏ । ଏହା ବାରିତ ବା ବାଧିତ ହେବାର ନୁହେ । କୋଟିପତି ଲୋଭଗ୍ରସ୍ତ ହୋଇ ବହୁତ ଧନ ଏକତ୍ର କରି ରଖି ଜଗି ବସିଥାଏ । ମାତ୍ର ଅନିବାର୍ଯ୍ୟ କାଳଗତିରେ ତାହା କେତେ କେତେ ଆଡ଼େ ଚାଲିଯାଏ ତାହାର ଇୟତ୍ତା ନାହିଁ । ପ୍ରତ୍ୟେକେ ସେହି ଯୋଗେ ଅନ୍ନ ଏବଂ ଚଳେ ପାଣିରେ ଦେହ ରକ୍ଷା କରନ୍ତି । କେହି ହାତୀ-ଘୋଡ଼ା ଗିଳି ପାରେ ନାହିଁ । ମନୁଷ୍ୟ ଖାଲି ଅହଂକାର, ମମକାର ପାଶରେ ଆବଦ୍ଧ ରହି ମୋହଗର୍ବରେ ଆପଣାକୁ ଅଲଗା କରି ମଣୁଅଛି । ମାତ୍ର ବିଶ୍ୱପ୍ରକୃତିର ମାଲଯାକ ସବୁ । ତାହାର କୋଠଭଣ୍ଡାରାନ୍ତର୍ଗତ କରି ରଖି ଦେଖି ଚାହିଁ ସବୁ ସନ୍ତାନମାନଙ୍କୁ ଯଥାନିୟମରେ ଯଥା ଯଥା ପରିମାଣରେ ବଣ୍ଟନ କରି ଦେଉଅଛି । ପାଣିରେ ପଦ୍ମ ଲେଖି ଯେତେ ଅଲଗା ରଖିବାକୁ ଚେଷ୍ଟାକର, ସେହି ପଦ୍ମଟିକୁ ଜଳ ନିଜ ଅଙ୍ଗରେ ସଙ୍ଗେ ସଙ୍ଗେ ମିଶାଇ ଦେଇ ନିଶ୍ଚିହ୍ନ କରିଦେବ—ଏହା ଜଳର ଧର୍ମ । ମାନବର ପାର୍ଥକ୍ୟ ପ୍ରକୃତି-ଗର୍ଭରେ ସେହିପରି ଅଟେ । ଅତଏବ ଚତୁର୍ବର୍ଣ୍ଣଭୁକ୍ତ ପ୍ରତ୍ୟେକ ଜାତିସ୍ଥ ପ୍ରତ୍ୟେକ ଲୋକର ନିଜ ନିଜ ଜାତିଗତ କର୍ମ ନିଜପାଇଁ କେବଳ ନୁହେ । ଫଳତଃ ତାହା ସଂସାର ସକାଶେ ସୃଷ୍ଟ । ଏହି ହେତୁ ସେହି ସେହି କର୍ମ ଧର୍ମର ଅନ୍ତର୍ଗତ । ଏହିରୂପେ କର୍ମାନୁସାରେ ବର୍ଣ୍ଣ-ଧର୍ମ ନିରୂପିତ ହୋଇଅଛି ।

ବ୍ୟକ୍ତିତ୍ୱ ସଂସାରକୁ ଛାଡ଼ି ରହି ନ ପାରେ; ସଂସାରର ନାମ ବ୍ୟକ୍ତିତ୍ୱର ସମଷ୍ଟି । ଅତଏବ ବ୍ୟକ୍ତିତ୍ୱ ସମଷ୍ଟି ଏବଂ ବ୍ୟକ୍ତିତ୍ୱ ବ୍ୟଷ୍ଟିର ନିୟମ ସମ୍ବନ୍ଧେ ଉଭୟ ପରସ୍ପର ସାପେକ୍ଷ । ଏହି ନିୟମାନୁସାରେ ମନୁଷ୍ୟର କର୍ମ ଆତ୍ମାର ପ୍ରୀତି ନିମିତ୍ତ ସେହି ମାନବୀୟ ବିରାଟ ଅଙ୍ଗର ଦୈହିକ ସେବା ଲକ୍ଷଣରେ ସାଧିତ ହେଉଅଛି । ଅତଏବ ଏହା ଦୈହିକ ସେବା; ଅର୍ଥାତ୍ ବିରାଟ-ମୂର୍ତ୍ତିର ସ୍ଥୂଳ ଅଙ୍ଗର ସେବା । ଏହି ସେବା

ଅଭାବରେ ଦେହରକ୍ଷା ଅସମ୍ଭବ । ଦେହ ରକ୍ଷାର ବ୍ୟତିକ୍ରମରେ ଆତ୍ମାର ପ୍ରୀତି ସମ୍ପାଦିତ ହୋଇ ନ ପାରେ । ଏଣୁକରି ଆତ୍ମାର ପ୍ରୀତିଅର୍ଥରେ ଯାହା କରାଯିବାର କର୍ତ୍ତବ୍ୟ ବୋଲି ଲିଖିତ ହୋଇଅଛି, ତାହା ସମ୍ବନ୍ଧରେ ହେଲେ ସୁଦ୍ଧା ତନ୍ମିଁରେ ଆତ୍ମାର ପ୍ରୀତି ସ୍ଥିରତର ଥିବାରୁ ତାହା ଧର୍ମ । ଏହିରୂପେ ବର୍ଣ୍ଣଗତ କର୍ମବିଧି ଧର୍ମ ଅଙ୍ଗ-ସ୍ୱରୂପ ଅଟେ । ଏତଦ୍ରୂପ ଧର୍ମ-ଜ୍ଞାନ ଅଭାବରେ କେବଳ ମୋହାହଂକାରଯୁକ୍ତ ହୋଇ ଯେଉଁ କର୍ମାନୁଷ୍ଠାନ, ତାହା ପୈଶାଚୀ ବା ରାକ୍ଷସୀ କ୍ରିୟା ନାମରେ କଥିତ ଅଟେ । ଏହିରୂପେ ବର୍ଣ୍ଣ-ଧର୍ମୀ ମାନେ ଗୃହସ୍ଥ ପଦବାଚ୍ୟ । ଗୃହସ୍ଥର ଧର୍ମ ଗୃହରକ୍ଷା ଏବଂ ଗୃହର ଧର୍ମରକ୍ଷା ।

ମନୁଷ୍ୟ ଜାତିଗତ ଧର୍ମାନୁସାରେ ନିଜ ନିଜ ଜାତୀୟ ଧର୍ମ କର୍ମ ଅନୁଷ୍ଠାନ କରି ସେହି କର୍ମକୁ ଫଳ ସହିତ ସେହି ବିରାଟ ଅଙ୍ଗରେ ଅର୍ପଣ କଲି ବୋଲି ଅନ୍ତଃ ଜ୍ଞାନ କରିବା ଉଚିତ । ତନ୍ମିଁରୁ ଅହଙ୍କାରଶୂନ୍ୟ ହେବାକୁ ହୁଏ । ଏତଦ୍ରୂପ ନିରହଙ୍କାର କର୍ମୀ ଦେଖିବାକୁ ପାଏ ଯେ ମାଟି, ଇଟା, ପଥର ନିର୍ମିତ ଗୃହାଦି ଦେହର ଗୃହ, ଆତ୍ମାର ନୁହେ । ମାନବୀୟ ଦେହ ଆତ୍ମାର ଗୃହ ଅଟେ । ଏହି ଦେହରୂପ ଗୃହରେ ଆତ୍ମଦେବ ବାସ କରି ରହିଅଛନ୍ତି । ଅତଏବ ଏହି ଦେହାକାର ଗୃହକୁ ଆତ୍ମାରୂପ ଗୃହୀର ଉପଯୁକ୍ତ ବିଶ୍ରାମ ସ୍ଥାନ ରୂପେ ପରିଣତ କରିବା ଏକାନ୍ତ କର୍ତ୍ତବ୍ୟ । ଏହାର ଅର୍ଥ ଦୈହିକ ପବିତ୍ରତା ଏବଂ ସ୍ଥୈର୍ଯ୍ୟ ସମ୍ପାଦନ । ଏହି ଉଭୟବିଧ ସମ୍ପାଦନ ନିମିତ୍ତ ଯମ, ନିୟମ ଏବଂ ଆସନାଦିର ନିୟମ ଗୃହସ୍ଥ ଧର୍ମରେ ବ୍ୟବସ୍ଥିତ ହୋଇଅଛି । ତେବେ ଗୃହସ୍ଥ ଧର୍ମ ଦୁଇ ପ୍ରକାରରେ ବିଭକ୍ତ କରାଗଲା । ପ୍ରଥମ ପ୍ରକାର ଆତ୍ମାର ସ୍ଥୂଳ ବିରାଟ ଅଙ୍ଗରେ ସେବା ଅର୍ଥାତ୍ ବର୍ଣ୍ଣଧର୍ମାନୁମୋଦିତ କର୍ମାଦି ଏବଂ ଦ୍ୱିତୀୟ ପ୍ରକାର ଏହି ଯେ ଏହା ଆଶ୍ରମ-ଧର୍ମ ନାମରେ ନାମିତ ଅଟେ । ଆଶ୍ରମ ଧର୍ମର ପ୍ରଥମ ସୋପାନ ଗୃହସ୍ଥ ଧର୍ମ ।

ଗୃହୀ ବ୍ୟକ୍ତି ଅର୍ଥାତ୍ ଦେହସ୍ଥ ଆତ୍ମା, ସାଂସାରିକ ବର୍ଣ୍ଣଗତ ଧର୍ମାନୁଷ୍ଠାନ କରି ମୁଖ୍ୟତଃ ସଂସାରୀୟ କର୍ମ କରି କରି ଜୀର୍ଣ୍ଣ-ଶୀର୍ଣ୍ଣ ହେଉଅଛି । ଦେହର ପତନ ସମ୍ମୁଖରେ ଉପସ୍ଥିତ ଦେହକୁ ଦିନେ ତ୍ୟାଗ କରି ତାହା ସଙ୍ଗେ ସଙ୍ଗେ ପରିବାରବର୍ଗ ଓ ଧନସମ୍ପତ୍ତି, ମୋହ, ଗର୍ବ, ଆଡ଼ମ୍ବର ଏବଂ ମାନମର୍ଯ୍ୟାଦାଦି ପୂର୍ଣ୍ଣ ସମସ୍ତ ସଂସାରକୁ ବିସ୍ମରଣ କରି କେଉଁ ଅଜ୍ଞାତ ଅନ୍ଧକାର ପୁରକୁ ଗମନ କରିବ ତାହା ଭାବନାତୀତ । ଗୃହସ୍ଥାଶ୍ରମରେ ଦେହରୂପ ଗୃହର ଏତଦ୍ରୂପ ଅବସାନ ନିକଟବର୍ତ୍ତୀ ବୋଲି ନିଶ୍ଚୟ କରି ଦୈହିକ ସାଧନ, ଧର୍ମ, ଯମ ଓ ନିୟମାଦି ଅନୁଷ୍ଠାନ କଲାରୁ ଦେହ ସୁସ୍ଥିରତା ଲାଭ କରିବ । ତନ୍ମିଁ ଉତ୍ତାରୁ ଦେଖିବାକୁ ମିଳିବ ଯେ, ଦେହ ସ୍ଥିର ହେଲେ ସୁଦ୍ଧା ପ୍ରାଣବାୟୁ ଯଥାତଥା ଅସ୍ଥିର ଭାବରେ ଗତି କରୁଅଛି । ଏହିଠାରେ ଆଶ୍ରମାନ୍ତର ଗ୍ରହଣର ସମୟ ଉପସ୍ଥିତ ହେବ । ସୁତରାଂ ଦେହରୁ ଆସ୍ଥା ତ୍ୟାଗକରି ଘର ବୁଡ଼ିଗଲେ ନିକଟବର୍ତ୍ତୀ ବୃକ୍ଷକୁ ଉଠି ପ୍ରାଣରକ୍ଷା

କଲାପରି ପ୍ରାଣରେ ଅବସ୍ଥାନ କରିବାକୁ ହେବ । ଏହାର ନାମ ବ୍ରହ୍ମଚର୍ଯ୍ୟାଶ୍ରମ । ବ୍ରହ୍ମ ପରି ଆଚରଣ କରିବାର ନାମ 'ବ୍ରହ୍ମଚର୍ଯ୍ୟ' ।

ବ୍ରହ୍ମ ଯେପରି ସବୁଥିରେ ସର୍ବମୟ ଅଥଚ କାହିଁରେ ଲିପ୍ତ ନୁହେ, ବାୟୁ ସେହିପରି ସମସ୍ତ ଚଳାଉଅଛି, ସବୁ ସ୍ପର୍ଶ କରୁଅଛି, ଅଥଚ କାହିଁରେ ନ ମିଶି ନିଜାକାରରେ ରହିଅଛି; ସୁତରାଂ ପ୍ରାଣରେ ଅବସ୍ଥାନ କରିବାର ନାମ ବ୍ରହ୍ମଚର୍ଯ୍ୟାଶ୍ରମ । ପ୍ରାଣରେ ଅବସ୍ଥାନ କଲାରୁ ଦେଖାଯାଏ ଯେ ଏହା ସଦା ଗୃନ୍ଧୀମାନ । ଏ ମଧ୍ୟ ଏକ ସମୟରେ ଦେହରୁ ବାହାରିଯିବ । ତେବେ ଏହାର ସ୍ଥିରତା ସମ୍ପାଦନ କରିବାକୁ ପ୍ରବୃତ୍ତି ଜାତ ହୁଏ । ଏହାର ନାମ 'ପ୍ରାଣାୟାମ', ଯାହାର ଆଶ୍ରୟରେ ପ୍ରାଣ ସ୍ଥିର ହୁଏ । ପ୍ରାଣସଂଯମର ଅନେକାନେକ ପ୍ରକ୍ରିୟା ନାନା ଗ୍ରନ୍ଥାଦିରେ ରହିଅଛି । ସେସବୁ ଏଠାରେ ଲେଖିବା ଅସମ୍ଭବ ଅଟେ । ନାସାରନ୍ଧ୍ରବର୍ତ୍ତୀ ପ୍ରାଣବାୟୁ ବାମନାସାପୁଟରେ ଥିଲାବେଳେ ପ୍ରାଣାୟାମ ଆରମ୍ଭ କରିବା ଉଚିତ । ପ୍ରଥମରୁ ଯଥାସନରେ ଉପବିଷ୍ଟ ହୋଇ ଦେହକୁ ଦଣ୍ଡାକାରରେ ସଳଖ ସିଧା ରଖି ସ୍ଥିର କରିବାକୁ ହେବ । ତହିଁ ବାମ ନାସାପୁଟସ୍ଥ ବାୟୁକୁ ବତିଶ ମାତ୍ରା ପରିମାଣରେ ନେଇ ପୂରଣ କରିବାକୁ ହେବ । ତା ପରେ ଉଭୟ ନାସାପୁଟ ବନ୍ଦ କରି ଚଉଷଠି ମାତ୍ରା ବା କଳା ପରିମାଣରେ ସେହି ପୂରିତ ବାୟୁକୁ କୁମ୍ଭକ ପ୍ରକାରରେ ଧାରଣ କରଣାନନ୍ତର ଦକ୍ଷିଣ ନାସାପୁଟରେ ଷୋଡ଼ଶ କଳା ପରି-ମାଣରେ ରେଚନ କରିବାକୁ ହେବ । ଏହିରୂପେ ପୂରଣର ନାମ 'ପୂରକ', ସ୍ଥିର ଧାରଣାର ନାମ କୁମ୍ଭକ ଏବଂ ରେଚନର ନାମ ରେଚକ ଅଟେ । ଏହି ପୂରକ, କୁମ୍ଭକ ଓ ରେଚକର ନାମ ଏକମାତ୍ରା ପ୍ରାଣାୟାମ । ଏ ଉତ୍ତାରୁ ପୁଣି ଦକ୍ଷିଣ ନାସାପୁଟରେ ପୂରକ କରି କ୍ରମେ କୁମ୍ଭକ କଲାରୁ ପରେ ବାମ ନାସାପୁଟଦ୍ୱାରେ ରେଚନ କରିବାକୁ ହେବ । ଏହିପରି କ୍ରମେ କ୍ରମେ ସାଧ୍ୟମତ ଅଳ୍ପ ଅଳ୍ପ ଅଭ୍ୟାସ କରାଯାଏ । ଏଥିରେ ପ୍ରାଣ ସ୍ଥିର ହୁଏ ।

ଜ୍ଞାନଚର୍ଚ୍ଚା ଦ୍ୱାରା ତତ୍ତ୍ୱଜ୍ଞାନର ଉଦୟ ହେଲେ ମଧ୍ୟ ପ୍ରାଣ ସ୍ଥିର ହୁଏ । ସ୍ଥିରା-ସନରେ ଉପବିଷ୍ଟ ରହି ଜ୍ଞାନମଗ୍ନ ହେଲେ ଏକପ୍ରକାର ଅବିଚ୍ଛିନ୍ନ ଅନାହତ ଧ୍ୱନି ଶ୍ରୁତ ହୁଏ । ସେହି ଧ୍ୱନିରେ ମନ ନିଶ୍ଚଳ କରି ରଖିଲେ ପ୍ରାଣ ନିଶ୍ଚଳ ହୁଏ । ସ୍ଥିରାସନରେ ବସି ନାସିକାଗ୍ର ଦୃଷ୍ଟିକରଣାନନ୍ତର ନାସାରନ୍ଧ୍ରସ୍ଥ ପ୍ରାଣ ବାହାରକୁ ଯାଇ ଯେଉଁ ସ୍ଥାନରେ ଆକାଶଗର୍ଭରେ ସାଧାରଣ ବାହ୍ୟ ବାୟୁରେ ମିଶି ପୁଣି ସେହି ସ୍ଥାନରୁ ଭିତରକୁ ପ୍ରତ୍ୟାବର୍ତ୍ତନ କରେ, ଯେହି ସୀମାନ୍ତ ସ୍ଥାନରେ ଦୃଷ୍ଟି ସ୍ଥିର କଲେ ପ୍ରାଣ ସ୍ଥିର ହୁଏ । ଏହିପରି ପ୍ରାଣ ସ୍ଥୈର୍ଯ୍ୟର ନାନାପ୍ରକାର ସାଧନ ବହୁ ବହୁ ଗ୍ରନ୍ଥରେ ଉକ୍ତ ଅଛି । ତାହା ଉପଦେଶ ସାହାଯ୍ୟ ନ ନେଇ ଅନୁଷ୍ଠାନ କରିବା ଏକାନ୍ତ ଅକର୍ତ୍ତବ୍ୟ ଅଟେ । ଅଳ୍ପ ବ୍ୟତିକ୍ରମ ହେଲେ ବଡ଼ ଅନିଷ୍ଟର ଆଶଙ୍କା । ଏହିପରି ଗୃହସ୍ଥାଶ୍ରମ ବିଧିପୂର୍ବକ ସାଙ୍ଗକରି ବ୍ରହ୍ମଚର୍ଯ୍ୟ ଅବଲମ୍ବନ କଲାରୁ ସଙ୍ଗେ ସଙ୍ଗେ କପରି ଆତ୍ମ-ଶାନ୍ତି ଉପଭୁକ୍ତ ହୁଏ, ତାହା କହିବା ବାହୁଲ୍ୟ ମାତ୍ର । ଯେ କରେ ସେହି ଏକା ବୁଝିବାକୁ ସମର୍ଥ ହୁଏ ।

ଏହି ବ୍ରହ୍ମଚର୍ଯ୍ୟ ସାଧନର ଆନୁଷଙ୍ଗିକ ଉପସଙ୍ଗିକ ନାନାପ୍ରକାର କ୍ରିୟାକୌଶଳ ଓ ମାନସିକ ସାଧନର ନିୟମ ବିଦ୍ୟମାନ ଅଛି । ସେସବୁ ମଧ୍ୟ ଶକ୍ତ୍ୟନୁସାରେ ପାଳନୀୟ ଅଟେ । ବ୍ରହ୍ମଚର୍ଯ୍ୟାଶ୍ରମୀ ଗୃହରେ, ବୃକ୍ଷମୂଳରେ ବା ଯେ କୌଣସି ସ୍ଥାନରେ ରହିପାରେ । ଘରୁ ବାହାରି ଗଲେ ଯେ ସବୁ ହେବ, ଏପରି କୌଣସି କଥା ନାହିଁ । ମାତ୍ର କେହି କେହି କହି ପାରନ୍ତି ଏଥିରେ ତ ଦିନ ଯିବ, ସଂସାର ଚଳିବ କିପରି ? ଏଥିରେ ସବୁ ସମୟ ଅତିବାହିତ ହେବାର ନୁହେ । 'ଦଣ୍ଡେ, ନିମିଷେ, କ୍ଷଣେ ପଡ଼, ନିତି ସାଧିବ ଦୁଃଖ ପଡ଼'—ଏହିପରି ମଧ୍ୟ ଉକ୍ତ ହୋଇଅଛି । ଏହିପରି ମଧ୍ୟ ସଂସାର ଚଳୁଅଛି ।

ଏହିରୂପେ ଦେହ ଏବଂ ପ୍ରାଣ ସ୍ଥିର ହୋଇ ଆତ୍ମାର ପ୍ରାଣାବସ୍ଥାନ ସ୍ଥିର ଓ ଦୃଢ଼ତରରୂପେ ନିର୍ଦ୍ଦିଷ୍ଟ ହେବା ପରେ ଏକ ସ୍ୱଭାବସିଦ୍ଧ ଜ୍ଞାନାତ୍ମକ ଭାବ ସ୍ୱୟଂ ଉପସ୍ଥିତ ହେବ । ତଦ୍ୱାରା ଆତ୍ମଦେବ ଉପଲବ୍ଧି କରିବେ, ଏହି ଦେହ-ସଂସାରବ୍ୟାପୀ ଜାଗତିକ ସମୁଦାୟ ଭୌତିକ ନାମରୂପାତ୍ମକ ବସ୍ତୁ ମୋ ଠାରୁ ଦୂରରେ ଅବସ୍ଥିତ, ଅଥଚ ଭିନ୍ନ-ଜାତୀୟ । ମୁଁ ଜ୍ଞାନାକାର, ସେସବୁ ଜଡ଼ାକାର, ସ୍ଥାନ ବିରୋଧକ ଆଜ ମଧ୍ୟ ସ୍ଥିତି-ସ୍ଥାପକ । 'ମୁଁ' ଦ୍ରଷ୍ଟା ବା ଜ୍ଞାତା, ସେ ସବୁ ଦୃଷ୍ଟ ଓ ଜ୍ଞେୟ, ଅଥଚ କ୍ଷଣଭଙ୍ଗୁର ଓ କ୍ଷଣ-ପରିବର୍ତ୍ତନଶୀଳ ଅଟନ୍ତି । ଲୋଷ୍ଟ୍ରଖଣ୍ଡ ଏବଂ କାଞ୍ଚନଦଣ୍ଡ ଉଭୟେ ମୋ ଦୃଷ୍ଟିରେ ତୁଲ୍ୟମୂଲ୍ୟ ଆତ୍ମପରଭେଦ ବ୍ୟବହାରଗତ କାଳ୍ପନିକ ସାମଗ୍ରୀ; ଜ୍ଞାନୀ, ଅଜ୍ଞାନୀ, ଧନୀ, ମାନୀ, ମୂର୍ଖ, ପଣ୍ଡିତ, ଧନପତି ଓ କୋଟିପତି, ଭିକ୍ଷୁ ଓ ଦରିଦ୍ର ଇତ୍ୟାଦି ଉପାଧିମାନ ଲୋକ-ବ୍ୟବହାରଜନିତ କ୍ରୀଡ଼ାସମ୍ପାଦନ ଛଳରେ ମାନବ କଳ୍ପନାଧୀନ ଶବ୍ଦବିନ୍ୟାସ ମାତ୍ର । ଏ ସବୁର 'ମୁଁ' ନିଃସମ୍ବନ୍ଧ । ତେବେ ଏ ସଂସାର ବୈଚିତ୍ର୍ୟ କିପରି ଦଣ୍ଡାୟମାନ ହୋଇଅଛି, ତାହା ଭାବିବାକୁ ଗଲେ ଏହା ଯେପରି ମୋ ପକ୍ଷରେ ଏକ ପ୍ରଲୋଭନାସ୍ପଦ ପ୍ରଦର୍ଶନ ମାତ୍ର । ପ୍ରଲୋଭନ ପାଶରୁ ମୁକ୍ତ ଲଭିବା କାରଣ ଏହା ଯେପରି ମୋହର ଶିକ୍ଷାଗୁରୁରୂପେ ନିଜର ଜାଡ଼୍ୟ ଅସାରତା ଦେଖାଇ ମୋତେ ତହିଁରୁ ନିର୍ଲିପ୍ତ ରହିବାକୁ ଇଙ୍ଗିତ କରୁଅଛି ।

ଯେ ହେଉ ଏହି ପର୍ଯ୍ୟାଲୋଚିତ ଦୃଶ୍ୟ 'ମୁଁ' ଯଦ୍ୱାରା ଦେଖିବାକୁ ପାଉଅଛି, ତାହା କଅଣ ? ବୁଝିବାକୁ ଗଲେ ତାହା ଅନ୍ତଃକରଣ ଅର୍ଥାତ୍ ମନ, ବୁଦ୍ଧି, ଚିତ୍ତ ଏବଂ ଅହଂକାର । ଖାଲି ଏତିକି ମଧ୍ୟ ନୁହେ, ଗୁଣତ୍ରୟ ଏହା ସଙ୍ଗେ ବିଜଡ଼ିତ ରହିଅଛି । ପବନ ନିଜେ ଚଳି ସମୁଦାୟ ପଦାର୍ଥକୁ ଚଳାଇବା ପରି ଏହି ଗୁଣତ୍ରୟର ସ୍ୱଭାବଜାତ କମ୍ପନରୁ ଗୁଣବୈଷମ୍ୟ ଜାତ ହୋଇ ସ୍ୱୟଂ ଚାଞ୍ଚଲ୍ୟମାନ ହେବାଦ୍ୱାରା ଅନ୍ତଃକରଣକୁ ଚଳାଉଅଛି । ଏଥିରେ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ, ଜ୍ଞାତୃତ୍ୱାଦି ଯୁକ୍ତ ସୁଖିତ୍ୱ ଓ ଦୁଃଖିତ୍ୱାଦି ଅଭିମାନର ସୃଷ୍ଟି ହେଉଅଛି । ନୌକାରୋହୀ ନୌକାଗମନ ହେତୁ ପାର୍ଶ୍ୱସ୍ଥ ଭୂଖଣ୍ଡ ଓ ବୃକ୍ଷ ଲତାଦିକୁ ଗତିଶୀଳ ମନେକଲା ପରି ଏହି ଗୁଣାନ୍ତଃକରଣ ଚାଳନା ଜନିତ ଜ୍ଞାତୃତ୍ୱ ଦ୍ରଷ୍ଟୃତ୍ୱାଦି ଅଭିମାନ ଆତ୍ମାରେ ଆରୋପିତ ହେଉଅଛି । ତେବେ ଏହି

ଅନ୍ତଃକରଣ ଦ୍ୱାରା ନୈଷ୍କଲ୍ୟ ସମ୍ପାଦନ କରି ଉପଲବ୍ଧି କରିପାରି ଯେ ତଦ୍ରୂପ ସ୍ଥିରତା ଦ୍ୱାରା ଆତ୍ମା କିପରି କଅଣ ଅନୁଭବ କରିବାକୁ ପାଇବେ । ଏହିଠାରେ ବାନପ୍ରସ୍ଥାଶ୍ରମ ଗ୍ରହଣ କରିବାର ଶୁଭକ୍ଷଣ ସ୍ୱୟଂ ଉପସ୍ଥିତ ହେଲା । ବାନପ୍ରସ୍ଥାଶ୍ରମର ଲକ୍ଷଣ—ବନବାସ । ଲୋକସମାକୃତ ସ୍ଥାନରେ ନାନାପ୍ରକାରର ବିଘ୍ନ ଘଟିବା ସମ୍ଭବ । ଏ ହେତୁ ତପସାଧନାର୍ଥ ଆତ୍ମାର ହିତବିଧାନ ନିମିତ୍ତ ବନବାସ ଉପଯୋଗୀ ବୋଲି ନିର୍ଦ୍ଦିଷ୍ଟ ଅଛି । ସୁତରାଂ ତୃତୀୟାଶ୍ରମ ଅର୍ଥାତ୍ ବନବାସ ନିମନ୍ତ୍ରିତ ହେଲା । ଏଠାରେ ବନବାସର ଅର୍ଥ ନୈମିଷାରଣ୍ୟାଦି ବାସ ହୋଇପାରେ ମାତ୍ର କଳିଯୁଗରେ ଅର୍ଥାତ୍ମ-ସର୍ବସ୍ୱ ଅମଳରେ ଆଉ ସେ ପବିତ୍ର ନୈମିଷାରଣ୍ୟ ନାହିଁ, କି ବୃନ୍ଦାବନ, ତାଳବନ, କେଳିବନାଦି ଦ୍ୱାଦଶ ବନମାନେ ନାହାନ୍ତି । ସେ ସ୍ଥାନମାନ ବର୍ତ୍ତମାନ ଅର୍ଥସାଧନ-କ୍ଷେତ୍ରରେ ହାଟ-ବଜାରରେ ପରିଣତ ହୋଇଗଲାଣି । ତେବେ ଗୋସାଇଁ ମହାପ୍ରଭୁ ଆତ୍ମଦେବ ! ଏହି ହୃଦୟାରଣ୍ୟରେ ପ୍ରବେଶ କରନ୍ତୁ । ସାବଧାନ; ଅରଣ୍ୟରେ ଯିନା କଣ୍ଟକବନ ଓ ବ୍ୟାଘ୍ର ଭଲ୍ଲୁକାଦି ହିଂସ୍ର ପଶୁମାନେ ରହିଥାନ୍ତି, କିନ୍ତୁ ହୃଦୟାରଣ୍ୟରେ ତହିଁରୁ ବଳି ହିଂସ୍ର ଜନ୍ତୁମାନେ ଅଛନ୍ତି । ଏଥିରେ ମୋହ, ଗର୍ବ, ଅଭିମାନାଦି ଆତ୍ମ-ସାଧକ ପକ୍ଷରେ ବଡ଼ ଅହିତକାରୀ ଶତ୍ରୁ, ବିଷୟ ବାସନାଦି କଣ୍ଟକସ୍ୱରୂପ ହୋଇଅଛନ୍ତି । ଅତଏବ ମୁନି ଋଷିଗଣ, ସତ୍‌ସଙ୍ଗ ସ୍ୱରୂପ ଜ୍ଞାନ, ଧର୍ମ, ବୈରାଗ୍ୟାଦି ସଦ୍‌ଗୁଣମାନଙ୍କର ସଙ୍ଗକରି ମୋହ ଗର୍ବାଦି ତ୍ୟାଗ କରଣାନନ୍ତର ଏହି ହୃଦୟ ରୂପ ତପୋବନରେ ବିଶ୍ରାମ କରିବାକୁ ହେଉ । ଏହାର ନାମ ଆଧ୍ୟାତ୍ମିକ ମତରେ ତପ ନିର୍ଲିପ୍ତ ଉପବନ । ଏଠାରେ ବାସ କଲେ ବାନପ୍ରସ୍ଥାଶ୍ରମର ଧର୍ମ ସମ୍ପୂର୍ଣ୍ଣରୂପେ ସାଧିତ ହେବ ।

• ଏହିଠାରୁ ବାନପ୍ରସ୍ଥର ଗତିବିଧି ଅବଧାନ କରିଯାଉ । ନିରୁପଦ୍ରବ ସ୍ଥାନରେ ଯଥାବିଧିଯୁକ୍ତ ଆସନରେ ଉପବିଷ୍ଟ ରହି ଏବଂ ଅଧୋର୍ଦ୍ଧ୍ୱ ଦୃଷ୍ଟି ରହିତ କରି କିଛି ଦେଖା ନ ଗଲା ଭଳି ଅର୍ଦ୍ଧନିମୀଳିତ ଲୋଚନରେ ମଧ୍ୟଦୃଷ୍ଟି ଅଥବା ନାସାଗ୍ରଦୃଷ୍ଟି ସ୍ଥିରୀକରଣ ପୂର୍ବକ ଦେହ, ଚକ୍ଷୁ ଏବଂ ପ୍ରାଣର ନୈଷ୍କଲ୍ୟ ସାଧନ କରିବା ବିଧେୟ; ଏ ଉତ୍ତାରୁ ଚିତ୍ତବୃତ୍ତିର ନିରୋଧ କରିବାକୁ ହେବ । ପ୍ରଥମରେ ଅନ୍ତଃକରଣରେ ଶବ୍ଦ-ସ୍ପର୍ଶାଦି ସମ୍ବନ୍ଧୀୟ ବୈଷୟିକ ଭାବ ଉପସ୍ଥିତ ହେବା ମାତ୍ର ତାହାକୁ ସଙ୍ଗେ ସଙ୍ଗେ ତ୍ୟାଗକରି ପୋଛିଦେବାକୁ ହେଉଥିବ । ଏହିପରି କ୍ରମେ କ୍ରମେ ଅଭ୍ୟାସ କରିବାଦ୍ୱାରା ଅନ୍ତଃକରଣ ବିଷୟ-ମଳ-ଶୂନ୍ୟ ହୋଇ ବିମଳାକାର ଧାରଣ କରିବ । ଏହି ଅଭ୍ୟାସର ନାମ ପ୍ରତ୍ୟାହାର । ଏହି ପ୍ରତ୍ୟାହାର ସିଦ୍ଧ ହେଲାରୁ ତଦ୍ରୂପ ବିକ୍ଷେପଶୂନ୍ୟ ଅନ୍ତଃକରଣରେ ଆତ୍ମଧ୍ୟାନ ଆରମ୍ଭ କରିବା ବିଧେୟ ଅଟେ । ଏହି ଧ୍ୟାନଦ୍ୱାରା ପ୍ରଥମରେ ଆତ୍ମଧ୍ୟାନ କରିଯାଇ ନ ପାରିଲେ ଉପାସ୍ୟ ଦେବମୂର୍ତ୍ତିର ରୂପକୁ ଏକାଗ୍ର ଲକ୍ଷ୍ୟରେ ଧ୍ୟାନ କରୁ କରୁ ଯଥା ସମୟରେ ସେହି ରୂପ ଗଗନାକାରରେ ପରିଣତ ହୋଇ ଶୂନ୍ୟମଣ୍ଡଳରେ ଚିତ୍ତବୃତ୍ତି ଅବରୁଦ୍ଧ ରହିବ । ଏହା ଧ୍ୟାନର ସ୍ୱଭାବସିଦ୍ଧ ଅବସ୍ଥା ବା ରୁଦ୍ଧାନ୍ତର୍ବୃତ୍ତି ବିଶେଷ

ଅଟେ । ଏହି ରୁଦ୍ଧ ଅବସ୍ଥାରେ ସେହିଠାରେ ଆତ୍ମାନୁଭୂତି ଉଦୟ ହେବା ସ୍ୱାଭାବିକ; ଏହାର ନାମ ଧ୍ୟାନାଭ୍ୟାସ ଅଟେ । ଏହି ଧ୍ୟାନସିଦ୍ଧିପରେ ତନ୍ମଧ୍ୟେ ଆତ୍ମାରେ ଲକ୍ଷ୍ୟ ଏବଂ ଜ୍ଞାନ ଅଟଳ ଅଚଳ ଭାବେ ନିର୍ବାତ ଦୀପଶିଖାପରି ଦୃଢ଼ ହେବ । ଏହି ଆତ୍ମଦୃଢ଼ତାର ନାମ ଧାରଣା । ଏହି ଧାରଣାର ଯେ ଦୃଢ଼ତା ତାହାର ନାମ ଆତ୍ମଲୟ । ଏଥିରେ ଜୀବୋପାଧି ଅପଦାର୍ଥରୂପେ ପ୍ରତୀୟମାନ ହୁଏ ।

ଏହିଠାରୁ ବାନପ୍ରସ୍ଥାଶ୍ରମର ସାଧନକୁ ବିଶ୍ରାମ ଦିଆଗଲା । ଏହାପରେ ଚତୁର୍ଥାଶ୍ରମ ଅର୍ଥାତ୍ ସନ୍ନ୍ୟାସାଶ୍ରମ; ପ୍ରକାରାନ୍ତରେ ଏହାର ନାମ ଆତ୍ମବିଶ୍ରାନ୍ତି । ଉପରେ ଆତ୍ମଲୟକୁ ବାନପ୍ରସ୍ଥାଶ୍ରମର ଅନ୍ତର୍ଗତ ସାଧନରେ ଉଲ୍ଲେଖ କରାଗଲା । ଏହାର ତାତ୍ପର୍ଯ୍ୟ ଏହି ଯେ, ଆତ୍ମଲୟ ବା ବାନପ୍ରସ୍ଥ ସାଧନର ଶେଷ ସୀମା ଆରପାଖରେ ଏବଂ ସମାଧି ସିଦ୍ଧି ବା ସନ୍ନ୍ୟାସର ପ୍ରଥମ ଅଙ୍କର ପୂର୍ବରେ ଅର୍ଥାତ୍ ବାନପ୍ରସ୍ଥ ଏବଂ ସନ୍ନ୍ୟାସ ଉଭୟର ସନ୍ଧିସ୍ଥଳରେ ପ୍ରତ୍ୟକ୍ଷ ଭାବରେ ବିରାଜମାନ । ଏହିଠାରୁ ଆତ୍ମସମାଧି ବା ସନ୍ନ୍ୟାସାଶ୍ରମ ଆତ୍ମଦେବ ପ୍ରାପ୍ତ ହୁଅନ୍ତି । ଅର୍ଥାନ୍ତରରେ ସର୍ବାଶ୍ରମତ୍ୟାଗର ନାମ ମଧ୍ୟ ସନ୍ନ୍ୟାସ । ଫଳତଃ ଏ ଆଉର ବର୍ଣ୍ଣନା ବାକ୍ୟରେ ନାମକୁ ମାତ୍ର କରାଯାଏ । ଏହା ଶୁଦ୍ଧ ବୋଧାତ୍ମକ ଅଟେ । ଏଥିରେ ଦୈହିକ ଯମ, ନିୟମାସନାଦି, ପ୍ରାଣସଂଯମାଦି କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟାଦିର ପ୍ରତ୍ୟାଖ୍ୟାନ ବା ପ୍ରତ୍ୟାହାର ସାଧନାଦି ଏବଂ ଧ୍ୟାନ ଧାରଣାଦି ପ୍ରତ୍ୟେକେ ନିଜ ନିଜ କାରଣରେ ଅର୍ଥାତ୍ ଆସନାଦି ଦେହରେ ପ୍ରାଣାୟାମାଦି ପ୍ରାଣ ସହିତ ମହାବାୟୁରେ କର୍ମେନ୍ଦ୍ରିୟ ଜ୍ଞାନେନ୍ଦ୍ରିୟାଦି ଅନ୍ତଃକରଣ ବ୍ୟାପାର ପ୍ରତ୍ୟାହାର ସହିତ, ଅବିଦ୍ୟାତ୍ମିକା ପ୍ରକୃତିରେ ଏବଂ ସେବୋପାଧି ସମେତ ଧ୍ୟାନ ଧାରଣାଦି ବିଦ୍ୟାମୟୀ ତନ୍ମୂଳା ପ୍ରକୃତିରେ ଜଳପୂର୍ଣ୍ଣ ଘଟ ଜଳାଶୟରେ ବୁଡ଼ି ଘଟସ୍ଥ ଜଳ ଜଳାଶୟ ଜଳ ସହିତ ଅଭେଦଭାବରେ ଅବସ୍ଥିତ ଥିଲାପରି ବିଶିଷ୍ଟ ପ୍ରକାରରେ ମିଶି ଅଭେଦ ହୋଇ ରହନ୍ତି । ବାନପ୍ରସ୍ଥାଶ୍ରମସିଦ୍ଧି ଉତ୍ତାରୁ ପରମାତ୍ମାର ଅହେତୁକ ଓ ଅଯାଚିତ ଦାନସ୍ୱରୂପ କୃପାଦ୍ୱାରା ଏହି ସମାଧି ବା ପରମାତ୍ମରତି ଆତ୍ମପକ୍ଷରେ ଅପରୋକ୍ଷାନୁଭୂତି ରୂପେ ବୋଧଗମ୍ୟ ହୁଏ । ଏହା ସନ୍ନ୍ୟାସାଶ୍ରମର ପରିଣତି ମାତ୍ର ।

ଏଥିରୁ ବୁଝାଯାଏ ଯେ ବର୍ଣ୍ଣଧର୍ମାତ୍ମକ ଚାରିପ୍ରକାର କ୍ରିୟାସାଧନାଦି ଏବଂ ଆଶ୍ରମ-ଧର୍ମାତ୍ମକ ଚାରିପ୍ରକାର ଜ୍ଞାନସାଧନାଦି ଆତ୍ମାର ଏହି ଆଠପ୍ରକାର ଅବସ୍ଥା ପ୍ରକୃତିର ବିଶାଳ କଳେବରର ମାପକାଠି ସ୍ୱରୂପ ଅଟେ । ଏହା ପ୍ରକୃତିକୁ ଅଷ୍ଟଭାଗରେ ବିଭକ୍ତ କରି ଆତ୍ମା ପକ୍ଷରେ ଆଠପ୍ରକାର ବିଶ୍ରାମ ସ୍ଥାନ ନିର୍ଣ୍ଣୟ କରି ଦେଇଅଛି । ବିଶ୍ରାମ ସ୍ଥାନରୁ ବିଶ୍ରାମକାଶୀ ପୃଥକ୍ ନିର୍ଦ୍ଦିଷ୍ଟ ରହି ଲୀଳାନୁରୋଧରେ ଏହି ବିଶ୍ରାମ ସ୍ଥାନମାନଙ୍କରେ ବିହାର କରୁଅଛି । ଏହି ଆଶ୍ରମ ଧର୍ମ ସାଙ୍ଗ କରଣାନନ୍ତର ଆତ୍ମଦେବ ନିଜାତ୍ମତତ୍ତ୍ୱଜ୍ଞାନ ପ୍ରତ୍ୟକ୍ଷ ଉପଲବ୍ଧି କରି ସ୍ୱୟଂ ଭିତରେ ଭିତରେ ଭାବି ହେଉଥାନ୍ତି ଯେ ଆତ୍ମା ଆପଣା-ଠାରେ ବାହ୍ୟ ପଞ୍ଚଭୂତ ସହିତ ପାଞ୍ଚଭୌତିକ ଦେହଠାରୁ ଆରମ୍ଭ କରି ଯଥାକ୍ରମେ

ଇନ୍ଦ୍ରିୟ, ପ୍ରାଣ, ଅନ୍ତଃକରଣ ଅବିଦ୍ୟାତ୍ମିକା ଏବଂ ଚନ୍ଦ୍ରମୟୀ ବିଦ୍ୟାତ୍ମିକା ପ୍ରକୃତି ପର୍ଯ୍ୟନ୍ତ ଜଗଦ୍‌ବୈଚିତ୍ର୍ୟାକାରରେ କାଳିତ ହୋଇ ପ୍ରାକୃତ ଚିତ୍ତର ଚିଦ୍‌ବୈବର୍ତ୍ତକୁ ଆତ୍ମବୋଧ ସହକାରେ ଦର୍ଶନ କରୁଅଛନ୍ତି; ଅର୍ଥାତ୍ ଆତ୍ମଦେବ ଭାବୁଅଛନ୍ତି, ମୁଁ ଦେହ ନୁହେ, ଦେହର ଦ୍ରଷ୍ଟା ଆଉ ଦେହରୁ ପୃଥକ୍; ଅତଏବ ଦୈହିକ ଅଙ୍ଗପ୍ରତ୍ୟଙ୍ଗ ଏବଂ ଇନ୍ଦ୍ରିୟାଦିରୁ ମଧ୍ୟ ପୃଥକ୍ । ସୁତରାଂ ମୁଁ ନିରିନ୍ଦ୍ରିୟ ଅଙ୍ଗଶୂନ୍ୟ ଅଟେ । ଅର୍ଥାତ୍ ମୁଁ ଅପାଦ, ଅପାଣି, ଅଚକ୍ଷୁ, ଅକର୍ଣ୍ଣ, ଅମନ ଏବଂ ନିରହଙ୍କାର ଇତ୍ୟାଦି । ଅଥଚ ମୋ ଭିନ୍ନ ଗତିଶୀଳ ଦାତା, ଗ୍ରହୀତା, ଦର୍ଶକ, ଶ୍ରୋତା, ମନନ ଏବଂ ଅହଂକରଣକାରୀ ମୋହର ପରି କେହି ନାହିଁ । ଏହା ଅଘଟନ ଘଟନା-ପଟୀୟସୀ ବିଶ୍ୱବୈଚିତ୍ର୍ୟ ଚିତ୍ର ପ୍ରଦର୍ଶନକାରିଣୀ ମାୟାର ବିଶେଷତ୍ୱର ନିଦର୍ଶନ ଅଟେ । ମାତ୍ର ଆତ୍ମା ଏହିରୂପେ ଘଟେ ଘଟେ ବାଳକ ପରି କ୍ରୀଡ଼ା କରୁଅଛନ୍ତି । ଓଁ ପରମ ବ୍ରହ୍ମଣେ ନମଃ ।

ବର୍ଣ୍ଣାଶ୍ରମ ଧର୍ମ ସମ୍ବନ୍ଧେ ଉପସଂହାର ସ୍ଥଳେ କୁହାଯାଉଅଛି ଯେ ପ୍ରକୃତିର ରାଜ୍ୟରେ ବର୍ଣ୍ଣାଶ୍ରମ ଧର୍ମ ଆତ୍ମସ୍ୱଧର୍ମ ଭାବାନୁମୋଦିତ ପ୍ରକୃତିଦ୍ୱାରା ନିୟମରୂପେ ସୁପ୍ରସିଦ୍ଧ ରହିଅଛି ସତ୍ୟ, ତଥାପି କୌଣସି ନିୟମ ଯେ ଏକାବେଳକେ ଏହି ଦୁରତିକ୍ରମଣୀୟା, ଅନିର୍ଦ୍ଦେଶ୍ୟା, ଅନିର୍ବଚନୀୟା ପ୍ରକୃତିକୁ ସଂପୂର୍ଣ୍ଣ ଆବଦ୍ଧ କରି ରଖିପାରିବ, ଏହା ବଡ଼ ସହଜ ନୁହେ । ସେହି ହେତୁ ଅନାୟତ୍ତଭାବେ ଦୈବାତ୍ ଦେହ, ପ୍ରାଣ, ସମୁଦାୟ ଧନ-ସଂପତ୍ତି, ଧର୍ମ ଇତ୍ୟାଦି ସମ୍ବନ୍ଧେ ମହାବିପଦ ଉପସ୍ଥିତ ହେଲେ ତହିଁର ଉଦ୍ଧାର ହେବା ସକାଶେ ଯଦି କର୍ତ୍ତବ୍ୟତଃ ଅନ୍ୟଥା ଆଚରଣ କରିବାକୁ ବାଧ୍ୟ ହେବାକୁ ପଡ଼େ, ତେବେ ଧୀରଭାବେ ବୁଝିନେବାକୁ ହେବ, ଏହା ପ୍ରକୃତିର ପରୀକ୍ଷା ବିଶେଷ ମାତ୍ର; ଆଉ କିଛି ନୁହେ । ତେବେ ସେହିକ୍ଷଣି ସଙ୍ଗେ ସଙ୍ଗେ ଭଗବତୀ ପ୍ରକୃତିଦେବୀ ଏବଂ ପରମେଶ୍ୱରଠାରେ ଶରଣ ଭିକ୍ଷା କରି ପ୍ରାର୍ଥନା କରିବାକୁ ହେବ, ମୁଁ ଏ ଆପଦରୁ କିପରି ରକ୍ଷା ପାଏଁ । ଏହି ପ୍ରାର୍ଥନାରେ ମନ, ପ୍ରାଣ ମିଶି ଏକାଗ୍ରଭାବ ଧାରଣ କଲାରୁ ସେହିଠାରେ ଆଉ କୃପାସାଗର ଶୁଷ୍କ ହୋଇଯାଇ ପାରିବ ନାହିଁ । ଶୂନ୍ୟରୁ ଅଜ୍ଞାତସୂତ୍ରେ ଅଥଚ ମାୟିକ ଭାବେ ସାହାଯ୍ୟ ଉପସ୍ଥିତ ହେବ । ତଥାପି ଉକ୍ତ ରୂପ ଆତ୍ମନିବେଦନ ସତ୍ତ୍ୱେ ଓ ପରୀକ୍ଷାର କଠୋରତାର ଛଳନାଧିକ୍ୟ ବଶତଃ ଉକ୍ତ ସାହାଯ୍ୟ ଏଭଳି ଆକାର ପ୍ରକାରରେ ଉପସ୍ଥିତ ହୁଏ ଯେ ଯଦ୍ୟପି କର୍ତ୍ତବ୍ୟର ବୈପରୀତ୍ୟ ଆଡ଼କୁ ଅନାୟତ୍ତଭାବେ ତଦ୍ଦ୍ୱାରା ଆକୃଷ୍ଟ ହୋଇ ଯିବାକୁ ପଡ଼େ, ତେବେ ସେ ସକାଶେ କ୍ଷମାପ୍ରାର୍ଥନାରେ ନିଯୁକ୍ତ ହେବା କର୍ତ୍ତବ୍ୟ । ସେ ସ୍ଥଳରେ ଅପରିସୀମ ଅନନ୍ତପାର ଗମ୍ଭୀର କ୍ଷମାସାଗର ମରୁମରୀଚିକାରେ ପରିଣତ ହୋଇ ଯାଇପାରିବ ନାହିଁ । ଅବଶ୍ୟ କ୍ଷମା ପ୍ରଦତ୍ତ ହେବ । ଜ୍ଞାନ, ଧର୍ମ, କର୍ତ୍ତବ୍ୟ ଓ ବିଶ୍ୱାସ ଏବଂ ଆତ୍ମନିବେଦନ ଏକତ୍ର ମିଶି ଏ ଅପାର ସଂସାରରେ ଏକମାତ୍ର ସମ୍ବଳ । ଆଉ ଅଧିକ କିଛି ହୋଇପାରେ ନାହିଁ ।

## ୧୬୦ ପାଠ—ହରିହାଟ ଓ ଭବାଟବୀ ବର୍ଣ୍ଣନା

ଧର୍ମ ସମ୍ବନ୍ଧରେ ଏହି ସଂସାରକୁ ଏକ ବିରାଟ ହରିହାଟରୂପରେ ଏବଂ କର୍ତ୍ତବ୍ୟାଦି ସମ୍ବନ୍ଧରେ ଏକ ଜଟିଳ-କୁଟିଳାଟବୀରୂପରେ ଦେଖିବାକୁ ହେଉଅଛି ।

ପରମେଶ୍ୱର ତତ୍ତ୍ୱଜ୍ଞାନ ଲାଭ ଏବଂ ପରମେଶ୍ୱର ଭକ୍ତି, ପ୍ରୀତି, ଉପାସନା, ଭଜନ, ସାଧନ, ପୂଜନ, ସ୍ତବନ, ବନ୍ଦନ ଓ ଅର୍ଚ୍ଚନାଦି ସମ୍ବନ୍ଧରେ ଯେଉଁ ଯେଉଁ ଅନୁଷ୍ଠାନାଦି କରିବାକୁ ହୁଏ, ତାହା ସାଧାରଣତଃ ଧର୍ମ ନାମରେ କଥିତ । ଏହି ଧର୍ମ ଉଦ୍ଦେଶ୍ୟରେ କେତେ କେତେ ପ୍ରକାରର ଉପାସନା ସମ୍ବନ୍ଧୀୟ କର୍ମ, ରୁଚିଭେଦରେ, ସଂସ୍କାରଭେଦରେ, ବିଶ୍ୱାସଭେଦରେ, ମତଭେଦରେ, ଆଦର୍ଶାନୁକରଣ ଭେଦରେ, ଜାତି-ସମାଜଭେଦରେ, ଲୋକପ୍ରଚଳିତ ରୀତିନୀତି ଭେଦରେ ଏବଂ ମହାଜନପ୍ରସିଦ୍ଧ ପନ୍ଥା-ଭେଦରେ କେତେ କେତେ ପ୍ରକାରରେ ଅନୁଷ୍ଠାନାଦିରୂପେ ସଂସାରରେ ପରିଦୃଷ୍ଟ ହୁଏ, ତାହା ସଂଖ୍ୟା କରିଯାଇ ନ ପାରେ । ସେହି ଭେଦାଭେଦ ବାହୁଲ୍ୟ ଲକ୍ଷ୍ୟରେ ଏ ସଂସାର ହରିହାଟ ସ୍ୱରୂପ ଅଟେ । ହାଟରେ ଯେପରି ସାନ ବଡ଼, ଜାତି ଅଜାତି, ଚୋର ସାଧୁ, ଧନୀ ଦରିଦ୍ର, ପଣ୍ଡିତ ମୂର୍ଖ, ଇତ୍ୟାଦି ଇତ୍ୟାଦି କିଛି ନ ବାଛି ଏକ ହାଟ ଦର୍ଶନରେ ପ୍ରୀତ ହେବାକୁ ହୁଏ, ସେହିପରି ଭେଦାଭେଦ ଭୁଲିଯାଇ ଏହି ହାଟ ଅର୍ଥାତ୍ ଧର୍ମପସରାପୂର୍ଣ୍ଣ ଧର୍ମଭାବର ଏବଂ ଧର୍ମନିଷ୍ଠାର ବିକାକିଣା, ଆଦାନ ପ୍ରଦାନାଦି ଦର୍ଶନ କରି ଏହି ହରିହାଟକୁ ସାଷ୍ଟାଙ୍ଗ ପ୍ରଣାମ କରାଯାଉଅଛି । ସଂସାରୀୟ ସୁଖ-ସ୍ୱାଚ୍ଛନ୍ଦ୍ୟ ସମ୍ପାଦନ ଅର୍ଥରେ ଏବଂ ଧନ ମାନ ମର୍ଯ୍ୟାଦା, ପ୍ରଭୁତ୍ୱ ଏବଂ ବିଦ୍ୟାଦି ଲାଭ ନିମିତ୍ତ କେତେ କେତେ ପ୍ରକାରର କର୍ମ, ସାଧନ, ଚେଷ୍ଟା ଓ ଯତ୍ନାଦି କର୍ତ୍ତବ୍ୟ ବୋଲି କରାଯାଉଅଛି, ତାହା ଦେଖିଲେ ଏ ସଂସାରକୁ ଏକ ମହାକର୍ମାରଣ୍ୟ ନାମରେ ଉପହିତ କରିବାକୁ ହୁଏ । ଅତଏବ ଏ ଅରଣ୍ୟକୁ ମଧ୍ୟ ନମସ୍କାର ।

ମନୁଷ୍ୟ ଯେପରି ଖାଦ୍ୟ, ଫଳ, ମୂଳ, ଶସ୍ୟାଦି, ଔଷଧାଦି ଆନୟନ କରି, ବନସ୍ଥଳୀର ଶୋଭା ଦର୍ଶନ କରଣାନନ୍ତର ଗୃହକୁ ବିଶ୍ରାମ ସୁଖଲାଭାର୍ଥ ପ୍ରତ୍ୟାଗମନ କରିବାକୁ ବାଧ୍ୟ ହୋଇଥାଏ, ଅଥଚ ବନଦର୍ଶନରେ ବିମୋହିତ ହୋଇ ଗୃହ-ପରିବାର-ସଂସାର ବିସ୍ମରଣ କରି ବଣରେ ବଣୁଆ ହୋଇ ଚିରଦିନ ସକାଶେ ବାସ କରି ରହିବା ଯେପରି ଅନ୍ୟାୟ, ସେହିପରି ଏହି ଜୀବାତ୍ମା ନିଜର ବାସସ୍ଥାନ ସ୍ୱରୂପ ଆଧ୍ୟାତ୍ମିକ ଜଗତସ୍ଥ ଜ୍ଞାନ-ବିଜ୍ଞାନପୀଠ ପରିତ୍ୟାଗ କରି ଧର୍ମ ଓ ଭୋଗସଂଗ୍ରହ ନିମିତ୍ତ ଦେହାଭିମାନ-ରୂପ ସଂସାର ମୋହ ଗହନରେ ପ୍ରବେଶ କରିଅଛନ୍ତି; ପୁଣି ଧର୍ମ, ଜ୍ଞାନ, ବୈଷୟିକ ଭୋଗାଦି ସଂଗ୍ରହ କରି ଆଧ୍ୟାତ୍ମିକ ସ୍ଥାନକୁ ପ୍ରତ୍ୟାଗତ ହେବା ଏହି ଜୀବାତ୍ମା ପକ୍ଷରେ ଉଚିତ । ଆଉ ମଧ୍ୟ ସଂସାରାରଣ୍ୟରେ ପ୍ରବେଶ କଲାପରେ ନିଜାତ୍ମତତ୍ତ୍ୱଜ୍ଞାନ ଓ ନିଜ ବିଶ୍ରାମ ସ୍ଥାନ ଜ୍ଞାନ-ଧର୍ମ-ପୀଠକୁ ବିସ୍ମରଣ କରି ଚିରଦିନ ସକାଶେ ସଂସାରୀୟ ବୈଷୟିକ

ସୁଖସମ୍ଭୋଗାଦରେ ପ୍ରମତ୍ତ ହୋଇ କ୍ଲିଷ୍ଟ ସଂସାରୀ ହୋଇ ପଡ଼ି ରହିଥିବା ସମ୍ପୂର୍ଣ୍ଣ ଅନ୍ୟାୟ ଅଟେ । ହରିହାଟ ଏବଂ ଭବାଟବୀର ଦର୍ଶନ ଏହିଠାରେ ଏହି ପ୍ରକାରେ ସାଙ୍ଗ କରିଗଲି ଏବଂ ଅରଣ୍ୟରୁ ଘରକୁ ଫେରିବାର ପନ୍ଥା ଟିକିଏ ଦେଖିବାକୁ ହେବ ।

ଏହି ମହାରଣ୍ୟରେ ପ୍ରବେଶ କରିବାକୁ ବା ପ୍ରତ୍ୟାଗମନ କରିବାକୁ ହେଲେ ଇଚ୍ଛାନୁରୂପ ଯିବାଆସିବା କରିବାର ବହୁ ବହୁ ପଥ ନିରୂପିତ ହୋଇନାହିଁ ବା ମିଳିପାରିବ ନାହିଁ । ଗୋଟିଏ ମାତ୍ର ସଂକୀର୍ଣ୍ଣ ଗଳିବାଟ ରହିଅଛି । ଅଧାର୍ମିକ ରାଜ୍ୟର ଆମ୍ଭମାନଙ୍କରୁ ଦେହାତ୍ମାଭିମାନରୂପ ମୋହ ଗହନ ଭିତରକୁ ପ୍ରବେଶ କରି ବୈଷୟିକ ସୁଖଦୁଃଖମୟ ଫଳ-ମୂଳାଦି ପ୍ରାପ୍ତ ହେବା ନିମିତ୍ତ ସ୍ଥୂଳଦେହସଂସାରରୂପ ମୋହଉପବନ ପର୍ଯ୍ୟନ୍ତ ଗୋଟିଏ ମାତ୍ର ପଥ ପ୍ରକୃତିଦେବୀ ଉନ୍ମୁକ୍ତ କରି ଦେଇଅଛି । ସେହି ପଥ ସଙ୍ଗେ ପରିଚିତ ହେବା ଆବଶ୍ୟକ । ଆମ୍ଭଦେବ ଆତ୍ମପୀଠ ପରିତ୍ୟାଗ କଲି ମାତ୍ର ପ୍ରଥମରେ ଅବିଦ୍ୟା ନାମ ଘାଟରେ ଉପସ୍ଥିତ ହୋଇ ଜୀବତ୍ୱ ଉପାଧି ଗ୍ରହଣ କରିଅଛନ୍ତି । ସେହିଠାରୁ କିଛିଦୂର ଅନ୍ଧକାରମୟ ଗଳିରେ ଆସି ଆସି ଅନ୍ତଃକରଣରୂପ ଦ୍ୱିଖଣ୍ଡ ଘାଟ ଦେଖିବାକୁ ପାଉଅଛନ୍ତି । ସେହିଠାରୁ କିଛିଦୂର ଅନ୍ଧାରି ବର୍ଜନ କରି ପ୍ରାଣେନ୍ଦ୍ରିୟ ଛିଦ୍ରପଥ ଦେଖି ସେହିବାଟେ ଭୌତିକ ଦେହ ସଂସାର ମୋହ ଉପବନ ଦର୍ଶନ କରିଅଛନ୍ତି । ସେହି ବନରୁ ଶବ୍ଦ-ସ୍ପର୍ଶ ରୂପ-ରସାଦି ସୁଖ-ଦୁଃଖମୟ ଫଳ ସଂଗ୍ରହ କରି ଉପଭୋଗ କରୁ କରୁ ତଦ୍ରୂପ ଫଳଭୋଗ ଲାଳସାରେ ମୋହାବଦ୍ଧ ହୋଇ ଆତ୍ମରାଜ୍ୟର ଆତ୍ମପୀଠ ଓ ଆତ୍ମଧାମସ୍ଥ ଆତ୍ମଭାବ ବିସ୍ମରଣ କରି ସେହି ଅରଣ୍ୟବାସକୁ ଏବଂ ଅରଣ୍ୟବାସିମା ଶବରୀ, ବନଚାରିଣୀ ଓ ସ୍ୱେଚ୍ଛାଚାରିଣୀ ପ୍ରଭୃତିଙ୍କ ସଙ୍ଗାଳାପ ସୁଖ ସମ୍ଭୋଗାଦିକୁ ଏକମାତ୍ର ସ୍ଥିରତର ପନ୍ଥା ବୋଲି ଧରିନେଇ ତହିଁରେ ଚିରକାଳ ବିମୁଗ୍ଧ ହୋଇ ରହିଅଛନ୍ତି । ଏହିରୂପେ ଜୀବାତ୍ମାର ସଂସାରବନ୍ଧନ ବଳବତ୍ ଦୃଢ଼ ଅଟେ ।

ଏହି ଭୌତିକ ସଂସାରାରଣ୍ୟରେ ଭୌତିକ ଜଡ଼ଦେହ ଜୀବାତ୍ମାପୁରୁଷର ଗୃହ-ସ୍ୱରୂପ ଅଟେ । ପ୍ରାଣବୃତ୍ତି ଜୀବାତ୍ମାର ଏହି ଗୃହରେ ଚହଲିଆର କାର୍ଯ୍ୟ କରୁଅଛି । ଇନ୍ଦ୍ରିୟଗଣ ପ୍ରଧାନ ନାୟିକାର ସହଚାରିଣୀ ବା ସହଯୋଗିମା ଅଟନ୍ତି । ବୁଦ୍ଧି ପ୍ରଧାନ ନାୟିକା । ଅହଂକାରାଦି ଉପସେବିକା ସ୍ୱରୂପ ଅଟନ୍ତି । ଏମାନଙ୍କ ସ୍ନେହରେ ଓ ଏମାନଙ୍କ ପ୍ରଦତ୍ତ କର୍ମ ଏବଂ ଭୋଗରୂପ ସୁଖ-ଦୁଃଖମୟ ଫଳଭୋଗରେ ଆତ୍ମାପୁରୁଷ ଚିରବଦ୍ଧ ହୋଇ ସଂସାର-ମାର୍ଗରେ ଜନ୍ମମରଣ ପଥରେ ଭ୍ରମଣ କରି ଅପାର ସଂସାର ମଧ୍ୟରେ ଭ୍ରାନ୍ତ ହୋଇ ଭ୍ରମଣ କରୁଅଛନ୍ତି । ଏ ବାଟ ସରିବାରେ ନାହିଁ । ଏହି ରାଜ୍ୟର ଅଧୀଶ୍ୱର କାଳ । ଏହି ଦୁରନ୍ତ ରାଜା ବାର୍ଷିକ-ରାଜସ୍ୱ ନେଉନାହିଁ । ଥରେ ରାଜସ୍ୱ ସ୍ୱରୂପ ପ୍ରାପ୍ୟ ଆଦାୟ କରିନିଏ । ଦୁଃଖ କଷ୍ଟଭୋଗାଦି ପିଆଦା ରୂପରେ ସବୁବେଳେ ସଙ୍ଗେ ସଙ୍ଗେ ଲାଗିରହି ତାଡ଼ନା କରୁଥାଆନ୍ତି । ହଠାତ୍ କରେ ଘରଟିକୁ କ୍ରୋକ କରି ଧରିନେଇ

ଢାଳଦେବଙ୍କ ଆଜ୍ଞାନୁସାରେ ମୂଣ୍ଡସ୍ଥ ଜଗଦାକାର କୋଠଭଣ୍ଡାରରେ ମିଶାଇ ରଖି ଦିଅନ୍ତି । ଏହି ପରିଣାମ ବନବାସର ଶେଷ ଫଳ ।

ସେହି ଯେଉଁ ବାଟଟିର କଥା ଲେଖାଯାଇଅଛି, ଆସିଲାବେଳକୁ ଉକ୍ତ ବାଟର ନାମ ପ୍ରବୃତ୍ତିମାର୍ଗ ବା କର୍ମମାର୍ଗ । ଆଉ ପ୍ରତ୍ୟାଗମନ ବେଳକୁ ସେହି ବାଟର ନାମ ନିବୃତ୍ତିମାର୍ଗ ବା ଯୋଗମାର୍ଗ । ପ୍ରତ୍ୟାବର୍ତ୍ତନ ବେଳକୁ ପ୍ରଥମ ଘାଟ ଦେହକୁ ଆସନାଦିଦ୍ୱାରା ପୂର୍ବ ବର୍ଣ୍ଣନାନୁସାରେ ସ୍ଥିର କରି ରଖିଲେ ପ୍ରାଣାୟାମାଦି ଦ୍ୱାରା ଦ୍ୱିତୀୟ ଘାଟ ରୂପ ପ୍ରାଣପଥରେ ପଡ଼ିଅଛିବାକୁ ହେବ । ତତ୍ପରେ ବୈରାଗ୍ୟାଦି ସାଧନରେ ଇନ୍ଦ୍ରିୟରାଜ୍ୟ ଅତିକ୍ରମ କରି ଅନ୍ତଃକରଣରେ ବିଶ୍ରାମ କରିବାକୁ ମିଳିବ । ସେଠାରୁ ପ୍ରତ୍ୟାହାର ଲକ୍ଷଣାନୁସାରେ ଆମକୁ ଗତି କରିବା ନିମିତ୍ତ ହୃଦୟବୃତ୍ତି ନିରୋଧ କରି ଜୀବତ୍ୱ ପୀଠରେ ସମାସୀନ ରହିପିବା ସ୍ୱାଭାବିକ । ପରେ ସନ୍ନ୍ୟାସ ବା ଜ୍ଞାନବୈରାଗ୍ୟଯୋଗାବଲମ୍ବନ କରି ଜୀବାତ୍ମାକୁ ଏବଂ ଜୀବୋପାଧିକୁ ଅତିକ୍ରମ କରି ଆତ୍ମପୀଠରେ ଅବସ୍ଥାନ କରିବା ମାତ୍ର ଘଟାକାଶ ମହାକାଶ ଏକ ହୋଇ ଭେଦମୟ ଉପାଧି ତ୍ୟାଗ କଲାପରି ଆତ୍ମଦେବ ପରମାତ୍ମତତ୍ତ୍ୱରେ ଅଭେଦ ହୋଇ ନିଜାନନ୍ଦ ଉପଭୋଗ କରିବେ । ଏହିପରି ଅନୁଲୋମ ଗତି କ୍ରମ ସଂସାରପ୍ରାପ୍ତି ଏବଂ ପ୍ରତିଲୋମ ଗତିକ୍ରମେ ସାଂସାରିକତିକ୍ରମ ଓ ଆତ୍ମାନନ୍ଦ ପ୍ରାପ୍ତି ସଂଘଟିତ ହେଉଅଛି । ପଥ ଯିବା ଆସିବାର ଗୋଟିଏ ମାତ୍ର, କିନ୍ତୁ ଫେରିଲାବେଳକୁ ମୋହବଶତଃ ପଥଭ୍ରଷ୍ଟ ଓ ବଣା ହେବା ଘଟି ଯାଉଅଛି । ଏହିଠାରେ ପୂର୍ବ ବର୍ଣ୍ଣାଶ୍ରମଧର୍ମର ନାମାନ୍ତର ଏହି ପଥ ଅର୍ଥାତ୍ ନିବୃତ୍ତି ବା ଯୋଗମାର୍ଗ ବର୍ଣ୍ଣାଶ୍ରମଧର୍ମ ଚତୁଷ୍ଟୟର ନାମାନ୍ତର ଅଟେ । ଏବେ ଜୀବାତ୍ମାର ସଂସାର ପରିଗ୍ରହ ଓ ତ୍ୟାଗର ପଥରୂପେ ଯେଉଁ ମାର୍ଗଟି ଉକ୍ତ ହେଲା, ତାହା ପ୍ରକୃତିଦ୍ୱାରା ନିର୍ଦ୍ଦିଷ୍ଟ ହୋଇଅଛି । ତଦ୍‌ଭିନ୍ନ ଦ୍ୱିତୀୟ ପନ୍ଥା ନାହିଁ ।

ଏ ପ୍ରସଙ୍ଗଟିକୁ ବର୍ଣ୍ଣାଶ୍ରମଧର୍ମର ଲକ୍ଷଣ ସଙ୍ଗେ ଏବଂ ଜୀବାତ୍ମାର ଦେହ-ସଂସାରରୂପେ ମୋହବନ ସଙ୍ଗେ ମେଳ କରି ପୂର୍ବବର୍ଣ୍ଣିତ ଆତ୍ମସଂବାଦର ଯଥାର୍ଥ ମର୍ମକୁ ଭେଦ କରି ସ୍ଥିର କରିବାକୁ ହେବ ଯେ ଜୀବତ୍ୱ ବା ଅବିଦ୍ୟା, ଅନ୍ତଃକରଣ ପ୍ରାଣେନ୍ଦ୍ରିୟାଦି, ଦେହ, ଏବଂ ସଂସାର, ଏକତ୍ରରେ ଆତ୍ମାର ମୋହବନରୂପରେ ପ୍ରସିଦ୍ଧ ଅଟେ; ଏବଂ ଆଶ୍ରମଧର୍ମ ସାଧନ ଅର୍ଥାତ୍ ପ୍ରାଣାୟାମ ଓ ପ୍ରତ୍ୟାହାରାଦି ଏହି ବନରୁ ଆତ୍ମପଦବୀକୁ ପ୍ରତ୍ୟାବର୍ତ୍ତନର ଏକମାତ୍ର ପନ୍ଥା । ଏହି ପନ୍ଥାରେ କର୍ମଯୋଗ, ଭକ୍ତିଯୋଗ ଓ ଜ୍ଞାନଯୋଗ ଏବଂ ତତ୍ସର୍ବ ତ୍ୟାଗଯୋଗାଦି ଯୋଗର ଲକ୍ଷଣରୂପେ ବର୍ଣ୍ଣିତ ହୋଇଅଛି । ଅତଏବ ଅନ୍ୟ ପ୍ରାକୃତ ପନ୍ଥା କିପରି କାହିଁ ସମ୍ଭବ ହୋଇପାରେ ? ତେବେ ସଂସାରରେ ଯେ ନାନାପ୍ରକାର ଧର୍ମମାର୍ଗ ଲକ୍ଷିତ ହୁଏ, ଏତତ୍-ସମ୍ବନ୍ଧରେ ଟିକିଏ ମୀମାଂସା ଉପରେ ଉପନୀତ ହେବାକୁ ହେବ ।

ଆତ୍ମସଂବାଦରୁ ଆତ୍ମଦର୍ଶନ ଓ ଆତ୍ମଦର୍ଶନରୁ ଆତ୍ମଜ୍ଞାନ ଓ ସଂସାରସ୍ଥ କର୍ତ୍ତବ୍ୟାକର୍ତ୍ତବ୍ୟ ନିରୂପଣ କରିବା ମାନବୀୟ ଆତ୍ମାର ନିତ୍ୟଧର୍ମ । ଏହି ଧର୍ମାନୁସାରେ ଆତ୍ମଦେବ

ପ୍ରାକୃତ ଜଗଦାଦି ପକ୍ଷରେ ଦ୍ରଷ୍ଟା, ଆଉ ସ୍ୱରୂପତଃ ପରମାର୍ଥକଳ୍ପେ ଅଦ୍ରଷ୍ଟା, ଅର୍ଥାତ୍ କେବଳ ଆତ୍ମବୋଧବିଗ୍ରହ ଅଟନ୍ତି । ପ୍ରକୃତିଗତ ପ୍ରବୃତ୍ତିମାର୍ଗ ଅର୍ଥାତ୍ ଅବିଦ୍ୟା, ଅନ୍ତଃକରଣ, ପ୍ରାଣେନ୍ଦ୍ରିୟାଦି, ଦେହ, ଏବଂ ଭୌତିକ ସଂସାରାଦି ସମସ୍ତ ଯେଉଁ ଅଜ୍ଞାନ ସୂତ୍ରରେ ଗ୍ରଥିତ ହୋଇଅଛି, ସେହି ସୂତ୍ରରେ ଆତ୍ମଦେବ ପ୍ରବୃତ୍ତିମାର୍ଗ ଦର୍ଶନ କରୁଅଛନ୍ତି । ଏହି ଦର୍ଶନଜନିତ ମୋହ ବନ୍ଧନ ନାମରେ କଥିତ ଅଟେ; ଆଉ ପ୍ରକୃତିଗତ ଆତ୍ମାନୁକୂଳ ନିବୃତ୍ତିମାର୍ଗର ଅର୍ଥ ଏହି କଥିତ ବନ୍ଧନରୁ ମୁକ୍ତ ହେବାର ବାଟ । ଏହି ବାଟ ସେହି ଅଜ୍ଞାନସୂତ୍ରର ବିପରୀତ ଦିଗକୁ ଅର୍ଥାତ୍ ସେହି ଏକଇ ରାସ୍ତାରେ ପ୍ରତ୍ୟାଗତ ହେଲାବେଳକୁ ସେହି ସେହି ପ୍ରତ୍ୟେକ ଘାଟ ଅର୍ଥାତ୍ ଦେହ-ସଂସାର ସମ୍ବନ୍ଧରୁ ଆରମ୍ଭ କରି ଅବିଦ୍ୟା ବିଜଡ଼ିତ ମୋହ ପର୍ଯ୍ୟନ୍ତ ଚାରିଗୋଟି ଘାଟ ପାରିହେବାର ନାମ ମୁକ୍ତି । (୧) ଦେହ-ସଂସାର ସମ୍ବନ୍ଧ ନିର୍ମିତ ଘାଟ ଆସନାଦିଦ୍ୱାରା, (୨) ପ୍ରାଣେନ୍ଦ୍ରିୟ ସମ୍ବନ୍ଧ ନିର୍ମିତ ଘାଟ ପ୍ରାଣାୟାମଦ୍ୱାରା, (୩) ଅନ୍ତଃକରଣଗତ ଦେହାତ୍ମାଭିମାନ ଘାଟ ପ୍ରତ୍ୟାହାରାଦିଦ୍ୱାରା ଏବଂ (୪) ଅବିଦ୍ୟା ନିର୍ମିତ ଘାଟ ଜୀବୋପାଧିକୁ ଜ୍ଞାନବୈରାଗ୍ୟ ଅର୍ଥାତ୍ ସର୍ବାଶ୍ରମତ୍ୟାଗ ବା ସନ୍ନ୍ୟାସ ଯୋଗଦ୍ୱାରା ଅତିକ୍ରମ କରି ଆତ୍ମସଂସ୍ଥାନ ଲାଭ କରିବା ମୁକ୍ତିର ଯଥାର୍ଥ ଅର୍ଥ ।

ଏହି ପ୍ରବୃତ୍ତିମାର୍ଗରେ ଦୈହିକ ଜନ୍ମ-ମୃତ୍ୟୁ ଓ ଅଳ୍ପକାଳ ଜୀବିତ ରହିବା ମାନବୀୟ ଆତ୍ମା ପକ୍ଷରେ ଝଞ୍ଜା ଯାଇଅଛି । ଆତ୍ମଦେବ ଏହି ପ୍ରବୃତ୍ତିମାର୍ଗର ଚାରିଘାଟ ଅର୍ଥାତ୍ (୧) ଦେହ-ସଂସାର, (୨) ପ୍ରାଣେନ୍ଦ୍ରିୟ, (୩) ଅନ୍ତଃକରଣ ଓ (୪) ଅବିଦ୍ୟାକୁ ଯେପରି ଅଜ୍ଞାନସୂତ୍ରରେ ଗ୍ରଥିତ ଥିବା ଦର୍ଶନ କରୁଅଛନ୍ତି, ସେହିପରି ନିବୃତ୍ତିମାର୍ଗର ସେହି ଚାରିଘାଟକୁ (୧) ଆସନସ୍ଥିର, (୨) ପ୍ରାଣେନ୍ଦ୍ରିୟାଦିର ସ୍ଥିର, (୩) ଅନ୍ତଃକରଣର ସ୍ଥିତି, ଏବଂ (୪) ଅବିଦ୍ୟାର ସ୍ଥିର ବା ନିରାକରଣକରି ଜ୍ଞାନସୂତ୍ରରେ ବିପରୀତଦିଗୋନ୍ମୁଖୀ ଥିବା ଦର୍ଶନ କରୁଅଛନ୍ତି; ଅର୍ଥାତ୍ ସେହି ଗୋଟିକମାତ୍ର ମାର୍ଗରେ ସଂସାରାରଣ୍ୟରେ ପ୍ରବେଶବେଳେ ଉକ୍ତ ଚାରିଗୋଟି ଘାଟ ସଚଳ ଅଛି, ଆଉ ସେହି ଏକ ବାଟରେ ଫେରିଲାବେଳକୁ ଉକ୍ତ ଚାରିଟି ଘାଟ ସୁସ୍ଥିର ଅଛି । ମୁଖ୍ୟାର୍ଥତଃ ସଂସାର-ପ୍ରବୃତ୍ତି ଚଳନରୁ ଏବଂ ନିବୃତ୍ତି ସ୍ଥୈର୍ଯ୍ୟରୁ ଜାତ ହେଉଅଛି । ଏସ୍ଥଳେ ଦେହଠାରୁ ଅବିଦ୍ୟା ପର୍ଯ୍ୟନ୍ତ ଚଳନର ନାମ ପ୍ରବୃତ୍ତି ବା ସଂସାରମାର୍ଗ, ଅର୍ଥାତ୍ ବନ୍ଧନ; ଆଉ ଦେହଠାରୁ ଅବିଦ୍ୟା ପର୍ଯ୍ୟନ୍ତ ସ୍ଥୈର୍ଯ୍ୟର ନାମ ନିବୃତ୍ତି ବା ଜ୍ଞାନମାର୍ଗ ଅର୍ଥାତ୍ ମୁକ୍ତି । ତେବେ ଦେଖାଗଲା ଏହି ପ୍ରବୃତ୍ତି ବା ବନ୍ଧନରୁ ନରକ, ଆଉ ନିବୃତ୍ତି ବା ମୁକ୍ତିରୁ ସ୍ୱର୍ଗର କଳ୍ପନା କରାଯାଏ, ଅଥଚ ଉଭୟ ନରକ ଏବଂ ସ୍ୱର୍ଗ ଗତିଦ୍ୱୟ ଭେଦରେ ଏକଇ ଗୋଟିଏ ବାଟର ନାମଦ୍ୱୟ ମାତ୍ର । ଆତ୍ମଦେବ ପରମାର୍ଥତଃ ଏହି ସ୍ୱର୍ଗ ନରକ ଦ୍ୱିବିଧଭାବ-ନାମାତ୍ମକ ପଥଟିକୁ ହେଇଟି ଏହି ଆତ୍ମପୀଠରେ ଆତ୍ମ-ସଂପ୍ରତିଷ୍ଠିତ ରହି ଦର୍ଶନ କରୁଅଛନ୍ତି । ଦର୍ଶନ ସମ୍ବନ୍ଧରୁ ଯେପରି ମନୁଷ୍ୟକୁ ଦ୍ରଷ୍ଟା କୁହାଯାଏ, ଅର୍ଥାତ୍ ବୃକ୍ଷ ଦେଖିଲାବେଳେ ମନୁଷ୍ୟକୁ ବୃକ୍ଷର ଦ୍ରଷ୍ଟା କୁହାଯାଏ, ଆଉ ନ ଦେଖିଲାବେଳେ ସେ

ଦ୍ରଷ୍ଟାପଦବାଚ୍ୟ ନୁହେ ଅର୍ଥାତ୍ କେବଳ ମନୁଷ୍ୟ ସଂଜ୍ଞକ ମାତ୍ର, ସେହିପରି ଉକ୍ତ ସ୍ୱର୍ଗ-ନରକ-ବାଚକ ପଥଟିକୁ ଆତ୍ମଦେବ ଦର୍ଶନ କଲାବେଳେ ତତ୍ତ୍ୱତଃ ଦ୍ରଷ୍ଟାରୂପେ ଉପକଳ୍ପିତ ହୁଅନ୍ତି; ଆଉ ନ ଦେଖିଲେ ସ୍ୱୟଂ ସଚ୍ଚିଦାନନ୍ଦ ବିଗ୍ରହରୂପରେ ଅଧିଷ୍ଠିତ ଥାଆନ୍ତି । ବିଶେଷତଃ ମନୁଷ୍ୟ ଗଛ ଦେଖିଲେ ସ୍ୱୟଂ ଗଛ ହୋଇଯାଏ ନାହିଁ, ମାତ୍ର ଗଛର ଶୋଭା-ଦର୍ଶନକୁ ଏକପ୍ରକାର କୌତୁକପରି ଜ୍ଞାନ କରେ; ସେହିପରି ଆତ୍ମଦେବ ଆତ୍ମଜ୍ଞାନ ବଳରେ ଆତ୍ମପ୍ରତିଷ୍ଠିତ ରହି ଉକ୍ତ ବଦ୍ଧ-ମୁକ୍ତ-ବିଶିଷ୍ଟ ପଥଦ୍ୱୟ ଦର୍ଶନ କରି ସେହି ପଥର ଆକାର ଧାରଣ କରନ୍ତି ନାହିଁ, ତଦ୍ରୂପ ଦର୍ଶନ ଆତ୍ମା ପକ୍ଷରେ କ୍ରୀଡ଼ାବିଶେଷର ବିଶିଷ୍ଟତା ମାତ୍ର । ଏହି ହେତୁ ଅବଧୂତ ଗୋସାଇଁ କହିଅଛନ୍ତି—'ସ୍ୱର୍ଗ-ନରକ ବେଦ ବାଣୀ, ମୁଁ ଏହା ଏକଧର୍ମେ ଜାଣି' ।

ଏହି ଉପରିବର୍ଣ୍ଣିତ ପଥଦ୍ୱୟ ଦର୍ଶନ କରିବାକୁ ଆତ୍ମାକୁ କେବଳ ଜ୍ଞାନଦ୍ୱାରା ତାହା ସମ୍ପନ୍ନ କରିବାକୁ ହୋଇଥାଏ, କେଉଁଆଡ଼େ ଯିବା ଆସିବାକୁ ପଡ଼େ ନାହିଁ । ଆତ୍ମଦେବ ଅଟଳ ଅଚଳ ସ୍ଥାଣୁ ସ୍ୱରୂପ ଆତ୍ମପୀଠରେ ନିତ୍ୟବର୍ତ୍ତମାନ ରହିଅଛନ୍ତି । କେବଳ ଅବିଦ୍ୟାକୃତ ଅନ୍ତଃକରଣାଦିର ଚଳନ ଆତ୍ମାରେ ଆରୋପିତ ହୋଇ ଆତ୍ମାକୁ ସଚଳ ଆଉ ବଦ୍ଧ ବୋଲି କଳ୍ପନା କରୁଅଛୁ, ଏବଂ ଜ୍ଞାନକୃତ ଦେହାନ୍ତଃକରଣାଦିର ସ୍ଥୈର୍ଯ୍ୟ ବା ନିଶ୍ଚଳତା ଅର୍ଥାତ୍ ଆଶ୍ରମଧର୍ମ-ସାଧନ ଚତୁଷ୍ଟୟ ଆତ୍ମାରେ ଆରୋପିତ ହୋଇ ଆତ୍ମାକୁ ଶାନ୍ତ-ମୁକ୍ତ ବୋଲି କଳ୍ପନା କରୁଅଛୁ । ବସ୍ତୁତଃ ଆତ୍ମା ବଦ୍ଧ ନୁହନ୍ତି ବା ମୁକ୍ତ ନୁହନ୍ତି । ଅଥଚ ପ୍ରକୃତିର ଶୃଙ୍ଖଳ୍ୟଜନିତ କ୍ରୀଡ଼ାନୁରୋଧରେ କଳ୍ପନାଦ୍ୱାରା ସେହି ପ୍ରଭୁ ନିତ୍ୟ-ବଦ୍ଧ ବା ନିତ୍ୟ-ମୁକ୍ତ ବୋଲି ଆଭାସମାନ ହେଉଅଛନ୍ତି । ଆତ୍ମାର ସ୍ୱରୂପ ଏବଂ ଏହି ପ୍ରାତିଭାସିକ ରୂପ ଯଦ୍ଦ୍ୱାରା ଉପଲବ୍ଧି କରାଯାଏ, ତାହାର ନାମ ଅତ୍ମଜ୍ଞାନ, ଆଉ ସେହି ଜ୍ଞାନପ୍ରାପ୍ତି ଅର୍ଥରେ ଯେଉଁ ସାଧନ ଆବଶ୍ୟକ, ତାହାର ନାମ ଧର୍ମ । ସୁତରାଂ ବର୍ଣ୍ଣାଶ୍ରମ ଧର୍ମ ଉପରୋକ୍ତ ସାଧନାଦିର ଆଶ୍ରୟସ୍ଥାନ ଅଟେ ବୋଲି ଏହି ଧର୍ମର ନାମ ସନାତନ ଧର୍ମ । ଏହି ଧର୍ମ ଏକ ଏବଂ ଅଦ୍ୱିତୀୟ, ଆଉ ଆତ୍ମା ମଧ୍ୟ 'ଏକମେବାଦ୍ୱିତୀୟଂ' ବୋଲି ଚିରପ୍ରସିଦ୍ଧ । ତେବେ ଏହି ଅଦ୍ୱିତୀୟ ଦ୍ୱୈତଗନ୍ଧଶୂନ୍ୟ-ଧର୍ମ ସମ୍ବନ୍ଧରେ ଯେ ବହୁମତ ଦେଖାଯାଏ, ତାହା ଆତ୍ମା ପକ୍ଷରେ ଧର୍ମଜଗତର କ୍ରୀଡ଼ାତ୍ମକ ବୈଚିତ୍ର୍ୟ ବିଶେଷ ଭିନ୍ନ ଅନ୍ୟ କିଛି ନୁହେ ।

ଉପର ବର୍ଣ୍ଣନାରୁ ସ୍ପଷ୍ଟ ବୁଝାଗଲା ଯେ ଆତ୍ମା ପକ୍ଷରେ (୧) 'ମୋହାବିଷ୍ଟ ସଂସାର ଦୃଷ୍ଟିରେ' ଯାହା ଦେହ-ସଂସାର, ତାହା ଆଶ୍ରମଧର୍ମ-ସାଧନ ସମ୍ପନ୍ନ ଜ୍ଞାନ ବା ଯୋଗ ଦୃଷ୍ଟିରେ ଅଧିଷ୍ଠାନ ବା ଅବସ୍ଥାନ ଅର୍ଥାତ୍ ଯମ ନିୟମାଦି, (୨) ଆଉ ଯାହା ପ୍ରାଣେନ୍ଦ୍ରିୟାଦି ତାହା ପ୍ରାଣାୟାମାଦି, (୩) ପୁଣି ଯାହା ଅନ୍ତଃକରଣ, ତାହା ପ୍ରତ୍ୟାହାରାଦି ଏବଂ (୪) ଯାହା ଅବିଦ୍ୟା ତାହା ଜୀବୋପାଧିର ଅତିକ୍ରମ ବା ସନ୍ନ୍ୟାସ-ଯୋଗ ନାମରେ ଅଭିହିତ ଅଟେ; ଅର୍ଥାତ୍ ସଂସାରୀ (୧) ଦେହସଂସାରକୁ କର୍ମଭୂମିରୂପେ

ବ୍ୟବହାର କରୁଅଛୁ । ପୁଣି (୨) ସଂସାରୀ ଯେଉଁ ପ୍ରାଣେନ୍ଦ୍ରିୟାଦିକୁ ଭୋଗ-କର୍ମ-ସାଧନର ଅଙ୍ଗରୂପେ ବ୍ୟବହାର କରୁଅଛୁ, ଜ୍ଞାନୀ ସେହି ପ୍ରାଣାଦିକୁ ପ୍ରାଣାୟାମାଦି ସାଧନର ଉପକରଣରୂପେ ବ୍ୟବହାର କରୁଅଛୁ; ଆଉ (୩) ସଂସାରୀ ଯେଉଁ ଅନ୍ତଃକରଣ ବା ବୁଦ୍ଧ୍ୟହଂକାରାଦିକୁ କର୍ତ୍ତୃତ୍ୱ-ଭୋକ୍ତୃତ୍ୱ-ସୁଖତ୍ୱ-ଦୁଃଖତ୍ୱ ଇତ୍ୟାଦି ଅଭିମାନ-ବିଶିଷ୍ଟ କରି ଦେଖୁଅଛୁ, ଜ୍ଞାନୀ ସେହି ଅନ୍ତଃକରଣକୁ ଦୃଷ୍ଟ୍ୟାହାର ସାଧନାଦି ଉପାଦାନ-ରୂପେ ଗ୍ରହଣ କରୁଅଛୁ, ଏବଂ (୪) ସଂସାରୀସ୍ୱ ଆତ୍ମା ଯେଉଁ ଅବିଦ୍ୟାମୋହବଳରେ ଆପଣାକୁ ଜୀବୋପାଧିବିଶିଷ୍ଟ କରି ମଣୁଅଛୁ, ସନ୍ନ୍ୟାସୀ ଅର୍ଥାତ୍ ସର୍ବାଶ୍ରମତ୍ୟାଗୀ ସେହି ଅବିଦ୍ୟାକୁ ଜ୍ଞାନ-ବୈରାଗ୍ୟ ଯୋଗାଶ୍ରୟରେ ତ୍ୟାଜ୍ୟ ବା ହେୟ ଅନାତ୍ମ-କଳ୍ପିତ ମାୟିକ ମିଥ୍ୟାବସ୍ତୁ ବୋଲି ନିର୍ଦ୍ଧାରଣ କରୁଅଛୁ । ଏହି ଦେହଠାରୁ ଅବିଦ୍ୟା ପର୍ଯ୍ୟନ୍ତ ଚାରିଗୋଟି ଭବରୋଗର ଶାନ୍ତି ନିମିତ୍ତ ଆସନାଦିଠାରୁ ସନ୍ନ୍ୟାସଯୋଗ ପର୍ଯ୍ୟନ୍ତ ଚାରିପ୍ରକାର ବିଶିଷ୍ଟ ଚାରିଗୋଟି ଯୋଗୌଷଧିରୂପରେ ନିର୍ଦ୍ଦିଷ୍ଟ ହୋଇଅଛୁ । ଏହା ପ୍ରତ୍ୟକ୍ଷ ସତ୍ୟ, ସୁତରାଂ ସନାତନ ଧର୍ମ ଅଟେ । ବର୍ତ୍ତମାନ ପ୍ରଥମରୁ କହି ରଖାଯାଉଅଛୁ ଯେ, ଏହି ଭଗବତ୍-ସୃଷ୍ଟ ସଂସାର ମଧ୍ୟରେ ମାନବସମାଜରେ ଯେତେ ଯେତେ ପ୍ରକାର ଧର୍ମ-ମତଭେଦ ପରିଲକ୍ଷିତ ହେଉଅଛୁ, ସେ ସମୁଦାୟ ଭଗବତ୍-ସୃଷ୍ଟ ସନାତନ ଧର୍ମର ବହିର୍ଭୂତ ହୋଇ ନ ପାରେ । ତାହା ସବୁ ମାନବୀୟ ପ୍ରକୃତିଗତ ବୁଦ୍ଧିଭେଦରେ, ଜ୍ଞାନଭେଦରେ, ରୁଚିଭେଦରେ, ସାଧ୍ୟାସାଧ୍ୟଭେଦରେ, ଆଦର୍ଶାନୁକରଣାଦିଭେଦରେ, ବା ଇତ୍ୟାଦି ଇତ୍ୟାଦି ଯେ କୌଣସି ଭେଦରେ ହେଉ ନା କାହିଁକି, ଉତ୍ତମରୂପେ ମନୋଯୋଗପୂର୍ବକ ତଳେଇ ଦେଖିଲେ ତାହା ଅନୁକଳ୍ପରୂପରେ ବା ଆଭାସାକାରରେ ଏହି ସନାତନ ଆତ୍ମଧର୍ମସାଧନର ପ୍ରକାରାନ୍ତର ଭିନ୍ନ ଅନ୍ୟ କିଛି ନୁହେ ।

ଦେଖିବାକୁ ହେବ ଯେ ମନୁଷ୍ୟମାନଙ୍କଠାରେ ଯେଉଁ ଜ୍ଞାନ ଦତ୍ତ ଥିବାରୁ ତଦ୍ଦ୍ୱାରା ମନୁଷ୍ୟ ପଣ୍ଡିତ, ଦାର୍ଶନିକ, ଯୋଗୀ, ମୁନି, ଋଷି, ତପସ୍ୱୀ, ମହାମହୋପାଧ୍ୟାୟ ଓ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଇତ୍ୟାଦି ଉପାଧିର ଯୋଗ୍ୟ ହେଉଅଛୁ, ସେହି ଜ୍ଞାନ ଯେଉଁ ମହାପ୍ରଭୁ ପରମେଶ୍ୱରଙ୍କର ତେଜ, ଆଭା, ଜ୍ୟୋତି, କାରଣ ବା କଳାବିଶେଷ ବୋଲି ନିଶ୍ଚୟ କରାଯାଏ, ସେହି ପରମେଶ୍ୱରଙ୍କ ସମ୍ବନ୍ଧରେ କଣ ବା କି ପ୍ରକାର ବୋଲି କହିବା ବଡ଼ ସହଜ ନୁହେ । ତେବେ ଯାହାଙ୍କର ତେଜ ଜ୍ଞାନମୟ, ସେ ସ୍ୱୟଂ ଜ୍ଞାନ-ସାଗର ବା ଜ୍ଞାନର ବିଗ୍ରହରୂପ ଜ୍ଞାନପୂର୍ଣ୍ଣ କଳେବର ବୋଲି କୁହାଯାଇପାରେ, ଆଉ ମଧ୍ୟ ସବୁ ପ୍ରକାରର ଆଲୋଚନାରୁ ସ୍ଥିର କରାଯାଏ ଯେ ସେହି ପ୍ରଭୁ ପରମେଶ୍ୱର ନିତ୍ୟ, ସତ୍ୟ, ସନାତନ, ପବିତ୍ର, ନିର୍ମଳ, ସର୍ବଗତ, ସ୍ଥାଣୁ ଏବଂ ନିତ୍ୟ ପ୍ରତ୍ୟକ୍ଷ ଚୈତନ୍ୟ ବ୍ରହ୍ମରୂପ ଅଟନ୍ତି । ସେହି ହେତୁ ପରମେଶ୍ୱରୋପାସନା ସମୟରେ ସର୍ବମତର ବିଭିନ୍ନ ସମ୍ପ୍ରଦାୟଭୁକ୍ତ ଧର୍ମଯାଜକମାନେ ବା ସାଧାରଣ ଉପାସକମାନେ ବାହ୍ୟଶୁଦ୍ଧି, ବାକ୍ଶୁଦ୍ଧି, ମାନସିକ ସ୍ଥିରତା ଏବଂ ପବିତ୍ରତା ପ୍ରଭୃତି ସମ୍ପାଦନ କରିବା ଦେଖାଯାଇଥାଏ । ଅର୍ଥାତ୍

ହସ୍ତ, ପଦ, ମୁଖ ମାର୍ଜନ କରିବା କିମ୍ବା ଅଭାବ ପକ୍ଷରେ ରୁମାଲ ପ୍ରଭୃତିରେ ହେଲେ ଟିକିଏ ମୁଖ ପ୍ରଭୃତି ପୋଛି ଦେବାର ଦେଖାଯାଏ । ସ୍ଥିରଭାବେ ବସିବା କି ଠିଆହେବା ଅଥବା ଆଣ୍ଠୁ ମାଡ଼ି ରହିବା, ସାଷ୍ଟାଙ୍ଗ, ପଞ୍ଚାଙ୍ଗ ଦଣ୍ଡବତ କରିବା ମଧ୍ୟ ଦେଖାଯାଏ । କେହି କେହି ପବିତ୍ର ମୃଦୁସ୍ୱରରେ, କେହି କେହି ଦୀର୍ଘଭାବରେ ଉପାସନା ସଙ୍ଗୀତ ଗାନ କରିବାରେ ନିଯୁକ୍ତ ରହନ୍ତି । ଆଜି ମଧ୍ୟ କେହି କେହି ଚକ୍ଷୁ ବୁଜି ଧୀରସ୍ଥିର ରହି ମନେ ମନେ ପ୍ରାର୍ଥନା, ବନ୍ଦନ ଓ ସ୍ତବନାଦି ଶେଷ କରନ୍ତି ବା କେହି କେହି ପରମେଶ୍ୱରଙ୍କର ନାମ ଭଜନା କରନ୍ତି ।

ଏହିଠାରେ ଦେଖାଯାଉ, ଦେହର, ମନର, ବାକ୍ୟର, ତଥା କାୟିକ, ମାନସିକ, ବାଚିକ ସ୍ଥିରତା, ସଂଯମ ଏବଂ ପବିତ୍ରତାର ଲକ୍ଷଣ ସହଜରେ ଉପଲବ୍ଧି କରିବାକୁ ହୋଇଥାଏ । ଏହିଥିରୁ ସହଜରେ ବୁଝାଯାଏ, ପରମେଶ୍ୱରଭାବର ଏପରି ମାହାତ୍ମ୍ୟ ବା ସାମର୍ଥ୍ୟ ଅଛି ଯେ ତାହା ଦେହ, ବାକ୍ୟ, ମନ ଏବଂ ବ୍ୟବହାରାଦିକୁ ପବିତ୍ର, ନିର୍ମଳ ଓ ସ୍ଥିର କରିଦିଏ । ଏ ସମ୍ବନ୍ଧରେ ମତଭେଦାନୁସାରେ କୌଣସି ଭେଦ ମୋଟ ଉପରେ ଲକ୍ଷିତ ହୁଏନାହିଁ । ଏଥିରୁ ବୁଝିବାକୁ ହେବ ଯେ ପବିତ୍ରତା, ନିର୍ମଳତା ଓ ସ୍ଥିରତା ସଂଯମାଦି ହିନ୍ତ ପରମେଶ୍ୱର ଉପାସନାର ନିତ୍ୟ ସମ୍ବନ୍ଧ ଘନିଷ୍ଠଭାବରେ ବିଜଡ଼ିତ ରହିଅଛି । ସନାତନ ଧର୍ମାନୁମୋଦିତ ଆସନାଦି ଦ୍ୱାରା ଦୈହିକ ସ୍ଥିରତା, ପ୍ରାଣାୟାମାଦି ଦ୍ୱାରା ପ୍ରାଣାଦିର ସଂଯମ, ପ୍ରତ୍ୟାହାରାଦି ଦ୍ୱାରା ଅନ୍ତର୍ବୃତ୍ତି ନିରୋଧ ଏବଂ ସନ୍ନ୍ୟାସଦ୍ୱାରା ସର୍ବୋପାଧିର ତ୍ୟାଗ ସଙ୍ଗେ ସଙ୍ଗେ ଆତ୍ମା ପରମାତ୍ମାର ଐକ୍ୟ ଏବଂ ଅଭେଦବୋଧ ସିଦ୍ଧି ଇତ୍ୟାଦି ଯାହା ନିରୂପିତ ଅଛି, ତାହା ସେହି ଈଶ୍ୱରୋପାସନାର ଉତ୍କୃଷ୍ଟ, ପ୍ରାଞ୍ଜଳ ଓ ଯଥାର୍ଥ ପନ୍ଥା । ସେହି ପନ୍ଥାନୁକରଣ ବା ସମ୍ପୂର୍ଣ୍ଣ ଅନୁସରଣ କରିବା ସର୍ବଶ୍ରେଣୀସ୍ଥ ମାନବ ପକ୍ଷରେ ରୁଚି, ସଂସ୍କାର ଏବଂ ବୁଦ୍ଧି ଇତ୍ୟାଦି ଭେଦବଶରୁ ସର୍ବଥା ଅସମ୍ଭବ ଏବଂ ଦୁଃସାଧ୍ୟ ଅଟେ । ତଥାପି ଯହିଁକି ଯାହା ଦରକାର, ତହିଁକି ତାହା ନୋହିଲେ ଚଳିବ କିପରି ? ଏସବୁହେତୁ ସର୍ବଶ୍ରେଣୀର ଉପାସକମାନେ ଉପାସନା ସମୟରେ ଦୈହିକ, ବାଚନିକ, ମାନସିକ ବ୍ୟବହାରାଦି ସ୍ଥିର ରଖି ପବିତ୍ରତାଦିକୁ ନାମମାତ୍ର ବଡ଼ କ୍ଷୀଣ ଭାବରେ ଆଶ୍ରୟ ବା ଆଗ୍ରହ କରିଥାନ୍ତି । ହାତି ଜାଗାରେ ଛେଳିଟିଏ ବା ନଡ଼ିଆ ଜାଗାରେ ଗରଗଡ଼ିଟିଏ ଅଥବା ଫୁଲ ତୁଳସୀ ଜାଗାରେ କଚରଙ୍ଗା ଘାସ ପୁଳାଏ ଦେଇ ବଣ କୁକୁଡ଼ା ମାରି ଦେବଋଣ ସୁଝିଲି ପରି କଲେ ଖାଲି ମନବୋଧ କରିବା ବ୍ୟବସ୍ଥା ସିନା, ଆଉ ତହିଁରେ ଉତ୍କୃଷ୍ଟ ଲକ୍ଷ୍ୟ ପୂରଣ ହେବ କିପରି ?

ଦେଖାଯାଉ, ଖାଲି ସ୍ଥିର ହୋଇ ବସିବାର ସ୍ଥିରତା ସଙ୍ଗେ ପଦ୍ମାସନାଦି ଆସନବଦ୍ଧ ଦେହର ସ୍ଥିରତାର କେତେ ପ୍ରଭେଦ । ବାହ୍ୟ ଭଦ୍ରତାନୁରୋଧ ଭାବରେ ପ୍ରାଣକୁ ଟିକିଏ ଗାମ୍ଭୀର୍ଯ୍ୟ ସହିତ ସ୍ଥିର କରି କଣ୍ଠମୂଳରେ କ୍ଷୀଣ ମୃଦୁସ୍ୱର ଉଚ୍ଚାରଣ କରିବାରେ ପ୍ରାଣର ଯେ ସ୍ଥୈର୍ଯ୍ୟ, ତାହା ସହିତ ପ୍ରାଣାୟାମ ନିର୍ଦ୍ଦିଷ୍ଟ ପ୍ରଣାଳୀରେ

ପ୍ରାଣସଂଯମ କରି ପ୍ରାଣଦଣ୍ଡକୁ ପୂର୍ଣ୍ଣ କୁମ୍ଭକାକାରରେ ଥୟ ରଖିବାରେ ପ୍ରାଣର ଯେ ସ୍ଥିରତା, ତାହା ଆକାଶ ପାତାଳ ପ୍ରଭେଦ ।

ଏ ପରେ ହୃଦୟଗତ ଚିନ୍ତା ବା ଭାବନାର ବିଷୟ ପ୍ରତି ଅବଧାନ କରାଯାଉ । ମନୁଷ୍ୟ ମନରେ କିଏ କଣ ଚିନ୍ତା କରେ ଏବଂ ସେହି ଚିନ୍ତାଗତ ଭାବ କିପରି, ତାହା କହିବା ସହଜ ନୁହେ । ତାହା ସେହି ହୃଦୟପୀଠାଧୀଶ ଭାବଗ୍ରାହୀଙ୍କୁ ଜଣା । ତେବେ ସେହି ମନୋଗତ ଚିନ୍ତା ଓ ଭାବନାଦିକୁ ସ୍ତବନ, ବନ୍ଦନ, ଉପାସନା, ପ୍ରାର୍ଥନାଦି ନାମରେ ଅଭିହିତ କରାଯାଇଥାଏ । ତଦ୍ରୂପ ପ୍ରାର୍ଥନାଦିରେ କେହି କେହି 'ପ୍ରଭୁ, ମୋର ସମୁଦାୟ ସଂସାରୀୟ କର୍ମର ପାପଭାଗାଦିକୁ କ୍ଷମାପ୍ରଦାନ କରାଯାଉ, ବା ମୋର ଅଭୀଷ୍ଟ ଫଳ ପ୍ରଦାନ କରାଯାଉ,' ଅଥବା କେହି କେହି (ମନରେ) କହି ପାରଥାଆନ୍ତି, 'ଏ ସଂସାରରେ ମୁଁ କି ସ୍ଥିର, ମୁଁ ଅଜ୍ଞ, କଣ ଭଲ ମନ୍ଦ ବାଛିକରି ମାଗି ପାରିବି ? ଯାହା ପ୍ରଭୁଙ୍କର ଇଚ୍ଛା, ତାହା କରନ୍ତୁ । ମୋତେ ସଦ୍‌ବୁଦ୍ଧି ଏବଂ ସଦ୍‌ଜ୍ଞାନ ଦିଅନ୍ତୁ । ମୁଁ ଶରଣ ମାତ୍ର ଯାଚଞ୍ଚା କରୁଅଛି ।' ଏହି ଭାବଟିର କଥାକୁ ତୁଳନା କରି ହେବନାହିଁ । ଯାହା ହେଉ, ଏହିପରି ନାନା ଭାବ ସେହି ସେହି ଉପାସନା ମଧ୍ୟରେ ଅବଶ୍ୟ ରହିଅଛି । ହେଉ ଭଲ କଥା, ମାତ୍ର ଦେଖିବାକୁ ଏତିକି ବାକି ରହିଯାଉଅଛି ଯେ ତଦ୍ରୂପ ପ୍ରାର୍ଥନା-ସୂଚକ ଉପାସନାଦି ବେଳରେ ପ୍ରାର୍ଥୀ ଆପଣାକୁ ନାମରୂପବିଶିଷ୍ଟ ଦେହାକାରିତ ମୂର୍ତ୍ତି ବୋଲି ଲକ୍ଷ୍ୟ କରିଅଛି, କି ଅନ୍ୟ କଣ ବୋଲି ଦେଖୁଅଛି । ପୁଣି ପରମେଶ୍ୱରଙ୍କୁ କିମ୍ଭୂତକିମାକାର କରି ଉପାସ୍ୟ ରୂପେ ବରଣ କରୁଅଛି । ଏହି ଉପାସ୍ୟ ଏବଂ ଉପାସକ ଉଭୟେ ସ୍ୱରୂପତଃ କିପରି, ଏହା ଅବଶ୍ୟ ଆଲୋଚନାର ବିଷୟ । ତାହା ନ ହେଲେ ତ ସବୁ ସେହି ଅନ୍ଧାରରେ ବୁଡ଼ି ରହିଯାଉଅଛି । କହିବାକୁ ହେବ, ଉପାସକ ଏହି ଜୀବ ଏବଂ ଉପାସ୍ୟ ପ୍ରଭୁ ପରମେଶ୍ୱର । ତେବେ ଜୀବାତ୍ମା ଏବଂ ପରମାତ୍ମାର ତତ୍ତ୍ୱଜ୍ଞାନକୁ ଏଠାରେ ନିମନ୍ତ୍ରଣ କରିବା ଏକାନ୍ତ ପ୍ରୟୋଜନ । ସେ ସମ୍ବନ୍ଧେ ମଧ୍ୟ ନାନାପ୍ରକାର ମତଭେଦ ଦୃଷ୍ଟ ହୁଏ । ସେହି ମତଭେଦ କେବଳ ଆନୁମାନିକ ବାକ୍‌ବିତଣ୍ଡା ଓ ତର୍କ-ଯୁକ୍ତ୍ୟାଦିରେ ଗଠିତ ବା ବିରଚିତ, ଆଧ୍ୟାତ୍ମିକ ତତ୍ତ୍ୱର ଅଭ୍ରାନ୍ତ ଦର୍ଶନ ଭାବରେ ନୁହେ । ଅନ୍ଧ ହସ୍ତୀଦର୍ଶନ ନ୍ୟାୟକୁ ସେହିଠାରେ ପ୍ରଶସ୍ତ ମୁକ୍ତ ସ୍ଥାନାଧିକାର କରିବାକୁ ମିଳି-ଥାଏ । ଯାହାହେଉ ଆତ୍ମତତ୍ତ୍ୱ ସମ୍ବନ୍ଧେ ଏହି ଗ୍ରନ୍ଥରେ ପୂର୍ବେ କିଞ୍ଚିତ୍ ଆଲୋଚନା କରାଯାଇଅଛି । ତେବେ ଏଠାରେ ପ୍ରସଙ୍ଗାନୁରୋଧରେ ଅଳ୍ପ ଟିକିଏ ଆହୁରି ବିଚାର କରାଯାଉ ।

ଜୀବର ଆତ୍ମଜ୍ଞାନ ପ୍ରଥମ ପ୍ରୟୋଜନ ବସ୍ତୁ । ଆତ୍ମଜ୍ଞାନ ନ ହେଲେ ପରମାତ୍ମ-ତତ୍ତ୍ୱଜ୍ଞାନ ଅସମ୍ଭବ । ଉପାସକ ନିରୂପିତ ନ ହେଲେ ଉପାସ୍ୟ କାହିଁ ନିଶ୍ଚିତ ହେବ ? ଗ୍ରାମ ନ ଥିଲେ ସୀମା କଣ କିପରି ବୋଲି କୁହାଯାଇପାରେ ? ଊର୍ଦ୍ଧ୍ୱଦୃଷ୍ଟି ସହକାରେ ଚନ୍ଦ୍ରସୂର୍ଯ୍ୟ ଦେଖିଲା ପରି ବା ଅଣୁବୀକ୍ଷଣ କି ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଅଦୃଶ୍ୟ

କ୍ଷୁଦ୍ରତମ ପରମାଣୁଜୀବାଣୁ ବା ଅନ୍ୟ ସୂକ୍ଷ୍ମତମ ଅତୀନ୍ଦ୍ରିୟ ବସ୍ତୁ ପ୍ରଭୃତିକୁ ଜାଣିଲାପରି ପ୍ରକ୍ରିୟା ବା ଦର୍ଶନାଦି ଦ୍ୱାରା ଆତ୍ମଜ୍ଞାନ ହେବା ଦୁଷ୍କର । ଆତ୍ମଜ୍ଞାନ ପ୍ରଣାଳୀ ଅନ୍ୟପ୍ରକାର । ଏଥିରେ ଇନ୍ଦ୍ରିୟମାନେ କିଛି କରିପାରିବେ ନାହିଁ । କ୍ଷୀର ଏବଂ ନୀର ମିଶି ଏକ ହେଲାପରି ଆତ୍ମତତ୍ତ୍ୱ ଏବଂ ପ୍ରକୃତିତତ୍ତ୍ୱ (ଅବିଦ୍ୟା ଓ ଅନ୍ତଃକରଣାଦିଠାରୁ ତ୍ରିଗୁଣ ସୂତ୍ର ଏବଂ ପ୍ରବୃତ୍ତିମାର୍ଗ ସହିତ ଇନ୍ଦ୍ରିୟ ପ୍ରାଣ-ଦେହ ସଂସାର ପର୍ଯ୍ୟନ୍ତ) ଏକତ୍ର ଏକ ବିଚିତ୍ର ଅକଥନୀୟ ଭାବରେ ମିଶି ଏପରି ଏକ ହୋଇ ରହିଅଛନ୍ତି ଯେ ତାହା ଦେଖିବାକୁ ଗଲେ ପ୍ରାକୃତ ସ୍ଥୂଳ ଦୃଷ୍ଟିରେ ପ୍ରକୃତି ଏକା ଦେଖାଯାଉଅଛି, ଆଉ ବିବେକ ବା ଜ୍ଞାନଚକ୍ଷୁରେ ଆତ୍ମତତ୍ତ୍ୱ ସତ୍ତା-କାରରେ, ଏବଂ ପ୍ରକୃତି ତତ୍ତ୍ୱ ତହିଁରେ ଏକ ଆଶ୍ଚର୍ଯ୍ୟ ଲୀଳାପୂର୍ଣ୍ଣ କାଳ୍ପନିକ ପ୍ରତିଭାଷିକା-କାରରେ ପରିଦୃଷ୍ଟ ବା ଅଭିଜ୍ଞାତ ହେଉଅଛି । ତେବେ ଏହି ଜ୍ଞାନଦୃଷ୍ଟି କିପରି ? ଆତ୍ମତତ୍ତ୍ୱରୁ ପ୍ରକୃତିତତ୍ତ୍ୱକୁ ଅଲଗା କରି ଦେଖିବାର ଯେ ପ୍ରଣାଳୀ, ତାହାର ନାମହିଁ ଏଠାରେ ଜ୍ଞାନଦୃଷ୍ଟି । ସେହି ଦୃଷ୍ଟିଲାଭ ନିମିତ୍ତ କ୍ରମେ କ୍ରମେ ଦେହକୁ ଆସନାଦି ଦ୍ୱାରା ସ୍ଥିର କରି ଦେଖିବାକୁ ହେବ । ଦେହ ଜଡ଼, ଆଉ ଜ୍ଞେୟ ରୂପ ଓ ଆତ୍ମା ଏହି ଜ୍ଞେୟର ଜ୍ଞାତା । ଏଠାରେ ଜ୍ଞାତା ସଙ୍ଗେ ପ୍ରାଣାଦି ଅଭେଦଭାବେ ମିଶି ରହିଅଛନ୍ତି । ସୁତରାଂ ପ୍ରାଣେନ୍ଦ୍ରିୟାଦିକୁ ପ୍ରାଣାୟାମାଦି ଦ୍ୱାରା ସଂଯତ କଲରୁ ଦେଖାଯିବ ପ୍ରାଣେନ୍ଦ୍ରିୟାଦି ଜ୍ଞେୟ, ଆତ୍ମା ସେମାନଙ୍କର ଜ୍ଞାତା । ଏଥିଉତ୍ତାରୁ ଦେଖାଯିବ ଅନ୍ତଃକରଣ ଏଠାରେ ଆତ୍ମା ସଙ୍ଗେ ମିଶି ରହିଅଛି, ଏବଂ କର୍ତ୍ତୃତ୍ୱ ଜ୍ଞାତୃତ୍ୱାଦିକୁ ଆତ୍ମାରେ ଆରୋପ କରୁଅଛି । ତହୁଁ ପ୍ରତ୍ୟାହାରାଦି ଦ୍ୱାରା ଏହି ଅନ୍ତଃକରଣକୁ ନିରୁଦ୍ଧ କରି କର୍ତ୍ତୃତ୍ୱ ଜ୍ଞାତୃତ୍ୱାଦିକୁ ଅତିକ୍ରମ କରଣାନନ୍ତର ଆତ୍ମା ଉପଲବ୍ଧି କରିପାରିବେ ଯେ ସେଠାରେ ଜୀବୋପାଧି ମାତ୍ର ତାହାଙ୍କଠାରେ ଅଭେଦ ହୋଇ ମିଶିଥିବାର ଆରୋପ କରାଯାଉଅଛି । ତହିଁ ଉତ୍ତାରୁ ସେହି କଳଙ୍କ ଅପନୋଦନାର୍ଥ ଧ୍ୟାନଧାରଣାଦି ଆତ୍ମାରେ ଦୃଢ଼ରୂପେ ସ୍ଥାପନ କରି ଅବ୍ୟବହିତ ପରେ ସନ୍ନ୍ୟାସ ଅର୍ଥାତ୍ ଜ୍ଞାନବୈରାଗ୍ୟ ଯୋଗାବଲମ୍ବନପୂର୍ବକ ଆତ୍ମାରେ ଆତ୍ମଭାବେ ଅବସ୍ଥାନ କଲରୁ ଆତ୍ମଭାବସ୍ଥ ଅର୍ଥାତ୍ ଆତ୍ମସଂସ୍ଥ କେବଳୀଭାବ ସ୍ୱୟଂ ଉପଲବ୍ଧି କରିବେ । ଏହିଠାରେ ଆତ୍ମାନନ୍ଦ ଉପଭୋଗ କରି ଆତ୍ମଦେବ ଦେଖିବେ ଏହି ପ୍ରେମାମୃତ ବିଷୟରସ ସଙ୍ଗେ ମିଶି ବିଷମୟ ବିଷୟ-ସୁଖରେ ଆତ୍ମାକୁ ମୋହିତ ହେବାକୁ ହୋଇଥାଏ । ଏହି ଆତ୍ମ-ପ୍ରେମାନନ୍ଦର କୌଣସି ନଗଣ୍ୟ ଅଂଶ ସଙ୍ଗେ ବିଷୟ-ସୁଖର ଅଗଣିତ ଗୁଣ ବା ପରିମାଣ କଦାଚ ତୁଳନାରେ ବି ଉପମାରେ ଉଲ୍ଲେଖ କରା-ଯିବାର ଯୋଗ୍ୟ ନୁହେ । ଏ ଉତ୍ତାରୁ ବା ଏହି ଆତ୍ମତତ୍ତ୍ୱଜ୍ଞାନ ସିଦ୍ଧି ସଙ୍ଗେ ସଙ୍ଗେ ପରମାତ୍ମ ତତ୍ତ୍ୱର ଉପଲବ୍ଧି ସ୍ୱତଃ ସଂଘଟିତ ହୋଇଥାଏ । ଏହିରୂପେ ପ୍ରକୃତିତତ୍ତ୍ୱକୁ ତଦୀୟ କାର୍ଯ୍ୟ କାରଣ ସହିତ କରି ଚିନ୍ନ ଚିନ୍ନ ଇତ୍ୟାଦି ପ୍ରକାରେ ଆତ୍ମାରୁ ଅଲଗା କରି ରଖି ନେତି ନେତି ମହାବାକ୍ୟବଳରେ ଏହା ନୁହେ ତାହା ନୁହେ ବୋଲି ନିଶ୍ଚୟ କରି କରି ଆତ୍ମଦେବ ପ୍ରକୃତି ତତ୍ତ୍ୱରୁ ଆତ୍ମତତ୍ତ୍ୱକୁ ମୁକ୍ତ କରି ଆତ୍ମାରାମ ହୋଇ ବିରାଜ-ମାନ ହୁଅନ୍ତି । ହେଇଟି ଏଇ ନିତ୍ୟପ୍ରତ୍ୟକ୍ଷରୂପରେ ବିରାଜମାନ କରିଅଛନ୍ତି ତ ।

ଏଥିରୁ ନିଶ୍ଚୟ କରାଯିବ ଆତ୍ମଜ୍ଞାନ ଉପରେ ଏବଂ ଜୀବାତ୍ମା ଉପରେ । ପ୍ରକୃତି-ତତ୍ତ୍ୱକୁ କାର୍ଯ୍ୟକାରଣକ୍ରମେ ଦର୍ଶନ କରି କରି ଏହା ମୁଁ ନୁହେଁ, ତାହା ମୁଁ ନୁହେଁ, ଅର୍ଥାତ୍ ଭୌତିକ ସ୍ଥୂଳଦେହ-ସଂସାରଠାରୁ ଆରମ୍ଭ କରି ସୂକ୍ଷ୍ମାତ୍ ସୂକ୍ଷ୍ମତମା ପ୍ରକୃତି ପର୍ଯ୍ୟନ୍ତ ଅବଲୋକନ କରିବା ସଙ୍ଗେ ସଙ୍ଗେ ସମୁଦାୟ ପ୍ରାକୃତ ଦୃଶ୍ୟରୁ ଦ୍ରଷ୍ଟା କେବଳ ନିରନ୍ତରଣୟ ଶେଷସୀମାରେ ଅବଶିଷ୍ଟ ରହିଯିବେ । ସେହିଠାରେ ଆତ୍ମା ସୋଽହଂ ଜ୍ଞାନଦ୍ୱାରା ଆପଣାକୁ ଆପେ ପ୍ରେମରେ ଆଲିଙ୍ଗନ କରୁ କରୁ ପରମାତ୍ମତତ୍ତ୍ୱ ସ୍ୱୟଂ ସମୁପସ୍ଥିତ ଥିବାର ସେହିଠାରେ ଉପଲବ୍ଧି କରିବେ । ଏହା ଭ୍ରମପ୍ରମାଦ ବିକଲ୍ପାଦିଶୂନ୍ୟ ଅଭ୍ରାନ୍ତ ପରମ ସତ୍ୟ ଅଟେ ।

ଏହି ସଂସାର ମାନବୀୟ ଆତ୍ମା ତଥା ମନୁଷ୍ୟପଦବାଚ୍ୟ ଜୀବ ପକ୍ଷରେ ଖେଳଘର ନୁହେଁ ବା ମୋହପୂର୍ଣ୍ଣ ଭୋଗ୍ୟବସ୍ତୁବିଶେଷ ନୁହେଁ । ଏହି ଭବାରଣ୍ୟ ପ୍ରକୃତିର ପ୍ରଲୋଭନ ରୂପକ ପରମେଶ୍ୱରଙ୍କର ପରୀକ୍ଷାକେନ୍ଦ୍ର ସ୍ୱରୂପ । ଆତ୍ମତତ୍ତ୍ୱଜ୍ଞାନ ଉପଲବ୍ଧି କରିବା ମନୁଷ୍ୟର ଧର୍ମତଃ ଏବଂ କର୍ତ୍ତବ୍ୟତଃ ଧର୍ମ ଏବଂ କର୍ତ୍ତବ୍ୟ ବୋଲି ଅବଧାରିତ । ସେହି ହେତୁ ମନୁଷ୍ୟ ଅନ୍ତରର ଆବେଗାନୁସାରେ ଧର୍ମଦିଗରେ ଇଚ୍ଛା କରିଥାଏ । ଏ ଇଚ୍ଛା ମାନବୀୟ ପ୍ରକୃତିର ସ୍ୱାଭାବିକ ଧର୍ମ । ଏହି ଇଚ୍ଛାନୁସାରେ ମନୁଷ୍ୟ ଧର୍ମପନ୍ଥାନୁସରଣ କରେ । ବିଷୟଲାଳସା, ପୂର୍ବ ପୂର୍ବ ସଂସ୍କାର ଏବଂ ଅଭ୍ୟାସାନୁଯାୟୀ ସ୍ୱଭାବରେ ପରିଣତ ହୋଇ ଯାଇଥିବାରୁ ଏହିକ୍ଷଣରେ ସେହି ସ୍ୱଭାବ ମନୁଷ୍ୟଙ୍କୁ ଆୟତ୍ତ କରି ରଖି ତାହାକୁ ଅନାୟତ୍ତଭାବରେ ଭବାଟବୀରେ କର୍ମ-ଭୋଗାତ୍ମକ ପ୍ରବୃତ୍ତି ମାର୍ଗରେ ସର୍ବଦା ବୁଲାଉ-ଅଛି । ଏହି କାରଣରୁ ମନୁଷ୍ୟସମୁଦାୟମଧ୍ୟରୁ ଅଳ୍ପ କେତେକଙ୍କର ପ୍ରଗାଢ଼ ଭାବେ ଧର୍ମଆଡ଼କୁ ପ୍ରବୃତ୍ତି ହୁଏ । କେତେକ ବା ଦେଖିଶୁଣି ନ ବୁଝି ନ ସୁଝି ତାଙ୍କର ଅନୁକରଣ ବାଧ୍ୟରେ କରିଥାଆନ୍ତି । ଯେପରି ସେପରି ହେଉନା କାହିଁକି, ଏହି ସଂସାରାରଣ୍ୟ ମଧ୍ୟରେ ହରିହାଟ ବସିଅଛି । ଏହି ହାଟ ଦର୍ଶନ କରିବା ବଡ଼ ସୌଭାଗ୍ୟର ବିଷୟ ସନ୍ଦେହ ନାହିଁ । ଯେ ଯେପରି ବଡ଼ ସାନ, ଭଲ ମନ୍ଦ ପଦାର୍ଥ ସହିତ ହାଟକୁ ଆସୁ ପଛକେ, କାହାକୁ ଯେପରି କିଛି ଲାଭ ନ କରି ମୂଳ ବୁଡ଼ାଇ ଯିବାକୁ ନ ପଡ଼େ । ଖରିଦ ବିକ୍ରୀ ସୂତ୍ରରେ ହେଉ ବା ଦାନ ପ୍ରତିଗ୍ରହ ସୂତ୍ରେ ହେଉ, ଅଥବା ବିନିମୟ ସୂତ୍ରେ ହେଉ, ସମସ୍ତଙ୍କୁ ଏମନ୍ତ କି ବିନାସୂତ୍ରରେ ହାଟକୁ ଆସିବା ଶ୍ରେଣୀୟ ଲୋକପର୍ଯ୍ୟନ୍ତ ପ୍ରତ୍ୟେକଙ୍କୁ କିଛି ନା କିଛି ଲାଭ ସହିତ ଫେରିବା ଉଚିତ ।

ମନୁଷ୍ୟ ଜନ୍ମର ଏ ଲାଭ, ଯହିଁ ଗୋବିନ୍ଦେ କରେ ଭାବ ।
ଭାବଟି ନାବରୂପ ହୋଇ, ସଂସାର-ସାଗରେ ଭ୍ରମଇ ।
ଯାର ଯେମନ୍ତ ଭାବ ଦେଖି, ନାବକୁ ହରିଅନ୍ତି ସଳଖି ।
ଏ ନାବେ ଗୁରୁ କର୍ଣ୍ଣଧାର, ହରି ଅନୁକୂଳ ସମୀର ।
ଏମନ୍ତ ନାବ ଥାଉଁ କୂଳେ, ବୁଡ଼ି ନ ମରି ଭବଜଳେ ।

ଆରପାଖରେ ସନାତନ ଧର୍ମ ଏବଂ ତଦନ୍ତରିକ୍ତ ଅନ୍ୟାନ୍ୟ ଧର୍ମୋପାସନାଦି ସମ୍ବନ୍ଧରେ ଯେଉଁ ଗୋଡ଼ଆଗୋଡ଼ ଲୁଚକାଳି ଖେଳ ଲଗିଥିଲା, ତାହାକୁ ଏଠାରେ ଆଉ ଟିକିଏ ବସି ଦେଖିବାକୁ ହେଉ । ବୈଦିକ ସ୍ଥିରତା ବା ଦେହାବସ୍ଥାନ, ବାକ୍‌ମାଧୁର୍ଯ୍ୟ, ପ୍ରାଣର ସ୍ଥୈର୍ଯ୍ୟ ଏବଂ ହସ୍ତପ୍ରକ୍ଷାଳନ ବା ମାର୍ଜନାଦି ସମ୍ବନ୍ଧେ ଏବଂ ମାନସିକ ପ୍ରାର୍ଥନାଦି ସମ୍ବନ୍ଧେ, ଆଉ ପରମେଶ୍ବରଙ୍କ ନାମ ଭଜନାଦି ସମ୍ବନ୍ଧେ, ଅନ୍ୟ ସମ୍ପ୍ରଦାୟଭୁକ୍ତ ଉପାସକମାନଙ୍କର ଅନୁଷ୍ଠାନ ସଙ୍ଗେ ସନାତନ ବର୍ଣ୍ଣାଶ୍ରମଧର୍ମ ବିଧାନ ଲକ୍ଷଣାନୁଯାୟୀ ସେହି ସେହି ବୈଦିକ ସ୍ଥିରତାଦି ଅନୁଷ୍ଠାନମାନ ମେଳ କରାଯାଇଅଛି । ଶେଷକୁ ଉପାସ୍ୟ ଉପାସକ ସମ୍ବନ୍ଧ ନିରୂପଣଠାରୁ ସେହି ପ୍ରସ୍ତାବକୁ ସେହିଠାରେ ବିଶ୍ରାମ ଦିଆଯାଇ ସନାତନ ଧର୍ମାନୁମୋଦିତ ଉପାସ୍ୟ, ଉପାସକ ଓ ଉପାସନାଦିକୁ ବରଣ କରାଯାଇଥିଲା । ଏବେ ପୁଣି ସେହି ବିଭିନ୍ନ ସମ୍ପ୍ରଦାୟର ଉପାସ୍ୟ ଉପାସକ ସମ୍ବନ୍ଧୀୟ ପ୍ରସ୍ତାବକୁ ସେହି ବିଶ୍ରାମ ସ୍ଥାନରୁ ଉଠାଇ ବରଣ କରାଯାଉଅଛି ।

ଏହି ସଂସାରାରଣ୍ୟର ହରିହାଟ ମଧ୍ୟରେ ସମସ୍ତ ଶ୍ରେଣୀୟ ସମସ୍ତ, ଆଉ ପ୍ରତ୍ୟେକ ଉପାସକମାନଙ୍କୁ ଦଣ୍ଡାୟମାନ ହୋଇ ଦର୍ଶନ କରଣାନନ୍ତର ସାଷ୍ଟାଙ୍ଗ ପ୍ରଣାମ କରି ସେମାନଙ୍କ ଆଶୀର୍ବାଦ ନେଇ କର ଯୋଡ଼ି ପଚାରିବାକୁ ହେଉଅଛି—ଭାଇମାନେ ! ବାହ୍ୟ ଶୁଦ୍ଧ୍ୟାଦି ସମ୍ବନ୍ଧେ ଉପାସନା ସମୟରେ ଆପଣମାନଙ୍କର କାର୍ଯ୍ୟ ଯେପରି ପବିତ୍ରତାତ୍ମକ ତାହା ଦେଖାଯାଇଅଛି, ଆଉ ମଧ୍ୟ ତଦ୍ଦ୍ୱାରା କୃତାର୍ଥ ହେବାକୁ ହୋଇଅଛି । ମାନସିକ ପ୍ରାର୍ଥନା ଭଜନ ସ୍ମରଣାଦିରେ କାହା ମନକଥା କିପରି ଏ ହାଟ ମଧ୍ୟରେ ଜଣାପଡ଼ିବା ଯେପରି, ଅପାର ସାଗରର ଅତଳ ଗମ୍ଭୀର ଉଦରସ୍ଥ ମଣିରତ୍ନସମୂହ ଦୃଷ୍ଟିଦ୍ୱାରା ଜଳଗର୍ଭ ଭେଦକରି ଏକକାଳେ ଏକସ୍ଥାନରେ ଠିଆ ହୋଇ ଦେଖିପାରିବା ସେହିପରି ଦୁଃସାଧ୍ୟ ବ୍ୟାପାର ଅଟେ । ତେବେ ଉପାସ୍ୟ, ଉପାସକ ଏବଂ ଉପାସନାର ସ୍ୱରୂପ ଲକ୍ଷଣ ନିର୍ଣ୍ଣୟ କରିବାକୁ ଗଲେ ମୋଟ ଉପରେ ପ୍ରସଙ୍ଗାନୁରୋଧରେ ଦୁଇ ଏକ କଥା ଆଲୋଚିତ ହେବା କ୍ଷମାଯୋଗ୍ୟ ବୋଲି ବିବେଚନା କରାଯାଇପାରେ । ଏହି ଭବାରଣ୍ୟ ମଧ୍ୟସ୍ଥ ହରିହାଟ ମଧ୍ୟରେ ଧର୍ମ ସମ୍ବନ୍ଧରେ କାହାକୁ କିଛି ପଚାରିବାର ଅଧିକାର କାହାର ନାହିଁ । କାରଣ ଏଠାରେ ସମସ୍ତେ ଲାଭର ପ୍ରାର୍ଥୀ । ତେବେ ନିଜେ ନିଜେ ଆପଣା ମନରେ ପଚାରି ହେବା—ଉପାସନା କାଳରେ ମୁଁ ଉପାସନା କରୁଅଛି । ଏହି 'ମୁଁ' ଜ୍ଞାନ ଭିତରେ ଭିତରେ ଥାଏ ତ ? ତେବେ ତଦ୍ରୂପ ମୁଁ ଯେ ଏହି ଜଡ଼ପିଣ୍ଡାକାର ମାନବ ଦେହଯନ୍ତ୍ରକୁ ଲକ୍ଷ୍ୟ କରେ ଅର୍ଥାତ୍ ଏଇ ଦେହ ମୁଁ ଅମୁକ ବ୍ୟକ୍ତି ଉପାସନା କରୁଅଛି—ଉପାସକ ଆପଣାକୁ ଏହିପରି ନିଶ୍ଚୟ କରେଟିକି ? ଯଦି ଏହିପରି କରିବା ପ୍ରଶ୍ନର ଉତ୍ତର ହୁଏ, ତେବେ ବୁଝିବାକୁ ହେବ ମନ, ଇନ୍ଦ୍ରିୟ, ପ୍ରାଣ, ଦେହ, ସଂସାର ସମ୍ବନ୍ଧଦ୍ୱାରା ଯେପରି ବୈଷୟିକ କର୍ମ ଓ ବୈଷୟିକ ଚିନ୍ତା ସାଙ୍ଗ କରାଯାଇଥାଏ, ସେହିପରି ମନେନ୍ଦ୍ରିୟାଦି ଦ୍ୱାରା ମଧ୍ୟ ଉପାସନା ଅର୍ଥାତ୍ ପରମେଶ୍ୱର ଚିନ୍ତନ ଏବଂ

ତତ୍ସମ୍ବନ୍ଧୀୟ ଧର୍ମକର୍ମାଦି ସମାପନ କରାଯାଉଅଛି । ଭାବରେ କେବଳ ପାର୍ଥକ୍ୟ ଥିବା ଖୁବ୍ ସମ୍ଭବ । ବୈଷୟିକ ଚିନ୍ତାଦିର ଭାବ ପାର୍ଥିବ ସଂସାର ଆଡ଼େ, ଆଉ ଏହି ଉପାସନା କାଳୀନ ଭାବ ପରମେଶ୍ୱର ଦିଗରେ । ତେବେ ପରମେଶ୍ୱର କପରି ବୋଲି ନିଶ୍ଚୟ କରି କମାକାର ଭାବ ସେହିଆଡ଼େ ସମର୍ପଣ କରାଯାଏ ? ଆପେ ଆପେ ନିଜ ନିଜ ଜ୍ଞାନଦ୍ୱାରା ଏ କଥା ମୀମାଂସା କରୁଥାନ୍ତି । ଏଠାରେ ଏଣୁ ତେଣୁ କହି ଠକିଦେବାର ପ୍ରୟାସ ପାଇଲେ ତାହା ଆତ୍ମପ୍ରବଞ୍ଚନା ମଧ୍ୟରେ ପରିଗଣିତ ହେବ । ଅତଏବ ସତ୍ୟ ଉପରେ ନିର୍ଭର କରି କହିବା ଉଚିତ ।

ଯଦି କେହି କେହି ମନେ କରନ୍ତି ପରମେଶ୍ୱର ତ ଅଦୃଶ୍ୟ ଓ ଅଜ୍ଞାତ, ତାଙ୍କୁ କପରି କଣ ବୋଲି ଭାବପାରିବି ? ଏଠାରେ ବିଶ୍ୱାସଗତ ସଂସ୍କାରନୁରୂପ ଅଭ୍ୟାସ-ଦୃଢ଼ତା ବହୁ ପରିମାଣରେ ସାହାଯ୍ୟ କରିଥାଏ । କେହି କେହି ଗୁରୁଦେବ ମୂର୍ତ୍ତିକୁ, କେହି କେହି ସ୍ୱକୀୟ ଧର୍ମମତର ଉଦ୍ଭାବକ ବା ପ୍ରଚାରକଙ୍କର ମହାପୁରୁଷାକାର ରୂପକୁ, କେହି କେହି ବା ପ୍ରଚଳିତ ଉପାସ୍ୟ ଦେବଦେବୀ ମୂର୍ତ୍ତ୍ୟାଦିଙ୍କୁ, କେହି କେହି ବା ଚନ୍ଦନ-ସିନ୍ଦୂର-ଲଗା ବୃକ୍ଷ-ପ୍ରସ୍ତରାଦିଖଣ୍ଡକୁ ମଧ୍ୟ ଉପାସ୍ୟ ଜ୍ଞାନରେ ଧ୍ୟାନ କରି ପାରିଥାଆନ୍ତି । କେହି କେହି ବା ଅନ୍ୟ ଆଡ଼କୁ ଅନ୍ଧାରିଆ ଦେଖି କେବଳ ଭଗବତ ନାମୋଚ୍ଚାରଣକୁ ଉପାସ୍ୟ ବୋଲି ଠିକ୍ କରନ୍ତି । ଆଉ କେହି କେହି ବା ଶୂନ୍ୟ ଅଥଚ ଚକ୍ଷୁରୁଚିକର ରୂପବିଶେଷାଦି ଦ୍ୱାରା ବା ପୁଷ୍ପ, ପତ୍ର ବା ଅନ୍ୟାନ୍ୟ ସୁନ୍ଦର ଉପକରଣ ଦ୍ୱାରା ସୁସଜ୍ଜିତ, ସୁଶୋଭିତ ମନୋରମ ମନ୍ଦିର ଅଟ୍ଟାଳିକାଦି ମଧ୍ୟକୁ ଦର୍ଶନ କରି କିଛି କିଛି ନୈତିକବାକ୍ୟରଞ୍ଜିତ କଥା ବା ଗୀତାଦି ପାଠ କରି ଅଥବା ମଙ୍ଗଳ-କାମନା ବା ପ୍ରାର୍ଥନା କରି ଗେଲବସର ପଣିଆରେ ଟିକିଏ ଟିକିଏ ସେଠାରେ ରହି ଖୁସିରେ ବାହୁଡ଼ି ଆସନ୍ତି । ଏ ମତରେ ଆଜକାଲି ଯୁଗର ବଡ଼ ବଡ଼ ବା ଶ୍ରେଷ୍ଠ ଶ୍ରେଷ୍ଠ ହେଉ, ପାଠୁଆ ଶ୍ରେଣୀୟ ବ୍ୟକ୍ତିମାନେ ଅଥବା ତଦ୍ରୂପ ପାଠୁଆ ପାଖରେ ଥାଇ ପାଠୁଆମାନେ ପାଶ୍ଚାତ୍ୟ ସଭ୍ୟତାର ନିଦର୍ଶନକୁ ମାନ୍ୟ କରି କୌଣସି ପ୍ରକାରରେ ଉପାସନା ସମ୍ବନ୍ଧୀୟ କର୍ତ୍ତବ୍ୟ ପାଳନ କରନ୍ତି । କେହି କେହି ବା ବାଦ୍ୟନୃତ୍ୟଗୀତାଦିରେ ଉପାସନା ଶେଷ କରନ୍ତି । କେହି କେହି ଆଖି ବୁଜି ମଧ୍ୟ ଧ୍ୟାନ କରନ୍ତି, ହୃଦୟ ମଧ୍ୟରେ ଆକାଶର ପ୍ରତିବିମ୍ବ କି ଅନ୍ୟ କଅଣ ଦେଖି ପରମେଶ୍ୱର ବୋଲି ମନେ କରନ୍ତି, ତାହା ସେହି ଅନ୍ତର୍ଯ୍ୟାମୀ ପରମେଶ୍ୱର ଜାଣୁଥିବେ । ଯେ ହେଉ, ହରିହାଟର ଏ ସବୁ ବର୍ଣ୍ଣନା ବାହ୍ୟଦୃଶ୍ୟ ସମ୍ବନ୍ଧରେ ବା ବାହ୍ୟକ୍ରିୟା ସମ୍ବନ୍ଧରେ ଅଥବା ମନୋଗତ ଭାବ ସମ୍ବନ୍ଧରେ ହେଉ ବା ଯେ କୌଣସି ଭାବ ସମ୍ବନ୍ଧରେ ହେଉ, ଏହା ଠିକ୍‌ରୂପେ ପ୍ରକାଶ କରିବା ବଡ଼ ଦୁଃସାଧ୍ୟ ।

ମୋଟ ଉପରେ କହିବାକୁ ଗଲେ ଏହି ଉପାସ୍ୟ ଉପାସକ ସ୍ୱରୂପ ନିର୍ଣ୍ଣୟ ସେହି ହାଟ ଗୋଳମାଳିଆ ଦୃଶ୍ୟର ଅନ୍ତର୍ଗତ । ଆଉ ସନାତନ ଧର୍ମପନ୍ଥାର ଉପାସ୍ୟ ଉପାସକ, ଉପାସନା ପ୍ରଣାଳୀ ପ୍ରାଞ୍ଜଳ ଅଥଚ ଆତ୍ମଭାବାନୁମୋଦିତ ପରମ ସତ୍ୟ ଅଟେ ।

ବହୁଲୋକରେ ବହୁପ୍ରକାରର ଜ୍ଞାନ-ବୃତ୍ତି ନିର୍ଦ୍ଦିଷ୍ଟ ଥିବାରୁ ମତବାହୁଲ୍ୟ ଘଟିବା ସମ୍ଭବ । ତେବେ ଭଗବତ୍ ଲକ୍ଷ୍ୟ ସେହି ଏକ ଉଚ୍ଚଦିଗରେ ଏଥିରେ ସନ୍ଦେହ ନାହିଁ । କଥା ଏତିକି ଯେ ସନାତନ ଧର୍ମ ମାନବୀୟ ଆତ୍ମାକୁ ଏବଂ ତଦଧୀନ ବୁଦ୍ଧି-ବୃତ୍ତି, ମନୋବୃତ୍ତି, ପ୍ରାଣେନ୍ଦ୍ରିୟବୃତ୍ତି, ଏବଂ ଦୈହିକ ବୃତ୍ତ୍ୟାଦିକୁ ଯେପରିଭାବରେ ଶୃଙ୍ଖଳାବଦ୍ଧ କରି ସେହି ନିର୍ଦ୍ଦିଷ୍ଟ ନିୟମିତ ମାର୍ଗରେ ଆତ୍ମା ସମ୍ବନ୍ଧରେ ସାଂସାରିକ ଲୀଳା ଏବଂ ପାରମାର୍ଥିକ ସାଧନାଦି ସାଙ୍ଗ କରିଅଛି, ତାହା ପ୍ରକୃଷ୍ଟଭାବରେ ଉପାସିତବ୍ୟ ଏବଂ ସେବ୍ୟ ଅଟେ । ତେବେ ଗୋଟିଏ ଗୃହରେ ବହୁସଂଖ୍ୟକ ପରିବାର ମଧ୍ୟରେ କେତେକ ସ୍ୱାସ୍ଥ୍ୟବାନ୍, କେତେକ ରୁଗ୍ଣ, କେତେକ ବା ସବଳ, ଦୁର୍ବଳ, ସୁବୋଧ, ଦୁର୍ବୋଧ, କେହି ପୁଣି ବୃଦ୍ଧ, କେହି କେହି ବା ଦୁଗ୍ଧପୋଷ୍ୟ ଶିଶୁ, କେହି କେହି ବା ଅବଗୁଣ୍ଠନବତୀ, ଦାଣ୍ଡବୁଲୀ—ଏପରି ନାନାବସ୍ଥାର ନାନାପ୍ରକାରର ବ୍ୟକ୍ତି ରହିଥାନ୍ତି । ଯାହା ପ୍ରତି ଯେପରି ଲାଳନ-ପାଳନ-ଶାସନ-ନିୟମାଦିର ଆବଶ୍ୟକ, ଗୃହକର୍ତ୍ତା ଓ ଗୃହକର୍ତ୍ତ୍ରୀ ତାହା ପ୍ରତି ସେହିପରି କରିଥାଆନ୍ତି । ସେହି ଅନୁସାରେ ସମସ୍ତେ ଏକଭାବାପନ୍ନ ବା ଏକ ପ୍ରକାରର ନ ହେଲେ (ନ ହେବାର ତ କଥା) ସୁଦ୍ଧା ଅଭିଭାବକର ଇଚ୍ଛାର ଲକ୍ଷ୍ୟ ସମସ୍ତଙ୍କ ପ୍ରତି ସେହି ଉନ୍ନତ ଉଚ୍ଚ ଆଡ଼କୁ । ଏକାଧାରଣର ନିୟମ ସମସ୍ତଙ୍କର ଅବସ୍ଥାନୁଯାୟୀ ସମଉପାଦେୟ ହେବା ସମସ୍ତଙ୍କ ପକ୍ଷରେ ଦୁର୍ଘଟ । ଅତଏବ ଏହି ବିରାଟ ଭବାରଣ୍ୟରେ, ଏହି ସୁବିଶାଳ ହରିହାଟ ମଧ୍ୟରେ ଅସଂଖ୍ୟ ଅସଂଖ୍ୟ ପ୍ରକାରର ବୁଦ୍ଧି, ବିବେକ, ଜ୍ଞାନ ଓ କ୍ଷମତାଦିବିଶିଷ୍ଟ ମନୁଷ୍ୟ ମଧ୍ୟରେ ଯାହା ପ୍ରତି ଯେଉଁ ଗୋଟିକ ଉପାଦେୟ; ଆଉ ପରିଣାମରେ ସେହି ଶେଷ ଉଚ୍ଚ ଲକ୍ଷ୍ୟ ଆଡ଼ର ଉପଯୋଗୀ, ତାହା ପ୍ରତି ସେହିପରି ବିଶ୍ୱଗୃହର କର୍ତ୍ତା ଅନୁଗ୍ରହ କରିଅଛନ୍ତି ବୋଲି ଧରିନେବାକୁ ହେବ । ଏ ହେତୁରୁ କାହାର ଦୃଢ଼ ସଂସ୍କାର ଏବଂ ଅଭ୍ୟାସାନୁଯାୟୀ ଉପାସନା ଅନୁଷ୍ଠାନାଦିରୁ କାହାକୁ ବିଚଳିତ କରାଇବାର ଉଚିତ ନୁହେ । ସମସ୍ତଙ୍କ ପ୍ରତି ସେହି କର୍ତ୍ତା ମହାପୁରୁଷର ଦୃଷ୍ଟି ଯଥୋଚିତ ପରିମାଣରେ ରହିଅଛି । ଯେତେବେଳେ ନିତାନ୍ତ ପକ୍ଷରେ ଆଚ୍ଛାଦନପରି ଧର୍ମର ଗ୍ଲାନି ଏବଂ ଅଧର୍ମର ଅଭ୍ୟୁତ୍ଥାନ ହେବ, ସେତିକିବେଳକୁ 'ସମ୍ଭବାମି ଯୁଗେ ଯୁଗେ' ସାକ୍ଷୀ ।

ଏହି ସମସ୍ତ ସଂସାରର କୂଟସ୍ଥ ସାକ୍ଷୀ ସ୍ୱରୂପ ସର୍ବ ଧର୍ମମତର ଉପାସ୍ୟ ପ୍ରଭୁ ପରମାତ୍ମା ସେହି ନିତ୍ୟ ସନାତନ ଆଧ୍ୟାତ୍ମିକ ଆତ୍ମଧର୍ମ ପ୍ରତିଷ୍ଠାନ ନିମିତ୍ତ ସଂସାରକୁ ଆଶୀର୍ବାଦ ପଠାଇବାର ସୂଚକ ଦେଖାଗଲାଣି । ସେହି ଆଶୀର୍ବାଦାମୃତରସ ସଂସାରର ସବୁଠାରେ ସାଧୁ ମହାତ୍ମା ପୁରୁଷମାନଙ୍କ ହୃଦୟକନ୍ଦରରେ ପ୍ରବେଶ କରି ସାରିଲାଣି । ସେହି ରସର ବର୍ତ୍ତମାନ ଶୈଶବାବସ୍ଥା, ସୁତରାଂ ସେହି ଅବସ୍ଥାସୁଲଭ ସଂସାରର ମଙ୍ଗଳମୟ ସୂଚକର ବାଣୀ କୁଆଁ କୁଆଁ ଶବ୍ଦ କରି ଦିଗଦିଗକୁ ପ୍ରତିଧ୍ୱନିତ କରି ସାରିଲାଣି । କଂସାସୁର ରକ୍ଷା ପାଇବା ନିମିତ୍ତ ଇନ୍ଦ୍ରୁଡ଼ିଶାଳରେ ଶିଶୁଗଣଙ୍କୁ ହତ୍ୟା କରାଇବାପରି ଏବେ ଏହି କୁଆଁ କୁଆଁ ଶବ୍ଦ ବାହାରୁଥିବା ସ୍ଥାନମାନଙ୍କରେ ଦୁଃସହ

କଠୋର ନର୍ଯ୍ୟାତନାର ପୈଶାଚିକ ତାଣ୍ଡବ ନୃତ୍ୟ କଲାଣି । ମାତ୍ର କଂସାସୁରବର୍ଗ ପିଲମାଷ୍ଟର କେତେ କେତେ ଦିନରେ କଏ କଏ କପରି ନିପାତ ହେଲେ, ସେହି ଦିନ ଗଣି ଠିକ୍ କରି କହିଦେବାକୁ ଦ୍ୱାପର-ଯୁଗର ବାଲୁଆ ଭିନ୍ନ ଯଦି ମନୁଷ୍ୟ କେହି ଥାଆନ୍ତେ, ତେବେ ତାହା ଶ୍ରବଣ କରି ଏହି ପ୍ରପୀଡ଼ିତ ଶିଶୁହୋତ୍ତା ବସୁନ୍ଧରା ଟିକିଏ ହେଲେ ଆଶ୍ୱସ୍ତ ହୁଅନ୍ତା !!! ମାତ୍ର ଅଶ୍ୱତ୍ଥାମା ଓ କୃପାଚାର୍ଯ୍ୟ ପ୍ରଭୃତି ମହାପୁରୁଷମାନେ ବଞ୍ଚି ରହି ଅଛନ୍ତି ବୋଲି ମହାଭାରତରୁ ଜଣାପଡ଼େ ! ତେବେ ସେମାନେ ଆଗରୁ ଆସି କହୁ ଶୁଣାଇ ଦେବାର ଆଶା କରାଯାଇ ନ ପାରେ ; ଯେହେତୁ ତାଙ୍କର ମହାଭାରତରେ ଯୁଦ୍ଧ-ପିପାସା ସମ୍ପୂର୍ଣ୍ଣ ନିବୃତ୍ତ ହୋଇ ନ ପାରିଥିବାରୁ ସେମାନେ କଳି ମହାଭାରତକୁ ବାହାରିବେ ବୋଲି ଦିନମୁଣ୍ଡକୁ ଗୁହାଁ ବସି ଘଡ଼ି, ନିମେଷ, ଦଣ୍ଡ, କ୍ଷଣ ପର୍ଯ୍ୟନ୍ତ ଯୋଗାସନରେ ରହି ଗଣନା କରୁଅଛନ୍ତି ପରା !!! ଏହା ଯଦି ବ୍ୟଙ୍ଗୋକ୍ତିର ପରିଚାୟକ ହୁଏ, ତେବେ କ୍ଷମାପ୍ରାର୍ଥନା କରାଯାଉଅଛି ।

ଏହି ହରିହାଟ ଓ ଭବାଟଣୀ ବର୍ଣ୍ଣନାର ଉପସଂହାରରେ କୁହାଯାଉଅଛି ଯେ— ଭଗବାନ୍ ହରି ଏପରି ମାୟାବୀ ଏବଂ ରସକୌତୁକୀ ଯେ ଏକ ପରଂବ୍ରହ୍ମ ରୂପରେ ଏକମାତ୍ର ବ୍ରହ୍ମାନନ୍ଦମୟ ପ୍ରେମରସ ଉପଭୋଗ କରି ସନ୍ତୁଷ୍ଟ ରହିବାକୁ ସେ ଅନିଚ୍ଛୁକ । ସେହିହେତୁ ସେ ମହାପ୍ରଭୁ ନିଜ ଶକ୍ତି ବଳରେ ଦେବ-ମାନବ ଓ ନରବାନରାଦି ବହୁ ପ୍ରକାରର ଅସଂଖ୍ୟ ଅସଂଖ୍ୟ ଜୀବ ସୃଷ୍ଟି କରି ତହିଁରେ ଆତ୍ମାରାମ ମୂର୍ତ୍ତି ଧାରଣପୂର୍ବକ ବିଜେ କରିଅଛନ୍ତି । ଆତ୍ମ-ପ୍ରେମାମୃତରସର ଅନୁକଳ୍ପରେ ବିଷୟାମୃତ ରସ ନାନା-ପ୍ରକାରରେ ମଧ୍ୟ ସୃଷ୍ଟ ହୋଇଅଛି । ଏହି ବିଷୟାମୃତରସ ଏକରୁ ପ୍ରଥମରେ ପଞ୍ଚଧା ବିଭକ୍ତ ହୋଇଅଛି, ଅର୍ଥାତ୍ ସୁମଧୁର ଶବ୍ଦ, ମନୋହର ଦୃଶ୍ୟ ଇତ୍ୟାଦି ଇତ୍ୟାଦି ଶବ୍ଦ, ସ୍ପର୍ଶ, ସ୍ୱାଦୁ, ରୂପ ଓ ସୁଗନ୍ଧାଦିରୂପେ ପଞ୍ଚଜ୍ଞାନେନ୍ଦ୍ରିୟଦ୍ୱାରବାଟରେ ଅନୁଭୂତ ହେଉଅଛି । ମାନସିକ ନାନାପ୍ରକାର ଭାବମୟ ରସର ମଧ୍ୟ ସଂଖ୍ୟାବାହୁଲ୍ୟ ଦେଖାଯାଉଅଛି ।

ଏହି ପ୍ରତ୍ୟେକ ମନୋହର ଶବ୍ଦ ଏବଂ ରୂପାଦି ମଧ୍ୟ ବହୁ ବହୁ ପ୍ରକାର ମନୋହର ଶବ୍ଦ ଅର୍ଥାତ୍ ଶଙ୍ଖ, ବଂଶୀଧ୍ୱନି ପ୍ରଭୃତି ଆକାରରେ ଏବଂ ମନୋହର ରୂପ ଅର୍ଥାତ୍ ମନୁଷ୍ୟ, ପଶୁ , ପକ୍ଷୀ, ବୃକ୍ଷଲତାଦି ଫୁଲ ଫଳ ନାନାବିଧ ସୁଦୃଶ୍ୟ ପ୍ରକାରରେ ସଂସାର-ରେ ପରିବ୍ୟାପ୍ତ ହୋଇଅଛି । ଏହିପରି ବହୁ ପ୍ରକାରର ସୁଶ୍ରାବ୍ୟ ଧ୍ୱନି, ବହୁ ପ୍ରକାରର ସୁଦୃଶ୍ୟ ରୂପ ଏବଂ ବହୁ ବହୁ ପ୍ରକାରର ହୃଦୟଗତ ଭାବ ଇତ୍ୟାଦି ଇତ୍ୟାଦିର ବହୁଳତାରେ ସଂସାର ପୂର୍ଣ୍ଣ ହୋଇଅଛି । ଏହି ବହୁମୟ ରସର ବାହୁଲ୍ୟାନୁସାରେ ବହୁ ବହୁ ପ୍ରକାରର ଜୀବ ମଧ୍ୟ ସଂସାରକୁ ପୂର୍ଣ୍ଣ କରିଅଛନ୍ତି । ଏବଂବିଧ ବୈଚିତ୍ର୍ୟମୟ ବହୁଳତାର ସ୍ରଷ୍ଟା ଅଥଚ ଉପଦ୍ରଷ୍ଟା ସ୍ୱରୂପ ଯେଉଁ ରସିକ ରାଜାଧୀଶ୍ୱର ଭଗବାନ ହରି, ତାଙ୍କ ପକ୍ଷରେ ଧର୍ମ-ଭକ୍ତି-ରସାଦିର ଭାବବାହୁଲ୍ୟ ଯେ ବହୁତ ହେବାର କଥା, ତାହା କଦାଚ ନୁହେ । ଅତଏବ ବହୁ ବହୁ ପୁଷ୍ପରସାସ୍ୱାଦନକାଙ୍କ୍ଷୀ ଭ୍ରମର ପରି ପ୍ରଭୁ ପରମେଶ୍ୱର ବହୁ ବହୁ

ଅସଂଖ୍ୟ କୋଟି-ପ୍ରକାରର ଭାବମୟ ଅସଂଖ୍ୟ ଅସଂଖ୍ୟ ଜୀବାତ୍ମାର ହୃଦୟପଦ୍ମରସକୁ ଭାବଗ୍ରାହୀ ରୂପରେ ଗ୍ରହଣ କରିବା ତାଙ୍କର ଇଚ୍ଛା ଥିବାରୁ ଏ ସଂସାରରେ ସବୁକିଛି ବହୁମୟ ହୋଇଅଛି । ତଦନୁସାରେ ନାନାପ୍ରକାରର ଧର୍ମଭାବ, ଧର୍ମସାଧନ, ଧର୍ମଯାଜନ ଏବଂ ଧର୍ମୋପାସନାଦି "ନାନା" ଶବ୍ଦକୁ ଗାନ କରି ନୃତ୍ୟ କରୁଅଛି ।

ଏଥିରୁ ବୁଝାଯାଏ ନଟବର ଚୂଡ଼ାମଣି ପ୍ରଭୁ ପରମେଶ୍ୱର କପରି କେଉଁ ପ୍ରକାର ଭାବରେ, କେଉଁ ପ୍ରକାର ଧର୍ମ-ସାଧନାଦିରେ, କେଉଁ ରୂପରେ ପ୍ରୀତ ହୁଅନ୍ତି, ତାହା ମାନବୀୟ ଅନୁମାନର ଅଗୋଚର ଅଟେ । ଶଠ ଗୋପାଳଙ୍କୁ କୌଣସି ନିର୍ଦ୍ଦିଷ୍ଟ ନିୟମ-ସୂତ୍ରରେ ଆବଦ୍ଧ କରିବା ବଡ଼ ସହଜ ବ୍ୟାପାର ନୁହେ । ଏହି ସଂସାରରେ ପରାପର ଏବଂ ଅନ୍ୟୋନ୍ୟଚରିବାଦ ନାନାପ୍ରକାର ଉତ୍କୃଷ୍ଟାପକୃଷ୍ଟ ବିଷୟାଦିର ବିଶେଷତ୍ୱ ଉପରେ ନିର୍ଭର କରି ମନୁଷ୍ୟର ହେୟ ଉପାଦେୟ ଭାବର ବିଭାଗ ପରମାର୍ଥ ପକ୍ଷରେ କିଛି ନୁହେଁ; ଅତଏବ 'ଯେ ଅବା ହେଉ ଯେଉଁ ମତ, ତାହାକୁ ବୋଲିବ ପଣ୍ଡିତ । ଯା ମାୟା ଦେବେ ଅଗୋଚର, ନ ଜାଣେ ବିରଞ୍ଚି ଶଙ୍କର ।' ସେହି ସର୍ବାନ୍ତର୍ଯାମୀ, ସର୍ବମୟ, ସର୍ବାତ୍ମା, ସର୍ବଶକ୍ତିମାନ୍ ଓ ସର୍ବର ସର୍ବ ପରମେଶ୍ୱରଙ୍କୁ ଏହି ଭବାଟବୀମଧ୍ୟସ୍ଥ ଏହି ହରିହାଟରେ ଗୋଟିଏ ମାତ୍ର ସାଷ୍ଟାଙ୍ଗ ଭୂମିଷ୍ଠ ପ୍ରଣାମ ଥରେ ମାତ୍ର କରାଯାଇ କୃତାଞ୍ଜଳିପୂର୍ବକରେ ନିବେଦନ କରାଯାଉଅଛି ଯେ 'ପ୍ରଭୋ ! ଶୁଭାଶୀର୍ବାଦ କରନ୍ତୁ । ଏହି ଗୋଟିଏ ଥର ଭୂମିଷ୍ଠ ପ୍ରଣାମରେ ଆପଣଙ୍କର ସମୁଦାୟ ସର୍ବଭୁବନମଣ୍ଡଳ ଆଚ୍ଛାଦିତ ହୋଇଯାଉ ; ଆଉ ଏହି ଗୋଟିକ ପ୍ରଣାମ ଭୁବନମଣ୍ଡଳାଦିର ସ୍ଥାୟିତ୍ୱ ସଙ୍ଗେ ସଙ୍ଗେ ନିତ୍ୟସ୍ଥାୟୀ ହୋଇ ରହିଥାଉ ।'

ଓଁ ପରମ ବ୍ରହ୍ମଣେ ନମୋନମଃ ।

ହରିଃ ଓଁ ତତ୍ସତ୍ ।

## ୧୨୧ ପାଠ—ପରିବାରୀୟ ବ୍ୟବହାର ଓ ପରିବାରୀୟ ଜୀବନର ଆତ୍ମକଥା

ପ୍ରଭୁ ପରମେଶ୍ୱରସୃଷ୍ଟ ଏହି ଅଖଣ୍ଡ ମଣ୍ଡଳ ବ୍ରହ୍ମାଣ୍ଡ ଯେପରି ସ୍ୱର୍ଗୀୟ ଆଦର୍ଶରେ ପରିଦୃଶ୍ୟମାନ ହେଉଅଛି, ସେହିପରି ପବିତ୍ର ଆଦର୍ଶର ଅନୁକଳ୍ପରେ ପରିବାରୀୟ ସଂସ୍ଥାନଟି ମଧ୍ୟ ନିର୍ଦ୍ଦିଷ୍ଟ ହୋଇଅଛି । ପରିବାରୀୟ ପ୍ରାଣୀ ଗୋଟିକ ପକ୍ଷରେ ଦେଖିବାକୁ ହେବ ଯେ ସେ କେଉଁ ଅଜ୍ଞାତ, ଅଜ୍ଞାତ, ଅଦୃଶ୍ୟ ଓ ଦୁର୍ଲକ୍ଷ୍ୟ ରାଜ୍ୟରୁ ଆସି କେଉଁ ପିତୃଔରସରେ, କେଉଁ ମାତୃଗର୍ଭାସନରେ ଆତିଥ୍ୟାଶ୍ରମ ଗ୍ରହଣପୂର୍ବକ କାହାଦ୍ୱାରା କିପରି ନିୟମରେ ଗଠିତ ହେଲା, ଏବଂ କିପରି ନିୟମରେ ଭୂମିଷ୍ଠ ହୋଇ କୁଆଁ କୁଆଁ କୋଽହଂ କୋଽହଂ ଶବ୍ଦରେ ସୂତିକାଗୃହ ନିନାଦିତ କରି ଗୃହସୀମାନ୍ତର୍ଗତ ମାନବମଣ୍ଡଳକର୍ଣ୍ଣରେ ନବୀନ ସ୍ୱର୍ଗୀୟ ଝଙ୍କାରସାମ୍ଭୂତ ଢାଳିଦେଇ ସମସ୍ତଙ୍କୁ ଆନନ୍ଦ-

ଲହରୀରେ ଭସାଇ ପକାଇ ଜଠାଇ କର ଏକ ସ୍ୱର୍ଗୀୟ ଦେବତାଣ୍ଡବନୃତ୍ୟ ଅବସ୍ଥ କରାଇଦେଲା, ଏ ସମସ୍ତ ବ୍ୟାପାର ତାହାର ଅଗୋଚର ! କେଉଁ ପୃଥିବୀର କେଉଁ ପ୍ରଦେଶସ୍ଥ କେଉଁ ଗ୍ରାମୀୟ କେଉଁ ଗୃହରେ ସେ ପ୍ରଥମେ ବିଶ୍ୱଜନନୀ, ଦେଶମାତୃକାର ନିତ୍ୟ ପବିତ୍ର ଅଙ୍ଗ ସ୍ପର୍ଶ କଲା, ତାହା ମଧ୍ୟ ତାହା ପକ୍ଷରେ ଦୁର୍ଜ୍ଞେୟ । ସେ ପ୍ରଥମେ ଦେଖିଲା, କେତେଦିନର ମୁଦ୍ରିତ ନୟନଦ୍ୱୟ ଖୋଲିଦେଇ ହଠାତ୍ ଦେଖିବାକୁ ପାଇଲା ଯେ ତାହା ନିମିତ୍ତ ଆଗରୁ ଚନ୍ଦ୍ର-ସୂର୍ଯ୍ୟ-ଗ୍ରହ-ଉପଗ୍ରହ-ନକ୍ଷତ୍ରାଦି-ସୁଶୋଭିତ ନୀଳ ଗଗନମଣ୍ଡଳ; ନଦୀ-ସାଗର-ସରୋବର-ବନ-ଉପବନ-ପର୍ବତ-ପାହାଡ଼-ଦେଶ-ପ୍ରଦେଶ-ଗ୍ରାମ-ନଗର-ପାଟଣା ଓ ଗୃହାଦିଦ୍ୱାରା ସୁଶୋଭିତ ବିରାଟ ବିଶ୍ୱସଂସାର ଦଣ୍ଡାୟମାନ ରହିଅଛି; ଏବଂ ଆଜ ମଧ୍ୟ ଦେଖିଲା ଯେ ତାର ଜନ୍ମଗୃହରେ ପିତାମାତା, ପିତାମହ ପିତାମହୀ, ମାତାମହ ମାତାମହୀ, କକେଇ, ଦଦେଇ, ଖୁଡ଼ୀ, ଦେଠେଇ, ଭାଇ, ଭଉଣୀ, ପିଉସା ପିଉସୀ, ମାମୁଁ ମାଇଁ, ମଉସା ମାଉସୀ, ସାନଭାଉଜ, ବଡଭାଉଜ, ପୁତୁରା ଝିଆରୀ, ଇତ୍ୟାଦି ଆତ୍ମ-ସମ୍ବନ୍ଧ-ବର୍ଗ ଓ ଅନ୍ୟାନ୍ୟ ପ୍ରିୟବର୍ଗ ଉପସ୍ଥିତ ହୋଇ ସେହି ଗୃହସ୍ଥଳୀକୁ ପବିତ୍ର ରାସମଣ୍ଡପରେ ବା ଅପୂର୍ବ ଏକ ଦେବମଣ୍ଡଳାଳୟରେ ପରିଣତ କରିଅଛନ୍ତି । ଯେଉଁଠାରେ ସେହିକ୍ଷଣରେ ସେ ଭାବିବାକୁ ଲାଗିଲା, ଅଥବା ତା ପକ୍ଷରୁ ଓକିଲଆରନାମା ନେଇ ଆମ୍ଭମାନଙ୍କୁ ଭାବିବାକୁ ହେଲା ଯେ ଏ ସଂସାର ସମାବେଶ, ଏହି ଗୃହାଦିର ପ୍ରଦର୍ଶନୀ ଏବଂ ମନୁଷ୍ୟଗୋଷ୍ଠିର ସମ୍ବନ୍ଧନିରୂପଣ ଏତେ ଶୀଘ୍ର ଜାଣିବା ପାଇଁ ତାହାର ସକାଶେ କିଏ ଗଢ଼ି ଥୋଇ ଦେଇଥିଲା ! ଆଜ ଏହି ଗୃହ ପରିବାରସ୍ଥ ସ୍ଥାବରାସ୍ଥାବର ସମ୍ପତ୍ତି-ଆଦି କିପରି ବା ତାହା ନିମିତ୍ତ ଆଗରୁ ନିର୍ଦ୍ଦିଷ୍ଟ ଥାଇ ତାକୁ ଏଥିରେ ଏକ ଅଂଶୀଦାରରୂପେ ସ୍ୱତ୍ୱବାନ୍ ହେବାକୁ ହୋଇଗଲା ! ଅତଏବ ପରିବାରସ୍ଥ ଏହି ନବାଗତ ଶିଶୁର ଆତ୍ମା ଏହି ସବୁ ଅଯାଚିତ ଓ ଭାବନାତୀତ ଦାନକୁ ସର୍ବମୟକର୍ତ୍ତା ପରମେଶ୍ୱରଙ୍କର ଅମୃତମୟ ଶୁଭାଶୀର୍ବାଦ ଦତ୍ତ ସ୍ୱର୍ଗୀୟ ସମ୍ପଦ ବୋଲି ମନେକରି ସେହି ଅହେତୁକ ମହାକାରୁଣିକ ସର୍ବଶ୍ରେଷ୍ଠ ମହାଦାତାଙ୍କୁ ଅନ୍ତତଃ ଓ ଆତ୍ମତଃ ଦଣ୍ଡପ୍ରଣାମ କରୁଅଛି, ଏବଂ ପରିବାରସ୍ଥବର୍ଗଙ୍କୁ ମଧ୍ୟ ତହିଁ ପଛେ ପଛେ କୃତକୃତ୍ୟତାର ଚିହ୍ନ ସ୍ୱରୂପ ଶ୍ରଦ୍ଧାଭକ୍ତି ପ୍ରଭୃତି ସର୍ବପ୍ରକାର ସଦ୍ଭାବ ସହିତ ପ୍ରେମାଲିଙ୍ଗନ ଓ ପ୍ରଣାମ କରୁଅଛି । ଏହି ସଙ୍ଗେ ସଙ୍ଗେ ଆମ୍ଭମାନଙ୍କର ତଦ୍ରୂପ କରିବା ଧର୍ମତଃ କର୍ତ୍ତବ୍ୟ ଓ ବିଧେୟ ଅଟେ ।

ଏପରେ ପରିବାରବର୍ଗଙ୍କର ନବଜାତ ଶିଶୁପ୍ରତି ପରମେଶ୍ୱର ଦତ୍ତ ମାୟା-ମମତାଦିର ଦୃଢ଼ ଆଦେଶ ଓ ଦୃଢ଼ ବନ୍ଧନ ସହକାରେ ସବୁପ୍ରକାର ସତ୍ ଚେଷ୍ଟାଦି ଲାଳନପାଳନ ନିମିତ୍ତ ନିଯୋଜିତ ହୋଇଗଲା । ଏହା ଦେଖି ଶିଶୁ ଅନେକ କିଛି ଜ୍ଞାନ ଶିକ୍ଷା ଲାଭ କରିଗଲା, ଆଜ ସ୍ଥିର ପ୍ରତିଜ୍ଞା କରିବାକୁ ବାଧ୍ୟ ହୋଇ କହିଲା, "ମୁଁ ଏ ପରିବାରଠାରେ ଭକ୍ତିଶ୍ରଦ୍ଧାଦି ସହିତ ଚିରଋଣୀ ଓ ଚିରକୃତଜ୍ଞ, ଏବଂ ଆଜ୍ଞାବହ ଦାସାନୁଦାସଠାରୁ ବଳି ଅଧିକ ପରିମାଣରେ ଆତ୍ମନିଯୋଜିତ କରି ରହିଲି; ଆଜ

ସର୍ବଦା ମୋହର ଧର୍ମଶାସ୍ତ୍ରସମ୍ମତ କର୍ତ୍ତବ୍ୟ ପାଳନ କରିବାକୁ ଆତ୍ମସମର୍ପଣ କଲି । ଭଗବାନ୍ ହରି ଆଶୀର୍ବାଦ କରୁଥାଆନ୍ତୁ ମୁଁ ଯେପରି ମୋହର କର୍ତ୍ତବ୍ୟପଥରୁ ତିଳେମାତ୍ର କ୍ଷଣକପାଇଁ ସୁଦ୍ଧା ବିଚଳିତ ନ ହୁଏ । ଆଉ ଏଥିପ୍ରତି ପରିବାରବର୍ଗ ମଧ୍ୟ ମୋହର ସହାୟତା କରନ୍ତୁ । ଏହିସକାଶେ ମୁଁ ପରମେଶ୍ୱରଙ୍କୁ ଭୂମିଷ୍ଠ ଦଣ୍ଡବତ୍ କରୁଅଛି, ଆଉ ପରିବାରବର୍ଗଙ୍କୁ ମଧ୍ୟ ନମସ୍କାର ଦେଉଅଛି । ମୁଁ ଶିକ୍ଷା ପାଇଲି ଯେ ପରିବାରବର୍ଗ ମଧ୍ୟରେ ଯେ କେବଳ ଆପଣାକୁ ଅଧିକ କରି ଗୃହେଁ, ଆଉ ପରିବାରବର୍ଗ ମଧ୍ୟରେ ମନୁଷ୍ୟଙ୍କୁ ଭିନ୍ନ ଭିନ୍ନ ଦେହସ୍ଥ ଏକଇ ଆତ୍ମା କରି ନ ଦେଖି ସମବେଦନା ଓ ସମସହାନୁଭୂତି ନ ଦେଖାଇ ଆତ୍ମମ୍ଭରିତା ପାପକୂପପତିତ ମହାପାପୀ ରୂପରେ ଗୁଣ୍ଡୁ ଗୁଣ୍ଡୁ ସୁଣ୍ଡୁ ସୁଣ୍ଡୁ ହେଉଥାଏ, ସେ ପାପାତ୍ମା ବା ମୂଢ଼ ଅଟେ । ପରିବାରବର୍ଗଙ୍କୁ ଯେ ଏକାତ୍ମା କରି ଦେଖେ, ସେ ପୁଣ୍ୟାତ୍ମା । ଗ୍ରାମ୍ୟସମୂହ-ପ୍ରତିବାସୀବର୍ଗଙ୍କୁ ଯେ ଆପଣାର ଏକ ପରିବାର ରୂପରେ ଦେଖେ, ସେ ମୁକ୍ତାତ୍ମା । ଦେଶବାସୀମାନଙ୍କୁ ଏକ ପରିବାର ସମାନ ଦର୍ଶନ କଲେ ସେ ମହାତ୍ମା, ଆଉ ସମସ୍ତ ମାନବଜାତିକୁ ଯେ ଏକ ଅବିଭକ୍ତ କୋଠ ପରିବାରଭୁକ୍ତ ବୋଲି ଦେଖି ଅନ୍ତତଃ ପ୍ରେମାଲିଙ୍ଗନ ଓ ଭକ୍ତି କରୁଥାଏ, ଏବଂ ସର୍ବସାଧାରଣ ମଙ୍ଗଳବିଧାନରେ ବ୍ରତୀ ହୁଏ, ସେ ପରମାତ୍ମା ଓ ସାକ୍ଷାତ୍ ପରମେଶ୍ୱରବିତାର ଅଟେ । ଏହି ଏହି ପୁଣ୍ୟାତ୍ମା, ମୁକ୍ତାତ୍ମା, ମହାତ୍ମା ଏବଂ ପରମାତ୍ମାଙ୍କ ଶ୍ରୀଚରଣତଳରେ ସର୍ବାଙ୍ଗ ଦଣ୍ଡବତ ପ୍ରଣାମ କରିଶାନନ୍ତର ସେହି ପବିତ୍ର ପଦଧୂଳି ମସ୍ତକରେ ଲଗାଇ ଦେହ-ମନ-ଆତ୍ମାକୁ କୃତାର୍ଥ କରି ଏବେ ପରିବାରୀୟ ବ୍ୟବହାର ସମ୍ପର୍କୀୟ କର୍ତ୍ତବ୍ୟପାଳନ ଆଡ଼କୁ ଅଗ୍ରସର ହେବାକୁ ହେଉ ।

## ପରିବାରୀୟ ଦର୍ଶନ

ପରିବାରୀୟ ଜୀବନର ଆତ୍ମକଥା ସ୍ମରଣ ରଖି ପରିବାର ପଦାର୍ଥଟି କଅଣ ଟିକିଏ ଆଲୋଚିତ ହେଉ । ମନେ କରାଯାଉ, ଗୋଟିଏ 'ଘର' ବୋଲି କହିଲେ ଯୋଡ଼ିଏ ଅକ୍ଷର ବ୍ୟପୃତ ହେଲା, ଆଉ ମଧ୍ୟ ଗୋଟିଏ ପଦାର୍ଥ ଘର ନାମରେ କଥିତ ହେଲା, ମାତ୍ର କେତେଆଡ଼ୁ କେତେ କେତେ କାଠ, କେତେ କେତେ ବାଉଁଶ, ପଥର, ଇଟା, ମାଟି, ଚୂନ, ବାଲିଗୋଡ଼, ଲୁହା, ଦଉଡ଼ ପ୍ରଭୃତି ବିଭିନ୍ନ ସାମଗ୍ରୀର ଏକତ୍ରାବସ୍ଥାନ, ଏବଂ ଯଥାସ୍ଥାନସଂସ୍ଥ ନିବାରି ସେହି ଗୃହଟି ସୁରକ୍ଷିତ ଓ ସୃଷ୍ଟ ହେଲା, ଅବଧାରଣା କରିବାକୁ ହେବ । ଆଉ ଯେପରି ଗୋଟିଏ ବାଟ-ବରଛଛମୂଳରେ ନାନାଦେଶାଗତ ପଥିକ ଯାଡ଼ଏ ସକାଶେ ଏକତ୍ର ହୋଇ ବିଶ୍ରାମ ସମାପନ-କରିଣାନନ୍ତର ଯେ ଯାହାର ବାଟ ଧରି ଭିନ୍ନ ଭିନ୍ନ ଆଡ଼େ ଗତି କରନ୍ତି, ସେହିପରି ପରିବାରଟିର ପ୍ରତ୍ୟେକ ଲୋକ କିଏ କେଉଁ ଜନ୍ମରେ କେଉଁ କେଉଁଠାରେ କିଣ ହୋଇଥିଲେ, ଏବେ ସେହି ସମସ୍ତ ଭିନ୍ନ ଭିନ୍ନ ଜୀବମାନେ ଦୈବଘଟନକ୍ରମେ ଏକତ୍ର ହୋଇ ରକ୍ତ-ସାର୍ଥ୍ୟ ସମ୍ବନ୍ଧ ଆଶ୍ରୟ କରି

ଗୋଟିଏ ପରିବାରର ଲୋକ ବୋଲାଇଅଛନ୍ତି । ସଂସାରସ୍ଥ କ୍ଷଣଭଙ୍ଗୁର ବିଶ୍ରାମଲୀଳା ଶେଷ କରିସାରିଲାରୁ ସେ ଯାହାର କର୍ମସୂତ୍ରପଥରେ ଦେହରୂପ ଓ ଗେହରୂପକ ବିଶ୍ରାମବାଟ-ବରଗଛମୂଳ ତ୍ୟାଗ କରି କିଏ କେଉଁ ଅଲକ୍ଷିତ ଅଜ୍ଞାତ-ଭୁବନକୁ ଗମନ କରିବେ, ତାହା କାହାକୁ ଜଣାନାହିଁ । ତେବେ ଏହି ସମ୍ମିଳନ ବା ପରିବାର ନାମଧେୟ ଜନମଣ୍ଡଳ କି ଅନୁପମ-ସୌନ୍ଦର୍ଯ୍ୟପୂର୍ଣ୍ଣ ସୌଭାଗ୍ୟ-ଦୃଶ୍ୟ ସହିତ ବିଧି କର୍ତ୍ତୃକ ସ୍ୱକର୍ମ-ସୂତ୍ରରେ ରଚିତ ହୋଇଅଛି, ଏହା ଦେଖି ଭାବିବାକୁ ଗଲେ ଭକ୍ତି ପ୍ରେମରେ ମୁଗ୍ଧ ହେବାକୁ ହୁଏ । କେବଳ ବୋହୂ-ମାନଗୁଡ଼ିକ ପରଘରର କନ୍ୟା ହେଲେ ସୁଦ୍ଧା ସଂସାରବୃଦ୍ଧି ନିମିତ୍ତ ଏହି ପରିବାର ମଧ୍ୟରେ ବହୁ ଆଦରର ସହିତ ସଂଯୁକ୍ତ ହୋଇ ଏକପରିବାରଭୁକ୍ତ ହୁଅନ୍ତି । ଆତ୍ମା ଯେପରି ମାୟାଶକ୍ତିର ସହଯୋଗରୁ ବହୁମୟ ହୋଇ ସଂସାର ବିସ୍ତାର କରିଅଛି, ଅଥଚ ଏହି ମାୟିକ ତନ୍ତ୍ର-ସଂସାରରେ ଜୀବାତ୍ମା ପକ୍ଷରେ ନାନାବିଧ ଅନର୍ଥ ଘଟାଉଅଛି, ସେହିପରି ଏହି ପରର ଦୁହିତାଗୁଡ଼ିକ ଘରର ବୋହୂ-ମାନ ନାମ ଧାରଣ କରି ଗୃହଲକ୍ଷ୍ମୀରେ ପରିଣତ ହୁଅନ୍ତି, ଅଥଚ ସ୍ଥାନବିଶେଷରେ ଏହି ମାୟାଦେବୀଙ୍କ ପ୍ରତିନିଧିମାନେ ପରିବାରସ୍ଥ ହାଣ୍ଡିକୁ ଭାଙ୍ଗି ଖରାପ କରିଦେବାକୁ ଚେଷ୍ଟା କରିବାର ମଧ୍ୟ ଦେଖାଯାଇଥାଏ । ଆତ୍ମା ଆତ୍ମତତ୍ତ୍ୱାନଭିଜ୍ଞ ଥିଲେ ଯେପରି ମାୟାବିକାରରେ ଦୁଃଖଭୋଗୀ ହୁଅନ୍ତି, ସେହିପରି ପରିବାରସ୍ଥ ଜୀବନର ଆତ୍ମକଥା ଏବଂ ପରିବାରସ୍ଥ ତତ୍ତ୍ୱ ଓ ଗୃହ ସଂସାର ସମ୍ବନ୍ଧୀୟ ଧର୍ମ କର୍ମ କର୍ତ୍ତବ୍ୟାଦିର ବିଧିବ୍ୟବସ୍ଥାସମୂହସମ୍ବନ୍ଧୀୟ ଜ୍ଞାନ ସ୍ତ୍ରୀଜାତି ବା ପୁରୁଷପୁଙ୍ଗବ ବିଶେଷ ଶିକ୍ଷାଦୀକ୍ଷା ଓ ସତ୍-ଆଦର୍ଶାଦି ଅଭାବରୁ ଜାଣି ପାରନ୍ତି ନାହିଁ । ସେହି ହେତୁରୁ ପାରିବାରିକ ଧର୍ମ ଓ ଶାନ୍ତିମାନର ବ୍ୟତିକ୍ରମ ଘଟିବାର ଦେଖାଯାଏ । ଏ ହେତୁରୁ ମାତୃଜାତିର ଶିକ୍ଷା ଏବଂ ପୁରୁଷଜାତିର ଶିକ୍ଷା ଧର୍ମତଃ ମାନବଜାତି ପକ୍ଷରେ କର୍ତ୍ତବ୍ୟ । ମୂର୍ଖେ ଦୋଷାହି କେବଳଂ । ଅତଏବ ଇତ୍ୟାଦି ଇତ୍ୟାଦି ···।

ଖଣ୍ଡି ଖଣ୍ଡି ଟିକି ଟିକି ତୃଣ ଗୁଡ଼ିଏ ଏକତ୍ର ହୋଇ ଦଉଡ଼ି ହେଲେ ତହିଁରେ ମତ୍ତ ହସ୍ତୀ ବନ୍ଧା ହୋଇଥାଏ, ଅତଏବ ପାରିବାରିକ ଏକତା ଏହିରୂପେ ସଂସାର ମଧ୍ୟରେ ପରିବାର ସମ୍ବନ୍ଧୀୟ ଦୁଃସାଧ୍ୟ ଗୁରୁତର କର୍ମମାନ ସାଧନ କରିବାକୁ ସକ୍ଷମ ହୁଏ । ଏହା ସର୍ବତ୍ର ସହଜରେ ଉପଲବ୍ଧି କରାଯାଉଅଛି । ପରିବାରସ୍ଥ ଏକତା ସୁରକ୍ଷା କରି ଏବେ ପାରିବାରିକ କର୍ତ୍ତବ୍ୟାବଧାରଣ କରାଯାଉ ।

## ପାରିବାରିକ କର୍ତ୍ତବ୍ୟ

ନାନା ଅଙ୍ଗପ୍ରତ୍ୟଙ୍ଗାଦି ମିଶି ଯେପରି ଗୋଟିଏ ଦେହ ବୋଲାଯାଏ, ଆଉ ଗୋଟିଏ ମାତ୍ର ଆତ୍ମାପୁରୁଷ ସେହି ସମସ୍ତ ଅଙ୍ଗପ୍ରତ୍ୟଙ୍ଗାଦିକୁ ସମଭାବେ ରକ୍ଷା ଏବଂ ପାଳନ କରି ସମୁଦାୟ ଅବୟବବିଶିଷ୍ଟ ଦେହର ସୁରକ୍ଷା ସମ୍ପାଦନ କରୁଅଛି, ଆତ୍ମାର କୌଣସି

ଅଙ୍ଗକୁ ଅନ୍ୟ କୌଣସି ଅଙ୍ଗ ଅପେକ୍ଷା ଅଧିକ ଯତ୍ନ କରି ଅଙ୍ଗପ୍ରତ୍ୟଙ୍ଗାଦିଠାରେ ପକ୍ଷପାତ ଦୋଷ ସାଧନ କରିବା ଦେଖାଯାଉନାହିଁ, ସେହିପରି ଏକ ପରିବାରସ୍ଥ ପ୍ରାଣୀମାନେ ଏକ ଅଭେଦ ଆତ୍ମା ରୂପରେ ଆପଣା ଆପଣା ଆତ୍ମାକୁ ଦର୍ଶନ କରି ସେହି ଐକ୍ୟାତ୍ମ୍ୟପୂରୁଷର ପରିବାରିସ୍ଥ ସେହି ସମୁଦାୟ ଦେହଗୁଡ଼ିକୁ ବିଭିନ୍ନ ଅଙ୍ଗାଦି-ବିଶିଷ୍ଟ ଏକ ଦେହ ବୋଲି ଜ୍ଞାନ କରିବା ଉଚିତ । ଏହିରୂପେ ଏକ ପରିବାରସ୍ଥ ସମସ୍ତଙ୍କର ଦେହକୁ ଏକ ଦେହରୂପେ ଏବଂ ସମସ୍ତଙ୍କର ଆତ୍ମାକୁ ଏକ ଆତ୍ମାରୂପେ ଜ୍ଞାନ କରିବା ପ୍ରତ୍ୟେକଙ୍କ ପକ୍ଷରେ ବିଧେୟ ଅଟେ । ଯାହା ପକ୍ଷରେ ଯେପରି ଖାଇବା, ପିନ୍ଧିବା, ଚଳିବା, କାର୍ଯ୍ୟ କରିବା ଇତ୍ୟାଦି ଇତ୍ୟାଦି ସୁବିଧାଜନକ ଏବଂ ହିତକର ବୋଲି ବିବେଚିତ ହେବ, ତାହା ପ୍ରତି ସେହିପରି କରିବାକୁ ସମସ୍ତଙ୍କର ସମାନ ଅଥଚ ଅପକ୍ଷପାତ ଚକ୍ଷୁ ରହିବା ବିହିତ । ପ୍ରତ୍ୟେକ କାର୍ଯ୍ୟରେ ଏବଂ ସବୁ ବିଷୟରେ ସୁଶୃଙ୍ଖଳ-ରୂପେ କାର୍ଯ୍ୟ ସମାଧା ହେବା ପକ୍ଷରେ ମୁରବି ବା ଅଭିଭାବକ ଅଥବା ନେତା ଗୋଟିଏ ଦରକାର । ତଦନୁସାରେ ପରିବାର ମଧ୍ୟରେ ଯେ ଅଧିକ ଜ୍ଞାନୀ, ବୟୋଜ୍ୟେଷ୍ଠ ବା ଅଧିକ କ୍ଷମତାଶାଳୀ ତାହାଙ୍କୁ ଅଭିଭାବକରୂପେ ନିଶ୍ଚୟ କରି ସେହି ପୁଣ୍ୟାତ୍ମାଙ୍କ ନିର୍ଦ୍ଦିଷ୍ଟ ନିୟମ, ବ୍ୟବସ୍ଥା ଓ ବିଚାରାନୁସାରେ ସମସ୍ତେ ଯେ କୌଣସି ବିଚାରଯୋଗ୍ୟ ବିଷୟର ସିଦ୍ଧାନ୍ତରେ ଉପନୀତ ହେବେ, ଆଉ ତଦନୁସାରେ ଯେ ଯାହାର କର୍ତ୍ତବ୍ୟ ସମ୍ପାଦନ କରିବେ । ଏଥିରେ ପରିବାରଟିର ସବୁ ପ୍ରକାରରେ ଶାନ୍ତି-ସୁଖ ରକ୍ଷା ହେବ ସନ୍ଦେହ ନାହିଁ ।

ପରିବାର ମଧ୍ୟରେ କେହି ଏପରି କୌଣସି କାର୍ଯ୍ୟ କରିବ ନାହିଁ, ଯାହାକି ପରିବାର ମଧ୍ୟରେ ପ୍ରକାଶ କଲେ ଦୂଷଣୀୟ ବୋଲି ବିବେଚିତ ହେବ, ଅଥବା କାହାର କୌଣସି କାର୍ଯ୍ୟ ସମସ୍ତ ପରିବାରଠାରୁ ଗୋପନ ରହିବ ନାହିଁ । ପ୍ରତ୍ୟେକେ ପରିବାର-କର୍ତ୍ତାଙ୍କୁ ଭକ୍ତି କରିବେ । ଆଉ ତାଙ୍କ ସତ୍‌ପରାମର୍ଶ ବା ଆଦେଶ ପାଳନ କରିବେ, ଅଥଚ କର୍ତ୍ତା ମହାଶୟ ସମସ୍ତଙ୍କୁ ସମାନ ଜ୍ଞାନରେ ଓ ସମାନ ଚକ୍ଷୁରେ ସମଭାବେ ଦର୍ଶନ କରି ସମସ୍ତଙ୍କ ପ୍ରତି ସମବେଦନା, ସମସହାନୁଭୂତି, ସମସ୍ନେହ ଏବଂ ସମାନ ଦୟା ପ୍ରଦର୍ଶନ କରିବେ । କର୍ତ୍ତା ମହାଶୟ ସ୍ୱୟଂ ବିଳାସୀ ବା ଅନିୟମିତ ଅଥବା ଅପ-ବ୍ୟବହାରୀ କି ଆଡ଼ମ୍ବରପ୍ରିୟ ହେବେ ନାହିଁ; ଆଉ ମଧ୍ୟ ଉପରୋକ୍ତ ପ୍ରକାରେ କାହାକୁ ହେବାକୁ ଦେବେ ନାହିଁ । ଯାହା ପ୍ରତି ଯାହା ଆବଶ୍ୟକ, ତାହା ପ୍ରତି ସେହିପରି କରାଯିବା ବିଷୟରେ ତ୍ରୁଟି ରହିବ ନାହିଁ । ଶିଶୁଗୁଡ଼ିକ ସମଭାବେ ଯଥାନିୟମରେ ଲାଳିତ ପାଳିତ ହେବେ, ଏବଂ ସମସ୍ତଙ୍କ ଦ୍ୱାରା ଯଥାଯୋଗ୍ୟ ଆଦର-ସ୍ନେହ-ଶୁଶ୍ରୂଷାଦି ପ୍ରାପ୍ତ ହେବେ । ପଠନୋପଯୋଗୀ ବାଳକମାନେ କିମ୍ବା ବାଳିକାମାନେ ଯଥାରୀତି ଶିକ୍ଷାଦି ପ୍ରାପ୍ତ ହେବାର ବିଧାନ କରି ଦିଆଯିବାରେ କାଳବିଳମ୍ବ ବା ତ୍ରୁଟି କରାଯିବ ନାହିଁ ।

ଧର୍ମ, ନୀତି, ସଚ୍ଚରିତ୍ରତା ଓ ସଦ୍‌ବ୍ୟବହାରାଦି ଶିକ୍ଷା ଦୀକ୍ଷାଦିର ପ୍ରଧାନ ଲକ୍ଷ୍ୟ ହେବ; ଆଉ ଅଙ୍କଷ୍ଟିଆ କରି ଗୁଡ଼ାଏ ପଥର ଗେଙ୍ଗୁଟି ଗ୍ଳେବାଇଲା ପରି ଶିକ୍ଷା ଦେଇ

ବାଳକମାନଙ୍କୁ ଅନିୟମିତ ଓ ଅତିରିକ୍ତ ପରିଶ୍ରମ କରାଇ ସେମାନଙ୍କର କୋମଳ ଦେହ-ପ୍ରାଣ-ହୃଦୟାଦିକୁ ଅସ୍ୱାସ୍ଥ୍ୟର କ୍ରୀଡ଼ାମନ୍ଦିର ବନାଇବାକୁ ହେବନାହିଁ; ଶିକ୍ଷାରୁ ଧର୍ମ ଏବଂ ନୀତି ଅଲଗା କରି ରଖାଗଲେ ବାଳକମାନେ ଆଜକାଲିର ଦୁର୍ଭାଗ୍ୟ ଜନିର ବାଳକମାନଙ୍କ ପରି ନିକଟ ଭବିଷ୍ୟତରେ ମନୁଷ୍ୟତା ଭୁଲିଯାଇ ଗର୍ବମୋହାଡ଼ମ୍ବର ଓ ସ୍ୱେଚ୍ଛାଚାରିତାଦି ଦୁଷ୍ପ୍ରବୃତ୍ତି ଅର୍ଜନ କରି ଗୋଟିଏ ଗୋଟିଏ ଅପମାନବାକାର ଧାରଣ କରି ପକାଇବେ । ସାଧାରଣ ସରଳ ଶିଷ୍ଟ ମିତାଚାରୀମାନଙ୍କୁ ଅବହେଳା ଓ ଘୃଣା କରିବେ, ପରନ୍ତୁ ମାତାଦେବୀଙ୍କୁ ଦଶମାସିଆ ଗର୍ଭଧାରିଣୀ ଭଡ଼ାଟିଆ ଜନ୍ତୁବିଶେଷ ବୋଲି ଜଡ଼ବାଦ ଜ୍ଞାନଦୃଷ୍ଟିରେ ଧାଈ ପରି ବ୍ୟବହାର କରିବାକୁ ଶିଖିବେ; ଆଉ ପିତୃଦେବ ଓ କୁଳଗୁରୁ ପ୍ରଭୃତି ମାନନୀୟବର୍ଗଙ୍କୁ ଗୁଡ଼ବକ୍ କରି ଠଉରାଇବେ । ଅଧିକନ୍ତୁ ସେହି-ମାନଙ୍କୁ ମାନ୍ୟମହତ ଭୟ କରିବାକୁ ଶିଖିବେ, ଯେଉଁମାନଙ୍କ କୃପାରେ ଧାନକୁଟୀର ପୁଅ ରାଜପୁତ୍ର ସଙ୍ଗେ ଦ୍ୱିତଳ ହର୍ମ୍ୟ ଉପରେ ଗୋଡ଼ ଲମ୍ବାଇ ବସିବାକୁ ବୃଥା ଦେଖାଣିଆ ସୁଯୋଗ ପାଇ ପାରିଅଛି । ହାୟ ଏ ଦୁର୍ଦ୍ଦିନ ।

ପରିବାରସ୍ଥ ଯୁବକମାନେ କୃତବିଦ୍ୟ ହୋଇ ଧନୋପାର୍ଜନ କରିବା ସଙ୍ଗେ ସଙ୍ଗେ ଉତ୍ତରୋତ୍ତର ବିଦ୍ୟା-ଜ୍ଞାନ-ଧର୍ମାଦିର ବୃଦ୍ଧି କରିବାରେ ତ୍ରୁଟି କରିବେ ନାହିଁ । ଶିଶୁମାନଙ୍କ ପ୍ରତି ସ୍ୱାସ୍ଥ୍ୟଲାଭ ଓ ଲାଳନପାଳନ ବ୍ୟବସ୍ଥା କରିବେ । ବାଳକମାନଙ୍କର ସର୍ବପ୍ରକାର ହିତସାଧନ କରି ଶିକ୍ଷାଆଡ଼େ ଦୀକ୍ଷିତ କରାଇବାରେ ତୀବ୍ର ଦୃଷ୍ଟି ଓ ଯତ୍ନ-ଚେଷ୍ଟାଦି କରୁଥିବେ । ଗୃହର ସମସ୍ତ ବ୍ୟବହାରୀୟ ଖାଦ୍ୟପେୟ ବସନଭୂଷଣାଦି ଓ ଅନ୍ୟାନ୍ୟୋପ-କରଣ ଯଥାପରିମିତଭାବେ ଯୋଗାଇବାରେ ତ୍ରୁଟି କରିବେ ନାହିଁ । ସ୍ତ୍ରୀମାନଙ୍କ ମର୍ଯ୍ୟାଦା, ସତୀତ୍ୱ, ମହତ୍ତ୍ୱ ଧର୍ମ ଓ ନୀତି ରକ୍ଷା ପ୍ରତି ଯଥାଯୋଗ୍ୟ ସାବଧାନତା ଓ ପ୍ରଗାଢ଼ ଯତ୍ନ ଚେଷ୍ଟା କରୁଥିବେ । ଦେୟ ଦେବାରେ ଏବଂ ପ୍ରାପ୍ୟ ପାଇବାରେ ଅବହେଳା ବା ଅଳସ କରିବା ବଡ଼ ମାରାତ୍ମକ; ତତ୍ପ୍ରତି ସଦା ତତ୍ପର ହେବେ । କୃଷି-ବାଣିଜ୍ୟାଦି ଅର୍ଥାଗମ ପନ୍ଥାର ଆଦର କରିବେ । ଅସଦ୍‌ବୃତ୍ତି ବା ଅସଦୁପାୟରେ ଅର୍ଥାଗମର ଚେଷ୍ଟା କରିବା ପାଶବିକତା । ବିଧର୍ମୀର ଗୋଲମିରେ ହିତାହିତ ଜ୍ଞାନଧର୍ମ, ନୀତି ଓ ସଦାଚାରର ସୁରକ୍ଷା ପ୍ରତି ବାଧାବିଘ୍ନ ପଡ଼ିବା ଖୁବ୍ ସମ୍ଭବ, ସୁତରାଂ ତାହା ଆତ୍ମ-ଶୁଦ୍ଧି ନିମିତ୍ତ ତ୍ୟାଗ କରିବା ଧର୍ମବିଧିସଙ୍ଗତ ।

ଯୁବକମାନଙ୍କ ପ୍ରତି କହିବାକୁ ଗଲେ ପରିବାରୀୟ ସମସ୍ତ ଦାୟିତ୍ୱଭାର ଧର୍ମତଃ ଆରୋପିତ ରହିଅଛି, ସୁତରାଂ ସେମାନେ ସର୍ବପ୍ରକାରରେ ସମୃଦ୍ଧ-ପ୍ରସନ୍ନ ସହକାରେ ଗୃହର ସମସ୍ତ ଉପଦ୍ରବ ଓ ବାଧାବିଘ୍ନାଦି ନିବାରଣ ସକାଶେ ବିଶେଷ ବଳପ୍ରୟୋଗ କରିବାରେ ପଶ୍ଚାତ୍‌ପଦ ହେବେ ନାହିଁ । ଗୃହର ସମସ୍ତଙ୍କର ଧନ, ମାନ, ପ୍ରାଣ, ସ୍ୱାସ୍ଥ୍ୟ ଓ ଧର୍ମରକ୍ଷା ସମ୍ବନ୍ଧୀୟ ବାଧା ବିଘ୍ନ ନିବାରଣ ପାଇଁ ଉଗ୍ରବଳହସ୍ତ ହେବେ । ଭବିଷ୍ୟତ ଅଭାବ ଆଶଙ୍କା ନିବାରଣାର୍ଥ ଅର୍ଥଭଣ୍ଡାର ସ୍ଥାପନ ଏକାନ୍ତ ଆବଶ୍ୟକ; ସେଥି ନିମିତ୍ତ

ପରିବାରୀୟ ବାର୍ଷିକ ବ୍ୟୟ ତୁଳନାରେ ଅନ୍ତତଃ ତିନ ବର୍ଷ ବା ଦୁଇ ବର୍ଷ ଅବା ନିତାନ୍ତ କମ୍‌ରେ ଏକ ବର୍ଷର ବ୍ୟୟୋପଯୋଗୀ ଧନଧାନ୍ୟାଦି ସବୁପ୍ରକାରର ଅର୍ଥ ସଂଗ୍ରହ କରି ରଖିବା ନିତାନ୍ତ ପ୍ରୟୋଜନ । ଆୟ ତୁଳନାରେ ବ୍ୟୟ ମାତ୍ରାବୃଦ୍ଧି ଯେପରି ମାରାତ୍ମକ, ନିନ୍ଦନୀୟ ଏବଂ ପାପମୂଳକ, ସେହି ପରିମାଣରେ ଅଯୋଗ୍ୟତା, ଅମନୁଷ୍ୟତା, ଅଜ୍ଞତା ବା ନିର୍ବୁଦ୍ଧିତାର କାର୍ଯ୍ୟ ଅଟେ । ଆୟ ବ୍ୟୟ ସମାନ କଲେ ହୃଦୟର ଦୃଢ଼ତା ନଷ୍ଟ ହୁଏ, ଆଉ ସଂକୀର୍ଣ୍ଣତା ସ୍ଥାନାଧିକାର କରେ, ଉତ୍ସାହ କମିଯାଏ, ମନ ବା ଗୁଣ ଫୁଲାଇ ଗୀତ ଗାଇ ବାଟ ଚାଲିବାକୁ ହୁଏ ନାହିଁ । ଋଣୀପୁଅ ଅନନ୍ତର କଥା ଅବଶ୍ୟ ସ୍ୱତନ୍ତ୍ର । ଗୃହ-ନିର୍ମିତ ବା ଗ୍ରାମ୍ୟନିର୍ମିତ ବସନ ଭୂଷଣ ଓ ଖାଦ୍ୟପେୟାଦି ସମସ୍ତ ଉପକରଣରେ ସରଳତା, ମିତବ୍ୟୟିତା ଓ ଅନାଡ଼ମ୍ବର ଭାବରେ ସଂସାରୀୟ ତଥା ପରିବାରୀୟ ଜୀବନଯାତ୍ରା ନିର୍ବାହ କରୁଥିବା ଧର୍ମତଃ ଓ ନ୍ୟାୟତଃ ସର୍ବବାଦୀସମ୍ମତ ଅଟେ । ଆତ୍ମ-ନିର୍ଭରଶୀଳ ହେବା ସବୁ ବିଷୟରେ ପୁଣ୍ୟଜନକ । ପରମୁଖାପେକ୍ଷୀ ବା ପରଦେଶୀୟ ମୁଖାପେକ୍ଷୀ ହେବା ନିର୍ଲଜ୍ଜ କାପୁରୁଷର ଲକ୍ଷଣ ।

ପରିବାର ମଧ୍ୟରେ ପ୍ରତିଦିନ ଯଥା ସମୟରେ ଧର୍ମଚର୍ଚ୍ଚା ଓ ଶାନ୍ତଚର୍ଚ୍ଚା ବା ସର୍ବପ୍ରକାର ସତ୍ ଚର୍ଚ୍ଚା ହେଉଥିବ । ଧର୍ମଶାସ୍ତ୍ର ଗୀତା ଭାଗବତାଦି ତତ୍ତ୍ୱଶୀଳ ପବିତ୍ର-ଗାଥାଦି ପଠନ ଶ୍ରବଣ ଆଲୋଚନା କରାଯିବା ବିଧେୟ । ତଦ୍ଦ୍ୱାରା ଗୃହର ଶାନ୍ତି ଓ ପୁଣ୍ୟ ଲାଭ ହୁଏ । ପରିବାରୀୟ ଯୁବକମଣ୍ଡଳର ଘରର ସମସ୍ତଙ୍କ ପ୍ରତି ଏ ସମ୍ବନ୍ଧେ ଅନୁଯୋଗ ଦେବା କର୍ତ୍ତବ୍ୟ । ଗୃହର ସମସ୍ତଙ୍କୁ ଯଥୋପଯୁକ୍ତ ପରିମାଣରେ ଗୃହଚିକିତ୍ସାଶାସ୍ତ୍ର-ବ୍ୟବସ୍ଥାଦି ଶିକ୍ଷା ଦେବା ଅତୀବ ଉପାଦେୟ ଅଟେ । ଅତିଥି ଅଭ୍ୟାଗତ, ଧାର୍ମିକ, ସାଧୁପୁରୁଷ, ଅଶକ୍ତ ବା ଅକ୍ଷମ ଯେ କେହି ଆଗନ୍ତୁକ ଗୃହରେ ଉପଗତ ହେଲେ ତାହାଙ୍କର ଯଥା-ଯୋଗ୍ୟ ଅଭ୍ୟର୍ଥନା ଓ ପାନଭୋଜନାଦିର ବ୍ୟବସ୍ଥା କରାଇଦେବା ପ୍ରତ୍ୟେକ ଗୃହୀର ବିହିତ କର୍ତ୍ତବ୍ୟ । ଆଉ ବଳିଷ୍ଠ କୁକୁର ଲଗାଇଦେଇ ତାହାଦ୍ୱାରା ତାଡ଼ନା କରାଇ ବହୁଦୂରରେ ହତା ପାର କରାଇଦେବାଟା ସର୍ବଥା ଅକରଣୀୟ ଅଟେ । ଅଭାବ ପକ୍ଷରେ ପରିଚର୍ଯ୍ୟା କରିବାକୁ ଅକ୍ଷମ ହେଲେ ବିନୟ-ଅନୃତ-ବାକ୍ୟଦ୍ୱାରା ବିଦାୟ ଦେଇ ଅନ୍ତରେ ଅନ୍ତରେ ଦୁଃଖିତ ହେବା ଉଚିତ । ଗୃହର ବୃଦ୍ଧ-ବୃଦ୍ଧାଙ୍କ ପ୍ରତି ସକଳ ବିଷୟରେ ସର୍ବ ପ୍ରଯତ୍ନାଦିସହକାରେ ସଦୟ, ସଶ୍ରଦ୍ଧ ବା ବିନୟ ବ୍ୟବହାର କରି ସେମାନଙ୍କୁ କୌଣସି ପ୍ରକାର ଅଭାବଗ୍ରସ୍ତ ନ ଦେଖାଇ ସେମାନଙ୍କର ସେବାଶୁଶ୍ରୂଷାଦି କରିବା ପରିବାର-ବର୍ଗଙ୍କର ପ୍ରଥମ ଧର୍ମକ୍ରିୟା ଓ ପ୍ରଥମ କର୍ତ୍ତବ୍ୟ ଅଟେ । ଆଉ ଏତଦ୍ଦ୍ୱାରା ସେମାନଙ୍କର ଶୁଭାଶୀର୍ବାଦ ଗ୍ରହଣ କରୁଥିବା ଶ୍ରେଷ୍ଠତମ ଆଦର୍ଶ । ବନ୍ଧୁବାନ୍ଧବାଦି ପ୍ରିୟ ଆତ୍ମୀୟମାନଙ୍କର ଆଦର ଅଭ୍ୟର୍ଥନାଦି ଗୃହଧର୍ମର ଅଳଂକାର । ଏ ସବୁ ସଦ୍‌ବ୍ୟବହାରାଦିରେ କୃପଣତା ବା ହୀନତା ଦେଖାଇବା ଆଖି ଥିବା ଅନ୍ଧର ଶୋଭନୀୟ କି ନା ସନ୍ଦେହ ।

ଯୌବନାବସ୍ଥା ପ୍ରାକୃତ ଜଗତରେ ଆଶୀର୍ବାଦ ଗ୍ରହଣର ସ୍ଥାନ ଅଟେ । ଯୌବନରେ ଦୈହିକ ଓ ମାନସିକ ବଳାଦି ଅକ୍ଷୁଣ୍ଣ ଥାଏ, ସୁତରାଂ ତାହା କର୍ତ୍ତବ୍ୟପାଳନ

ଓ ଧର୍ମପାଳନ ବା ସାଧନର ପ୍ରକୃଷ୍ଟ ସୁଯୋଗ ଓ ସୌଭାଗ୍ୟର ସମୟ; ଅଥଚ ଏହା ପୁଣି ଫୁଲ ଫୁଟି ଅଳ୍ପ ସମୟରେ ମଉଳିଗଲା ପରି ଗୃହସ୍ଥ ଗୃହସ୍ଥ ଅଳ୍ପଦିନ ମଧ୍ୟରେ ଅବସ୍ଥାନ୍ତର ଆଡ଼କୁ ଆକର୍ଷିତ ହୋଇପଡ଼େ । ଏହି ଅବସର ମଧ୍ୟରେ କର୍ତ୍ତବ୍ୟପାଳନ-ସାଧନାଦିରେ ଅବହେଳା କରିବା ପ୍ରକୃତିଦତ୍ତ ଆଶୀର୍ବାଦର ଅବହେଳା ସଙ୍ଗେ ସମାନ । ଅତଏବ ଯୁବକବୃନ୍ଦ ପରିବାର ମଧ୍ୟରେ ସମସ୍ତଙ୍କର ଏକମାତ୍ର ଅବଲମ୍ବନ ଓ ଆଶ୍ରୟସ୍ଥଳ ଅଟନ୍ତି ବୋଲି ପରିବାରର ତାଙ୍କଠାରେ ଯେପରି ଆଶା ଭରସା, ସେମାନଙ୍କର ସେହିପରି ପରିବାରବର୍ଗଠାରେ କୃତଜ୍ଞ ଓ କର୍ତ୍ତବ୍ୟପରାୟଣ ରହିବା ଉଚିତ ।

ଗୃହର ପରିବାର ମଧ୍ୟରେ କୁଳବଧୂ ମାତାମାନଙ୍କର ଯଥେଷ୍ଟ କର୍ତ୍ତବ୍ୟ ଅଛି । ସେମାନଙ୍କର ରନ୍ଧନ ପରିବେଷଣାଦିରେ ସିଦ୍ଧ ଓ ମୁକ୍ତହସ୍ତ ହେବା ବାଞ୍ଛନୀୟ । ସମୟାନୁସାରେ ଯାହା ପ୍ରତି ଯେପରି ଭକ୍ଷ୍ୟପେୟାଦି ଯୋଗାଡ଼ ହେବା ଆବଶ୍ୟକ, ସେପରି କରିବା ସେମାନଙ୍କ ଧର୍ମ । ଏପରି ଶିଶୁ ବାଳକମାନଙ୍କ ପ୍ରତି ଓ ବୃଦ୍ଧବୃଦ୍ଧାଙ୍କ ପ୍ରତି ବିଶେଷ ଆଗ୍ରହ ପ୍ରଦର୍ଶନ କରିବା ବିଧିସଙ୍ଗତ । କଳହ, ଛିଦ୍ର, ବାଦ, କପଟ କୁଟିଳ ଦି ମାନବୀୟ ଜୀବନାମୃତ ପକ୍ଷରେ ଯେପରି ହଳାହଳ ଗରଳରୁ ବଳି ଅନିଷ୍ଟକର, ସେହିପରି ପରିବାର ପକ୍ଷରେ ଏବଂ ନିଜ ନିଜ ପକ୍ଷରେ ବିଷମ ବିଷପରି ଦୋଷାବହ ଅଟେ । ଏ ହେତୁ ତାହା ତ୍ୟାଜ୍ୟ । ଜିଦ୍ ଜଗର ଧରି ପକ୍ଷପାତ କରିବା ଅନ୍ୟାୟ । ଗୃହରେ କେତେ କେତେ ପ୍ରାଣୀର ଶାନ୍ତିବିଶ୍ରାମର ଇଚ୍ଛା, ସେ ସମସ୍ତର ମୂଳାଧାର ଉକ୍ତ ବଧୂମାତାମାନେ । ସେମାନେ ଅସ୍ଥିର ହେଲେ ସମୁଦାୟ ପରିବାରଟି ଅସ୍ଥିର ହୁଅନ୍ତି; ହେବାକୁ ମଧ୍ୟ ବାଧ୍ୟ । ଅତଏବ ପରିବାରତରୁର ମୂଳ ଅୟ ରହିବା ଏକାନ୍ତ ପ୍ରୟୋଜନୀୟ ଅଟେ । ବଧୂମାତାମାନଙ୍କର ଚରିତ୍ରରକ୍ଷା ଏବଂ ସତୀତ୍ୱରକ୍ଷା ପରମ ଧର୍ମର ଅନ୍ତର୍ଗତ । ସୁତରାଂ ସେମାନେ ଅଶିକ୍ଷିତା ହେବା ଧର୍ମବିଗର୍ହିତ ଅଟେ । ବଧୂମାତାମାନଙ୍କ ପକ୍ଷରେ ପରସ୍ପର ମିଳିମିଶି ଏକମନରେ ଓ ଅଭିନ୍ନପ୍ରାଣରେ ଗୃହକର୍ମ ନିର୍ବାହ କରିବା ବିଧେୟ । ଆପଣା ଆପଣା ମଧ୍ୟରେ କାହାକୁ କୌଣସି ପ୍ରକାରର କାର୍ଯ୍ୟରେ ଅକ୍ଷମ ଦେଖିଲେ ଜିଦ୍ ନ ଧରି ତାହାର ସେହି କାର୍ଯ୍ୟଟିକୁ ଚଳାଇନେଇ ତାହାକୁ କ୍ଷମା ଦାନ କରିବା ସେମାନଙ୍କର ପ୍ରଧାନ କାର୍ଯ୍ୟ ।

ଖାଦ୍ୟପେୟାଦିରେ ଯାହା ପକ୍ଷରେ ଯେପରି ସୁବିଧା, ସେ ସମ୍ବନ୍ଧରେ ତର୍କକପଟାଦି ତ୍ୟାଗ କରିବା ଧର୍ମ । ଆଉ ମଧ୍ୟ ପ୍ରଧାନ ପ୍ରୟୋଜନ ବସ୍ତ୍ରାଦିର ସଂସ୍ଥାନ ନିମିତ୍ତ କପା, ତୂଳା, ସୂତା ପ୍ରସ୍ତୁତ କରିବା କର୍ତ୍ତବ୍ୟ । ଏଥିରେ ପୁରୁଷମାନଙ୍କର ମୁଣ୍ଡରୁ ବ୍ୟୟର ଗୁରୁଭାର ବହୁ ପରିମାଣରେ ଲଘବ ହୁଏ । ପରିବାରର ଅର୍ଥ ସଂପାଦନ ପକ୍ଷରେ ବିଶେଷ ସାହାଯ୍ୟ କରେ । ସେମାନଙ୍କର ବିଳାସର ସାମଗ୍ରୀ ଏକାବେଳକେ ପରିତ୍ୟାଗ କରିବା ଉଚିତ । ଯେପରି ଅଳଙ୍କାର ବସନଭୂଷଣାଦିର ଅର୍ଥବାହୁଲ୍ୟରେ ପୁରୁଷମାନଙ୍କୁ ଘାଣ୍ଟି ହେବାକୁ ନ ପଡ଼େ, ସେହିପରି ବସନଭୂଷଣାଦିରେ ଅଭିଳାଷିଣୀ

ହେବା ଉଚିତ । ଘରର ସବୁ ଭାଇମାନଙ୍କର ବାଳକବାଳିକାମାନଙ୍କୁ, ମା, ଖୁଡ଼ୀ, ଦେଢ଼େଇ, ଶାଶୁ ଇତ୍ୟାଦି ଗୁରୁଜନମାନଙ୍କୁ ସମାନ ଚକ୍ଷୁରେ ଦେଖି ସମବ୍ୟବହାର କରିବା ଏବଂ ସମାନ ଶ୍ରଦ୍ଧାଭକ୍ତି ସହକାରେ ଯାହା ପ୍ରତି ଯେପରି ଯାହା କିଛି ଆବଶ୍ୟକ, ତାହାପ୍ରତି ତଦ୍ରୂପ ବ୍ୟବସ୍ଥା କରିବା ଏକାନ୍ତ ବାଞ୍ଛନୀୟ । ଏତଦ୍ଦ୍ୱାରା ଏକତାବନ୍ଧନ ରକ୍ଷା ହୁଏ । ଗୁରୁଜନମାନଙ୍କର ସେବାଶୁଶ୍ରୂଷା କରିବା ସେମାନଙ୍କର ଧର୍ମ; ଆଉ ମଧ୍ୟ ମର୍ଯ୍ୟାଦା ସହ ବ୍ୟବହାରରେ ସନ୍ତୁଷ୍ଟ ରଖିବା ଧର୍ମତଃ କର୍ତ୍ତବ୍ୟ ଅଟେ । ଧର୍ମ-ଗୀତାଦି ଗ୍ରନ୍ଥ ପାଠକରିବା ଏବଂ ଯତ୍‌ସାମାନ୍ୟ ଶିକ୍ଷାଲାଭ କରି ଯଥାପରିମାଣରେ ବାଳଚିକିତ୍ସାଦି ଅନ୍ୟାନ୍ୟ ଚିକିତ୍ସାଶାସ୍ତ୍ର ଅଭ୍ୟାସ କରିବା ବଧୂମାତାଙ୍କର ପ୍ରୟୋଜନ । ମୂର୍ଖ ହେଲେ ଦୋଷଗୁଣ ବୁଝାଯାଏ ନାହିଁ ।

ବୃଦ୍ଧ-ବୃଦ୍ଧାମାନଙ୍କର ଗୃହରେ ସମସ୍ତଙ୍କୁ ସଦୁପଦେଶ ଓ ସମସ୍ତ ବିଷୟରେ ସତ୍‌ପରାମର୍ଶ ଦେବା କର୍ତ୍ତବ୍ୟ ଅଟେ । ସତ୍‌ପଥାବଲମ୍ବନ ପୂର୍ବକ ଧର୍ମଚିନ୍ତା ଓ ଧର୍ମକର୍ମ-ସାଧନରେ ତତ୍ପର ହେବା ଏବଂ ତଦ୍ରୂପ ପବିତ୍ର ଆଦର୍ଶରେ ସମସ୍ତଙ୍କୁ ଅନୁଗମନ କରାଇ ସମସ୍ତଙ୍କର ମଙ୍ଗଳ ନିମିତ୍ତ ପରମେଶ୍ୱରଙ୍କୁ ପ୍ରାର୍ଥନା କରିବା ଧର୍ମସମ୍ମତ, ଆଉ ମଧ୍ୟ ନିଜେ ନିଜେ ଆଶୀର୍ବାଦ କରିଥିବା ଉଚିତ । ସେବା ଶୁଶ୍ରୂଷାଦିରେ ବା ଅନ୍ୟ କୌଣସି ବିଷୟରେ ଘର କଲରୁ କୌଣସି ବିଷୟରେ ତ୍ରୁଟି ହେଲେ ସେଥି ନିମିତ୍ତ ଅସନ୍ତୁଷ୍ଟ ହେବା ତାହାଙ୍କ ପକ୍ଷରେ ଧର୍ମହାନିକର ଅଟେ । ଅତଏବ ତ୍ରୁଟି ମାର୍ଜନା କରି କ୍ଷମାସହ ମଙ୍ଗଳ କାମନା ତାହାଙ୍କର କରଣୀୟ; ଆଉ ତଦ୍ରୂପ ଅଭାବ ପୂରଣ ନିମନ୍ତେ ପରମେଶ୍ୱରଙ୍କୁ ପ୍ରାର୍ଥନା କରୁଥିବା ବରଂ ବିଧେୟ ଅଟେ । ଗୃହ ଜଞ୍ଜାଳ ବର୍ଣ୍ଣନାକରି ପ୍ରଜାପତିଙ୍କୁ ବୋଧହୁଏ ସମ୍ପୂର୍ଣ୍ଣରୂପେ ଜ୍ଞାତ ନ ଥିବା ସମ୍ଭବ, ଅତଏବ ବିଗୃର-ସହକାରେ ପ୍ରତ୍ୟୁତ୍ପନ୍ନମତିଭର ସାହାଯ୍ୟ ନେଇ ଅବସ୍ଥାନୁରୂପ ବ୍ୟବସ୍ଥା କରୁଥିବା ସବୁବେଳେ ଆବଶ୍ୟକ । ଆତ୍ମନିର୍ଭରଶୀଳ ଓ ପରୋପକାରୀ ହେବା ଉଚିତ । ଏହା ସର୍ବଦା ବ୍ରତପରି ଧାରଣ କରିଥିବାର ଉପଦେଶ ପରିବାର ମଧ୍ୟରେ ପାଳିତ ହେବା ଏକାନ୍ତ କଲ୍ୟାଣକର ଓ ବାଞ୍ଛନୀୟ ଅଟେ ।

## ପରିବାରୀୟ ସାଧାରଣ ଶିକ୍ଷା

ଏହି ପରିବାରୀୟ ବାସସ୍ଥାନ ଯେପରି ସେପରି ବୋଲି ମନେ କରିବାକୁ ହେବ ନାହିଁ । ଏହା ଏକ ପବିତ୍ର ପୁଣ୍ୟତୀର୍ଥ ଅଟେ । ଏଥିରେ ଧର୍ମ, ଅର୍ଥ, କାମ, ମୋକ୍ଷାଦି ଚତୁର୍ବର୍ଗସାଧନର ପ୍ରଶସ୍ତ ପନ୍ଥା ବିଦ୍ୟମାନ । ସୁତରାଂ ଏଥିମଧ୍ୟରେ ମନେ କରିବାକୁ ଗଲେ ଜନ୍ମନିଶ୍ୱାସୀ ଶିଶୁର ପ୍ରଥମ ଧ୍ୱନି, ହର୍ଷ, କ୍ରୀଡ଼ା ଅଙ୍ଗପ୍ରତ୍ୟଙ୍ଗାଦିର ଅଲକ୍ଷିତ ଲୀଳାତ୍ମକ ଗତିକ ସର୍ବଦା ଶୁଣି ଦେଖିବାରେ ହୃଦୟ ପୁଲକିତ ହେଉଥିବାର କଥା; ଆଉ ଭାବିବାକୁ ଗଲେ ଶିଶୁର ଏହି ଅତି ସୁନ୍ଦର ଅନୁପମ ଲୀଳା ପୂର୍ବ ସଂସ୍କାରାନୁବର୍ତ୍ତୀ

ଅଭ୍ୟାସକୁ ବ୍ୟକ୍ତ କରିଅଛି କମ୍ବା ଭାବୀ ସଂସାରର ଲୀଳା ବିସ୍ତାର କରିବାର ଉଦ୍ୟମ ସ୍ୱରୂପ ଏହି ଭାବକୁ ପ୍ରକାଶ କରିଅଛି; ଅଥବା ଏଇ ନବୀନ ଦୃଶ୍ୟ ସଂସାରଚିତ୍ର ଶିଶୁ-ପକ୍ଷରେ ଏପରି ମନୋମୁଗ୍ଧକର ହୋଇଅଛି ଯେ ତାହା ଦର୍ଶନକରି ସେ "କିଏ ତାକୁ ଏଠାକୁ ଆଣିଲା, ଆଉ ଏ ବିଚିତ୍ର ଚିତ୍ରପଟ ପ୍ରଦର୍ଶନ କରାଇଲା" ବୋଲି ବିଧାତାପୁରୁଷଙ୍କୁ ପ୍ରେମାନନ୍ଦପୂର୍ଣ୍ଣ ହୃଦୟରେ ଏହି ଲୀଳାରୂପକ ସ୍ତୁତିବାଦନ କରୁଅଛି । ଆଉ ବାଳକ-ବାଳିକାମାନଙ୍କର ଖାଇବା, ପିଇବା, ଖେଳିବା, ନାଚିବା, ଗାଇବା, ପାଠ କରିବାର କୋଳାହଳନାଦ ଯଜ୍ଞସ୍ଥଳୀର ଗୁରୁବେଦଗାନଧ୍ୱନିକୁ ପରାଜୟ କରୁଅଛି । ବୟୋବୃଦ୍ଧବୟସ୍କା-ମାନଙ୍କର ଧର୍ମକର୍ମସମ୍ବନ୍ଧୀୟ ବେଦମନ୍ତ୍ର ପୁରାଣାଦି ପଠନଧ୍ୱନି, ଆଉ ଗୃହ-ସଂସାର ସମ୍ପର୍କୀୟ ବିଚାର-ପରାମର୍ଶ-ଗାଥାଗାନ-କଥନାଦି ରାସମଣ୍ଡଳ ଶୋଭାକୁ ସୂଚନା କରାଇ ଦେଉଅଛି । ପ୍ରାଚୀନ ବୃଦ୍ଧ-ବୃଦ୍ଧାଦିଙ୍କର ଗଭୀର ଆଧ୍ୟାତ୍ମିକ ଚିନ୍ତା ଓ ଭାବାଦି ବୈକୁଣ୍ଠ ଧାମକୁ ସତେ କି ଟେକିଆଣି ଏହି ପରିବାରମଣ୍ଡଳ ପରିବ୍ୟାପ୍ତ ସ୍ଥାନରେ ସୀମାବଦ୍ଧ କରି ରଖି ଦେଇଅଛି । ଆହ୍ନିକ ନିତ୍ୟ ନୈମିତ୍ତିକ କ୍ରିୟାଦି ଅର୍ଥାତ୍ ହୋମ ଇଷ୍ଟଦେବ ଓ ଗୃହଦେବତା ପୂଜା ସ୍ତୁତିବନ୍ଦନାର୍ଚ୍ଚନାଦି, ଉତ୍ସବ, ଦାନ, ବ୍ରତ, ଉପାସନାଦି; ପରେ ସାମୟିକ କର୍ଣ୍ଣବେଧ, ବିଦ୍ୟାରମ୍ଭ, ଉପନୟନ, ବିବାହ, ଶ୍ରାଦ୍ଧାଦି ପାବନ କର୍ମ; ଦାନ, ପରିଗ୍ରହ, ବେଦାଧ୍ୟୟନାଦି ପୂର୍ଣ୍ଣ ସମାରୋହର ପବିତ୍ର ପ୍ରଦର୍ଶନୀ ଇତ୍ୟାଦି ଯେପରି ପୁଣ୍ୟକ୍ଷେତ୍ର ହରିଦ୍ୱାରର ହରିହରଛତ୍ର ସାଧୁ, ମୁନି ଋଷ୍ୟାଦି ମେଳାକୁ ସାଦର ନିମନ୍ତ୍ରଣ କରି ତୀର୍ଥର ଆଦର୍ଶ ଦେଖାଇ ଦେଉଅଛି ।

ଅତିଥି ଅଭ୍ୟାଗତାଦିଙ୍କର ଭିକ୍ଷାପ୍ରାର୍ଥନା ସହିତ ଦାନଦୟାଦିର ଲଢ଼ାଲଢ଼ି ଦେଖିବା ଦୁର୍ବଳ ସବଳର ପ୍ରତିଯୋଗିତା ପରୀକ୍ଷା ପରି କୌତୂହଳପ୍ରଦ, ମାତ୍ର ବାବାଜିମାନଙ୍କର "ମାତା ଭିକ୍ଷା ଦିଅ" ଡାକଟି ଆଜିକାଲିର ରାଜସ-ତାମସ-ଦିନରେ ସୁନ୍ଦର ନୁହେ । ସବୁ ଗୃହମାତାମାନେ ଦାଣ୍ଡକୁ ଆସି ଭିକ୍ଷା ଦେବା ସବୁ ଅବସ୍ଥାରେ ନିରାପତ୍ତିଜନକ ନୁହେ; ସୁତରାଂ ସେହି ଡାକକୁ ବନ୍ଦ କରି "ବାବା ଭିକ୍ଷା ଦିଅ" ବୋଲି କହିବାକୁ ସେମାନଙ୍କୁ ଶିକ୍ଷା ଦେବା ଉଚିତ । ହିତୋପଦେଶର ଭୁଆବରାଡ଼ 'ଗଙ୍ଗାସ୍ନାନ-କାରୀ, ନିରାମିଷାଶୀ, ଚାନ୍ଦ୍ରାୟଣ ବ୍ରତାଚାରୀ' ବୋଲି ପରିଚୟ ଦେଇ ବିଶ୍ୱାସରେ ଭୁଲାଇ ପକ୍ଷୀବସାରେ ଅତିଥି ରହିଲା, ସକାଳକୁ ବ୍ରତ ଉଦ୍‌ଯାପନ ସମାପନ କରଣାନନ୍ତର ପକ୍ଷୀବଂଶ ନିର୍ମୂଳ କରି ଲୁଚି କେଉଁଆଡ଼େ ପଳାଇଗଲା—ଏପରି ବିଡ଼ାଳବୈଷ୍ଣବ-ଶ୍ରେଣୀୟ ଅଜ୍ଞାତ-କୁଳ-ଶୀଳ ଲୋକଙ୍କୁ ସାବଧାନ ପୂର୍ବକ ଚିହ୍ନି ଠିକ୍ କରିବା ଉଚିତ; ଆଉ ମଧ୍ୟ ତଦନୁସାରେ ବ୍ୟବହାର କରିବା ଉଚିତ । ଅସାବଧାନ ହେଲେ ବିପଦ ଅନିବାର୍ଯ୍ୟ । ଗୃହଲକ୍ଷ୍ମୀ ବୟସ୍କାମାନଙ୍କୁ ପରିବାରୀୟ କୌଣସି ସଙ୍ଗୀ ଛଡ଼ା ଏକାକୀ ଦୂରଗମନର ସୁଯୋଗ ଦେବା ଉଚିତ ନୁହେ । ଆଜିକାଲି ସାହେବୀ ସଭ୍ୟତାର କଥା ଭଗବାନ ଜାଣନ୍ତି । ସ୍ତ୍ରୀ ଜାତିର ସତୀତ୍ୱରକ୍ଷା ତଥା ପୁରୁଷଜାତିର ସର୍ବପ୍ରକାର ବ୍ୟଭିଚାର ତ୍ୟାଗ ପରିବାରୀୟ ଧର୍ମର ମୂଳଭିତ୍ତି ଅଟେ । ଅତଏବ ଏହା ସର୍ବପ୍ରଯତ୍ନ

ସହକାରେ ଓ ସର୍ବତୋଽଧିକଭାବରେ ସଂସ୍ଥାପିତ ଏବଂ ସୁରକ୍ଷିତ ହେବା ନିତ୍ୟଧର୍ମାନୁରଞ୍ଜକ ଅଟେ ।

ସମଧିକଭାବରେ ଦେଖିବାକୁ ଗଲେ ପରିବାରୀୟ ସଂସ୍ଥାନ ପରମେଶ୍ୱରଙ୍କର ବିଶ୍ୱକୋଠଭଣ୍ଡାରର ସଂଯୋଜିତ ଭାଗବିଶେଷ ଅଟେ । ଏହା ସ୍ୱତନ୍ତ୍ର ଅନ୍ୟ କୌଣସି ଜିନିଷ ନୁହେ । ଏହା ସଂସାରୀୟ ମାନବ ବିଶ୍ୱସଂସାରସ୍ଥ ଅବିଭକ୍ତ ସମୁଦାୟ ମାନବୀୟ ପାରିବାରିକ ଏକ ପରମେଶ୍ୱରର ଏକ ପରିବାର ସଂସ୍ଥାନର ଆଦର୍ଶର ଅନ୍ତର୍ଭୁକ୍ତ ଅଟେ; ଅର୍ଥାତ୍ ସମୁଦାୟ ସଂସାରକୁ ଏକ କୋଠ ଅବିଭକ୍ତ ଗୃହ ରୂପରେ ପରମେଶ୍ୱରଙ୍କ ଦ୍ୱାରା ନିର୍ମିତ, ଆଉ ସମୁଦାୟ ଈଶ୍ୱରସୃଷ୍ଟ ମାନବଜାତିକୁ ସେହି ପରମେଶ୍ୱରଙ୍କର ଏକ ଅବିଭକ୍ତ କୁଟୁମ୍ବରୂପେ ସେହି ବିଶ୍ୱଗୃହରେ ଅବସ୍ଥିତ ବୋଲି ପରିଦର୍ଶନ କଲେ ଏହି ପରିବାରୀୟ ପ୍ରସଙ୍ଗବର୍ଣ୍ଣିତ ପାରିବାରିକ ଗୃହଟି ଓ ପାରିବାରିକ ସଂସ୍ଥାନଟି ଉକ୍ତ ପରମେଶ୍ୱର ନିର୍ମିତ ବିରାଟ ଭବନର ଆଦର୍ଶରେ ଗଢ଼ା ବୋଲି ଉପଲବ୍ଧି କରିବାକୁ ହୋଇଥାଏ । ସେହି ହେତୁରୁ କୌଣସିଠାରୁ ଅନ୍ୟାୟକ୍ରମେ ପରିବାରୀୟ ଗୃହକୁ ଧନସମ୍ପତ୍ତ୍ୟାଦି ଆନୟନ କରି ନିଜର ବୋଲି ଚିହ୍ନିତ ରଖିବା ଅନ୍ୟାୟ ଅଟେ । ଅନ୍ୟାୟରେ ଅଣାଯିବା ଅଥବା ନଆସିବା ଉଭୟ ପ୍ରକାରରେ ଅର୍ଥର ଯେଉଁ ସ୍ଥାନାନ୍ତର ଘଟେ ତାହା ସମାନ ଅଧର୍ମ ଅଟେ । ଯକ୍ଷ-ରକ୍ଷସୋଚିତ ଲୋଭଦ୍ୱାରା କବଳିତ ହୀନବୁଦ୍ଧି ଅନାର୍ଯ୍ୟ ମାନବବିଶେଷ ମଧ୍ୟରୁ କେହି କେହି ବହୁକୋଟି ପରିମାଣର ଧନସମ୍ପତ୍ତ୍ୟାଦିକୁ ଅନ୍ୟାନ୍ୟ ସ୍ଥାନରୁ ଛଳବଳକୌଶଳକ୍ରମେ ଅପହରଣ କରି ଏକଠାବରେ ନିଜ ଘର ନାମଧେୟ ସ୍ଥାନରେ ଅବରୁଦ୍ଧ କରି ରଖିବାର ଦେଖା ଯାଇଥାଏ । ଏମାନେ ସଂସାରର ଶତ୍ରୁ, ଏବଂ ପରମେଶ୍ୱରଙ୍କ ଚକ୍ଷୁରେ ଈଶ୍ୱର ଭଣ୍ଡାରର ଧନାପହାରୀ ପାପୀ ବା ମହାପରାଧୀ ଅଟନ୍ତି । ଏତଦ୍ଦ୍ୱାରା ଲକ୍ଷ ଲକ୍ଷ, କୋଟି କୋଟି ଲୋକଙ୍କୁ ଅନାହାର ଯନ୍ତ୍ରଣା ସହିବାକୁ ପଡ଼େ । ସେହି ଯନ୍ତ୍ରଣାପୀଡ଼ିତ ଲୋକ ଦୁର୍ବଳ ଓ ନିରୀହ ସତ୍ତ୍ୱେ ଅନ୍ୟ କିଛି ପ୍ରତିଶୋଧ ନେବାକୁ ଅକ୍ଷମ ହେଲେ ସୁଦ୍ଧା ସେମାନଙ୍କ ତପ୍ତ ଜୀବନ, ତପ୍ତ ମନ, ତପ୍ତ ପ୍ରାଣ ଓ ତପ୍ତ ରକ୍ତମାଂସପିଣ୍ଡର ସାର-ସମେତ ଏକ ମହାତପ୍ତ ବିଷାକ୍ତ ଜ୍ୱଳନ୍ତ ସର୍ବ-ଧ୍ୱଂସକାରୀ ଗୋଳାରୂପରେ ଗଠିତ ହୋଇ ପରମେଶ୍ୱର ଦରବାରରେ ପହଞ୍ଚି ସେଠାରୁ ଦୃଢ଼ାଦେଶ ସହିତ ପ୍ରତ୍ୟାବର୍ତ୍ତନ କରିବାନନ୍ତର ମହାବ୍ୟାଧି ବା ମହାଅନିଷ୍ଟ, ଅମଙ୍ଗଳାଦି ଆକାର ଧାରଣପୂର୍ବକ ଅଲକ୍ଷିତ ଅଜ୍ଞାତ ସୂକ୍ଷ୍ମତମ ମାର୍ଗରେ ଅପରାଧକାରୀ ପ୍ରାଣରେ ପ୍ରବେଶ କରେ, ଆଉ ନାନାବିଧ ଅନିଷ୍ଟକୁ ଦଣ୍ଡସ୍ୱରୂପ ବିଧାନ କରେ ।

ଏତିକରେ ପ୍ରାୟଶ୍ଚିତ୍ତ ଶେଷ ହେଲା ନାହିଁ । ଅନେକାନେକ ଲୋକର ଅନ୍ନବସ୍ତ୍ର ସଂସ୍ଥାନରୂପ ମାନବୀୟ-ବିହ୍ୱଳପ୍ରାଣ ସବୁଆଡ଼େ ଅଭାବ ଦର୍ଶନ କରି ସେହି ଆବଦ୍ଧ ଅବ୍ୟବହାର୍ଯ୍ୟ ସମ୍ପତ୍ତ୍ୟାଦି ଉପରକୁ ତୀବ୍ର କଟାକ୍ଷପାତ କରେ । ଅଭାବବଶରୁ ପ୍ରାଣବୈକଲ୍ୟ ସଂଘଟିତ ହୁଏ । ଏତଦ୍ରୂପ ବିକଳାଙ୍ଗମାନଙ୍କର ଯନ୍ତ୍ରଣାର ହେତୁ ବୋଲି

କେବଳ ସେହି ଧନାବଦ୍ଧକାରୀଙ୍କୁ ନିଶ୍ଚୟ କରିବାକୁ ହୋଇଥାଏ । ଏତଦ୍ଦ୍ୱାରା ଅସଂଖ୍ୟ ଅସଂଖ୍ୟ ଲୋକମନରେ ଚୌର୍ଯ୍ୟ, ପ୍ରବଞ୍ଚନା, ଶଠତା ବା ଡକାୟତି ପ୍ରଭୃତି କୁକ୍ରିୟା-ସାଧନର କୁଭାବ ଜାତ ହୁଏ । ଏ ସମସ୍ତ ପାପତାପାଦିର ମୂଳ ସେହି ପାପିଷ୍ଠ ଧନୀ । ସଂସାରରେ କୁକ୍ରିୟା ବୃଦ୍ଧିର କାରଣରୂପେ ଏହି ଯକ୍ଷ-ଦାସ-ଧନ-କୁବେରଙ୍କୁ ସ୍ୱାବ୍ୟସ୍ଥ କରିବା ପ୍ରକୃତିର ନିୟମାଧୀନ ବ୍ୟବସ୍ଥାର ଉତ୍ତେଜନା । ଏଥିରେ କାହାର ବାରଣ କରିବାର ଶକ୍ତି ନାହିଁ । ଏହି ଉତ୍ତେଜନାର ପ୍ରାକୃତିକ-ବେଗରୁ ସେହି ଧନାବଦ୍ଧ ଥିବା ସ୍ଥାନରେ ଡକାୟତି ଆଦି ଅନ୍ୟାନ୍ୟ ଗୁରୁତର ମାରାତ୍ମକ ଅପରାଧାଦି ମଧ୍ୟ ସଂଘଟିତ ହୁଏ । ଏହି ଦୁଷ୍କ୍ରିୟାଦିର ସମ୍ପର୍କରୁ ଯେପରି ଧନ ସମ୍ପତ୍ତ୍ୟାଦିର ଅପଚୟ ଘଟେ, ସେହିପରି ନାନାଲୋକର ପ୍ରାଣଶାନ୍ତି ଓ ଶରୀରାଦିର ଗ୍ଲାନି ଘଟିଥାଏ । ଏତଦ୍ଦ୍ୱାରା ସଂସାରର ଯେତେ ଅମଙ୍ଗଳ, ଅଧର୍ମ, ଅନ୍ୟାୟ ଓ ଅନୈତିକତାଦିର ବାହୁଲ୍ୟ ସଂଘଟିତ ହୁଏ, ସେଥି ସକାଶେ ସେହି ଈଶ୍ୱରାଜ୍ଞା ଲଙ୍ଘନକାରୀ ବହୁ ପ୍ରାଣୀର ପ୍ରାଣସ୍ୱରୂପ ଧନର ଅପବ୍ୟବହାରୀ ଓ ବହୁଧନର ଏକସ୍ଥାନାବରୋଧକାରୀ ସେହି ଧନଲୁବ୍ଧ ଯକ୍ଷ କଙ୍କର ସେହି ଧନକୁବେର ନାମଧାରୀ ଅପଜୀବଟି ପରମେଶ୍ୱର ବିଶ୍ୱ-ସାମ୍ରାଜ୍ୟ ମଧ୍ୟରେ ଦାୟୀ ଅଟେ । ଏହି ଦାୟିତ୍ୱ ଦାୟୀ ପକ୍ଷରେ ଏବଂ ତାହାର ଦୋଷରୁ ସଂସାର ପକ୍ଷରେ ମଧ୍ୟ ବଡ଼ ଅନିଷ୍ଟକର । ଅତଏବ ଯହିଁରେ ସଂସାରର ବହୁ ପ୍ରାଣୀର ସୁରକ୍ଷା ହେବ, ତାହା ଜଣେ ଦୁଇଜଣରେ ବା ତଦ୍ରୂପ ପାପୀବଳଦ୍ୱାରା ଆବଦ୍ଧ ରହି ବିଧିସଙ୍ଗତ ବ୍ୟବସ୍ଥାର ବ୍ୟତିକ୍ରମ ଘଟିବା ପ୍ରତ୍ୟକ୍ଷ ମହାପାପ ଅଟେ । ଏହି ପାପ ପରିବାରୀୟ ଅଧିକାରଭୁକ୍ତ ସୀମା ସ୍ପର୍ଶ କରିବା ଧର୍ମବିରୁଦ୍ଧ କାର୍ଯ୍ୟ ଅଟେ । ଏହି ହେତୁ ପାରିବାରିକ ସଞ୍ଚୟନ, ନିୟମିତ ସୀମାମଧ୍ୟରେ ରହି ମାତ୍ରାତିକ୍ରମ କରି ନ ପାରିବା ପ୍ରତି ନୈତିକ ଏବଂ ଧାର୍ମିକ ପରିବାରର ଏକାନ୍ତ ଲକ୍ଷ୍ୟ ରହିବା ନ୍ୟାୟତଃ କର୍ତ୍ତବ୍ୟ ଅଟେ । ଇତ୍ୟାଦି ଇତ୍ୟାଦି ।

ବର୍ତ୍ତମାନକ୍ଷଣର ସଂସାରୀୟ ପ୍ରକୃତିଗତ ମାତି ଘୋର କଳିଯୁଗର ଲୋଭ, ମୋହ, ଗର୍ବ, ଆଡ଼ମ୍ବର, ଆତ୍ମମ୍ଭରିତା, ବିଳାସିତା, ସ୍ୱେଚ୍ଛାଚାରିତାଦି ଦୁଷ୍ପ୍ରବୃତ୍ତି ଦ୍ୱାରା ବିନଷ୍ଟ ହୋଇ ଦୁରାଚାର ଦୁର୍ନୀତ୍ୟାଦିର ପ୍ରବାହ କଳିଦୂତଶ୍ରେଣୀୟ ପ୍ରାଣୀମାନଙ୍କୁ କିପରି ପାପସାଗରର ତର୍ବ ବର୍ତ୍ତରେ ବୁଡ଼ାଇ ରଖିଅଛି ଏବଂ ତଦ୍ଦ୍ୱାରା ପାରିବାରିକ ଧର୍ମର କିପରି ଅନ୍ୟଥାଚରଣ ସଂଘଟିତ ହୋଇ ପାରିବାରିକ ସଂସାରକୁ କିପରି କଳୁଷିତ କରି ସାରିଲଣି, ଏହା ଭାବିବାକୁ ଗଲେ ଦେଖାଯାଏ କଳିଦୋଷଘଟିତ ଅନ୍ୟାନ୍ୟ ପାପାଚାରସମଷ୍ଟିର ସଙ୍ଗେ ଏହି ପାରିବାରିକ ପାପ ମିଶିଗଲଣି । ଏହାର ଫଳରେ ପ୍ରତ୍ୟେକେ ଏକପ୍ରକାରରେ ଯେ ଯାହା ହାତରେ ତଉଦପା ଲେଖାଏଁ ବୋଲି ଆପଣା ଆପଣାକୁ ମନେ କରୁଅଛନ୍ତି । ଅଧିକାଂଶ ସ୍ଥଳରେ ବଡ଼କୁ ସାନ ସେପରି କିଛି ବିଶେଷ ମାନ୍ୟ କରୁନାହିଁ, ଆଉ ମଧ୍ୟ ବଡ଼ ସାନକୁ ଉଚିତମତେ ସେତେ ସ୍ନେହାଦର କରୁନାହିଁ । ଅନେକାନେକ ବିଷୟରେ ପରିବାର ମଧ୍ୟରେ ମତର ମେଳ ନାହିଁ, ବରଂ ମତଭେଦରେ

ନାନାପ୍ରକାର କଳହ ବାକ୍-ବିତଣ୍ଡାଦି ସୃଷ୍ଟି ହେଉଅଛି । ଲୁଣ ଟିକିଏ ଊଣା ଅଧିକ ହୋଇଗଲେ ସେଥିପାଇଁ ପରସ୍ପର ମଧ୍ୟରେ କଳହ ଜାତ ହେଉଅଛି । ଅର୍ଥଘଟିତ-ବ୍ୟାପାରରେ ପରସ୍ପର ପରସ୍ପରକୁ ସନ୍ଦେହ ଚକ୍ଷୁରେ ଦେଖୁଅଛନ୍ତି । ପିଲାଟିଏ ହେଲେ ସୁଦ୍ଧା ତାହାର ନଜର କରି ଗୃହପଇସା ଲୁଚାଇ ରଖିବାର ପ୍ରୟାସ କରୁଅଛି ।

ଘର ମଧ୍ୟରେ ନାନାପ୍ରକାର ଧର୍ମର ମତଭେଦ ମଧ୍ୟ କଦାଚିତ୍ ଦେଖାଯାଇଥାଏ । ବାପ ବୃଦ୍ଧ ଥିଲେ (ଧର୍ମତଃ ଏକ ଆଉ ମତବାହୁଲ୍ୟ ଧର୍ମଗତ ଲୀଳାର ମତ୍ତତା ମାତ୍ର) ପୁଅ ଭ୍ରାନ୍ତ ହେଉଅଛି ବା ବଂଶଗତ ରୀତିନୀତିମତେ ସମସ୍ତେ ସ୍ମାର୍ତ୍ତ ଥିଲେ ମଧ୍ୟ ସେଥିରୁ କେହି କେହି ବୈଷ୍ଣବବାଦ ମତରେ, କେହି କେହି ବା ଅନ୍ୟାନ୍ୟ ଦୀକ୍ଷାଦିମତରେ ମାତିଯିବାର ଦେଖାଯାଏ । କେହି କେହି ନାନାଦି ପ୍ରଲୋଭନରେ ପଡ଼ି ଧର୍ମାନ୍ତର ଗ୍ରହଣ କରି ପରିବାରରେ ଜଳାଞ୍ଜଳି ଦେଇ ସ୍ଥାନାନ୍ତର ବା ଦେଶାନ୍ତର ଚାଲି ଯାଉଅଛି । କେହି କେହି ସାମାନ୍ୟ ସାମାନ୍ୟ କାରଣରେ ଖଣ୍ଡି ଗଣିଆ ପଣ ଦେଖାଇ ପରିବାରରୁ ପୃଥକ୍ ହେବା ବ୍ୟବସ୍ଥା କରୁଅଛନ୍ତି । ସହୋଦର ଭାଇ ଭାଇ ମଧ୍ୟରେ, ଖୁଡ଼ୁତାପୁଅ ଦେଢ଼ୁତାପୁଅ ମଧ୍ୟରେ, କକେଇ ବଦେଇ ପୁତୁରା ମଧ୍ୟରେ, ଏପରିକି ପିତାପୁତ୍ର ମଧ୍ୟରେ, ଶାଶୁବୋହୂ ମଧ୍ୟରେ ପୃଥକ୍ ପୃଥକ୍ ହେଉଅଛନ୍ତି । ସାମାନ୍ୟ କଥାରେ ଘଡ଼ିକ ମଧ୍ୟରେ ମଙ୍ଗମରି ଲଗିଯାଉଅଛି । ପାପାଚାର ସମ୍ବନ୍ଧରେ ଯେପରି ଶୁଣାଯାଏ, ସତ୍ୟ ହେଲେ କହିବାକୁ ହେବ, ମନୁଷ୍ୟ ପଶୁଠାରୁ ବଳି କଦାଚାରୀ ଓ ସ୍ୱେଚ୍ଛାଚାରୀ ହୋଇଗଲେଣି । କଳହବାଦ, ଛନ୍ଦକୂଟକପଟାଦି ଗୁଡ଼ାକ ପରିବାରର ଜପମାଳାପରି ହୋଇଅଛି । ପାରିବାରିକ ଶାସନ, ଗ୍ରାମ୍ୟଶାସନ ବା ସାମାଜିକ ଶାସନାଦିର ନାମଗନ୍ଧ ଲୋପ ପାଇବାକୁ ବସିଲାଣି । ସବୁ କଥାରେ କଚେରୀର ଦୋହାଇ ଫେରୁଅଛି । ପରିବାର ମଧ୍ୟରେ ଏପରି ଅନେକ ଘଟନା ଅଛି, ଯାହା ଦାଣ୍ଡ ବା ମେଲରୁ ବାହାରିବାର ନୁହେଁ, ସେପରି ଘଟନାଗୁଡ଼ିକ କଚେରୀ ବା ଦୋହାଇରେ ଅମୀମାଂସିତ ରହି ଶେଷକୁ ପୃଥକାନ୍ନର ବ୍ୟବସ୍ଥାଦି କରୁଅଛି । ଅଳମତି ବିସ୍ତରେଣ ।

**ଉପସଂହାର**—ଆତ୍ମାର ଧର୍ମ ଆତ୍ମତତ୍ତ୍ୱଜ୍ଞାନ ଓ ତନ୍ନିମ୍ନରୁ ସଂସାର ସମ୍ବନ୍ଧରେ ନୈତିକତା, ନୈତିକତା ଅର୍ଥ ଯଦ୍ଦ୍ୱାରା ଆତ୍ମଧର୍ମ ତାହାର ସୁରକ୍ଷାନୁଯାୟୀ ଦୈହିକ ତଥା ସଂସାରୀୟ ସୁଖଶାନ୍ତିର ସଂରକ୍ଷଣ, ଆଉ ଭୌତିକ ଦେହର ତଥା ଜଡ଼ ପଦାର୍ଥାଦିର ଧର୍ମ ବର୍ତ୍ତମାନର ସଯୁତାନକ୍ଷଣରେ ଆତ୍ମତତ୍ତ୍ୱଜ୍ଞାନ ବିସ୍ମୃତ ପ୍ରାୟ ହୋଇଅଛି ଏବଂ ମାନବୀୟ ଜୀବନ ବିଳାସ ଦୋଷରୁ ଅର୍ଥଲୋଭାଦି ଦ୍ୱାରା ମୂଢ଼ପ୍ରାୟ ଅର୍ଥ ସଞ୍ଚୟନାଦିକୁ ପୁରୁଷାର୍ଥ ଜ୍ଞାନ କରି ଭୌତିକ ବ୍ୟାମୋହକତାରେ ଭୌତିକ ତନ୍ମୟାକାରରେ ପରିଣତ ହୋଇଗଲାଣି । ସେହି ହେତୁରୁ ପାରିବାରିକ ଧର୍ମ ସଂସାରୀୟ ସର୍ବପ୍ରକାର ରୀତିନୀତି, ବ୍ୟବସ୍ଥାବିଚାର, ଶିକ୍ଷାଦୀକ୍ଷା, ଆଦର୍ଶ-ଅନୁକରଣ, ଶାସନ-ପାଳନାଦି ସର୍ବପ୍ରକାରର ସଂସାରରକ୍ଷାର ଉପାଦାନଗୁଡ଼ିକ ସମାନୁପାତରେ ମୋହାନ୍ଧକାରାଚ୍ଛନ୍ନ ହୋଇ ତାମସ-ପ୍ରବାହ ଦିଗରେ

ଗତ କରୁଅଛୁ । ଏହି ପ୍ରବାହ ପାପସାଗର-ସଙ୍ଗମ ସ୍ଥଳରେ ପହଞ୍ଚିଗଲଣି । ଏହି ସ୍ଥାନ ବଡ଼ ଉପ୍ଲାବଡ଼ ଓ ମାରାତ୍ମକ, ଅଥଚ ଶାନ୍ତିମୟ ମହାପରିବର୍ତ୍ତନର ଦୂବସଞ୍ଚିତ ଆବିଭୂମି । ଏହିଠାରେ ଧର୍ମର ସୁରକ୍ଷା ଏବଂ ସମ୍ପତ୍ତାନର ବିଲୋପ, ହିରଣ୍ୟାକ୍ଷର ସ୍ୱର୍ଗପ୍ରାପ୍ତି ଏବଂ ପ୍ରହ୍ଲାଦର ସ୍ୱର୍ଗୋପମ ସଂସାରପ୍ରାପ୍ତି ଅର୍ଥାତ୍ ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ ଇତ୍ୟାଦି ।

## ୧୬୨ ପାଠ—ଗ୍ରାମ୍ୟ ବ୍ୟବହାର

ପରମେଶ୍ୱରସୃଷ୍ଟ ଏ ସଂସାରରେ ଗୋଟିଏ ଗୋଟିଏ ହୋଇ କେତେକ ଜଣରେ ଯେପରି ଗୋଟିଏ ଗୃହସ୍ଥ ପରିବାରର ସୃଷ୍ଟି, ସେହିପରି ଗୋଟିଏ ଗୋଟିଏ ହୋଇ ଏକତ୍ରରେ ଅର୍ଥାତ୍ ଅନେକଗୁଡ଼ିଏ ପରିବାରୀୟ ଗୃହର ଏକତ୍ରରେ ଗୋଟିଏ ଗୋଟିଏ ଗ୍ରାମ୍ୟ କଳେବର ସୃଷ୍ଟ ହୋଇ ଅପୂର୍ବ ଶୋଭା ଧାରଣ କରିଅଛୁ । ଏହିପରି ଗ୍ରାମ ଗୋଟିଏ ଗୋଟିଏ ହୋଇ କୋଟି କୋଟି ସଂଖ୍ୟାରେ ପରିଣତ ହେବାରୁ ସେହି କୋଟି କୋଟିର ଏକତା ଗୋଟିଏ ମାନବୀୟ ସଂସାରାକାରରେ ଭୂପୃଷ୍ଠକୁ ମଣ୍ଡନ କରି ଏକ ପରମେଶ୍ୱର ଏବଂ ଏକ ପ୍ରକୃତିଦେବୀର ଐକ୍ୟ ପ୍ରେମବନ୍ଧନର ଆଦର୍ଶାନୁସାରେ ମାନବଜାତିର ଐକ୍ୟପ୍ରେମାନୁବନ୍ଧନକୁ ଏବଂ ଐକ୍ୟ ଶକ୍ତିକୁ ମଧ୍ୟ ପରୋକ୍ଷଭାବରେ କୋଟି କୋଟି ମିଳିତ କଣ୍ଠରେ ଏକ ବୋଲି ପ୍ରମାଣ କରୁଅଛୁ । ଗୋଟିଏ ଜୀବାତ୍ମାର ଗୋଟିଏ ଦେହରେ ଆଖି, କାନ, ନାକ, ହସ୍ତପଦାଦି ନାନାପ୍ରକାର ଇନ୍ଦ୍ରିୟ ଏବଂ ନାନାପ୍ରକାର ଅଙ୍ଗପ୍ରତ୍ୟଙ୍ଗ ପ୍ରଭୃତି ଯେପରି ବିରଜିତ ରହି ଏକ କଳେବର ରୂପେ ଖ୍ୟାତ ହୋଇଅଛୁ । ପୁଣି ଯେଉଁ ଯେଉଁ ଇନ୍ଦ୍ରିୟ ଦ୍ୱାରା ଓ ଯେଉଁ ଯେଉଁ ଅଙ୍ଗପ୍ରତ୍ୟଙ୍ଗାଦି ଦ୍ୱାରା ଯଥାବିହିତ କର୍ମ ସମ୍ପାଦିତ ହେବାର ନିୟମ ଅଛୁ, ତଦ୍ଦ୍ୱାରା ତାହା ତାହାହିଁ ହେଉଅଛୁ—ଅଥଚ ଦେହୀ ଜୀବାତ୍ମା ସମସ୍ତ ଇନ୍ଦ୍ରିୟ ଓ ଅଙ୍ଗପ୍ରତ୍ୟଙ୍ଗାଦିକୁ ସମଭାବେ ସମମମତା ସହକାରେ ପାଳନ ଓ ରକ୍ଷା କରି ଆପଣାର କରିଅଛୁ, ସେହିପରି ନିୟମର ଅନୁକରଣ ଗ୍ରାମ୍ୟ କଳେବରରେ ପରିଦୃଷ୍ଟ ହେବା ଈଶ୍ୱରେଚ୍ଛାନୁମୋଦିତ ଅଟେ ।

ଗ୍ରାମଟିରେ ଅନେକ ପରିବାରର ସଂସ୍ଥାନ ଅଛୁ । ତହିଁ ମଧ୍ୟରେ ନାନା କର୍ମର ଉପଯୁକ୍ତ ନାନା ଜାତି ଭିନ୍ନ ଭିନ୍ନ ରହି ଭିନ୍ନ ଭିନ୍ନ ଗୃହ ପରିବାରରେ ପରିଗଣିତ ହେଉଅଛୁ । ଏ ସମସ୍ତ ପରିବାରର ଭିନ୍ନ ଭିନ୍ନ ଗୃହ ପୃଥକ୍ ଥିଲେ ମଧ୍ୟ ଗୋଟିଏ ମାତ୍ର ଗ୍ରାମ୍ୟ କଳେବର ରୂପେ ପ୍ରତୀୟମାନ ହେଉଅଛୁ । କୌଣସି କୌଣସି ପରିବାର ଲୋକ ଧର୍ମ, ଜ୍ଞାନ, ଉପଦେଶ ଦେଉଅଛୁ, କେହି କେହି ଅନ୍ୟ ପରିବାରର ଲୋକ ଶାନ୍ତିରକ୍ଷା ନିୟମରକ୍ଷା ଇତ୍ୟାଦି ବିଷୟରେ ସୁଦୃଷ୍ଟି ରଖି ଅନିୟମାଦି ନିବାରଣ ନିମିତ୍ତ ଉପଯୁକ୍ତ ଦୈହିକ ଓ ମାନସିକ ପ୍ରୟୋଗ କରୁଅଛୁ । କୌଣସି କୌଣସି ପରିବାର ଆବଶ୍ୟକୀୟ ସାମଗ୍ରୀ ଅର୍ଥାତ୍ ଲୁଗା, ଗୁଡ଼, ଅଟା, ଡାଲି, ଘିଅ, ଲୁଣ, ତେଲ ପ୍ରଭୃତିର ଦୋକାନ

ସାଜ ଝସ୍ତ୍ରଵଝସ୍ତ୍ରଦ୍ୱାରା ଗ୍ରାମବାସୀମାନଙ୍କର ନାନା ଅଭାବମୋଚନର ସହାୟତା କରୁ-ଅଛନ୍ତି । କେହି କେହି ଚାଷ ଆବାଦ କରି କୃଷି ଉତ୍ପନ୍ନ ହେବା ପକ୍ଷରେ ବହୁ ପରିଶ୍ରମ ସହିତ ମୁଣ୍ଡଝାଳ ଭୂଇଁରେ ମାରୁଅଛନ୍ତି । କେହି କେହି ପାରିଶ୍ରମିକ ନେଇ କୃଷିକର୍ମରେ, ଗୋରୁଚରଣାଦିରେ, ଲୌହକାଷ୍ଠ ପ୍ରସ୍ତରାଦି ନିର୍ମାଣ କାର୍ଯ୍ୟରେ, କେହି କେହି ବୋଝ ମୁଣ୍ଡାଇ ମୁଣ୍ଡାଇ କର୍ମ ହୋଇଯିବାରେ ଗ୍ରାମ୍ୟ କଳେବର ରକ୍ଷାରେ ସାହାଯ୍ୟ କରୁଅଛନ୍ତି ଇତ୍ୟାଦି । ଏଥିରୁ ଦେଖାଯାଏ, ଏହି ସମସ୍ତ ପରିବାର ଏକେ ଏକେ ଗ୍ରାମ୍ୟ କଳେବରର ଅଙ୍ଗୋପାଙ୍ଗାଦି ବିଶିଷ୍ଟ ଅଟନ୍ତି । ଗ୍ରାମ୍ୟ କଳେବରର ଏତଦ୍ରୂପ ଅଙ୍ଗାଦିମାନେ ନିଜ ନିଜ କର୍ତ୍ତବ୍ୟ ଓ ଅଭ୍ୟସ୍ତ କର୍ମାଦିରେ ଅବହେଳା ବା ଆଳସ୍ୟପୂର୍ବକ କିମ୍ବା ଅନ୍ୟ ଯେ କୌଣସି ଅବୈଧ ପ୍ରକାରରେ ତ୍ରୁଟି ପ୍ରଦର୍ଶନ କଲେ ଗ୍ରାମ୍ୟକଳେବରଟି ରୁଗ୍ଣ ଓ ଦୁଃଖଭୋଗୀ ହେବ । ତଦ୍ଦ୍ୱାରା ସାଧାରଣ ଭାବରେ ସମୂହ ମନ୍ଦ ହୋଇ ଉଠିବ । ମନେ କରାଯାଉ, ଗ୍ରାମରେ ଗୋଟିଏ ଘର ମାତ୍ର ବଢ଼େଇ କି କମାର କାର୍ଯ୍ୟ କରିବାର ଉପଯୁକ୍ତ ଅଛି, ସେ ଯଦି ନ କରେ, ତେବେ ଗ୍ରାମ ସମୁଦାୟର ଚାଷାବାଦ କାର୍ଯ୍ୟ ହୋଇ ପାରିବ ନାହିଁ । ଏ ହେତୁ ଗ୍ରାମର ପ୍ରତ୍ୟେକ ପରିବାରର ପୁଣ୍ୟାତ୍ମା ଅଭିଭାବକ-ଶ୍ରେଣୀସ୍ଥ ବ୍ୟକ୍ତିମାନେ ଏକତ୍ରେ ଗ୍ରାମ୍ୟ ସମସ୍ତ ଲୋକଙ୍କୁ ଗୋଟିଏ ନୈତିକ ପରିବାରରୂପେ କର୍ତ୍ତବ୍ୟକର୍ମାଦି ସମ୍ବନ୍ଧରେ ଜ୍ଞାନ କରିବା ଉଚିତ । ପ୍ରତ୍ୟେକ ପରିବାର ପରସ୍ପରରେ ଅନ୍ୟାନ୍ୟ ସମସ୍ତ ପରିବାର ପ୍ରତି ପରନ୍ତୁ ପ୍ରତ୍ୟେକ ବ୍ୟକ୍ତି ପରସ୍ପର ପରସ୍ପର ପ୍ରତି ସମସହାନୁଭୂତି ଓ ସମବେଦନା ଦେଖାଇ ସ୍ନେହଶ୍ରଦ୍ଧାଦିଯୁକ୍ତ ଏକତା ସୂତ୍ରରେ ଆବଦ୍ଧ ରହି ଗ୍ରାମ୍ୟ କଳେବରଟିକୁ ସୁଖଶାନ୍ତି ଓ ସ୍ୱଚ୍ଛନ୍ଦାଦିରେ ସ୍ୱାସ୍ଥ୍ୟବାନ ଓ ପବିତ୍ର କରି ରଖିବା ବିଧେୟ ଅଟେ ।

ପ୍ରତ୍ୟେକ ପରିବାରର ପୁଣ୍ୟାତ୍ମା ଅଭିଭାବକମାନେ ଜାତିଗୁଣକର୍ମାଦିକୁ ବିଶ୍ରାମ ଦେଇ ସମସ୍ତେ ଏକତ୍ର ହୋଇ ଏକ ସଭାର ଅଧିବେଶନ କରୁଥିବା ଉଚିତ । ସେହି ପବିତ୍ର ଦେବୋପମ ସୁଧର୍ମା ସଭାରେ ସମସ୍ତ ଅଭିଭାବକବୃନ୍ଦ ଆପଣା ଆପଣା ମଧ୍ୟରୁ ସାମ୍ୟ, ମୈତ୍ରୀ, ସ୍ୱାଧୀନତା, ଜ୍ଞାନ, ଧର୍ମାଦି ନ୍ୟାୟମନ୍ତ୍ରରେ ସିଦ୍ଧିଲାଭ କରିଥିବାଭଳି ମୁକ୍ତାତ୍ମାମାନଙ୍କୁ (ପୁଣ୍ୟାତ୍ମା, ମୁକ୍ତାତ୍ମା, ମହାତ୍ମା ଓ ପରମାତ୍ମାର ଲକ୍ଷଣକୁ ପରିବାରସ୍ଥ ବ୍ୟବହାର ପ୍ରବନ୍ଧରୁ ଦେଖି ସ୍ମରଣ କରିବା ଉଚିତ ) ସେହି ସଭାର ପ୍ରଧାନ ପ୍ରଧାନ ସଭ୍ୟରୂପେ ଏକମତରେ ବରଣକରି ସକଳ ବିଷୟ ସୁବିଚାରର ଭାର ସେହିମାନଙ୍କଠାରେ ନ୍ୟସ୍ତ କରିଦେବେ; ଅଭ ସେମାନଙ୍କର କାର୍ଯ୍ୟପ୍ରଣାଳୀ ଓ ମୀମାଂସାଦିକୁ ସମସ୍ତେ ନିଜ ନିଜ ସୁବିଧାନୁଯାୟୀ ଲକ୍ଷ୍ୟ କରୁଥିବେ । ଆଉ ମଧ୍ୟ ମୁକ୍ତଭାବରେ ଆବଶ୍ୟକମତେ ମୀମାଂସାଦି ସମ୍ବନ୍ଧରେ ସମସ୍ତେ ନିଜ ନିଜର ସ୍ୱାଧୀନ ମତ ଧର୍ମନ୍ୟାୟସଙ୍ଗତପ୍ରକାରରେ ବ୍ୟକ୍ତ କରିବାର ଅଧିକାରୀ ବୋଲି ସେହି ସଭାର ନିୟମ ହେବା ଉଚିତ । ଗ୍ରାମର ପ୍ରତ୍ୟେକ ଲୋକର ଅଭାବମୋଚନ ଏବଂ ସାଧାରଣ ଭାବରେ ଗ୍ରାମର ଅଭାବମୋଚନ-ବ୍ୟବସ୍ଥା ସଭାରେ କରଣୀୟ ।

ଏ ଅଭାବ ସାଧାରଣ ଅର୍ଥାନୁଯାୟୀ ଅଭାବ ସଂଜ୍ଞାର ଅନ୍ତର୍ଗତ ନୁହେ । ଏହି ନିର୍ଦ୍ଦିଷ୍ଟ ଅଭାବ ସାଧାରଣ ପ୍ରକାଶ୍ୟ ଅଭାବ ଘଟିବା ପୂର୍ବରୁ ତହିଁର ଆଦିକାରଣ ଓ ଉପାଦାନରୂପେ ସର୍ବପ୍ରଥମେ ଅଜ୍ଞାତ ସୂକ୍ଷ୍ମ ଆକାରରେ ଲୁଚି ଅଭାବକୁ ପ୍ରକାଶ କରିବା ଅପେକ୍ଷାରେ ଉଦୟ ହୁଏ । ପରେ ତାହା ଅଭାବଗ୍ରସ୍ତକୁ ଅଭାବ ଆକାରରେ କଷ୍ଟଦାନ କରେ, ଅଥଚ ସାଧାରଣର ଗୋଚର ହୋଇଯାଏ । ତେବେ ଏ ଅଭାବ କିପରି ? ମନେ କରାଯାଉ, ଗ୍ରାମର ଜଣେ ଅନ୍ୟର କୌଣସି ପଦାର୍ଥ ଚୋରିକରି ନେଲା । ବୁଝିବାକୁ ହେବ ଚୋରି କରିବା ଲୋକର ଧର୍ମଜ୍ଞାନ ଏବଂ ନୈତିକ ଜ୍ଞାନର ଅଭାବ ଅଛି; ଅର୍ଥାଭାବ ମଧ୍ୟ ତହିଁ ସଙ୍ଗେ ସଙ୍ଗେ ଲାଗି ରହିଅଛି । ଏପରି ପ୍ରଲୋଭନ-ପୂର୍ଣ୍ଣ ବିଳାସାଦି ଓ କୁସଙ୍ଗ ଦୋଷାଦିକୁ ମଧ୍ୟ ମୋହମୟ ଇଚ୍ଛାନୁସାରେ ବରଣ କରି କେତେକ ସ୍ଥଳରେ ସେହି ସେହି ଦୁଷ୍ପ୍ରବୃତ୍ତିବଶରେ ଅଗ୍ନିରେ ପତଙ୍ଗ ପଡ଼ିଲାପରି କେତେକ ପ୍ରକାର ଅଭାବର ଉପାଦାନ କାରଣାଦିକୁ ଧରିଆଣି ବଳପୂର୍ବକ ଆଲିଙ୍ଗନ କରିବା ଦେଖାଯାଇଥାଏ । ଏ ସ୍ଥଳେ ଚୌର୍ଯ୍ୟାପରାଧୀଙ୍କ ପକ୍ଷରେ ଧର୍ମଜ୍ଞାନ ଓ ନୈତିକ ଜ୍ଞାନର ଅଭାବ, ଅର୍ଥାଭାବ ଏବଂ ମୋହାଦି ଦ୍ୱାରା ଅନାବଶ୍ୟକ ଅଭାବକୁ ବରଣ କରିବାର ଯେଉଁ ବିଳାସପ୍ରିୟ ଅଭାବ— ଏହି ତିନଗୋଟି ସ୍ଥୂଳତଃ ମୁଖ୍ୟ ବା ପ୍ରକୃତ ଅଭାବ, ଆଉ ଚୌର୍ଯ୍ୟାପରାଧଟି ଏହି କାରଣ-ତ୍ରୟଯୋଗୁଁ ସଂଘଟିତ ହେଉଥିବାରୁ ଏହା ଗୌଣ ବା ବିକୃତ ଅଭାବ ଅଟେ ।

ପ୍ରକୃତ ଅଭାବ ଥିଲେ ବିକୃତ ଅଭାବଟିର ଉଦ୍ଭବ ହୁଅନ୍ତା ନାହିଁ । ଅପଥ୍ୟ ଦୋଷରୁ ସିନା ରୋଗ, ଅପଥ୍ୟ ନିବାରଣ କରିବାର ପ୍ରଥା ବିଦ୍ୟମାନ ଥିଲେ ରୋଗ କୁଆଡ଼ୁ ଆସନ୍ତା ? ତେବେ ରୋଗ ସିନା ବୈଦ୍ୟ ପରେ ଜାଣିବ, ଆଉ ବି ଚିକିତ୍ସା କରିବ, ମାତ୍ର ରୋଗ କାରଣ ଅପଥ୍ୟ ଦୋଷକୁ ଧରିବ କିଏ ? ଚୋରି କଲେ ସିନା କଚେରୀରେ ପରେ ବିଚାର ହେବ, କିନ୍ତୁ ଚୋରିର କାରଣଗୁଡ଼ିକ ଧରି ମୂଳରୁ ଶିକ୍ଷା ଦିଆଯିବା ପରି ସେହି କାରଣଗୁଡ଼ିକୁ ନାଶ କରିବାର ଚେଷ୍ଟା କରିବ କିଏ ? ଜାଣିବା ସୁଯୋଗ ଆଉ କର୍ତ୍ତବ୍ୟ କାହାର ? ଏଥିପାଇଁ ତହିଁକି ଗ୍ରାମ୍ୟ ସୁଧର୍ମାସଭାର ମୁଖ୍ୟତମ ସଭ୍ୟ ସେହି ମୁକ୍ତାତ୍ମା ସାଧୁପୁରୁଷମାନେହିଁ ଉପଯୁକ୍ତ । ଏଭଳି ଉପଯୋଗିତା ଯାହାଙ୍କ-ଠାରେ, ସମୁଦାୟ ଶେଷ ବିଚାର ମଧ୍ୟ ସେହିଠାରେ ହେବା ଉଚିତ । ଦୋଷୀର ଦୋଷରୂପ ମଳସଞ୍ଚୟର କାରଣ ନ ବୁଝି ଅଥଚ ସେହି କାରଣକୁ ମୂଳରୁ ନିବାରଣ କରାଇବାର ବ୍ୟବସ୍ଥା ପ୍ରଚଳନ କରି ପରେ ଚୋରି କଲାବୋଲି ଧରିନେଇ ଅର୍ଥଦଣ୍ଡ ବାବଦ ଟଙ୍କା-ବୁଜୁଳିଟିକୁ କାଖରେ ଜାକି ଧୀରେ ଧୀରେ ବଗ ମାଛ ଥଣ୍ଟରେ ଧରି ଚମ୍ପଟ ଦେଲାପରି ଖସିଗଲେ କଣ ହେଲା ? ଚୋର ସିନା ଚୋରି କରି ଧରାପଡ଼ିଲେ ଅର୍ଥହାନି ଘଟିବା ସମ୍ଭାବନାକୁ କେବଳ ଭୟ କଲା, ଆଉ ଚୋରି କରିବାର କାରଣଗୁଡ଼ିକ ତାହାଠାରୁ ଅପସାରିତ ହୋଇ ସେ ନିର୍ଦ୍ଦୋଷ ନିର୍ମଳ ହୃଦୟକୁ ତ ଲାଭ କରି ପାରିଲାନାହିଁ । ତାହାର ଅଜ୍ଞତା, ଅନୈତିକତା, ଅର୍ଥାଭାବ, ବିଳାସହ୍ଲାଗ ରୁ ସେ ଶିକ୍ଷା କରିପାରିଲା ନାହିଁ ।

ହୃଦୟ ନିର୍ମଳ ନ ହୋଇ ହୃଦ୍‌ଗତ ଅଜ୍ଞତା ଦୋଷଗୁଡ଼ିକ ଜୀବିତ ରହିଲେ ପୁଣି ତହିଁ ସଙ୍ଗେ ଆଉ ଗୋଟିଏ ଭୟଦୋଷ ଯୋଗ ହେଲା । ଏହିପରି ସବୁ ଦୋଷଯାକ ସଂଘବଦ୍ଧ ହୋଇ ମନୁଷ୍ୟକୁ ଶିଖାଇଲେ—ଏଥର ଆଗକୁ ଯେଉଁ ଚୋରି କରାଯିବ ତାହା ଜଣା ନ ଯିବା କି ଧରା ନ ପଡ଼ିବାଭଳି ଉପାୟ ବା ସାବଧାନତା ଅବଲମ୍ବନ ପୂର୍ବକ ଭଲରୂପେ ବଡ଼ ଚୋରି କରିବାକୁ ହେବ । ଏଥର ଉଦାହରଣ ସ୍ୱରୂପ କେତେକ ବଡ଼ ବଡ଼ ଚୋରଙ୍କୁ କହିବାକୁ ହୋଇଥାଏ ଶ୍ରୀ ଅଙ୍ଗବିରେ ଶ୍ରୀଘର ଲାଭ ହେବା ବରଂ ଭଲ । ଏ ପାପର କାରଣ କିଏ ? ଏବଂ କିଏ ? ରେ କଳିତାମସ ପ୍ରବୃତ୍ତି ! ତୋହର ପ୍ରବର୍ତ୍ତନାର ଦାୟିତ୍ୱ ସ୍ୱୀକାର କରି ଲୋଭର ଅଧୀନ ହୋଇ ସମସ୍ତେ ନିଜ ନିଜ ଲାଭର ପନ୍ଥା ପରିଷ୍କାର କରିବାରେ ବ୍ୟସ୍ତ, ଆଉ ମୁଖ୍ୟ ଦୋଷଗୁଡ଼ିକ ମୂଳରୁ ପରିଷ୍କାର କରିବାକୁ ପ୍ରୟାସ ପାଇବ କିଏ ? ତୁହି ପରିଷ୍କାର ନ ହେଲେ ସବୁହିଁ ଅପରିଷ୍କାର । ତେବେ ଉପଦେଶ ଦେଲାରୁ ତୁ ଯାହା ଓଲଟି ପଡ଼ି ବିଷାକ୍ତ ଫଣା ଦଂଶନରେ ଦଂଶନ କରୁଅଛୁ, ତାହାଇ ଚମତ୍କାର । ଏବେ ବିଷଦାନ୍ତ ଉପୁଡ଼ି ପଡ଼ିବା ବେଳ ହେଲାଣି, ତେବେ ସୁଦ୍ଧା ଫଁ ଫଁ ଶବ୍ଦ ଶୁଭୁନାହିଁ । 'ଧନ୍ୟ ତୋର ମାତା ପିତା, ଧନ୍ୟ ତୋ ବାନ୍ଧବ; ଧନ୍ୟ ତୋର ଦେଶବାସ ଧନ୍ୟ ତୋ ବିଭବ !'

ଏବେ ଗ୍ରାମ୍ୟ ସୁଧର୍ମାସଭାର ମୁକ୍ତାତ୍ମା ସଭ୍ୟମାନେ ଆମନ୍ତ୍ରିତ ହୋଇ ଗ୍ରାମ୍ୟ ବିଚାରପୀଠ ଅଳଂକୃତ କରନ୍ତୁ । ବିଚାରପୀଠରେ ସଭ୍ୟମାନେ ସମାସୀନ ହୋଇ ବିଚାର ଆରମ୍ଭ କରୁଅଛନ୍ତି । ଯଥା—ସମସ୍ତେ ଏକନିଷ୍ଠ ହୋଇ ପ୍ରଥମତଃ ଆତ୍ମାର ଉପାସନା ଆରମ୍ଭ କରି ମନେ ମନେ କହୁଅଛନ୍ତି—ଜ୍ଞାନ ସବୁ ବିଚାରଗୃହର ଦୀପସ୍ୱରୂପ । ଏହି ସଦସତ୍ ପ୍ରଭେଦବୋଧାତ୍ମକ ଜ୍ଞାନ ଆତ୍ମଧ୍ୟାନରୁ ଜାତ ହୁଏ । ଅତଏବ ଆଦ୍ୟରୁ ଆତ୍ମଧ୍ୟାନ କରିବା କୁହାଯାଉଅଛି । ଏହି ଆତ୍ମା ଦେହରୁ ପୃଥକ୍ ଏବଂ ଏହା ଶୂନ୍ୟାକାର । ମୃଣ୍ମୟ ଦେହକୁ ସ୍ପର୍ଶ କରି ଏହାକୁ ସଂସାରୀୟ କର୍ମରେ ଆଜୀବନାନ୍ତ ବ୍ୟାପୃତ ଥିବାର ଦେଖି ଦେଖି ଶେଷରେ ଏହି ମୃଣ୍ମୟ କଳେବରକୁ ମାଟିରେ ମିଶି ମାଟି ହେବାର ପଦାର୍ଥ ବୋଲି ମଣୁଅଛି । ଆଉ ଏହି ଜୀବିତକାଳ ମଧ୍ୟରେ ଏହି ଦେହକୁ ଭିକ୍ଷୁ, ଦରିଦ୍ର, ଧନୀ, ପଣ୍ଡିତ, ମୂର୍ଖ, ରଜା, ମହାରଜା, ମଣ୍ଡଳେଶ୍ୱର, ରଜାଧିରଜେଶ୍ୱର, ବିଶ୍ୱଚକ୍ରବର୍ତ୍ତୀ ବୋଲି ନାନାବିଧ ଲୋକ-କଳ୍ପନା-ପ୍ରସୂତ ଉପାଧିରେ ଭୂଷିତ ହୋଇଥିବାର ଦେଖୁଅଛି । ପୁଣି ସେହି ସେହି ଉପାଧି ଅନୁସାରେ କେତେ କେତେ ପ୍ରକାରର ଦୈନ୍ୟ-କାତର-ପ୍ରାର୍ଥନା, ଗର୍ବାଡ଼ମ୍ବର କାର୍ଯ୍ୟ, ଆକାଶଫଟା-ନାଦବିଶିଷ୍ଟ ବିଦ୍ୟାଚର୍ଚ୍ଚା, ଗାଲୁଆ ହୁଣ୍ଡାପଣିଆ, ରଜ୍ୟ ଓଲଟପାଲଟ କରି ରଜ୍ୟଟାକୁ ଚକୁଳିପିଠା ପରି ଓଲଟାଇ ଦେବାର କଡ଼ା ହୁକୁମଜାରି, ପରରଜ୍ୟାପହରଣ ନିମିତ୍ତ ସେନାବାହିନୀ ପ୍ରେରଣର ଧୂମଧାମ, ଏବଂ ସଂସାରରେ ମୁଁ ଏକାଙ୍ଗଚକ୍ରବର୍ତ୍ତୀ, ମୋ ପରି ଦ୍ୱିତୀୟ କେହି ନାହିଁ ବୋଲି ଗର୍ବରେ ଆଠଖଣ୍ଡ ହେଉଥିବା ଇତ୍ୟାଦି ଇତ୍ୟାଦି ନଗୃକୁଦା ଦେଖି ଦେଖି ଶେଷରେ ଦେହ ଗଲା ମାଟିରେ, ଗର୍ବ ଆଡ଼ମ୍ବର ଗଲା ଚୁଲିରେ; ଅବଶିଷ୍ଟ ରହିଲେ

ଦ୍ରଷ୍ଟାରୂପକଦେହୀ ସେହି ଆତ୍ମା । ଏହି ଆତ୍ମା ଦେହ ଧରି ଏତେ ଏତେ ପ୍ରକାରରେ ନୃତ୍ୟଗୀତ କରୁଥିଲାବେଳେ ଯେପରି ଶୂନ୍ୟାକାର, ଦେହକୁ ଛୁଇଁବା ପୂର୍ବରୁ ଯେପରି ଶୂନ୍ୟାକାର ବିଶିଷ୍ଟ ଅଛନ୍ତି, ଅର୍ଥାତ୍ ଏହି ଆତ୍ମା ସର୍ବଦା ଏକ ଶୂନ୍ୟାକାର ଓ ଅବିଦ୍ୟା-କାଶରେ ସଦା ବିରାଜମାନ ଅଛନ୍ତି । ଏହି ଆତ୍ମାର ସଂସାରୀୟ ଜୀବୋପାଧି ମହାକାଶର ଘଟାକାଶ ମଠାକାଶାଦି ଉପାଧିପରି ବ୍ୟାବହାରିକ କଳ୍ପିତ ଉପାଧି ଅଟେ । ଅତଏବ ଏହି କଳ୍ପନାପ୍ରସୂତ ଉପାଧିପୂର୍ଣ୍ଣ ସଂସାରରେ ବିମୋହିତ ନ ହୋଇ ଏଥିରେ ଏପରି କାର୍ଯ୍ୟ କରିବା ଉଚିତ ଯାହା ଐହିକ ସୁଖଶାନ୍ତି ଓ ଜ୍ଞାନର ଅନୁକୂଳ ହେବ, ଏବଂ ପରେ ଆତ୍ମଜ୍ଞାନ ଦୃଢ଼ କରି ଆତ୍ମ ସଂପ୍ରତିଷ୍ଠାନର କାରଣ ହେବ । ଏବେ ସଭାର କାର୍ଯ୍ୟ ଏହି ଆତ୍ମଜ୍ଞାନ ଧର୍ମ ମଧ୍ୟରେ ଆରମ୍ଭ କରାଯାଉ ।

ଗ୍ରାମ୍ୟ-ଜୀବନ ଜ୍ଞାନ-ଧର୍ମ, ନ୍ୟାୟ ଏବଂ ସମସ୍ତ ପ୍ରକାର ନୈତିକାକାରରେ ଗଠିତ ହେବା ବାଞ୍ଛନୀୟ । ସେଥିପାଇଁ ଏହି ସବୁ ଜ୍ଞାନ ଧର୍ମାଦିର ଚର୍ଚ୍ଚା ଓ ସାଧନ ଉତ୍ତରୋତ୍ତର ଉନ୍ନତ କରିବାପାଇଁ ଗ୍ରାମରେ ଗୋଟିଏ ଧର୍ମସଭାଳୟ ସଂସ୍ଥାପିତ ହେବା ଏକାନ୍ତ ଆବଶ୍ୟକ । ଯେଉଁଠାରେ ପ୍ରତିଦିନ ସନ୍ଧ୍ୟାପରେ ସାଧାରଣର କାର୍ଯ୍ୟ ବନ୍ଦ ହେବାରୁ ସମସ୍ତଙ୍କ ଅବସରବେଳରେ ଉପରନିର୍ଦ୍ଦିଷ୍ଟ ଗ୍ରାମୀୟ ମୁକ୍ତାତ୍ମା ସାଧୁପୁରୁଷ ଓ ଅନ୍ୟାନ୍ୟ ସାଧାରଣ ଏକତ୍ର ହୋଇ ପ୍ରଥମେ ଉପରୋକ୍ତ ଆତ୍ମଗୀତା ଗାଥାଟିକୁ ଅନ୍ତତଃ ସ୍ମରଣ କରି ଆତ୍ମଧ୍ୟାନ କରିବେ । ତଦ୍ଦ୍ୱାରା ଆତ୍ମଶୁଦ୍ଧି, ବାକ୍‌ଶୁଦ୍ଧି, ଅନ୍ତଃଶୁଦ୍ଧି, ବାହ୍ୟଶୁଦ୍ଧ୍ୟାଦି ସାଙ୍ଗ କଲାପରି ଆତ୍ମାର ଏହି ସ୍ୱାଭାବିକ ଧର୍ମ ଅଛି ଯେ ତାହାଙ୍କ ସଙ୍ଗେ ସଙ୍ଗେ ଆତ୍ମଦେବ ଧର୍ମଜ୍ଞାନ-ନ୍ୟାୟ-ସତ୍ୟାଦିସମ୍ମତ କର୍ତ୍ତବ୍ୟପରାୟଣତା ଦିଗରେ ଉନ୍ମୁଖୀନ ହେବେ । ତାହାଙ୍କ ଉତ୍ତାରୁ ସଭାକାର୍ଯ୍ୟ ଆରବ୍ଧ ହେବ । ସଭାରେ ସତ୍ୟ, ନ୍ୟାୟ, ଧର୍ମଜ୍ଞାନ ଓ ସଦ୍‌ବିଚାରାଦିର ଉପଯୋଗୀ ସତ୍‌କର୍ମାଦି ସମ୍ବନ୍ଧେ ମାନବୀୟ ଚରିତ୍ରଗଠନମୂଳକ ଶାସ୍ତ୍ର ଓ ବିଦ୍ୟା ବା ଉପଦେଶାଦିର ପ୍ରଚାର କରାଯିବ । ଦାଣ୍ଡକୁ ବାହାରିଲା ଭଳି କୌଣସି କାର୍ଯ୍ୟ ସେ ଦିନ ମଧ୍ୟରେ ଗ୍ରାମ୍ୟ ପରିବାରୀୟ କୌଣସି ଲୋକ କରିଥିଲେ ତାହା ସଭାରେ ଆଲୋଚିତ ହେବ । ବାଦୀ, ପ୍ରତିବାଦୀ ଓ ସାକ୍ଷୀ ପ୍ରଭୃତି ସମସ୍ତେ ଉପରୋକ୍ତ ଆତ୍ମଗୀତାର ମର୍ମ ବୁଝି ଆପଣା ଆପଣାର ଆତ୍ମଶୁଦ୍ଧି କରିବେ । ତାହାଙ୍କ ସତ୍ୟପ୍ରତିଜ୍ଞା ମନ୍ତ୍ରପାଠର କାର୍ଯ୍ୟ କରିବ । ଆଉ ଖାଲି ଧର୍ମକୁ ଆଖିମିଟିକା ମାରିଲାପରି କେବଳ ମୌଖିକ ଦୁଇ କଥା ପ୍ରତିଜ୍ଞା-ବାକ୍ୟ ଆକାରରେ କହିଦେଇ ବିଷୟଘଟିତ କଥା କହିଲାବେଳକୁ ପାପକୁ ଲୁଚାଇରଖି ବାକ୍‌ଚାତୁରୀ ସହକାରେ ଯଥେଚ୍ଛା ଗାନ କରିବା ଧର୍ମ ନୁହେଁ । ତଦ୍ଦ୍ୱାରା ଧର୍ମତଃ ନିଜ ଆତ୍ମାକୁ ପ୍ରବଞ୍ଚନା କରି କଳଙ୍କିତ କରିବାକୁ ହୁଏ । ଆଉ ଧର୍ମଦ୍ୱାରରେ ସୂର୍ଯ୍ୟଚନ୍ଦ୍ରକୁ କିରଣସହିତ କୂଳରେ ଯୋଡ଼ାଇ ଲୁଚାଇ ରଖିଲାପରି ବ୍ୟବସ୍ଥା ହୁଏ ।

ଆଜିର ଦୁର୍ଦ୍ଦିନ ଏହିପରି । ଯେଉଁ ପରିବାରର ଲୋକଟି ଅଭିଯୁକ୍ତ ହୁଏ ସେହି ପରିବାର ପରିବାରୀୟ ଧର୍ମାନୁସାରେ ଯଦି ଆପଣା ଘରର ଜଣକୁ ସତ୍‌ପଥକୁ ଆଣି

ନ ପାରନ୍ତି, ଅଥବା ଅନ୍ୟାୟ ବିଷୟଟିକୁ ବାଦିସହିତ ରଫା କରି ନ ପାରି ଗ୍ରାମ୍ୟ ବିଗ୍ରହପୁରି ସାହାଯ୍ୟ ନେବା ପର୍ଯ୍ୟନ୍ତ କଥା ହୁଏ, ତେବେ ସେ ପରିବାରଟି ଗ୍ରାମରେ ନିନ୍ଦାଭାଜନ ବୋଲି ବିବେଚିତ ହେବ ସନ୍ଦେହ ନାହିଁ । ଯାହାହେଉ ଏବେ ଗ୍ରାମ୍ୟସଭାର ବିଚାର ଆରମ୍ଭ ହେଲା । ପକ୍ଷମାନେ ଓ ସାକ୍ଷୀମାନେ ଉଲ୍ଲିଖିତ ପ୍ରସ୍ତାବାନୁଯାୟୀ ସତ୍ୟ କଥାଗୁଡ଼ିକ ଅବିକଳ ସତ୍ୟାକାରରେ ପ୍ରକାଶ କଲାରୁ ମୁକ୍ତାତ୍ମାମାନେ ମୁକ୍ତଭାବରେ ମୀମାଂସାରେ ଉପନୀତ ହେବେ । ସେହି ବିଚାରମୀମାଂସାବାଦ ଏପରି ଆକାରରେ ହେବ, ଯାହା କାହାରି ମୁଣ୍ଡ କାଟିବା, ଆଖି ତାଡ଼ିଦେବା, ଅଥବା କାହାରି ଘର ଖାଲି କରି ପକାଇଲାଭଳି କଠୋର ବା ଉଦ୍‌ବେଗପ୍ରଦ ନ ହେବ; ଆଉ ବିଚାରକ, ଦର୍ଶକ, ପକ୍ଷ ଏବଂ ସାକ୍ଷୀମାନେ ସମସ୍ତେ ସନ୍ତୁଷ୍ଟ ହେବେ; ଅଥଚ ସେହି ମୀମାଂସା ଅଭିଯୁକ୍ତ ବ୍ୟକ୍ତିର ଚରିତ୍ର ସଂଶୋଧନ କରିବ । ଆଉ ମଧ୍ୟ ଯେପରିକି ଉକ୍ତ ବ୍ୟକ୍ତି ନ୍ୟାୟକୁ ଏବଂ ନିଜ ଦୋଷକୁ ସମ୍ପୂର୍ଣ୍ଣ ହୃଦୟଙ୍ଗମ କରି ସେହିକ୍ଷଣରେ ମନ୍ଦ ତ୍ୟାଗ କରିବାକୁ ଦୃଢ଼ପ୍ରତିଜ୍ଞ ହେବ ।

ଏହିପରି ପ୍ରତିଦିନ ଧର୍ମସଭାର ଅଧିବେଶନ ହେବାଦ୍ୱାରା ଗ୍ରାମ୍ୟ କଳେବର ଦିନକୁ ଦିନ ଉତ୍ତରୋତ୍ତର ଧର୍ମ, ନ୍ୟାୟ, ଜ୍ଞାନ, ସତ୍ୟାଦି ଆଲୋକରେ ଆଲୋକିତ ଏବଂ ଜ୍ୟୋତିର୍ମୟ ହେଉଥିବ; ଅଥଚ ଦିନ ଦିନକର ଦୋଷ-କଳଙ୍କ ସେହି ଦିନର ରାତି ମଧ୍ୟରେ ଧର୍ମସଭାଦ୍ୱାରା ନ୍ୟାୟସତ୍ୟାଦି ଗଙ୍ଗାଜଳରେ ଧୌତ ହୋଇଯାଇ ଗ୍ରାମ୍ୟ କଳେବରକୁ ନିର୍ମଳ ଓ ପବିତ୍ର ହେବାକୁ ହେଉଥିବ । ରାତିରେ ସୁଖରେ ଭୋଜନ ଓ ପବିତ୍ରଭାବରେ ସୁନିଦ୍ରା ହେଉଥିବ । ପାପବିଷ୍ଠା ବୋଳିହୋଇ ରହି ଖାଇବା, ଶୋଇବା କି ବସିବା ବା ଉଠିବା ବଡ଼ ଘୃଣାର କଥା । ଯେଉଁ ଘଡ଼ିର ମଳ ସେହି ପରକ୍ଷଣରେ ଧୌତ ହୋଇ ଯାଉଥିବ, ଆଜିର କଳଙ୍କ ଗନ୍ତିକ ଦେହରେ ଥାଇ କାଲିକୁ ବେଶି ଜୋରରେ ଲାଗି ରହିବାକୁ ଚେଷ୍ଟା କରେ । ଅତଏବ ଦୈନନ୍ଦିନ ଧର୍ମସଭାର ବୈଠକ ଏକାନ୍ତ ପ୍ରୟୋଜନ; ଦୋଷ ବା ବିଚାରକାର୍ଯ୍ୟ ନ ଥିଲେ କେବଳ ଧର୍ମଜ୍ଞାନାଦି ଚର୍ଚ୍ଚା ଓ ବିଦ୍ୟାଦି ଚର୍ଚ୍ଚାରେ ସଭାଟି ପବିତ୍ର ହେଉଥିବ । ଏହି ସଭାର ଆଦର୍ଶ ଏକତା, ମୈତ୍ରୀ, ସାମ୍ୟ, ସ୍ୱାଧୀନତା ଓ ପବିତ୍ରତାଦି ଗ୍ରାମ୍ୟ କଳେବରର ଅଙ୍ଗଭୂଷଣ ହେବ ।

ଉପରୋକ୍ତ ଗ୍ରାମ୍ୟ କଳେବର ଏବେ ଆତ୍ମଶୁଦ୍ଧି, ବାହ୍ୟାନ୍ତରଶୁଦ୍ଧି, ଆଚାର-ବ୍ୟବହାରଶୁଦ୍ଧି, ଜ୍ଞାନଶୁଦ୍ଧି ଓ ଚରିତ୍ରଶୁଦ୍ଧି ଲାଭ କରିସାରି ସାଧାରଣର ଅନ୍ୟାନ୍ୟ ମଙ୍ଗଳଘଟିତ ଓ ଲାଭଜନକ କାର୍ଯ୍ୟ ଆଡ଼କୁ ଅଗ୍ରସର ହେଉଥିବ । ଭାରତୀୟ ଗ୍ରାମ୍ୟ-କଳେବର ନାନାବିଧ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରେ ଅର୍ଥାତ୍ ଚାରି ଜାତି ଏବଂ ଛତିଶ ପାଟକରେ ବିଭକ୍ତ ହେଲେ ସୁଦ୍ଧା ଏକ ବୋଲି କଳେବର ଦୃଷ୍ଟିରେ ଧରାପଡିବ । ଅନ୍ୟତ୍ର ମଧ୍ୟ କାର୍ଯ୍ୟଭେଦରେ ଜାତିଭେଦ ଦୃଷ୍ଟ ହୁଏ । କଳେବର ଏକ ହେଲେ ସୁଦ୍ଧା ତାହା ନାନାପ୍ରକାର ଅବୟବାଦିରେ ସୁଶୋଭିତ ରହିବା ସ୍ୱାଭାବିକ । ଦେହର

କୌଣସି ଗୋଟିଏ ନଗଣ୍ୟ କ୍ଷୁଦ୍ର ଅବୟବ କୌଣସି କାରଣରୁ ପରିତ୍ୟକ୍ତ ହେଲେ ବା ରୋଗାଦିବଶତଃ ଦୂଷିତ ବା ଅକର୍ମଣ୍ୟ ହେଲେ ସମୁଦାୟ ଦେହଟିକୁ ଅଶୋଭନୀୟ ଏବଂ ଦୂଷଣୀୟ ଜ୍ଞାନ କରାଯାଇଥାଏ । ସେହିପରି ଗ୍ରାମ୍ୟ କଳେବରର ଅବୟବ ରୂପ କୌଣସି ଜାତି ବା ତଦ୍ରୂପ ଜାତିଭୁକ୍ତ କୌଣସି ଲୋକଟିକୁ ଏକାବେଳକେ ତ୍ୟାଗ କଲେ ଅଥବା ଅସ୍ପର୍ଶ ଦୋଷରେ ବା ଅନ୍ୟ କୌଣସି କାରଣରୁ ଅଲଗା କରିଦେଲେ କଳେବରଟି ଅଖଣ୍ଡ ଦୃଷ୍ଟିରେ ଅଙ୍ଗହୀନ ହେଲାପରି ଅଶୋଭନୀୟ, ଦୂଷଣୀୟ ଏବଂ ସେହି ଅଂଶରେ ଅକର୍ମଣ୍ୟ ବୋଲି ପ୍ରତିପନ୍ନ ହେବ । ସେହି ହେତୁରୁ ଗ୍ରାମ୍ୟ ଧର୍ମସଙ୍ଘ ଏ ସବୁପ୍ରକାର ଖଦଡ଼ିଆ ଦୋଷଗୁଡ଼ିକ ନିରାପତ୍ତିଜନକ ଭାବେ ସଂଶୋଧନ କରି ଦେଉଥିବା ଏକାନ୍ତ ବିଧେୟ ଅଟେ । ଧର୍ମ-ନ୍ୟାୟ ବିଜଡ଼ିତ ପ୍ରେମମୟ ଗଙ୍ଗାରେ ସବୁହିଁ ନିର୍ମଳ ହୁଏ, ଦୂଷିତାଙ୍ଗ ମାର୍ଜନାରେ ନିର୍ମଳ ହୁଏ, ଆଉ ଉତ୍କୃଷ୍ଟ ଅବୟବ ମଧ୍ୟ ମାର୍ଜନା ଶୂନ୍ୟାଦି ଅଭାବେ ଦୂଷିତ ହୁଏ । ଅତଏବ ଯେଉଁ ଅଖାଦ୍ୟ, ଅନାଚାର ଓ କୁବ୍ୟବହାରାଦି ଦୋଷରୁ ମନୁଷ୍ୟ ମନୁଷ୍ୟକୁ ଅସ୍ପୃଶ୍ୟ ବା ତ୍ୟାଜ୍ୟ ବୋଲି ମନେ କରେ, ସେ ସବୁ ଦୋଷଗୁଡ଼ିକ ପରିହାର କରାଇବାର ବ୍ୟବସ୍ଥା କରିଦେଇ ସୁନାରୂପାରୁ ମଇଳା ଛଡ଼ାଇ ମାଜିମୁଜି ସଫା କଲାପରି ଲୋକଟିକୁ ନିର୍ମଳ କରିଦେବା ଭଲ କଥା । ହାଣ୍ଡିଟିଏ ଢୋଲ ନ ବଜାଇଲେ ବା ବାଉଁଶଟିଏ ଶଙ୍ଖ ନ ଫୁଙ୍କିଲେ ଯଜ୍ଞକର୍ମ ସାଙ୍ଗ ହୋଇ ନ ପାରେ ।

ଏବେ ଗ୍ରାମର ସମସ୍ତେ ଏକତା ସୂତ୍ରରେ ଆବଦ୍ଧ ହୋଇ ସମୁଦାୟ ପ୍ରକାରର କର୍ମ ପୂର୍ତ୍ତିରୂପେ ସାଙ୍ଗ କରିବା ଉଚିତ । ଗ୍ରାମର କୃଷି ଅର୍ଥରେ, ସ୍ନାନ ପାନାଦି ନିମିତ୍ତ ସାଧାରଣ ମୁକ୍ତଭାବରେ କୂପ, ପୁଷ୍କରଣୀ, ଖାଲ ଯୋରି ନାଳ ଇତ୍ୟାଦି ଜଳସଂସ୍ଥାନ ପ୍ରସ୍ତୁତ ରହିଥିବା ନିତାନ୍ତ ପ୍ରୟୋଜନ । ଯଥା ସ୍ଥାନରେ ବନ୍ଧ, ହିଡ଼, ବାଡ଼ ପ୍ରଭୃତି ରହିବା ଆବଶ୍ୟକ । ଏପରି ଗୋଚାରଣାଦି ନିମିତ୍ତ, ଯାତ୍ରାପର୍ବ ମେଳା ମହୋତ୍ସବାଦି ନିମିତ୍ତ ଅନାବାଦି ପ୍ରକାରରେ ଯଥାପରିମିତ ଭୂମି ଗ୍ରାମରେ ରହିବା ଦରକାର । ବିଦ୍ୟାଳୟ, ଦେବାଳୟ, ଧର୍ମାଳୟ, ଚିକିତ୍ସାଳୟ ଓ ଉପାସନାଳୟାଦି ମଧ୍ୟ ଗ୍ରାମ୍ୟ କଳେବରର ମଣିରତ୍ନାଦି ବିଶିଷ୍ଟ ମନୋହର ଅଳଙ୍କାର ରୂପେ ଧାରଣ କରିଥିବା ସର୍ବବାଦୀସମ୍ମତ ଅଟେ । ବୃଦ୍ଧ, କାର୍ଯ୍ୟରେ ଅଶକ୍ତ, ରୁଗ୍ଣ ଅଥଚ ନିରାଶ୍ରୟ-ମାନଙ୍କ ସକାଶେ ଏବଂ ଅନ୍ୟାନ୍ୟ ଆବଶ୍ୟକୀୟ ଉନ୍ନତିକର ମଙ୍ଗଳଜନକ କାର୍ଯ୍ୟର ସହାୟତା ସକାଶେ ଗୋଟିଏ ଦାତବ୍ୟ ସାଧାରଣ ଧନଭଣ୍ଡାର ଧର୍ମସଙ୍ଘର ତତ୍ତ୍ୱାବ-ଧାନରେ ରହିଥିବା ଅଧିକ ପ୍ରୟୋଜନୀୟ କଥା ଅଟେ । ସଙ୍ଗରେ କେହି କିଛି ଧନ ଆଣିନାହିଁ ବା ସର୍ବଦା ମୁଣ୍ଡାଇ କରି ରହିନାହିଁ, ଅଥବା ସଙ୍ଗରେ ନେଇଯିବ ନାହିଁ । ସମସ୍ତ ଧନ ପାର୍ଥିବ ପଦାର୍ଥର ଅନ୍ତର୍ଗତ । ତାହାର ଭାର ବସୁନ୍ଧରା ସର୍ବଦା ବହନ କରିଅଛି, ଅଥଚ ପ୍ରଦାନ କରୁଅଛି । ଏହି ଦୃଷ୍ଟିରେ ଜାଗତିକ ଧନଧାନ୍ୟାଦି ବିଶିଷ୍ଟ ପୃଥିବୀ ସ୍ୱଭାବତ ପରମେଶ୍ୱରସୃଷ୍ଟ ଓ ଅଯାଚିତ ଦାନ ସ୍ୱରୂପ ଅଟେ । ଅତଏବ ଧନଧାନ୍ୟାଦି

ଯାହା ଯେତେ ଯେଉଁଠାରେ ସେଠାରେ ଥାଉ ପଛକେ, ତହିଁ ସମ୍ବନ୍ଧେ ମୋର, ତାହାର ବା ତୁମ୍ଭର ବୋଲି ନାନାବିଧ କୋଳାହଳପୂର୍ଣ୍ଣ ଦାବୀକୁ ପରମେଶ୍ୱର ସଂସାରର କୌତୁକଲୀଳାରବିବିଶେଷ ବୋଲି ପ୍ରେମଦୃଷ୍ଟିରେ ସ୍ଥିର କରିଯାଇ ତଦ୍ରୂପ ଧନାଦି-ସମୃଦ୍ଧ ଯେଉଁଠାରେ କ୍ଷୁଧା-ପିପାସାଦିର ଆର୍ତ୍ତନାଦ, ସେହି ସ୍ଥାନର ଯୋଗ୍ୟ ବୋଲି ବିବେଚିତ ହେବା ଉଚିତ । କ୍ଷୁଧା ପିପାସାଦି ଅଭାବ ପୂରଣ ପାଇଁ ଧନର ବ୍ୟବହାର ନ ହେଲେ ଆଉ ତାହା ଖାଲି ପରଠାରୁ ଆସି ଏକଠାବରେ ଆବଦ୍ଧ ରହି ବୃଦ୍ଧି ହେଉଥାଉ ବୋଲି ବ୍ୟବସ୍ଥା କରି ସାଧାରଣ ଉପକାରରୁ ଅଲଗା ରଖାଥିଲେ ହେ ସବୁ ଧନ ଯକ୍ଷର ବୋଲି ସେ ଦାବୀ କରିପାରେ; ଅଥବା ଜଠରାଗ୍ନିରେ ଆହୁତି ଦିଅ ନ ହେବାରୁ ଅଗ୍ନିଦେବ ବାହ୍ୟାକାରରେ ତୃଣକାଷ୍ଠାଦି ଆଶ୍ରୟ କରି କୁପିତ ହୋଇ ସେହି ବ୍ୟବହାର୍ଯ୍ୟ ପ୍ରକୃତିଦେବୀର ଦସ୍ତାର୍ଦ୍ଧ୍ୱଂଚିକ୍ଷୂଣ୍ଣକ ଧନାଦିକୁ ତାଙ୍କର ବୋଲି ଦାବି କରି ଦଖଲ କରିବା ନିମିତ୍ତ ଉଗ୍ରପ୍ରଚଣ୍ଡଭାବରେ ଆସି ଉପସ୍ଥିତ ହୋଇ ପାରନ୍ତି, କମ୍ବା ସ୍ୱେଚ୍ଛାଚାରୀ ଡକାଏତମାନେ ମଧ୍ୟ ତହିଁ ଉପରେ ନିଜ ନିଜର ଦାବୀକୁ ନିଜେ ନିଜେ ସାବ୍ୟସ୍ତ କରି ପାରନ୍ତି । ଶେଷରେ ପ୍ରକୃତ ଅଧୀଶ୍ୱରୀ ଧରଣୀ-ଦେବୀ ନିଜ ଭଣ୍ଡାରର ପାର୍ଥିବ ପଦାର୍ଥ ସମେତ ସମସ୍ତ ଧନାଦିକୁ ନିଜର କରି ଆପଣା ଅଙ୍ଗରେ ମିଶାଇ ଏକ ସମୟରେ ନିଶ୍ଚିହ୍ନ କରିଦେଇ ସମସ୍ତଙ୍କ ଦାବୀକୁ ଡିସ୍‌ମିସ୍ କରିପାରନ୍ତି । ଅତଏବ ଜଡ଼ ହେଲେ କଣ ହେବ ? ରେ ଧନ ! ତୋହର ଜ୍ଞାନୀ ଜୀବ ମନୁଷ୍ୟଠାରୁ ବେଶୀ ଜ୍ଞାନ ଥିବା ଜଣାଯାଏ । କାରଣ ତୁ ନିଜେ କାହାର ଦାବୀର ଅନ୍ତର୍ଗତ ବୋଲି ଆପଣାକୁ ଜାଣୁନାହୁଁ, ଅଥବା ଅନ୍ୟ କାହାକୁହିଁ କାହାର, ଏହାର ବା ତାହାର ବୋଲି ଜଣାଉ-ନାହୁଁ । ତୁ ବସୁମାତାଠାରୁ ଏହି ଆଚ୍ଛା ଭଲ ଦୀକ୍ଷା ଶିକ୍ଷା କରିଅଛୁ । ଅତଏବ ପ୍ରକୃତ କହିବାକୁ ଗଲେ ତୁ ସର୍ବସାଧାରଣର ରକ୍ଷଣ ପାଳନ ନିମିତ୍ତ ଭଗବତୀ ମହାଲକ୍ଷ୍ମୀଙ୍କର କୋଠଭଣ୍ଡାରର ଅଟୁ ।

ଗ୍ରାମ ମଧ୍ୟରେ ସୀମା ସରହଦ, ହିଡ଼ବାଡ଼, ଘର ଓ ଜମି ସମ୍ବନ୍ଧ ନେଇ ନାନା ମତଭେଦ ଓ ଚକବନ୍ଦ ଲାଗିଥାଏ । ସେ ସମସ୍ତ ସଙ୍ଗେ ସଙ୍ଗେ ସଦ୍‌ଭାବରେ ନିଷ୍ପତ୍ତି ହେଉ-ଥିବା ଉଚିତ । ସୀମା-ଲଙ୍ଘନ ସବୁପ୍ରକାରରେ ଦୋଷାବହ ଅଟେ । ପଶ୍ୱାଦିଦ୍ୱାରା କୃଷି ନଷ୍ଟ ନ ହେବା ପ୍ରତି ସମସ୍ତଙ୍କର ସମବାୟ ଚେଷ୍ଟା ଓ ମୀମାଂସା ସବୁବେଳେ ପ୍ରୟୋଜନୀୟ । କେହି କାହାର ଧନ, ମାନ, ସମ୍ପତ୍ତ୍ୟାଦି ସମ୍ବନ୍ଧେ, ଅଥବା ଶାରୀରିକ ସ୍ୱାସ୍ଥ୍ୟ ସୌନ୍ଦର୍ଯ୍ୟାଦି ସମ୍ବନ୍ଧେ ପରଶ୍ରୀକାତରତା ଧାରଣ କରିବା ଅନ୍ୟାୟ । କାହାର କୌଣସି ନିମିତ୍ତପର୍ବ, ମହୋତ୍ସବ, ମେଳା, ସଭାଭୋଜ୍ୟାଦି ସକାଶେ ଆୟୋଜନରେ ସାହାଯ୍ୟ ଦେବା ବଡ଼ ପୁଣ୍ୟଜନକ । ଆଉ ତହିଁରେ ଦ୍ୱେଷଭାବ ଦେଖାଇବା ପାପ କଥା । ଯେଉଁମାନେ ଏ ସବୁରେ ବିଗଡ଼ା କଥା ଗୁପ୍ତରେ ବା ପ୍ରକାଶ୍ୟରେ ଆଚରଣ କରନ୍ତି, ସେମାନେ ଅନ୍ତରକୁଷ୍ଠ ମହାରୋଗୀ ଅଟନ୍ତି । ଧନସମ୍ପତ୍ତ୍ୟାଦି ସମ୍ବନ୍ଧେ ବା ଯେ କୌଣସି ବ୍ୟବହାରରେ ପ୍ରତାରଣା, ଶଠତା, ଅସାରଲ୍ୟ, ମିଥ୍ୟା, ଛନ୍ଦ, ବାଦାଦି ପ୍ରୟୋଗ

କରିବା ଏକାନ୍ତ ନିଷିଦ୍ଧ । ଏଥିରେ ପରସ୍ପର ପ୍ରତି ବିଚ୍ଛେଦ ଘଟିଥାଏ । ଆପଦ ଅଥବା ଉତ୍ସବ ସମୟରେ ଗ୍ରାମ୍ୟ ଭାଇପ୍ରତି ସମବେଦନା ବା ସମପ୍ରେମ ଦେଖାଇ ଯଥୋପଯୁକ୍ତ ସାହାଯ୍ୟଦାନ କରିବା ଉଚିତ । ଗ୍ରାମ୍ୟ ସୌହାର୍ଦ୍ଦ୍ୟ ରକ୍ଷା ଗ୍ରାମ ନୈତିକଜୀବନର ଏକମାତ୍ର ଉପାଦାନସ୍ୱରୂପ ଅଟେ । ଶିକ୍ଷା ସବୁର ମୂଳ ।

ସଂସାର ମଧ୍ୟରେ କେଉଁ କେଉଁଠି କେତେ କେତେ ମନୁଷ୍ୟ ଅଛନ୍ତି; ଅଥଚ କିଏ କାହାକୁ ବା ଚିହ୍ନେ, ଆଉ କାହା ସଙ୍ଗେ କାହାର ବା କି ସମ୍ପର୍କ ? ମାତ୍ର ଏକ ଗ୍ରାମୀୟ ଭ୍ରାତାମାନଙ୍କ ମଧ୍ୟରେ ଏପରି କିଛି ଦୈବୀ ସମ୍ପର୍କ ଅଛି ଯେ ସମସ୍ତେ ସବୁବେଳେ ପରସ୍ପର ମୁହଁଚାହାଁଚାହିଁ, କଥାବାର୍ତ୍ତା, ଆଦରଗୌରବ, ହସକୁରୁଡ଼, ଖେଳକୌତୁକ, ହଁଆନଆଁ ଆଦି କେତେ କେତେ ପ୍ରକାରରେ କରାକରି ହେଉଅଛନ୍ତି । ଏଥିରେ ଦିନରାତି ଆନନ୍ଦଲହରୀରେ ଭାସିଯାଇ ଦିନଟା ଘଡ଼ିକପରି ଲାଗୁନାହିଁ । ଏହା ଅଭାବରେ ଗ୍ରାମ୍ୟ କଳେବରକୁ ବଡ଼ ଅଙ୍ଗବିଚ୍ଛେଦ କଷ୍ଟ ଭୋଗ କରିବାକୁ ହେଉଥାଆନ୍ତା । ଏଥିରୁ ଅନୁମିତ ହୁଏ, ସତେକି ଗ୍ରାମ୍ୟଭାଇମାନଙ୍କ ମଧ୍ୟରେ ବହୁ ବହୁ ଜନ୍ମାନ୍ତରରୁ ଏହିପରି ପ୍ରେମାନୁବନ୍ଧ ନିତ୍ୟସମ୍ପର୍କ ଲାଗି ରହିଅଛି; ଏହା ଦେଖି ଦେଖି ଦୈବଦତ୍ତ ଅମୃତଭାଣ୍ଡରେ ଗରଳ ମିଶାଇବାଭଳି ଅପ୍ରୀତିକର କାର୍ଯ୍ୟାନୁଷ୍ଠାନ ବା ସୂତ୍ରପାତ କେଡ଼େ ବଡ଼ ଦୈବଦଣ୍ଡଯୋଗ୍ୟ ପାପର ବିଷୟ ! ସଂସାର ପ୍ରୀତିମୂଳକ ପଦାର୍ଥ । ଏଥିରେ ଭାବମାତ୍ରହିଁ ପ୍ରେମରୂପେ, ଏବଂ ଧନାଦି ସେହି ପ୍ରେମର ଆଧାରରୂପରେ ବିଦ୍ୟମାନ । ଅତଏବ ଅମୃତ ତ୍ୟାଗ କରି ଖପରି ଚୋବାଇବା ମାନବର ଧର୍ମ ନୁହେଁ । ମ୍ଳେଚ୍ଛ ସମ୍ପ୍ରଦାୟର କଥା ସ୍ୱତନ୍ତ୍ର ।

ଅନୁତାପ ସହିତ ଶଙ୍କାବିରହିତ ନିର୍ମଳ ସ୍ଥାନକୁ ସଣଙ୍କ ଶବ୍ଦ "ଯନ୍ଦ"କୁ ଆହ୍ୱାନ କରାଯାଉଅଛି । ଗ୍ରାମ୍ୟ ଭ୍ରାତା ମଧ୍ୟରୁ କେହି ଜଣେ ଶିଖାଶିଖି ହୋଇ ଏକାଧିକ ବ୍ୟକ୍ତି ମାନଙ୍କୀୟ ଆତ୍ମଧର୍ମବିଧି ଉଲ୍ଲଙ୍ଘନ ପୂର୍ବକ ବିପରୀତାଚରଣ କରନ୍ତି, ଆଉ ଗ୍ରାମସ୍ଥ ଧର୍ମସଭାର ଧର୍ମଶାସନ ଓ ଧର୍ମୋପଦେଶ ପ୍ରତି ଅବହେଳା ପ୍ରଦର୍ଶନ କରନ୍ତି, ତେବେ ଗ୍ରାମ୍ୟସଭା ଗ୍ରାମ୍ୟ ସାଧାରଣଙ୍କ ସଙ୍ଗେ ମିଳି ଏକମତରେ ସେହି ବିପରୀତାଚାରୀଙ୍କ ସଙ୍ଗେ ମିଳାମିଶା, କଥୋପକଥନ, ଏବଂ ସବୁ ପ୍ରକାରର ବ୍ୟବହାରାଦି ବର୍ଜନ କରିବା ବିଧେୟ । ଅର୍ଥାତ୍ ଯଥାଶକ୍ତି ଅନୁସାରେ ଅସହଯୋଗ ମନ୍ତ୍ର ଦୀକ୍ଷା ପ୍ରୟୋଗ କରିବା କର୍ତ୍ତବ୍ୟ । ମନୁଷ୍ୟର ଆତ୍ମା କଦାଚ ମନ୍ଦ ଆଉର ନୁହେ । ପ୍ରଲୋଭନ, ଆଦର୍ଶ ବା ଅନୁକରଣ ଦୋଷରେ ସିନା ମନୁଷ୍ୟ ମନ୍ଦ ବାଟରେ ଗତିକରେ, ନତୁବା ମନୁଷ୍ୟ ସ୍ୱତଃ ମନ୍ଦ ନୁହେ ।

ଏହି ଗ୍ରାମୀୟ ଅସହଯୋଗ-ଦୀକ୍ଷାମୃତର ଆଦର୍ଶଦ୍ୱାରା ଅବଶ୍ୟ କଣିକାଏ ହେଲେ ସେବାକରି ଯେ କେହି ସଂଶୋଧିତ ହୋଇ ଯାଇପାରେ । ଏଥିରେ ଯଦି ରୋଗ ଶାନ୍ତି ନ ହୁଏ, ତେବେ ଗ୍ରାମ୍ୟସଭା ନିକଟାଞ୍ଚଳୀୟ ତଦ୍ରୂପ ସଭାମାନଙ୍କୁ ଏହି ସମ୍ବାଦ ଦେଇ ଅଞ୍ଚଳତମାମକୁ ସେହି ଅପବ୍ୟବହାରୀଙ୍କ ସହିତ ଅସହଯୋଗ କରିବାକୁ ଅନୁରୋଧ

କରିବେ । ମନୁଷ୍ୟ ମନୁଷ୍ୟସମାଜରୁ ଅଲଗା ହୋଇ କେତେକ୍ଷଣ ରହିପାରିବ ? ମନୁଷ୍ୟସମାଜରୁ ତଥା ସମାଜୋଚିତ ଅମୃତପାନରୁ ବଞ୍ଚିତ ହୋଇ ପଶୁତ୍ୱ ଆଶ୍ରୟ କରି ପଶୁସଙ୍ଗରେ କେତେଦିନ ଘାସକୁଟା ପାଗୁଳି କରି ରହିପାରିବ ? ସମସ୍ତ ଗ୍ରାମ୍ୟସଭା ଏକତ୍ରାଧିବେଶନ କରି ତାହାର ବ୍ୟବସ୍ଥା କରିଦେବେ । ଏପରେ ମନୁଷ୍ୟ ନିକୃଷ୍ଟ ପଶୁପରି ଶୂକର ସଙ୍ଗ କରି କେତେ ଦିନ ବିଷ୍ଠାଭୋଜୀ ହୋଇ ଚଳିପାରିବ ? ଶାନ୍ତି ଏହିଠାରେ ।

"ଯଦି" ଶବ୍ଦଟି ଉପରେ ଆହ୍ୱାନ କରାଗଲା କାହିଁକି ? ଆଜକାଲର କୁବ୍ୟବସ୍ଥା, କୁପ୍ରଥାଦିବଳରେ, ଅର୍ଥଗୃଧ୍ନୁତା, ବିଳାସିତା, ସ୍ୱେଚ୍ଛାଚାରିତାଦିର ପ୍ରଲୋଭନ ଘଡ଼ିରେ କୁସଙ୍ଗଦୋଷଜାତ ଆଦର୍ଶ ଓ ଅନୁକରଣାଦିର ଅନୈତିକ ଓ ଧର୍ମହୀନ କୁକ୍ଷଣରେ ମନୁଷ୍ୟର ଆଂଶିକ ମନ୍ଦଭାବ ଆରମ୍ଭରୁ ସଂଶୋଧିତ ନ ହୋଇ ପାରିପାର୍ଶ୍ୱିକ ଉତଥାଡ଼ର ଉପମା ଦେଇ କ୍ରମଶଃ ମନ୍ଦାତ୍ ମନ୍ଦତର ହେବାକୁ ପ୍ରଶ୍ରୟ ପାଉଅଛି । ସେହି ପାପ-ପ୍ରଶ୍ରୟର ହେତୁ ମୂର୍ତ୍ତିମାନ ହୋଇ ଏଠାରେ "ଯଦି" ଶବ୍ଦଟିକୁ ଆହ୍ୱାନ କରିଅଛି । ଗ୍ରନ୍ଥର ଦୋଷ କ୍ଷମାଯୋଗ୍ୟ ଅଟେ । ଏହି ପାପପ୍ରଶ୍ରୟ ମାନବୀୟ ପ୍ରକୃତିର ବିରୁଦ୍ଧ-ଭାବାପନ୍ନ ଥିବାରୁ ବର୍ତ୍ତମାନ ଏହା ଧରାପଡ଼ି ମୂଳସହିତ ଉତ୍ପାଟିତ ହେବାର ମାହେନ୍ଦ୍ର-ଯୋଗ ଉପସ୍ଥିତ ହୋଇ ସାରିଲାଣି । ମାତ୍ର ଅତିସୀମାକୁ ଉଠିଲେ ତାହା ସଂସାରରେ ଅତ୍ୟନ୍ତ ଗର୍ହିତ ହୋଇ ଉଠେ, ସୁତରାଂ ଏହି ଅଙ୍କମାନଙ୍କର ଯବନିକା ପତନ ଏହିଠାରେ ଓ ଏହିକ୍ଷଣରେ । ମଙ୍ଗଳମୟ ଭଗବାନ ହରି ସର୍ବତୋଭାବେ ମଙ୍ଗଳ ବିଧାନ କରନ୍ତୁ ।

## ୧୨୩ ପାଠ—ସାଧାରଣ ସଂସାର ବ୍ୟବହାର

ଶ୍ରୀ ପରମେଶ୍ୱରଙ୍କ ଆଶୀର୍ବାଦରୁ ଘରୁ ବାହାରି ଗ୍ରାମ୍ୟସୀମା ଅତିକ୍ରମ କରି ଅନଭ୍ୟସ୍ତ ଦୃଶ୍ୟ ସ୍ଥାନରେ ଆସି ପ୍ରବେଶହେବାକୁ ହେଉଅଛି । ଯେପରି ସେହି ଆଦି ଅଜ୍ଞାତ ଭୁବନରୁ ଆସି ଅଜ୍ଞାତ ମାତୃଗର୍ଭସଦନରେ ବିଶ୍ରାମ ଶେଷ କରି ଅଜ୍ଞାତ ଗୃହରେ ଅଜ୍ଞାତ ଜନସମାବେଶରେ ଉପସ୍ଥିତ ହେବାକୁ ପଡ଼ିଥିଲା, ଅଥଚ ଏହି ସବୁ ଅଜ୍ଞାତ ସ୍ଥାନରେ ଅଶକ୍ତ ଅବସ୍ଥାରେ, ଅଯାଚିତଭାବରେ ଲାଳିତପାଳିତ ହୋଇ ସୁଖସ୍ୱଚ୍ଛନ୍ଦରେ କାଳାତିପାତ ହୋଇ ଯାଇଥିଲା; ସେହିପରି ଏହି ଅଜ୍ଞାତ ସାଧାରଣ ଜନସମାଜ ମଧ୍ୟରେ ବିଦେଶପରି ସ୍ଥାନରେ ଉପସ୍ଥିତ ହେବାକୁ ପଡ଼ିଲା । ଏହି ସବୁ ସ୍ଥାନାନ୍ତରପ୍ରାପ୍ତି ମନୁଷ୍ୟ ପକ୍ଷରେ ପ୍ରକୃତିନିର୍ଦ୍ଦିଷ୍ଟ ନିୟମର ଅଧୀନ । ମହଦାକାଶ ଯେପରି ବିଶ୍ୱବ୍ରହ୍ମାଣ୍ଡ ଗୋଲକକୁ ଆଦରର ସହିତ ମୁକ୍ତଭାବରେ ସ୍ଥାନ ଗ୍ରହଣକରି ରହିବାକୁ ମୁକ୍ତାଧିକାର ପ୍ରଦାନ କରିଅଛି, ସେହିପରି ବିଶ୍ୱସଂସାର ମଧ୍ୟ ଆକାଶଠାରୁ ସେହି ମହାଦାନର ମାହାତ୍ମ୍ୟ ଶିକ୍ଷାକରି ପ୍ରାଣୀସମୂହକୁ ଆପଣା କୋଡ଼ରେ ମୁକ୍ତସ୍ଥାନାଧିକାର ଦେଇ କହୁଅଛି, 'ବାବା ମୋର ! ଆନନ୍ଦରେ ଏ ସଂସାର ମଧ୍ୟରେ ମୋହରି ଅସୀମ ଅନନ୍ତ ନାନାବିଧ

ଖାଦ୍ୟପେୟ ସମନ୍ୱିତ ଗ୍ରାମନଗରପୂର୍ଣ୍ଣ କ୍ରୋଡ଼ରେ ମୁକ୍ତଭାବେ ବିଚରଣ କରି, ଆହ୍ଲାଦରେ କ୍ରୀଡ଼ାକରି 'ବନ୍ଦେ ମାତରଂ' ମାତୃଗୀତା ଗାନ କରୁଥାଅ ।' ଆଦିମାତୃକା ଦେବୀର ଏହି ଆଶ୍ୱାସବାଣୀ ଶ୍ରବଣ କରି ଦେଖିଲିବେଳକୁ ସାଧାରଣ ଜନସମାଜରେ ଗୃହସ୍ଥ ପରିବାରଙ୍କ ପରି ଆସଙ୍ଗଲିପ୍ସା, ପରୋପଚିକର୍ଷା, ଦୟା, କ୍ଷମା, ସ୍ନେହାଦରି ଓ ସମବେଦନାନୁଭୂତି ପ୍ରଭୃତି ସଦ୍‌ଗୁଣମାନ ଭଗବତୀ କୃପାର ଚିହ୍ନସ୍ୱରୂପ ନିତ୍ୟନିର୍ଦ୍ଦିଷ୍ଟ ରହିଅଛି । କିଣ କରିବ ? କିପରି ରହିବ ? କିପରି ଚଳିବ ? ଏ ସବୁ ସାଂକେତିକ ପ୍ରଶ୍ନ-ଗୁଡ଼ିକ ଆପଣା ମନରେ ଉଦୟ ସଙ୍ଗେ ସଙ୍ଗେ ବିଲୀନ ହୋଇ ଯାଉଅଛନ୍ତି । ବିଶ୍ୱମାତୃକାର ସନ୍ତାନସନ୍ତତିଗଣ ମଧ୍ୟରେ ଆପଣାକୁ ସହୋଦର ଭାଇ ଭଉଣୀରୂପେ ଠିକ୍ ସେହିପରି ଭାବିନେବାକୁ ହେଲି । ଅଭାବ ଆଶଂକା ଭ୍ରମକଳ୍ପିତ ବୋଲି ଉତ୍ତମରୂପେ ଶିକ୍ଷା କରିବାକୁ ମିଳିଲି । ଆଉ ଚିନ୍ତା କେଉଁଠାରେ ?

ଆହୁରି ଅଧିକ ଏଠାରେ ଉପଲବ୍ଧି କରିବାକୁ ମିଳିଲି ଯେ ମୁଁ ଯେପରି ମୋର ଅଭାବ ପୂରଣର ଇଚ୍ଛା କରୁଅଛି, ଆଉ ପାରିପାର୍ଶ୍ୱିକମାନଙ୍କୁ ଯେପରି ତହିଁର ସହାୟକ ବୋଲି ଦେଖୁଅଛି, ସେହିପରି ମତେ ମଧ୍ୟ ସମସ୍ତଙ୍କ ପ୍ରତି ହେବାକୁ ହେବ । ମତେ ମଧ୍ୟ ସେହିପରି ସମସ୍ତେ ସେମାନଙ୍କ ଅଭାବମୋଚକ ବନ୍ଧୁ ବୋଲି ହୃଦୟରେ ବିଶ୍ୱାସ ସହିତ ବରଣ କରୁଅଛନ୍ତି । ଏ ଶିକ୍ଷା ମନୁଷ୍ୟ ସମାଜରେ ଯେପରି ବିସ୍ତାର ଲାଭ କରେ, ଏହି କାମନାରେ ବିଶ୍ୱସଂସାର ସ୍ୱୟଂ ମହାଦାନବ୍ରତ ସାଧନର ମହାଭଣ୍ଡାରରୂପେ ବିରାଜିତ ରହିଅଛି, ଆଉ କହୁଅଛି ମାନବସମାଜ ମୋଠାରୁ ଏହି ମହାପରୋପକାର ବ୍ରତ ଗ୍ରହଣ କରନ୍ତୁ । ଏହା ମୋହର ନିଜ ବିଦ୍ୟା ନୁହେ, ମୁଁ ଏ ମହାବିଦ୍ୟା ଆକାଶଠାରୁ ଶିଖିଅଛି, ସବୁବେଳେ ପୁନଃ ପୁନଃ ଶିକ୍ଷା କରୁଅଛି । ଏ ଶିକ୍ଷାର ବିରାମ ନାହିଁ । ତଥାପି ଅନାଦିକାଳରୁ ଏହା ଶିଖି ଶିଖି ମୋର ଶିକ୍ଷା ଶେଷ ହୋଇ ପାରିନାହିଁ । ଅସୀମ କାଳମଧ୍ୟରେ ବା ପରେ ମଧ୍ୟ ଏ ମହାଶିକ୍ଷା ଶେଷ ହେବାର ନୁହେ । ଏ ଶିକ୍ଷା କେବଳ ଶିକ୍ଷା ନୁହେ, ଏ ଶିକ୍ଷାନୁସାରେ ଦୀକ୍ଷିତ ହୋଇ ମୁଁ କାର୍ଯ୍ୟ କରୁଅଛି । ମୁଁ ସବୁବେଳେ ଜଳ, ଫଳ, ଖାଦ୍ୟ, ପରିଧେୟ ଓ ବାସଗୃହାଦି ଧାରଣ କରି ଅଯାଚିତ ଭାବରେ ପ୍ରାଣୀବର୍ଗକୁ ଦାନ କରୁଅଛି ଓ ତଦ୍ରୂପ ଗ୍ରହଣ କରିବାକୁ ସମସ୍ତଙ୍କୁ ମୁକ୍ତାଧିକାର ଦେଉଅଛି, ଅଥଚ କାହାରିଠାରୁ କିଛି ପ୍ରତିଗ୍ରହଣ କରୁନାହିଁ । ପ୍ରତିଗ୍ରହ ଆଶାରେ ଦାନ କଲେ ତହିଁରେ ଧର୍ମର ସ୍ଥାନ ନାହିଁ । ଆକାଶ ମୋତେ ଏହି ମୁକ୍ତାଧିକାର ପ୍ରଦାନର ଶିକ୍ଷା ଦେଇ କହୁଅଛି, ଏହା ତାହାର ନିଜ ବିଦ୍ୟା ନୁହେ । ସେ ସ୍ୱୟଂ ତାହାର ସ୍ରଷ୍ଟାଗୁରୁ ପରମେଶ୍ୱରଙ୍କଠାରୁ ଏହି ଧର୍ମ ଶିକ୍ଷା କରିଅଛି । ସେହି ହେତୁ ସେ ନିର୍ଲିପ୍ତ ଓ ଅସଙ୍ଗ ହୋଇ ବିଶ୍ୱବ୍ରହ୍ମାଣ୍ଡକୁ ପ୍ରାଣୀବର୍ଗ ସହିତ. ମୁକ୍ତସ୍ଥାନାଧିକାର ଦେଇଅଛି । ସ୍ଥାନାବରୋଧ-କତାଦି ଗୁଣ ତାଠାରେ ନାହିଁ । ସେ କୌଣସି ସ୍ଥାନ ଅଧିକାର କରେନାହିଁ, ବା କାହାକୁ କୌଣସି ପ୍ରକାରରେ କାହାରି ଅଧିକାରରୁ ବଞ୍ଚିତ କରିନାହିଁ, ବା କାହାରିଠାରୁ କିଛି ଭଡ଼ାଜାଗିପ୍ରୁ ପ୍ରାପ୍ୟ ଆଦାୟ କରୁନାହିଁ । ଅତଏବ ଏହି ଗୁରୁ, ପରମଗୁରୁ ଓ

ଓ ପରାପର ମହାଗୁରୁମାନଙ୍କୁ ଦଣ୍ଡବତ ପ୍ରଣାମ କରି ସେମାନଙ୍କ ଶିକ୍ଷା ଏକାନ୍ତ ପାଳନ କରିବା ଧର୍ମ ଅଟେ ।

ଏହି ସାଢତୃଖଣ୍ଡିଆ ମୃଣ୍ମୟ ଭବଗର୍ଭ ମଧ୍ୟରେ ଭଗବାନ୍ ପରମେଶ୍ୱର ଅମୃତ-ଭଣ୍ଡାର ଦାନ କରି ରଖିଦେଇଅଛନ୍ତି । ଏହାର ବ୍ୟବହାର ସାଧାରଣ ବାହ୍ୟ ସଂସାରରେ କରି ଜାଣିଲେ ମାନବସମାଜ ଗୋଟିଏ ମହାନ୍ ଅବିଭକ୍ତ ପରିବାରପରି ପରିଦୃଷ୍ଟ ହେବ । ବିନୟସହ ପ୍ରିୟବାକ୍ୟ, ନମ୍ରତା, ସରଳତା, ଅକାପଟ୍ୟ, ଅଶାଠ୍ୟ, ଅପ୍ରତାରଣା, ସୌହାର୍ଦ୍ଦ୍ୟ ଓ ସଂଯମାଦି ସଦ୍‌ଗୁଣମୟ ପବିତ୍ର ସାଧୁବ୍ୟବହାର ଇତ୍ୟାଦିକୁ ମହାବ୍ରତରୂପେ ହୃଦୟରେ ଧାରଣ କରି ସର୍ବଘଟରେ ହରିଙ୍କ ବିଶ୍ରାମସ୍ଥାନ ବୋଲି ନିଶ୍ଚୟକରଣ ପୂର୍ବକ ସ୍ୱୟଂ ସଂସାରପ୍ରତି ସଦାଚରଣପରାୟଣ ହେଲେ ସଂସାରସ୍ଥ ମାନବ ସାଧାରଣଠାରୁ ସହଜରେ ଦୟା, କ୍ଷମା, ଶ୍ରଦ୍ଧା, ସ୍ନେହ ଓ ପ୍ରୀତି ସମ୍ବଦାୟ ଅମୃତରସ ପାନ କରିବାକୁ ମିଳିବ । ଏହା ବିଶ୍ୱପ୍ରକୃତିର ଅଙ୍ଗୁଳିନିର୍ଦ୍ଦିଷ୍ଟ ନିୟମ । ଏଥିରେ ସଂସାରର ସାଧାରଣ ମାନବସମାଜ ପ୍ରେମର ଆଦାନପ୍ରଦାନରେ ପରିତୃପ୍ତ ହୋଇ ଆନନ୍ଦମୟ ହେବ । ହୃଦୟର ହିଂସା ତ୍ୟାଗ କରିବା ସାଧିଲେ ହିଂସ୍ର-ପଶୁ ମନୁଷ୍ୟର ସେବା ସାହଚର୍ଯ୍ୟାଦି କରିଥାଏ । ପୁରାଣଲିଖିତ ଏହି ଆର୍ଷବ୍ୟବହାର ଆଜି କାଳ୍ପନିକ ଆଖ୍ୟାୟିକାର ନାମ ଧାରଣ କରିଅଛି । ମାଟି ଦେହକୁ ଆତ୍ମା ବୋଲି କଳ୍ପନାକରି ସେହି କଳ୍ପନାକୁ ସତ୍ୟରେ ପରିଣତ କରିବା ଆଜି ଘୋର କଳି ଦୁର୍ଦ୍ଦିନର ବ୍ୟବସ୍ଥା । ତହିଁରୁ ମାନବ ମାନବର ପ୍ରତ୍ୟକ୍ଷ ପାର୍ଥକ୍ୟ ଦୃଢ଼ରୁ ଦୃଢ଼ ହେଉଅଛି । ସେଥିରୁ ଆତ୍ମମ୍ଭରିତା ଜାତ ହୋଇ ମନୁଷ୍ୟକୁ ସ୍ୱାର୍ଥାନ୍ଧ କରୁଅଛି । ଏହି ଅନ୍ଧ ପୁଣି ଜ୍ଞାନଶୂନ୍ୟ ହୋଇ ପ୍ରେମରତ୍ନମୟ ସଂସାରରେ ମୃଣ୍ମୟ ଧନକୁ ଦାବାଗ୍ନି ଦହଣି ଦହଣି କ୍ଷତବିକ୍ଷତ ଦେହରେ କ୍ରନ୍ଦନ କରୁଅଛି । ନିଜେ ଅଶାନ୍ତ ଭୋଗ କରିବାରୁ ସଂସାର ମଧ୍ୟରେ ପଶୁ ପରି ଯାହାକୁ ଦେଖୁଛି, ତାକୁ ଅର୍ଥଲୋଭରେ ଘମ୍ପୁଡ଼ାକାମୁଡ଼ା କରୁଅଛି, ଏଥିରେ ସଂସାରମୟ କୋଳାହଳର ସୃଷ୍ଟି ହେଉଅଛି । ଏହିପରି ପାର୍ଥିବ ଅର୍ଥ ଆତ୍ମପ୍ରାଣସର୍ବସ୍ୱ ହୋଇଅଛି । ଏହି ଅର୍ଥସଞ୍ଚୟନ ଆତ୍ମୋପାସନାରେ ପରିଣତ ହୋଇଅଛି । ଶିକ୍ଷାଦୀକ୍ଷା ବିଧିବ୍ୟବସ୍ଥାଦି ଏହି ଆଦର୍ଶରେ ଗଢ଼ାଯାଇ ମାନବସମାଜରେ ପ୍ରେତ-ତାଣ୍ଡବନୃତ୍ୟ ଲଗାଇ ଦେଇଅଛି । ପ୍ରେତାମିର ବଡ଼ ଶିଷ୍ୟ ବଡ଼ ହୋଇ ଉଚ୍ଚ ସ୍ଥାନାଧିକାର କରିଅଛି ।

ଏହା ଦେଖି ଆପଣା ଆପଣାକୁ ମୀତ ଜ୍ଞାନ କରୁଥିବା ପ୍ରାଣୀ ସେହି ଉଚ୍ଚାସନ-ତଳ-ରେଣୁ ମୁଣ୍ଡରେ ଲଗାଇ ଆପଣାକୁ ବଡ଼ କରି ଦେଖିବେ ବୋଲି ସେହି ଧୂଳିଧୂସରିତ ଆସନ ଆଡ଼କୁ ସେହି ପ୍ରେତାବତାର ଅପରୂପ ଦିଗକୁ କାତର ନୟନରେ ଚାହିଁ ରହି-ଅଛି । ଏହାହିଁ ବର୍ତ୍ତମାନ ସଂସାରର କୁଦୃଶ୍ୟ । ଏହି ଦୃଶ୍ୟ ପ୍ରକୃତ ଦୃଷ୍ଟିରେ ମଳକଳଙ୍କମୟ । ଏହାକୁ ନିର୍ମଳ କରିବା ମନୁଷ୍ୟର ଆନ୍ତରିକ ଇଚ୍ଛା ଜାତ ହେଲାଣି । ପରନ୍ତୁ ଏହି କୁଦୃଶ୍ୟକୁ ବିଶ୍ୱପ୍ରକୃତି ନିର୍ମୂଳ କରିବାକୁ ବସିଲାଣି ବୋଲି ଏହା ଉପଦେଶ-

ଜ୍ଞାନରେ ଉପଶାନ୍ତ ନ ହୋଇ ଅଧିକ ବଢ଼ୁଅଛି । ଖଣ୍ଡାଢାଲରେ, ବାରୁଦ ବର୍ଷାରେ କେହି ଉପବେଶନ କରିବାକୁ ଇଚ୍ଛା କରେ ନାହିଁ । ସେହି ହେତୁରୁ ସେଗୁଡ଼ାକ ସମସ୍ତେ ବର୍ଜନ କରନ୍ତୁ । ମାତ୍ର ଖଣ୍ଡା, ବାରୁଦଭାଣ୍ଡ ସେଥିରେ ବିରକ୍ତ ହୋଇ ବଳ ପ୍ରୟୋଗଦ୍ୱାରା ଲଞ୍ଛନା, ତାଡ଼ନାଦି ସହକାରେ ସହଯୋଗର ଚେଷ୍ଟା କଲେ କଣ ହେବ ? ଅସହଯୋଗୀ ହେବାକୁ ପ୍ରକୃତ ଶିକ୍ଷା ଦାନ କରୁଅଛି । ଏହା ମଧ୍ୟ ମୂଢ଼ତା ଜଣାଇ ଦେଉନାହିଁ । ତେବେ ଏହି ମୂଢ଼ତା ଏହା ବୋଲି ଭଗବତ୍‌ନିର୍ମିତ ସଂସାରରେ କପରି ତିଷ୍ଠିପାରେ ? ଏବେ ମାନବସମାଜ ଆତ୍ମଜ୍ଞାନ ସହକାରେ ଆତ୍ମଶୁଦ୍ଧି, ଅନ୍ତଃଶୁଦ୍ଧି ଓ ବାହ୍ୟଶୁଦ୍ଧି ଓ ବ୍ୟବହାରଶୁଦ୍ଧି ଇତ୍ୟାଦିରେ ସିଦ୍ଧିଲାଭ କରି ଭଗବତ୍ ପ୍ରକୃତିଦେବୀର ଆଶୀର୍ବାଦରୂପକ ଉପଦେଶାମୃତକୁ ଗ୍ରହଣ କଲେ ଅମଙ୍ଗଳ ବଦୂରିତ ହେବ । ସମୟ ହେଲାଣି ବୋଲି ଧର୍ମନ୍ୟାୟୋପଦେଶରେ ସଂସାରକାଶ ପ୍ରତିଧ୍ୱନିତ ହେଉଅଛି । ଦେହାତ୍ମ-ଭ୍ରମ ପରିହାରପୂର୍ବକ ଶୁଦ୍ଧାତ୍ମଜ୍ଞାନ-ସମ୍ପନ୍ନ ହୋଇ ମନୁଷ୍ୟ ଆତ୍ମଭାବେ ପରସ୍ପର ପ୍ରତି ପ୍ରୀତିପୂର୍ଣ୍ଣ ବ୍ୟବହାର କରି ଆପଣା ଆପଣା ମଧ୍ୟରେ କୋଳାକୋଳି ହେଲେ ଏହି ସଂସାର ସ୍ୱର୍ଗଶୋଭା ଧାରଣ କରିବ । ମନୁଷ୍ୟ ଆତ୍ମଦୃଷ୍ଟିସମ୍ପନ୍ନ ହୋଇ ବୁଝାବୁଝି ହେବେ —'ହରିମୟ-ଜଗତ, ଜଗତମୟ ହରି, ଘଟେ ଘଟେ ସ୍ୱୟଂ ଆପଣ ହରି ଅଛନ୍ତି ପୂରି ।' ସ୍ଥିର ଆର୍ଥିକ ପ୍ରଲୋଭନରେ ପଡ଼ି ମନୁଷ୍ୟ ଜ୍ଞାନରତ୍ନ ଗୁଡ଼ି ଗୋଡ଼ମାଟି ଗୋଟାଇବାରେ ଲାଗି ରହିଥିବା ଅନୁତାପର କଥା । ତାହାର ଫଳରେ ଆଜିର ସଂସାର ଏପରି ଅସାର ପରି ଲାଗୁଅଛି ।

ଗୋଟିଏ ଅଧେ କଳିଦୂତାଗ୍ରଣୀ କଳିଜାମସଭଣ୍ଡାରରୁ ସମୁଦାୟ ପାପମୟ ଲୋଭପାକ ପୋଟୁ ପୋଟୁ ଅପହରଣ କରିଥିବାରୁ ସଂସାର ଗୋଟାକୁ ନିଜର କରି ହାତମୁଠା ଭିତରେ ରଖିବାର ପ୍ରୟାସ ପାଇ ଗୋଟାକେତେ ଗୁଇଁକୁ ଅର୍ଥଦାନ ମୋହରେ ବୁଡ଼ାଇ ଦେଇ ସବୁ ଗୁଇଁପାକ ମିଶି ଏ ସଂସାରକୁ ଗ୍ରାସିବାରେ ତତ୍ପର କରିଅଛନ୍ତି । ସେହି ହେତୁ ସବୁଆଡ଼େ ମନୁଷ୍ୟସମାଜ ମଧ୍ୟରେ ଅର୍ଥଘଟିତ ବ୍ୟାପାରରେ ସମସ୍ତେ ବ୍ୟସ୍ତ । ଧର୍ମଜ୍ଞାନାଦିର ଲାଭରେ ମନୁଷ୍ୟ ମନୁଷ୍ୟର ସମ୍ପର୍କ କେହି ଖୋଜୁନାହିଁ । ଏଆଡ଼େ କାଳଦେବ କହୁଅଛନ୍ତି—ମାନବ, ତୁମ୍ଭ ଜନ୍ମର ପୂର୍ବ ଏବଂ ପରବର୍ତ୍ତୀ ସମୟ, ଆଉ ବାଲ୍ୟ, ଶୈଶବ, ବାର୍ଦ୍ଧକ୍ୟାବସ୍ଥା ଓ ରୋଗ, ନିଦ୍ରା, ମୋହ, ମୂର୍ଚ୍ଛାଦିର ବ୍ୟାପ୍ତମାନ କାଳ ତୁମ୍ଭର ଅଜ୍ଞାତ । ଅବଶିଷ୍ଟ କେତେଟା ଦିନପାଇଁ ତୁମ୍ଭେ ଆତ୍ମସ୍ମରଣ ନ କରି ସେହି ମୋହନିଦ୍ରାରେ ଅଭିଭୂତ ରହିଅଛ । ଏହାର ପ୍ରାୟଶ୍ଚିତ୍ତ ସ୍ମରଣ କର । ପ୍ରାୟଶ୍ଚିତ୍ତ ଆଜି ଏହିଠାରେ, ଆଉ ବିଳମ୍ବ ନାହିଁ । କାଲି ବେଶିଦିନ ରହିଲେ କାଳଦେବଙ୍କ ଶରୀର ଗ୍ରହଣ ହୋଇ ଉଠିବ । ଅତଏବ ମାନବସମାଜ ଭାଇ ଭାଇ ମଧ୍ୟରେ ବଡ଼ ସାନ ଭେଦ ତ୍ୟାଗ କରି ଏକତାସୂତ୍ରେ ସତ୍ୟ-ପ୍ରେମ-ସ୍ନେହାଦି ପ୍ରଚଳନ କରି ପ୍ରୀତି ଉପଭୋଗ କର ।

ମନୁଷ୍ୟ ଆଜକାଲ ତତ୍ତ୍ୱଜ୍ଞାନ ଭୁଲି କେବଳ ଇନ୍ଦ୍ରିୟସୁଖ-ସମ୍ଭୋଗ ବିଳାସାଦିରେ ମାତି ସ୍ୱେଚ୍ଛାଚାରୀ ହୋଇଅଛି । ଏହି ସ୍ୱେଚ୍ଛାଚାର ଅତି ସହଜରେ ଦେହ-ଇନ୍ଦ୍ରିୟାଦି ସାହାଯ୍ୟରେ ସଂସାରରୂପ କର୍ମକ୍ଷେତ୍ରରେ ସାଧିତ ହେଉଅଛି । ମନ ଏହି ସମାବେଶରେ ମୁଗ୍ଧ ହୋଇ ଏ ପକ୍ଷରେ କର୍ମତନ୍ତ୍ରାଧାର ହୋଇଅଛି । ଏହି ମନ ଜ୍ଞାନ ବିବେକାଦିକୁ ନୈତିକତା ବା ଆଧ୍ୟାତ୍ମିକତା ଆଡ଼େ ବରଣ ନ କରି ବରଂ ଆବରଣ କରି ରଖିଅଛି । ଏହି ହେତୁ ବର୍ତ୍ତମାନ ସଂସାରସ୍ଥ ମାନବ କେବଳ ସୁଖଭୋଗୋପଯୋଗୀ ବୈଷୟିକ ମୂଢ଼ତମ ବ୍ୟାପାରରେ ପ୍ରବର୍ତ୍ତିଅଛି । ଏହି ମୂଢ଼ତା ଛଳକପଟାଦିର ପୃଷ୍ଠପୋଷକ । ଏହିରୂପେ ସଂସାରଟି ଛଳ-କପଟମୟ-ଜାଲରେ ପରିଣତ ହୋଇ ମାନବ ଜାତିକୁ ପାଶବଦ୍ଧ ପଶୁପକ୍ଷୀ ପରି ବାନ୍ଧି ରଖି ତାହା ମଧ୍ୟରେ ଛଟପଟ କରାଉଅଛି । ଆଧ୍ୟାତ୍ମିକ ତତ୍ତ୍ୱଜ୍ଞାନ ଶିକ୍ଷା ଏବଂ ନୈତିକ ଶିକ୍ଷା ଏହି ଫାନ୍ଦରୁ ଉତ୍ତୀର୍ଣ୍ଣ ହେବାର ଏକମାତ୍ର ପନ୍ଥା । ଏହି ପନ୍ଥା ଆଜକାଲିର ଶିକ୍ଷାଦୀକ୍ଷା, ଆଦର୍ଶ, ଆଚାର, ବ୍ୟବହାର ଓ ଅନୁକରଣାଦିରେ ନାହିଁ । ଅଛି କେବଳ ମୂଢ଼ତା, ବିଳାସିତା ଓ ଆଡ଼ମ୍ବର ଇତ୍ୟାଦିର ଦେଖାଣି । ଏହି ଦେଖାଣି ସଂକ୍ରାମକ ରୋଗାକାରରେ ମାନବ ସମାଜକୁ ରୁଗ୍‌ଣ କରି ରଖିଅଛି । ନୈତିକ ଶିକ୍ଷାର ଗ୍ରନ୍ଥ ଏବଂ ଆଧ୍ୟାତ୍ମିକ ସାଧନାଦିର ଶାସ୍ତ୍ର ପୁରାଣ ଏ ଦେଶରେ ବହୁତ ରହିଅଛି । ତାହା ପାଠରୂପେ ବ୍ୟବହୃତ ନ ହେଉଅଛି ବୋଲି କୁହାଯାଇ ନ ପାରେ, ବରଂ ଖୁବ୍ ହେଉଅଛି । ମାତ୍ର ଦୁଃଖର ବିଷୟ ଏହି ଯେ ଆଜକାଲି ଦୁର୍ଦ୍ଦିନର ଧରଣ ସବୁ ମାଟି କରିଅଛି । ହା ! ହା ! ଯେଉଁ ଶ୍ରେଣୀସ୍ଥ ଗ୍ରନ୍ଥ ପାଠ କରି ମନୁଷ୍ୟ ବହୁଦର୍ଶୀ ବୋଲାଉଅଛି, ବକ୍ତା ହେଉଅଛି, ଉପାଧି ବା ପ୍ରଶଂସାପତ୍ର ମାତ୍ର ହାସଲଇକରି ପଣ୍ଡିତପଣିଆ ଦେଖାଇ ହେବାର ପ୍ରୟାସ ପାଉଅଛି । ଅଥଚ ଏହି ଦେଖାଣି କେବଳ ସେହି ଅର୍ଥ ଆଡ଼େ କୁଆପରି କଣେଇ ରହିଁ ରହିଅଛି । ଅର୍ଥବଳରେ ମୂର୍ଖ ମଧ୍ୟ ପଣ୍ଡିତ ବୋଲାଉଅଛି, ତସ୍କର କ୍ଷମତାଶାଳୀ ହେଉଅଛି । ଅନାଚାରୀ, କଦାଚାରୀ, ବା ପାପାଚାରୀ ବଳପୂର୍ବକ ଶିଷ୍ଟ-ସଭ୍ୟ ଓ ଭଦ୍ରବଂଶାଦିର ଉପାଧିମାନ ଅପହରଣ କରି ସାଧୁ ବୋଲାଉଅଛି । ଧର୍ମ-ନ୍ୟାୟ-ଜ୍ଞାନାଦି ଅର୍ଥର ପାଶବିକ ବଳରେ କବଳିତ ହୋଇଅଛନ୍ତି । ଏଥିରେ ପ୍ରୀତିର ସ୍ଥାନ କାହିଁ ? ସୁତରାଂ ମାନବୀୟ ସାଧାରଣ ସଂସାରବ୍ୟବହାର କଳୁଷିତ ଓ କଳ-ଦୋଷରେ ଦୂଷିତ ହୋଇଅଛି ।

ସତ୍ୟ କହିବାକୁ ହେବ, ସଂଯମୀ ହେବାକୁ ହେବ ; ନ୍ୟାୟଧର୍ମ ଓ ସତ୍‌କର୍ମ ପାଳନ କରିବା ଇତ୍ୟାଦି ଅବଶ୍ୟ ଶାସ୍ତ୍ରପୁରାଣାଦିର ଉପଦେଶ । ଆଦେଶ ଓ ପ୍ରାର୍ଥନାଦି ନାନା ଆକାରରେ ପ୍ରକାଶିତ ହୋଇଅଛି । ଏହା ଅବଶ୍ୟ ବାକ୍ୟରେ ସଂଯମି ଯାଉଅଛି, ଅଥଚ ଏହି ସଂଯମଣ ଅର୍ଥ ଲକ୍ଷ୍ୟରେ ସେହି ଦେଖାଣି ଦିଗରେ ମାଡ଼ିଯାଉଅଛି । କାର୍ଯ୍ୟ ବା ସାଧନ ଦିଗରେ ବା ଇତ୍ୟାଦି ଇତ୍ୟାଦି ସଦନୁଷ୍ଠାନଦ୍ୱାରା ନିଜେ ନିଜକୁ ସତ୍ତ୍ୱମୟ କରି ଗଢ଼ିନେବା ଦିଗରେ ନୁହେ । କି ଆତ୍ମପ୍ରବଞ୍ଚନା, ପର ପ୍ରତାରଣା, ଓ ବିଶ୍ୱାସଘାତକତାର ଦୁର୍ଦ୍ଦିନ ! ହାହା ମଧୁସୂଦନ !

ସବୁ ବିଷୟରେ ଯାହା ସତ୍ୟ, ତାହା ପ୍ରଥମାବସ୍ଥାରେ ସେହି ସତ୍ୟାକାରରେ ମନୋଗତ ଭାବରୂପେ ଠିକ୍‌ରୂପେ ମନରେ ଉଦ୍ଭବ ହେଉଅଛି, ଏହା ସତ୍ୟର ଧର୍ମ ଓ ମାହାତ୍ମ୍ୟ । ତହିଁ ଉତ୍ତାରୁ ସେହି ସତ୍ୟମୟ ଭାବ ବାକ୍ୟରେ ଏବଂ କର୍ମରେ ବାହ୍ୟ ସଂସାରରେ ପ୍ରକାଶ ହେବାର ନାମ ସତ୍ୟ ଓ ସତ୍ତ୍ୱଶୁଦ୍ଧି । ମାତ୍ର ମନୋଗତ ସେହି ସତ୍ୟଭାବ ବାକ୍ୟ ଏବଂ କର୍ମ ଏ ଉଭୟର ମଧ୍ୟ-ସନ୍ଧି ସ୍ଥଳରେ ବାହ୍ୟ ପ୍ରପଞ୍ଚର ପ୍ରଲୋଭନ ଛଳକପଟାଦି ସବୁ ମିଶି ଏକ ପାପକଳେବର ଆକାର ଧରି ସତ୍‌ପଥରେ କଣ୍ଟକସ୍ୱରୂପ ବାଟ ଜଗି ବସିଅଛି । ସେହିଠାରେ ସେହି ପାପ ମନୋଗତ ଆଦି ସତ୍ୟକୁ କଳଙ୍କିତ କରି ବାକ୍ୟ ଏବଂ କର୍ମକୁ ପ୍ରଲୋଭନଯୁକ୍ତ ପାପକଳଙ୍କାକାରରେ ଗଢ଼ି ବାହ୍ୟ ଜଗତରେ ଏହି ଉପସ୍ଥିତ କର୍ମକ୍ଷେତ୍ରରେ ପାପକଳଙ୍କମୟ ବିଷ କଣ୍ଟକରୂପେ ପ୍ରକାଶ କରୁଅଛି । ଏହି ବିଷାକ୍ତ କଣ୍ଟା ଯାହାକୁ ସ୍ପର୍ଶ କରୁଅଛି, ତାହାର କଷ୍ଟ ହେଉଅଛି । ଏହିପରି କଣ୍ଟାର ଫୋଡ଼ାଫୋଡ଼ି ଆଜିକାଲି ସଂସାରରେ ସାବଧାନତା ସହିତ ଯେଉଁମାନେ କରିପାରିବାରେ ନିପୁଣ, ସେମାନେ ଚତୁର ପଦବାଚ୍ୟ । ଅଚତୁର ଚିହ୍ନା ପଡ଼ି ପାରୁଅଛି । ଯାହାହେଉ ଏ ଫୋଡ଼ାଫୋଡ଼ି ଆଜିକାଲି ଜନର ସାଧାରଣ ଲୋକବ୍ୟବହାର ସମୁଦାୟ ସ୍ଥାନକୁ ଅଧିକାର କରି ସତ୍ୟକୁ ଧିକ୍କାର କରି ସାରିଲାଣି । ଏବେ ମନୋଗତ ସେହି ଆଦି ସତ୍ୟ ବାକ୍ୟ ଏବଂ କର୍ମର ସତ୍ୟ ଏହି ଉଭୟ ସନ୍ଧିରେ ବିଦ୍ୟମାନ ଥିବା କଳିଶିଷ୍ୟର ମୂର୍ତ୍ତିମାନ କଳେବର ବିଶିଷ୍ଟ ସେହି ପାପ-ପ୍ରଲୋଭନଜାତ କଳଙ୍କିତ ବିଷକଣ୍ଟାଟିକୁ ମନଠାରୁ ବାକ୍ୟ ଓ କର୍ମର ସ୍ଥାନ ବାହ୍ୟସଂସାର ପର୍ଯ୍ୟନ୍ତ ବିରାଜମାନ ଥିବା ସତ୍ୟ ଧର୍ମ ପଥରୁ କାଢ଼ି ବିବେକାଗ୍ନିରେ ପୋଡ଼ି ଜ୍ଞାନପବନରେ ଉଡ଼ାଇଦେବାକୁ ହେବ; ତାହା ହେଲେ ସତ୍ୟ କାୟମନୋବାକ୍ୟରେ ପ୍ରତିଷ୍ଠିତ ରହିବ । ଏହାର ନାମ ସତ୍ୟପ୍ରତିଷ୍ଠା । ଏତଦ୍ଦ୍ୱାରା ସଂସାରର ଲୌକିକ ବ୍ୟବହାର ପବିତ୍ରମୟ ହେବ । ଆଉ ମାନବସମାଜରେ ଭାଇ ଭାଇ ମଧ୍ୟରେ କୌଣସି ଦୁଃଖ ତାପ ରହିପାରିବ ନାହିଁ । ଏ ଅମୃତକୁ ଲୁଚ୍ଛଇ କିଏ ବିଷଭାଣ୍ଡ ଦେଇ ସଂସାରକୁ ଦୁଃଖଭାଗୀ କରିଅଛି ? ସେହି ପାପୀ ପରାର୍ଥହାନି ଲୋଭୀକୁ ପରିତ୍ୟାଗ କରିବା ସର୍ବପ୍ରକାରରେ ଧର୍ମସମ୍ମତ ଅଟେ ।

ସତ୍ୟ କହିବା, ସଂଯମୀ ହେବା, ନ୍ୟାୟ୍ୟଧର୍ମ ପାଳନ କରିବା, ସର୍ବପ୍ରକାରର ସତ୍‌କର୍ମ ଓ ସଦନୁଷ୍ଠାନ କରିବାକୁ ହେବ ଇତ୍ୟାଦି ଇତ୍ୟାଦି ସଦୁପଦେଶମାନ କେହି ଅନ୍ୟ କାହାକୁ ଦେଉନାହିଁ ବା କହୁନାହିଁ । ଏହାର ନାମ ଆତ୍ମୋପଦେଶ । ଏହା ମୁଁ ମୋତେ କହୁଅଛି; ଅର୍ଥାତ୍ ମୁଁ ସତ୍ୟ କହିବି, ମୁଁ ସଂଯମୀ ହେବି, ମୁଁ ସତ୍ୟ ନ୍ୟାୟ୍ୟ-ଧର୍ମ ପାଳନ କରିବି ଏବଂ ମୁଁ ସର୍ବପ୍ରଯତ୍ନ ସହକାରେ ସର୍ବପ୍ରକାରର ସତ୍‌କର୍ମ ଓ ସଦନୁଷ୍ଠାନ ସାଧନ କରିବି । ଆତ୍ମତଃ ମୁହିଁ ଏ ସବୁର ସାଧକ ହେବି, ସିଦ୍ଧିଲାଭ କରିବି । ଏହି ସାଧନାଦିର ଉପକରଣାଦି ଜ୍ଞାନ, ବିବେକ, ମନ, ଇନ୍ଦ୍ରିୟାଦି ଓ ଦେହାଦିରୂପେ ମୋହରିଠାରେ ଦତ୍ତ ରହିଅଛି । ଅନ୍ୟ କୌଣସି ଆଉ କାହାରିଠାରୁ ପାଇବାର

ଅପେକ୍ଷା ନାହିଁ । କେବଳ ସତ୍‌ସଙ୍ଗରେ ଏହାର ପରିଚାଳନା ବା ଅନୁଶୀଳନ ଦରକାର । ପ୍ରସ୍ତର ବିଶେଷରେ ଅଗ୍ନି ଥାଏ, ମାତ୍ର ସଂଘର୍ଷ ବା ଅଘାତଯୋଗେ ତହିଁରୁ ଯେପରି ଅଗ୍ନିସ୍ଫୁଲିଙ୍ଗ ବାହାରିପଡ଼େ, ସେହିପରି ସତ୍‌ସଙ୍ଗ ଓ ଶାସ୍ତ୍ରୋପଦେଶଜନିତ ସତ୍‌ଚର୍ଚ୍ଚା ଜ୍ଞାନମାର୍ଜ୍ଜନାଦିଦ୍ୱାରା ସତ୍‌ଜ୍ଞାନ ଓ ସର୍ବପ୍ରକାରର ସତ୍ୟକୁ ଉଦ୍ଧାର କରିବାକୁ ହେବ । ଏହି ପରମ ସତ୍ୟ ପାଳନ ସମ୍ବନ୍ଧୀୟ ସତ୍ୟ ପ୍ରତିଜ୍ଞାଦ୍ୱାରା ଆମ୍ଭଙ୍କୁ ନରକଳେବରରେ ଅବସ୍ଥାନ କରିବାକୁ ହୋଇଅଛି । ଏବେ ସେହି ପ୍ରତିଜ୍ଞା ସ୍ମରଣକରି ତାହା ପାଳନ ନ କଲେ ମନୁଷ୍ୟ କେବଳ ଚତୁଷ୍ପଦ ଜନ୍ତୁବିଶେଷ ମାତ୍ର । ମୁଁ ବୋଲି ଯେ ଆପଣାକୁ କହେନାହିଁ ବା ଜ୍ଞାନ କରେନାହିଁ, ତାକୁ ବାଦ୍‌ଦେଇ ଅବଶିଷ୍ଟ ସମୁଦାୟ ମାନବସମାଜର ପ୍ରତ୍ୟେକେ ଆପଣାକୁ ମୁଁ ମନୁଷ୍ୟ ବୋଲି ସ୍ଥିର କରି ସେହି ମାନବୀୟ ଆତ୍ମାର ସତ୍ୟ-ପ୍ରତିଜ୍ଞା ସର୍ବଦା ପାଳନ କରିବା ଉଚିତ । ମୁଁ ସତ୍ୟାଗ୍ରହୀ ହେବି, ଆଉ ସମସ୍ତ ମାନବ-ଭ୍ରାତାମାନଙ୍କୁ ସତ୍ୟାଗ୍ରହୀ ଦେଖିବି, ଏହା ପ୍ରତ୍ୟେକେ କାର୍ଯ୍ୟରେ ପରିଣତ କଲେ ସଂସାରୀୟ ମାନବସାଧାରଣର ବ୍ୟବହାର ସତ୍ୟମୟ ହେବ ସନ୍ଦେହ ନାହିଁ ।

ଏ ବ୍ୟବସ୍ଥା ମନୁଷ୍ୟ ମାତ୍ରେଇ ଅନୁମୋଦନ କରିଥାଏ । ମାତ୍ର ଗୁଇଁଗିରି ଏବଂ ସୟତାନଙ୍କୁ ଭିତରେ ଲୁଚାଇରଖି ଭିତରଟି କଳା କରି ଉପରେ ଧଳା ଚମଡ଼ା ବା ଅଭାବ-ପକ୍ଷେ ଧଳାପୋଷାକ ଧାରଣପୂର୍ବକ ସେହି ଧବଳମାନେ କେହି କେହି ଆଜକାଲର ଚତୁରଚୂଡ଼ାମଣି ବୋଲାଉଅଛନ୍ତି; ଆଉ ସ୍ଥିର କରିଅଛନ୍ତି ଯେ ଏହି ଛଦ୍ମବେଶ ଧରି ସତ୍ୟ-ନ୍ୟାୟ-ଧର୍ମ ବା ସାଧାରଣ ହିତ ନାମରେ ଦୋହାଇ ଦେଇ କାର୍ଯ୍ୟ କଲାବେଳକୁ କର୍ମସ୍ଥାନରେ ସ୍ୱାର୍ଥସାଧନୋପଯୋଗୀ ପାପକର୍ମ ହେଉ ପଛକେ, ସୂତେ ସୂତେ କରି ନେଉଥିବା ! ଏଥିରେ ଉଭୟକୂଳ ରକ୍ଷା ହେବ, ସଂସାରରେ ସମସ୍ତେ ଭଲ କହିବେ, ମାନ୍ୟ କରିବେ, ଆଉ କାର୍ଯ୍ୟକୁଶଳୀ ବୋଲି ମଧ୍ୟ ଡରି ମରୁଥିବେ ; ଅଥଚ ଆମେ ବୁଦ୍ଧିରନ୍ଧ୍ରବାଟେ ସେମାନଙ୍କର ଅର୍ଥ ସହିତ ଅର୍ଥସାପେକ୍ଷ ପ୍ରାଣ-ମଜ୍ଜା-ରକ୍ତାଦିକୁ ଗୋପନେ ଗୋପନେ ଶୋଷଣ କରି ନେଉଥିବା । ଏଥିରେ ଦୁଇ କୂଳ ରକ୍ଷା ହେଲା । ପୁଣି ଆଉ ଗୋଟିଏ ନୂଆ ସ୍ୱାର୍ଥସାଧନର ବଡ଼ ବାଟ ଫିଟିଗଲା । ଅନ୍ୟାନ୍ୟ ସମସ୍ତ ପ୍ରାଣୀମାନେ ଶୁଷ୍କପ୍ରାଣ, ଶୁଷ୍କମଜ୍ଜା ଓ ଶୁଷ୍କରକ୍ତମାଂସବିଶିଷ୍ଟ ହାଡ଼କଙ୍କାଳାବଶେଷ ବିକାରଗ୍ରସ୍ତ ବିକଳାଙ୍ଗ ହୋଇ ତଦ୍ରୂପ ନିଜ ନିଜ ଅଭାବ ପୂରଣ କରିବା ନିମିତ୍ତ ଆପଣା ଆପଣା ମଧ୍ୟରେ ପରସ୍ପର ପରସ୍ପରକୁ ଶୋଷଣ କରିବାରେ ବାଧ୍ୟ ହୋଇ ଲଗାଲଗି ହୋଇଯିବେ, ପୁଣି ସେତେବେଳକୁ ଆମ୍ଭେମାନେ ବଳୁଆ ଥିବାରୁ ବଳଦ୍ୱାରା ସମସ୍ତଙ୍କୁ ଢାଙ୍କି ଚପାଚପି କରି ସହଜରେ ରଖି ପାରିବା । ଆଉ ମଧ୍ୟ ଅବଶିଷ୍ଟ ତାଙ୍କ ମଳମୂତ୍ରାଦିରେ ଯାହା ରସ ଥିବ, ସେତିକ ପର୍ଯ୍ୟନ୍ତ ଶୋଷଣ ନ କରି ଛାଡ଼ିବାନାହିଁ । ଆଉ ଏପରି ହୀନସତ୍ତ୍ୱ ହୋଇ କି ମନୁଷ୍ୟ ରହିପାରେ ? ତହିଁରୁ ସେହି ଦୁଃଖୀ ଦୀନଗୁଡ଼ିକ ଆମକୁ ରକ୍ଷା କର ବୋଲି ବଳେ ଡାକିବେ । ଆମ୍ଭେ ସୟତାନମାନେ ସେତେବେଳେ

ବଡ଼ପଣରେ ଆଠଖଣ୍ଡ ହେଉଥିବା, ଆଉ ସେମାନଙ୍କୁ ଅଜ୍ଞାନୀ ମୂର୍ଖ ପଶୁ ବୋଲି କହି ଆପେ ଆପେ ବିବାଦ କରି ମରୁଅଛ ବୋଲି ବୋଲୁଥିବା । ଆମ ସୟତାନକୁ ଧରିବାର ଉପାୟ ନାହିଁ । ଅତଏବ ସୟତାନ ଓ ଗୁଇଁଗିରି ଏ ସଂସାରର ସାଧାରଣ ବ୍ୟବହାରରେ ଅଦୃଶ୍ୟ ବିଷାକ୍ତ ବାଷ୍ପପରି ମିଶି ଯାଇଥିବାରୁ ଲୌକିକ ବ୍ୟବହାର ବଡ଼ ମନ୍ଦ ହୋଇ ଯାଇଅଛି । କଥାର ସ୍ଥାନ ଓ ସମୟ, ନ୍ୟାୟଘୋଷଣାର ସ୍ଥାନ ଓ ସମୟ ସ୍ୱତନ୍ତ୍ର । ଆଉ କାର୍ଯ୍ୟସାଧନର ସ୍ଥାନ ବା କର୍ମକ୍ଷେତ୍ର ସ୍ୱତନ୍ତ୍ର । ଏହି ସ୍ୱାତନ୍ତ୍ର୍ୟ ଯୋଗେ ସୟତାନର ପାପକ୍ରିୟା ସହଜରେ ସାଧାରଣର ଜ୍ଞାନଗୋଚର ହୋଇପାରେ ନାହିଁ, ମାତ୍ର ମନୁଷ୍ୟ ତ ପୁଣି ଜ୍ଞାନୀ ଜୀବ । କିନ୍ତୁ ପାଇ ପାଇ ଠିକ ଠିକ ଶେଷକୁ ଚେତନା ଆସିଯାଏ, ଏହା ପ୍ରକୃତିର ନିୟମ ।

ଏବେ ସେହି ନିୟମ ମାନବ-ସମାଜକୁ ଚେତାଇ ଦେଇ ସାରିଲାଣି । ସୟତାନ ଗୁଇଁଗିରିର ଚତୁର ଶଠଦଳ ମାନବଚକ୍ଷୁରେ ମଳଠାରୁ ହୀନ ବୋଲି ବିବେଚିତ ହେଲେଣି । ଯହାହେଉ, ପାପର ଲୀଳା ଏହି ପର୍ଯ୍ୟନ୍ତ । ଏବେ ମାନବଭାଇବର୍ଗ ଚିହ୍ନାଚିହ୍ନି ହୋଇ ଆତ୍ମଜ୍ଞାନଧର୍ମ ସାହାଯ୍ୟରେ ଅନ୍ତଃକରଣକୁ ପବିତ୍ର କରି ମିଳାମିଶା ହୋଇଯିବା ମଙ୍ଗଳର କଥା । ଏହି ସୟତାନ ଅତି ପ୍ରବଳ ହୋଇ ଆତ୍ମାକୁ ହତଜ୍ଞାନ କରିପାରିଥିଲେ ଉପାୟ ନାହିଁ । ତେବେ ସେହି ସୟତାନଗ୍ରସ୍ତ ଚେତନାଶୂନ୍ୟ ପିଣ୍ଡକୁ ଶବଜ୍ଞାନରେ ତ୍ୟାଗ କରିବାକୁ ବାଧ୍ୟ ହେବାକୁ ପଡ଼ିବ । ଯେପରି ଯାହା ତାହା ହେଉ ପଛକେ, ଏବେ ଆତ୍ମଶୁଦ୍ଧି କରି ସତ୍‌କର୍ମରେ ସଦାଦର୍ଶ ସତ୍‌ଅନୁକରଣରେ ପରସ୍ପର ନିର୍ମଳଭାବ ଧାରଣପୂର୍ବକ ଏହି ସଂସାର ସାଧାରଣ ବ୍ୟବହାରକୁ ପବିତ୍ର କରିବା ଉଚିତ ।

ସାବଧାନତା ସହିତ ଏକାଗ୍ର-ସ୍ଥିର-ଜ୍ଞାନ-ଦୃଷ୍ଟିରେ ଦେଖିଲେ ଆଜିକାଲିର ସଂସାରୀୟ ସାଧାରଣ ବ୍ୟବହାର କଳିକଳୁଷକାଳିମାରେ କଳଙ୍କିତ ହୋଇଗଲାଣି । ମାନବୀୟ ଆତ୍ମା ଜ୍ଞାନରାଜ୍ୟର ଜୀବ ହେଲେ ସୁଦ୍ଧା ପ୍ରକୃତିର ଲୀଳାବଶରୁ ସେ ଅଜ୍ଞତାର ଦାସ । ଜନ୍ମର ପୂର୍ବ ଏବଂ ମରଣର ପର ବୃତ୍ତାନ୍ତ ତାହାର ଅଜ୍ଞାତ । ଜୀବନ ମଧ୍ୟବର୍ତ୍ତୀ କାଳର ନିଦ୍ରା, ମୋହ, ମୂର୍ଚ୍ଛାଦି ଏବଂ ଆଧ୍ୟାତ୍ମିକ (ଅନ୍ତଃକରଣଗତ), ଆଧିଦୈବିକ (ଇନ୍ଦ୍ରିୟଗତ) ଓ ଆଧିଭୌତିକ (ଭୌତିକ ଦେହଗତ) ତାପର ସଂଘଟନ ପ୍ରଭୃତି ମଧ୍ୟ ତାହାର ଅଜ୍ଞାତ । ଏସବୁ ଅଜ୍ଞତା ସଙ୍ଗେ ଆତ୍ମଜ୍ଞାନର ଅଜ୍ଞତା ମିଶି ଜୀବକୁ ଗୋଟିଏ ଅଜ୍ଞାନୀ ଜଡ଼ପିଣ୍ଡରେ ପରିଣତ କରିଅଛି । ଏହି ଅଜ୍ଞତାର ଦାସ, ପୁଣି କଳିଦୋଷମିଶ୍ରିତ ସାଧାରଣ ସଂସାର ବ୍ୟବହାରୀୟ ଅର୍ଥପ୍ରଲୋଭନାକ୍ରାନ୍ତ ପାପର ମହାଦାସତ୍ୱ-ଶୃଙ୍ଖଳରେ ଆବଦ୍ଧ ରହିଗଲାଣି । ଏହି ଉଭୟ ଦାସତ୍ୱ ସେବାରେ ଜୀବର ନିଜତ୍ୱ ଲୋପ ପାଇଅଛି । ଦୁଇଟି ସାଧୁଲୋକର ସେବକ ହେଲେ ତ ଜଣକ ପକ୍ଷରେ ବଡ଼ କଷ୍ଟକର । ଆଉ ଦୁଇଟି ପାପର ଦାସତ୍ୱରେ ଜୀବର କିପରି ଦୁର୍ଦ୍ଦଶା ଘଟିଅଛି, ଏହା ସହଜରେ ଅନୁମେୟ ।

ସେହିଯୋଗୁଁ ଆଜକାଲର ଆର୍ଥିକ ଆଡ଼ମ୍ବର ଆଦର୍ଶରେ ଲୋକବ୍ୟବହାର କଳୁଷିତ ଓ ଦୁଃଖମୟ ହୋଇଅଛି । ଗୋଟିଏ ଗୋଟିଏ ଅର୍ଥାନ୍ଧ ବା ଚନ୍ଦ୍ର,ପ ବହୁ ବହୁ ଅନ୍ଧସଙ୍ଘ ଆଜକାଲ ସଂସାରରେ ଅର୍ଥଶୋଷଣନିମିତ୍ତ ଶତମୁଖ ହୋଇଅଛନ୍ତି । ଅର୍ଥଲୋଭରେ ଗୋଲାମି ସ୍ୱୀକାର କରି ଉତ୍କୋଚଗ୍ରହଣରେ ବଡ଼ ପଟୁତା ଏବଂ ନାନାପ୍ରକାରରେ ପରର ବା ନିଜ ପ୍ରଭୁର ଅର୍ଥ ଗୁପ୍ତ ମନ୍ତ୍ରଣାଦ୍ୱାରା ଅପହରଣ କରିବାରେ ଏକାନ୍ତ ଦକ୍ଷତା ଦେଖାଉଅଛନ୍ତି । ବାଣିଜ୍ୟାଦିରେ ମିଥ୍ୟା ପ୍ରବଞ୍ଚନା, ଶଠତା, ଓ ଚୌର୍ଯ୍ୟାଦିଦ୍ୱାରା ଅର୍ଥ-ସଂଗ୍ରହର ସୀମା ନାହିଁ । ବଡ଼ପଣିଆର ବଡ଼ମାରେ ଭୟ ଦେଖାଇ ଦଣ୍ଡ, ତାଡ଼ନା ଓ ପୀଡ଼ନାଦିଦ୍ୱାରା ଭୂମି-ଗଗନ-ପାତାଳାଦିର ସବୁ ସ୍ଥାନରୁ ଅର୍ଥ ଶୋଷଣ କରି କରି ସଂସାରକୁ ଶୁଷ୍କ ମରୁଭୂମିପ୍ରାୟ କରି ରଖିଦେଲେଣି । କେଳାପରି ନାନାବିଧ କୁହୁକପୂର୍ଣ୍ଣ ଭଣ୍ଡାମିରେ ମଧ୍ୟ ଅର୍ଥଦୋହନର ବିରାମ ନାହିଁ । ଆତତାୟିତା, ଚୌର୍ଯ୍ୟ, ଦମ୍ଭ, ଜାଲ ଓ ଫିସାଦିର କଳନା କରିବା ମନୁଷ୍ୟର ଅସାଧ୍ୟ । ପୂତନାମାଉସୀ ପୁଅଭାଇ-ପଣିଆ, ଧର୍ମବକ ଓ ବିରାଡ଼ିବୈଷ୍ଣବବେଶ ଛଳନାରେ ଅର୍ଥାପହରଣର ବାଟ ଅତି ସୁନ୍ଦର ଓ ସୁସଜ୍ଜିତ କରି ଦିଆଯାଇଅଛି ।

ଏସବୁ ସହିତ ଲୋକସାଧାରଣ ବ୍ୟବହାରପ୍ରତି ନିରୀକ୍ଷଣ କଲେ ଦେଖାଯାଏ ଏ ସଂସାର ସ୍ଥଳଭାଗ ନୁହେ, ଏହା ସଂସାର-ସାଗରାକାରରେ ପରିଣତ ହୋଇଗଲାଣି । ସୁତରାଂ ବର୍ତ୍ତମାନ ସଂସାରର ନାମ ସଂସାର-ସାଗର । ଏହି ସଂସାର-ସାଗରରେ ମାନବସମାଜ ବୁଡ଼ି ରହିଅଛି । ପାପ ଏ ସାଗରର ଜଳ । ଉପରୋକ୍ତ ଅଜ୍ଞତା ଏହି ସାଗରଜଳର ବିଷାକ୍ତ ଅଂଶ । ଯେଉଁ ଅର୍ଥଶୋଷଣ ନିୟମାଦି ମନୁଷ୍ୟର ଅଙ୍ଗପ୍ରତ୍ୟଙ୍ଗାଦିକୁ ଇଚ୍ଛାଜ୍ଞାନ ସ୍ୱାଧୀନ-ସମ୍ପତ୍ତ୍ୟାଦିକୁ ନିବଦ୍ଧ କରିବାଦ୍ୱାରା ଅକର୍ମଣ୍ୟ କରିରଖି ଅଯଥାଭାବରେ ଓ ବିବେକ ବିରୁଦ୍ଧରେ ତାହାର ଅର୍ଥାକର୍ଷଣ କରୁଅଛି, ସେହି ପ୍ରକୃତିବିରୁଦ୍ଧ ନିୟମାଦି ଏହି ସାଗରଗର୍ଭନିବାସୀ ସର୍ପପାଶବେଷ୍ଟନ-ସ୍ୱରୂପ ଅଟେ । ଅର୍ଥଦୋହନ ଓ ଶୋଷଣପନ୍ଥାର ଶତ ଶତ ନାମ ଅଛି । ସେହି ଶୋଷଣାତ୍ମକ ନାମ ସାଗର ଲହରୀର 'ଛୁ' 'ସୁ' ଶବ୍ଦ । ଜଡ଼ବାଦବିଦ୍ୟା ଶିକ୍ଷିତ ବଡ଼ ବଡ଼ ଉପାଧିଧାରୀ ବଡ଼ ବଡ଼ ନାମବିଶିଷ୍ଟ ବଡ଼ ବଡ଼ ଜୀବମାନେ ଏ ସାଗରର କୁମ୍ଭୀର ମଗର ସଦୃଶ । ଦମ୍ଭ, କପଟ, କୁଟିଳତା, ମିଥ୍ୟା, ଛନ୍ଦ, ପ୍ରତାରଣା, ପ୍ରବଞ୍ଚନାଦି ଏ ସାଗର ଜଳରେ ଦଂଶକ ଜୀବଶ୍ରେଣୀବିଶେଷ ଅଟନ୍ତି । ରୋଗ-ଶୋକ-ତାପ, ବିଷାଦ ପ୍ରମାଦାଦି ଏ ସାଗରର ଅଭ୍ୟନ୍ତରୀଣ ସ୍ରୋତରୂପେ ମନୁଷ୍ୟଜାତିକୁ ଛଟପଟ କରାଉଅଛନ୍ତି । ଚୌର୍ଯ୍ୟ, ଦସ୍ୟୁତା ଓ ଆତତାୟିତାଦି ଏ ଜଳର ବୁଡ଼ା ତମ୍ପ । ଜାତିବିଶେଷରେ ବା ଦେଶବିଶେଷରେ କି ମନୁଷ୍ୟବିଶେଷରେ ନୁହେ ଅଥବା ବାଲ୍ୟ-ବୃଦ୍ଧାଦି ଅବସ୍ଥା ବିଶେଷରେ ନୁହେ, ଅଥବା ସବୁ ମନୁଷ୍ୟର ଏହା ଏକ ପ୍ରାକୃତିକ ନିୟମ ଯେ ଅସହ୍ୟ ଯନ୍ତ୍ରଣାବେଳେ ମନୁଷ୍ୟ ଅନାୟତ୍ତଭାବେ 'ଇଁ ଇଁ' ଶବ୍ଦ କରିଥାଏ । ଏହି 'ଇଁ ଇଁ' ନାଦ ଅସହନୀୟ ବ୍ୟଥାର ଜ୍ଞାପକ । ଏହି 'ଇଁ' ନାଦାତ୍ମକ

ରୂପ ଏ ସଂସାରସାଗରର ମଧ୍ୟଗତ ଧୂମକେତୁସଦୃଶ । ଏହି ଧୂମକେତୁର ସ୍ଥିତି ଯେଉଁଠାରେ, ଯନ୍ତ୍ରଣା ସେହିଠାରେ; ଧର୍ଷଣ, ପତନ, ଶୋଷଣାଦି ସେହିଠାରେ । ସେହି ସବୁ ସ୍ଥାନ ମନୁଷ୍ୟ ସହିତ 'ହିଁ ହିଁ' ଧ୍ୱନି କରି ବ୍ୟଥା ଯନ୍ତ୍ରଣାଦି ଜଣାଇ ଦେଉଅଛି । ଏହି 'ହିଁ ହିଁ' ନାଦ ଅଭାବରେ ଯନ୍ତ୍ରଣାର ଅଭାବ ଓ ଯନ୍ତ୍ରଣାର ଅଭାବରେ ସୁଖଶାନ୍ତିର ନିଦ୍ରା । ତେବେ କଥା ଏତିକି ଯେ ଧୂମକେତୁ ଆକାଶରେ ଉଦୟ ହେବାର ଜନିଷ, ଅଥଚ ତଦ୍ରୂପ ବହୁଦୂରସ୍ଥ ଧୂମକେତୁ ପୃଥିବୀର ଅମଙ୍ଗଳଦାୟୀ, ମାତ୍ର ଏ ଧୂମକେତୁ ସାଗର-ଗର୍ଭରେ ଉଦୟହୋଇ ଜଳମଗ୍ନ ପ୍ରାଣୀର ପାଖେ ପାଖେ ରହି ପୀଡ଼ାଦାୟକ ହୋଇଅଛି । ଖାଲି ଏହି 'ହିଁ ହିଁ' ନାଦର କଥା ନୁହେ, 'ଓଃ ଉଃ' ଇତ୍ୟାଦି ନାନାପ୍ରକାରର ବ୍ୟଥାଜ୍ଞାପକ ନାଦ ଅଛି । ସେ ସବୁ ଏ ସାଗରର ଉଲ୍‌କାତୁଲ୍ୟ ଅଟେ ।

ଏତିକିରେ ଏ ସଂସାର-ସାଗରର କଲି ଉତ୍ପାତ ଶେଷ ହେବାର ନୁହେଁ । ଏଥିରେ ପୁଣି ମନ୍ଦର ମନ୍ଥନ ଅନବରତ ଲାଗିରହିଅଛି । ଏହି "ଧର୍ମଛଡ଼ା ବିଧି ବ୍ୟବସ୍ଥା ନାମଧେୟ" ଶୋଷଣନୀତି, ନାନାପ୍ରକାର ନୀତି ଓ ବ୍ୟବସ୍ଥାର ନାମ ଧାରଣକରି କାର୍ଯ୍ୟତଃ ବା ଫଳତଃ ପରାର୍ଥ ଶୋଷଣ ସଙ୍ଗେ ସଙ୍ଗେ ଅର୍ଥଦ୍ୱାରା ପରିରକ୍ଷିତ ରକ୍ତମାଂସାଦି ଶୋଷଣ କରିବାର କୌଶଳଜାଲ ମେଲାଇ ଦିଆଯାଇଅଛି । ଅନେକାନେକ ବିଷୟରେ, ବ୍ୟବହାରରେ, କ୍ରିୟାରେ, ନୀତି ବ୍ୟବସ୍ଥାଦିରେ ଧର୍ମସମ୍ପର୍କ ରଖାଯାଇନାହିଁ । ସେ ସବୁରେ କେବଳ ଅର୍ଥଶୋଷଣହିଁ ନୀତି ଏବଂ ଧର୍ମ ବୋଲି ଉକ୍ତିମ ପିଟା ଯାଉଅଛି । ମାତ୍ର ଧର୍ମ ଆତ୍ମାର ନିତ୍ୟ ସହଚର । ଆତ୍ମା ଅଭାବରେ ମନ ବଚନ, ଦେହାଦିର କ୍ରିୟା ଅସମ୍ଭବ । ଅତଏବ ସବୁ କ୍ରିୟାରେ, ଜ୍ଞାନରେ, ଦର୍ଶନାଦିରେ କିବା ଅନୁଭୂତ୍ୟାଦିରେ ଆତ୍ମା ନିତ୍ୟ ବର୍ତ୍ତମାନ, ଆତ୍ମା ସଙ୍ଗେ ସଙ୍ଗେ ଧର୍ମ ନିତ୍ୟ ବର୍ତ୍ତମାନ । ଧର୍ମକୁ ବାଦ୍ ଦେଇ କାୟିକ, ମାନସିକ, ବାଚନିକ କ୍ରିୟାକଳାପାଦିରେ ମନୁଷ୍ୟର ସମ୍ପର୍କ ରହି ନ ପାରେ । ତେବେ ପାପୀ ଲୋକ ଦସ୍ୟୁତା କରିବାବେଳେ ପରମେଶ୍ୱର ମୋତେ ସଦୟ ହୁଅ ବୋଲି ଡାକି ପରର ଧନ, ମାନ, ଧର୍ମ, ପ୍ରାଣ ହରିବା ଚେଷ୍ଟାକରି ସେହି ପାପକ୍ରିୟାକୁ ତାହାର ଧର୍ମସମ୍ମତ କ୍ରିୟା ବୋଲି କଳ୍ପନା କରିନେଲେ ତାକୁ ପରମେଶ୍ୱର ସହାୟ ହେବେ ନା ଧର୍ମରକ୍ଷା କରିଦେବେ ? ନା, ସେ ପାପୀର କୌଣସିଠାରେ ରକ୍ଷାର ସ୍ଥାନ ନାହିଁ । ଯାହାହେଉ, ଏହିରୂପେ ଧର୍ମଛଡ଼ା ନୀତି ଏ ସଂସାର-ସାଗରରେ ଅନବରତ ମନ୍ଦରମନ୍ଥନରୁ ବଳି ଅଧିକ ପୀଡ଼ାଦାୟକ ହୋଇଅଛି ।

ବର୍ତ୍ତମାନ ଏହି ସଂସାର-ସାଗରକୁ ଦେଖିଲେ ଉପଲବ୍‌ଧି କରିବାକୁ ମିଳୁଅଛି ଯେ, ମନୁଷ୍ୟ ଏକେତ ଜଳମଗ୍ନ ହୋଇ ରହିଅଛି, ତହିଁରେ ପୁଣି ତାହାର ଅଙ୍ଗପ୍ରତ୍ୟଙ୍ଗାଦି ନାଗପାଶରେ ଆବଦ୍ଧ; ଆଉ ସେ ଜଳ ବିଷମୟ, ଅଥଚ ସ୍ଥିର ନୁହେ, ତେଉରେ ଆବଦ୍ଧ ପିଣ୍ଡ ଇତସ୍ତତଃ ହେଉଅଛି, ପଡ଼ୁଅଛି, ଉଠୁଅଛି ଓ ବୁଡ଼ୁଅଛି । ପୁନଃ ପୁନଃ ଏହିପରି ପଡାଉଠା ଲାଗି ରହିଅଛି । ଅଧିକନ୍ତୁ ଏଥିରେ ମଗର, କୁମ୍ଭୀରାଦିର ଗ୍ରାସ

ଅତୀବ ଭୟଙ୍କର । ଅନ୍ୟାନ୍ୟ ଜଳକୀଟ ଦଂଶନର ମଧ୍ୟ ବିରାମ ନାହିଁ । ଏ ସାଗର-ଗର୍ଭର ଅନନ୍ତଶ୍ରେଣ ସ୍ରୋତ ବଡ଼ ଛଟପଟ କରିପକାଏ । ବୁଡ଼ାଉଠା ଭେଲା ଭେଲା । ଏ ଯନ୍ତ୍ରଣା ସଙ୍ଗେ ସଙ୍ଗେ ପୁଣି 'ଇଁ ଇଁ, ଓଃ ଓଃ, ଉଃ ଉଃ' ଇତ୍ୟାଦି ଯନ୍ତ୍ରଣାମୂଳକ ନାଦ ପୂର୍ବ ଭରି ରହିଅଛି । ଏ ସବୁ ନରକ ଯାତନା ସଙ୍ଗେ ମନର ମନ୍ଥନ ସର୍ବଦା ନୃତ୍ୟ କରୁଅଛି ।

ଏପରି ଅବସ୍ଥାରେ ଏ ସଂସାର-ସାଗରରେ ମନୁଷ୍ୟ କହୁଅଛି, 'ଜଳର ଜନ୍ତୁ ଆମେ ନୋହୁ, ଅନ୍ୟାୟ ହେଲ ମହାବାହୁ' । ଗୋଟିଏ ହାତୀ ଦିନେ ଏହିପରି ଦୁର୍ଦ୍ଦଶାରେ ପଡ଼ି ଡାକଥିଲ, 'ଜଳର ଜନ୍ତୁ ମୁଁ ନୁହଇ, ଅନ୍ୟାୟ ହେଉଛି ଗୋସାଇଁ' । ଏହି ଡାକ ଗୋଟିକରେ ହସ୍ତୀ ମୁକ୍ତ ଲଭିଥିଲ । ବର୍ତ୍ତମାନ କୋଟି କୋଟି ନରନାରୀ ବାଳକ ବୃଦ୍ଧାଦି ପ୍ରତିଦିନ ସବୁବେଳେ ଏହିପରି କଷ୍ଟରେ କୋଟି କୋଟି କଣ୍ଠରେ ଡାକୁଅଛନ୍ତି— "ଏଥୁଁ ଉଦ୍ଧରି ପାର ହେବେ, ଗଜମୋକ୍ଷଣ ବାନା ତେବେ" । ଏ ଡାକ ବ୍ୟର୍ଥ କରିବାକୁ ସାମର୍ଥ୍ୟ କାହାର ? ଶତ ଶତ ପ୍ରକାରର ଆଗ୍ନେୟାସ୍ତ୍ର, ନାନାପ୍ରକାରର ପବନାସ୍ତ୍ର, ଅସଂଖ୍ୟ ଅସଂଖ୍ୟ ପ୍ରକାରର ବରୁଣାସ୍ତ୍ର ଓ କୋଟି କୋଟି ପ୍ରକାରର ପର୍ବତାସ୍ତ୍ର, ଏପରିକି ସର୍ବଧ୍ୱଂସକାରୀ ପାଶୁପତାସ୍ତ୍ର ଏହି କାତର ଦୁଃଖାର୍ତ୍ତନାଦର ବେଗ ରୋଧ କରିବାକୁ ସର୍ବତୋପ୍ରକାରରେ ଅକ୍ଷମ । ଏହି ଅକ୍ଷମତା ପ୍ରମାଣ ହୋଇଗଲାଣି । ଏହି ଦୁଃଖପୂର୍ଣ୍ଣ ସାଗର ଜଳରାଶିକୁ ଏକାଚଳୁକେ ଶୋଷଣ କରିବାପାଇଁ ଅଗସ୍ତି ମହର୍ଷି ଉପସ୍ଥିତ ହେଲେଣି । ତନ୍ତ୍ରମନ୍ତ୍ର ଶାନ୍ତିବାଣୀ ଆକାରରେ ପ୍ରଚରିତ ହେଲଣି । ଘୋର କଳିତାମସ ମ୍ଳେଚ୍ଛାମିର ବଳ କେତେ ? ହେଇଟି ଏଇ ଦେଖ, ପୁଷମାସରୁ ମଙ୍ଗଳମୟ ମଳୟ ବସନ୍ତ ମୃଦୁ ମୃଦୁ ହୋଇ ବହିବାକୁ ଲଗିଲଣି । ଶୀତର ଆୟୁଷ ତିନ ମାସ ଥାଉଁ ସେ ବିଦାୟ ନେଇ ବାହାରିଗଲାଣି । ବସ୍ତ୍ରହୀନ ଶୀତାର୍ତ୍ତ ଦୁଃଖୀମାନେ ମୁକ୍ତ ଲଭିଲେଣି । ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ ଇତ୍ୟାଦି ମହାପ୍ରତିଜ୍ଞା ବାକ୍ୟ ସଫଳ ହେବାର ଦିନ ଆରମ୍ଭ ହେଲାଣି । ପେଚକକୁଳ ଆକୁଳ ହେଲେଣି । ଅନସୂଆ ବରାଡ଼ ଆଖି ବୁଜି ଦୁଧ ପିଇଲାପରି କତରା ଘୋଡ଼ି ହୋଇ ଗଡ଼ରହିଅଛନ୍ତି ଏବଂ ମୋହନିଦ୍ରାରେ ଅର୍ଥାତ୍ ଚକ୍ଷୁକୁ ନ ଫିଟାଇ କଳ୍ପନାମୟ ସ୍ୱପ୍ନରେ ବହିର ଆଯୁଷ ଦର୍ଶନ କରୁଅଛନ୍ତି । କତରାଘୋଡ଼ାକୁ ଯମ ଡରିବ କି ? କଳିତାମସ ଦୋଷରୁ ସାଧାରଣ ସଂସାରସ୍ଥ ବ୍ୟବହାର କିପରି କଳୁଷିତ ହୋଇ ମାନବସମାଜକୁ ଯେପରି କଦର୍ଯ୍ୟ କରିଅଛି, ତାହାର ଶେଷାଭିନୟ ଏହିଠାରେ ସାଙ୍ଗ ହେଲା ।

ଏବେ ସର୍ବସ୍ରଷ୍ଟା, ସର୍ବଦ୍ରଷ୍ଟା ପରମେଶ୍ୱର ଭଗବାନ ହରିଙ୍କୁ ପ୍ରଣାମ ଦାନକରି ଏହିଠାରେ ଏହି ଗ୍ରନ୍ଥ ଶେଷ କରାଯାଉଅଛି । ଯେଉଁ ପ୍ରଭୁ ପରିବର୍ତ୍ତନଶୀଳ କାଳଚକ୍ର ସାହାଯ୍ୟରେ ଏ ସଂସାରକୁ ସତ୍ୟ, ତ୍ରେତାଦି ଯୁଗ ଚତୁଷ୍ଟୟରେ ବିଭକ୍ତ କରି ପ୍ରତ୍ୟେକ ଯୁଗରେ ନାନାପ୍ରକାର ଲୀଳାରେ ପ୍ରାଣୀସମାଜକୁ ମାୟିକ କ୍ରୀଡ଼ାପୁତ୍ତଳିକାନ୍ୟାୟ ନୃତ୍ୟ

କରାଇ ଆସୁଅଛନ୍ତି ଏବଂ ଯେଉଁ ନୃତ୍ୟଭୂମି ଦେବତା, ଅସୁର ଓ ନର ପ୍ରଭୃତି ପ୍ରାଣୀ-ମଣ୍ଡଳରେ ବିଭୂଷିତ ହୋଇ ଅପୂର୍ବ ଶୋଭା ଦୃଶ୍ୟ କରାଇଅଛି, କେତେ କେତେ ଦେବତାଙ୍କର ନୃତ୍ୟ ଓ କେତେ କେତେ ପ୍ରକାର ଅସୁରଙ୍କର କେତେ କେତେ ପ୍ରକାରର ଘୋରପ୍ରଦ ତାଣ୍ଡବ ଏ ବ୍ରହ୍ମାଣ୍ଡକୁ କମ୍ପମାନ କରାଇଅଛି ଓ କେତେ କେତେ ମନୁଷ୍ୟଙ୍କର କେତେ କେତେ ପ୍ରକାର ଲୀଳା ଏ ସଂସାରକୁ ରଞ୍ଜିତ କରି କେତେ କେତେ ଚିରସ୍ଥାୟୀ କୀର୍ତ୍ତିସ୍ତମ୍ଭ ପ୍ରୋଥିତ କରି ଯାଇଅଛି, ତାହାର ଇୟତ୍ତା ନାହିଁ । ମାତ୍ର କାଳଚକ୍ର ପରିବର୍ତ୍ତନ-ରେ ସେ ସବୁ ଧୌତ ହୋଇ ଯାଇଅଛି । ଏବେ ଉପସ୍ଥିତ କଳିତାଣ୍ଡବ ପରି କେତେ କେତେ ପ୍ରକାରର ଦୁଃଖତାପ ସଂସାରରେ ଉଦୟ ହୋଇ ବିଲୟ ହୋଇ ଯାଇଅଛି, ସେହି ପରମେଶ୍ୱରର ସେହି ପୁରାତନ ସଂସାରମଣ୍ଡଳରେ ଏହି ନୂତନ ମ୍ଳେଚ୍ଛ ସୟତାନ-ଲୀଳା ସେହିପରି ସେହି କାଳଚକ୍ରରେ ସଂହୃତ ହେବା ବଡ଼ ନୂତନ କଥା ନୁହେ ବା ବଡ଼ ବିଚିତ୍ର ନୁହେ କି ଅସାଧ୍ୟ ନୁହେ । କେବଳ ବିଶେଷତ୍ୱ ଏତିକି ଯେ ସୟତାନ ତାହାର ବିଦ୍ୟମାନ ଥିବା କାଳରେ ମନେ କରିଥାଏ ଯେ ସେ ଯେପରି କ୍ଷୟ ହେବନାହିଁ । ଆଜି ମଧ୍ୟ ଅକ୍ଷୁଣ୍ଣ ଆଶାରେ ମନୁଷ୍ୟ ବୁଦ୍ଧିର ନିର୍ଦ୍ଦିଷ୍ଟ ସୀମାକୁ ଅତିକ୍ରମ କଲାଭଳି ନାନାବିଧ କଳବଳ ଛଳ କୌଶଳ, ଓ ଛନ୍ଦାଦିର ନାନା ଦୁର୍ଭେଦ୍ୟ ବ୍ୟୂହ ରଚନାକରି ନିଶ୍ଚିନ୍ତ ଥାଏ; ମାତ୍ର ପରମେଶ୍ୱରମାୟା ଅତୀବ ବିଚିତ୍ରରୁ ବିଚିତ୍ର, ସବୁ ଅସାଧ୍ୟରୁ ଅସାଧ୍ୟ, ଓ ସବୁ ବୁଦ୍ଧିବିଦ୍ୟା କୌଶଳାଦିରୁ ବଳି ଅନତିକ୍ରମଣୀୟ ଓ ଅଧିକ ଶକ୍ତିସମ୍ପନ୍ନ ବୋଲି ମନେ କରେ ନାହିଁ । ରହସ୍ୟ ଏହିଠାରେ । ଆହୁରି ଅଧିକ ରହସ୍ୟର କଥା ଏହି ଯେ ସେହି ରହସ୍ୟଭେଦ କରିବାର ଅବସର ପୂର୍ବରୁ ତାହାର ଅସ୍ତିତ୍ୱ ଅର୍ଥାତ୍ ସେହି ଅଜ୍ଞାନ ମୋହମୟ ସୟତାନର ଚିହ୍ନ ଲୋପ ପାଇଯାଏ । ଏ ଲୀଳା ସୟତାନ ପକ୍ଷରେ ଯେପରି ଅଜ୍ଞାତ ରହସ୍ୟମୟ, ଭଗବଦାଶ୍ରିତ ଦୁଃଖାର୍ତ୍ତ ପକ୍ଷରେ ସେହିପରି ବିଚିତ୍ର ଜ୍ଞାନଭକ୍ତିପ୍ରଦ ସୁବିଜ୍ଞାତ ପ୍ରେମପୁଣ୍ୟଗାଥାମୟ ଅଟେ । ପୁନଶ୍ଚ ଭୂୟୋଽପି ନମୋ ନମସ୍ତେ ।

## ସନ୍ଧ୍ୟନ୍ତକାଳୀନ ମହାପରୀକ୍ଷା

କଳିଯୁଗର ଅନେକ ଅଗଣିତ ଦିନପରେ ଆଜି ସନ୍ଧ୍ୟନ୍ତକ୍ଷଣର ମହାପରୀକ୍ଷା ଉପସ୍ଥିତ ହେବାର ଦିନ ପଡ଼ିଅଛି । ଆତ୍ମଦର୍ଶନ କରି ଆତ୍ମସ୍ମରଣ କରାଯାଉ । ଆତ୍ମାରେ ଆତ୍ମଦର୍ଶନର ସତ୍ୟତା ନିତ୍ୟ ସତ୍ୟପୂର୍ଣ୍ଣ ମହାସତ୍ୟ ଅଟେ । ପୁଣି ଏହି ଆତ୍ମାରେ ବିଶ୍ୱ-କଳ୍ପନାର ସତ୍ୟତା ମଧ୍ୟ କାଳ୍ପନିକ ସତ୍ୟରୂପେ ଚିରପ୍ରସିଦ୍ଧ ରହିଅଛି । ସତ୍ୟର ସତ୍ୟତା ଏବଂ କଳ୍ପନାପ୍ରସୂତ ସତ୍ୟତା ଏହି ଉଭୟ ଅସଲି ବା ସଚ୍ଚା ସତ୍ୟ ଏବଂ ନକଲି ବା କଚ୍ଚା ସତ୍ୟ ମଧ୍ୟରେ ବିପରୀତ ଦ୍ୱନ୍ଦ୍ୱାତ୍ମକ ଦ୍ୱୈଧ ମତଭେଦ ପ୍ରକୃତିରେ ସର୍ବଦା ବିରାଜମାନ । ଏହି ମତାନୈକ୍ୟ ବଶତଃ ଆତ୍ମତତ୍ତ୍ୱଜ୍ଞାନ ମୂର୍ତ୍ତିମାନ ଆକାରରେ ସତ୍ତ୍ୱଶୁଦ୍ଧ ମହାପ୍ରାଣୀ-ରୂପେ ପ୍ରାକୃତ ଜଗତରେ ବିରାଜମାନ ହୋଇ ଆତ୍ମଧର୍ମତତ୍ତ୍ୱ, ସାତ୍ତ୍ୱିକ ଧର୍ମନୀତି ଏବଂ

ସାତ୍ତ୍ୱିକ-ଲୋକମଣ୍ଡ ପ୍ରଭୃତିଙ୍କୁ ପ୍ରଚାର କରେ ଏବଂ ତଦ୍ରୂପ ତତ୍ତ୍ୱ ଓ ଶାନ୍ତି ପ୍ରଭୃତିକୁ ପ୍ରବଳ ଶ୍ରେଷ୍ଠତମ ଆଦର୍ଶରେ ମାନବୀୟ ଜଗତରେ ଆଦୃତ ହେବାକୁ ପ୍ରାଣାନ୍ତପଣେ ଚେଷ୍ଟା କରେ; ଆଉ ସେହିପରି କାଳ୍ପନିକ ସତ୍ୟ ଅର୍ଥାତ୍ ଦେହାତ୍ମଭ୍ରମଜନିତ କର୍ତ୍ତୃତ୍ୱ-ଭୋକ୍ତୃତ୍ୱାଦିବିଶିଷ୍ଟ, ନଶ୍ୱର ସୁଖ ଦୁଃଖାଦିମୟ ସଂସାରୀୟ ମୂଢ଼ତା ମୂର୍ତ୍ତିମାନ ବିଗ୍ରହାକାର-ରେ ରାଜସତାମସ ଓ ପଶ୍ୱତାମସ ପ୍ରାଣୀରୂପେ ଭୌତିକ ସଂସାରରେ ସମୁଦିତ ହୋଇ ଇନ୍ଦ୍ରିୟଭୋଗାଦିର ବିଶେଷତ୍ୱକୁ ଶ୍ରେଷ୍ଠ କର୍ତ୍ତବ୍ୟରୂପେ ପ୍ରବର୍ତ୍ତନ କରାଏ ଏବଂ ଜୀବନାନ୍ତ ସଂଗ୍ରାମ ପର୍ଯ୍ୟନ୍ତ ଆଶ୍ରୟ କରି ତଦ୍ରୂପ ବୈଷୟିକ ପ୍ରଲୋଭନପୂର୍ଣ୍ଣ ଆଦର୍ଶରେ ସଂସାରକୁ ମତାଇବାର ଚେଷ୍ଟାକରେ ।

ଉପରୋକ୍ତ ମହାସତ୍ୟ ବାଧାବିଘ୍ନ ଆଶଙ୍କାଦିଶୂନ୍ୟ ଅବିକୃତ ପାରମାର୍ଥିକ ନିତ୍ୟ ବସ୍ତୁ ଅର୍ଥାତ୍ ଏହା ସଚା ସତ୍ୟ । ଆଉ ଉକ୍ତ କାଳ୍ପନିକ ସତ୍ୟଟି ବିକୃତାକାର ନଶ୍ୱର ଅର୍ଥାତ୍ ପୁନଃ ପୁନଃ ଉଦୟ-ବିଲୟ ପ୍ରବାହସୂତ୍ରେ ନିତ୍ୟସ୍ଥାୟୀବତ୍ ପ୍ରତୀୟମାନ; ସୁତରାଂ ଏହା କଚା ସତ୍ୟ ।

ସଚା ସତ୍ୟଟି ବିଶୁଦ୍ଧ ଆତ୍ମଜ୍ଞାନପୂର୍ଣ୍ଣ ଆଉ କଚା ସତ୍ୟଟି ବିକାରାତ୍ମକ କର୍ତ୍ତୃତ୍ୱ-ଭୋକ୍ତୃତ୍ୱାଦିସମନ୍ୱିତ ସୁଖଦୁଃଖମୟ ବିଶ୍ୱଚିତ୍ରାକାରବିଶିଷ୍ଟ ମୋହପ୍ରଦ ଅଟେ ।

ସଚା ସତ୍ୟଟି ଜ୍ଞାନବିଜ୍ଞାନାତ୍ମକ; ସତ୍ୟ, ଦୟା, କ୍ଷମା, ଜ୍ଞାନ, ଧର୍ମ, ନ୍ୟାୟ, ବିବେକ, ଶମଦମାଦି ସାଧନ ବଳରେ ସଦୁପଦେଶଦ୍ୱାରା ସଂସାରକୁ ତଥା ସଂସାରୀୟ ପ୍ରାଣୀବର୍ଗଙ୍କୁ ଶାସନ, ପାଳନ ଓ ସଂରକ୍ଷଣ କରେ । ଆଉ କଚା ସତ୍ୟଟି ସଚାସତ୍ୱର ସ୍ୱକାର୍ଯ୍ୟର ପ୍ରତିଯୋଗିତା ଦେଖାଇବାପାଇଁ ଆର୍ଥିକ ପ୍ରଲୋଭନଦ୍ୱାରା ବିଳାସିତା, ସ୍ୱେଚ୍ଛାଚାରିତା, ଅବୈଧ ଓ ଅପରିମିତ ସୁଖସମ୍ଭୋଗ, ଇନ୍ଦ୍ରିୟପରାୟଣତା, ଗର୍ବାଡ଼ମ୍ବର-ହର ମାହାତ୍ମ୍ୟ ପ୍ରଭୃତିର ଆଧିକ୍ୟରେ ମୋହମୁଗ୍ଧ କରେ; ଆଉ ସେହି ମୋହବଳରେ ସଂସାରୀୟ ସୁଖ ପ୍ରଲୋଭନଜନିତ ଆଶାମରୀଚିକା ପଛେ ପଛେ ଦଉଡ଼ାଇ ଦଉଡ଼ାଇ ଅବସନ୍ନ କରେ । ଏହିରୂପେ ସଂସାରକୁ ତଥା ସଂସାରୀୟ ପ୍ରାଣୀବର୍ଗଙ୍କୁ ମ୍ରିୟମାଣ ଅବସ୍ଥାରେ ପତିତ କରି ରଖି ଧର୍ଷଣ, ପେଷଣ, ଶୋଷଣ, ତାଡ଼ନ, ଦଣ୍ଡବିଧାନ ଓ ମାରଣାଦି ଦ୍ୱେଷହିଂସାମୂଳକ ଶାନ୍ତିନାମଧେୟ ଦୁର୍ନୀତି ଓ ଅଧର୍ମପୂର୍ଣ୍ଣ କୁବ୍ୟବସ୍ଥାଦିଦ୍ୱାରା ପାଳନ ରକ୍ଷଣାଦି ପରିବର୍ତ୍ତେ କଠୋର ଭୟପ୍ରଦ ଶାସନ ମାତ୍ର ପ୍ରଚଳନ କରେ । ଅଧିକନ୍ତୁ ଏହି କଠୋର ଶାସନବିଧିର ଅଂଶବିଶେଷକୁ କୂଟ-ପ୍ରବଞ୍ଚନାଦିମୂଳକ ମିଥ୍ୟାବାକ୍ୟ ରଚନାଚାତୁର୍ଯ୍ୟଦ୍ୱାରା ପାଳନ ପୋଷଣାଦି ଅର୍ଥରେ ବ୍ୟାଖ୍ୟାନ କରାଏ । ଏହାହିଁ ମୂର୍ତ୍ତିମାନ ତାମସ । ସଚା ସତ୍ୟଟି ନିତ୍ୟବର୍ତ୍ତମାନ ଓ ବିକାର ପରିଣାମାଦି ଅପକ୍ଷୟଶୂନ୍ୟ ନିଜ ଭିତରେ ରହି ସଂସାରକୁ ତଥା ସଂସାରୀୟ ପ୍ରାଣୀବର୍ଗଙ୍କୁ ଅପରନ୍ତୁ କଚା ସତ୍ୟକୁ ମଧ୍ୟ ସର୍ବଦା ସ୍ୱକୀୟ ଆତ୍ମଧର୍ମ ଜ୍ଞାନବିବେକାଦି ବଳରେ ଶାସନ ପାଳନାଦି କରୁଅଛି ଏବଂ କଚାସତ୍ୟର ଉଦୟପୂର୍ବେ, ଉଦୟକାଳରେ, ଉଦୟପର ଅବସ୍ଥିତି କାଳରେ ଏବଂ ଅବସ୍ଥିତିର ପର ବିଲୟକ୍ଷଣରେ ଅଥଚ ବିଲୟର ପରପାରରେ ମଧ୍ୟ

ସମଭାବେ ନିତ୍ୟବର୍ତ୍ତମାନ ଅବସ୍ଥାରେ ବିରାଜମାନ ରହି କଳାଟିର ପରିଣାମ ଦର୍ଶନ କରି ତାହାକୁ ସର୍ବଦା ହାସ-ହେୟ କରୁଅଛି । ଧଳା ସତ୍ୟର ବଳ ଜ୍ଞାନ, ଧର୍ମ, ନ୍ୟାୟ, ବିବେକ, ସମତା, ମିତ୍ରତା, ଆତ୍ମସ୍ୱାଧୀନତା, ପାରତନ୍ତ୍ର୍ୟବିହୀନତ୍ୱାଦି ଶୁଦ୍ଧ ସତ୍ତ୍ୱାତ୍ମକ ବିଧିବିଧାନାଦି; ଆଉ କଳା ସତ୍ୟର ବଳ ମୋହ, ଗର୍ବ, ସ୍ୱେଚ୍ଛାଚାରିତା, ଆଡ଼ମ୍ବରପ୍ରିୟତା, ଆତ୍ମପର-ଭେଦ, ପ୍ରୟୋଜନପର କପଟବନ୍ଧୁତା, ଆତ୍ମମ୍ଭରିତା, ଆତ୍ମବଞ୍ଚନା ଏବଂ ଅପରର ହୀନତାଦର୍ଶନାଦି ସମୁଦାୟ ତାମସଭାବାପନ୍ନ ବିଧାନାଦି ଅଟେ ।

ଧଳା ସତ୍ୟଟିର ବଳ ଏବଂ ଭାବ ସର୍ବଦା ବିକାରଶୂନ୍ୟ, ଆଉ କଳା ସତ୍ୟଟିର ବଳ ଏବଂ ଭାବ, ବିକାରମୟ ଜାତନାଶଶୀଳ ଥିବାରୁ ଏହା ଉଦୟ ପରେ କ୍ରମେ କ୍ରମେ ବୃଦ୍ଧିପ୍ରାପ୍ତ ହୋଇ ବୃଦ୍ଧିର ଶେଷସୀମାନ୍ତରେ ପହଞ୍ଚିଗଲାରୁ ପରପାରରେ ବିଲୀନ ହୁଏ । ଏହା ବିକାରି ବସ୍ତୁର ସହଜାତ ଧର୍ମ ।

ଏହି ଧଳା ସତ୍ୟଟି ସାତ୍ତ୍ୱିକଭାବାତ୍ମକ ଏବଂ କଳା ସତ୍ୟଟି ତାମସଭାବାତ୍ମକ ଅଟେ । ଏହି ଉଭୟବିଧ ଭାବ ଭଗବତୀ ପ୍ରକୃତିଦେବୀଙ୍କର ଅନ୍ତର୍ଦ୍ଦେଶନିହିତ ଅଙ୍ଗଦ୍ୱୟସ୍ୱରୂପ ଅଟେ । ମନୁଷ୍ୟର ସମ୍ମୁଖଭାଗ ଯେପରି ଦୃଶ୍ୟମାନ, ପ୍ରତିମନ୍ତ ଓ ପ୍ରକାଶଶୀଳ, ଆଉ ପଶ୍ଚାଦ୍‌ଭାଗ ତାମସାଚ୍ଛନ୍ନ, ଅଦୃଶ୍ୟ ଅନ୍ଧକାରମୟ ଅଟେ, ସେହିପରି ଭଗବତୀ ପ୍ରକୃତି-ଦେବୀଙ୍କର ସମ୍ମୁଖଭାଗ ସାତ୍ତ୍ୱିକଭାବାତ୍ମକ ଧଳାସତ୍ୟବିଶିଷ୍ଟ, ଆଉ ବିପରୀତ ଭାଗ ଅନ୍ଧକାର-ମୟ ଅର୍ଥାତ୍ ଅଜ୍ଞାନ-ତାମସଭାବାତ୍ମକ କଳା ବା ନକଲି ସତ୍ୟବିଶିଷ୍ଟ ଅଟେ । ଏହି ଉଭୟ ଧଳା ଓ କଳା ସତ୍ୟ ପ୍ରକୃତିଦେବୀଙ୍କର ଅନ୍ତର୍ଦ୍ଦେଶରେ ନିହିତ ଥାଇ ବାହ୍ୟ ପ୍ରାକୃତ ଜଗଦ୍‌ଦେଶରେ ଧଳା ସତ୍ୟ ସତ୍ତ୍ୱଭାବବିଶିଷ୍ଟ ଦେବରୂପରେ ଓ ସାଧୁ ମହାତ୍ମାଦିରୂପରେ ଚିହ୍ନିତ ହୁଏ, ଆଉ କଳାସତ୍ୟଟି ତାମସଭାବାପନ୍ନ ଅସୁର ରାକ୍ଷସାଦି ରୂପରେ ଚିହ୍ନିତ ହୁଏ । ଉପସ୍ଥିତ କଳିଯୁଗରେ ତାହା ମ୍ଳେଚ୍ଛ ଓ ସୟତାନାଦି ରୂପରେ ପ୍ରକାଶିତ ହୋଇଅଛି । ଏହା ପ୍ରକୃତିର ଲୀଳାପ୍ରସୂତ ବିଗ୍ରହରୂପେ ସଂସାରରେ ଜନ୍ମଗ୍ରହଣ କରନ୍ତି । ଏଥିରେ ଅନ୍ୟ କୌଣସି ପ୍ରକାରର ମାନବୀୟ କାର୍ଯ୍ୟଜାତ ଅନୁକୂଳ ବା ପ୍ରତିକୂଳ ଭାବାପନ୍ନ ବ୍ୟବସ୍ଥାଦିର ଅଧିକାର ନାହିଁ । ପ୍ରାକୃତ ଲୀଳାର ବିଶେଷତ୍ୱ ଏହି କଳା ସତ୍ୟଦ୍ୱାରା ସମଧିକ ପରିମାଣରେ ପ୍ରକଟିତ ହୁଏ ।

ସତ୍ତ୍ୱଭାବାତ୍ମକ-ଦେବୋପମ ସାଧୁ ମହାତ୍ମାଦି ସର୍ବଦା ସମଭାବାପନ୍ନ, ଶାନ୍ତିପ୍ରିୟ ଓ ଶମଦମାଦି-ସେବୀ ଅଟନ୍ତି, ଆଉ ତାମସଭାବାତ୍ମକ ଅସୁର ରାକ୍ଷସାଦି ଭୋଗ, ବିଳାସ-ବାହୁଲ୍ୟପ୍ରିୟ ଓ ଗର୍ବ, ଦର୍ପ, ଆଡ଼ମ୍ବରାଦି ସେବାପରାୟଣ ଅଟନ୍ତି । ଏହି ହେତୁରୁ ଆସୁରଭାବାତ୍ମକ ହିଂସାଦି ବୃଦ୍ଧିଲାଭ କରି ଜଗତକୁ ସମୟେ ସମୟେ କମ୍ପମାନ କରେ, ଆଉ ସାତ୍ତ୍ୱିକ ପ୍ରାଣୀମାନଙ୍କର ବହୁପରିମାଣରେ ଦୁଃଖଦାୟୀ ହୁଏ । ମାତ୍ର ଏହି ଆସୁରଭାବ ଯଥା ଶେଷସୀମାରେ ଉପସ୍ଥିତ ହେଲେ ମହାଶକ୍ତିଦ୍ୱାରା ବିନଷ୍ଟ ହୁଏ । ଏହା

ଯୁଗଲୀଳା । ସବୁ ଯୁଗରେ ଏହିପରି ସଙ୍ଘଟିତ ହେଉଅଛି । ପୌରାଣିକ ଇତିହାସ ବଜ୍ରନିନାଦରେ ଏହା ଘୋଷଣା କରୁଅଛି ।

ଯେପରି ପଶ୍ଚାତ୍‌ଭାଗସ୍ଥ ଅଦୃଶ୍ୟ ସ୍ଥଳରେ ଭୟ ତ୍ରାସାଦିର ଆଶଙ୍କା ସୂଚିତ ହେଲେ ମସ୍ତକକୁ ଚତୁର୍ଦ୍ଦିଗରେ ଭ୍ରମଣ କରାଇ ଉନ୍ମୀଳିତ ସଚଞ୍ଚଳ ନେତ୍ରଦୃଷ୍ଟିଦ୍ୱାରା ସବୁଆଡ଼କୁ ପୁନଃ ପୁନଃ ଦର୍ଶନ କରି ଉକ୍ତ ଭୟାଦିର କାରଣକୁ ନିବାରଣ କରିବାକୁ ହୁଏ, ସେହିପରି ପଶ୍ଚାତ୍‌ଭାଗସ୍ଥ ତାମସାନ୍ଧକାରଜନିତ ଆସୁରଭାବ ଓ ହିଂସାଦିରୂ ସଂସାର ପକ୍ଷରେ ଭୟ ତ୍ରାସ ଓ ଅଶାନ୍ତ୍ୟାଦିର ଆଶଙ୍କା ସୂଚିତ ହେବା କାଳରେ ଭଗବତ୍ପ୍ରକୃତିଦେବୀ ଉଦ୍‌ବୋଧିତା ହୋଇ ସବୁଦିଗକୁ ଦୃକ୍‌ପାତ କରିବାଦ୍ୱାରା ସତ୍ତ୍ୱ ସତ୍ତ୍ୱାତ୍ମକ ଜ୍ଞାନରଶ୍ମି ବିସ୍ତାରିତ ହୁଏ, ସୁତରାଂ ସବୁଆଡ଼ ସତ୍ୟଜ୍ଞାନାଲୋକମୟ ହେବାରୁ ତମସାଚ୍ଛନ୍ନକାରଜନିତ ଆସୁରଭାବ ଓ ହିଂସାଦି ତିରୋଭୂତ ହୁଏ । ବର୍ତ୍ତମାନ ଅବସ୍ଥାନୁସାରେ ସେହି ଜ୍ଞାନାଲୋକ ଏହି ଭୌତିକ ଜଗତରେ ନିମ୍ନଗତ ହେଲଣି । ମନେ ରଖିବାକୁ ହେବ ଯେ, ଆତ୍ମପ୍ରେମ ସହିତ ଧର୍ମ, ଜ୍ଞାନ, ଦୟା, ନ୍ୟାୟ, ସମତା ପ୍ରଭୃତି ସତ୍ୟ ସତ୍ୟର ଆକାର ଆଉ ସଂସାରମୟ ମୋହ ସହିତ ବିଳାସିତା, ସ୍ୱାର୍ଥପରତା, ଦମ୍ଭ, ଦର୍ପ, ଗର୍ବ ଓ ଆଡ଼ମ୍ବରାଦି ପ୍ରସୂତ ପରହିଂସା ପରସ୍ୱାପହରଣାଦି କଳି ସତ୍ୟର ଆକାର ଅଟେ ।

ଉପରୋକ୍ତ ବର୍ଣ୍ଣନାନୁଯାୟୀ ଉକ୍ତ ସତ୍ୟ ଏବଂ କଳି ସତ୍ୟ ଉଭୟେ ପ୍ରକୃତିର ଅନ୍ତର୍ଦେଶରୁ ଅବତରଣ କରି ବର୍ତ୍ତମାନର ଏହି ଭୌତିକ ସଂସାରରେ କିଂଭୂତକିମାକାର ଧାରଣ କରିଅଛନ୍ତି, ଏହା ଉପଲବ୍‌ଧି କରି ଦେଖିବାକୁ ହେବ । ଯେପରି ନାନା ସ୍ଥାନରୁ ବିନ୍ଦୁ ବିନ୍ଦୁ ବାଷ୍ପ ଅଜ୍ଞାତ ଅଦୃଶ୍ୟ ଭାବରେ ସଂଗୃହୀତ ହୋଇ କାଳକ୍ରମେ ଆକାଶରେ ବିଶାଳ କୃଷ୍ଣବର୍ଣ୍ଣ ମେଘାକାର ଧାରଣକରି ବହୁ ବାରିବର୍ଷଣଦ୍ୱାରା ସଂସାରମୟ ପ୍ରାଣୀକୁଳକୁ ଆକୁଳ ଓ ବ୍ୟସ୍ତ ତ୍ରସ୍ତ କରିପକାଏ, ସେହିପରି ଏହି କଳି ସତ୍ୟ ବହୁସହସ୍ରବର୍ଷ ପୂର୍ବରୁ କ୍ରମେ କ୍ରମେ ସଙ୍ଘବଦ୍ଧ ହୋଇ ବହୁଦୂର ପ୍ରାନ୍ତରୁ ଓ ନାନାସ୍ଥାନରୁ ଆସି ଏକତ୍ର ସମ୍ମିଳିତ ହୋଇ କ୍ରମେ କ୍ରମେ ଏହାର ଦୁରଭିସନ୍ଧି ସାଧନ କରିକରି ବର୍ତ୍ତମାନ ବିଶାଳ ପ୍ରବଳାକାର ଧାରଣ କରିଣାନନ୍ତର ସାଧାରଣ ସଂସାରମୟ ପ୍ରାଣୀବର୍ଗକୁ ସ୍ୱାର୍ଥଶୂନ୍ୟ, ଅନ୍ନବସ୍ତ୍ରଶୂନ୍ୟ, ଜ୍ଞାନଶୂନ୍ୟ ଅର୍ଥାତ୍ ସର୍ବଶୂନ୍ୟ ଦଶାରେ ଉପନୀତ କରାଇ ସାରିଲଣି । ଏହାର ସାଧାରଣ ଧର୍ମ, ଗର୍ବ, ମୋହ, ବିଳାସ, ଆଡ଼ମ୍ବର ପ୍ରଦର୍ଶନାଦିସୂତ୍ରେ ପରନାଶ, ପରାର୍ଥନାଶ, ପର ସର୍ବସ୍ୱାପହରଣ ପ୍ରଭୃତି ପାପମୟ ଦୁଷ୍କର୍ମସମୂହ କ୍ରମବୃଦ୍ଧି ପ୍ରାପ୍ତ ହୋଇ ଶେଷସୀମାରେ ପହଞ୍ଚଗଲାରୁ ବର୍ତ୍ତମାନ ଏହାର କାର୍ଯ୍ୟ ଅତିମାତ୍ରାରେ ପରିଣତ ହୋଇ ସଦୁପଦେଶ, ଜ୍ଞାନ, ଧର୍ମ, ନ୍ୟାୟ, ସମତା ଓ ଆତ୍ମସ୍ୱାଧୀନତାତ୍ମକ ଭାବକୁ ସମ୍ପୂର୍ଣ୍ଣରୂପେ ମାରାତ୍ମକ ଶତ୍ରୁ ମନେକରି ତାହା ସବୁ ଦମନ କରିବା ନିମିତ୍ତ ମାରଣ, ତାଡ଼ନ, ପେଷଣ, ଧର୍ଷଣ, ପୀଡ଼ନ ଓ ନାନାବିଧ ଭୟ ତ୍ରାସପ୍ରଦର୍ଶନାଦିକୁ ଯଥାଶକ୍ତି ପୂର୍ଣ୍ଣପରିମାଣରେ ବ୍ୟୟ କରିସାରିଲଣି । ଅଧିକନ୍ତୁ ତହିଁରେ ସୁଦ୍ଧା କୃତକାର୍ଯ୍ୟ

ହୋଇ ନ ପାରି ଅଧିକତମ ଭାବରେ ଶାମ, ଦାନ, ଦଣ୍ଡ ଓ ଭେଦାଦି ସର୍ବପ୍ରକାର କୂଟନୀତି ପଦ୍ଧତିକୁ ମଧ୍ୟ ପ୍ରୟୋଗ କରି ନିରସ୍ତ ହେଲଣି । ଏହା କଚା ସତ୍ୟ ପକ୍ଷରେ ଦେଖାଯାଇ ପାରୁଲଣି, ଆଉ ଅନ୍ୟ ପଚା ସତ୍ୟ ପକ୍ଷରେ ଦେଖାଗଲାଣି ଯେ ତାହା ଏହି ସବୁ ପ୍ରକାରର ଅସହ୍ୟ କଷ୍ଟସମୂହକୁ ନତଶାନ୍ତ ଭାବରେ ଶିରୋଧାର୍ଯ୍ୟ କରି ବରଣ କରି-ନେଇଅଛୁ, ଅଥଚ ନିଜ ଧର୍ମାନୁମୋଦିତ ଆତ୍ମସ୍ୱାଧୀନତା, ପାରତନ୍ତ୍ର୍ୟରାହିତ୍ୟ, ସମତା, ମିତ୍ରତାସମସ୍ତାଢ୍ୟ, ଜ୍ଞାନ, ଧର୍ମ ଓ ନ୍ୟାୟାଦି-ପୂର୍ଣ୍ଣ ଭାବସମୂହକୁ ସଂସାରରେ ସୁଦୃଢ଼ ପ୍ରତିଷ୍ଠିତ କରିବାକୁ ପ୍ରାଣପଣେ ଓ ପୂର୍ଣ୍ଣପୌରୁଷେୟ ପ୍ରଯତ୍ନ ସହକାରେ ଯତ୍ନ କରୁଅଛି ।

ବର୍ତ୍ତମାନ ସଂସାରର ଏହି ଚିତ୍ର ଦର୍ଶନକରି ଉପଲବ୍ଧି କରିବାକୁ ହେବ ଯେ କଚା ସତ୍ୟ ସଂସାରୀୟ ବ୍ୟାମୋହକତା, ବିଳାସିତା, ସ୍ୱାର୍ଥପରତା ଓ ପରହିଂସା ଏବଂ ପରସର୍ବସ୍ୱଶୋଷଣାଦି ମୂର୍ତ୍ତିମାନ ଆକାରରେ ପୀଡ଼ନ ଓ ତାଡ଼ନାଦି ଅସ୍ତ୍ର ଶସ୍ତ୍ର ଭୂଷିତ ହୋଇ ବଳ, ଦର୍ପ ଓ ଗର୍ବାଦିସହକାରେ ସତାସତ୍ୟର ପବିତ୍ରତମ ସ୍ଥାନକୁ ଅଧିକାର କରିଥିବା ଜାଣି ଆଉ ତାରୀୟ ଧର୍ମ, ଜ୍ଞାନ, ସତ୍ୟାଦି ଆତ୍ମୀୟ ସମ୍ପଦ ଅପହରଣ କରିଥିବା ବୁଝିପାରି ପରମେଶ୍ୱରୀ ଭଗବତୀ ପ୍ରକୃତିଦେବୀ ତାଙ୍କର ନିଜର ଧର୍ମ ନିୟମାନୁସାରେ ଉଦ୍‌ବୋଧିତା ହୋଇଅଛନ୍ତି, ଆଉ ଦୟାର୍ଦ୍ର ନେତ୍ରକୁ ଅତି ଚଞ୍ଚଳଗତିରେ ସର୍ବତ୍ର ଭ୍ରାମ୍ୟମାନ କରାଇବାଦ୍ୱାରା ସବୁଆଡ଼ରେ ସଚା ସତ୍ୟ ଜ୍ୟୋତି ପ୍ରବାହିତ କରାଇ ସାରିଲେଣି । ସେହି ପ୍ରବାହ ସର୍ବ ସ୍ଥାନ ଆଲୋକିତ କରାଇ ପ୍ରତ୍ୟେକ ମନୁଷ୍ୟର ହୃଦୟା-କାଶରେ ଓ ପ୍ରାଣରେ ପ୍ରବେଶକରି ମାନବୀୟ ସମାଜକୁ ସତ୍ୟ ଏବଂ ଅସତ୍ୟ, ଧର୍ମ ଏବଂ ଅଧର୍ମ, ଜ୍ଞାନ ଏବଂ ପାଶବିକତା, ନ୍ୟାୟ ଏବଂ ଅନ୍ୟାୟାଦିକୁ ବାଛିକରି ଚିହ୍ନାଇ ଦେଲଣି । ତାହାର ଫଳରେ କଚା ସତ୍ୟର ଉପାସକ ପୁରୁଣା ପାପୀ ପର୍ଯ୍ୟନ୍ତ ଅନ୍ତତଃ ହୃଦୟଙ୍ଗମ କରିସାରିଲେଣି ଯେ କଚା ସତ୍ୟ ଅସତ୍ ଏବଂ ତ୍ୟାଜ୍ୟ ବସ୍ତୁ, ତଥାପି ତାହାର ପୂର୍ବ ସଂସ୍କାର ଏବଂ ଦୃଢ଼ ଅଭ୍ୟାସବଶତଃ ସେ ଉକ୍ତ ପାପ ପରିତ୍ୟାଗ କଲେ ଯେପରି ତାହାର ଅସ୍ତିତ୍ୱ ଲୋପ ହୋଇଯିବ, ଏହି ଭୟରେ ସେ ମୋହ, ଗର୍ବ, ଦର୍ପ, ହିଂସା, ଦ୍ୱେଷ, କପଟ, ମିଥ୍ୟା ଓ ମଦ୍ୟାଦିକୁ ପରିତ୍ୟାଗ କରି ପାରୁନାହିଁ । ବରଂ ସେସବୁ ରକ୍ଷାକରଣାର୍ଥ ପ୍ରାଣାନ୍ତ ପଣ କରୁଅଛି; କିନ୍ତୁ ବୁଝିଲାଣି ଯେ ଆଉ ଏ ଅନ୍ଧକାରର ଆୟୁଷ ନାହିଁ । ଜ୍ଞାନାଲୋକ ପାଶବିକ ଅନ୍ଧକାରକୁ ନାଶ କରିବାକୁ ଉଦୟ ହେଲାଣି । ଆଲୋକରେ ଅନ୍ଧକାରର ସ୍ଥାନ ନାହିଁ ।

ପୁଣି ଏଆଡ଼େ ଜ୍ଞାନୀ ସାଧୁପୁରୁଷମାନେ ବୁଝିଲେଣି ଯେ ଯାହା ତାହା ହେଉ ପଛକେ ଧର୍ମ ଓ ଜ୍ଞାନାଦି ସର୍ବଥା ଉପାସନୀୟ, ଅତଏବ ପ୍ରାଣପଣେ ଏହି ସତ୍ୟପ୍ରତିଷ୍ଠା ଏକାନ୍ତ କରଣୀୟ ଓ କାୟମନୋବାକ୍ୟେ ପାଳନୀୟ ଅଟେ । ଏହି ଉଭୟବିଧ ଭାବ ବଢ଼ି ବଢ଼ି ଅଳ୍ପକାଳ ମଧ୍ୟରେ ଯେତେବେଳେ ଉକ୍ତ କଚା ସତ୍ୟର ପାପ ଚରମ

ସୀମାନ୍ତରେଖା ସ୍ପର୍ଶ କରିବ, ଆଉ ସତ୍ୟ ସତ୍ତାର ସର୍ବସ୍ପୃଷ୍ଟତାଦି ସନ୍ନିଷ୍ଠା ତାହାର ନିରନ୍ତିଶସ୍ଥ ସ୍ଥାନରେ ଉପନୀତ ହେବ, ସେହି ଅଦୂର ଭବିଷ୍ୟତରେ ପୂର୍ବରୁ ସେହି ଉଭୟ ସଙ୍ଗମସ୍ଥାନରେ ସତ୍ୟ ଜ୍ଞାନ ଧର୍ମାଦିର ମୂର୍ତ୍ତିମାନ ବିଗ୍ରହଧାରୀ ଅସି, ଖର୍ପର ଓ ଅମୃତ କଳଶ ଏବଂ ଅଭୟବରହସ୍ତ ହୋଇ ବିରାଜମାନ ହେବେ । ଆଉ ଅସି ଖର୍ପରଯୁକ୍ତ ହସ୍ତକୁ ଉକ୍ତ କଚାସତ୍ୟସେବୀ ପାପୀର ମସ୍ତକରେ ଏବଂ ଅମୃତ-କଳଶ ଓ ଅଭୟବର ହସ୍ତକୁ ସତ୍ୟ-ଧର୍ମ-ଜ୍ଞାନ-ସେବୀ, ଅଧର୍ମ, ଅନ୍ୟାୟ ପ୍ରପୀଡ଼ିତ ସାଧୁ ମସ୍ତକରେ ସ୍ଥାପନ କରି ଅଧର୍ମର ବିନାଶ ଓ ଧର୍ମର ଉଦ୍ଧାର-ସାଧନ କରିବେ । ଏହି ଅତି ନିକଟ ମୁହୂର୍ତ୍ତକୁ ଅଦ୍ୟ ଦିବସର ପାପମୟ ଓ ପୁଣ୍ୟାଗମ ଉଭୟବିଧ କର୍ମନିଷ୍ଠା ଲକ୍ଷ୍ୟ କରୁଅଛି । ଏହି ଅଭିଲକ୍ଷିତ ଚେତନା ଆଜ ପ୍ରତ୍ୟେକ ମନୁଷ୍ୟକୁ, ମାନବୀୟ ଜାତି, ସମାଜ ଓ ସଙ୍ଘବଦ୍ଧତାକୁ ବଡ଼ ଗୁପ୍ତଭାବରେ ପରୀକ୍ଷା କରୁଅଛି, ଆଉ ଦେଖୁଅଛି ପୁରୁଣା ପାପୀ ପାପକୁ ଜାଣି ସୁଦ୍ଧି ତ୍ୟାଗ ନ କରି ଦେଖି କେତେ ବଳ ସହିତ ଆଉ କେତେବେଳଯାଏ ପୋଷି ରଖିପାରିବ ଏବଂ ସାଧୁପୁରୁଷ ଦେଖି କେତେ ବଡ଼ ସର୍ବସ୍ପୃଷ୍ଟତା ଅବଲମ୍ବନ କରି ତାହାର ସତ୍ୟନିଷ୍ଠାରୁ ବହୁ ଅସହ୍ୟ ନିର୍ଯ୍ୟାତନ ସହ୍ୟ କରି ସୁଦ୍ଧା ଲବେନହେଲେ ବିଚଳିତ ହେବ କି ନାହିଁ ? ଏହି ଆଶ୍ଚର୍ଯ୍ୟ ସନ୍ଧିକ୍ଷଣରେ ଏହି ସ୍ୱର୍ଗୀୟ ଅମୃତ ଦାନରୁ ଅଲଗା ରହିବା କୌଣସି ମନୁଷ୍ୟ ପକ୍ଷରେ ଉଚିତ ନୁହେ ।

ଶ୍ରୀମଦ୍ ଭାଗବତାଦି ମହାପୁରାଣମାନଙ୍କରେ ବେଦାଗୃର୍ଯ୍ୟ ତ୍ରିକାଳଦର୍ଶୀ ଭଗବାନ ଶ୍ରୀମଦ୍ ବ୍ୟାସଦେବ ବହୁସହସ୍ରବର୍ଷ ପୂର୍ବରୁ କଳିଯୁଗର ଶେଷାଙ୍କରେ ଯେପରି ଅଧର୍ମ, ଅନୀତି ଦୁରାଚାର ଓ ପାଶବିକତାର କଳଙ୍କକାଳିମା ମନୁଷ୍ୟସମାଜକୁ କଳୁଷିତ କରି ଗର୍ଦ୍ଧଭତୁଲ୍ୟ କରିପକାଇବ ବୋଲି ଲେଖିଯାଇଅଛନ୍ତି, ଆଜ ତହିଁର ମାତ୍ରାଧିକ୍ୟ ପରିଲକ୍ଷିତ ହେଉଅଛି । ତାହାର ଫଳରେ ଆଜକାଲିର ଦୁଃସହ କର୍ମବିକ୍ଷିପ୍ତତା, ଅନ୍ୟାୟ ଓ ଅଧର୍ମ ବ୍ୟବହାରାଦି ମନୁଷ୍ୟସମାଜକୁ ଏତେଦୂର ନୀଚ କରି ଦେଲାଣି ଯେ ତହିଁରେ 'ହାୟ ମଧୁସୂଦନ' ଆର୍ତ୍ତନାଦ ମନୁଷ୍ୟର ମନପ୍ରାଣାଦିର ଗଭୀରତମ ପ୍ରଦେଶରୁ ଉତ୍ଥିତ ହୋଇ ଧର୍ମ, ଜ୍ଞାନ ଓ ନ୍ୟାୟାଦିର ପୁନଃ ପ୍ରତିଷ୍ଠାନକୁ ଭିତରେ ଭିତରେ ଏକ ମହାପରିବର୍ତ୍ତନ ଆକାରରେ ନିମନ୍ତ୍ରଣ କରୁଅଛି । ଫଳତଃ ପ୍ରକୃତିଦେବୀ ଏହି ନୂତନ ସଂଗଠନ ନିମିତ୍ତ ଆଜ ଏକ ଗୁପ୍ତ ମହାପରୀକ୍ଷା ମନୁଷ୍ୟସମାଜ ସକାଶେ ଆରମ୍ଭ କରିଦେଇ ଦେଖୁଅଛି ଯେ ମହାନ୍ଧକାରର କେନ୍ଦ୍ରବର୍ତ୍ତୀ ହେବାକୁ ଯେଉଁ ମହାକଣ୍ଟକାକୀର୍ଣ୍ଣ କୁପଥ ନିର୍ଦ୍ଦିଷ୍ଟ ଅଛି, ଆଜର ମନୁଷ୍ୟ ସେହି ପଥକୁ ଯଥାପରିମାଣରେ ନିଷ୍କଣ୍ଟକ ବା ସୁଗମ୍ୟ କରିପାରିବାଟାକୁ ନିଜର ବଡ଼ ପୌରୁଷେୟ ବୋଲି ମନେ କରୁଅଛି, ମାତ୍ର ଅଧିକ ଅନ୍ୟ କିଛି ନୁହେ । ଅତଏବ ଏଥିର ଶେଷ ପ୍ରାୟଶ୍ଚିତ୍ତ ସମ୍ବନ୍ଧରେ ଶ୍ରୀମଦ୍ ଭାଗବତାଦି ମହାପୁରାଣାଦିରେ ଯାହା ନିର୍ଦ୍ଦିଷ୍ଟ ଅଛି, ଆଜ ସେହି ପ୍ରାୟଶ୍ଚିତ୍ତ ଓ ପରୀକ୍ଷାର ଦିନ ଉପସ୍ଥିତ । ଅଚିରମ୍ଭେ ଏହାର ଫଳ ପ୍ରକାଶିତ ହେବ, ଏଥିରେ ସନ୍ଦେହ ନାହିଁ । ଶ୍ରୀ ହରୟେ ନମଃ । ଇତି ।

# ଆତ୍ମଗୀତା

ଓଁ ସତ୍ୟଂ ବିଜ୍ଞାନ-ମାନନ୍ଦଂ ବ୍ରହ୍ମଃ ଓଁ ଅୟମାତ୍ମା ବ୍ରହ୍ମଃ । କାୟମନୋ-ବାକ୍ୟାତୀତ ଶୁଦ୍ଧ ଅଖଣ୍ଡବୋଧରୂପ ଏହି ଆତ୍ମା, ଆତ୍ମସ୍ୱରୂପତଃ, ଆତ୍ମାମାତ୍ର; ଅଥଚ ଦ୍ୱୈତଛାୟାଶୂନ୍ୟ ବିମଳାଽଦ୍ୱୈତ ବସ୍ତୁ । ଏହି ଆତ୍ମା ସର୍ବଦା ନିଜର ଚିଦାନନ୍ଦମୟ ମୂର୍ତ୍ତିକୁ କେବଳ ଆତ୍ମବୋଧାକାର ବୋଲି ଉପଲବ୍‌ଧି କରୁଅଛନ୍ତି । କିନ୍ତୁ ନିର୍ମଳ ନିରୁପାଧିକ ଆକାଶରେ ମୃଗତୃଷ୍ଣିକା ନଗରବତ୍ ପରିଦୃଷ୍ଟ ହେଲାପରି ଏହି ନିର୍ମଳ ନିରୁପାଧିକ ବିଶୁଦ୍ଧ ଆତ୍ମାରେ ‘ମାୟାବିଳାସବିକଳ୍ପିତ ଚରାଚରମୟ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଜଗଦାକାରଚିତ୍ର’ ଦ୍ୱୈତଜୀବ ଚୈତନ୍ୟୋପାଧିକରୂପେ ଆତ୍ମସତ୍ତ୍ୱଭାବ ପରିଦୃଷ୍ଟ ହେଉଅଛି; ପରନ୍ତୁ ଆତ୍ମାରୁ କଦାଚ ଅପସାରିତ ବା ଅଲଗା ହୋଇ ରହୁନାହିଁ । ଏହିପରି ଦେଖାଯିବା ଆତ୍ମମାୟା-ଶକ୍ତିର କାର୍ଯ୍ୟ । ମାୟା ସ୍ୱାଶ୍ରୟ ଆତ୍ମାକୁ ତାହାର ନିଜ ମାୟିକାକାରରେ ବିମୋହିତ ଓ ତନ୍ମୟ କରୁଅଛି । ଏହି ଆତ୍ମା, ମାୟାଶକ୍ତି ଏବଂ ମାୟିକ କାର୍ଯ୍ୟ ସମ୍ବନ୍ଧରେ ବହୁ ବହୁ ପ୍ରକାର ମତବାଦ ପରିଲକ୍ଷିତ ହୁଏ; ହେବା ମଧ୍ୟ ସ୍ୱାଭାବିକ; ଯଥା—ମାୟାବାଦ, ବିବର୍ତ୍ତବାଦ, ପରିଣାମବାଦ, ପ୍ରକୃତି ପୁରୁଷବାଦ, ବିକଳ୍ପବାଦ, କର୍ମବାଦ, ବୀଜାଙ୍କୁରବାଦ, ସୃଷ୍ଟିପ୍ରବାହବାଦ, ଅଥବା ନାସ୍ତିକ-ଜଡ଼ବାଦାଦି ଯେ କୌଣସି ପ୍ରକାର ମତବାଦ ହେଉନା କାହିଁକି ପଛକେ, ଏହାକୁ ପରମାତ୍ମାର ବିଚିତ୍ର ଶକ୍ତି-ସୃଷ୍ଟ ଲୀଳାବିଭବ ଚିତ୍ରମୟ ଆକାରବିଶିଷ୍ଟ ବସ୍ତୁବିଶେଷ ବୋଲି ଅବଧାରଣ କରି ନିବର୍ତ୍ତିବାକୁ ହେବ । ନାନାବିଧ ଦର୍ଶନ ଏବଂ ମତଭେଦାଦି ଏହିଠାରୁ ସୃଷ୍ଟି ହେଉଅଛି । ଯାହା ହେଉ, ଏ ସମସ୍ତ ଭେଦାଭେଦାଦିକୁ ସେହି ଏକ ମୃଗତୃଷ୍ଣାରେ ପର୍ଯ୍ୟବସିତ ବା ତଦନ୍ତର୍ଗତ ବୋଲି ଦେଖି ପ୍ରସଙ୍ଗାଦିକୁ ଅଗ୍ରଗାମୀ ହେବା ଉଚିତ । ଉକ୍ତ ମାୟାବିଳାସବିକଳ୍ପିତ ଚରାଚରମୟ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଜଗଦାକାର ଚିତ୍ରଟି ବସ୍ତୁତଃ କିଣ ବା କି ପ୍ରକାର ଏଠାରେ ଚିହ୍ନିକରି ଦେଖିରଖିବା ଉଚିତ (ଏଥିରେ ସବୁ ମତର ଭେଦ ପ୍ରୟୋଗ କରି ଦେଖିଲେ ମଧ୍ୟ କ୍ଷତି ନାହିଁ) ଅର୍ଥାତ୍ ଏହି ଚିତ୍ରର ଭିନ୍ନ ଭିନ୍ନ ଭାବାତ୍ମକ ବର୍ଣ୍ଣନା ସବୁ ପ୍ରକାର ମତଭେଦର ଆଦି ଜନ୍ମଭୂମି ଅଟେ ।

୧ମ—ଆତ୍ମାର ପ୍ରକୃତିଗତ ଅନାଦି ଦେହାତ୍ମବାସନା ଓ ସଂସ୍କାରମୂଳକ ଅଜ୍ଞାନାତ୍ମକ ଜୀବୋପାଧି ଏହି ଚିତ୍ରର ରଙ୍ଗ ସ୍ୱରୂପ ଅଟେ । ୨ୟ—ବୁଦ୍ଧି ଏହି ଚିତ୍ରର ସୀମାନ୍ତ ବନ୍ଧନୀବେଷ୍ଟିତ ରେଖା । ୩ୟ—ଅହଂକାର ଏହି ରେଖାନ୍ତର୍ଗତ ସାବୟବ ନିର୍ଦ୍ଦିଷ୍ଟ ଦୃଶ୍ୟମାନ ବିଗ୍ରହ ବା ମୂର୍ତ୍ତି । ୪ର୍ଥ—ଜ୍ଞାନେନ୍ଦ୍ରିୟପଞ୍ଚକ ଏହି ମୂର୍ତ୍ତିର ଉତ୍କୃଷ୍ଟ ଅବୟବାଦି । ୫ମ—ପଞ୍ଚକର୍ମେନ୍ଦ୍ରିୟ ଏହାର ଅପକୃଷ୍ଟ ଅଙ୍ଗ ଏବଂ ୬ଷ୍ଠ—ପଞ୍ଚପ୍ରାଣ ଏହି ଚିତ୍ରର ଅଠାସ୍ୱରୂପ ଅଟେ । ଏପରି ୭ମ—ପାଞ୍ଚଭୌତିକ ଦେହ ଏହି ଚିତ୍ରର ପଟ୍ଟସ୍ୱରୂପ । ୮ମ—ଆଉ ପାଞ୍ଚଭୌତିକ ବିରାଟ ବ୍ରହ୍ମାଣ୍ଡ ଏହି ପଟ୍ଟର ରହିବା ସ୍ଥାନ ।

ଏହି ସମସ୍ତ ନାମଧେୟ ବସ୍ତୁମାନଙ୍କର ସମବାୟ ସମ୍ବନ୍ଧରୁ ମିଶ୍ର ବ୍ୟାପକ ଭାବରେ ସୁଖ ଦୁଃଖ, ହର୍ଷ ବିଷାଦ, ଦୟା ଧର୍ମ, ଓ ଜ୍ଞାନ ବିଜ୍ଞାନାଦି ସମସ୍ତ ଅସଂଖ୍ୟ ଅସଂଖ୍ୟ ପ୍ରକାରର ଅନ୍ତର୍ବୃତ୍ତିମାନେ ଏହି ଚିତ୍ରର ସୌନ୍ଦର୍ଯ୍ୟ ଓ ଅସୌନ୍ଦର୍ଯ୍ୟ ସଂଜ୍ଞକ ଅର୍ଥାତ୍ ସତ୍ ପ୍ରବୃତ୍ତିମାନେ ସୌନ୍ଦର୍ଯ୍ୟ ଏବଂ ଅସତ୍ ପ୍ରବୃତ୍ତିମାନେ ତଦ୍ବିପରୀତ ସ୍ଥାନଜ୍ଞାପକ ଅଟନ୍ତି ।

ଜୀବୋପାଧିଠାରୁ ଆରମ୍ଭ କରି ପାଞ୍ଚଭୌତିକ ବ୍ରହ୍ମାଣ୍ଡ ପର୍ଯ୍ୟନ୍ତ ଏ ସମୁଦାୟ ବସ୍ତୁମାନଙ୍କର ଏକାଧାରଭୂତ ସଂଘବଦ୍ଧ ଯଥା-ସଂସ୍ଥାନ ସଂଘଟିତ ଆକୃତିକୁ ଏଠାରେ ପୂର୍ବୋକ୍ତ ଜଗଦାକାରଚିତ୍ର ବୋଲି ବୁଝିବାକୁ ହେବ । ବିଶୁଦ୍ଧ ଆତ୍ମାରେ ଏହି ଚିତ୍ର ଅଭିନ୍ନଭାବେ ବିଶୁଦ୍ଧାକାଶରେ ମୃଗତୃଷ୍ଣା ନଗରବତ୍ ପ୍ରାୟ ଦୃଶ୍ୟମାନ ହେଉଅଛି । ଏହି ଚିତ୍ରର କାର୍ଯ୍ୟକାରଣ-ସମ୍ବନ୍ଧବିଚାର ଏଠାରେ ଅନାବଶ୍ୟକ, କାରଣ ତାହା ଅସୀମ ଆଉ ବୃଥା କାଳକ୍ଷେପର ହେତୁ, ଅଥଚ ଶେଷରେ ତାହା ସେହି ମୃଗତୃଷ୍ଣାର ଅନ୍ତର୍ଭୁକ୍ତ ହେବ; ସର୍ବଦା ମଧ୍ୟ ତଦ୍ରୂପ ରହିଅଛି । ବର୍ତ୍ତମାନ ଦେଖିବାକୁ ହେବ, ଦ୍ରଷ୍ଟା ବା ଜ୍ଞାତା ଦୃଷ୍ଟ ବା ଜ୍ଞେୟ ବସ୍ତୁରୁ ପୃଥକ୍ ସ୍ଥାନସ୍ଥ, ମଧ୍ୟ ପୃଥକ୍ ସତ୍ତ୍ୱବିଶିଷ୍ଟ, ଏହା ସ୍ୱୀକାର୍ଯ୍ୟ; ମାତ୍ର ଉପସ୍ଥିତ କ୍ଷେତ୍ରରେ ଏହି ଚିତ୍ରର ଅନ୍ୟତ୍ର ଅନ୍ୟ ରୂପ ଆଧାର ନ ଥିବାରୁ ଏହା ଆତ୍ମାରେ ଆତ୍ମସତ୍ତ୍ୱା ସହିତ ପରିଦୃଷ୍ଟ ବା ପରିଜ୍ଞାତ ହେଉଥିବାବଶତଃ ଦ୍ରଷ୍ଟା ବା ଜ୍ଞାତାରୂପ ଆତ୍ମା ଏହି ଚିତ୍ର ସହିତ ଆପଣାକୁ 'ମୁଁ' ବୋଲି ନିର୍ଦ୍ଦେଶ କରୁଅଛି । ପୁଣି ଏତଦ୍ରୂପ ନିର୍ଦ୍ଦେଶ ଉତ୍ତରୋତ୍ତର କ୍ରମଶଃ ଦୃଢ଼ୀଭୂତ ହେବାରୁ ଆତ୍ମା ନିଜ ତତ୍ତ୍ୱକୁ ବିସ୍ମରଣ କରି ଏହି ଚିତ୍ରକୁ 'ମୁଁ' ବୋଲି ଦୃଢ଼ ଜ୍ଞାନ କରୁଅଛି । ଏହି ଦୃଢ଼ ସଂସ୍କାରର ନାମ ମାୟିକ ବ୍ୟାମୋହଜନିତ ଜୀବୋପାଧି । ଏହି ମୋହମୟ ସଂସ୍କାରରୁ ଉକ୍ତ ଚିତ୍ରଗତ-ଧର୍ମ, ସୁଖ, ଦୁଃଖ ଓ ମୂଢ଼ତାଦି ଗୁଣରେ ଅସଙ୍ଗ ଆତ୍ମା, ମୁଁ ସୁଖୀ, ଦୁଃଖୀ ବା ମୂଢ଼ରୂପେ ନିତ୍ୟପ୍ରସିଦ୍ଧ ହୋଇ ନିତ୍ୟବଦ୍ଧ ଜୀବରୂପେ ଦେହୀ ଅବସ୍ଥାରେ ସଂସାରଭ୍ରମ ଗ୍ରହଣ କରିଅଛି । ସ୍ଥୂଳତଃ ଏହି ଚିତ୍ରଟି ଦେହତ୍ରୟର ସମଷ୍ଟିଭୂତ-ଆତ୍ମଦେହରୂପେ ବ୍ୟବହୃତ ହେଉଅଛି, ଆଉ 'ମୁଁ' ବୋଲି ପ୍ରସିଦ୍ଧ ହୋଇଅଛି । ଏହାକୁହିଁ ମତଭେଦବାଦ, ଅବସ୍ତୁ ବା ବସ୍ତୁରୂପେ ନିଶ୍ଚୟ କରି ନାନାବିଧ ବର୍ଣ୍ଣନାକାରରେ ବିଶ୍ଲେଷଣ କରିଅଛି ।

ଏହି ଜଗଦାକାର ଚିତ୍ରର ପଦାର୍ଥଦ୍ୱୟ ନିରୂପଣ କରିବାକୁ ଗଲେ ଦେଖାଯିବ, ଏହା ଏକାନ୍ତ ସ୍ଥୂଳଜଡ଼ାତ୍ମକ ନୁହେ ଅଥବା ବିଶୁଦ୍ଧ ଚିଦାତ୍ମକ ବି ନୁହେ । ଏହା ଉଭୟ ମିଶ୍ରିତ ଅର୍ଥାତ୍ ଏକ ପ୍ରକାର ଜ୍ଞାନାଭାସାତ୍ମକ ଅଜ୍ଞାନ ସମଷ୍ଟି ସଂଜ୍ଞକ ବସ୍ତୁ-ବିଶେଷ ମାତ୍ର । ଏହା ଏହିପରି ଜ୍ଞାନାଭାସାତ୍ମକ ଅଟେ ବୋଲି ଆତ୍ମାରେ ବିଜଡ଼ିତ ଥାଇ ଆତ୍ମା ପ୍ରାୟ ଦୃଷ୍ଟ ହେଉଅଛି । ନଚେତ୍ ତାହା କେବଳ ଜଡ଼ାତ୍ମକ ହୋଇଥିଲେ ଜଡ଼ତା, ଜ୍ଞାନାତ୍ମକ ଆତ୍ମାପକ୍ଷରେ ସମ୍ପୂର୍ଣ୍ଣ ବିରୁଦ୍ଧ ଧର୍ମାକ୍ରାନ୍ତ ଥିବାରୁ ତାହା ଆତ୍ମାରୁ ନିଃସମ୍ପର୍କ

ରହି ଅଜ୍ଞାତ ବା ନ ଥିବା ପରି ବିବେଚିତ ହୋଇ ଅସ୍ତିତ୍ୱଶୂନ୍ୟ ବସ୍ତୁରୂପେ ସ୍ମରଣରୁ ପରିତ୍ୟକ୍ତ ହୋଇଥାନ୍ତି । ଅତଏବ ଇତ୍ୟାଦି ।

ଲିଙ୍ଗ-ଜୀବୋପାଧିଠାରୁ ପାଞ୍ଚସ୍ଥୂଳଭୂତ ପର୍ଯ୍ୟନ୍ତ ସମସ୍ତ ବସ୍ତୁମାନଙ୍କର ପରସ୍ପର ଯୌଗିକ ସମ୍ବନ୍ଧ ଘଟିତ ଏହି ଜଗଦାକାର ଚକ୍ର ଏତଦ୍ରୂପ ସର୍ବାଙ୍ଗଯୁକ୍ତ ହୋଇ ପ୍ରକଟିତ ହୁଏ । ନାମତଃ ଏହାର ଅଂଶ ବିଭାଗ ଅର୍ଥାତ୍ ଏହା କୌଣସିଠାରେ ପରିଦୃଷ୍ଟ ହୁଏ ନାହିଁ । ଅର୍ଥାତ୍ ଆତ୍ମା ଏଥିରୁ ଅଲଗା ହୋଇ ରହିଲେ ଅବଶିଷ୍ଟ ସବୁଗୁଡ଼ିକର ଅସ୍ତିତ୍ୱ କିଏ ସପ୍ରମାଣ କରିବ ? ସୁତରାଂ ଏହାର ଲିପ୍ତାବସ୍ଥାର ନାମ ତାହାହିଁ । ପୁଣି ଆତ୍ମାକୁ ବିଯୁକ୍ତ କରି ନ ଦେଇ ଅବଶିଷ୍ଟ ଜୀବୋପାଧିଠାରୁ ପଞ୍ଚଭୂତ ପର୍ଯ୍ୟନ୍ତ ମଧ୍ୟରୁ ଯାହାକୁ ଇଚ୍ଛା ସେହି ଗୋଟିକୁ ବାଦ୍ କର, ଦେଖାଯିବ ସେହିରୂପ ଗୋଟିକର ଅତ୍ୟନ୍ତାଭାବରେ ଅନ୍ୟ ସବୁଗୁଡ଼ିକ କ୍ରମେ କ୍ରମେ ଯଥା ନିୟମରେ ବିଲୁପ୍ତ ହେବେ । କେବଳ ଆତ୍ମା ମାତ୍ର ଅବିନାଶୀ ଜ୍ଞାତା ସାକ୍ଷୀରୂପେ ପରିଶିଷ୍ଟ ରହିବେ, ଅର୍ଥାତ୍ ଆତ୍ମାଭିନ୍ନ ଆନ୍ୟମାନଙ୍କର ପରସ୍ପର ବିଦ୍ୟମାନତା ହେତୁ ସମସ୍ତେ ସମଷ୍ଟିରୂପେ ବିରାଜିତ ଥାଇ ଜଗଦାକାର ଚକ୍ର ନାମକୁ ପୂରଣ କରିଅଛନ୍ତି । ଗୋଟିଏ ଚକ୍ର ରହିଲେ କଳଘଣ୍ଟାଟି ଅକର୍ମଣ୍ୟ ହେଲାପରି ଏହି ଚକ୍ରର ଗୋଟିକ ଅଭାବରେ ସବୁଗୁଡ଼ିକର ଅଭାବ ଲକ୍ଷିତ ହେବ । ଏଠାରେ ଆତ୍ମାର ଅର୍ଥ—ମୁକ୍ତଜୀବୋପାଧି । ଉପାଧିଶୂନ୍ୟ ଆତ୍ମା ଲୀଳାଛଳେ ଉପାଧି ସହିତ ଅଭିନ୍ନାକାର ସ୍ୱୀକାର କରିଅଛନ୍ତି ।

ମୋଟରେ ଏହି ଚକ୍ର ଭାବତ୍ରୟବିଶିଷ୍ଟ ଅଟେ—(୧) ଦ୍ରଷ୍ଟୃତ୍ୱ ବା ଜ୍ଞାତୃତ୍ୱ । (୨) ଦର୍ଶନ ବା ଜ୍ଞାନନିଷ୍ପାଦିକା ପ୍ରାଣଚାଞ୍ଚଲ୍ୟ କ୍ରିୟାଶକ୍ତି, (୩) ଦୃଷ୍ଟ ବା ଜ୍ଞେୟରୂପ ବିଶିଷ୍ଟ ଜଡ଼ାତ୍ମକ ବସ୍ତୁ ଅର୍ଥାତ୍ ୧ମଟି ଜ୍ଞାନଶକ୍ତ୍ୟାତ୍ମକ ସତ୍ତ୍ୱ, ୨ୟଟି କ୍ରିୟାଶକ୍ତ୍ୟାତ୍ମକ ରାଜସ, ୩ୟଟି ଦୃଷ୍ଟ ବା ଜ୍ଞେୟାତ୍ମକ ଜଡ଼ ତାମସ । ଉଦାହରଣସ୍ୱରୂପ ଦେଖିବାକୁ ହେବ, ମୋଟରେ ଦେହ ଯେପରି ଗୋଟିଏ ପଦାର୍ଥ, ମାତ୍ର ଏହା ଉକ୍ତ ତିନିଗୋଟି ଭାବର ସମଷ୍ଟି ସ୍ୱରୂପ ଅଟେ । ଅର୍ଥାତ୍ (୧) ଚକ୍ଷୁରିନ୍ଦ୍ରିୟ ସଂଯୁକ୍ତ ମନ ଏ ଦେହର ଦ୍ରଷ୍ଟା ବା ସତ୍ତ୍ୱ, (୨) ପ୍ରାଣ ଚାଞ୍ଚଲ୍ୟଜନିତ ଦର୍ଶନକ୍ରିୟା ଏହାର ରାଜସଭାଗ, ଆଉ (୩) ଜଡ଼ ଦେହଟି ସତ୍ତ୍ୱାତ୍ମକ ଜ୍ଞାନରୂପ ବା କ୍ରିୟାତ୍ମକ ରାଜସରୂପ ନୁହେ ଅର୍ଥାତ୍ ଏହା କେବଳ ତାମସ ବା ଜଡ଼ରୂପ । ଏହିରୂପେ ଉକ୍ତ ଜଗଦାକାର ଚକ୍ର ଉକ୍ତ ତ୍ରିତୟଭାବବିଶିଷ୍ଟ ଅଟେ । (୧) ବୁଦ୍ଧି, ଅହଂକାର ଏବଂ ଜ୍ଞାନେନ୍ଦ୍ରିୟ ଜ୍ଞାନାତ୍ମକ ସତ୍ତ୍ୱ, (୨) କର୍ମେନ୍ଦ୍ରିୟ ଓ ପ୍ରାଣ-କ୍ରିୟାତ୍ମକ ରାଜସ, ଆଉ (୩) ସ୍ଥୂଳ ପାଞ୍ଚଭୌତିକ ପିଣ୍ଡବ୍ରହ୍ମାଣ୍ଡାଦି ଜଡ଼ାତ୍ମକ ତାମସ । ଏଠାରେ ବୁଦ୍ଧିଠାରୁ ସ୍ଥୂଳଭୂତ ପର୍ଯ୍ୟନ୍ତ ପରସ୍ପର ନିତ୍ୟ ସମ୍ବନ୍ଧ ବିଶିଷ୍ଟ ସମସ୍ତ ବସ୍ତୁରୁ ଏକତାକୁ ଚିଦାଭାସ, ଜୀବୋପାଧି ଆକାରରେ ରଙ୍ଗୀନ୍ କରି ଏହି ପ୍ରତ୍ୟକ୍ଷ ମୂର୍ତ୍ତିକର ଜଗଦାକାର ଚକ୍ରକୁ ମନୋହର ଓ ଚିତ୍ତାକର୍ଷକମୟ କରିଅଛି । ଏହି ଚକ୍ରହିଁ ଆତ୍ମାର ସଂସାର ଆଉ ପରିଦୃଶ୍ୟମାନ, କେବଳ ଏହି ଭୌତିକ ବିଶ୍ୱବ୍ରହ୍ମାଣ୍ଡ ଆତ୍ମାର ସଂସାର ନୁହେ । କାରଣ

ଏହା ସ୍ୱତଃ ପ୍ରକାଶିତ ହେଉନାହିଁ, ଅର୍ଥାତ୍ ଏହା ସ୍ୱସତ୍ତ୍ୱବାନ୍ ନୁହେ । ଆତ୍ମସତ୍ତ୍ୱ ଏବଂ ବୁଦ୍ଧ୍ୟହଂକାରାଦି ଦ୍ୱାରା ଏହାର ବିକାଶ ।

ଆତ୍ମା ଏହି ଜଗଦାକାର ଚିତ୍ରର ବାହ୍ୟାନ୍ତର ସର୍ବତ୍ର ବିରାଜିତ ଥାଇ ସ୍ୱାତ୍ମସତ୍ତ୍ୱ-ଦ୍ୱାରା ଏହାକୁ ଏତଦ୍ରୂପ ଚିତ୍ରାକାରରେ ପ୍ରକାଶ କରିଅଛି—ଯାପାଲୋକ ଯେପରି ସ୍ୱକୀୟ ତେଜାଲୋକବିଶିଷ୍ଟ ହୋଇ ସ୍ୱୟଂ ପ୍ରକାଶିତ ଥାଇ ନିକଟସ୍ଥ ସର୍ବପ୍ରକାର ଆଲୋକଶୂନ୍ୟ ପଦାର୍ଥାଦିକୁ ତଦୀୟ ନିଜ ନିଜ ଆକାର ପ୍ରକାରାଦିରେ ପ୍ରକାଶ କରିଥାଏ, ସେହିପରି ଅହଂବୋଧରୂପ ମାତ୍ର ଆତ୍ମା ସର୍ବାବସ୍ଥାରେ ସମଭାବେ ସର୍ବତ୍ର ବିରାଜମାନ ଥାଇ ଆତ୍ମପ୍ରକାଶକତା ହେତୁ ଏହି ଜଗଦାକାର ଚିତ୍ରକୁ ପ୍ରକାଶ କରିଅଛି । ଉପରୋକ୍ତ (୧) ଦ୍ରଷ୍ଟୃତ୍ୱ (୨) ଦର୍ଶନ (୩) ଦୃଷ୍ଟବସ୍ତୁ ଏହି ଆତ୍ମାରେ ବିଚିତ୍ର ଅସଂଲଗ୍ନ ଭାବରେ ରହି ଅଭିନ୍ନବତ୍ ପ୍ରତୀୟମାନ ହେଉଅଛି । ଆତ୍ମା ଏ ସବୁରେ ଅନୁବର୍ତ୍ତନ କରୁଅଛି ଓ ଏ ସବୁର ପରିଣାମ ଦର୍ଶନ କରି ସ୍ୱୟଂ ଅପରିଣାମୀ ହୋଇ ନିତ୍ୟ ବିରାଜିତ ରହିଅଛି ।

ବର୍ତ୍ତମାନ ଦେଖାଯାଉଅଛି ଏହି ଜଗଦାକାର ଚିତ୍ରକୁ ବସ୍ତୁତତ୍ତ୍ୱଭାବେ ସ୍ଥିର କରିବାକୁ ଗଲେ ଦେଖାଯାଏ ଏହା ଜ୍ଞାନାଭାସାତ୍ମକ ବସ୍ତୁରୂପେ ନିରୂପିତ ହେଉଅଛି । ପ୍ରତ୍ୟକ୍ଷୀଭୂତ ଏହି ଜଡ଼ପିଣ୍ଡ ବ୍ରହ୍ମାଣ୍ଡାତ୍ମକ ବସ୍ତୁକୁ କେବଳ ଜଡ଼ ବୋଲି ମନେକରିବା ସମୀଚୀନ ନୁହେ । କାରଣ ଏହା ଅନ୍ତଃକରଣାଦି ସହିତ ମିଶି ସେହି ମିଶ୍ରଫଳରୂପେ ପ୍ରକାଶିତ ହେଉଅଛି । ଏହାର ସ୍ୱତଃବିକାଶ ହେବା ଧର୍ମ ନାହିଁ । ଅତଏବ ପିଣ୍ଡ-ବ୍ରହ୍ମାଣ୍ଡାଦିର ଏହି ଜଗଦାକାରଟି ଅନ୍ତଃକରଣର ରୂପାନ୍ତରିତ ବା ବିବର୍ତ୍ତିତ ପରିଣାମ-ବିଶେଷ ଅଟେ । ଅର୍ଥାତ୍ ଅନ୍ତଃକରଣର ତଦାକାର ପରିଣାମ ବିନା ଏହାର ଅସ୍ତିତ୍ୱ ସ୍ୱତନ୍ତ୍ରଭାବେ କିଛି ନିରୂପିତ ହେଉନାହିଁ । ଅନ୍ତଃକରଣହିଁ ଏତଦ୍ରୂପ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଜଡ଼ାକାରରୂପେ ବିବର୍ତ୍ତିତ ବା ଆଭାସିତ ହେଉଅଛି ମାତ୍ର । ଚିଦାଭାସ ଅନ୍ତଃକରଣର ପ୍ରକାଶକ ଅଥଚ ଦ୍ରଷ୍ଟା । ସେ ଜଡ଼ାକାର ପିଣ୍ଡବ୍ରହ୍ମାଣ୍ଡକୁ ସ୍ୱତନ୍ତ୍ରଭାବେ ଦେଖୁନାହିଁ ଅଥବା କେବଳ ଅନ୍ତଃକରଣକୁ ମଧ୍ୟ ସ୍ୱତନ୍ତ୍ରଭାବେ ଦେଖୁନାହିଁ । ଜଡ଼ପିଣ୍ଡ ବ୍ରହ୍ମାଣ୍ଡାକାରର ଅନ୍ତଃକରଣକୁ ଏକ ମିଶ୍ରବସ୍ତୁରୂପେ ଦେଖୁଅଛି । ଅନ୍ତଃକରଣର ଜଡ଼ପିଣ୍ଡବ୍ରହ୍ମାଣ୍ଡାଦି ସହିତ ସମ୍ବନ୍ଧ ହେବାରେ ତାହା ଉକ୍ତ ଜଡ଼ାକାର ଚିତ୍ର ଧାରଣ କରିବାରୁ ଅଥଚ ସୂକ୍ଷ୍ମ ଜ୍ଞାନାଭାସାକାରରେ ପରିଦୃଶ୍ୟ ହେବାହେତୁ ଚିଦାଭାସ ଆତ୍ମାର ଦର୍ଶନଯୋଗ୍ୟ ହୋଇଅଛି । ନଚେତ୍ କେବଳ ଜଡ଼ସହିତ ଚିଦାଭାସ ଆତ୍ମାର ସମ୍ବନ୍ଧ ହେବା ଅସମ୍ଭବ । ଯେହେତୁ ବିପରୀତ ଅଥଚ ବିରୁଦ୍ଧଧର୍ମଶୀଳ ବସ୍ତୁମାନଙ୍କର ସମ୍ବନ୍ଧ ହୁଏ ନାହିଁ, ଚିଦାଭାସଅର୍ଥାତ୍ ଜ୍ଞାନ ତଥା ଆଉ ପିଣ୍ଡବ୍ରହ୍ମାଣ୍ଡାଦି ଜଡ଼ଭାବାପନ୍ନ ବିରୁଦ୍ଧଧର୍ମୀ ଉଭୟଙ୍କର ସମ୍ବନ୍ଧ ଅସମ୍ଭବ । ସେହି ହେତୁ ଉଭୟର ମଧ୍ୟସ୍ଥଭାବେ ଅନ୍ତଃକରଣ ପ୍ରକୃତିଦ୍ୱାରା ନିଯୋଜିତ ହୋଇଅଛି । ଅନ୍ତଃକରଣର ଆତ୍ମାର ଚିଦାଭାସତ୍ତ୍ୱ ସଙ୍ଗେ ସମ୍ବନ୍ଧ ହେବାର ଗୁଣ ଅଛି, ଅଥଚ ଜଡ଼ ସଙ୍ଗେ ଇନ୍ଦ୍ରିୟାଦିର ସାହାଯ୍ୟରେ ସମ୍ବନ୍ଧ କରିବାର ଗୁଣ ମଧ୍ୟ

ଅଛୁ । ଏହେତୁ ଅନ୍ତଃକରଣର ଏତଦୁଭୟ ଗୁଣ ଥିବାରୁ ତାହା ଜଡ଼ାକାରାକାରିତାରେ ଆତ୍ମାକୁ ଦର୍ଶନ ଦେଉଅଛି । ଅତଏବ ଆତ୍ମା ଅନ୍ତଃକରଣକୁ ଜଡ଼ରୂପ-ଗ୍ରାହ୍ୟ ବସ୍ତୁ ବୋଲି ମଣୁଅଛି । ସେଠାରେ ଜଡ଼ର ସ୍ୱାତନ୍ତ୍ର୍ୟ ନାହିଁ ଅଥବା ତଦ୍ରୂପ ସ୍ୱାତନ୍ତ୍ର୍ୟର ମୂଲ୍ୟ କିଛି ନୁହେ । ଅତଏବ ଜଡ଼ର ପୃଥକ୍ ସତ୍ତା ସ୍ୱୀକାର କରିବା ଭ୍ରମାତ୍ମକ କାରଣ ଆତ୍ମାପକ୍ଷରେ ସେପରି ବିଗ୍ରହ କରିବା ଅନାବଶ୍ୟକ । ଆତ୍ମା ଅନ୍ତଃକରଣକୁ ଛାଡ଼ି କୌଣସି ଜଡ଼କୁ ଜଡ଼ ବୋଲି ନିରୂପଣ କରିବାକୁ ଅକ୍ଷମ । ସେ ସର୍ବଦା ତଦାଭାସ ସହିତ ଅନ୍ତଃକରଣକୁ ଦେଖୁଅଛି ଓ ତାହା ସହିତ ସ୍ୱପ୍ନ ଜାଗରଣାବସ୍ଥାରେ ସର୍ବଦା ସଙ୍ଗୀ ହୋଇଅଛି ; ସୁତରାଂ ଆତ୍ମା ବୁଝି ଅଛୁ ଅନ୍ତଃକରଣ ଜଡ଼ସହିତ ମିଶି ଜଡ଼କୁ ପୃଥକ୍‌ରୂପେ ଦେଖାଉ ଅଥବା ନିଜେ ଲୀଳାବାଞ୍ଛରେ ଜଡ଼ରୂପାକାର ଧାରଣ କରୁ, ତହିଁରେ ଆତ୍ମାର କିଛି ଯାଏ ଆସେ ନାହିଁ । ତାହା ଅନ୍ତଃକରଣର ଧର୍ମବିଶେଷର କ୍ରୀଡ଼ାମାତ୍ର । ଫଳତଃ ଆତ୍ମା ଅନ୍ତଃକରଣକୁ ଉଭୟବିଧ ଭାବାପନ୍ନ କରି ଦେଖୁଅଛୁ, ବୁଝି ଅଛୁ । ଅନ୍ତଃକରଣ ବହୁରୂପା ନର୍ତ୍ତକୀ । ଆତ୍ମାର ମନ୍ତବ୍ୟ ଏହି ଯେ ଅନ୍ତଃକରଣ ଏପରି ଗୁଣ ବା ଧର୍ମାକ୍ରାନ୍ତ ଅଟେ, ଯଦ୍ଦ୍ୱାରା ସେ ନିଜକୁ ଜଡ଼ାକାରରେ ଦେଖାଉଅଛୁ । ଅତଏବ ଅନ୍ତଃକରଣହିଁ ଜଡ଼ୀୟରୂପ ସତ୍ତ୍ୱବାନ୍ ବସ୍ତୁ ।

ଆହୁରି ଦେଖ—ହେଉଛି ବାହାର ଚକ୍ଷୁଗୋଲକକୁ ବୁଜିଦେବା; ତଥାଚ ଦେଖାଯାଉଅଛୁ ଅନ୍ତଃକରଣ କେବଳ ସ୍ମରଣ ସାହାଯ୍ୟରେ ଯେ କୌଣସି ପ୍ରକାର ଜଡ଼ାକାରକୁ ବା ଜଡ଼ୀୟ ଗୁଣକୁ ଆତ୍ମା ଆଗରେ ପ୍ରଦର୍ଶନ କରାଇବ । ସେଠାରେ ଆତ୍ମା ଅନ୍ତଃକରଣକୁ ଯେପରି ଜଡ଼ାକାର ଚିତ୍ରସମନ୍ୱିତ କରି ଦେଖୁଅଛି, ଚକ୍ଷୁଷବେଳେ ତହିଁରୁ ଅଧିକ କିଛି ନୁହେ; ମଧ୍ୟ ଠିକ୍ ସେହିପରି । ଚକ୍ଷୁଷବେଳେ ଜଡ଼ାକାର ଯେପରି ଅନ୍ତଃକରଣରୁ ପୃଥକ୍ ପରି ଦେଖା ଯାଉଅଛୁ, ଚକ୍ଷୁ ବନ୍ଦବେଳେ ମଧ୍ୟ ଅନ୍ତଃକରଣ ଆଉ ଜଡ଼ାକାର ଦୁହେଁ ଯାକ ସେହିପରି ପୃଥକ୍ ପୃଥକ୍ ହୋଇ ଉପସ୍ଥିତ ଥିଲପ୍ରାୟ ଦେଖାଯାନ୍ତି । ଏତଦ୍ରୂପ ପାର୍ଥକ୍ୟ ଭ୍ରମପୂର୍ଣ୍ଣ ବିଷୟ ଆଉ ଅନ୍ତଃକରଣର ଫେସାଦ-ବିଶେଷ ଅଟେ । ଯେହେତୁ ସେତେବେଳରେ ତ କେବଳ ଏକା ଅନ୍ତଃକରଣ ମାତ୍ର ଅଛୁ, ତେବେ ଏହା ବହୁରୂପାର ଧର୍ମ ଅଟେ ।

ପୁଣି ଦେଖ, ସ୍ୱପ୍ନଦଶାରେ ଦେହ ଓ ଦେହସ୍ଥ ସମସ୍ତ ଇନ୍ଦ୍ରିୟଦ୍ୱାର ବନ୍ଦ ଓ ପ୍ରସୁପ୍ତ ରହି ଅକର୍ମଣ୍ୟ ଥାଏ, ଅଥଚ ସେହି ବେଳରେ ଏକା ଅନ୍ତଃକରଣ ମାତ୍ର ଇନ୍ଦ୍ରିୟ-ବ୍ୟାପାରବୃତ୍ତିବିଶିଷ୍ଟ ହୋଇ ଅନ୍ତର୍ଦର୍ଶନରେ ଜାଗରୁକ ଥାଏ । ସେହିଠାରେ ତଦବସ୍ଥାରେ ସେହି ଅନ୍ତଃକରଣ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଚିତ୍ର ଏବଂ ସବୁପ୍ରକାର ବିଶ୍ୱବ୍ୟାପାରାଦି ପ୍ରତ୍ୟକ୍ଷ କରେ; ତତ୍ ସମସ୍ତରେ ମଧ୍ୟ ସତ୍ୟବିଶ୍ୱାସ କରାଇଥାଏ । ପୁଣି ସେ ବେଳରେ ମଧ୍ୟ ବ୍ରହ୍ମାଣ୍ଡାଦି ଚିତ୍ର ଓ ବିଶ୍ୱବ୍ୟାପାରାଦି ଅନ୍ତଃକରଣରେ ବହିଃସ୍ଥ ପରି ପ୍ରତିଷ୍ଠାୟମାନ ହେଉଥାନ୍ତି । ଏଥିରୁ ବୁଝାଯାଏ ଅନ୍ତଃକରଣ ସ୍ୱୟଂ ବିଶ୍ୱଜଗଦାଦି ଆକାରରେ

ପରିଣତ ହେବାର ଗୁଣ ଧାରଣ କରି ସର୍ବଦା ଉପସ୍ଥିତ ଅଛି । ତାକୁ ଆମ୍ଭେ ଦେଖିବା ମାତ୍ର ତନ୍ମଧ୍ୟରେ ଯେ କୌଣସି ଅବସ୍ଥାରେ ବହିର୍ଜଗଦାକାର ଚିତ୍ର ପରିଦୃଷ୍ଟ ହେବ । ଏହା ତାହାର ଏକ ସହଜାତ ଗୁଣ ବା ଧର୍ମ । ତେବେ କଥା ଏତିକ ଯେ, ଜାଗରଣ-ଦଶାରେ ଯେପରି ସ୍ୱପ୍ନଦର୍ଶନର ଚିତ୍ର କଳ୍ପିତ ବୋଲି ବୁଝାଯାଏ, ସେହିପରି ସ୍ୱପ୍ନରେ ମଧ୍ୟ ଜାଗରଣର ସଂସାରଚିହ୍ନ ବିଲୁପ୍ତ ଥାଏ । ଏଠାରେ ବୁଝିବାକୁ ହେବ, ଏହି ଉଭୟ ସତ୍ୟାସତ୍ୟ ବିରୁଦ୍ଧବାଦ ସେହି ଅନ୍ତଃକରଣର ଧର୍ମ । ଉପସଂହାରରେ କୁହାଯାଉଅଛି, ଅନ୍ତଃକରଣସ୍ଥିତ ବହିର୍ଜଗଦାଦି ତନ୍ମଧ୍ୟରୁ ପୃଥକ୍ ବୋଲି ଦେଖାଯିବା ସେହି ଅନ୍ତଃକରଣର ଧର୍ମ ଆଉ ଛଳନା । ବାସ୍ତବରେ ଅନ୍ତଃକରଣଙ୍କ ଅନ୍ତର୍ବହିଃ ଉଭୟବିଶିଷ୍ଟ ଏକ ବସ୍ତୁ ଅଥଚ ଅଭିନ୍ନ ଅଟେ । ଆହୁରି ବୁଝିବା ଉଚିତ, ମୋହ ଅନ୍ତଃକରଣ ସଙ୍ଗେ ମିଶି ତାହାକୁ ଏତଦ୍ରୂପ ଉଭୟବିଧ-ଭାବମୟ କରିଅଛି । ସୁତରାଂ ମୋହମୟ ଅନ୍ତଃକରଣଙ୍କ ଭୌତିକତାର କାରଣ ବା ଜନକ, ଅଥଚ ଦେହ ସଂସାରବାଚକ ଏବଂ ଦୃଶ୍ୟାଦୃଶ୍ୟମୟ, ପୁଣି ଉଭୟର ମିଶ୍ରରୂପବିଶିଷ୍ଟ ଅଟେ ।

ଅନ୍ତଃକରଣର ଆହୁରି ଏକ ଆଶ୍ଚର୍ଯ୍ୟ ଗୁଣ ଅଛି ଯେ, ଯେପରି ସେ ସ୍ୱପ୍ନଜାଗରଣାବସ୍ଥାରେ ଶବ୍ଦସ୍ପର୍ଶାଦି ବୈଷୟିକ ଆକାରରେ ପରିଣତ ହୋଇ ଜଡ଼ାକାର-ବିଶିଷ୍ଟ ଆକାଶ ବାୟୁ ପ୍ରଭୃତି ସ୍ଥୂଳାକାର ଧାରଣ କରେ, ସେହିପରି ଜ୍ଞାନଦଶାରେ ଆତ୍ମାଭିସାକାରରେ ପରିଣତ ହୋଇ ଆତ୍ମରୂପ ସହିତ ଅଭିନ୍ନାକାର ଧାରଣ କରିବାର ଉପଯୁକ୍ତ ହୁଏ । ଅର୍ଥାତ୍ ଅନ୍ତଃକରଣ ବୈଷୟିକ ଆକାର ସହଯୋଗରେ ବିଷୟାକାରା-କାରିତବୃତ୍ତି ରୂପେ ଏବଂ ତଦାଭାସ ସହଯୋଗେ ଆତ୍ମାକାରାକାରିତ ବୃତ୍ତିରୂପେ ପରିଣତ ହୁଏ । ସୂକ୍ଷ୍ମବସ୍ତୁର ଗୁଣ ଏହିପରି ସର୍ବତ୍ର ଦେଖାଯାଏ । ତରଳିତ ଧାତୁ ଯେପରି ଛାଞ୍ଚ ଅନୁସାରେ ଯେ କୌଣସି ମୂର୍ତ୍ତିରେ ପରିଣତ ହୋଇଥାଏ, ଅନ୍ତଃକରଣର ଆତ୍ମାକାରା-କାରିତ ବୃତ୍ତିପ୍ରାପ୍ତ ଅବସ୍ଥାରେ ତାହା ଜୀବୋପାଧି ସହିତ ଅଭିନ୍ନ ହୁଏ ଏବଂ ଜୀବୋପାଧି ମାତ୍ର ଅବଶିଷ୍ଟ ରହେ । ତତ୍କାଳେ ବୁଝାଯାଏ, ଜୀବୋପାଧିଙ୍କ ବୃତ୍ତିଶୂନ୍ୟ ଅନ୍ତଃକରଣର ଆକାରଭିନ୍ନ ଅନ୍ୟ ନୁହେ, ଅର୍ଥାତ୍ ଜୀବୋପାଧି ଆଉ ଅନ୍ତଃକରଣର ଅଭିନ୍ନତା ଉପଲବ୍ଧି ହୁଏ । ଜୀବୋପାଧିର ମଧ୍ୟ ସେହିପରି ଧର୍ମ ଅଛି ଯେ ତାହା ମୋହ ସଂଯୋଗେ ଅନ୍ତଃକରଣାକାରରେ ପରିଣତ ହୁଏ, ଆଉ ନିର୍ମୋହ ଅବସ୍ଥାରେ ଆତ୍ମା ସହିତ ଅଭିନ୍ନ ହୁଏ; ଅତଏବ ମୋହହିଁ ଏ ସଂସାର ବନ୍ଧନର ଜନ୍ମଭୂମି । ତଦ୍ଦ୍ୱାରା ଆତ୍ମାର ସଂସାର-ପ୍ରାପ୍ତି ଏବଂ ବନ୍ଧନ ଆଉ ତଦଭାବେ ଆତ୍ମାର କୈବଲ୍ୟ ଲାଭ ହୁଏ । ଏହିରୂପେ ପରମାର୍ଥତଃ ଏହି ଆତ୍ମା ଏକ ଏବଂ ଅଦ୍ୱିତୀୟ ଆଉ ମାୟା ବିକଳ୍ପଦ୍ୱାରା ବହୁମୟ ଏବଂ ସଂସାରପଦବାଚ୍ୟ ଅଟନ୍ତି ।

ଉପସଂହାରତଃ ଦେଖାଯାଉଅଛି, ଅନ୍ତଃକରଣ ମୋହଯୁକ୍ତ ଅବସ୍ଥାରେ ପୁରୁଷକୁ ଭୋଗ ବା କର୍ମମୟ ତାମସାଚ୍ଛନ୍ନ ଚକ୍ଷୁ ପ୍ରଦାନ କରେ । ତଦ୍ଦ୍ୱାରା ଆତ୍ମପୁରୁଷ,

କର୍ମ ବା ଭୋଗମୟ ଜଡ଼ଭୌତିକ ଦେହସଂସାରକୁ ସତ୍ୟ ଜ୍ଞାନ କରି ତହିଁରେ ପ୍ରବର୍ତ୍ତି-ଥାଏ, ଆଉ ସତ୍ତ୍ୱ ଚୈତନ୍ୟଭାବଯୁକ୍ତ ଅନ୍ତଃକରଣ ପୁରୁଷକୁ ଦାର୍ଶନିକ ବିବେକ ଚକ୍ଷୁ ପ୍ରଦାନ କରେ । ତଦ୍ଦ୍ୱାରା ପୁରୁଷ, ବହିର୍ଜଡ଼ମୟ ଦେହ ସଂସାରକୁ ଅନ୍ତଃକରଣମୟ ଅର୍ଥାତ୍ ମନୋମୂଳକ ବା ଅହଂକାରାତ୍ମକ ବୋଲି ନିଶ୍ଚୟ କରେ, ଆଉ ଆତ୍ମଜ୍ଞାନ ଆଡ଼େ ପ୍ରବୃତ୍ତ ହୁଏ । ଏ ପରି ଆତ୍ମାର ଚିଦାଭାସ ମୋହଯୁକ୍ତ ହେଲେ ଦେହ ସଂସାରମୟ ଅନ୍ତଃକରଣକୁ ସତ୍ୟାକାରରେ ପ୍ରଦର୍ଶନ କରାଏ ଏବଂ ତଦ୍ଦ୍ୱାରା ପୁରୁଷର ସଂସାର ବନ୍ଧନ କଳ୍ପନା ଦୃଢ଼ ସତ୍ୟରେ ପରିଣତ ହୁଏ । ପୁଣି ସେହି ଚିଦାଭାସ ଶୁଦ୍ଧ ଚୈତନ୍ୟ ବା ସତ୍ତ୍ୱଯୁକ୍ତ ହେଲେ ପୁରୁଷକୁ ଆତ୍ମଜ୍ଞାନ ପ୍ରଦାନ କରେ । ତଦ୍ଦ୍ୱାରା ପୁରୁଷ ମନୋମୂଳକ ବା ଅହଂକାରାତ୍ମକ କର୍ତ୍ତୃତ୍ୱ ଭୋକ୍ତୃତ୍ୱ ମିଶ୍ରିତ ଦେହ ସଂସାରମୟ ଚିତ୍ତକୁ ଚିଦାଭାସାକାରରେ ଦର୍ଶନ କରେ, ଆଉ ନିଶ୍ଚୟ କରେ ଯେ ଏହି ଦେହ ସଂସାରାତ୍ମକ ବିଶ୍ୱଚିତ୍ତ ଚିଦାଭାସ ବସ୍ତୁ ଭିନ୍ନ ଆଉ କିଛି ନୁହେ । ଏହିରୂପେ ଦୃଷ୍ଟିଭେଦକୃତ ଜ୍ଞାନଭେଦରେ ଏହି ସଂସାର ଚିତ୍ତକୁ ଏକ ସମୟରେ ସତ୍ୟ ଜଡ଼ମୟ ଏବଂ ଅନ୍ୟ ସମୟରେ ମନୋମୂଳକ ବା ଅହଂକାରାତ୍ମକ ଇତ୍ୟାଦି ଇତ୍ୟାଦି ରୂପରେ ପୁଣି ସତ୍ୟ ଜ୍ଞାନୋଦୟ କାଳରେ ଚିଦାଭାସାତ୍ମକ ଆକାରରେ ନିଶ୍ଚୟ କରାଯାଏ । ଏ ସମୁଦାୟ ପ୍ରକାର ଦୃଷ୍ଟିକୁ ଦ୍ରଷ୍ଟା ଆତ୍ମା, ଆପଣାଠାରେ ସଂହରଣ ବା ଲୟ କଲେ ସେ ସ୍ୱୟଂ ଆତ୍ମ ସଂପ୍ରତିଷ୍ଠିତ ରହି ବିଶ୍ୱସଂସାର ନିର୍ବିଶେଷେ ସମୁଦାୟ ଯାହା କିଛି ପ୍ରାକୃତ ବସ୍ତ୍ୱାଦିକୁ ଆତ୍ମମୟ କରି ଉପଲବ୍ଧି କରନ୍ତି । ଏତଦ୍ରୂପ ଆତ୍ମଜ୍ଞାନ ଯୋଗାବସ୍ଥାରେ ସବୁହିଁ ବ୍ରହ୍ମମୟ ଓ ତଦ୍‌ଭିନ୍ନ କିଛି ସତ୍ୟ ନୁହେ ବୋଲି ସ୍ଥିର ହୁଏ, ଆଉ ଆତ୍ମାନନ୍ଦ ଉପଭୋଗ ହୁଏ । ଏହି ସତ୍ୟଂଜ୍ଞାନମନନ୍ତ ମୂର୍ତ୍ତିଙ୍କୁ ନମସ୍କାର ।

• ଆହୁରି ବୁଝିବାକୁ ହେବ ମାୟିକ ବ୍ୟାମୋହକତାର ଏପରି ବିଶେଷ ଗୁଣ ଅଛି ଯେ ସେ ଦ୍ରଷ୍ଟା ବା ଜ୍ଞାତାକୁ ଆବୃତ କରି ତାଙ୍କର ନିଜ ମହତ୍ତ୍ୱକୁ ଲୁଚାଇ ରଖେ, ଅଥଚ ଦୃଷ୍ଟ ବା ଜ୍ଞେୟ ବସ୍ତୁକୁ ଦର୍ଶନ ଜନିତ ଜ୍ଞାନଦ୍ୱାରା ପ୍ରକାଶ କରାଇ ତହିଁରେ ଦ୍ରଷ୍ଟା ବା ଜ୍ଞାତାକୁ ମୁଗ୍ଧ କରେ । ଫଳରେ ଦ୍ରଷ୍ଟା ବା ଜ୍ଞାତା ସେହି ଦୃଷ୍ଟ ବା ଜ୍ଞେୟ ବସ୍ତୁରେ ମିଶି ଅଭିନ୍ନଭାବେ ତଦ୍ରୂପ ଦୃଷ୍ଟ ଜ୍ଞେୟାକାରରେ ଆପଣାକୁ ଦେଖିବାକୁ ପାଆନ୍ତି । ଆତ୍ମାପକ୍ଷରେ ମାୟିକ ଦର୍ଶନରୁ ଏହିପରି ବିପଦପୂର୍ଣ୍ଣ ଫଳ ଲାଭ ହୁଏ, ଅଥଚ ମୋହ ଏହି କୁଫଳକୁ ସମ୍ପଦ ବୋଲି ଚହ୍ଲାଇଅଛି । ଯାହା ବିପରୀତ ଦର୍ଶନ ବା ଜ୍ଞାନର ହେତୁ, ତାହା ଏଠାରେ ମୋହ ।

ଏବେ ଦେଖିବାକୁ ହେବ, ଆତ୍ମା ଅସଙ୍ଗ ଓ ଅସଙ୍ଗ ଏବଂ ସ୍ୱରୂପତଃ ମୋହ ଏବଂ ମୋହ-କଳ୍ପିତ ସଂସାର-ସଂସ୍ପର୍ଶିତ ମୁକ୍ତ-ସ୍ୱରୂପ ଅଟନ୍ତି । ଅଥଚ ପୂର୍ବୋକ୍ତ ଜଗଦାକାର ଚିତ୍ତ ଦର୍ଶନ ମାତ୍ରେ ସେହି ମୁକ୍ତାତ୍ମା ପୁରୁଷ, ଉକ୍ତ ପରିଦୃଶ୍ୟମାନ ଚିତ୍ତରେ ମାୟିକ ମୋହଦ୍ୱାରା ମିଶି ଅଭିନ୍ନଭାବ ଧାରଣପୂର୍ବକ ନିଜ ତତ୍ତ୍ୱକୁ ଭୁଲି ଆପଣାକୁ ତଦ୍ରୂପ ଚିତ୍ତ

ସହିତ ଶବଗତ ବଶେଷିତ ଆକାରରେ ପରିଦର୍ଶନ କରି ଜୀବୋପାଧି ପ୍ରାପ୍ତ ହୋଇ-ଅଛନ୍ତି । ତଦ୍ଦ୍ୱାରା ଏହି ଜୀବୋପାଧି ଦ୍ରଷ୍ଟାରୂପ ଧାରଣପୂର୍ବକ ବୁଦ୍ଧ୍ୟହଂକାରାଦିକୁ ଦର୍ଶନ କରିବା ମାତ୍ର ସ୍ୱୟଂ ସେହି ବୁଦ୍ଧ୍ୟାଦି ସମନ୍ୱିତ ଅନ୍ତଃକରଣ ରୂପ ଦୃଶ୍ୟାଦି ସହିତ ମିଶି ଅଭେଦ ଭାବରେ ଅନ୍ତଃକରଣମୟ ବୋଲି ଆପଣାକୁ ନିର୍ଦ୍ଦେଶ କରି ସ୍ୱୟଂ ଦ୍ରଷ୍ଟା ଜୀବୋପାଧିକ ପୁରୁଷ ଦୃଷ୍ଟ ଅନ୍ତଃକରଣର ସ୍ୱରୂପତା ପ୍ରାପ୍ତ ହୁଅନ୍ତି । ବର୍ତ୍ତମାନ ଆତ୍ମା, ନିଜ ଆତ୍ମରୂପ ଓ ଜୀବୋପାଧିକ ରୂପ ଏହି ଉଭୟ ରୂପକୁ ବିସ୍ମରଣ କରି ଏତଦୁଭୟ ରୂପ ସହିତ ଅନ୍ତଃକରଣକୁ ଦ୍ରଷ୍ଟା ଆକାରରେ ସତ୍ୟ ବୋଲି ସ୍ଥିର କରନ୍ତି । ଫଳରେ ଦ୍ରଷ୍ଟା, ସ୍ୱୀୟ ଜୀବୋପାଧିର ଦୃଷ୍ଟ ଯେଉଁ ଅନ୍ତଃକରଣ, ତାହାକୁ ଦ୍ରଷ୍ଟାରୂପେ ସ୍ଥିର କଲେ; ଅର୍ଥାତ୍ ଦୃଷ୍ଟ, ଦ୍ରଷ୍ଟା ରୂପକୁ ପ୍ରାପ୍ତ ହେଲା । ଏତଦ୍ରୂପ କଳ୍ପନା ନିର୍ଦ୍ଦିଷ୍ଟ ଦ୍ରଷ୍ଟାକାର ପ୍ରାପ୍ତ ଅନ୍ତଃକରଣ, ପ୍ରାଣେନ୍ଦ୍ରିୟାଦି ସହିତ ଦେହ ସଂସାରାଦି ଦର୍ଶନ କଲାମାତ୍ର ଦୃଷ୍ଟ ଜଡ଼ ଦେହକୁ ମୁଁ ବୋଲି ଏବଂ ଦୃଷ୍ଟ ସଂସାର ସର୍ବସ୍ୱାଦିକୁ ମୋର ବୋଲି ସ୍ୱୀକାର କରେ । ଏ ଉତ୍ତାରୁ ଦେହ ମୁଁ ହୋଇ ସର୍ବାଧିକାରୀ ସଂସାରୀପଦବାଚ୍ୟ ହୋଇଅଛି । ଏହିରୂପେ ଦେଖାଗଲା ସ୍ୱୟଂ ଏହି ଆତ୍ମଦେବ, ଉପର୍ଯ୍ୟୁପରି ଲିଖିତ 'ମାୟାବିଳାସ ବିକଳ୍ପିତ ଚରାଚରମୟ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଜଗଦାକାର ଶବ'କୁ ଦର୍ଶନ କରିବାମାତ୍ର ସେହି ଦର୍ଶନ-ଜନିତ ମୋହ ଆତ୍ମପୁରୁଷକୁ ସେହି ଶବରେ ତାଦାତ୍ମ୍ୟାଧ୍ୟାସ ସହିତ ତନ୍ମୟ କରାଇଦେଲା । ତହୁଁ ଆତ୍ମା ଜୀବୋପାଧିବିଶିଷ୍ଟ ହୋଇ ଅନ୍ତଃକରଣକୁ ଦର୍ଶନ କରି ସେହି ଅନ୍ତଃକରଣରେ ପୁଣି ତନ୍ମୟ ହେଲେ । ତଦୁତ୍ତାରେ ସେହି ଆତ୍ମା, ଜୀବୋପାଧି ଓ ଅନ୍ତଃକରଣ ସହିତ ମିଶି କଳ୍ପିତ ଆତ୍ମମୂର୍ତ୍ତି ଧାରଣ କରଣାନନ୍ତର ମୋହମୁଗ୍ଧତାହାରା ପ୍ରାଣେନ୍ଦ୍ରିୟ ସମନ୍ୱିତ ଦେହମୟ ହୋଇ ଆପଣାକୁ ଜଡ଼ ପିଣ୍ଡାକାର ଦେହ ବୋଲି ନିଶ୍ଚୟ କଲେ । ଏହିଠାରୁ ଦେହ ସମ୍ବନ୍ଧୀୟ ମାୟା-ମୋହମୟ କଳ୍ପନା ପ୍ରସୂତ ଭୌତିକ ସଂସାରୀୟ ଲୀଳା ଆରମ୍ଭ ହୋଇ କ୍ରମ ବିସ୍ତାର ଲାଭ କରିଅଛି ।

ଦେଖାଗଲା ଏହି ଜଡ଼ ଭୌତିକ ଦେହ ଯେଉଁଠାରେ, ସଂସାର ସେହିଠାରେ, ଆଉ ପ୍ରାଣେନ୍ଦ୍ରିୟାଦି ଓ ଅନ୍ତଃକରଣ ସଂଜ୍ଞକ ବୁଦ୍ଧ୍ୟହଂକାରାଦି ମଧ୍ୟ ସେହିଠାରେ; ପରନ୍ତୁ ଅବିଦ୍ୟାମୂଳକ ଜୀବୋପାଧି ଏବଂ ମାୟିକ ବ୍ୟାମୋହାଦି ବି ସେହିଠାରେ, ଅର୍ଥାତ୍ ଆତ୍ମଦେବ ଏତତ୍ ସର୍ବସମନ୍ୱିତ ମାୟାବିକଳ୍ପିତ ଜଗଦାକାର ଶବସର୍ବସ୍ୱବିଶିଷ୍ଟ ହୋଇ ସର୍ବାବସ୍ଥାରେ ସର୍ବତ୍ର ସର୍ବମୟାକାର ଧାରଣପୂର୍ବକ ପ୍ରତ୍ୟକ୍ଷୀଭୂତ ମୂର୍ତ୍ତିମାନ ସତ୍ୟନାରାୟଣ ରୂପରେ ବିରାଜ କରିଅଛନ୍ତି । ଏହି ସତ୍ୟମୂର୍ତ୍ତି ଜଡ଼ ଦେହରେ ସାକ୍ଷାତ୍ ଦର୍ଶନ ଦେଉ-ଅଛନ୍ତି । ଏହି ଆତ୍ମା ପ୍ରଥମତଃ ଜୀବୋପାଧିରେ ଲୁଚିଅଛନ୍ତି । ଦ୍ୱିତୀୟତଃ ଏହି ଆତ୍ମା ଜୀବୋପାଧି ସହିତ ଅଭେଦ ଭାବେ ମିଶି ଏକାକାର ଧାରଣ କରି ପୁଣି ଉଭୟ ରୂପକୁ ଗୋପନ କରିବା ନିମିତ୍ତ ଅନ୍ତଃକରଣପୃଷ୍ଠରେ ଲୁଚିଅଛି । ତୃତୀୟତଃ ଏହି ଆତ୍ମା, ଜୀବୋପାଧି ଆଉ ଅନ୍ତଃକରଣ ସହିତ ଅଭେଦାଙ୍ଗ ହୋଇ ଏହି ଯୁକ୍ତାଙ୍ଗକୁ ଗୋପନୀୟ

କରଣାର୍ଥ ପ୍ରାଣେନ୍ଦ୍ରିୟାଦିରେ ଲୁକ୍‌କାୟିତ ଭାବେ ଅବସ୍ଥାନ କରିଅଛି । ଚତୁର୍ଥତଃ ଏହି ଆତ୍ମା, ଜୀବୋପାଧି, ଅନ୍ତଃକରଣ ଓ ପ୍ରାଣେନ୍ଦ୍ରିୟାଦି ସହିତ ପ୍ରେମାଲିଙ୍ଗନ ଯୋଗେ ମିଶ୍ରିତ ହୋଇ ଏକ ଯୋଗାଙ୍ଗରୂପ ଧାରଣପୂର୍ବକ ଏକାନ୍ତ ସଂଗୋପନରେ ନାଡ଼ୀମାର୍ଗ ସହିତ ସ୍ଥୂଳ ଜଡ଼ ଭୌତିକ ଏହି ଦେହରେ ଲୁଚି ମାନସିକ, ବାଚିକ ଓ କାୟିକ କର୍ମାକର୍ମର ପ୍ରେରଣା ଏବଂ ଭୋଗାଦିର ସମ୍ପାଦନ ଅଥଚ ସବୁ ପ୍ରକାରର ଧର୍ମଜ୍ଞାନ, ନ୍ୟାୟ ଓ ବିବେକାଦିର ସାଧନ ସମାପନ କରାଉଅଛି । ତଥାପି ମୋହମୟ ଦେହାତ୍ମାଭିମାନ, ଦେହକୁ ସର୍ବମୟ କର୍ତ୍ତା, ସର୍ବାଧିକାରୀ, ସୁଖଦୁଃଖାଦିର ଭୋକ୍ତା ଓ ଶୁଭାଶୁଭ କର୍ମାଦିର କର୍ତ୍ତା ବୋଲି ପରିଚୟ କରାଇ ଭୌତିକ ଜଗତରେ ପୈଶାଚିକ ତାଣ୍ଡବର ପ୍ରବାହ ଛୁଟାଇ ଜ୍ଞାନମୟ ସଂସାରକୁ ପ୍ରେତ ରାକ୍ଷସ ଭୂମିରେ ପରିଣତ କରିଅଛି । ସେହି ହେତୁ ଏ ସଂସାରରେ ଜଡ଼ବାଦ, ନାସ୍ତିକତା, ସ୍ୱାର୍ଥପରତା, ପରହିଂସାଦି ସର୍ବପ୍ରକାର ଆସୁର ଭାବ ପ୍ରବର୍ତ୍ତିତ ହୋଇ ଏକ ଆତ୍ମାରେ ଆତ୍ମ, ପର ଓ ଅପର ଭେଦାଦି ଜନିତ ନାନାପ୍ରକାର ବିଗ୍ରହ ବିସମ୍ବାଦାଦି ପୈଶାଚିକ ନୃତ୍ୟ ଲାଗି ରହିଅଛି । ଆତ୍ମଦେବ, ପ୍ରାକୃତ ରାଜ୍ୟରେ ଏହି ଲୁଚକାଳି ଖେଳ ଆରମ୍ଭ କରିଥିବାରୁ ମତ-ବିଶେଷରେ ତାଙ୍କୁ ଚୋର ବୋଲି କୁହାଯାଏ । ବାସ୍ତବରେ ଏହି ଦେବ, ଆତ୍ମରୂପକୁ ଲୁଚାଇଅଛନ୍ତି; ଆଉ ପ୍ରାକୃତ ରାଜ୍ୟସ୍ଥ ଦେହାଦିକୁ ଅପହରଣ କରିଅଛନ୍ତି ! ଧନ୍ୟ ସେ ।

ଯେଉଁଠାରେ ଦେଖ, ତହିଁ ଏହି ମାୟା ବିକଳ୍ପିତ ଜଗଦାକାର ଚିତ୍ରାତ୍ମକ ଆତ୍ମା ଯେପରି ସଂସାରକୁ ଦେହରେ ପୂର୍ତ୍ତି କରି ରହିଅଛନ୍ତି, ସେହିପରି ମାୟା ମୋହାଦିର ଆବରଣ ଭେଦ କରି ତାହାର ଭିତରେ ଓ ଆର ପାରରେ ଚିଦାନନ୍ଦମୟ ନାନାବିଧ ନାମରୂପ ବର୍ଜିତ ପ୍ରକୃତି ପୁରୁଷରୂପେ, ଶିବଶକ୍ତି ସ୍ୱରୂପେ ବା ରାଧାକୃଷ୍ଣ ଯୁଗଳ ମୂର୍ତ୍ତ୍ୟାଦି ଆକାରରେ ଏକ ଏବଂ ଅଭେଦ ପରମେଶ୍ୱର ରୂପରେ ସର୍ବତ୍ର ବାହ୍ୟାଭ୍ୟନ୍ତରରେ ପୂର୍ଣ୍ଣଭାବେ ବିରାଜିତ ହୋଇଅଛନ୍ତି । ଏହି ମାୟାବିକଳ୍ପିତ ଜଗଦାକାର ଚିତ୍ର, ସେହି ପ୍ରଭୁ ପରମେଶ୍ୱରଙ୍କର ଅଚିନ୍ତ୍ୟ ଶକ୍ତିମୟ-ଲୀଳାବିଭୂତି-ପ୍ରସୂତ ଆନନ୍ଦସମ୍ପଦମୟ ବସ୍ତୁ-ବିଶେଷ ଅଟେ ।

ଆତ୍ମା ସ୍ୱଭାବତଃ ଏପରି ରସିକ ରାଜେଶ୍ୱର ଅଟନ୍ତି ଯେ ସେହି ପ୍ରଭୁ ସ୍ୱୟଂ ନିଜ ମାୟାରେ ମିଶି ତଦ୍ରୂପିତ ଅଭେଦାଙ୍ଗ ପ୍ରାପ୍ତ ହୁଅନ୍ତି । ଆଉ ଆତ୍ମା ସୂକ୍ଷ୍ମାତି ସୂକ୍ଷ୍ମତମ ରୂପ ବୋଲି ଅବ୍ୟକ୍ତ, ପୁଣି ମାୟା ଅପେକ୍ଷାକୃତ ଅଳ୍ପ ସୂକ୍ଷ୍ମ ଅଥଚ କାର୍ଯ୍ୟକାରଣ ରୂପିଣୀ ଅଟେ ବୋଲି କାରଣତଃ ଅବ୍ୟକ୍ତ ଏବଂ କାର୍ଯ୍ୟତଃ ବ୍ୟକ୍ତରୂପା ଅଟେ । ସେହି ହେତୁ ମାୟିକ ବ୍ୟାମୋହମୟ ଜଗଦାକାର ଚିତ୍ରରେ ଆତ୍ମା ଅବ୍ୟକ୍ତ ରୂପେ ଅଭେଦ ଭାବରେ ଅବସ୍ଥାନ କରି ରହିଅଛନ୍ତି । ଆଉ ମାୟା ସ୍ୱୀୟ ବୈକାରିକ ଗୁଣବଶତଃ ସୂକ୍ଷ୍ମ ଜଗଦାକାର ଚିତ୍ର ସଂଗଠନ କରି ତହିଁରୁ ବୁଦ୍ଧ୍ୟହଂକାରାଦି କ୍ରମେ

ଭୌତିକ ଦେହ-ସଂସାର ପର୍ଯ୍ୟନ୍ତ ବିବିଧ ସୃଷ୍ଟି ବିସ୍ତାର କରି ଉତ୍ତରୋତ୍ତର ବ୍ୟକ୍ତଭାବ ଧାରଣ କରିଅଛି ।

ଏହିରୂପେ ଆତ୍ମା ଜୀବୋପାଧି ଠାରୁ ଆରମ୍ଭ କରି ସ୍ଥୂଳଦେହ ପର୍ଯ୍ୟନ୍ତ ସମସ୍ତ ସୂକ୍ଷ୍ମ ବସ୍ତୁମାନଙ୍କର ଏକୀକୃତ ସଙ୍ଘବଦ୍ଧ ଶରୀରରେ ଅବ୍ୟକ୍ତତମ ଗୁପ୍ତ ଭାବରେ ସପ୍ରତିଷ୍ଠିତ ରହି ସ୍ଥୂଳ ଜଡ଼ ଦେହକୁ ସଂସାର ଧାମରେ ପ୍ରକାଶ କରିଅଛନ୍ତି । ଏହିରୂପେ ଦେହ ଆତ୍ମସଙ୍ଗବଶତଃ ଆତ୍ମା ବୋଲି ବ୍ୟବହୃତ ହେଉଅଛି, ଅଥଚ ତାହା ପ୍ରତ୍ୟକ୍ଷତଃ ଅନାତ୍ମ ଜଡ଼ମାତ୍ର । ଆତ୍ମା ଏହି ଜଡ଼ ଦେହ ସଙ୍ଗେ ଅବ୍ୟକ୍ତ ଲୀଳାବିଗ୍ରହାକାରରେ ଲୁଚି ରହି ତତ୍ସହିତ ଅଭେଦଭାବ ଧାରଣ ପୂର୍ବକ ଦେହକୁ ସଂସାରମୟ ଲୀଳାରେ ପ୍ରବର୍ତ୍ତାଇ ତତ୍ସହିତ ସ୍ୱୟଂ ନୃତ୍ୟ କରୁଅଛନ୍ତି । ଏହିରୂପେ ସ୍ଥୂଳ ସହିତ ସୂକ୍ଷ୍ମ ମିଶିକରି ଥିଲେ ସୁଦ୍ଧା ସୂକ୍ଷ୍ମ ଅବ୍ୟକ୍ତ ଏବଂ ସ୍ଥୂଳ ବ୍ୟକ୍ତଭାବ ଧାରଣ କରିଅଛି । କନ୍ଦ ଜଳରେ ମିଶି ଜଳକୁ ସୁମିଷ୍ଟ କରେ, ଅଥଚ ସ୍ୱୟଂ ଅଦୃଶ୍ୟ ଭାବରେ ଥାଏ । ଆତ୍ମା ସେହିପରି ସୂକ୍ଷ୍ମ ଭାବରେ ଦେହରେ ଥାଇ ସ୍ୱୟଂ ଅବ୍ୟକ୍ତ, ଅଥଚ ଦେହକୁ ଜ୍ଞାନମୟାକାରରେ ବ୍ୟକ୍ତ କରିଅଛନ୍ତି । ଅଗ୍ନି ଯେପରି ଲୌହ ଖଣ୍ଡରେ ମିଶି ତାକୁ ଅଗ୍ନିମୟ କରିଥାଏ ଅଥଚ ଅଗ୍ନିର ଦାହିକା ଗୁଣ ଆଉ ଲୌହଖଣ୍ଡ ତଦ୍‌ବିପରୀତ; ତହିଁରେ ଯାହା ଲାଗେ ସେ ଉତ୍ତପ୍ତ ବା ଉଷ୍ଣ ହୁଏ, ଲୌହରେ ଉତ୍ତପ୍ତ ବା ଭସ୍ମୀଭୂତ ହେଲା ବୋଲି କୁହାଯାଏ, ମାତ୍ର ଅଗ୍ନି ନିର୍ବାପିତ ହେଲେ ଲୌହର ଆଉ ସେ ଦାହିକା ଶକ୍ତି ନ ଥାଏ, ଆତ୍ମା ଏ ଦେହରେ ସେହିପରି ଜ୍ଞାନର କାର୍ଯ୍ୟ ସମାଧା କରାଉଅଛି । ଦେହ ନିମିତ୍ତ-ମାତ୍ର ହୋଇ ଆତ୍ମବତ୍ ବ୍ୟବହୃତ ହେଉଅଛି ।

ଆତ୍ମା ସର୍ବଶେଷ ସୂକ୍ଷ୍ମତମ ରୂପବିଶିଷ୍ଟ ବୋଲି ସେ ପ୍ରକୃତିରେ ଏବଂ ପ୍ରକୃତିରୁ ପରିଣତ ନାନାବିଧ ବିକୃତ୍ୟାଦିରେ ଅତ୍ୟନ୍ତ ଗୁପ୍ତଭାବେ ଲୁଚି ରହିବାହାରି ତତ୍ସହିତ ଆତ୍ମାଲିଙ୍ଗନକୁ ଗୋପନ କରି ପ୍ରକୃତିକୁ ଏବଂ କ୍ରମେ କ୍ରମେ ଉଚ୍ଚତମ ଏବଂ ନିମ୍ନତର ବିକୃତ ରୂପାଦିକୁ ଦେହି ସେହି ଆକାରରେ ବାହାରକୁ ପ୍ରକାଶ କରିଅଛନ୍ତି । ସେହି ହେତୁ ବାହାର ଚକ୍ଷୁରେ ଦେହାଦି ସ୍ଥୂଳ ଭୌତିକ ଜଗତ ସତ୍ୟ ଆତ୍ମସତ୍ତା ସହିତ ତଦ୍ଧର୍ମାନୁସାରେ ସତ୍ୟ ବୋଲି ପ୍ରତୀତ ହେଉଅଛି । ଆଉ ଜ୍ଞାନ-ଦୃଷ୍ଟିରେ କେବଳ ଆତ୍ମା ସତ୍ୟ ଏବଂ ତଦ୍‌ଭିନ୍ନ ଆଉ ସବୁ ପ୍ରକୃତି ବିକୃତ୍ୟାତ୍ମକ ସୂକ୍ଷ୍ମ ସ୍ଥୂଳ ବସ୍ତ୍ୱାଦି ଅନାତ୍ମ ମିଥ୍ୟା କଳ୍ପିତ ଆତ୍ମବତ୍ ଆତ୍ମାବିଭାସକ ବୋଲି ଉପଲବ୍ଧି ହେଉଅଛି । ଏହିରୂପେ ପ୍ରାକୃତ ଦେହାଦିକୁ ଆତ୍ମା ବାହ୍ୟାଭ୍ୟନ୍ତର ଆଲିଙ୍ଗିତ ଭାବେ ବ୍ୟାପ୍ତ କରି ତହିଁରେ ଗୁପ୍ତ ତନ୍ମୟାକାର ଧାରଣ କରିଥିବା ତାଙ୍କର ସୁଚତୁର ସୁରସିକତାର ପରିଚାୟକ ଅଟେ, ଅଥବା ବିଶୁଦ୍ଧ ଶିଦାନନ୍ଦମୟ ଆତ୍ମା ଜାଡ଼୍ୟା ପ୍ରକୃତିର ସଙ୍ଗୀ ବୋଲି ଲଜ୍ଜାପମାନଜନକ ହେବ । ଏହି କାରଣରେ ଏପରି ଗୁପ୍ତାଲିଙ୍ଗନ ଲୀଳାରେ ପ୍ରମତ୍ତ ରହିଅଛନ୍ତି । ସେହି ଗୋପନମୟ ନାୟକ ଚୂଡ଼ାମଣିଙ୍କୁ ନମସ୍କାର ।

ଏହି ସାଧାରଣ ଦେହାତ୍ମଭ୍ରମରୁ ଆଜକାଲର ଘୋର କଳିର ଲୋକଙ୍କରେ ଜଡ଼ବାଦିତା ବା ଜଡ଼ବୈଜ୍ଞାନିକତାର ମ୍ଲେଚ୍ଛାମି ବ୍ୟବହାର ଓ ଅନୁରୂପ ତର୍କାଦିର ବଶବର୍ତ୍ତୀ ହୋଇ ପୁରୁଷପୁଙ୍ଗବ ଜନବିଶେଷ, ଦେହକୁ ଆତ୍ମା ବୋଲି ସ୍ୱୀକାର କରୁ-ଅଛନ୍ତି । ପୁଣି ଜ୍ଞାନାଦିକୁ ମାଟିଦେହର ଗୁଣବିଶେଷ ବୋଲି ମଧ୍ୟ କହୁଅଛନ୍ତି; ଆଜି ଦେହନାଶରେ ସର୍ବନାଶ ସମ୍ଭବ । ଆତ୍ମା କଣ ? କାହିଁ ? ବୋଲି କହି ଏହି ଦେହର ଅଳ୍ପକାଳ ସ୍ଥାୟିତ୍ୱ ମଧ୍ୟରେ ଭୋଗବିଳାସିତାଦି ଏବଂ ତତ୍ସାଧନାର୍ଥ ପରାର୍ଥହରଣ ଓ ପରପୀଡ଼ନ ଶୋଷଣାଦି ସାଧନ କରିବାକୁ ପୁରୁଷାର୍ଥ ଜ୍ଞାନ କରୁ-ଅଛନ୍ତି । ଏହା କାଳ ପ୍ରଭାବାଧୀନ କୁସଂସ୍କାର ଏବଂ ମୋହାଧିକ୍ୟର ନିଦର୍ଶନ ଅଟେ ।

ଏହି ମୋହପ୍ରାବଲ୍ୟର କବଳରେ ପଡ଼ି ମନୁଷ୍ୟ ବୁଝୁନାହିଁ—ଦେହ ପତନରେ ଯଦି ସବୁର ପତନ ସମ୍ଭବ, ତେବେ ଏହି ଅତ୍ୟଳ୍ପ କାଳ ନିମିତ୍ତ ଭୋଗବିଳାସାଦିର ଆଧିକ୍ୟରୁ ନିବର୍ତ୍ତିବା କାହିଁକି ଉଚିତ ନୁହେ ? ଅଧିକନ୍ତୁ ଏଥିପାଇଁ ପରାର୍ଥନାଶ, ପରପୀଡ଼ା, ପରରକ୍ତ ଶୋଷଣାଦି ସାଧନ କରି ଗୋଟିକର ଭୋଗବିଳାସ ଆଡ଼ମ୍ବର ସକାଶେ କୋଟି କୋଟି ପ୍ରାଣୀର ବିପଦ ଘଟାଇବା କାହିଁକି ବା ପାପ ନୁହେ ? ଏଥିରେ ଜଡ଼ବାଦିତା ବା ନାସ୍ତିକତା ଦ୍ୱାରା ଆତ୍ମସତ୍ତା ଜ୍ଞାନରୂପ ଧର୍ମ ଲୋପ ପାଉଅଛି, ପୁଣି ପରମାରଣରୂପ ମହାପାପ ସହକାରେ ମ୍ଲେଚ୍ଛାମି ବୃଦ୍ଧି ପାଉଅଛି । ଏତଦ୍ଦ୍ୱାରା 'ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ' ଇତ୍ୟାଦି ଇତ୍ୟାଦି ଗୀତା ମହାବାକ୍ୟର ନିର୍ଦ୍ଦିଷ୍ଟ ସମୟ ଉପସ୍ଥିତ ହେଲି ପରି ନିଶ୍ଚିତ ହେଉଅଛି । ଏ ଗାଥାଟି ଆତ୍ମଗୀତାର ତଥା ସଂସାରରେ କଳଙ୍କ ସ୍ୱରୂପ ଅଟେ ।

• ବର୍ତ୍ତମାନ ଦେଖାଯାଉ, ଜ୍ଞାନ ହେବାଠାରୁ ଏହି ଗ୍ରନ୍ଥ ପାଠ କରିବା ପର୍ଯ୍ୟନ୍ତ ସମସ୍ତ ମଧ୍ୟରେ କେତେ କେତେ ଦିନ ଅତୀତ ହୋଇଅଛି । ତା ମଧ୍ୟରେ କେତେ କେତେ ପ୍ରକାରର ହର୍ଷ ବିସ୍ମୟକର ଭାବ ଅନୁଭବ ହୋଇଗଲାଣି । ଏତେ ବେଶି ପରିମାଣର ଦେହ ସଂସାରସ୍ପୃହା ପୁନଃ ପୁନଃ ଭୋଗାଭୋଗରେ ଯେତେବେଳେ ଏହାର ନିବୃତ୍ତି ନାହିଁ, ଅଥଚ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସମୃଦ୍ଧ ଲହରୀ ପରି ଏହା ଏହିପରି ସର୍ବଦା ଲାଗି ରହିଥିବ; ହର୍ଷବିଷାଦ ଓ ସୁଖଦୁଃଖାଦି ଭିତରେ ସର୍ବଦା ପଡ଼ାଉଠା ଲାଗିଥିବ, ତେବେ ଆତ୍ମଭାବର ସ୍ମରଣ ବା ଉପଲବ୍ଧି କରିବାର ଅବକାଶ କାହିଁ କେଉଁଠାରେ ! ଆଉ ଏ ସଂସାରସ୍ପୃ ଭାବର ପତନ ଉତ୍ଥାନରେ ଗଡ଼ ପଡ଼ ଲାଗି ରହି-ଥିବାର ଶେଷଫଳଇ ବା କଣ ? ବର୍ତ୍ତମାନ ଏହାର ବିଗ୍ରହ ହେବ ।

ଅନ୍ତଃକରଣରେ ଶବ୍ଦ, ସ୍ପର୍ଶ, ରୂପ, ରସ ବା ଗନ୍ଧାତ୍ମକ ବୈଷୟିକ ଇନ୍ଦ୍ରିୟ-ଜନ୍ୟ ଜ୍ଞାନାଦି ବା ଭୋଗାଦି ଅନୁଭବ କଲାପରି ତହିଁରେ ଆତ୍ମା ଅନୁଭୂତ ହେବାର ପଦାର୍ଥ ନୁହନ୍ତି । ଏହି ଆତ୍ମା ଅହଂବୋଧ ମାତ୍ର, ଆତ୍ମବୋଧାକାରିତ, ନିତ୍ୟ

ପ୍ରତ୍ୟକ୍ଷୋପଲବ୍ଧ ଅଥଚ ସ୍ୱପରପ୍ରକାଶକ ଚୈତନ୍ୟ ଜ୍ୟୋତିର୍ମୟ ବ୍ରହ୍ମବସ୍ତୁ । ଅନ୍ତଃକରଣାଦିର ମୂଳରେ ଏବଂ ଅନ୍ତଃକରଣଗତ ବୈଷୟିକ ଜ୍ଞାନାଦିର ମୂଳରେ ଧ୍ରୁବ ସିଦ୍ଧସ୍ୱରୂପେ ଏହି ଆତ୍ମବୋଧାକାରିତ ଅହଂମାତ୍ର ନିତ୍ୟୋପଲବ୍ଧ ବ୍ରହ୍ମରୂପ ଅଯାଚିତ ଭାବେ ସ୍ୱତଃ ସଦା ବିରାଜମାନ । ଅହଂକାର ବା ତଦାତ୍ମକ ସୁଖଦୁଃଖାଦି ବୈଷୟିକ ଭାବମାନ ଜଳାଶୟରେ ଫୋଟକା ପୁନଃ ପୁନଃ ଉଦୟ ବିଲୟ ହେଲାପରି ଏହି ଆତ୍ମାରେ ସର୍ବଦା ଉଦୟ ବିଲୟ ହେଉଅଛି । ସେହି ପୁନଃ ପୁନଃ ଉଦୟ ବିଲୟର ସାଧାରଣ ବ୍ୟାପକ ସୂତ୍ର, ବାରମ୍ବାର ବହୁ ଆଘାତ ଶ୍ରୁତ ଅନବଚ୍ଛିନ୍ନ ଘଣ୍ଟାନାଦ ପରି ଏହି ଆତ୍ମାରେ ନିତ୍ୟ ସ୍ଥାୟୀଭାବେ ଅଙ୍କିତ ଥିବାପ୍ରାୟ ଜଣାପଡୁଥିବାରୁ ଏତଦ୍ରୂପ ଅହଂକାରାତ୍ମକ ବୈଷୟିକ ଜ୍ଞାନସୂତ୍ରରେ ଆତ୍ମା ଅବଭାସିତ ହେଉଅଛନ୍ତି । ତଦନୁସାରେ ନିରହଂକାର ଓ ଅସଙ୍ଗ ଆତ୍ମାରେ ମୁଁ ସୁଖୀ ବା ମୁଁ ଦୁଃଖୀ ଇତ୍ୟାକାର ବିଶିଷ୍ଟ ବିକଳ୍ପିତ ଜ୍ଞାନ ନିତ୍ୟବତ୍ ପରିକଳ୍ପିତ ହେଉଅଛି । ଏହାଇ ଆତ୍ମାର ମାୟାକଳ୍ପନାପ୍ରସୂତ ସଂସାରବନ୍ଧନର ହେତୁ । ଅହଂକାରାତ୍ମକ ଜ୍ଞାନସମଷ୍ଟିର ବା ତଦ୍‌ବ୍ୟାପକ ସୂତ୍ରର ଯେ ଜ୍ଞାତା, ସେହି ଅହଂବୋଧରୂପ ଆତ୍ମା ଏହି ସଂସାରରେ ଜୀବୋପାଧିବିଶିଷ୍ଟ ଜୀବାତ୍ମା ନାମରେ ପରିଚିତ ହୋଇଅଛନ୍ତି ।

ଏଠାରେ ଅହଂକାରାତ୍ମକ ଜ୍ଞାନାଦିର ସ୍ୱରୂପ ନିରୂପଣ କରାଯାଉଅଛି । କର୍ମେନ୍ଦ୍ରିୟ ନିଷ୍ପାଦିତ କର୍ମରେ ମୁଁ କର୍ତ୍ତା ଓ ଜ୍ଞାନେନ୍ଦ୍ରିୟ ସମ୍ପାଦିତ ଶବ୍ଦସ୍ପର୍ଶାଦି ବୈଷୟିକ ଜ୍ଞାନର ମୁଁ ଜ୍ଞାତା; ପୁନଃ ଏତଦ୍ରୂପ କର୍ତ୍ତୃତ୍ୱ ଭୋକ୍ତୃତ୍ୱ ଉପଭୋଗଦ୍ୱାରା ଯେ ଆପଣାକୁ ଭୋକ୍ତା ବୋଲି ଜାଣି ତତ୍ସଙ୍ଗେ ସଙ୍ଗେ ମୁଁ ସୁଖୀ ବା ମୁଁ ଦୁଃଖୀ ବୋଲି ଉପଲବ୍ଧି କରୁଅଛି, ସେହି ଅନ୍ତଃକରଣ ବୃତ୍ତିର ନାମ ଅହଂକାର; ଆଉ ଏତଦ୍‌ବର୍ଣ୍ଣିତ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଜ୍ଞାନର ନାମ ଅହଂକାରାତ୍ମକ ଜ୍ଞାନ । ସ୍ଥୂଳରେ କହିବାକୁ ଗଲେ ଶବ୍ଦ-ସ୍ପର୍ଶାଦି ସର୍ବପ୍ରକାର ବୈଷୟିକ (ଇନ୍ଦ୍ରିୟଜ ବା ମନୋଜ) ଜ୍ଞାନମାତ୍ରହିଁ ଅହଂକାରାତ୍ମକ ଜ୍ଞାନସଂଜ୍ଞାର ଅନ୍ତର୍ଗତ ଆଉ ତଦ୍ରୂପ ସଂଜ୍ଞିତ ଜ୍ଞାତୃତ୍ୱର ଅଭିମାନବିଶିଷ୍ଟ ଜ୍ଞାତା ଯେଉଁ ବୃତ୍ତି ସେ ଅହଂକାର, ଅର୍ଥାତ୍ ସଂସାର ଦେହ ସମ୍ବନ୍ଧୀୟ ଅଭିମାନାତ୍ମକ 'ମୁଁ' ଅହଂକାର; ଆଉ ଦେହ ସଂସାର ସମ୍ବନ୍ଧୀୟ ଜ୍ଞାନ ଅହଂକାରାତ୍ମକ ଜ୍ଞାନ । ଏ ଉଭୟେ ଏକ ଏବଂ ଅଭିନ୍ନ ଅଥଚ ଅଭେଦାଙ୍ଗ ଅଙ୍ଗ । ଅନ୍ତଃକରଣ ବୃତ୍ତିଶୂନ୍ୟ ଶୁଦ୍ଧ ଅହଂବୋଧାକାରିତ ନିତ୍ୟମୂର୍ତ୍ତିହିଁ "ଅହଂ" ଆତ୍ମପଦବାଚ୍ୟ । ଏହିରୂପେ ଆତ୍ମା, ଅହଂକାର ଏବଂ ଅହଂକାରାତ୍ମକ ଜ୍ଞାନ ଇତ୍ୟାଦିର ସ୍ୱରୂପଭେଦ ଏଠାରେ ଉପଲବ୍ଧ କରାଗଲା ।

ମୁଁ କର୍ମ କରୁଅଛି ବା ମୁଁ ଭୋଗ୍ୟକୁ ଭୋଗ କରୁଅଛି ବା ଜାଣୁଅଛି—ଏହି କର୍ତ୍ତୃତ୍ୱ ବା ଭୋକ୍ତୃତ୍ୱଜ୍ଞାନ ଅହଂକାରାତ୍ମକ ଜ୍ଞାନ । ଏହି ଜ୍ଞାନ ସ୍ୱପ୍ନ ଜାଗରଣରେ ଆଜୀବନ ଲାଗି ରହିଅଛି । ଏକ ଦିବସ ମଧ୍ୟରେ ମୁଁ କେତେ କେତେ ପ୍ରକାରର କେତେ କେତେ କର୍ମ କରୁଅଛି ଏବଂ କେତେ କେତେ ପ୍ରକାରର ଭୋଗ ଭୋଗୁଅଛି ବା ଜାଣୁଅଛି,

ତାହାର ଉପୁତ୍ତି ନାହିଁ । ଏହିପରି କର୍ମ ଏବଂ ଭୋଗମୟ ଦିନମାନ ମିଶି ଗୋଟିଏ ଜୀବର କାଳର ପରିମାଣ ବହୁବର୍ଷ ଅଟେ । ଆଉ ଏହିପରି ବହୁ ବହୁ ଜୀବନ୍ତ ଆୟୁ ମିଶି କୋଟିକଳ୍ପର ସମାନ ହୁଏ । ଏତେ ଦୀର୍ଘକାଳପାଇଁ କେବଳ କର୍ମ ଆଉ ଭୋଗର ପୁନଃ ପୁନଃ ଉଦୟ ହିଳୟ ଭାବ ଧାରାବାହିକ ସୂତ୍ରରେ ଗ୍ରଥିତ ହୋଇଅଛି । (ଏହି ସୂତ୍ରର ନାମାନ୍ତର ଜ୍ଞାନାଦି, ବାସନାମୟ ସଂସ୍କାରାଦି, ଆଉ ଏହି ସଂସ୍କାର ଉତ୍ତରୋତ୍ତର ଭବିଷ୍ୟତ ଜନ୍ମଗ୍ରହଣ ଓ ଦେହଧାରଣର ହେତୁ) ଫଳରେ ସେହି ସୂତ୍ରଟି ରହିଅଛି ମାତ୍ର ଭାବଗୁଡ଼ିକ ଖଣ୍ଡୀକୃତ ଅହଂକାରାତ୍ମକ ଜ୍ଞାନ ସହିତ ଅତୀତକାଳ ଗର୍ଭରେ ପଡ଼ି ହିଳୟ ହେଉଅଛି । କିନ୍ତୁ ଅହଂବୋଧାକାରିତ ଆତ୍ମା ନିତ୍ୟ ବିରାଜମାନ ରହିଅଛନ୍ତି । ଆଉ ଆପଣାକୁ ମୁଁ ଏହିପରି ସ୍ମରଣ ଏବଂ ଅବଧାରଣ କରିଅଛନ୍ତି—ଯେ ମୁଁ, ଅହଂକାରୀ ଓ ଅହଂକାରାତ୍ମକ ଜ୍ଞାନାଦିର ମୂଳରେ ଅପିତ ତନ୍ମୟାତ୍ମକ ସୂତ୍ରରେ ସେହି ମୁଁ, ସେ ସବୁର ମଧ୍ୟରେ ଏବଂ ପରେ ମଧ୍ୟ ସର୍ବାଦିପୂର୍ବସିଦ୍ଧରୂପରେ ସେହି ଅପରିବର୍ତ୍ତନୀୟ ମୁଁ ବୋଧମାତ୍ରଭାବେ ଅବସ୍ଥିତ ରହିଅଛି । ମୋର ଆତ୍ମରୂପର କିଛିମାତ୍ର ବୈଲକ୍ଷଣ୍ୟ ଘଟିନାହିଁ । ମୁଁ ସର୍ବଦା ସେହି ମୁଁ, ମାତ୍ର ଆତ୍ମରୂପରେ ଅହଂକାର ବା ଅହଂକାରାତ୍ମକ ଜ୍ଞାନ ବା ତତ୍ତନ୍ମୟ ସୂତ୍ରର ଉପରେ ଅସଂଲଗ୍ନ ଭାବରେ ବିରାଜକରି ସ୍ଥାଣୁପରି ଅଟଳ ଅଚଳାକାରରେ ରହି ଏହି ଅହଂକାର ସହିତ ଉଦିତ ବିଲୁପ୍ତ ଅହଂକାରାତ୍ମକ ଜ୍ଞାନାଦିକୁ ଏବଂ ତଦୀୟ ସୂତ୍ରକୁ ମାୟାକଳ୍ପିତ ଅଳୀକ ଅନାତ୍ମବସ୍ତୁରୂପେ ପ୍ରତ୍ୟକ୍ଷ କରୁଅଛି । ଏହା ମୋଠାରେ ଆକାଶରେ ମୃଗତୃଷ୍ଣା ଦେଖାଗଲାପରି ଦିଶୁଅଛି । ଏହି ଦର୍ଶନ ମୋହର କୌତୂହଳପ୍ରଦ ଲୀଳାମୟ ଭୋଜବାଜି ସଦୃଶ ଦୃଶ୍ୟ ମାତ୍ର ଆଉ ବନ୍ଧନପ୍ରଦ ନୁହେ । ଏଥିରୁ ବୁଝାଗଲା, ଆତ୍ମା ସ୍ୱୟଂ ପ୍ରକାଶମାନ, ଆଉ ସେହି ନିତ୍ୟାର୍ପିତ ଜ୍ୟୋତିର୍ମୟ ଆତ୍ମସତ୍ତା ଗ୍ରହଣ କରି ଅନାତ୍ମ ବୁଦ୍ଧ୍ୟହଂକାରାଦି ସମନ୍ୱିତ ମାୟାବିକଳ୍ପିତ ଜଗଦାକାର ଚହଟି ଜ୍ଞାନାଭାସାତ୍ମକ ରୂପ ଧାରଣପୂର୍ବକ ଆତ୍ମାକୁ ସେହି ମୋହିନୀ ମୂର୍ତ୍ତିରେ ବିମୋହିତ କରି ରଖିଅଛି । ଏହି ବିମୋହନଗୁଣ ଆତ୍ମାର ଲୀଳାର୍ଥ ପ୍ରଯୁଜ୍ୟ, କିନ୍ତୁ ଏହି ଗୁପ୍ତ ତତ୍ତ୍ୱ ଜ୍ଞାନୋଦୟ ନିମିତ୍ତ ଅନୁଷ୍ଠାନ କରଣୀୟ ଅଟେ ।

ଆତ୍ମଦେବ ନିଜକୁ 'ମୁଁ' ବା ଅହଂ ଇତ୍ୟାଦି ଇତ୍ୟାଦି ବର୍ଣ୍ଣାତ୍ମକ ମାନବୀୟ ଭାଷାଦ୍ୱାରା ବ୍ୟକ୍ତ କରୁନାହାନ୍ତି । ତାହା ପବିତ୍ର ପ୍ରଣବାତ୍ମକ ସ୍ୱତଃ ଉଦୀୟମାନ ସ୍ୱରବ୍ୟଞ୍ଜନ ବ୍ୟତୀତ ଆତ୍ମବୋଧକ ଅନାହତ ଏବଂ ସ୍ୱୟଂ ପ୍ରକାଶମାନ କର୍ଣ୍ଣେନ୍ଦ୍ରିୟର ଅଶ୍ରୁତ ଅଗୋଚର ନାଦ ବା ଧ୍ୱନି ବିଶେଷ ଅଟେ । ଏହା ଆତ୍ମା ସହିତ ଅଭେଦ ଅର୍ଥାତ୍ ଅହଂକାର ସହିତ ମୁଁ ବା ଅହଂ ଇତ୍ୟାଦି ଇତ୍ୟାଦି ଉଚ୍ଚାରିତ ଶବ୍ଦର ଯେପରି ସମ୍ବନ୍ଧ ଏହି ପ୍ରଣବର ଆତ୍ମା ସହିତ ତଦ୍ରୂପ ସମବାୟ ସମ୍ବନ୍ଧ । ମନ ଏବଂ ପ୍ରାଣାଦିର ଶୃଙ୍ଖଳା-ବସ୍ଥାରେ ଏହା ଅବୋଧ୍ୟ ଅଟେ । ମନୁଷ୍ୟର ଏପରି ଏକ ଦୁରଭ୍ୟାସ ସ୍ୱତଃ ବିଦ୍ଧମୂଳ ଅଛି ଯେ, ମନୁଷ୍ୟର ବାଗିନ୍ଦ୍ରିୟ ସ୍ୱପ୍ନ ଜାଗରଣାବସ୍ଥାରେ ସର୍ବଦା କାର୍ଯ୍ୟ କରୁଅଛି ଅର୍ଥାତ୍ ଜାଗରଣରେ ଯଥା ସମୟରେ କଥାକୁହା ଚାଲିଅଛି । ଅନ୍ୟଥା ମୁଖ ବନ୍ଦ କରି

ରହିବା ବେଳେ ଏବଂ ସ୍ୱପ୍ନାବସ୍ଥାରେ ମଧ୍ୟ ସବୁବେଳେ ବାହୁନ ପରି ମନେ ମନେ କିଛି ନା କିଛି କହି ହେବାକୁ ବାଗିନ୍ଦ୍ରିୟ ସଦା ମନ ବାଧ୍ୟ କରାଉଅଛି । ଏପରି କହିହେବା ସଙ୍ଗେ ସଙ୍ଗେ ମଧ୍ୟ କଥିତ ବସ୍ତୁ ସମୟେ ସମୟେ ଦେଖାଯାଉଥିବା ପରି ମନରେ ଭାସମାନ ହେଉଥାଏ । ଏହିଭଳି ଗତି ବାଗିନ୍ଦ୍ରିୟର ସର୍ବଦା ଚାଲିଅଛି । ଏପରି ଦର୍ଶନାଦି ବୈଷୟିକ ବ୍ୟାପାରମାନ ମଧ୍ୟ ମନରେ ସର୍ବଦା ଲାଗି ରହିଅଛି । ଶତ ସାବଧାନତା ସହିତ ଚେଷ୍ଟାରେ ସୁଦ୍ଧା ଏହି ଗତି ନିରୁଦ୍ଧ ହେବାର ନୁହେ । ଏହିରୂପେ ସର୍ବଦା ମନ, ପ୍ରାଣ ଓ ଇନ୍ଦ୍ରିୟାଦିର ଶୃଙ୍ଖଳା ଯୋଗରେ ଉକ୍ତ ଆତ୍ମବୋଧକ ଧ୍ୱନି ଅନୁଭୂତ ହେଉନାହିଁ । ଅତଏବ ଶମ-ଦମାଦି ଅଭ୍ୟାସ ଦ୍ୱାରା ଉକ୍ତ ଶୃଙ୍ଖଳା ବନ୍ଦ କଲେ ତାହା ସ୍ୱୟଂ ପ୍ରତିଫଳିତ ହେବ । ଦିନ ମଧ୍ୟରେ ଅଳ୍ପ ସମୟ ସେହି ଅଭ୍ୟାସ କରଣୀୟ ଅଟେ ।

ସୁଖ ଓ ଶାନ୍ତିକର ଭାବରେ ଦେହକୁ ସ୍ଥିରୋପବେଶନଦ୍ୱାରା ଆବଦ୍ଧ କଲାପ୍ରାୟ ରଖି, ମନର ବୈଷୟିକ ଚଳନ ଓ ପ୍ରାଣସ୍ପନ୍ଦନକୁ ଲକ୍ଷ୍ୟ କରିବା କର୍ତ୍ତବ୍ୟ ଅର୍ଥାତ୍ ମନ ଏକ ବିଷୟ ଚିନ୍ତନ ତ୍ୟାଗ କରି ହଠାତ୍ ଅନ୍ୟ ବିଷୟରେ କିପରି ଗତି କରୁଅଛି ସେହି ତ୍ୟାଗ-ଗ୍ରହଣ ସନ୍ଧିରେ ଏକାଗ୍ର ଲକ୍ଷ୍ୟ ରଖାଯିବ ; ଆଉ ପ୍ରାଣ 'ହଂସ' ନାଦକୁ ଅବଲମ୍ବନ କରି କିପରି ଶ୍ୱାସ ପ୍ରଶ୍ୱାସ ସହିତ ଗତାୟାତ କରୁଅଛି, ଏତଦ୍ରୂପ ସ୍ଥିର ଲକ୍ଷ୍ୟଦ୍ୱାରା ଅଭିଲକ୍ଷିତ ମନ ଓ ପ୍ରାଣ ଚଞ୍ଚଳାଗଲାରୁ ଏ ଉଭୟଙ୍କୁ ନିଶ୍ଚଳ ରଖିବାର ଅଭ୍ୟାସ କରିବାକୁ ହୁଏ ; ଅର୍ଥାତ୍ ଯେ କୌଣସି ପ୍ରକାରେ ଚକ୍ଷୁପଲକକୁ ସ୍ଥିର କରି ଅଥବା ଚକ୍ଷୁର ତାରକାକୁ କୌଣସି ସାତ୍ତ୍ୱିକ୍ୟ ପୂତ ମୂର୍ତ୍ତିରେ ବା ନାସାଗ୍ରରେ ସ୍ଥିର ଭାବେ ସ୍ଥାପନ କରିବା ବିଧେୟ । କାରଣ ଚକ୍ଷୁର ସ୍ଥିରତା ମନ ପ୍ରାଣର ସ୍ଥିରତାକୁ ସାହାଯ୍ୟ କରେ । ଏହିରୂପେ ଦେହ ଏବଂ ଦୃଷ୍ଟି ସ୍ଥିର ହେଲାରୁ ମନ ଏବଂ ପ୍ରାଣର ନୈଶ୍ଚଲ୍ୟ ସାଧିବାକୁ ହେବ । ଏ ଉଭୟେ ପରସ୍ପର ସମବାୟୀ । ଏକର ଚଳନ ବା ସ୍ଥିରତାରେ ଅପରର ଶୃଙ୍ଖଳା ବା ସ୍ଥୈର୍ଯ୍ୟ ସାଧିତ ହୁଏ । ଅତଏବ ପ୍ରାଣ ଯେଉଁ 'ହଂସ' ନାଦକୁ ଆଶ୍ରୟ କରି ଯିବା ଆସିବା କରୁଅଛି, ସେହି ଗତିରୋଧ ନିମିତ୍ତ 'ହଂ' ନାଦ ଉଦୟ କ୍ଷଣରେ ତାକୁ 'ସ' କାର ନାଦରେ ଲୟ କରାଯିବ ଆଉ 'ସ' କାରର ଉଦୟ କ୍ଷଣରେ ତାକୁ 'ହଂ' କାରରେ ବିଲୟ କରିବାକୁ ହେବ । ଅର୍ଥାତ୍ 'ହଂ' କାର ବା 'ସ' କାରକୁ ପରସ୍ପରଦ୍ୱାରା ବାରଣ କରି କୌଣସି ଏକ ଗୋଟିକୁ ଉଦୟ କରି ଦେବାକୁ ହେବ ନାହିଁ । ଏ ସମୟ ମଧ୍ୟରେ ମନକୁ ଏହି ଆଡ଼େ ଲଗାଇବା ଭିନ୍ନ ଅନ୍ୟ କିଛି ମନରେ ପକାଇବାକୁ ହେବ ନାହିଁ । ଏହିରୂପେ ଉକ୍ତ ନାଦଦ୍ୱୟର ସ୍ମରଣ ଅଭାବେ ପ୍ରାଣର ଗତି ଅପେକ୍ଷାକୃତ ସ୍ଥିର ହେବ, ଆଉ ମନ ପ୍ରାଣ ସଙ୍ଗେ ସଙ୍ଗେ ସଂଯୁକ୍ତ ଥିବାରୁ ତାହା ମଧ୍ୟ ଯଥା ପରିମାଣେ ସ୍ଥିର ହେବ । ଅଧିକନ୍ତୁ ମନରେ ପଡ଼ୁଥିବା ବିଷୟକୁ ସଙ୍ଗେ ସଙ୍ଗେ ପ୍ରତ୍ୟାଖାନ କରିବାକୁ ହେଉଥିବ । ଏହିପରି ଅଳ୍ପ ଅଳ୍ପ ସମୟ ଦୈନିକ ଅଭ୍ୟାସରେ ମନ ଏବଂ ପ୍ରାଣ ଉଭୟେ ଧୃତ ହୋଇ ଆବଦ୍ଧ ରହିବେ ।

ବର୍ତ୍ତମାନ ଦେହ, ଦୃଷ୍ଟି, ପ୍ରାଣ ଏବଂ ମନ ସଂଯତ ହେବାରୁ ଇନ୍ଦ୍ରିୟ ସ୍ପୃଙ୍ଖଳ-ଜନିତ ବୈଷୟିକ ଜ୍ଞାନ ସେ ସମୟରେ ମଧ୍ୟ ନିବୃତ୍ତି ରହିବା ସ୍ୱାଭାବିକ । ଏହି ପ୍ରକାରରେ ଅହଂକାରାତ୍ମକ ଜ୍ଞାନାଭାବେ ଅହଂକାର ବୃତ୍ତି ମ୍ରିୟମାଣ ଭାବ ପ୍ରାପ୍ତ ହେବ । ଏ ପରେ ଅହଂକାର ସହିତ ଦେହେନ୍ଦ୍ରିୟ ଓ ମନ ପ୍ରାଣାଦି ଆବଦ୍ଧ ହେବାରୁ ଏ ସମସ୍ତଙ୍କର ଶୃଙ୍ଖଳ ଅଭାବରୁ ସେହି ସ୍ୱତଃ ସମୁଦିତ ପ୍ରଣବାତ୍ମକ ନାଦ ପ୍ରକଟିତ ହେବ । ଏହା ଏକ ନିୟମାବଦ୍ଧ ବିଷୟ । ଏ ପର ଆତ୍ମାର ଅନ୍ତଃକରଣାଦି ସଂଯୁକ୍ତ ଜୀବୋପାଧିର ରଜସ-ତାମସାଂଶ ମାୟାବିକଳ୍ପିତ ଜଗଦାକାର ଚିତ୍ତରେ ଏବଂ ସତ୍ତ୍ୱାଂଶ ନିଜ ଆତ୍ମାରେ (ଜଳଭାଣ୍ଡ ଜଳାଶୟ ଜଳରେ ମଗ୍ନ ହୋଇ ଜଳାଶୟ ସହିତ ଅଭିନ୍ନ ହେଲାପରି) ବୁଡ଼ି ରହିଯିବାରୁ ଆତ୍ମାର ପ୍ରଣବାବବୋଧକ ମୂର୍ତ୍ତି ପ୍ରକଟିତ ହେଲା । ଏଥିରୁ ବୁଝାଗଲା ଆତ୍ମା, ଯେତେବେଳେ ଯେଉଁ ମାୟିକ ବିକାରାଂଶକୁ ଦେଖନ୍ତି, ତତ୍‌କ୍ଷଣାତ୍ ତନ୍ମୟ ହୁଅନ୍ତି ; ସୁତରାଂ ସେ ଜ୍ଞାନ ଯୋଗେ ଜ୍ଞାନୀ ଆଉ ଜ୍ଞାନାଭାବେ ଅଜ୍ଞାନ ପଦବାଚ୍ୟ । ବସ୍ତୁତଃ ସେ ଜ୍ଞାନୀ ବା ଅଜ୍ଞାନ କୌଣସି ପ୍ରକାର ନୁହନ୍ତି । ଏହି ହେତୁ ଦେହ ଆସନାଦିଦ୍ୱାରା ଆବଦ୍ଧ ଏବଂ ସ୍ଥିର ହେଲେ ତାହା ପ୍ରାଣେନ୍ଦ୍ରିୟାଦିର ବିଷୟାଶୃଙ୍ଖଳକୁ ଗ୍ରହଣ ନ କରି ସୁପ୍ତ ବା ସ୍ଥିରାବସ୍ଥା ଧାରଣ କରେ । ତହୁଁ ସେହି ଦେହରେ ପ୍ରାଣେନ୍ଦ୍ରିୟାଦିର କ୍ରୀଡ଼ା ବନ୍ଦ ହେବାରୁ ଦେହବିଷୟସ୍ଥ ଆତ୍ମା ସ୍ଥୂଳଦେହରୁ ଅଭିମାନ ପ୍ରତ୍ୟାହରଣପୂର୍ବକ ଅବଶିଷ୍ଟ ପ୍ରାଣେନ୍ଦ୍ରିୟ ଓ ଅନ୍ତଃକରଣାଦିରେ ବିଶ୍ରାମ କରେ ଅର୍ଥାତ୍ ଆତ୍ମା ଆପଣାକୁ ପ୍ରାଣମୟ ଓ ମନୋମୟ ଇତ୍ୟାଦି ଇତ୍ୟାଦି ଆକାରରେ ଅଭିମାନ କରେ ।

ତଦୁତ୍ତାରୁ ପ୍ରାଣ ଏବଂ ମନ ସ୍ଥିର ହେବା ସଙ୍ଗେ ସଙ୍ଗେ ଇନ୍ଦ୍ରିୟ ବୃତ୍ତ୍ୟାଦି ସ୍ଥିର ହେଲାରୁ ପ୍ରାଣ, ଇନ୍ଦ୍ରିୟ ଓ ଅନ୍ତଃକରଣ (ଏତତ୍ ସଂଯୋଗ ଦ୍ୱାରା ସଂଘଟିତ ସୂକ୍ଷ୍ମଦେହ) ଯୁଗପତ୍ ସ୍ଥିର ହୁଅନ୍ତି । ତଦୁତ୍ତାରେ ଆତ୍ମା କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦିକୁ ବିସ୍ମରଣ କରି ଜୀବୋପାଧି (କାରଣଦେହ) ମାତ୍ରରେ କାରଣ ଦେହାଭିମାନୀ ହୋଇ ବିଶ୍ରାମକରଣ ପୂର୍ବକ ମୁଁ, କେଜାଣି କିଏ ବୋଲି ବୁଝି ନ ପାରି ଉଦାସ-ଭାବ ପ୍ରାପ୍ତ ହୁଅନ୍ତି । ସେହି ଔଦାସୀନ୍ୟରୁ ଅହଙ୍କାର ମନ, ପ୍ରାଣ, ଇନ୍ଦ୍ରିୟ ଓ ସ୍ଥୂଳ ଦେହ ଏବଂ ଅହଂକାରାତ୍ମକ ଜ୍ଞାନାଦି ସମସ୍ତେ ଯେ ଯାହା ସ୍ଥାନରେ ମ୍ରିୟମାଣ ଅବସ୍ଥା ପ୍ରାପ୍ତ ହୁଅନ୍ତି । ତତ୍‌କ୍ଷଣାତ୍ ଊର୍ଦ୍ଧ୍ୱଗାମୀ ଆତ୍ମା ଜୀବୋଃପାଧିକୁ ଅନାତ୍ମ ହେୟ ବସ୍ତୁ ଜ୍ଞାନରେ ନ ଗ୍ରହିବାରୁ ତଦାଭାସାକାର ପ୍ରାପ୍ତ ହୁଅନ୍ତି । ସଙ୍ଗେ ସଙ୍ଗେ ସେହି ଆଭାସ ବିଦୂରିତ ହୁଏ । ଅର୍ଥାତ୍ ଜୀବୋଃପାଧିର ମୋହଭାଗ ବା ରଜସତାମସାଂଶ ମାୟାକଳ୍ପିତ ଜଗଦାକାର ଚିତ୍ତରେ ଏବଂ ସତ୍ତ୍ୱାଂଶ ଆତ୍ମାର ଚିତ୍‌ଶକ୍ତିରେ ଅର୍ଥାତ୍ ଆତ୍ମବୋଧାତ୍ମିକା ଶକ୍ତିରେ ବିଲୀନ ହୁଏ । ଫଳରେ ଆତ୍ମା ଆପଣାକୁ ଚିଦାନନ୍ଦ ଜ୍ୟୋତିର୍ମୟ ରୂପରେ ନିଶ୍ଚୟ କରିବା ସଙ୍ଗେ ସଙ୍ଗେ ପ୍ରଣବାତ୍ମରୂପ ଧାରଣ କରନ୍ତି । ଏହାର ନାମ ପ୍ରକୃତିର ବିପର୍ଯ୍ୟସ୍ତୀକରଣ ଯୋଗାନୁଷ୍ଠାନ । ଏତଦ୍ୱାରା ପ୍ରକୃତି ସହିତ ଆତ୍ମାର ଅସଦ୍‌ଯୋଗ ଘଟେ । ପଶ୍ଚାତ୍ତରେ

ଏହାର ନାମ ସନ୍ନ୍ୟାସ ବା ଜ୍ଞାନ ଯୋଗ । ସଂସାର ଦଶାରେ ମଧ୍ୟ ଉକ୍ତ ଯୋଗଘଟିତ ଜ୍ଞାନ ବଦ୍ଧିତ ହେବା ତଦ୍ରୂପ ଯୋଗୀ ପକ୍ଷରେ ସମ୍ଭବପର ନୁହେ ।

ପ୍ରକୃତି ମିଥ୍ୟା ଓ ଅବିନଶ୍ୱର, ବସ୍ତୁତଃ ପ୍ରକୃତିର ନାଶ ନାହିଁ । ଏହା ଏହି ହେତୁ ଜ୍ଞାନନାଶ୍ୟ ଅଟେ । ଅର୍ଥାତ୍ ମୃଗତୃଷ୍ଣାର, ମନେକର, ନାଶ ଅସମ୍ଭବ । ତାହା ଅଜ୍ଞ ପକ୍ଷରେ ସତ୍ୟ ଦୃଶ୍ୟ, ମାତ୍ର ତତ୍ତ୍ୱଜ୍ଞ ପକ୍ଷରେ ତାହା ଦିଶୁଥିଲେ ମଧ୍ୟ ଅବାସ୍ତବ ଅଟେ । ଏହି ଅବାସ୍ତବିକତା ଜ୍ଞାନଇ ତାହାର ନାଶ । ଅଜ୍ଞ ତହିଁରେ ସତ୍ୟଜ୍ଞାନ କରି ଦୌଡ଼ି ଦୌଡ଼ି ଦୁଃଖ ବିମୁଗ୍ଧ ହୁଏ । ମାତ୍ର ଜ୍ଞାନୀ ତାହା ଦେଖେ ଅଥଚ ବିମୁଗ୍ଧ ହୁଏ ନାହିଁ, ବରଂ ଆମୋଦ କରେ । ଅସଦ୍‌ଯୋଗ ବା ସନ୍ନ୍ୟାସ ଯୋଗର ଅର୍ଥ ପ୍ରକୃତିର ତତ୍ତ୍ୱଜ୍ଞାନ ଦ୍ୱାରା ତହିଁରୁ ମୁକ୍ତ ରହି ତାକୁ ଅମୁଗ୍ଧ ଭାବରେ ଦର୍ଶନ ମାତ୍ର କରିବାକୁ ହେବ । ଏହି ଉପସ୍ଥିତ ଦୃଶ୍ୟମାନ ଦେହ, ସଂସାରତ୍ମକ ଚିତ୍ର ଓ ତତ୍‌ସମ୍ବନ୍ଧୀୟ କର୍ତ୍ତବ୍ୟ-ନିଷ୍ଠାଦି ଅପରିହାର୍ଯ୍ୟ ମାତ୍ର ମୁଗ୍ଧ ହେବା ବୃଥା ଭ୍ରମ ମାତ୍ର ।

ଚିରଭ୍ରାନ୍ତ ସଂସ୍କାରବଦ୍ଧ ମନୁଷ୍ୟ ପକ୍ଷରେ ଯୋଗାନୁଷ୍ଠାନ ସୁସାଧ୍ୟ ବା ସୁଗମ୍ୟ ନୁହେ । ପ୍ରଥମତଃ ସତ୍‌ସଙ୍ଗାଳାପ ଏବଂ ଅଧ୍ୟାତ୍ମଗ୍ରନ୍ଥାଦି ପଠନରେ ଶ୍ରଦ୍ଧା ଏବଂ ତହିଁର ଯଥାର୍ଥ ଅର୍ଥ ହୃଦୟଙ୍ଗମ କରିବା ଦ୍ୱାରା ଅନ୍ତଃକରଣରେ ଆତ୍ମବସ୍ତୁର ସତ୍ତା ଅନୁଭବ କରିବା ଉଚିତ । ଆଉ ସେହି ଅନୁଭବର ଏପରି ସ୍ୱାଭାବିକ ଶକ୍ତି ଅଛି ଯେ ତାହା ମନ ପ୍ରାଣାଦିକୁ ଏବଂ କର୍ମ ଓ ଭୋଗାଦିକୁ ଶାନ୍ତ ସଂଯତ କରେ । ତହିଁରେ ବାହ୍ୟ ବୃତ୍ତି ଏବଂ ଅନ୍ତର୍ବୃତ୍ତି ଯୋଗର ଉନ୍ମୁଖୀନ ହୁଅନ୍ତି । ଅତଏବ ଜ୍ଞାନ ନିର୍ଣ୍ଣୟ କରଣାର୍ଥ ପ୍ରଥମରେ ଆଧ୍ୟାତ୍ମିକ-ତତ୍ତ୍ୱ ବ୍ୟାଖ୍ୟାନ ସମ୍ବନ୍ଧୀୟ ପୁସ୍ତକାଦି ପୁନଃ ପୁନଃ ପଠନ କରିବା ବିଧେୟ । ଆଉ ଅନ୍ୟାନ୍ୟ ଦୈହିକ ଓ ମାନସିକ କ୍ରିୟାଦିକୁ ଶମ, ଦମ, ଯମ ଏବଂ ନିୟମାଦିର ବିଧାନାନୁଯାୟୀ ଶକ୍ତ୍ୟନୁସାରେ ଏକାନ୍ତ ପରିମିତ ଭାବେ ଓ ଆବଶ୍ୟକ ମତେ ସଂସାରୀୟ ସତ୍ତ୍ୱମୟ ଭୋଗ ଏବଂ ସତ୍ତ୍ୱଯୁକ୍ତ କର୍ମସାଧନାର୍ଥ ବିନୟୀ ଏବଂ ନମ୍ର ହୋଇ କର୍ମଭୂମିରେ ପ୍ରବର୍ତ୍ତିବା ଉଚିତ । ଏତଦ୍ଦ୍ୱାରା ରଜସ୍‌ତାମସାତ୍ମକ ବୈଷୟିକ ଶୃଙ୍ଖଳା କଥଞ୍ଚିତ୍ ଉପଶାନ୍ତ ହେବ । ବିଶ୍ରାମବେଳେ ଭାବିବାକୁ ହେଉଥିବ, ମୋହର ଏହି ଦେହର ଜନ୍ମର ପୂର୍ବ ଏବଂ ଦେହାନ୍ତ ପରପାରର ଅଥଚ ପରକ୍ଷଣର ବୃତ୍ତାନ୍ତ ମୋହର ଅଜ୍ଞାତ, ପୁଣି ଉପସ୍ଥିତ ଜୀବିତାବସ୍ଥାରେ ମୁଁ ଆତ୍ମତଃ କିଏ ବା କଏ ଜାଣିପାରୁ-ନାହିଁ । ତେବେ ମୁଁ କର୍ମ କଲାବେଳେ ଓ ସୁଖ ଦୁଃଖାଦି ଭୋଗିବାବେଳେ ମୁଁ ଏବଂ ମୋର ବୋଲି ଦୁଇଟି ଭାବର ଅସ୍ତିତ୍ୱ ଉପଲବ୍ଧି କରୁଅଛି । ମୋଟରେ ଦେହକୁ ମୁଁ ବୋଲି ଜାଣୁଛି । ଏ ଜ୍ଞାନ ଠିକ୍ ନୁହେ । କେତେ କେତେବେଳେ ଦେହକୁ ମୋର ବୋଲି ମଧ୍ୟ ଜାଣୁଛି । ଯାହା ହେଉ ମୁଁ ଦେହକୁ ଦେଖି ତହିଁର ଦ୍ରଷ୍ଟା ବା ରକ୍ଷକ ଅଥଚ ଫଳ ଭୋକ୍ତା ରୂପେ ଆପଣାକୁ ନିରୂପଣ କଲେ ସୁଦ୍ଧା ସେହି ମୁଁ ଅଦୃଶ୍ୟ, ସୂକ୍ଷ୍ମ ଅଥଚ ଅଜ୍ଞାତ ଅଟେ । ତେବେ ମତେ ଅଜ୍ଞାତସୂକ୍ଷ୍ମାକାରରେ ରହି ଦେହାଦି ଭୌତିକ ଜଡ଼

ଦୃଶ୍ୟ ସଂସାରରେ ଏବଂ ଦୈହିକ କର୍ମ ଓ ଭୋଗାଦି ଜନିତ ସୁଖ ଦୁଃଖାଦିରେ କେଉଁ କାରଣରୁ କାହାଦ୍ୱାରା ଅଗତ୍ୟା ଅବ୍ୟକ୍ତ, ଅଚିନ୍ତ୍ୟ ଭାବରେ ସଂଯୋଜିତ ହେବାକୁ ହୋଇଅଛି, ଏହି ସବୁ ବ୍ୟାପାର ମଧ୍ୟ ମୋହର ଅଜ୍ଞାତ । ସୁତରାଂ ମୋର ଏତଦ୍ରୂପ ଦେହସଂସାରମିଶ୍ରିତ ସୁଖଦୁଃଖମୟ ମୋଟରେ ଦୁଃଖତାପମୟ ବିକାର ସଙ୍ଘଟନାଦିର ଯେ ଅଚିନ୍ତ୍ୟ ଅଜ୍ଞାତ ବିଧାତା, ମୁଁ ତାହାର ଶରଣପ୍ରାର୍ଥୀ ହେବା ଉଚିତ । ଆଉ ମୋହର ତାବନ୍ମୟ ସତ୍‌କର୍ମ ଏବଂ ବୈଧ ଭୋଗାଦିକୁ ତାହାର ଉଦ୍ଦେଶ୍ୟରେ ଉତ୍ସର୍ଗ କରିବା ମଧ୍ୟ ଉଚିତ ।

ଅବୈଧ ମାତ୍ରଇ ମୋହର ତ୍ୟାଜ୍ୟ, କାରଣ ତାହା ମୋ ପକ୍ଷରେ ଦୈବାଧୀନ, ବିପନ୍ନ, ଅଜ୍ଞ ପକ୍ଷରେ ସ୍ୱେଚ୍ଛାଚାରିତା ବା ସ୍ୱାର୍ଥପରତା ପୂର୍ଣ୍ଣ ଅହଂକାରମୂଳକ ବୋଲି ବିବେଚିତ ହେବ । କାରଣ ମୁଁ ସ୍ୱାଧୀନ ନୁହେ । ଅତଏବ ମୋହର ଏ ସମସ୍ତ ଦୈବଦତ୍ତ ଅହଂକାରାଦି, ଦେହ-ସଂସାରାଦି ଓ ଏତତ୍ ସଞ୍ଜାତ ଫଳ ସୁଖଦୁଃଖାଦି ସେହି ବିଧାତା ଉଦ୍ଦେଶ୍ୟରେ ଉତ୍ସର୍ଗ କରିବାର ହେତୁ ଏହି ଯେ ଏ ସମସ୍ତ ମୋହର ନିଜକୃତ ନୁହେ । ଏହି ଅନାଦି ଅଜ୍ଞାତ ସଂସାର କଳ୍ପତରୁ ଯେ ରୋପଣ କରିଅଛି, ସେହି ମାତ୍ର ଫଳର ଅଧିକାରୀ । ଏଣୁକରି ସ୍ୱୟଂ ମୁଁ ଏବଂ ମୋହର ଦେହ-ସଂସାରାଦି ଓ କର୍ମଫଳାଦି ସମସ୍ତ ତାହାର ବୋଲି ତାହାଠାରେ ଅର୍ପିତ ହେବା ଧର୍ମତଃ ଉଚିତ । ମୁଁ ଏହି ଦେହ-ସଂସାରାଦି ସଙ୍ଗେ ଏପରି ଅଚ୍ଛେଦ୍ୟ ଅପରିହାର୍ଯ୍ୟ ଭାବେ ବିଜଡ଼ିତ ହୋଇ ରହିଅଛି ଯେ କର୍ମ ଏବଂ ଭୋଗବିନା ଲବମାତ୍ର ମୋହର ସ୍ୱାଧୀନ ଭାବ ପ୍ରାପ୍ତ ହେବାର ଉପାୟ ବା ସ୍ଥାନ ନାହିଁ । ଆଉ କର୍ମତନ୍ତ୍ରତା ସର୍ବଦା ଫଳପ୍ରସୂ । ଏତଦବସ୍ଥାରେ ମୁଁ ପ୍ରପନ୍ନ ଅଥଚ ଅନାୟତ୍ତ, ଅତଏବ ମୁଁ ସର୍ବ ସହିତ ସର୍ବତୋଭାବେ ସମର୍ପିତ ହେଉଅଛି । ଏଥିରୁ ମୋର ବୁଝିବା ଉଚିତ ଯେ, ବୈଧ କର୍ମ ଏବଂ ବୈଧ ଭୋଗାଦି ସହିତ ଏପରି ଆତ୍ମ-ନିବେଦନପରାୟଣ ହେବା ଉଚିତ । କାରଣ ବିଧିବିଧାତାର ଅବୈଧ ତ୍ୟାଜ୍ୟ ଏବଂ ଘୃଣ୍ୟ । ଏହାର ଅନ୍ୟଥାଚରଣ ମୋର ଅବାଧ୍ୟତା, ସୁତରାଂ ଦୁଃଖର ହେତୁ ଅଟେ ।

•

ଏ ସ୍ଥଳେ ବୈଧ କର୍ମାଦିର ସ୍ୱରୂପ ବୁଝିରଖିବା ଉଚିତ—ସାଧାରଣତଃ କର୍ମ ଏବଂ ଭୋଗ ବଳବତ୍ତର ଦୃଢ଼ଭାବେ ସଂସାରକୁ ନିବନ୍ଧ କରିଥିବାରୁ ଆଉ ତାହା ପ୍ରାଣୀର ଉପଜୀବନ ସ୍ୱରୂପ ହୋଇଥିବାରୁ ବୁଝାଯାଏ ଏହା ବିଧାତାର ଅଭିପ୍ରେତ । ସୁତରାଂ ଯେଉଁରୂପ କର୍ମଦ୍ୱାରା ସଂସାରର ଧର୍ମ, ଜ୍ଞାନ, ନ୍ୟାୟ, ସତ୍ୟ, ସୁଖ ଓ ଶାନ୍ତି ପ୍ରଭୃତି ସାଧିତ ହୁଏ, ରକ୍ଷିତ ହୁଏ, ଅଥଚ ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହୁଏ, ତାହା ବିଧାତାର ଅନୁମୋଦିତ । ଅତଏବ ବୈଧ କର୍ମ ଅଟେ । ଆଉ ଯେଉଁ ଭୋଗାଦିଦ୍ୱାରା ଉକ୍ତ ଧର୍ମାଦି ଓ ସୁଖଶାନ୍ତି ପ୍ରଭୃତିର ବ୍ୟତିକ୍ରମ ନ ଘଟେ ତାହା ଦୈବର ଅଭିପ୍ରେତ ବୈଧଭୋଗ ବୋଲି ବୁଝିବାକୁ ହେବ । କାରଣ ଏତଦ୍ଦ୍ୱାରା ସଂସାରର ମଙ୍ଗଳ ହେବାରୁ ଆଉ ସେହିପରି ଇଚ୍ଛା ବିଧାତାର ଥିବା ସଂସାରୀୟ ତତ୍ତ୍ୱଦର୍ଶନରୁ ବୁଝାଯାଉଥିବାରୁ ଏହିରୂପ

କର୍ମ ଏବଂ ଭୋଗ ବୈଧ ଅଟେ । ତେଣୁକରି ବ୍ୟକ୍ତିଗତଭାବରେ ଉକ୍ତରୂପ କର୍ମ ଏବଂ ଭୋଗ ପ୍ରତିପାଳନୀୟ ଏବଂ ସେବନୀୟ ଅଟେ ।

ତେବେ ଏ ରୂପ ବୈଧ ବା ସତ୍‌କର୍ମ ସମ୍ଭୋଗାଦି କିପରିଭାବେ କରଣୀୟ ହେବ ? ଦେଖାଯାଉଅଛି ଏହି କର୍ମତନ୍ତ୍ର ଓ ଭୋଗପ୍ରଦ ବିଶ୍ୱଯନ୍ତ୍ର ସର୍ବସାଧାରଣ ପ୍ରାଣୀର ହିତକାରୀ ହେବାଭଳି ବିଧିବିଧାନ ଘୋଷିତ ମନ୍ତ୍ରଦ୍ୱାରା ଚିର ଦଣ୍ଡାୟମାନ ରହିଅଛି, ସୁତରାଂ ଆମ୍ଭେ ଏହିପରି କର୍ମ କରିବା ଯଦ୍ଦ୍ୱାରା ସଂସାରର ଧର୍ମଜ୍ଞାନାଦି ଓ ସୁଖଶାନ୍ତି ସୁରକ୍ଷିତ ହେବ । ଅଥଚ ତହିଁର ଯଥୋପଯୁକ୍ତ ଅଂଶମାତ୍ର ଭାଗବଣ୍ଟନ ଅନୁପାତରେ ଯେତିକି ଆମ୍ଭର ପ୍ରାପ୍ୟ ସେତିକି ମାତ୍ର ଆମ୍ଭେ ପ୍ରସାଦ ସ୍ୱରୂପ ଉପଭୋଗ କରିବା ବିଧେୟ, ଅର୍ଥାତ୍ ଯେତିକିରେ ଆମ୍ଭର ପ୍ରାଣରକ୍ଷା ହେବ ଅଥଚ ତଦ୍ରୂପ ପ୍ରାଣ ସଂସାର ସେବାର୍ଥ ସଜୀବ ରହିପାରିବ । ନିଜ ପ୍ରାଣ ରକ୍ଷା ନ କଲେ ସଂସାରୀୟ ସେବାବ୍ରତ ହାତେ ହାତେ ଆମ୍ଭେ ନଷ୍ଟ କରିବାର ଅପରାଧୀ ବୋଲି ବିବେଚିତ ହେବା, ଅତଏବ ଏଥିରୁ ବୁଝିବାକୁ ହେବ ଆମ୍ଭର ପ୍ରାଣରକ୍ଷା ନିଜ ନିମିତ୍ତ କେବଳ ନୁହେ । ମୋକ୍ଷତଃ ସଂସାର ସେବା ଅର୍ଥରେ ଅର୍ଥାତ୍ ମୁଁ ଏବଂ ଏ ସଂସାର ସମ୍ପ୍ରଦାୟ ଯାହାର ସୃଷ୍ଟି ପୁଣି ସତ୍‌କର୍ମ ଏବଂ ସତ୍ ଭୋଗାଦି ଯାହାର ସଂସାର ନିମିତ୍ତ ଉଦ୍ଦିଷ୍ଟ, ସେହି ମଙ୍ଗଳମୟ ଉଦ୍ଦେଶ୍ୟ ପରିପାଳନାର୍ଥ ମୋର ଜୀବନର ଅସ୍ତିତ୍ୱ ରହିଅଛି । ଏହା ଉତ୍ତମରୂପେ ନିଶ୍ଚୟ କରି ଉପରୋକ୍ତମତେ କର୍ତ୍ତବ୍ୟନିଷ୍ଠ ହେବା ମୋହର ଧର୍ମ । ଆହୁରି ମୋହର ପ୍ରଧାନ ଧର୍ମ ଏହା ଅଟେ ଯେ, ମୋହର ଏ ସମସ୍ତ ସତ୍ କର୍ମାଦି ସେହି ବିଧାତାଠାରେ ସମର୍ପଣ କରି ମୁଁ କର୍ମ ଏବଂ ଭୋଗର ବନ୍ଧନରୁ ମୁକ୍ତ ହେବି । ସମସ୍ତ କର୍ମ ଏବଂ ଭୋଗାଦିକୁ ମୋର କରି ଅହଂକାର କରିବା ବଡ଼ ଅପରାଧ । କାରଣ ବିଧାତାର ନିୟମାନୁସାରେ ସମସ୍ତ କର୍ମାଦିକୁ କାଳର ଅଜ୍ଞାତ ନାମଧେୟ ଅଙ୍ଗ, ବଳପୂର୍ବକ ପ୍ରଚଣ୍ଡ ହସ୍ତରେ ଓ ଦୃଢ଼ମୁଷ୍ଟିରେ ଛଡ଼ାଇନେଇ ସେହି ଅଜ୍ଞାତ ଗର୍ଭରେ ନିକ୍ଷେପ କରି ଦେଉଅଛି । କାହାରି କର୍ମ ବା ଫଳ କେହି ନିଜ ଭଣ୍ଡାରରେ ରଖିପାରୁନାହିଁ । କେବଳ "ମୋର" କରିବା ଭାବଟି ଦୈବଦ୍ରୋହ ମାତ୍ର । ସେହି ଦ୍ରୋହର ଫଳ ସ୍ୱରୂପ ଚିରକାଳ ଅହଂକାରଜନିତ ଦେହ ବନ୍ଧନ ଦୁଃଖ ଭୋଗିବାଭିନ୍ନ ଆଉ ଅନ୍ୟ କିଛି ଲାଭ ନାହିଁ । ସେବକର ପ୍ରଭୁର ପଦାର୍ଥକୁ ପ୍ରଭୁଅର୍ଥରେ ଲଗାଇବା ଧର୍ମ । ନିଜର ବୋଲି କହିଲେ ସେ ସେବକ ନୁହେ, ଶଠ ଆଉ ଚୋରପଦବାଚ୍ୟ ଅଟେ । ସୁତରାଂ ଦଣ୍ଡ ତା ପକ୍ଷରେ ସୁନିଶ୍ଚିତ । ଏହିରୂପ ଦଣ୍ଡର ନାମ ଦେହାତ୍ମାଭିମାନ ମୋହଜନିତ ଦୁଃଖ । ଏ ସ୍ଥଳେ ବୁଝିବା ଉଚିତ ଯେ ବୈଦିକ ଶାସ୍ତ୍ର ପୁରାଣାଦିସମ୍ମତ ଧର୍ମ କର୍ମ ଏବଂ ଭୋଗାଦି ବୈଧପଦବାଚ୍ୟ । ଏହି ବୈଧ କର୍ମ ଏବଂ ଭୋଗାଦିକୁ ଈଶ୍ୱରାର୍ପଣ କରି ସତ୍ତ୍ୱ-ସଂଯମସେବୀ ହେବା କର୍ମଯୋଗର ଲକ୍ଷଣ ଓ ସହଜସାଧ୍ୟ ।

(୧) ସ୍ୱାର୍ଥାନ୍ଧପରତା, ସ୍ୱେଚ୍ଛାଚାରିତା ଓ ବିଳାସିତାଦି ସର୍ବପ୍ରକାର ଅସତ୍‌ବୃତ୍ତ୍ୟାଦି ଓ ତଦନୁରୂପ କର୍ମ ଏବଂ ଭୋଗାଦି ପରିହାର କରି ନିରହଂକାର ଓ ନିରଭିମାନପୂର୍ବକ

କେବଳ ପରମେଶ୍ୱର ଉଦ୍ଦେଶ୍ୟରେ ସଂସାରସ୍ଥ ସୁଖ, ଶାନ୍ତି ଏବଂ ଧର୍ମାଦି ମଙ୍ଗଳସାଧନାର୍ଥ ସେବାବ୍ରତରୂପ ଯେଉଁ ସତ୍‌କର୍ମାଦିର ଅନୁଷ୍ଠାନ କରାଯାଏ ତାହା ଦେହାତ୍ମବୁଦ୍ଧି ସହିତ କରି ଯାଉଥିବା ପର୍ଯ୍ୟନ୍ତ ଏହି ଆତ୍ମା, ପରମାତ୍ମାର ଦାସ ବା ସେବକ ଅଟେ । (୨) ଏହି ଆତ୍ମା ଆପଣାକୁ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଧର୍ମଶୂନ୍ୟ, ଶୁଦ୍ଧାନ୍ତଃକରଣୋପହିତ, ଜୀବୋପାଧିକ, ଚିଦାଭାସ ସ୍ୱରୂପେ ଦେଖୁଥିବା ପର୍ଯ୍ୟନ୍ତ ପରମାତ୍ମାର ଅଂଶ ସତ୍ତ୍ୱ ବା ପ୍ରତିବିମ୍ବ ସ୍ୱରୂପ ଅଟେ । (୩) ଏହି ଆତ୍ମା ଜୀବୋପାଧିଶୂନ୍ୟ ବିଶୁଦ୍ଧାତ୍ମ ବୁଦ୍ଧିଦ୍ୱାରା ଚିଦ୍ରୂପାତ୍ମକ ରୂପେ ନିଶ୍ଚିତ ହେବା ଅବସ୍ଥାରେ ଆତ୍ମାକୁ ପରମାତ୍ମା ସହିତ ଅଭେଦାଙ୍ଗ ରୂପେ ସିଦ୍ଧାନ୍ତ କରି କୃତକୃତ୍ୟ ହୁଏ । (୪) ଏହି ଆତ୍ମା ରାଜସତାମସାଚ୍ଛନ୍ନ ବୁଦ୍ଧିଦ୍ୱାରା ସୋଽହଂକାରାଦି ଯୁକ୍ତ ହୋଇ ଦୈହିକ ସୁଖସମ୍ଭୋଗ ଓ ବିଳାସିତାଦି ଚରିତାର୍ଥ କରିବା ନିମିତ୍ତ ବହୁଳ ଅର୍ଥାପ୍ରୟୋଜନ ସକାଶେ ପରସ୍ୱାପହରଣ, ପରପୀଡ଼ା ଓ ପର ନିଗ୍ରହ ସାଧନାଦି ଅତ୍ୟୁଗ୍ର କର୍ମାଦିରେ ପ୍ରବୃତ୍ତ ହେବା ଅବସ୍ଥାରେ ଏହାକୁ ରାକ୍ଷସ କୁହାଯାଏ । (୫) ଏହି ରାକ୍ଷସାତ୍ମା, ମଦ, ମାଂସାଦିରତ ସର୍ବବିଧ ଅନୈତିକ କୁକ୍ରିୟାପରାୟଣ, ଧର୍ମ ଏବଂ ନୀତିର ଛଳନାତ୍ମକ ପାପକ୍ରିୟାଦି ଯୁକ୍ତ ହୋଇ ସଂସାରର କଣ୍ଟକସ୍ୱରୂପ ପରିଚିତ ହେଲାବେଳେ ତାହାକୁ ଚତୁଷ୍ପଦ ପଶୁଠାରୁ ହୀନତମ ଦ୍ୱିପଦ ପଶୁ ବା ମ୍ଳେଚ୍ଛ କୁହାଯାଏ । ବର୍ତ୍ତମାନ ପୃଥିବୀର ଅଧିକାଂଶ ଏହି ପରରକ୍ତଶୋଷୀ, ପରଧନପ୍ରାଣହନାଶୀ, ବିଶ୍ୱସର୍ବସ୍ୱଗ୍ରାସୀ ମ୍ଳେଚ୍ଛଗଣ-ସମାକୀର୍ଣ୍ଣ ହୋଇ ପାପ, ତାପ, ଦୁଃଖ ଭୟଭାରଭରିତ ବସୁନ୍ଧରା, ଧର୍ମତ୍ରାଣକର୍ତ୍ତା ଓ ସାଧୁପାଳନକର୍ତ୍ତା ପରମେଶ୍ୱରଙ୍କର ଅବତାର ଶ୍ରୀମୂର୍ତ୍ତିଙ୍କୁ ନିମନ୍ତ୍ରଣ କରୁଅଛି ।

ଏହି ଅନାବୃତ ଆତ୍ମା ଅହଂମାତ୍ର ବୋଧ ରୂପରେ ସ୍ୱତଃ ବିରାଜିତ ଥାଇ ନିଜ ଚିଦାକାରମୟ ଚୈତନ୍ୟବିଗ୍ରହକୁ ସର୍ବଦା ଉପଲବ୍ଧି କରୁଅଛନ୍ତି । ଅଥଚ ସେହି ଶୁଦ୍ଧାତ୍ମରୂପସ୍ଥ ସ୍ୱାତ୍ମଶକ୍ତିର ସ୍ୱାଶ୍ରୟ ବ୍ୟାମୋହକତା ଗୁଣରେ ସ୍ୱୟଂ ମୁଗ୍ଧ ହୋଇ ସେହି ମୋହସୃଷ୍ଟ 'ମାୟାବିଳାସବିକଳ୍ପିତ ଚରାଚରମୟ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଜଗଦାକାର ଚିତ୍ର'କୁ ଆତ୍ମସ୍ଥ ସେହି ଆତ୍ମମାୟାରେ ଅର୍ଥାତ୍ ନିଜଠାରେ ଦର୍ଶନ କରି ନିର୍ମଳ ଆତ୍ମାକୁ ଚିଦ୍ରୂପ ଚିଦାଭାସମିଶ୍ରିତ ମାୟାଭାସାକାରିତ ଜୀବଚୈତନ୍ୟ ରୂପରେ ମଧ୍ୟ ଉପଲବ୍ଧି କରୁଅଛନ୍ତି । ଏହିରୂପେ ଆତ୍ମଦେବ ଅଦ୍ୱୈତ ଓ ଦ୍ୱୈତ ଉଭୟ ମିଶ୍ରଫଳ ସ୍ୱରୂପ ବିଚିତ୍ର ଚିଦାକାର ଧାରଣ କରିଅଛନ୍ତି । ଏକ ପଦାର୍ଥ ଏପରି ଦୁଇପ୍ରକାର ଆକାରବିଶିଷ୍ଟ ହୋଇ ଆପଣାକୁ ଆପେ ଉପଲବ୍ଧି କରିବାର ଆଦର୍ଶ ଅଦ୍ୱିତୀୟ ଅଟେ । ଅର୍ଥାତ୍ ଅଦ୍ୱୈତ ଆତ୍ମା ଆପଣାକୁ ଦ୍ୱୈତାଦ୍ୱୈତ (ଆତ୍ମା ଏବଂ ଜୀବାତ୍ମା) ରୂପରେ ନିର୍ଦ୍ଦେଶ କରିବାର ଆଦର୍ଶ ବିଶ୍ୱମାନବରେ ଦୁର୍ଲ୍ଲଭ ଅଟେ । ଉଦାହରଣ ଅଳ୍ପମାତ୍ର ସାହାଯ୍ୟ କରିପାରେ । ଦେଖ, ଯେପରି ଆମ୍ଭେ (ଆତ୍ମା) ଦର୍ପଣ (ମାୟା) ରୁ ଦେଖି ଦେଖି ତହିଁରେ ନିଜ ପ୍ରତିବିମ୍ବ (ଜୀବ) ଦେଖୁଥାଉଁ, ସେହି ବିମ୍ବଟି ଦୃଷ୍ଟ ଦର୍ପଣ ନୁହେ ବା ଦ୍ରଷ୍ଟା ଆମ୍ଭେ ନିଜେ ନୋହୁ ଅଥଚ ଆମ୍ଭଙ୍କୁ ଦର୍ପଣ ଏବଂ ନିଜାକାର ଗୁଡ଼ିକ ସ୍ୱୟଂ ନିଜେ ବୋଲି ଜ୍ଞାନ କରିବାକୁ

ହେଉଅଛି । ମାତ୍ର ଏଠାରେ ପ୍ରଭେଦ ଏତିକି ଯେ, ଦର୍ପଣ ଏବଂ ଦ୍ରଷ୍ଟା ଆମ୍ଭେ ଉଭୟ ପୃଥକ୍ ପୃଥକ୍ ବସ୍ତୁ; ଆଉ ପ୍ରତିବିମ୍ବ ନ ଥିଲା କିମ୍ବା ବର୍ତ୍ତମାନ ଦିଶୁଥିଲେ ମଧ୍ୟ ତାହା ଆମ ନିଜରୂପ ତୁଳନାରେ ଅପଦାର୍ଥ ଅର୍ଥାତ୍ କିଛି ନୁହେ, କିନ୍ତୁ ଆତ୍ମା ସ୍ଥଳରେ ସେପରି ନୁହେ । ଆତ୍ମା ସ୍ୱୟଂ ଦ୍ରଷ୍ଟା ଜ୍ଞାନପୂର୍ଣ୍ଣ ପଦାର୍ଥ । ଦର୍ପଣ ଆତ୍ମମାୟା ଆତ୍ମସ୍ଥ ଆଉ ଆତ୍ମାରୁ ଅଭିନ୍ନ ଅଥଚ ଭିନ୍ନ ଉଭୟବିଧ । ପୁଣି ଚନ୍ଦ୍ରରେ ଦିଶୁଥିବା ପ୍ରତିବିମ୍ବୋପମ ଦ୍ୱୈତ ଜୀବ-ଚୈତନ୍ୟ ମଧ୍ୟ କାର୍ଯ୍ୟତଃ ସେହି ଆତ୍ମାରେ ଅର୍ଥାତ୍ ଆତ୍ମସ୍ଥ ମାୟାରେ ପ୍ରତିଫଳିତ । ଏହିରୂପେ ଏକ ଆତ୍ମା ସ୍ୱୟଂ ଶୁଦ୍ଧାତ୍ମ ରୂପେ ରହି ଜୀବଚୈତନ୍ୟାକାରରେ ପ୍ରତିଫଳିତ ହୋଇ କରି ଫଳତଃ ଏତଦୁଭୟ ମିଶ୍ରିତ ଫଳିତ ଚୈତନ୍ୟାକାରରେ ଆପେ ଆପଣାକୁ ଉପଲବ୍ଧି କରୁଅଛନ୍ତି । ଏଥିରେ ଆହୁରି ବିଶେଷତ୍ୱ ଏହି ଯେ, ଆତ୍ମଦେବ, ଆତ୍ମସ୍ଥ ସ୍ୱୀୟ ମାୟାଶକ୍ତିଗତ ସ୍ୱାତନ୍ତ୍ର୍ୟ ବ୍ୟାମୋହକତା ଗୁଣର ବଶବର୍ତ୍ତୀ ହୋଇ ଆତ୍ମତ୍ୱ ଭୁଲିଯାଇ ଜୀବଚୈତନ୍ୟକୁ ନିଜେ ସ୍ୱୟଂ ବୋଲି ଜାଣୁଅଛନ୍ତି । ଏହି ମୋହମୟ ଅଜ୍ଞାନ ସଂସାରର ବ୍ୟର୍ଜ୍ୟ ଏତଦ୍ୱାରା ଆତ୍ମକଳ୍ପିତ ଆତ୍ମସ୍ଥ ଅଥଚ ବାହ୍ୟବତ୍ ପ୍ରତୀୟମାନ ଏହି ଦେହ ସଂସାରର ସତ୍ୟତା ସ୍ଥିର ହେଉଅଛି । ଦର୍ପଣର ଉଦାହରଣ ସ୍ଥଳେ ଦର୍ପଣ ଜଡ଼ ସ୍ଥୂଳ ଅଟେ । ଆତ୍ମା ସ୍ଥଳରେ ଆତ୍ମା ଚିନ୍ମୟ ବସ୍ତୁ ଓ ତଦୀୟ ଶକ୍ତ୍ୟାଦି ଏବଂ ଜୀବ-ଚୈତନ୍ୟାଦି ସମସ୍ତ ଚିଦାଭାସ ଜାତୀୟ ସୃଷ୍ଟି । ସେହି ହେତୁ ଏମାନଙ୍କ ଦ୍ୱାରା ଜ୍ଞାନାଭାସର କ୍ରିୟା ଅର୍ଥାତ୍ କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଅହଂକାରାତ୍ମକ ଜ୍ଞାନ ଏବଂ ଅଭିମାନାତ୍ମକ କ୍ରିୟାଦି ଦେହାତ୍ମଭ୍ରମାକାରରେ ପରିଦୃଷ୍ଟ ହେଉଅଛି । ପୁଣି ଆତ୍ମା ସତ୍ୟ ବିଗ୍ରହ ଅଟନ୍ତି ବୋଲି ତଦୀୟ ଆଭାସାକାର ସୃଷ୍ଟି ଏହି ପିଣ୍ଡବ୍ରହ୍ମାଣ୍ଡାତ୍ମକ ଚିତ୍ର ସତ୍ୟମୟ ବୋଲି ଭ୍ରମତଃ ବ୍ୟବହୃତ ହେଉଅଛି ।

ଏଥିରୁ ବୁଝାଯାଏ ଆତ୍ମତତ୍ତ୍ୱଜ୍ଞାନ ଆତ୍ମାର ନିତ୍ୟ ଜ୍ଞାନାନନ୍ଦ ସର୍ବକଳ୍ପନାବିମୁକ୍ତ ଶୁଦ୍ଧରୂପକୁ ନିଷ୍ଟୟ କରେ ଆଉ ମୋହ ପିଣ୍ଡବ୍ରହ୍ମାଣ୍ଡାତ୍ମକ ମାୟାସୃଷ୍ଟି ଜଗଦାକାର ଚିତ୍ରକୁ ମାତ୍ର ନିଷ୍ଟୟ କରୁଅଛି । ଏହି ଉଭୟ ତତ୍ତ୍ୱ ଦର୍ଶନରୁ ଆତ୍ମାକୁ ସ୍ୱରୂପତଃ ଉପଲବ୍ଧି କରି ମାୟିକ ବସ୍ତ୍ୱାଦିକୁ ହେୟ ମୃଗତୃଷ୍ଣା ପରି ନିଷ୍ଟୟ କରିବାର ନାମ ସମ୍ୟକ୍ ଦର୍ଶନ ବା ସମ୍ୟକ୍ ଜ୍ଞାନ । ଜୀବ ଚୈତନ୍ୟ ଅବସ୍ତୁ ନ୍ୟାୟ ପ୍ରତିବିମ୍ବାକାର ବିଶିଷ୍ଟ ହେଲେ ମଧ୍ୟ ତାହା ଚୈତନ୍ୟ ସତ୍ତ୍ୱଯୁକ୍ତ ଚିଦାଭାସାତ୍ମକ ଅଟେ ବୋଲି ପ୍ରାକୃତ ଜଗତରେ ତାହାର ଦାୟିତ୍ୱ ସମଧିକ ପରିମାଣରେ ରହିଅଛି । ଅର୍ଥାତ୍ ଅଜ୍ଞାନ ଥିବା ପର୍ଯ୍ୟନ୍ତ ଅଜ୍ଞାନ କଳ୍ପିତ ସତ୍ୟଧାରଣା ଦ୍ୱାରା କୃତକର୍ମାଦିର ଫଳଭୋଗ ଦୃଢ଼ ନିଶ୍ଚିତ । ବାକ୍‌ପଟୁତା ଦ୍ୱାରା ମୁଁ ଜ୍ଞାନୀ ବୋଲି ଦେଖାଇ ହେଲେ ନିସ୍ତୃତି ହେବ ନାହିଁ ।

ଉପର୍ଯ୍ୟୁପରିବର୍ଣ୍ଣିତ ଶୁଦ୍ଧ ନିର୍ମଳ ଆତ୍ମାରେ ପ୍ରାତିଭାସିକ 'ମାୟାବିଳାସ-ବିକଳ୍ପିତ ଚରାଚରମୟ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଜଗଦାକାରଚିତ୍ର' ଯେଉଁପରି ସତ୍ୟବତ୍ ପରିଦୃଷ୍ଟ ଓ ପରିଜ୍ଞାତ ହେଉଅଛି, ତାହା ପ୍ରତ୍ୟକ୍ଷ ଦେଖ । (୧) ବାହାରରେ ଥିଲାପରି

ଦେଖାଯାଉଥିବା ଏହି ପରିଦୃଶ୍ୟମାନ ପିଣ୍ଡବ୍ରହ୍ମାଣ୍ଡ ସର୍ବସ୍ୱମୟ ମହଦାକାଶର ଗର୍ଭସ୍ଥ ଏହି ଚିତ୍ର+(୨) ଆମ୍ଭର ଏହି ଦେହ+(୩) ଆମ୍ଭର ପଞ୍ଚପ୍ରାଣ ଓ ଦଶଇନ୍ଦ୍ରିୟ (ଏମାନଙ୍କ ସହଯୋଗରେ ଆକାଶସ୍ଥିତ ପିଣ୍ଡବ୍ରହ୍ମାଣ୍ଡାଦି ସ୍ଥୂଳ ସମଷ୍ଟିର ଅସ୍ତିତ୍ୱ ଦର୍ଶନାଦିଦ୍ୱାରା ପ୍ରତ୍ୟକ୍ଷ ଉପଲବ୍ଧି ହେଉଅଛି)+(୪) ଆମ୍ଭର ଅନ୍ତଃକରଣ+(୫) ଆତ୍ମାର ଜୀବୋପାଧି ଅର୍ଥାତ୍ ୧ମ ଠାରୁ ୪ର୍ଥ ପର୍ଯ୍ୟନ୍ତ ଯୁକ୍ତ ଚିହ୍ନର ଉଭୟପାର୍ଶ୍ୱସ୍ଥ ପଦାର୍ଥମାନଙ୍କର ଏକତ୍ରୀଭୂତ ସଂଘବଦ୍ଧତା ବା ତତ୍ସମସ୍ତର ଯୋଗଫଳ ସହିତ ଆତ୍ମାର ସମ୍ବନ୍ଧରୁ 'ମୁଁ ଏତତ୍ ସର୍ବମୟ ବିଶିଷ୍ଟ' ବୋଲି ଯେଉଁ ଅନାଦି ଦେହାତ୍ମ ବାସନା ଓ ସଂସ୍କାର ସହ ଦେହାତ୍ମାଭିମାନ ବା ଦେହାତ୍ମ ବୁଦ୍ଧି+(୬) ସ୍ୱୟଂ ଆତ୍ମା (ଶୁଦ୍ଧ ଅହଂବୋଧ ମାତ୍ର)=(୭) "ମାୟାବିଳାସ ବିକଳ୍ପିତ ଚରାଚରମୟ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଜଗଦାକାର ଚିତ୍ର । ଏଥିରେ ପ୍ରଥମ ଛଅଟି ସଂଯୋଜକ ଆଉ ସପ୍ତମଟି ଯୋଗଫଳ ଅଟେ । ଉକ୍ତ ପ୍ରଥମ ଛଅଟିର ପୂର୍ବାନୁକ୍ରମେ ପରସ୍ପର ସମବାୟ ସମ୍ବନ୍ଧ । ଏହି ସମ୍ବନ୍ଧସୃଷ୍ଟ ଯୌଗିକ ମିଶ୍ର ବସ୍ତୁର ନାମାନ୍ତର ଉକ୍ତ ଜଗଦାକାର ଚିତ୍ର । ଏହି ଚିତ୍ରର ସମଷ୍ଟି, ଆତ୍ମାର ଅଦ୍ୱୈତାଙ୍ଗର ଶୋଭାବର୍ଦ୍ଧନ କରିବା ନିମିତ୍ତ ଆତ୍ମାଳଂକାର-ବିଭବରୂପେ ଆତ୍ମମାୟାଦ୍ୱାରା ଆତ୍ମାରେ ବିଚହିତ ହୋଇ ଆତ୍ମାକୁ ବିଶ୍ୱାଧାରଭୂତ ସର୍ବଶୋଭାସମ୍ପନ୍ନ ବିଶ୍ୱମୂର୍ତ୍ତିମନ୍ତ ଦ୍ୱୈତାକାରରେ ପ୍ରକାଶ କରିଅଛି । ଆମ୍ଭେ ତୁମ୍ଭେ ଇତ୍ୟାଦି ଇତ୍ୟାଦି ପ୍ରତ୍ୟେକ ଜୀବାତ୍ମ ପୁରୁଷ ଏହି ବିଶ୍ୱମୂର୍ତ୍ତିର ଏକ ଏକ ନଗଣ୍ୟ ଅଙ୍ଗ ବା ଅଙ୍ଗାଂଶ ସ୍ୱରୂପ ଅଥଚ ତତ୍ସୌସାଦୃଶ୍ୟ । ଉକ୍ତ ପ୍ରଥମୋକ୍ତ ଛଅଟି ମଧ୍ୟରୁ ୬ଷ୍ଠ ଆତ୍ମାଭିନ୍ନ ଅପର ପାଞ୍ଚଟିର ଯେ କୌଣସି ଗୋଟିକକୁ ବାଦ ଦେଲେ ପାଞ୍ଚଗୋଟିଯାକ ଅଦୃଶ୍ୟ ହେବେ । "ଛଅ ଟଙ୍କାରୁ ଟଙ୍କାଟିଏ କାଢ଼ିନେଲେ ପାଞ୍ଚ ଟଙ୍କା ଅବଶିଷ୍ଟ ରହିବାପରି ଗାଣିତିକ ହିସାବ ଏଠାରେ ଅଚଳ । ଥିଲାବେଳେ ସବୁଯାକ ଥିବେ । ଏକ ଗୋଟିକର ତତ୍ତ୍ୱର ଅଭାବରେ ସମସ୍ତଙ୍କର ଅଭାବ ସଂଘଟିତ ହେବ ଅର୍ଥାତ୍ ଅସଙ୍ଗ ଓ ଅମୋହ ଆତ୍ମା ଏ ସମସ୍ତଙ୍କର ଯୋଗ-ବିଯୋଗ ଦର୍ଶନ କରୁଅଛନ୍ତି । ଅଥଚ ଦ୍ରଷ୍ଟା ଆତ୍ମାର ବୈଲକ୍ଷଣ୍ୟ ନାହିଁ ।" ଜ୍ଞାନଯୋଗାନୁଷ୍ଠାନଦ୍ୱାରା ଆତ୍ମା ଏହି ଯୋଗ ବିଯୋଗର ଫଳାଫଳ ନିରୂପଣ କରୁଅଛନ୍ତି । ଓଁ ତତ୍ସତ୍ ।

ବୁଢ଼ିଆଣୀ ପୋକଠାରେ ସୂକ୍ଷ୍ମମୟ ଜାଲ ଅଦୃଶ୍ୟ ବା ଅବ୍ୟକ୍ତଭାବେ ନ୍ୟସ୍ତ ଥାଇ ତାହାଦ୍ୱାରା ତାହାଠାରୁ ବାହାରି ଶେଷରେ ତାହାର ବନ୍ଧନର କାରଣ ହୁଏ । ଏହିରୂପେ ଆତ୍ମାରେ ଏହି ଚିତ୍ର କାରଣରୂପେ ଅବ୍ୟକ୍ତ ଥାଇ କାର୍ଯ୍ୟରୂପେ ଏତଦ୍ରୂପ ଚିତ୍ରାକୃତିରେ ଦୃଷ୍ଟ ହେଉଅଛି । ଏହା ଆତ୍ମଲୀଳାବିଭବର ବିଶିଷ୍ଟତା ମାତ୍ର । ଆତ୍ମା ନିଜ ମାୟିକ ସ୍ୱଭାବବଶତଃ ଜୀବୋପାଧିକ ଅଧ୍ୟାତ୍ମରୂପ ଧାରଣ କରି ଏହି ଜଗଦାକାର ଚିତ୍ରକୁ ଆତ୍ମାରେ ଦର୍ଶନ କରୁଅଛନ୍ତି । ପୁଣି ତହିଁରେ ବିମୁଗ୍ଧ ହୋଇ ସର୍ବଦା ରହିଅଛନ୍ତି । କାର୍ଯ୍ୟଚକ୍ଷୁକୁ କାରଣ ଦୃଷ୍ଟି ଆଡ଼େ ପରିବର୍ତ୍ତନ କଲେ ଆତ୍ମାର ସ୍ୱକୀୟ ଜୀବୋନ୍ମୁକ୍ତ ଭାବ ପ୍ରତିଫଳିତ ହେବ । ଏହି ଦୃଷ୍ଟି ପରିବର୍ତ୍ତନର ପନ୍ଥା ବା ପ୍ରଣାଳୀର

କ୍ରମ ଏହିପରି, ତଦ୍ ଯଥା—ଦେହଠାରୁ ଜୀବୋପାଧି ପର୍ଯ୍ୟନ୍ତ ସମସ୍ତ "ପଞ୍ଚପ୍ରକାର" ବୈକାରିକ ବସ୍ତୁମାନଙ୍କୁ ସ୍ଥିରତର ଭାବେ ରଖିବା ନିମିତ୍ତ ଉକ୍ତ ପ୍ରତ୍ୟେକର ନିଜ ନିଜ ବୃତ୍ତିକୁ ସେହି ସେହି ପ୍ରତ୍ୟେକର ମୂଳ ଦେଶରେ ଆବଦ୍ଧ କରି ରଖି ସ୍ୱୟଂ ଦ୍ରଷ୍ଟା ଆତ୍ମାରୂପେ ସେହି ପାଞ୍ଚଟିକୁ ନିବାତ ପ୍ରଦୀପପ୍ରାୟ ଅଟଳ ଅଚଳ ଭାବେ ଦେଖିବାକୁ ହେବ । ଅର୍ଥାତ୍ (୧) ଦୈହିକ ଚଞ୍ଚଳତାକୁ ସ୍ଥିରାସନାଦିଦ୍ୱାରା ଦେହରେ, (୨) ପ୍ରାଣବୃତ୍ତିର ଚଞ୍ଚଳତାକୁ ପ୍ରାଣାୟାମାଦି ଲମ୍ବ ସୂକ୍ଷ୍ମ ସହଜାରେ "ହଂସ" ସଂସ୍କାର ଆବଦ୍ଧ କରିବାଦ୍ୱାରା ପ୍ରାଣରେ, (୩) ଚକ୍ଷୁରାଦି ଇନ୍ଦ୍ରିୟମାନଙ୍କର ଚଞ୍ଚଳତାକୁ ଚକ୍ଷୁପତା ଓ ତାରକା ସ୍ଥିର ରଖିବାଦ୍ୱାରା ଚକ୍ଷୁରେ ଆବଦ୍ଧ କରିବା ପରି ସମସ୍ତ ଇନ୍ଦ୍ରିୟ ବୃତ୍ତିମାନଙ୍କୁ ଶମ, ଦମ, ଯମ ଓ ନିୟମାଦିଦ୍ୱାରା ତତ୍ତଦିନ୍ଦ୍ରିୟାଦିରେ, (୪) ଅନ୍ତଃକରଣର ବୃତ୍ତି ଚତୁଷ୍ଟୟକୁ ପ୍ରତ୍ୟାହାରାଦି ଦ୍ୱାରା ତତ୍ତତ୍ ମନ, ଚିତ୍ତ, ଅହଂକାର ଏବଂ ବୁଦ୍ଧିରେ ଆଉ ଏହି ପ୍ରକାରରେ, (୫) ଏହି ଚୂରିଟିର ଚାଞ୍ଚଲ୍ୟରେ ଜୀବାତ୍ମାର ଚାଞ୍ଚଲ୍ୟରୂପ ଯେଉଁ ଜୀବୋପାଧି ତାହା, ଆତ୍ମାର ଧ୍ୟାନ, ଧାରଣା ଓ ସମାଧିଦ୍ୱାରା ଅବରୁଦ୍ଧ ହେବାରୁ ସେହି ଜୀବୋପାଧିକୁ କୂଟସ୍ଥ ଆତ୍ମାରେ ବିଲୟ ହୋଇଥିବା ଉପଲବ୍ଧି କରିବାକୁ ହେବ ।

ଏହିରୂପେ ଆତ୍ମଦେବ, ଏହି ପରି-ଦୃଶ୍ୟମାନ ଜଗଦାକାର ଚିତ୍ରକୁ ସାବୟବ ଚାଞ୍ଚଲ୍ୟରହିତ ଜଡ଼ ପ୍ରତିମାପରି ଦର୍ଶନ କରି ସ୍ୱୟଂ ଦ୍ରଷ୍ଟା ଚୈତନ୍ୟରୂପେ ଆତ୍ମସ୍ଥ ଓ ଶାନ୍ତ ହେବେ । ଏ ଦର୍ଶନ ଦେବପ୍ରତିମାଦର୍ଶନ ସଙ୍ଗେ ସମୋପମବିଶିଷ୍ଟ ଅଟେ । ବସ୍ତୁତଃ ଏତଦ୍ରୂପ ସ୍ଥିରଭାବାପନ୍ନ ଜଗଦାକାର ଚିତ୍ରଦର୍ଶନର ନାମ ସାକ୍ଷାତ୍ ପ୍ରକୃତି-ଦେବୀର କାର୍ଯ୍ୟକାରଣମିଶ୍ର ଅଭିନ୍ନରୂପାତ୍ମିକା ବିଗ୍ରହର ଦର୍ଶନ ଅଟେ । ଏହି ଦର୍ଶନର ପ୍ରତିପାଦ୍ୟ, ଦେବୀ ଭଗବତୀ ଆଦ୍ୟା ପ୍ରକୃତି ମୋକ୍ଷଦା, ଜ୍ଞାନଦା, ଧର୍ମଦା ଓ ଅର୍ଥଦା ଅଟନ୍ତି, ଆଉ ସର୍ବମଙ୍ଗଳଦାୟିନୀ ମାତୃମୂର୍ତ୍ତିରୂପେ ଦର୍ଶନ ଦେଇ ଆତ୍ମାକୁ ଆତ୍ମପଦବୀ ପ୍ରଦାନ ଓ ଆତ୍ମସ୍ଥ କରନ୍ତି । ଦେବପ୍ରତିମା ଦର୍ଶନ ଠିକ୍ ଏହିପରି । ଦେବବିଗ୍ରହଦର୍ଶନ ଯାହା ତାହା ନୁହେ, ଏହା ଆତ୍ମବିନିମୟ ଯୋଗର ଅନୁଶୀଳନୀ ମାତ୍ର । ଆତ୍ମା ଯେପରି ନିରୁପାଧିକଭାବେ ଉପରବର୍ଣ୍ଣିତ 'ଜଗଦାକାର ଚିତ୍ର'କୁ ଦେଖି ତହିଁରୁ ଆତ୍ମସମ୍ପର୍କ ବିଯୁକ୍ତ କରି ତହିଁରେ ମୁଗ୍ଧ ହୁଅନ୍ତି ନାହିଁ, ଆଉ ସେହି ଚିତ୍ରକୁ ଭଗବତୀର ସୌସାଦୃଶ୍ୟ ଅଙ୍ଗ ବା ଅଂଶବିଶେଷ ବୋଲି ନିର୍ଦ୍ଦିଷ୍ଟ କରନ୍ତି, ଅର୍ଥାତ୍ ଉକ୍ତ 'ଜଗଦାକାର ଚିତ୍ର'କୁ ତଦ୍ଗତ (୧) ଜୀବୋପାଧିଶୂନ୍ୟ ଆକାରରେ, (୨) ତନ୍ନିଷ୍ଠ ଅନ୍ତଃକରଣକୁ କର୍ତ୍ତୃତ୍ୱ, ଭୋକ୍ତୃତ୍ୱ, ସୁଖିତ୍ୱ ଓ ଦୁଃଖିତ୍ୱାଦି-ଶୂନ୍ୟ-ନିରହଂକାର ଏବଂ ନିରଭିମାନ ଓ ଦେହାତ୍ମ-ବୁଦ୍ଧିବିରହିତ ପ୍ରକାର ବିଶେଷ ଅବସ୍ଥାରେ, (୩) ଇନ୍ଦ୍ରିୟାଦିକୁ ବୃତ୍ତିଶୂନ୍ୟ ଓ କର୍ମଶୂନ୍ୟ ଭାବରେ, (୪) ପ୍ରାଣକୁ ନୈଶ୍ଚଲ୍ୟ ନିଷ୍ପ୍ରାଣ ପରି, (୫) ଏବଂ ଦେହକୁ ନିର୍ଜୀବ ଜଡ଼ପିଣ୍ଡ ବା ନିଷ୍କ୍ରିୟ ସ୍ଥାଣୁବତ୍ ଦର୍ଶନ କରି ଏହି ଆତ୍ମା ଏହି ଦେହାଦିସର୍ବସ୍ୱ ଜଗଦାକାରଚିତ୍ର-ସଞ୍ଜ୍ଞକ ଦୃଶ୍ୟକୁ ଯେପରି ପ୍ରକୃତିଦେବୀର ମୂର୍ତ୍ତିବିଶେଷ ବୋଲି ଅବଧାରଣ କରନ୍ତି,

ସେହିପରି ଦେବବିଗ୍ରହ ଦର୍ଶନ କରି ତାହା (୧) ଜୀବୋପାଧି ବର୍ଜିତ ରୂପବିଶିଷ୍ଟ, (୨) ନିରଭିମାନ ଓ ନିରହଂକାର; (୩) ଇନ୍ଦ୍ରିୟ ଓ ଅବୟବାଦିଯୁକ୍ତ, ନିଷ୍କ୍ରିୟ, ନିଷ୍ଫଳ ଅଥଚ (୪) ପ୍ରାଣଶୂନ୍ୟ ବିରହିତ ଏବଂ (୫) ସ୍ଥିର ବିଗ୍ରହ ବା ନିଶ୍ଚଳ ଦେହବିନ୍ତ ଆକାରରେ ତାହାଙ୍କୁ ନିଶ୍ଚୟ କରନ୍ତି । ଆଉ ଯେଉଁ ଆତ୍ମା ଦେହରେ ମୋହବଶରୁ ହେଉ ବା ପ୍ରେମବଶରୁ ହେଉ 'ମୁଁ' ବୋଲି ଆପଣାକୁ ଯେପରି କଳ୍ପନା କରନ୍ତି, ସେହି ଆତ୍ମା ସେପରି ଦେବବିଗ୍ରହରେ ଉପାସ୍ୟ ପରମେଶ୍ୱର ବା ପରମେଶ୍ୱରୀର ରୂପ କଳ୍ପନା କରି ସେହି ସେହି ଦେବଦେବୀମୂର୍ତ୍ତିଙ୍କୁ ତଦ୍ରୂପ ଉପାସ୍ୟ ଜ୍ଞାନରେ ପୂଜା କରନ୍ତି ।

ଏଠାରେ ଆତ୍ମାପକ୍ଷରେ (୧) ଜୀବଦେହ ହେଉ ବା (୨) ଦେବବିଗ୍ରହ ହେଉ ଉଭୟେ କଳ୍ପନାମୂଳକ (୧) ନିଜ ଦେହ ବା (୨) ଦେବବିଗ୍ରହ । ଦେହାତ୍ମ କଳ୍ପନା ଯେପରି କର୍ମପ୍ରସୂ ଓ ଭୋଗପ୍ରଦ ବୋଲି ବ୍ୟବହୃତ ହେଉଅଛି, ସେହିପରି ଦେବ-ବିଗ୍ରହରେ ଉପାସ୍ୟ କଳ୍ପନା ମଧ୍ୟ ସର୍ବକାମ ଫଳପ୍ରଦ ଅଟେ । ଆତ୍ମବ୍ରହ୍ମ ଉଭୟ ସ୍ଥାନରେ ଫଳପ୍ରଦ । ଦେହସ୍ଥାନରେ ଦେହ ନୁହେ ବା ବିଗ୍ରହସ୍ଥାନରେ ବିଗ୍ରହ ନ ହୋଇ ପାରନ୍ତି, ଆତ୍ମା ଉଭୟ ସ୍ଥଳରେ ଆତ୍ମବ୍ରହ୍ମରୂପେ ସର୍ବକାମ ଫଳଦାତା ଓ ଭୋକ୍ତା ଅଟନ୍ତି । ଏହି ହେତୁ ଆତ୍ମୋକ୍ତିସ୍ୱରୂପ ପୂଜା ମନ୍ତ୍ରାଦିରେ ଉକ୍ତ ଅଛି—'ମମଜୀବୋ ଇହ ଜୀବଃ ମମ ପ୍ରାଣ ଇହ ସ୍ଥିତଃ' । ସେହି ଆତ୍ମା ଦେହବିନ୍ତଭାବରେ ଉପାସକ ଆଉ ପ୍ରକୃତିର ଅଧିଷ୍ଠାତା ଭାବରେ ଉପାସ୍ୟ । ଉଭୟ ପ୍ରକାରରେ କଳ୍ପିତ ହୋଇଅଛନ୍ତି ବୋଲି ତାଙ୍କର ଏହି ଭାବକୁ ଦେହ ଓ ଦେବବିଗ୍ରହ ଭାବାପନ୍ନ ଆତ୍ମବିନିମୟଯୋଗ କୁହାଯାଏ । ଦେବମୂର୍ତ୍ତିଭ୍ୟେ ନମଃ ।

• ଏହି ଦାର୍ଶନିକ ତତ୍ତ୍ୱରୁ ଭାବଗତ ପ୍ରଭେଦାନୁସାରେ ନାନାବିଧ କର୍ମ, ଭକ୍ତି ଏବଂ ଜ୍ଞାନ ଯୋଗାଦି ଏବଂ ନାନାବିଧ ଉପାସନାଦିର ସୃଷ୍ଟି ହୋଇଅଛି । କିନ୍ତୁ ଏତଦ୍ରୂପ ଯେ କୌଣସି ପ୍ରକାରର ଧର୍ମଭୂମିରେ ଦେହାଭିମାନୀ, ଜଡ଼ାତ୍ମବାଦୀ, ଗର୍ବୀ, ଅହଂକାରୀ, ପରସ୍ୱାପହାରୀ, ମଦ୍ୟମାଂସାହାରୀ, ଯଥେଚ୍ଛାଚାରୀ, ଉଦରମ୍ଭରୀ ସର୍ବପ୍ରକାର ନୀତି ନିୟମାଦି ଲଂଘନକାରୀ, ମ୍ଳେଚ୍ଛାଚାରୀ, ଦସ୍ୟୁ, ପ୍ରବଞ୍ଚକ, ଅର୍ଥକପଟୀ ଏବଂ ଧର୍ମକପଟୀ ପ୍ରଭୃତି ଶୟତାନ ନିମିତ୍ତ ସୂକ୍ଷ୍ମାକ୍ଷ୍ଣ ସୂଚ୍ୟଗ୍ରପରିମିତ ସ୍ଥାନର ଏକାନ୍ତ ଅଭାବ ।

ପ୍ରୋକ୍ତ 'ମାୟାବିଳାସକଳ୍ପିତ ଚରାଚରମୟ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଜଗଦାକାର ଶବ' ଭଗବତୀ ଆଦ୍ୟା ପ୍ରକୃତି ଦେବୀର ସାକ୍ଷାତ୍ ନିଜେ ପ୍ରତିମା ସଦୃଶ ଅଟେ । ଏଥିରେ ଦୁଇ ପ୍ରକାର ବୃତ୍ତି ସ୍ୱତଃ ନିର୍ଦ୍ଦିଷ୍ଟ ରହିଅଛି—(୧) ଅନ୍ତର୍ମୁଖ ବୃତ୍ତି, (୨) ବହିର୍ମୁଖ ବୃତ୍ତି । ଅନ୍ତର୍ମୁଖ ବୃତ୍ତି ପ୍ରକୃତିର କାରଣ ରୂପ ଆଡ଼କୁ ଭେଦି ଭେଦି ଯାଇଁ ଯାଇଁ ଶେଷରେ ଆତ୍ମୋନ୍ମୁଖୀ ରୂପରେ ପରିଣତ ହୁଏ । ଆତ୍ମୋନ୍ମୁଖୀ ବୃତ୍ତିର ଶେଷ ପରିଣତିର ନାମ ଚିତ୍‌ଶକ୍ତି ବା ଆତ୍ମଜ୍ଞାନାତ୍ମିକା ବା ଆତ୍ମବୋଧାତ୍ମିକା ଶକ୍ତି । ଏହା ଆତ୍ମଜ୍ଞାନ

ଉଦୟ କର ଆତ୍ମାକୁ ପ୍ରକୃତିଗତ ବୈକାରିକ ମୋହାଦିରୁ ମୁକ୍ତି ପ୍ରଦାନ କରେ । ବହିର୍ମୁଖ ବୃତ୍ତିଟି ଚଞ୍ଚଳ ସ୍ୱଭାବ ବିଶିଷ୍ଟ, ଅଥଚ ଆବରଣ ବିକ୍ଷେପାତ୍ମକ ଅଟେ । ଏତଦ୍ଦ୍ୱାରା ମାୟିକ ବ୍ୟାମୋହକତା ଆଉ ଆତ୍ମଜ୍ଞାନାବରଣର ସୃଷ୍ଟି ହୁଏ । ଏଥିରୁ ସଂସାରୀୟ ସତ୍ୟଜ୍ଞାନ ଦୃଢ଼ୀଭୂତ ହୁଏ । ଅର୍ଥାତ୍ ସାମାନ୍ୟ ଭିକ୍ଷୁକ ଏବଂ ଅଜ୍ଞଠାରୁ ଆରମ୍ଭ କରି ରାଜଚକ୍ରବର୍ତ୍ତୀ ଓ ମହାମହୋପାଧ୍ୟାୟ ସାର୍ବଭୌମ ପଣ୍ଡିତ ପର୍ଯ୍ୟନ୍ତ ସବୁ ପ୍ରକାରର କଳ୍ପିତ ଉପାଧିକୁ ସତ୍ୟବତ୍ ପ୍ରତୀତି କରିବାକୁ ହୁଏ । ଅତଏବ ଗୋଟିଏ ଘରର ମଧ୍ୟସ୍ଥ ସ୍ଥାନ ଯାପରି ଆଗଆଡ଼ ଆଲୁଅ ଏବଂ ପଛପାଖ ସ୍ଥାୟୀଯୁକ୍ତ ଅନ୍ଧାର ଥିଲାପରି ଜଗଦାକାର ଶିବଙ୍କୁ ଅଂଶତଃ ଜ୍ଞାନାଲୋକମୟ ଏବଂ ଅଂଶତଃ ଅଜ୍ଞାନାନ୍ଧକାରମୟ ବୋଲି ଦେଖିଲେ ମଧ୍ୟ ଏତତ୍ ଶିବ ସମଷ୍ଟ୍ୟାଧାର ପ୍ରକୃତି ଭଗବତୀ ଦେବୀଙ୍କୁ ସର୍ବାଧାର-ରୂପା ଏବଂ ସର୍ବମୟୀ ଅଥଚ ବ୍ରହ୍ମରୂପିଣୀ ଜଗଦମ୍ବିକା ରୂପେ ଦର୍ଶନ କରି ଏହି ଦର୍ଶନ-ଜନିତ ଜ୍ଞାନକୁ ସର୍ବଶେଷରେ ତାହାଙ୍କ ଶ୍ରୀଅଙ୍ଗରେ ସମର୍ପଣ କଲେ ଆଉ କୌଣସି ଅନର୍ଥର ଆଶଙ୍କା ନାହିଁ । ଅତଏବ ନମସ୍ତସ୍ୟୈ ନମୋନମଃ । ଏହି ସମର୍ପଣର ଫଳମୟ ଦ୍ୱାରା ଆତ୍ମଜ୍ଞାନ ଓ ଆତ୍ମ-ବିଶ୍ରାନ୍ତି ଲାଭ ହୁଏ ।

ଏହି ଆତ୍ମା ଅଯାଚିତ, ଅନାହୂତ ଓ ଅନପେକ୍ଷ ଭାବେ ଏବଂ ଅଯତ୍ନ ସହକାରେ ଅତୁଳନୀୟ ଯନ୍ତ୍ରିମନ୍ତ ହୋଇ ସ୍ୱୟଂ ପ୍ରକାଶମାନ ରହିଅଛନ୍ତି । ଏହି ଅନାଦିସିଦ୍ଧ ପ୍ରକାଶକତା ଦ୍ୱାରା ଜୀବାତ୍ମାର ସଂସାର ସର୍ବସ୍ୱମୟ ବୁଦ୍ଧ୍ୟହଂକାର ପ୍ରାଣେନ୍ଦ୍ରିୟାଦିସମନ୍ୱିତ ଦେହସଂସାରାତ୍ମକ କର୍ତ୍ତୃତ୍ୱ ଭୋକ୍ତୃତ୍ୱ ଓ ସୁଖୀତ୍ୱ ଦୁଃଖୀତ୍ୱାଦି ସମସ୍ତ ମାୟିକ ବସ୍ତୁ ଯଥା ଯଥା ଆକାର ପ୍ରକାରାଦିରେ ପ୍ରକାଶିତ ହେଉଅଛି । ତଥାଚ ଏହି ଆତ୍ମସତ୍ତା ପ୍ରକାଶିତ ଏହି ଦେହସଂସାରାଦି ସ୍ୱତଃ ପ୍ରକାଶମାନ ଥିଲାପରି ଦେଖାଯାଉଅଛି, ଆଉ ମଧ୍ୟ ତଦନୁରୂପ ବ୍ୟବହୃତ ହେଉଅଛି । ଅଧିକନ୍ତୁ ଏହି ସ୍ୱପରପ୍ରକାଶକ ନିତ୍ୟସିଦ୍ଧ ଆତ୍ମା ଗୋପନୀୟ ଥିଲାପ୍ରାୟ ସଂସାରୀୟ ବ୍ୟବହାର ଓ ଜ୍ଞାନ ସାକ୍ଷ୍ୟ ଦେଉଅଛି । ଏହା ଆତ୍ମାର ଏକ ପ୍ରକାର ସର୍ବବିଧ ଆଶ୍ଚର୍ଯ୍ୟ ସମୂହ ସମଷ୍ଟିର ବିଚିତ୍ର ବିଶିଷ୍ଟତା-ମାତ୍ର ଅଟେ, ଆଉ ମଧ୍ୟ ସ୍ୱସତ୍ତାବିହୀନ ସ୍ୱତଃ ଅପ୍ରକାଶାତ୍ମକ ଦେହ ସଂସାରାଦି ଓ ତତ୍ସମ୍ବନ୍ଧୀୟ ବ୍ୟବହାରାଦି ସତ୍ୟ ନିତ୍ୟ ବୋଲି ବ୍ୟବହୃତ ହେଉଥିବା ସେହି ବିଚିତ୍ର ବିଶିଷ୍ଟତାର ଅନ୍ୟତମ ପ୍ରକାର ଅଟେ । ଏବଂବିଧ ବୈଚିତ୍ର୍ୟପୂର୍ଣ୍ଣ ଇହଧାମରେ ମନୁଷ୍ୟର ମୋହ, ଗର୍ବ, ଆଡ଼ମ୍ବରାଦିକୁ ତ୍ୟାଗ ନ କରି ପାପବିଜଡ଼ିତ ହୋଇ ରହିବା ସବୁ ଆଶ୍ଚର୍ଯ୍ୟରୁ ବଳି ଅଧିକ ଆଶ୍ଚର୍ଯ୍ୟ ଅଟେ । ଅତଏବ ଏହି ସର୍ବାଶ୍ଚର୍ଯ୍ୟମୟ ପୀଠାବସ୍ଥିତ ଏହି ଆତ୍ମଦେବଙ୍କୁ ନମସ୍କାର ।

ଏହି ଆଶ୍ଚର୍ଯ୍ୟମୟ ଦୁଃଖତାପ ପରିପୂର୍ଣ୍ଣ କଣ୍ଟକାକୀର୍ଣ୍ଣ ଜ୍ଞାନୋପମ ବିଶ୍ୱଧାମକୁ ଅବତରଣ କରି ଆତ୍ମଦେବ ଯେଉଁ ଲାଭ ଅର୍ଜନ କରୁଅଛନ୍ତି, ତାହା ଭାବିଲେ ଆହୁରି ଅତ୍ୟାଶ୍ଚର୍ଯ୍ୟ ଲାଭ ହେବା ଭିନ୍ନ ଆଉ ଅନ୍ୟ କିଛି ହେଉନାହିଁ । ଏହି ଆତ୍ମଦେବ ଆତ୍ମବିସ୍ମୃତ ହୋଇ ଜୀବୋପାଧିକ ଅନ୍ତଃକରଣ ପ୍ରାଣେନ୍ଦ୍ରିୟ ସମନ୍ୱିତ ଦେହବିଶିଷ୍ଟ

ଜୀବରୂପ ଧାରଣ କରି ଇହଲୌକିକ ଧାମକୁ ଆଗମନ କରଣାନନ୍ତର କର୍ତ୍ତୃତ୍ୱଭୋକ୍ତୃତ୍ୱ-ଜାତ, ସୁଖ ଦୁଃଖ ମୋହ ବିଜଡ଼ିତ ଆଧ୍ୟାତ୍ମିକାଦି ତ୍ରିତାପମୟ ଦୁଃଖ ଭୋଗ କରି କରି ପୁନଃ ପୁନଃ ବହୁ ବହୁ ଜନ୍ମ ସହିତ ଅସଂଖ୍ୟ କୋଟି କଳ୍ପକାଳ ଜୀର୍ଣ୍ଣ କରୁଥିଲେ ସୁଦ୍ଧା ଉତ୍ତରୋତ୍ତର ସେହି ଉପଭୋଗ ଆଡ଼େ ସର୍ବଦା ପ୍ରବଳତମ ପ୍ରବୃତ୍ତିଯୁକ୍ତ ଲାଳସା ଓ ତନ୍ନ ସହକାରେ ସବେଗେ ଗୃହୀତ ହେଉଅଛନ୍ତି । ଅଥଚ ଏହି ଗୃହୀତାର ନିବୃତ୍ତି କଦାଚ ସ୍ୱପ୍ନାକାରରେ ସୁଦ୍ଧା ଦେଖାଯାଉନାହିଁ । ଦୈବାତ୍ ଆତ୍ମପ୍ରସାଦବଶତଃ ଆତ୍ମଜ୍ଞାନଲାଭ-ବାସନା ଉଦୟ ହେଲେ ଏହି ଜଗଦାକାରଚିତ୍ର-ଦର୍ଶନ-ଜନିତ ମୋହରୁ ଚିତ୍ତନିବୃତ୍ତ ହୋଇ ଆତ୍ମସ୍ଥ ହେବାର କ୍ଷଣକ ମଧ୍ୟରେ ଉକ୍ତ କୋଟିକଳ୍ପ କାଳର ବୃହତ୍ତମାକାର କଳେବର ସେହି କ୍ଷୁଦ୍ରାୟତନରେ ବିଲୁପ୍ତ ହୋଇ ଅଦୃଶ୍ୟ ହେଉଅଛି । ଆତ୍ମା ନିଦ୍ରୋତ୍ଥିତ ନ୍ୟାୟ ସଜାଗ୍ରତ ଆତ୍ମ କୈବଲ୍ୟ ପ୍ରାପ୍ତ ହୁଅନ୍ତି, ଅର୍ଥାତ୍ ଏହି କୈବଲ୍ୟ-ଲାଭର ଆଦିମୁହୂର୍ତ୍ତ ମାତ୍ରର ଗୁରୁତ୍ୱର ମାହାତ୍ମ୍ୟ ଏତେ ଅଚିନ୍ତ୍ୟ ବୃହତ୍ତମ ଯେ ତହିଁ ମଧ୍ୟରେ ସଂସାରାଶ୍ରୟ ଭବାତ୍ମକ କୋଟିକଳ୍ପର ପରିମାଣ ନଗଣ୍ୟ କ୍ଷୁଦ୍ରତମ ଆକାର-ବିଶିଷ୍ଟ ପ୍ରାୟ ପରିଣତ ହୁଏ; ଯେ ହେତୁ ଆତ୍ମରାଜ୍ୟର ଆତ୍ମଭାବ ଆଦି-ଅନ୍ତ-ବିରହିତ ଅସୀମ ଓ ଅନନ୍ତ । ସେଠାରେ କାଳଦଣ୍ଡ ନାହିଁ, ଅଥବା କାଳକଳେବର କଳନା କରିବାର ମାନଦଣ୍ଡର ଅଭାବ । ସେହି ହେତୁ ସସୀମ ଅଥଚ ସେହି କର୍ତ୍ତୃତ୍ୱଭୋକ୍ତୃତ୍ୱବିଶିଷ୍ଟ ଦୁଇଟି ମାତ୍ର ଭାବର ଓଲଟପାଲଟରେ ପୁନଃ ପୁନଃ ପରିବର୍ତ୍ତନ ସଂଘଟନ ଦ୍ୱାରା କୋଟି-କଳ୍ପ ପରିମିତ କାଳ ସେଠାରେ ଅବସ୍ତୁତୁଲ୍ୟ ।

ମନେ କରାଯାଉ, ଜଣେ ଲୋକ କୌଣସି କାରଣରୁ କିଛି ଅଧିକ ଦିନ ପ୍ରଗାଢ଼ ଘୋର ନିଦ୍ରାଭିଭୂତ ରହିବାର ପରେ ଜାଗରିତ ହେବାକ୍ଷଣରେ ତାହାର ନିଦ୍ରିତ ସମୟର ପରିମାଣ ସେ ନଗଣ୍ୟ ଜ୍ଞାନ କରିବ । ଅଜ୍ଞାନ ସମଷ୍ଟି ଯେତେ ବଡ଼ ହେଲେ ମଧ୍ୟ ତାହା ଜ୍ଞାନକଣା ତୁଳନାରେ ଅତୀବ ହୀନତମ । ଆତ୍ମା ସ୍ୱଭାବତଃ ଅସୀମ, ଅନନ୍ତ ଓ କାଳାତୀତ ଥିବାରୁ ତାଙ୍କର ଭିତରେ ଭିତରେ ଏପରି ଦୃଢ଼ୀଭୂତ ଦମ୍ଭ ଗୌରବ, ବଦ୍ଧମୂଳ ଗୋପନୀୟଭାବେ ନିହିତ ଅଛି ଯେ ସେ ବହୁ କୋଟିକଳ୍ପବ୍ୟାପୀ ମୋହମୟ ସ୍ରୋତର ଭାସମାନ ଅବସ୍ଥାକୁ ହେୟଜ୍ଞାନ କରୁଅଛନ୍ତି ଅର୍ଥାତ୍ ବଡ଼ ଅଳ୍ପ କରି ଦେଖୁଅଛନ୍ତି, ସୁତରାଂ ନିବୃତ୍ତି ବା ପ୍ରବୃତ୍ତି ଉଭୟକୁ ସମାନ ମଣୁଅଛନ୍ତି । ଆତ୍ମା ଅନ୍ତରେ ଅନ୍ତରେ ବୁଝିରଖି ଅଛନ୍ତି ଏହି ସ୍ରୋତ ଅବସାନାଧୀନ ଏକଦା ପ୍ରକୃତି ଗର୍ଭରେ ଅବଶ୍ୟ ଲୀନ ହେବ । ଏହି ଦମ୍ଭ ଗୌରବ ବିଭବ ବଶତଃ ଆତ୍ମା ଚିରମୋହାବଦ୍ଧ ହୋଇ ମୁକ୍ତି କାମ କରୁନାହାନ୍ତି କି ? ସଂସାରରେ ମଧ୍ୟ ଦେଖାଯାଏ, କେହି କେହି ଧୈର୍ଯ୍ୟଶୀଳ ଲୋକ ଯେତେ ଆପଦ ବିପଦ ଘଟିଥିଲେ ମଧ୍ୟ ଏ ବି ଗୁଜୁରି ଯିବ ବୋଲି କହି ଅଟଳ ଅଚଳ ରହିଥାଆନ୍ତି । ଏହିଠାରେ ଐହିକ ଦଶାରେ ଏବଂ ଆତ୍ମସମାଧିସ୍ଥ ଆତ୍ମକୈବଲ୍ୟା-ନନ୍ଦ ଅବସ୍ଥାରେ ମଧ୍ୟ ସଂସାରାଶ୍ରୟ ଦେହାତ୍ମ ଭ୍ରମଜନିତ ସୁଖ ଦୁଃଖାଦି ପରିବ୍ୟାପ୍ତ ବହୁ

ପରିମିତ ସମସ୍ତ ନଗଣ୍ୟ ଓ ମୃଗତୃଷ୍ଣାପରି ହେତୁ ଅସ୍ତିତ୍ୱ-ଶୂନ୍ୟ ଅବସ୍ତୁତୁଲ୍ୟ ଅଟେ । ଏହି ସର୍ବବିଧ ଆଶ୍ଚର୍ଯ୍ୟମୟ ପ୍ରାକୃତ ସଂସାର-ସିଂହାସନାଧିରୂଢ଼ ସର୍ବାଧୀଶ୍ୱର ଆତ୍ମସର୍ବସ୍ୱ ସେହି ସର୍ବାଶ୍ଚର୍ଯ୍ୟମୟ ଦେବଙ୍କୁ ସତତ ନମସ୍କାର । ଏହି ହେତୁ ପ୍ରତିସ୍ଥାନସ୍ଥ ପ୍ରତିଘଟସ୍ଥିତ ଆତ୍ମଦେବଙ୍କୁ ପ୍ରତ୍ୟେକ ଘଟ ଓ ସ୍ଥାନ ମାତ୍ର ଦର୍ଶନ କଲାବେଳେ ମନେ ମନେ ନମସ୍କାର ଜ୍ଞାପନ କରୁଥିବା ବିଧେୟ ।

ଏହି ଜୀବାତ୍ମା ସର୍ବଦା ଯୋଗୀପଦବାଚ୍ୟ ଅଟେ । ଅର୍ଥାତ୍ ଯୋଗବିନା ଲବମାତ୍ର କୌଣସି ଅନ୍ୟପ୍ରକାରରେ ବା କୌଣସି ସ୍ଥାନବିଶେଷରେ ଏହାର ଅବସ୍ଥିତି ସମ୍ପୂର୍ଣ୍ଣ ଅସମ୍ଭବ । ଏହି ଯୋଗ ପକ୍ଷାନ୍ତରରେ ଦୁଇଭାଗରେ ବିଭକ୍ତ । ପରମେଶ୍ୱର ସହିତ ଜୀବାତ୍ମାର ଯୋଗର ନାମ ଯୋଗଶବ୍ଦବାଚ୍ୟ ଅପ୍ରାକୃତ ବା ଆତ୍ମଯୋଗ ଅଟେ, ଆଉ ବିୟୋଗର ନାମ ଆତ୍ମବିୟୋଗ ବା ଆତ୍ମବିସ୍ମୃତି । ଏହି ବିୟୋଗ ଫଳରେ ଜୀବାତ୍ମା ପ୍ରକୃତି ସହିତ ଯୋଗ ହୁଏ । ଏହାର ନାମ ପ୍ରାକୃତ ଯୋଗ । ଏହି ଯୋଗଫଳରୁ ପ୍ରକୃତିଗତ ବିକୃତି ଅର୍ଥାତ୍ କର୍ତ୍ତୃତ୍ୱ-ଭୋକ୍ତୃତ୍ୱ ବା ସୁଖୀତ୍ୱ ଦୁଃଖୀତ୍ୱ ଓ ମୂଢ଼ତାଦି ବିକୃତଭାବାଦିରେ ତନ୍ମୟ ହୁଏ । ଏହି ତନ୍ମୟତ୍ୱ ଫଳରେ ଜୀବାତ୍ମାର ସଂସାରାସ୍ପଦ ବ୍ୟକ୍ତିତ୍ୱ ନିର୍ଣ୍ଣିତ ହୁଏ । ଏହା ସଂସାରୀୟ ପୁରୁଷକାରର ପ୍ରବର୍ତ୍ତକ ଆଉ ଆତ୍ମାପକ୍ଷରେ ଏହା ମ୍ରିୟମାଣ ଅବସ୍ଥା ।

ଧର୍ମାନୁଷ୍ଠାନ, ଉପାସନା ବା ଯୋଗାବଲମ୍ବନାଦିଦ୍ୱାରା ଯେଉଁ ଅବସ୍ଥାରେ (୧) ଦେହର ସୁଖ, (୨) ପ୍ରାଣର ଶୀତଳତା, (୩) ଇନ୍ଦ୍ରିୟ ବୃତ୍ତ୍ୟାଦିର ତୃପ୍ତି ବା ଚରିତାର୍ଥତା, (୪) ଅନ୍ତଃକରଣର ଆତ୍ମୈକାଗ୍ରଜନିତ ଶାନ୍ତି ଏବଂ (୫) ଜୀବାତ୍ମାର ଅକୃତ୍ରିମ-ଅନପେକ୍ଷ-ସତ୍ୟଜ୍ଞାନାତ୍ମକ ସହଜାନନ୍ଦ ଯୁଗପତ୍ ସମ୍ପାଦିତ ହୋଇ ଅନୁଭୂତ ହୁଏ ଅଥଚ ପୂର୍ବୋକ୍ତ ବିଶୁଦ୍ଧ ପ୍ରାକୃତ ଭାବଚତୁଷ୍ଟୟ ୫ମ ସ୍ଥାନ ବର୍ଣ୍ଣିତ ଆତ୍ମାନୁଭୂତିର ଅନ୍ତର୍ଗତ ହୋଇ ତନ୍ମୟ ହୁଅନ୍ତି, ସେହି ଅବସ୍ଥାର ନାମ ଆତ୍ମଯୋଗାବସ୍ଥା । ଏହି ଅବସ୍ଥା ଭାବଗମ୍ୟ ସ୍ଥାନର ଅଲକ୍ଷିତ ଊର୍ଦ୍ଧ୍ୱରେ ବିଦ୍ୟମାନ । ଏହା ଭାବବିରହିତ ଅପରୋକ୍ଷାନୁଭୂତ ବା ପ୍ରତ୍ୟକ୍ଷୋପଲବ୍ଧିବିଶିଷ୍ଟ ନିଜାତ୍ମ-ବୋଧ ମାତ୍ର ।

ଭାବର ଯଥାର୍ଥ ଆକାର ସଙ୍କେତ ବା ଇଙ୍ଗିତପ୍ରାପ୍ତ ଭାବାନୁକଲ୍ପରୂପେ ଭାଷାକାରରେ ପ୍ରକାଶିତ ହୁଏ । ଭାଷା ଯଥାର୍ଥ ଭାବ ନୁହେ । ସେହି ହେତୁ ଭାଷାର ନାନାର୍ଥ ଦ୍ୱାରା ଭାବର ବ୍ୟଭିଚାର ଘଟେ । ଏହା ସାଧାରଣ ନିୟମ । ସୁତରାଂ ଭାବାତୀତ ଆତ୍ମବୋଧକୁ ବ୍ୟକ୍ତ କରିବାଭଳି ଭାଷା ବା କାହୁଁ ସମ୍ଭବ ? ତେବେ ପ୍ରସଙ୍ଗାନୁରୋଧେ ଭାଷାର ବ୍ୟବହାର ସର୍ବତ୍ର ସର୍ବସମ୍ମତିକ୍ରମେ ପ୍ରଚଳିତ ଥିବାରୁ ଉପରୋକ୍ତ ଆତ୍ମବୋଧ ଅର୍ଥାତ୍ ଆତ୍ମଯୋଗ ପ୍ରତିପାଦିତ ଅପରୋକ୍ଷ ଆତ୍ମାନୁଭୂତି ଅବସ୍ଥାରେ ଉପଲବ୍ଧିତ ଆତ୍ମ-ବୋଧାନୁସାରେ ଏଠାରେ ଐହିକ ଦଶାରେ ଏହି ପରିଦୃଶ୍ୟମାନ ସଂସାରାଦି ଓ ଅନୁମାନଗମ୍ୟ କାରଣାତ୍ମକ ସୂକ୍ଷ୍ମ ବସ୍ତ୍ୱାଦି ସହିତ ଆବ୍ରହ୍ମସ୍ତମ୍ଭ ପର୍ଯ୍ୟନ୍ତ ସର୍ବପଦବାଚ୍ୟ ସର୍ବବସ୍ତୁକୁ ବ୍ରହ୍ମମାତ୍ର ବୋଲି ବର୍ଣ୍ଣନା କରାଯାଉଅଛି । ଯଥା—ସର୍ବଂ ଖଲ୍ୱିଦଂ ବ୍ରହ୍ମଃ ।

ଦେଖ, ଏହି ଭୌତିକ ମହଦାକାଶ ଅବୟବ ଓ ରଙ୍ଗବିରଙ୍ଗ-ବିବର୍ଜିତ ଶୁଦ୍ଧ, ସ୍ୱଚ୍ଛ, ନିର୍ମଳ କଳେବରବିଶିଷ୍ଟ ହେଲେ ମଧ୍ୟ ଏହା ଅଂଶତଃ ଏହି ପରିଦୃଶ୍ୟମାନ ଚନ୍ଦ୍ରସୂର୍ଯ୍ୟାଦି ସମସ୍ତ ଜ୍ୟୋତିଷ୍କ ବସ୍ତୁ ଓ ନାନାବିଧ ରଙ୍ଗ ବେରଙ୍ଗାକାର ମେଘାଦିଯୁକ୍ତ ଖାଗୋଳିକ ଚିତ୍ର; ଏବଂ ସାଗର, ନଦୀ, ବନ, ପର୍ବତ, ନଗରାଦି ସହିତ ଅଶେଷବିଧ ବହୁ ବହୁ ଆକାର ଓ ବର୍ଣ୍ଣାଦିଯୁକ୍ତ ସମୁଦାୟ ପ୍ରାଣୀ ଓ ଜାଗତିକ ସର୍ବପଦାର୍ଥାଦି ସହିତ ଭୌଗୋଳିକ ଚିତ୍ରବିଶିଷ୍ଟ ବିଚିତ୍ର ଚିତ୍ରାକାର ଅବୟବ-ଧର୍ମାନ୍ନ ହୋଇ ସର୍ବଦା ବିରାଜମାନ ରହିଅଛି । ଅତଏବ ଏ ସମସ୍ତ ଚିତ୍ର ଆକାଶମୟ ଅଟେ । ଏତଦ୍ରୂପ ଖାଗୋଳିକ ଓ ଭୌଗୋଳିକ ଚିତ୍ରଯୁକ୍ତ ବିଶ୍ୱବ୍ରହ୍ମାଣ୍ଡାଦି ସହିତ ଦେହ ଓ ଦୈହିକ ସମ୍ବନ୍ଧଜାତ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧାଦି ପଞ୍ଚରସାତ୍ମକ ଚିତ୍ର ପ୍ରଥମ ଉକ୍ତ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଚିତ୍ର ସହିତ ସମଷ୍ଟି ଭାବରେ ଏକଭାବଚିତ୍ରମୟ ଭାବାତ୍ମକ ମହାକାଶରେ ପରିଣତ ହୋଇ ନିଷ୍ଠିର ନିର୍ମଳ ମାନସପଟକୁ ଏତଦ୍‌ଭାବାକାର ବିଶିଷ୍ଟ ସୁଶୋଭିତ ସର୍ବସୌନ୍ଦର୍ଯ୍ୟାଧାର ମୁଗ୍ଧକର ଭାବାତ୍ମକ ଚିତ୍ରମୟ ଆକାରରେ ସୁରଞ୍ଜିତ କରିଥିବାରୁ ଏହି ଭାବମୟ ଚିତ୍ରଟି ମୋଟରେ ମନୋମୟ ଚିତ୍ର ଅଟେ ।

ଏହିରୂପେ ଉକ୍ତ ମହଦାକାଶର ଛବି ଏବଂ ତାହାର ଏକାଂଶସ୍ଥିତ ପିଣ୍ଡବ୍ରହ୍ମାଣ୍ଡାତ୍ମକ ଚିତ୍ର ଓ ଏତତ୍ସମ୍ବନ୍ଧୀୟ ଶବ୍ଦ ସ୍ପର୍ଶାଦି ପଞ୍ଚରସାତ୍ମକ ଚିତ୍ର ଇତ୍ୟାଦି ଇତ୍ୟାଦି ସବୁ ଚିତ୍ରର ସମଷ୍ଟିସୃଷ୍ଟ ମହଦ୍‌ଭାବମୟ ଚିତ୍ର ମନୋମୟ ଚିତ୍ରାକାରରେ ପରିଣତ ହୋଇଅଛି । ତଦ୍ରୂପ ସର୍ବଚିତ୍ରମୟ ମାନସପଟଟି ପୁଣି ଅନ୍ତଃକରଣସ୍ଥିତ ବୁଦ୍ଧ୍ୟହଂକାରାଦିରେ ମିଶି ଅନ୍ତଃକରଣକୁ ବୁଦ୍ଧ୍ୟହଂକାର ସହିତ ତନ୍ମୟ କରାଇଅଛି, ଅର୍ଥାତ୍ ଅନ୍ତଃକରଣକୁ ମନୋମୟାଦି ଚିତ୍ରରେ ଚିତ୍ରିତ କରାଇ ସୁରଞ୍ଜିତ କରିଅଛି । ଏହିରୂପେ ଅନ୍ତଃକରଣ ପିଣ୍ଡବ୍ରହ୍ମାଣ୍ଡାଦି ସର୍ବ ସ୍ଥୂଳାତ୍ମକ ଚିତ୍ରବିଶିଷ୍ଟ ମହଦାକାଶରେ ତଦ୍ରୂପ ଆକାଶାକାରିତ ଚିତ୍ରମୟ ହୋଇଅଛି ଏବଂ ଏତଦ୍ରୂପ ଆକାଶାକାରିତ ଅଥଚ ସର୍ବଭାବାତ୍ମକ ଚିତ୍ରବିଶିଷ୍ଟ ମାନସପଟରେ ତଦାକାରମୟ ହୋଇଅଛି; ଏତଦ୍ରୂପ ମାନସପଟ ସହିତ ବୁଦ୍ଧ୍ୟହଂକାର-ରେ ତନ୍ମୟଭାବ ପ୍ରାପ୍ତ ହୋଇ ଏତତ୍ ସର୍ବଚିତ୍ରାଧାର ବସ୍ତୁବିଶେଷରୂପେ ପ୍ରକାଶିତ ହୋଇଅଛି । ଶେଷରେ ଏହି ସର୍ବ ଚିତ୍ରବିଚିତ୍ର ଅନ୍ତଃକରଣରେ ଆତ୍ମା ତନ୍ମୟ ହୋଇ ସ୍ୱୟଂ ଏତତ୍ ସର୍ବଚିତ୍ରାଧାର ଅଥଚ ସର୍ବଚିତ୍ରମୟ ଆକାର ପ୍ରାପ୍ତ ହୋଇଅଛନ୍ତି । ସୁତରାଂ ଏତତ୍ ସମଷ୍ଟି ଚିତ୍ରମୟ ଆକାରଭିମାନ ଆତ୍ମାର ଜୀବାକାର ସଂଜ୍ଞକ ଜୀବୋପାଧି ଅଟେ ।

ଏହିରୂପେ ସର୍ବଚିତ୍ରମୟ-ବିଚିତ୍ରପ୍ରକୃତିବିଶିଷ୍ଟ ଅସଂଖ୍ୟ ଅନନ୍ତ ଜୀବାତ୍ମ ଚିତ୍ର ସମଷ୍ଟିଭାବରେ ପରମେଶ୍ୱର ଅଙ୍ଗରେ ଅଙ୍କିତ ରହିଅଛି । ଆଉ ପ୍ରଭୁ ପରମେଶ୍ୱର ଏହିଭାବେ ସର୍ବବିଶ୍ୱାଧାର, ସର୍ବଜୀବାଧାର ଅଥଚ ସର୍ବମୟ ନିତ୍ୟକଳେବର ଧାରଣ କରି ଅନାଦି-ଅନନ୍ତ, ସର୍ବଶକ୍ତିମାନ, ସର୍ବପ୍ରକାର ଇଚ୍ଛାମୟ କର୍ତ୍ତୃତ୍ୱଶାଳୀ ଏବଂ ସର୍ବୈଶ୍ୱର୍ଯ୍ୟ-ସମନ୍ୱିତ ହୋଇ ସର୍ବାଶ୍ରିତ ପରଂବ୍ରହ୍ମ ମହଦାକାଶର ଏକ ମହଦଂଶ ପରିବ୍ୟାପ୍ତ କରି

ଧପ୍ରିମନ୍ତ୍ରଭାବେ ଶୋଭା ପାଉଅଛନ୍ତି । ଏହିରୂପେ ପରଂବ୍ରହ୍ମ ଏକ ଏବଂ ଅଦ୍ୱିତୀୟ ଅଥଚ ସର୍ବମୟ ଭାବେ ସର୍ବଶକ୍ତିମାନ ପରମେଶ୍ୱରରୂପେ ଏବଂ ସେହି ଏକ ପରମେଶ୍ୱରରୂପେ ଅନନ୍ତ ଜୀବମୟାକାରରେ ଆଉ ଜୀବରୂପେ ଅନ୍ତଃକରଣମୟ ପୁଣି ଅନ୍ତଃକରଣରୂପେ ମନୋମୟ ଓ ମନୋମୟରୂପେ ପିଣ୍ଡବ୍ରହ୍ମାଣ୍ଡାତ୍ମକ ସ୍ଥୂଳ ସୂକ୍ଷ୍ମ ସର୍ବଭାବମୟ ଚିହ୍ନବିଶିଷ୍ଟ ଅଟନ୍ତି । ଅର୍ଥାତ୍ ଦ୍ରଷ୍ଟବ୍ୟ, ଜ୍ଞାତବ୍ୟ, ଶ୍ରୋତବ୍ୟ ବା ମନ୍ତବ୍ୟ ସବୁଇ ବ୍ରହ୍ମ ଏବଂ ଏକ ବ୍ରହ୍ମ ସ୍ୱସତ୍ତା ସହିତ ସର୍ବମୟ ଆକାରରେ ତଦାକାରିତ ଚିହ୍ନରୂପେ ପ୍ରକାଶମାନ ରହିଅଛନ୍ତି । ଏତଦ୍ରୂପ ଅନନ୍ତରୂପଙ୍କ ବ୍ରହ୍ମଶକ୍ତି ମାୟାର ମହତ୍ତ୍ୱବିଶେଷର ପରିଚୟକ ମାତ୍ର । ଏତଦ୍ରୂପ ପରଂବ୍ରହ୍ମତତ୍ତ୍ୱ ଜ୍ଞାନସାଧନ ଭୂମି ନାନାବିଧ ଯୋଗ ନାମରେ, ବହୁ ବହୁ ଧର୍ମ ଓ ମତାଦି ନାମରେ, ନାନାପ୍ରକାର ଉପାସନା ଓ କ୍ରିୟାନୁଷ୍ଠାନାଦି ନାମରେ କଥିତ ହେଉଅଛି । କିନ୍ତୁ ସେ ସମସ୍ତ ଆତ୍ମଯୋଗର ନାମାନ୍ତର ବା ପ୍ରକାରାନ୍ତର ଅଟେ । ମାତ୍ର ଆତ୍ମଦେବ ସବୁରେ ସର୍ବମୟ ଅଥଚ କାହିଁରେ କେଉଁରୂପେ ପରିଜ୍ଞାତ ବା ଅଜ୍ଞାତ ତାହା ବଚନାତୀତ । ମନବଚନାଦିର ଏତଦ୍ରୂପ ଅପଟୁତା ସେହି ମହାମାୟାଧର ନଟବର ଚୂଡ଼ାମଣିଙ୍କର ଲୀଳାବିଭବର ଗୂଢ଼ତ୍ୱ ବା ରସିକତାବିଶେଷ ମାତ୍ର । ହରୟେ ନମଃ ।

## ଉପସଂହାର

ଏହି ମହିମାନ୍ୱିତ ସର୍ବମୟ ପରାତ୍ପର ପରଂବ୍ରହ୍ମ ସ୍ୱଶକ୍ତିସମ୍ଭୂତ ସର୍ବୈଶ୍ୱର୍ଯ୍ୟାଦି-ଯୁକ୍ତ ଅସଂଖ୍ୟ ଅସୀମ ପ୍ରକାରର ଲୀଳାମୟ ବିଗ୍ରହାକାରବିଶିଷ୍ଟ ପ୍ରଭୁ ପରମେଶ୍ୱରରୂପେ ନିତ୍ୟ ବିରାଜମାନ ରହିଅଛନ୍ତି । ଏହି ଲୀଳାବିଭବ ତଦୀୟ ନିତ୍ୟ ଲୀଳାକାରରେ ଏବଂ ପ୍ରକାରାନ୍ତରେ ବହୁ ବହୁ ପ୍ରକାରର ଅସଂଖ୍ୟ ଅସଂଖ୍ୟ ଜୀବଚୈତନ୍ୟାଦିରୂପରେ ମାୟିକ ଛାୟାବାଜି ଆକାରରେ ବିସ୍ତୃତ ହୋଇଅଛି । ଏହି ଗ୍ରନ୍ଥଲିଖିତ ପିଣ୍ଡବ୍ରହ୍ମାଣ୍ଡାଦିର ଚିହ୍ନବିଷୟକ ବର୍ଣ୍ଣିତ ବିବରଣ ସେହି ବିସ୍ତୃତ ଛାୟାବାଜିର ପ୍ରତ୍ୟକ୍ଷ ନିଦର୍ଶନ ଅଟେ । ନିମ୍ନୋକ୍ତ ପରମାତ୍ମା ଗଙ୍ଗାଜଳୋପମ, ଶୃଙ୍ଖଳଟି ମାୟାଶକ୍ତି, ଗତିବେଗ ବା ସ୍ରୋତଟି କାଳ ଏବଂ ଲହରୀଟି ଜୀବଚୈତନ୍ୟ ।

ଏହି ପିଣ୍ଡବ୍ରହ୍ମାଣ୍ଡାତ୍ମକ ସର୍ବଚିହ୍ନାଧାର ଅସଂଖ୍ୟ ଅସଂଖ୍ୟ ଜୀବଚୈତନ୍ୟ ପ୍ରଭୁ ପରମେଶ୍ୱରରୂପୀ ନିତ୍ୟସ୍ଥାୟୀ ମନ୍ଦାକିନୀ ଜଳର ଶୃଙ୍ଖଳାର ଅବାଧିତ ତୀବ୍ରବେଗଯୁକ୍ତ ସ୍ରୋତର ଲହରୀରୂପେ ବହମାନ ହେଉଅଛନ୍ତି । ଏହି ଲହରୀରୂପକ ଜୀବଚୈତନ୍ୟକୁ ହେଇଟି ଏହି ବୋଲି ଅଙ୍ଗୁଳି ନିର୍ଦ୍ଦେଶ ସହକାରେ କହୁଁ କହୁଁ ଗୃହୁଁ ଗୃହୁଁ ସେ ବହୁ-ଦୂରଗତ ହୋଇ ଯାଉଅଛି । ଫଳରେ ଜୀବଚୈତନ୍ୟରୂପକ ଲହରୀକୁ କେବଳ ସାଙ୍କେତିକ ଭାବରେ ଏହି ବୋଲି କଳ୍ପନା କରିବାକୁ ହେଉଅଛି । ବସ୍ତୁତଃ ଗଙ୍ଗାଜଳ ମାତ୍ର କେବଳ ଦର୍ଶମୟ ଅଟେ, ଅର୍ଥାତ୍ ଅଭିଲକ୍ଷିତ ପ୍ରତ୍ୟକ୍ଷ ସତ୍ୟବସ୍ତୁ କେବଳ

ଗଙ୍ଗୋଦକରୂପକ ପ୍ରଭୁ ପରମେଶ୍ୱର ଅଟନ୍ତି । ଏହି ଜୀବଚୈତନ୍ୟରୂପକ ଲହରୀର ବର୍ତ୍ତମାନତ୍ୱକୁ କେବଳ ଲୀଳାବାଚି ଛଳରେ କଳ୍ପନା କରିବାକୁ ହେଉଅଛି ମାତ୍ର ।

ପ୍ରଭୁ ପରମେଶ୍ୱର ସହିତ ବିରାଜମାନ ଥିବା ଅନାଦି ଅନନ୍ତ ସୁତରାଂ ଅସୀମ ଅପରିମେୟ ମହାକାଳ ଗର୍ଭରେ (ମହାସାଗର ମଧ୍ୟରେ ଜଳବିନ୍ଦୁଟିର କଳ୍ପନା କଲାପରି) ଜୀବଚୈତନ୍ୟର ଏହି ବର୍ତ୍ତମାନତ୍ୱକୁ ନଗଣ୍ୟ କ୍ଷୁଦ୍ରାଦପି କ୍ଷୁଦ୍ରତମ କାଳ ସୀମା ମଧ୍ୟରେ କଳ୍ପନା ଚକ୍ଷୁରେ ଦେଖିବାକୁ ହେଉଅଛି । ଏହି ବର୍ତ୍ତମାନତ୍ୱର ପ୍ରଥମ ଆଦିସୀମା ଭବିଷ୍ୟତ ବା ଅନାଗତକାଳ ଏବଂ ଦ୍ୱିତୀୟ ଶେଷ ସୀମା ଅତୀତକାଳ ଅଟେ । ଏହି ଅତୀତରୂପକ ମହାରାକ୍ଷସୀର କାଳାନଳପୂର୍ଣ୍ଣ ଅକଳିତ ବିଶାଳତମ ଉଦରରେ ଜୀର୍ଣ୍ଣ ହେବା ନିମିତ୍ତ ସେହି ରାକ୍ଷସୀର ଦୂତରୂପକ କାଳସ୍ରୋତଦ୍ୱାରା, ଏହି ଜୀବଚୈତନ୍ୟାତ୍ମକ ଲହରୀ ଭବିଷ୍ୟତ ରୂପକ ସ୍ରୋତର ଆଦିଜନ୍ମ ସ୍ଥାନରୁ ଆକର୍ଷିତ ହୋଇ ପରମେଶ୍ୱର ରୂପକ ଗଙ୍ଗାବକ୍ଷରେ ସବେଗେ ଅବିଶ୍ରାନ୍ତ ଭାବରେ ଆନୀତ ହେଉଅଛି । ଏହିରୂପ ଅସଂଖ୍ୟ ଅସଂଖ୍ୟ ଲହରୀର ନର୍ତ୍ତନ କେବଳ ଗଙ୍ଗାଜଳର ମହତ୍ତ୍ୱ ଓ ଶୋଭାବର୍ଦ୍ଧନ ନିମିତ୍ତ ଉଦ୍ଦିଷ୍ଟ ହୋଇଅଛି, ନଚେତ୍ ତାହା ନିଜେ କିଛି ନୁହେ । ଅତଏବ ଏହି ଲହରୀରୂପକ ଜୀବାତ୍ମା ଓ ତାହାର ମନ୍ତବ୍ୟ, ଦ୍ରଷ୍ଟବ୍ୟ, ଶ୍ରୋତବ୍ୟ ଓ ଜ୍ଞାତବ୍ୟ ଇତ୍ୟାଦି ଇତ୍ୟାଦି ସର୍ବସଂସାରାତ୍ମକ ତତ୍ତ୍ୱ, ସେହି ଗଙ୍ଗାଜଳମୟ ପରମେଶ୍ୱର ଭିନ୍ନ ଆଉ କିଛି ନୁହେ । ଏଠାରେ ଜ୍ଞାତବ୍ୟ ଯେ ପ୍ରଭୁ ପରମେଶ୍ୱର ଶବ୍ଦାତୀତ ବିଶୁଦ୍ଧ ଅହଂବୋଧ ମାତ୍ର ଆଉ ଜୀବ, ଦେହାଭିମାନଯୁକ୍ତ ଅହଂକାରୋପାଧିକ ଅଟେ ।

ଅଗ୍ନିଷ୍ଫୁଲିଙ୍ଗକଣା, ବହୁଦୂରବ୍ୟାପୀ ଦାବାନଳ ମଧ୍ୟରେ ଅବଶ୍ୟ କିଛି ନୁହେ, ଆଉ କ୍ଷୁଦ୍ରତମ କିନ୍ତୁ ଅତ୍ୟନ୍ତ ଜ୍ୱଳନ ପ୍ରଭୃତି ନିରଗ୍ନି ପଦାର୍ଥ ମଧ୍ୟରେ ତାହାର କାର୍ଯ୍ୟ ଅତୀବ ଆଶ୍ଚର୍ଯ୍ୟ ଓ ଭୟଙ୍କର ଅଟେ । ଏହି ଜୀବାତ୍ମଚୈତନ୍ୟ, ପ୍ରଭୁ ପରମେଶ୍ୱର ଅଙ୍ଗଦେଶରେ ତଦୀୟ ପ୍ରତିବିମ୍ବିତ ଛାୟା ସ୍ୱରୂପେ ଅବଶ୍ୟ କିଛି ନୁହେ; ଏହା ମହାସତ୍ୟ ଅଟେ; କିନ୍ତୁ ଏହା ବ୍ରହ୍ମଜ୍ୟୋତିରୂପ-ଚିତ୍ ବା ବିଦ୍ୟାମୟ ଶୁଦ୍ଧସତ୍ତ୍ୱ ଶକ୍ତ୍ୟଂଶ ଯୋଗରେ, ଜ୍ଞାନୀ, ଯୋଗୀ, ଭକ୍ତ, ବ୍ରହ୍ମୋପାସକ ପରମେଶ୍ୱର ସେବକ ଇତ୍ୟାଦି ଇତ୍ୟାଦି ଉପାଧିରେ ନାମମାତ୍ର ଭୂଷିତ ହୋଇ ଯଥାର୍ଥ ସତ୍ୟତଃ ନିରୁପାଧିକ ଭାବେ ପରମାତ୍ମ ଅଙ୍ଗରେ ତଦୀୟ ଛାୟାରୂପ ପ୍ରତିବିମ୍ବ କିମ୍ବା ପ୍ରତିଭାସିକାକାରେ ଆଭାସିତ ହୋଇ ଶୋଭା ପାଉଥାଏ; ଆଉ ଏହି ଜୀବାତ୍ମଚୈତନ୍ୟ, ମାୟିକ ଅବିଦ୍ୟା ବା ଦେହାତ୍ମ ବାସନାମୟ ମୋହଯୁକ୍ତ ଭ୍ରାନ୍ତ୍ୟାତ୍ମକ ରଜସ-ତାମସାଚ୍ଛନ୍ନ ଶକ୍ତ୍ୟଂଶରେ ଯୋଗ ହେଲେ ସଂସାରମୟ ଜୀବପଦବାଚ୍ୟ ହୋଇ କର୍ତ୍ତୃତ୍ୱ-ଭୋକ୍ତୃତ୍ୱ, ସୁଖୀତ୍ୱ, ଦୁଃଖୀତ୍ୱ ଓ ମୂଢ଼ତ୍ୱାଦି ଭାବରେ ବିଜଡ଼ିତ ହୁଏ ଓ ସଂସାରମୟ ମାୟିକ କ୍ରୀଡ଼ାପାଶ ବନ୍ଧନରେ ଆବଦ୍ଧ ରହେ । ଅତଏବ ଏଠାରେ ଜୀବର ଦାୟିତ୍ୱ ବଡ଼ ଗୁରୁତର ଅଟେ ।

ଏହି ମହାଦାୟିତ୍ୱରୁ ମୁକ୍ତିଲାଭ କରିବାକୁ ଅକ୍ଷମ ହୋଇ ଏହାର ଶାସନାଧୀନରେ ରହି ଏହି ଆବହମାନ କାଳ-ସ୍ରୋତରେ, ଲହଣ୍ଡରୂପକ ଜୀବୋଽପାଧିବିଶିଷ୍ଟ କେତେ କେତେ ରାଜଚକ୍ରବର୍ତ୍ତୀ, ଦୟା, କ୍ଷମା, ଧର୍ମ, ନ୍ୟାୟ, ବଦାନ୍ୟତା, ଜନପଦ ସୁରକ୍ଷଣ ଓ ସୁପାଳନାଦି ସଦ୍‌ଗୁଣାବଳୀର ଉଜ୍ଜ୍ୱଳ ପୂଣ୍ୟକୀର୍ତ୍ତି ଯଶସ୍ତମ୍ଭ ସ୍ଥାପନ କରି ଏହି କଣ୍ଟକାକୀର୍ଣ୍ଣ ଭୌତିକ ସଂସାରକୁ ନନ୍ଦନକାନନରେ ପରିଣତ କରିଦେଇ ଯାଇଅଛନ୍ତି । ପୁଣି କେହି କେହି ମଧ୍ୟ ଆସୁରପୈଶାଚ ତାଣ୍ଡବପୂର୍ଣ୍ଣ ନୃଶଂସତା, ନିଷ୍ଠୁରତା, ସ୍ୱେଚ୍ଛାଚାରିତା ଆଦି ସହକାରେ ଧର୍ଷଣ, ପେଷଣ, ପୀଡ଼ନ ଓ ମାରଣାଦି ମନ୍ଦଗୁଣାବଳୀର କଳଙ୍କିତ ପାପପୂର୍ଣ୍ଣ ଆଦର୍ଶରେ ଏହି ସଂସାରକୁ ନରକଭୂମିରେ ଗଠନ କରି ସେହିଠାରେ ମାଟି ହୋଇ ଯାଇଅଛନ୍ତି । ଆଉ କେତେ କେତେ ପଥପ୍ରାନ୍ତାଶ୍ରୟୀ ନିରନ୍ନ ଦରିଦ୍ର ଦୁଃଖୀ ମଧ୍ୟ ସେହି କର୍ଦ୍ଦମାପୂର୍ଣ୍ଣ ପଥପାର୍ଶ୍ୱରେ ପଡ଼ି ରହି କ୍ଷୁଧା, ପିପାସା ଓ ପୀଡ଼ାଦିର ଯନ୍ତ୍ରଣା-ଭୋଗଦ୍ୱାରା କାତର ଆର୍ତ୍ତନାଦରେ ଆକାଶଗର୍ଭ ଓ ଧରିତ୍ରୀବକ୍ଷ ବିଦୀର୍ଣ୍ଣ କରି ନିଷ୍ଠୁର ଓ କୃପଣ ଧନୀ ସଂପ୍ରଦାୟକୁ ଧିକ୍‌କାର ଦେଇ ଦେଇ ସେହି ଶେଷ 'ର' କାରଟି ସହିତ ଶେଷ ପ୍ରାଣବାୟୁକୁ ବିସର୍ଜନ ଦେଇଅଛନ୍ତି, ତାହାର ଇୟତ୍ତା ନାହିଁ । ଏହିପରି କେତେ କେତେ ମହାତ୍ମା, କେତେ କେତେ ମୂଢ଼, ଅଜ୍ଞ, ଆଉ କେତେ କେତେ ପଣ୍ଡିତ, କବି, ଚିନ୍ତାଶୀଳ, ଭାବୁକ, ଭକ୍ତ, ଧର୍ମୀ, କର୍ମୀ, ଉପାସକ, ସାଧକ ଓ ଦାନଶୀଳ ଅଥବା କେତେ କେତେ ମୂର୍ଖ, ମୂକ, ବିକୃତମସ୍ତିଷ୍କ, ନାସ୍ତିକ, ଅଧର୍ମୀ, ଆଳସ୍ୟୋପସେବୀ, ବିଷୟଲମ୍ପଟୀ, ଅସାଧୁ ଓ କୃପଣ, ପୁନଶ୍ଚ କେତେ କେତେ ବହୁକୁଟୁମ୍ବୀ ଓ କେତେ କେତେ ଏକାକୀ ନିର୍ଜନବନବାସୀ, ଆଉ କେତେ କେତେ ଦୀର୍ଘଜୀବୀ ଓ କେତେ କେତେ ଅଳ୍ପାୟୁ, ପୁଣି କେତେ କେତେ ବହୁ ବହୁ ପରୋପକାରୀ, ଦେଶୋପକାରୀ ଏବଂ କେତେ କେତେ ପରଘାତୀ ଓ ପରଦେଶଲୁଣ୍ଠନକାରୀ ଇତ୍ୟାଦି ଇତ୍ୟାଦି ନାନାବିଧ ଉପାଧିଧାରୀ ମାନବ, ଅଧିକନ୍ତୁ କେତେ କେତେ ପ୍ରକାରର ଗୁଣାଗୁଣଶାଳୀ ପଶୁପକ୍ଷ୍ୟାଦି ଜୀବମାନେ ମଧ୍ୟ ନିଜ ନିଜ ଗୁଣାଗୁଣ, ସଦ୍ଭାବ, ଅସଦ୍‌ଭାବ, ସତ୍‌କ୍ରିୟା, ଅସତ୍‌କ୍ରିୟା ଓ ଜ୍ଞାନାଜ୍ଞାନାଦି ସହକାରେ ଉଚ୍ଚନୀଚାଦି ନାନାବିଧ ଆଦର୍ଶ ଦେଖାଇ ଏହି ସଂସାରସ୍ରୋତରେ ଭାସି ଭାସି ଯାଇ ଯାଇ ଅଜ୍ଞାତ ଗର୍ଭରେ ନିଶ୍ଚିହ୍ନ ହେଲେଣି, ତାହା ମଧ୍ୟ ସଂଖ୍ୟାତୀତ ଓ ଗଣନାତୀତ ଅଟେ । ଏହିପରି ଆଦର୍ଶରେ ବର୍ତ୍ତମାନ ମଧ୍ୟ କେତେ କେତେ ପ୍ରକାର ବିଶିଷ୍ଟ କେତେ କେତେ ପ୍ରାଣୀ ଏହି ଦୁର୍ଦ୍ଦମନୀୟ, ଦୁରତିକ୍ରମଣୀୟ ଓ ଦୁସ୍ତର ମହାକାଳ କରାଳ ସ୍ରୋତରେ ଭାସି ଭାସି ପଡ଼ି ଉଠି ହାବୁଡୁବୁ ଖାଇ ଅନାୟତ୍ତ ଭାବରେ ଅଶକ୍ତ ହୋଇ ଚେତନା ହରାଇ ପତନଦଶା ଭୋଗି ଆର୍ତ୍ତନାଦ କରୁଅଛନ୍ତି (ସୁଖକୋଳାହଳ ମଧ୍ୟ ଏହି ଆର୍ତ୍ତନାଦର ଅନ୍ତର୍ଗତ) ତାହା ବା କିଏ ସଂଖ୍ୟା କରିପାରେ ? ପରନ୍ତୁ ଭବିଷ୍ୟତର ଅଦୃଶ୍ୟ, ଅନ୍ଧକାରଚ୍ଛନ୍ନ ଓ ଅବ୍ୟକ୍ତ ଗର୍ଭରେ ଏପରି ଦୁଃଖଯନ୍ତ୍ରଣାଦି ଭୋଗ କରିବା ଉପରେ ଭାବୀ ଦୁର୍ଦ୍ଦଶାପନ୍ନ କେତେ ପ୍ରାଣୀ ସଙ୍କୋଚରେ ଲୁକ୍‌କାୟିତ ରହିଅଛନ୍ତି, ତାହା ମଧ୍ୟ ଚିନ୍ତା ଓ କଳ୍ପନାଦିର ଅଜ୍ଞାତ ଓ ସଂଖ୍ୟାତୀତ ଅଟେ । ବାସ୍ତବରେ ବୁଝିବାକୁ

ଗଲେ ଉକ୍ତ ବର୍ତ୍ତମାନ ଓ ଭବିଷ୍ୟତର ସମସ୍ତ ପ୍ରକାରର ପ୍ରାଣୀବର୍ଗ ନାମ କଳ୍ପନାକୁ ପ୍ରାଣୀ ବୋଲି କୁହାଯାଉଅଛି କିନ୍ତୁ ଯଥାର୍ଥତଃ ଏମାନେ ସେହି ଅଜ୍ଞାତ ରାକ୍ଷସୀ ମହାଶ୍ମଶାନ-କାଳୀର ବିଶାଳତମ ଉଦରଙ୍କର ଗର୍ଭସ୍ଥ କାଳାନଳଦଗ୍ଧ ଉଦ୍ଭିଦବନ୍ଧେର ଉପଯୋଗୀ ପ୍ରକୃତମ ହୋମଶୁଷ୍କକାଷ୍ଠଭିନ୍ନ ଅନ୍ୟ କୌଣସି ପ୍ରକାରର କୌଣସି ରୂପବାନ୍ ପ୍ରାଣୀ ବୋଲି କହିବା ବୃଥା ପ୍ରୟାସ ମାତ୍ର ।

ତେବେ ଏହିପରି ଅନନ୍ତ, ଅପାର, କାଳପ୍ରପୀଡ଼ିତ ଓ କ୍ଷଣସ୍ଥାୟୀ ଜୀବପ୍ରବାହ ମଧ୍ୟରେ ମନୁଷ୍ୟାଦି ଯେ କୌଣସି ପ୍ରାଣୀ ହେଉ, ତାହାର ସ୍ୱାତନ୍ତ୍ର୍ୟ ବା ବ୍ୟକ୍ତିଗତ ବୈଶିଷ୍ଟ୍ୟ କଣ ଥାଇପାରେ ? ଥିଲେ ବା ତାହାର ମୂଲ୍ୟକଣା ବଜାରର ସ୍ଥାୟିତ୍ୱ କାହିଁ ? କେତେକ୍ଷଣ ? ଯେତେବେଳେ ଉପରୋକ୍ତ ସର୍ବବିଧ ଉତ୍କୃଷ୍ଟାପକୃଷ୍ଟ ପ୍ରାଣୀକୁ ସସାଗର ଜୀବତାବସ୍ଥାର ମୋହମାୟା ଇନ୍ଦ୍ରଜାଳ ବିରଚିତ ସବୁପ୍ରକାରର ସୁଖ ଦୁଃଖ ଅହଂତା, ମମତା ଓ କର୍ମାକର୍ମାଦିରେ ଶେଷ ଜଳାଞ୍ଜଳି ଦେଇ ସେହି ଅନିଚ୍ଛାପ୍ରାପ୍ତ କାଳକବଳକବଳିତ ଶେଷଚରମମହାନିଦ୍ରାଭିଭୂତ ଅବସ୍ଥାରେ ଶ୍ମଶାନ ମହାପଥାଭିମୁଖେ ମହାଯାତ୍ରାର ଦୁଃଖପୂର୍ଣ୍ଣ ମଳିନ ସମାରୋହସହକାରେ ଯାତ୍ରା କରି ଯାଉଥିବାର ଦେଖାଯାଏ, ସେତେବେଳେ ସମସ୍ତେ ସମଦଶାପନ୍ନ ମୃଣ୍ମୟ ପିଣ୍ଡମାତ୍ର ଶବାକାର ବିଶିଷ୍ଟ ତ୍ୟାଜ୍ୟ ବସ୍ତୁରେ ଗଣ୍ୟ ହୁଅନ୍ତି, ଆଉ ଅଜ୍ଞାତ ଗୁଣଗରିମାଦି ଆଧାରବିଚ୍ଛେଦଶୂନ୍ୟ ନିଶ୍ଚିହ୍ନ ଶୂନ୍ୟରୁ ବଳି ମହାଶୂନ୍ୟତା ପ୍ରାପ୍ତ ହୋଇ ସେହି ଅବ୍ୟକ୍ତ ଅନନ୍ତାକାଶରାଜ୍ୟରେ ବିଲୁପ୍ତ ହୁଅନ୍ତି; ଅଥଚ ଅଳ୍ପ ନଗଣ୍ୟ କାଳପାଇଁ ଜୀବତାବସ୍ଥାରେ କିପରି ଆଡ଼ମ୍ବର କି କୋଳାହଳ କିଭଳି ସୁଖସମ୍ଭୋଗାଦିର ରବ କିରୂପ ବଜ୍ର ନିର୍ଘୋଷ ନିନାଦରେ ମେଦିନୀ, ଆକାଶ, ପାତାଳ ଓ ଦିଗ୍‌ବିଦିଗକୁ ସର୍ବଦା କମ୍ପମାନ କରୁଅଛି ? ଏହା କେଉଁ ମହାମାୟାବିମୀର କିପରି ଦୁରବଗାହ୍ୟ, ଦୁର୍ବୋଧ ଓ ଦୁଃସାଧ୍ୟ ମହାବ୍ୟାମୋହକତା ଯେ ଅଜ୍ଞାତ କାଳରାକ୍ଷସୀ ପ୍ରାଣୀବର୍ଗକୁ ମୁହୁର୍ମୁହୁ ଅବିଶ୍ରାନ୍ତଭାବେ ଗ୍ରାସ କରୁଥିଲେ ମଧ୍ୟ ଏ ସଂସାର ସର୍ବଦା ନିତ୍ୟବର୍ତ୍ତମାନପ୍ରାପ୍ତ ପ୍ରାଣୀପୂର୍ଣ୍ଣ ହୋଇ ରହିଅଛି, ଅଥଚ ଏହି କାଳ କ୍ରୀଡ଼ାଭୂମି ମହାଶ୍ମଶାନରେ ସେହି କ୍ଷଣସ୍ଥାୟୀ ଜୀବନିଚୟ ସେହି କାଳର ଭକ୍ଷ୍ୟ ସାମଗ୍ରୀରୂପେ ଉପ ପରିବର୍ତ୍ତରେ ସଦର୍ପେ ନୃତ୍ୟ କରୁଅଛନ୍ତି ! ଧନ୍ୟ ବର୍ତ୍ତମାନର ସର୍ବାର୍ଥଗ୍ରାସୀ !

ଏହି ନୃତ୍ୟର ବୃଥା ମୋହପୂର୍ଣ୍ଣ ନର୍ତ୍ତନ କୁର୍ଦ୍ଦନଗୁଡ଼ାକ, ପଶୁମନ୍ତ୍ର ପ୍ରୋକ୍ଷଣୀପ୍ତ ପଶୁର ଦୁବ ବରକୋଳି ପତ୍ର ଓ ଉଆ ଚୁଉଳ ଆଦି ଭକ୍ଷଣଜନିତ ସୁଖପରି ନୁହେ କି ? ଯାହା ହେଉ ଏହି ମୃତ୍ୟୁ ତରିବ୍ୟାପ୍ତ କ୍ଷଣପରିବର୍ତ୍ତମାନ ଓ କ୍ଷଣଭଙ୍ଗୁର ଅଥଚ ଅନନ୍ତ ଅପାର ସଂସାରରେ ପ୍ରତ୍ୟେକ ପ୍ରାଣୀର ଜୀବନବ୍ୟାପୀ କ୍ରିୟା, ବେଗ, ଚିନ୍ତା ଓ ଭାବନା ବା ଜ୍ଞାନାଜ୍ଞାନାଦିର ବର୍ଣ୍ଣନା ଏକ ମହାଗ୍ରନ୍ଥାକାର ଧାରଣ କରିପାରେ, ଆଉ ସେହି ପ୍ରତ୍ୟେକ ପ୍ରାଣୀର ଦର୍ଶନ, ସେହି ମହାଗ୍ରନ୍ଥ ପାଠରେ ସମାନ ଜ୍ଞାନର ଜ୍ଞାପକ ମଧ୍ୟ ହୋଇପାରେ । ଦେଖାଯାଇଥାଏ ଯେ, ଗାର୍ହସ୍ଥ୍ୟ ଜୀବନ ଏବଂ ଗ୍ରାମ୍ୟଜୀବନର

ଆଲୋଚନା ପାଠ୍ୟଚର୍ଚ୍ଚା ପର ଘରେ ଘରେ ସର୍ବଦା ମୁଖରିତ ହେଉଅଛି । ଏଥିମଧ୍ୟରେ ପୁଣି କବି, ଭାବୁକ, ଚିନ୍ତାଶୀଳ, ବ୍ୟବସ୍ଥାପକ, ଧର୍ମୀ, ଜ୍ଞାନୀ, କର୍ମୀ, ସାଧକ ଓ ଭକ୍ତ ଦି ମହାପୁରୁଷମାନଙ୍କର ହୃଦୟଗ୍ରାହୀ କବିତା, ବ୍ୟବସ୍ଥା ଓ ଉପଦେଶାଦି ପୂର୍ଣ୍ଣ ଗ୍ରନ୍ଥପ୍ରଭୃତି ଆଉ ତଦ୍ରୂପ ମହାପ୍ରାଣୀମାନଙ୍କର ଶୁଭ୍ରାଦର୍ଶପୂର୍ଣ୍ଣ ଜୀବନୀ ପ୍ରଭୃତି ଯେ କେତେଦୂର ଆଲୋଚନୀୟ ସାମଗ୍ରୀ, ଆଉ ସେ ସବୁର ସମାଲୋଚନା ଯେ ସ୍ଥାନେ ସ୍ଥାନେ ଶିକ୍ଷିତ-ସମାଜଦ୍ୱାରା କାଳକ୍ଷେପର ପ୍ରଧାନ ସମ୍ବଳ ହେବ, ପୁଣି ପାଠକ ମନରେ କି ଅପୂର୍ବ ଭାବର ସ୍ରୋତ ଛୁଟାଇ ପାରିବ, ଏଥିରେ କହିବାର ଅଧିକ କଅଣ ଅଛି ? ଏଠାରି ବ୍ୟାବହାରିକ ସୁଖସମ୍ଭୋଗ ଓ କ୍ରୀଡ଼ାକୌତୁକର ସମସ୍ତ ତ ନାଚି ନାଚି ବହି ଯାଉଅଛି । ମାତ୍ର ହେଲେ ହେଁ କଣ ? ଏ ସବୁ ତ କ୍ଷଣସ୍ଥାୟୀ, ଅଥଚ ସେହି ଅତୀତର ଶୂନ୍ୟଗର୍ଭରେ ଶୂନ୍ୟତାପ୍ରାପ୍ତ ହେଉଥାଏ; ସୁତରାଂ ଏ ସମସ୍ତ ସେହି ଅତୀତର ଉଚ୍ଛିଷ୍ଟ ଓ ଓ ସେହି ଚର୍ବିତଚର୍ବଣ ମାତ୍ର । ଏଥିରେ ସାର କଣ ଥାଇପାରେ ? ବର୍ତ୍ତମାନ ପକ୍ଷରେ ଏହା ମଧ୍ୟରୁ ଆତ୍ମଧର୍ମ ଜ୍ଞାନାନୁମୋଦିତ କର୍ତ୍ତବ୍ୟପରାୟଣତା ଆଉ ଆତ୍ମତତ୍ତ୍ୱ-ବିବେକାଦିକୁ ଶ୍ୱାନମୁଖୋଚ୍ଛିଷ୍ଟ ତ୍ୟକ୍ତ ପତିତ ମହାପ୍ରସାଦ ସ୍ୱରୂପ ଗ୍ରହଣ କରିବା ବିଧେୟ ଅଟେ ।

ବର୍ତ୍ତମାନ ଏହି ଦୃଷ୍ଟିରେ ଏହି କୋଳାହଳପୂର୍ଣ୍ଣତାର ଶୂନ୍ୟ ନିଦର୍ଶନାଙ୍କିତ ମହାଶୂନ୍ୟାଗାର ଏହି ସଂସାରରେ ଏହି ଅଳ୍ପକ୍ଷଣସ୍ଥାୟୀ ଜୀବନ ମଧ୍ୟରେ କଣ କର୍ତ୍ତବ୍ୟ, କଣ ଜ୍ଞାତବ୍ୟ ଓ କି କି ବା ମନ୍ତବ୍ୟ, ଧ୍ୟାୟିତବ୍ୟ ଓ ଉପାସିତବ୍ୟ, ଏସବୁ ଭାବିଲେ ଏକ ଚମତ୍କାର ଭାବପୂର୍ଣ୍ଣ ସତ୍ୟରାଜ୍ୟରେ ଉପନୀତ ହେବାକୁ ହୁଏ । ମୋହପୂର୍ଣ୍ଣ ଭ୍ରାନ୍ତ ମତଭେଦାଦି ଏହି ପ୍ରଦେଶୀୟ ରାଜମାର୍ଗର ମାରାତ୍ମକ ବିଷାକ୍ତ କଣ୍ଟକ ସ୍ୱରୂପ ଅଟେ । ଯାହା ହେଉ, ଯାହାର ଯେଉଁ ମତରେ, ଜ୍ଞାନରେ, ଉପାସନାଦି କର୍ମରେ ଏବଂ ସିଦ୍ଧାନ୍ତାଦିରେ ସ୍ଥିର, ଦୃଢ଼ ଓ ଧ୍ରୁବସତ୍ୟ ବିଶ୍ୱାସ ଅଥବା ଏକାଗ୍ର ଆତ୍ମନିଷ୍ଠ ବା ପୂର୍ଣ୍ଣ ଅଟଳ, ଅଚଳ ବିଶ୍ୱାସ ଓ ଶ୍ରଦ୍ଧା, ତାହାଙ୍କୁ ତହିଁରୁ ହଠାତ୍ ଟଳିବାର ବା ଟଳାଇବାର ଉଚିତ ନୁହେ । ତଦ୍ରୂପ ହଠାତ୍ ପରିବର୍ତ୍ତନର ଫଳ ସମୟେ ସମୟେ ବିଷମୟ ମଧ୍ୟ ହୋଇଥାଏ । ମୋଟ ଉପରେ ସଂକ୍ଷେପତଃ କହିବାକୁ ଗଲେ ଏହି ଦେହ ଓ ବିଶ୍ୱବ୍ରହ୍ମାଣ୍ଡାଦି ସହିତ କାଳର କ୍ରୀଡ଼ାପୂର୍ଣ୍ଣ ଚିତ୍ର ପରିଦର୍ଶନ କଲେ ନିର୍ବିବାଦରେ ବୁଝାଯାଏ ଯେ ଏହା ମୋହ-ମୁଗ୍ଧ ବିଷୟ ସୁଖମାତ୍ର ଯୁକ୍ତ ଭ୍ରାନ୍ତ-ମଗ୍ନ ଭାବାତ୍ମକ ଚକ୍ଷୁରେ ସୁଖ ପ୍ରଲୋଭନରେ ଆଧାରଭୂତ ମହାବିପଣୀର ପ୍ରଦର୍ଶନୀ ସ୍ୱରୂପ, ଆଉ ଜ୍ଞାନ ଏବଂ ସଂଯତ ଚକ୍ଷୁରେ ପ୍ରକୃତିର ପରୀକ୍ଷାଗାର, ଅଥଚ ପ୍ରଭୁ ପରମେଶ୍ୱରଙ୍କର ଆଶୀର୍ବାଦପୂର୍ଣ୍ଣ ଦୟା, ପ୍ରେମ ଓ ଜ୍ଞାନାଦି ସାଗରର ଅକ୍ଷୟ ମହାଭଣ୍ଡାର ଓ ସାଧନାର ପବିତ୍ରତମ ପୀଠ ସ୍ୱରୂପ ଅଟେ ।

ଏହି ଦେହ ସଂସାରବିସ୍ଥାନ ଓ ଜାଗତିକ ଭୋଗ୍ୟୋପଯୋଗୀ ପଦାର୍ଥାଦିର ସମ୍ବନ୍ଧରୁ ଏହା ଶିକ୍ଷା ମିଳେ ଯେ, ଏହି ସୃଷ୍ଟି ପ୍ରାଣୀବର୍ଗର ରକ୍ଷଣପାଳନାଦି ଉପକାରାର୍ଥ ଯେପରିକି ବିଧାତାର ଉଦ୍ଦିଷ୍ଟ ନିତ୍ୟ ନିୟମାଧୀନରେ ସର୍ବଦା ନିୟନ୍ତ୍ରିତ ହୋଇ ରହିଅଛି;

ସୁତରାଂ ସେହି ବିଧିବିଧାନାନୁଯାୟୀ ତତ୍‌ସୃଷ୍ଟ ପ୍ରାଣୀବର୍ଗର ଲୌକିକ ବ୍ୟବହାର ଗତ ଓ ଆତ୍ମଧର୍ମାନୁମୋଦିତ ବ୍ୟବସ୍ଥାଦି ରକ୍ଷଣୀୟ, ପାଳନୀୟ ଏବଂ ସେବନୀୟ ଅଟେ । ତେବେ କଣ କରିବା ଉଚିତ ? ଦେହ-ସଂସାରାଦିର ସୁରକ୍ଷା ଆଉ ଆତ୍ମଜ୍ଞାନର ସୁପ୍ରତିଷ୍ଠା, ଏହି ଉଭୟ ଏକାନ୍ତ କର୍ତ୍ତବ୍ୟ । ଅତଏବ ସାତ୍ତ୍ୱିକ-ସରଳ-ସଂଯତ ଭାବରେ ଦେହର ରକ୍ଷା ଓ ପାଳନ, ଆତ୍ମୀୟବର୍ଗର ରକ୍ଷା ଓ ପାଳନ ଏବଂ ସଂସାରସ୍ଥ ସମ୍ପର୍କ-ଅସମ୍ପର୍କଯୁକ୍ତ ମାନବଭ୍ରାତା ଓ ପଶୁପକ୍ଷ୍ୟାଦି ପ୍ରାଣୀପର୍ଯ୍ୟନ୍ତର ଯଥାଶକ୍ତ୍ୟନୁଯାୟୀ ସେବା ଓ ରକ୍ଷଣ-ପାଳନାଦି, କାର୍ଯ୍ୟତଃ କରଣୀୟ ଅଟେ । ଆଉ ଆତ୍ମଜ୍ଞାନ ପକ୍ଷରେ— ଆତ୍ମତତ୍ତ୍ୱ ଓ ପରମେଶ୍ୱର-ପ୍ରକୃତି ଏବଂ ବ୍ରହ୍ମତତ୍ତ୍ୱଜ୍ଞାନାଦିର ସାଧନ-ସିଦ୍ଧି ମଧ୍ୟ ଏକାନ୍ତ କରଣୀୟ ଅଟେ, କାରଣ ଏହା ଅଭାବରେ କେବଳ ଦୈହିକ ସୁଖସମ୍ଭୋଗାଦି ଦ୍ୱାରା ସଂସାରସ୍ଥ-ମୋହପ୍ରଦ ମାୟିକ-ଦୁଃଖ-ଯନ୍ତ୍ରଣା-ତାପାଦିର ନିବୃତ୍ତି ବା ଉପଶାନ୍ତ ସର୍ବଥା ଅସମ୍ଭବ । ଏ ହେତୁ ଗୌଣପକ୍ଷେ ବାହ୍ୟତଃ ସଂସାର ଓ ମୁଖ୍ୟପକ୍ଷେ ଅନ୍ତତଃ ଆତ୍ମଜ୍ଞାନ ଓ ପରମାତ୍ମଭକ୍ତ୍ୟାଦି ସାଧନପରାୟଣ ହେବା ଏକାନ୍ତ ପୌରୁଷେୟ ଅଟେ ।

ପିଣ୍ଡବ୍ରହ୍ମାଣ୍ଡାଦି ସ୍ଥୂଳତାରୁ ଆରମ୍ଭ କରି କ୍ରମେ ସୂକ୍ଷ୍ମତମ ପ୍ରକୃତିତତ୍ତ୍ୱ, ଜୀବାତ୍ମତତ୍ତ୍ୱ, ପରମେଶ୍ୱର ତଥା ବ୍ରହ୍ମତତ୍ତ୍ୱାଦିର ଜ୍ଞାନସିଦ୍ଧି ଲାଭ ସହକାରେ ତତ୍ତତ୍ ସମ୍ବନ୍ଧୀୟ ଉପାସନା ଓ ସାଧନାଦି ଦ୍ୱାରା ଆତ୍ମସଂସ୍ଥିତି ବା ଆତ୍ମସ୍ୱରୂପତ୍ୱ ଲାଭ ହୁଏ । ଏହି ଲାଭ ସଂସାରସ୍ଥ ସବୁପ୍ରକାର ନଶ୍ୱର ଲାଭଠାରୁ ଅଗଣିତ ପରିମାଣରେ ଉତ୍କୃଷ୍ଟ ଓ ନିତ୍ୟସ୍ଥାୟୀ । ଅଭ୍ୟାସ ଓ ଅନୁଭୂତି ସତ୍ୟର ପରିମାପକ, ମାତ୍ର ଏହି ସତ୍ୟୋଦ୍ଧାର ଆତ୍ମଯୋଗ ସହିତ ତତ୍ତ୍ୱବିବେକସିଦ୍ଧି ପ୍ରଭୃତି ଦ୍ୱାରା ପ୍ରାପଣୀୟ ପୁଣି ଏହି ଅଦ୍ୱୈତ ବ୍ରହ୍ମତତ୍ତ୍ୱଜ୍ଞାନ ବାସ୍ତବରେ ବିଷୟମାତ୍ରସଂଲଗ୍ନ ମୂଢ଼ ବୁଦ୍ଧିର ଦୁଃସାଧ୍ୟ ଅଟେ । ଅତଏବ ପ୍ରକୃତିର ପ୍ରବୃତ୍ତି ପ୍ରବାହ ଭାରବାହୀ ଦୁର୍ବଳ ଓ କୁସ୍ୱଭାବବିଶିଷ୍ଟ ବିଷୟାଭିଳାଷଯୁକ୍ତ ବିଳାସପ୍ରିୟ ମୋହମୁଗ୍ଧ ଅହଂକାରୀ ମାନବ ପକ୍ଷରେ ଓ ତଦ୍ରୂପ ସମାଜରେ ତତ୍ତ୍ୱଜ୍ଞାନାଦି ଏବଂ ସାଧନସିଦ୍ଧ୍ୟାଦି ସମ୍ବନ୍ଧରେ ମତଭେଦ ସୃଷ୍ଟି ହେବା ସ୍ୱାଭାବିକ ଅଟେ ।

ଏହି ମତଭେଦ ମୂଳରୁ ପ୍ରଧାନତଃ ଦୁଇଭାଗରେ ବିଭକ୍ତ । ପ୍ରଥମତଃ ପରମେଶ୍ୱର ସମ୍ବନ୍ଧୀୟ ବହୁ ମତଭେଦପୂର୍ଣ୍ଣ ଉପାସନାଦି ସହିତ ଆସ୍ତିକବାଦ ଏବଂ ଦ୍ୱିତୀୟତଃ ନାସ୍ତିକବାଦ । ଏଥିରେ ପୁଣି ଆସ୍ତିକବାଦ ସମ୍ବନ୍ଧେ ପ୍ରଥମରୁ କଥା ଉଠିଥାଏ ଯେ ପ୍ରଭୁ ପରମେଶ୍ୱର ସାକାର କି ନିରାକାର, ଆଉ ସାକାର କି ନିରାକାର ଭାବେ ଉପାସିତବ୍ୟ ?

ମନୁଷ୍ୟ ଏହି ନେତ୍ରଦ୍ୱୟରେ ସର୍ବଦା ଦେଖି ଦେଖି ଜଗତ ଏବଂ ଜାଗତିକ ବସ୍ତୁ ସମ୍ବନ୍ଧରେ ଲୋକ ବ୍ୟବହାରାଧୀନ ଅଭ୍ୟସ୍ତ ସଂସ୍କାର ବଶତଃ ଦୃଷ୍ଟରୂପ ଦ୍ରଷ୍ଟବ୍ୟ ପଦାର୍ଥାଦିକୁ ବସ୍ତୁ ବୋଲି ନିର୍ଦ୍ଦେଶ କରେ, ଆଉ ତଦ୍‌ଭିନ୍ନ ଅଦୃଷ୍ଟରୂପାଦିକୁ ଯନ୍ତ୍ରାଦିଦ୍ୱାରା ଦେଖିଥାଏ । ଏପରି ଏହି ଚକ୍ଷୁ ଓ ଯନ୍ତ୍ରାଦିର ଅଗୋଚରୀଭୂତ ଅତ୍ୟନ୍ତ ସୂକ୍ଷ୍ମତମ ପଦାର୍ଥବାଚକ ବସ୍ତୁ

ପ୍ରଭୃତିକୁ କେଜାଣି କଣ ଅଛୁ ବା ନାହିଁ ବୋଲି ମନରେ ବା ବିବେକରେ ସ୍ଥାନ ଦେବାକୁ ଅବସର ବା ଆଲୋଚନୀୟ ସମୟ-ସୁଯୋଗାଦି ପାଏ ନାହିଁ । ଏହାହିଁ ସାଧାରଣତଃ ମନୁଷ୍ୟର ଏକ ଭ୍ରମ ପ୍ରମାଦପୂର୍ଣ୍ଣ ଅଜ୍ଞତାଯୁକ୍ତ କୁସଂସ୍କାର । ଏହି କୁସଂସ୍କାରରୁ ପ୍ରଶ୍ନ ଉଠେ ଯେ ପରମେଶ୍ୱର ସାକାର କି ନିରାକାର ? କି ଭାବେ ଧ୍ୟାୟିତବ୍ୟ ? ଆଉ କପରି ଆରାଧିତବ୍ୟ ? ଖାମଖେୟାଲି ବେପରବାୟୀ ନାସ୍ତିକତା କହେ- ସେ ନାହାନ୍ତି ।

ଏହି ଚକ୍ଷୁରେ ଯାହା ଦେଖାଯାଏ, ତାହା ଦୃଷ୍ଟ ବା ସାକାର ଏବଂ ଯାହା ଅଦୃଷ୍ଟ ତାହାହିଁ ନିରାକାର । ଏହା ସଂସାର ପକ୍ଷରେ ଏକପ୍ରକାର ଯଥାର୍ଥ ସଂଜ୍ଞା ହୋଇପାରେ, ମାତ୍ର ଏ ପ୍ରକାରର ସାକାର କଣ ? ଆଉ ନିରାକାରହିଁ ବା କଣ ? ଏହା ଠିକଏ ବିଚାର କରାଯାଉ । କେବଳ ଖାଲି ଚକ୍ଷୁ କିଛୁ ଦେଖି ନ ପାରେ, ତହିଁରେ ମନ ବା ମାନସ ଚକ୍ଷୁ ଯୋଗ ହେବା ଏକାନ୍ତ ଆବଶ୍ୟକ । ସେହି ମନ ବା ମାନସ ଚକ୍ଷୁ ଏହି ମୁଖମଣ୍ଡଳସ୍ଥ ବାହ୍ୟ ଚକ୍ଷୁରେ ମିଶି ଉଭୟେ ପରସ୍ପର ସାହାଯ୍ୟରେ ସାକାରକୁ ନିର୍ଣ୍ଣୟ କରନ୍ତି । ଆଉ ମଧ୍ୟ ବାହ୍ୟ ଚକ୍ଷୁକୁ ମୁଦ୍ରିତ କରିଦେଲେ ତାହାର ସଂଯୋଗ ବା ବା ସାହାଯ୍ୟ ବିନା ମନ ସ୍ୱୟଂ ଏକାକୀ ସ୍ୱକୀୟ କଳ୍ପନାଶକ୍ତି ବଳରେ ତଦ୍ରୂପ କାଳ୍ପନିକ ମାନସ ଚକ୍ଷୁଦ୍ୱାରା ତଦ୍ରୂପ ସାକାର ବସ୍ତୁକୁ ଦର୍ଶନ ଓ ନିର୍ଣ୍ଣୟ କରିପାରିଥାଏ । ତେବେ ଏଠାରେ ଏହି ମନ ବା ମାନସ ଚକ୍ଷୁଟି ନିଜେ କଣ ? ସାକାର କି ନିରାକାର ? ଆଉ ଏହି ମନ ଯେଉଁ ଯେଉଁ କ୍ଷୁଧା, ପିପାସା, ସୁଖ, ଦୁଃଖ ଓ ହର୍ଷବିଷାଦାଦି ନାନାପ୍ରକାର ଭାବମାନଙ୍କୁ ଅନୁଭବାତ୍ମକ ଜ୍ଞାନଦ୍ୱାରା ପ୍ରମାଣ କରାଇଦିଏ, ସେଗୁଡ଼ିକ ସବୁ କଣ ? ସାକାର କି ନିରାକାର ? ପରନ୍ତୁ ଏ ସମସ୍ତ ଅନୁଭୂତି ପ୍ରଭୃତିର ଯେ ଅନୁଭବକର୍ତ୍ତା ଅର୍ଥାତ୍ ଆମ୍ଭେ, ତୁମ୍ଭେ, ଅଥବା ସେ, ଏହି ଏହି କର୍ତ୍ତାପୁରୁଷମାନେ (ଦେହ କଦାଚ ନୁହେଁ) କଣ ? ସାକାର କି ନିରାକାର ? ମନ ଉକ୍ତ ଅନୁଭୂତି ପ୍ରଭୃତି ଏବଂ କର୍ତ୍ତବ୍ୟପୁରୁଷ ଇତ୍ୟାଦି ଅଦୃଷ୍ଟ । ଏହି ଆଖିରେ ଏମାନେ ଦେଖାଯାଉନାହାନ୍ତି, ସୁତରାଂ ଏମାନେ ଅଦୃଷ୍ଟ ଏବଂ ପୂର୍ବଲିଖିତ ସଂଜ୍ଞାନୁସାରେ ନିରାକାର ( ପରମେଶ୍ୱରଙ୍କ ବିଚାର ଥାଉ ) ।

ଏଠାରେ ପଦାର୍ଥ ଦୁଇଭାଗରେ ବିଭକ୍ତ ହେଉ—ଯାହା ମନ ସହଯୋଗରେ ବାହ୍ୟ ଚକ୍ଷୁଦ୍ୱାରା ଦ୍ରଷ୍ଟବ୍ୟ ତାହା ସ୍ଥୂଳାକାର ବା ସାକାର, ଆଉ ଯାହା ବାହ୍ୟଚକ୍ଷୁର ସଂଯୋଗ ବା ସାହାଯ୍ୟ ବିନା କେବଳ ଏକା ମନଦ୍ୱାରାହିଁ ଦ୍ରଷ୍ଟବ୍ୟ, ଜ୍ଞାତବ୍ୟ ବା ଅନୁଭୂତ ହୁଏ, ତାହା ସୂକ୍ଷ୍ମାକାର ଅର୍ଥାତ୍ ନିରାକାର । ମାନସ ପ୍ରତ୍ୟକ୍ଷ ସୂକ୍ଷ୍ମ ବସ୍ତୁ ହେଉ ବା ଦୃଷ୍ଟିଯୋଗ୍ୟ ସ୍ଥୂଳ ବସ୍ତୁ ହେଉ, ଉଭୟେ ଜ୍ଞାତବ୍ୟତା ପକ୍ଷେ ସମାନ ଭାବେ ମାନସାନୁଭୂତିର ଅଧୀନ ବା ସାପେକ୍ଷ ଅଟନ୍ତି । ଅତଏବ ଏଠାରେ ସ୍ପଷ୍ଟତଃ ସିଦ୍ଧାନ୍ତ କରାଯାଇପାରେ ଯେ ଅନୁଭୂତିହିଁ ମୁଖ୍ୟତଃ କେବଳ ପଦାର୍ଥବାଚକ ବସ୍ତୁ ଅଥଚ ଗୌଣ ପକ୍ଷରେ ତାହାହିଁ ସ୍ଥୂଳ ବା ସୂକ୍ଷ୍ମ ପଦାର୍ଥାଦିର ଆକାରତ୍ୱାଦି ରୂପେ ପରିଣତ ହୋଇ

ତତ୍ତ୍ୱ ବା ସେହି ସେହି ଆକାରରେ ନିରୂପିତ ହେଉଅଛି । ତେବେ ଏଠାରେ ଏକମାତ୍ର ଅନୁଭୂତିକୁ କେବଳ ମୁଖ୍ୟ ପଦାର୍ଥ ବୋଲି ନିରୂପଣ କଲେ ତାହାକୁହିଁ କେବଳ ସାକାର ଏବଂ ନିରାକାର ଉଭୟବିଧ ଭେଦବିରହିତ ଏପରି ଏକ ଚମତ୍କାର ପଦାର୍ଥ ରୂପେ ନିଶ୍ଚୟ କରିବାକୁ ହେବ ଯେ ତହିଁରେ ସାକାରତ୍ୱ ଏବଂ ନିରାକାରତ୍ୱାଦି ପ୍ରକାର-ମାନ ଆରୋପିତ ହେଉଅଛି ମାତ୍ର ବସ୍ତୁତଃ ତାହା ସାକାର ବା ନିରାକାର ସଜ୍ଞାତୀତ ଏକ ପ୍ରକାର ସ୍ୱତନ୍ତ୍ର ଅଥଚ ଉଭୟ ମିଶ୍ର ବା ଅନୁଭୟ ପ୍ରକାରର ସଜ୍ଞାବାଚକ ମୁଖ୍ୟ ପଦାର୍ଥ ଅଟେ । ଆଉ ସାକାର ବା ନିରାକାରାଦି ଶାବ୍ଦିକ ବ୍ୟବହାର କେବଳ ଲୌକିକ ବ୍ୟବହାରପ୍ରସୂତ କଳ୍ପନାମୂଳକ ଅଟେ । ଏ ସ୍ଥଳେ ସାକାର ଏବଂ ନିରାକାର, ଉଭୟ ପ୍ରକାର ସଂଜ୍ଞାର ସାଧାରଣ ସ୍ଥାନରେ ଏକମାତ୍ର ଅନୁଭୂତିକୁହିଁ ସ୍ଥାନାଧିକାରୀ ବୋଲି ନିର୍ଣ୍ଣୟ କରାଗଲା । ଆକାରାଦି ଅନୁଭୂତ ବସ୍ତୁର ଭେଦାଦିକୁ ଏଠାରେ ଅନୁଭୂତିର ମୂର୍ତ୍ତି ସର୍ବାଙ୍ଗର ଅଙ୍ଗପ୍ରତ୍ୟଙ୍ଗାଦି ତୁଲ୍ୟ ସ୍ୱଗତଭେଦ ବିଶିଷ୍ଟାକାରରେ ଦେଖାଯିବ; ସୁତରାଂ ତାହା ଅନୁଭୂତିରୁ ଅପୃଥକ୍ ଏବଂ ଏକ ଅଟେ ।

ଏହି ମନ ଇନ୍ଦ୍ରିୟାଦି ସାହାଯ୍ୟରେ ଯାହା ନିରୂପଣ କରେ ବା ଅନୁଭବ କରେ, ତାହାର ନାମ ଅନୁଭୂତି । ଉପରୋକ୍ତ ବିବରଣଟିରେ ଅନୁଭୂତ୍ୟାତ୍ମକ ଜ୍ଞାନ ସମ୍ବନ୍ଧେ ଅନ୍ତଃକରଣ ପରିବର୍ତ୍ତରେ ମନର ଉଲ୍ଲେଖ କରାଯାଇଅଛି । ବସ୍ତୁତଃ ଅନ୍ତଃକରଣହିଁ ପ୍ରଧାନତଃ ଇନ୍ଦ୍ରିୟ ବ୍ୟାପାରାନୁଭୂତି ପ୍ରଭୃତିର କର୍ତ୍ତା । ମନକୁ ସାଧାରଣତଃ ସମସ୍ତେ ବୁଝନ୍ତି ଏବଂ ବ୍ୟବହାର କରନ୍ତି ବୋଲି ଅନ୍ତଃକରଣ ସ୍ଥାନରେ ଏ ପର୍ଯ୍ୟନ୍ତ ମନକୁ ବ୍ୟବହାର କରାଯାଇଥିଲା । ଯେଉଁ ଯେଉଁ ଇନ୍ଦ୍ରିୟଗ୍ରାହ୍ୟାତୀତ ଓ ମନନାତୀତ ସୂକ୍ଷ୍ମତର ବା ସୂକ୍ଷ୍ମତମ ପଦାର୍ଥାଦି ଅନ୍ତଃକରଣର ଅନୁଭୂତିକୁ ଅତିକ୍ରମ କରି ତାହାଠାରୁ ଅଜ୍ଞାତ ଭାବରେ ଦୂରରେ ଅବସ୍ଥାନ କରନ୍ତି, ସେ ସବୁ ସମ୍ବନ୍ଧରେ ଅନ୍ତଃକରଣର ଅନୁଭୂତିର ଦ୍ୱାର ବନ୍ଦ ହୋଇଯାଏ, ଆଉ ବିବେକଯୁକ୍ତ ଅନୁମାନାଦି ସେଠାରୁ କିୟଦ୍ଦୂର ଅଗ୍ରସର ହୁଅନ୍ତି । ଏହି ନିୟମାନୁସାରେ ଅନ୍ତଃକରଣ, ପ୍ରକୃତି, ଜୀବାତ୍ମା ଓ ପରମାତ୍ମା ଏବଂ ପରଂବ୍ରହ୍ମ ତତ୍ତ୍ୱାଦି ପର୍ଯ୍ୟନ୍ତକୁ ଅନୁଭବ ବା ଅନୁମାନାଦିଦ୍ୱାରା ସ୍ଥିର-ନିଶ୍ଚୟ କରିବାକୁ ଅକ୍ଷମ ହୋଇ ପଡ଼ିବାରୁ ସେହିଠାରୁ ନିବୃତ୍ତ ହୁଏ । ତହିଁଉତ୍ତାରୁ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା ଓ ସମାଧି ଇତ୍ୟାଦି ଇତ୍ୟାଦି ଦ୍ୱାରା ବା ଚିତ୍ତୈକାଗ୍ର୍ୟସମ୍ପାଦନ ନିମିତ୍ତ ଯେ କୌଣସି ଅନ୍ୟାନ୍ୟପ୍ରକାର ସାଧନପ୍ରଣାଳୀ ଫଳଦାୟୀ ହୋଇପାରେ । ଅଧିକାରୀ ଭେଦରେ ତତ୍ତଦ୍ରୂପ ପନ୍ଥାଦି ଅବଲମ୍ବନପୂର୍ବକ ନିତ୍ୟ ଅନ୍ତଃକରଣବୃତ୍ତିକୁ ସମାହିତ ବା ସୁସଂଯତ କରିବା କର୍ତ୍ତବ୍ୟ । ଏପରି ଏତଦ୍ରୂପ ଅନ୍ତଃକରଣର ସମାହିତ ଅବସ୍ଥାରେ ଆତ୍ମାନାତ୍ମ ବିବେକଖ୍ୟାତି ଉଦୟ ହେଲରୁ ତଦ୍ଦ୍ୱାରା ଭକ୍ତି, ଜ୍ଞାନ, ବୈରାଗ୍ୟ ଏବଂ ସନ୍ନ୍ୟାସାଦି ଆତ୍ମପ୍ରକାଶକ ଯୋଗମାନେ ଆତ୍ମାର ସହଯୋଗିତା କରନ୍ତି । ଏଥିରୁ ଆତ୍ମା, ପରମାତ୍ମତତ୍ତ୍ୱ ଓ ପରଂବ୍ରହ୍ମ ତତ୍ତ୍ୱାଦିର ଅପରୋକ୍ଷାନୁଭୂତିଆଡ଼େ

ନିଯୁକ୍ତ ହୁଏ । ଏହାହିଁ ଅବଲମ୍ବନୀୟ ନିତ୍ୟ ପ୍ରସିଦ୍ଧ ପନ୍ଥା । ବିଷୟ ବିକ୍ଷିପ୍ତ ରାଜସ-ତାମସାଛନ୍ନ ହୃଦୟରେ ଖୁସିଗଲୁ ପରି ଦୁଇଘରର କଥାରେ ତର୍କବିତର୍କ ଠିକଏ କରି ଆଉ ସୂକ୍ଷ୍ମତା ଆଡ଼କୁ ଯିବାକୁ ଅକ୍ଷମ ହୋଇ ପ୍ରାଞ୍ଜଳ ସନାତନ ପ୍ରସିଦ୍ଧ ପନ୍ଥାକୁ ଅବହେଳାକ୍ରମେ ଉଡ଼ାଇଦେଲେ କିଛି ଲାଭ ନାହିଁ । ତାହା ଆତ୍ମପ୍ରବଞ୍ଚନା ।

ପ୍ରତିଦେହରେ "ଆମ୍ଭେ ବୋଲି" ଏକ ଆତ୍ମଲକ୍ଷ୍ୟ ଜ୍ଞାନ ସ୍ପଷ୍ଟ ବିରାଜିତ ରହିଅଛି । ସେହି ଶବ୍ଦାତୀତ ଅହଂବୋଧକ ଆତ୍ମଲକ୍ଷ୍ୟର ନିରତିଶୟ ଶେଷସୀମାଠାରେ ଆତ୍ମାର ଯେଉଁ ଦେହାତ୍ମ ବାସନାଦି ବିସ୍ମୃତ-ନିରଭିମାନ ଓ ନିରହଂକାର ଶୁଦ୍ଧ ଆତ୍ମବୋଧମାତ୍ର ସ୍ୱରୂପ, ତାହା ଆତ୍ମପଦବାଚ୍ୟ ଅଟେ । ଏହି ଆତ୍ମାକୁ ଐହିକ ସଂସାର ଦଶାରେ ଆତ୍ମପ୍ରତିବିମ୍ବାକାରରେ ଜୀବୋପାଧିକ, ଦେହାତ୍ମ ବାସନାଯୁକ୍ତ, ଦେହାଭିମାନଶୀଳ, ଅହଂକାରକୃତ କର୍ମଭୋଗାଦିରେ ଲିପ୍ତ ଥାଇ ମୁଁ ସୁଖୀ, ମୁଁ ଦୁଃଖୀ, ମୁଁ କର୍ମୀ ବା ମୁଁ ଭୋଗବାନ୍ ବୋଲି ଇତ୍ୟାଦି ଇତ୍ୟାଦି ଭାବରେ ସଂସାରୀ ହୋଇଥିବାର ଦେଖାଯାଉଅଛି । ଏଠାରେ ଆତ୍ମାର ପ୍ରତିବିମ୍ବାକୃତି ଏହି ଜୀବାତ୍ମାକୁ ଦୈହିକ ଉପାଧିଗତ ଭେଦାବଚ୍ଛିନ୍ନତା ପ୍ରଯୁକ୍ତ ସସୀମ ବା ଖଣ୍ଡିତାକାର ବିଶିଷ୍ଟ ବୋଲି କୁହାଯାଏ । ଅର୍ଥାତ୍ ଶବ୍ଦାତୀତ ଅହଂବୋଧରୂପେ ଅଖଣ୍ଡ ବିଶୁଦ୍ଧାକାର ବିଶିଷ୍ଟ ଆତ୍ମା, ଜୀବୋପାଧି ଯୋଗରେ ଦେହାତ୍ମ ସଂସ୍କାରବଶତଃ ମୁଁ କର୍ତ୍ତା, ମୁଁ ଭୋକ୍ତା, ମୁଁ ସୁଖୀ ବା ମୁଁ ଦୁଃଖୀ ଇତ୍ୟାଦି ଇତ୍ୟାଦି ଭାବାକାରିତ ଗୁଞ୍ଜରେ ମୁଁ କର୍ତ୍ତା ଇତ୍ୟାଦି ରୂପରେ ଆକାରିତ ହେବା ଅବସ୍ଥା ପ୍ରାପ୍ତ ସମୟରେ ସେହି ଆତ୍ମା ସେହିଠାରେ ତ୍ରିକାଳସିଦ୍ଧ ନିତ୍ୟ ବର୍ତ୍ତମାନ ଅଖଣ୍ଡ ଅହଂବୋଧ ଶୁଦ୍ଧାତ୍ମରୂପକୁ ବିସ୍ମୃତ ବା ଲୁକ୍କାୟିତ ଭାବେ ଗୋପନ କରି ରଖି ଆତ୍ମପ୍ରତିବିମ୍ବାକାର ଧାରଣପୂର୍ବକ, ଜୀବୋପାଧିସୃଷ୍ଟ ବାସନାଧୀନ ଅହଂକାରାତ୍ମକ ଖଣ୍ଡବିଖଣ୍ଡ ଭାବାକାରବିଶିଷ୍ଟ କର୍ତ୍ତୃତ୍ୱାଦିରେ ଆପଣାକୁ ମୁଁ କର୍ତ୍ତା ଇତ୍ୟାଦି ଇତ୍ୟାଦି ରୂପକ ସଂସାରୀ ବୋଲି ପରିଚୟ ଦେଉଅଛି । ଏହିରୂପେ ଶବ୍ଦାତୀତ ଅଖଣ୍ଡ ଅହଂବୋଧାକାର ବିଶିଷ୍ଟ ଆତ୍ମାର ପ୍ରତିବିମ୍ବ, ଜୀବାତ୍ମାରୂପେ ସସୀମ-ଖଣ୍ଡିତ ଅହଂରୂପରେ ଅର୍ଥାତ୍ ଅହଂକାରାତ୍ମକଭାବରେ ମୁଁ ଏହି ସଂସାରୀ ବୋଲି କହାଇ ହେବା ତାହାର ସଂସାରିତ୍ୱ ଖଣ୍ଡରୂପ ଅଟେ । ଆଉ ଏହି ସୀମାବଦ୍ଧ ସଂସାରିତ୍ୱ ଉପସ୍ଥିତ ମାୟାମୋହପ୍ରଦ ସଂସାରଯାତ୍ରାର ଅଧିନାୟକତ୍ୱ ମଧ୍ୟ ଅଟେ ।

ଅସୀମ ଅଖଣ୍ଡ ମହଦାକାଶ ଯେପରି ଘଟାବଚ୍ଛିନ୍ନତା ଦ୍ୱାରା ଖଣ୍ଡିତ ସସୀମ ଘଟାକୃତିବିଶିଷ୍ଟ ବୋଲି କୁହାଯାଏ, ସେହିପରି ଏହି ଅଖଣ୍ଡ ଅସୀମ ଶୁଦ୍ଧ ଅହଂବୋଧାକାରବିଶିଷ୍ଟ ମନବଚନାତୀତ ମହାପ୍ରଭୁ ପରମାତ୍ମା, ଜୀବୋପାଧି ଦ୍ୱାରା ତଦାକୃତିପ୍ରାପ୍ତ ଜୀବାତ୍ମାଠାରେ ତନ୍ମୟ ତଦ୍ରୂପ ହୋଇଅଛନ୍ତି; ଆଉ ଅଖଣ୍ଡ ମହଦାକାଶ ଯେପରି ସର୍ବଜଗତ ସମେତ ସର୍ବଜାଗତିକ ବସ୍ତୁାଦିର ବାହ୍ୟାନ୍ତରରେ ଅନବଚ୍ଛିନ୍ନ ଭାବେ ବିରାଜ କରିଅଛି, ଅଥଚ ଘଟାଦିରେ ତଦବଚ୍ଛିନ୍ନତାଦ୍ୱାରା କଳ୍ପନାକ୍ରମେ ତଦାକୃତିବିଶିଷ୍ଟ

ବୋଲି ସୂଚିତ ହେଉଅଛି, ତଦ୍ରୂପ ଶବ୍ଦମନାତୀତ ଅଖଣ୍ଡ ଅହଂବୋଧରୂପ ପରମାତ୍ମା ନିତ୍ୟୋପଲବ୍ଧି ରୂପେ ପ୍ରତିଷ୍ଠିତ ରହି ଜୀବାତ୍ମାଦି ରୂପାଭିମାନୀ ପୁରୁଷରେ ତତ୍ତତ୍ କାଳ୍ପନିକ ରୂପେ ଆରୋପିତ ହେଉଅଛନ୍ତି । ଏହାଙ୍କଠାରେ କାଳଭେଦ ଓ ପ୍ରାଣୀବିଶେଷାଦିର ଆକାରଗତ, ଭାବଗତ, ଭ୍ରମପୂର୍ଣ୍ଣ ଜୀବୋପାଧିଗତ ଆତ୍ମଭେଦାଦି ବା ସ୍ଥାନଭେଦାଦି କୌଣସି ପ୍ରକାରର ଭେଦ ବା ପରିଚ୍ଛିନ୍ନତାଦି କିଛି ଲକ୍ଷିତ ହେଉନାହିଁ । ଏହିରୂପେ ଜୀବର ନିଜାତ୍ମତତ୍ତ୍ୱଜ୍ଞାନ ଦର୍ଶନରୁ ବିବେକ ବୈରାଗ୍ୟାଦି ଯୋଗଦ୍ୱାରା ପରମାତ୍ମତତ୍ତ୍ୱଲାଭର ପନ୍ଥା ଉନ୍ମୋଚିତ ହୁଏ । ଏହି ପରମାତ୍ମତତ୍ତ୍ୱ, ସର୍ବପ୍ରାଣୀ ଶରୀରରେ ସେହି ସେହି ଶରୀରନିଷ୍ଠ ଜୀବୋପାଧିରେ ତଦୁପାଧିକ ଜୀବାତ୍ମଚୈତନ୍ୟ ରୂପେ ପ୍ରତ୍ୟକ୍ଷ ବିରାଜମାନ ହୋଇଅଛନ୍ତି, ପୁଣି ଅନୁଭୂତି ବା ମନନାଦି ଅଥବା ଅନୁମାନାଦିର ଅଧିକାର ସୀମା-ପାରରେ ଭକ୍ତିଯୋଗ, ଜ୍ଞାନଯୋଗ, ବୈରାଗ୍ୟଯୋଗ ଓ ଉପାଧିଶୂନ୍ୟ ବିବେକ ଯୋଗାଦି ଯୋଗାତ୍ମକ ପୀଠରେ ଯେଉଁରୂପେ ବିରାଜମାନ, ତାହା ଶବ୍ଦାତୀତ । ଏ ହେତୁ ଉକ୍ତ ପୀଠମାନଙ୍କ ପାଦଦେଶରେ ଏହି ଜୀବଚୈତନ୍ୟ, ଅଖଣ୍ଡ ସୂର୍ଯ୍ୟ କିରଣରେ କ୍ଷୁଦ୍ର ଦୀପଶିଖାଗ୍ନି ପ୍ରାପ୍ତ ସ୍ଥିତିବାନ୍ ଅଥଚ ଅଦୃଶ୍ୟମାନ୍ ଆକାରରେ ରହି ପ୍ରଭୁ ପରମେଶ୍ୱରଙ୍କୁ ସୂର୍ଯ୍ୟଦେବଙ୍କର ଉପମେୟ ଆକାରରେ ପ୍ରଣାମ ଦେଉଅଛି ।

ଏହି ପ୍ରଭୁ ପରମେଶ୍ୱର, ବୈରାଗ୍ୟ, ଐଶ୍ୱର୍ଯ୍ୟାଦି ଅସଂଖ୍ୟ ଅସଂଖ୍ୟ ଶକ୍ତି-ସମନ୍ୱିତ ସର୍ବଶକ୍ତିମାନ ରୂପରେ ସର୍ବଶକ୍ତିମୟ ଏବଂ ସେହି ସେହି ଅସଂଖ୍ୟ ଅସଂଖ୍ୟ ଶକ୍ତିର ଏକ ଏକ ଶକ୍ତିରେ ବା ଶକ୍ତ୍ୟଂଶ କ ଅଂଶାଂଶରେ ଅସଂଖ୍ୟ ଅସଂଖ୍ୟ ପ୍ରକାରର ଅସଂଖ୍ୟ ଅସଂଖ୍ୟ ଭାବରୂପେ ତଦ୍ରୂପ ଭାବମୟ ଏହି ଉଭୟ ପ୍ରକାର ଆକାରରେ ସର୍ବଶକ୍ତିମୟ ଏବଂ ସର୍ବଭାବମୟ ହୋଇ ନିତ୍ୟ ଲୀଳା ବିଗ୍ରହ ଧାରଣ କରିଅଛନ୍ତି । ଏହିରୂପ ଜୀବର ଏକ କ୍ଷୁଦ୍ରତମ ଭାବଟିରେ ସୂଚୀରନ୍ଧ୍ର ଭିତରେ ବିଶ୍ୱବ୍ରହ୍ମାଣ୍ଡକୁ ଥୋଇବା ପରି ସେହି ପ୍ରଭୁଙ୍କର ରୂପକୁ କିଏ ନିଷ୍ଟୟ କରିବାକୁ ହୋଇପାରେ ?

ପରମେଶ୍ୱରାଧୀନ ପ୍ରକୃତିଦତ୍ତ ଜୀବୋପାଧିସୃଷ୍ଟ ଦେହତ୍ରୟରେ ଜୀବାତ୍ମପୁରୁଷ ଯେପରି ସଂସାରୀୟ କ୍ରୀଡ଼ା ଅନୁଭବ କରୁଅଛି, ସେହିପରି ତାହାକୁ ଜ୍ଞାନଦୃଷ୍ଟିରେ ସୂକ୍ଷ୍ମତମ ଆଉ ତାହାର ଦେହତ୍ରୟ ମଧ୍ୟରୁ କାରଣ ଦେହକୁ ସୂକ୍ଷ୍ମତର ଓ ଲିଙ୍ଗଦେହକୁ ସୂକ୍ଷ୍ମ ଦେହ ଏବଂ ସ୍ଥୂଳ ଦେହକୁ ସ୍ଥୂଳ ବୋଲି ବ୍ୟବହାରତଃ କୁହାଯାଉଅଛି । ଏହି ପ୍ରକାରରେ ପ୍ରଭୁ ପରମେଶ୍ୱର, ସ୍ୱୀୟ ଅଧୀନ ପ୍ରକୃତିକୁ ସ୍ୱଶକ୍ତିବଳରେ (୧) ସର୍ବ-ଶକ୍ତିଯୁକ୍ତ ମହାମାୟାରୂପିଣୀ କାରଣ ଶରୀର ଓ (୨) ମହତ୍ତତ୍ତ୍ୱ, ଅହଂକାରତତ୍ତ୍ୱ ଏବଂ ପଞ୍ଚତନ୍ମାତ୍ରାଦିର ସାଧାରଣ ବ୍ୟାପକ ସୂତ୍ରରୂପୀ ହିରଣ୍ୟଗର୍ଭରୂପାତ୍ମକ ସୂକ୍ଷ୍ମଶରୀର, ପୁନଶ୍ଚ (୩) ପଞ୍ଚଭୂତାତ୍ମକ ବିରାଟ ବିଶ୍ୱବ୍ରହ୍ମାଣ୍ଡାଦିରୂପକ ସ୍ଥୂଳଶରୀରାଦି ଦେହତ୍ରୟରେ ପରିଣତ କରି ଉକ୍ତ ଦେହତ୍ରୟର ସମଷ୍ଟିରେ ସର୍ବାତ୍ମକ ମହାବିରାଟରୂପ ଧାରଣପୂର୍ବକ ନିତ୍ୟବିରାଜିତ ରହିଅଛନ୍ତି, ଅର୍ଥାତ୍ ସ୍ୱୟଂ ପ୍ରଭୁ ପରମେଶ୍ୱର ସୂକ୍ଷ୍ମାତ୍ ସୂକ୍ଷ୍ମତମ ଅଟନ୍ତି,

ଆଉ ତାଙ୍କର ମାୟାରୂପୀ କାରଣ ଶରୀର ସୂକ୍ଷ୍ମତର, ଏବଂ ସ୍ୱପ୍ନାତ୍ମକ ହିରଣ୍ୟଗର୍ଭାଦି ସହ ଆଉ ବିରାଟବିଶ୍ୱବ୍ରହ୍ମାଣ୍ଡାଦି ସ୍ଥୂଳଶରୀରବାଚକ ଅଟେ । ଏହି ମହାପ୍ରଭୁ ପରମେଶ୍ୱର, ସ୍ୱୀୟ ଅଘଟନାଘଟନପଟୀୟସୀ ମହାମାୟା ଶକ୍ତିବଳରେ ଏତଦ୍ରୂପ ସ୍ୱୀୟ ମହତୋ-ମହୀୟାନ୍ ରୂପକୁ ପ୍ରକାରାନ୍ତରରେ ଯେ କୌଣସି ପ୍ରାଣୀ ଶରୀରାକାର ରୂପରେ ପରିଣତ କରି ଅଥବା ତଦ୍ରୂପ ଯେ କୌଣସି ପ୍ରାଣୀଶରୀର ମଧ୍ୟରେ ଗୋପନକରଣ ପୂର୍ବକ ଅନୁରୂପ ଦେହବନ୍ତ ହୋଇ ଲୀଳାନୁରୋଧେ ଏହି ସଂସାର ଦେଶରେ ଅବତାର ଗ୍ରହଣ କରୁଅଛନ୍ତି । ଏହି ସର୍ବୈଶ୍ୱର୍ଯ୍ୟଶାଳୀ, ସର୍ବଶକ୍ତିବାନ୍ ସ୍ୱଇଚ୍ଛାକର୍ତ୍ତୃତ୍ୱଶୀଳ ଇଚ୍ଛାଦେହଧାରୀ ମହାପୁରୁଷଙ୍କୁ ତାଙ୍କର ଅନୁଗ୍ରହସୃଷ୍ଟ ଆଶୀର୍ବାଦଦତ୍ତ ମନ, ବଚନାଦିରେ ସାକାର ବା ନିରାକାର ଅଥବା ବ୍ୟକ୍ତାବ୍ୟକ୍ତ କିମ୍ବା ଚିନ୍ତ୍ୟ ଓ ଅଚିନ୍ତ୍ୟ ଇତ୍ୟାଦି ଇତ୍ୟାଦି ଯାହା କିଛି କୁହାଯାଉ ବା ନିର୍ଦ୍ଦେଶ କରାଯାଉନା କାହିଁକି, ନଟବରଶେଖର ଅମୂଲ୍ୟ ଅମୋହଚିନ୍ତାମଣି ସବୁ ହୋଇ ପାରନ୍ତି, ଅଥଚ କାହିଁରେ ମଧ୍ୟ କୌଣସି ପ୍ରକାରରେ ସୀମାବଦ୍ଧ ନୁହନ୍ତି । ଏହି ପ୍ରଭୁ ଜ୍ଞାନ, ଭାବନା, ଧ୍ୟାନ ଓ ଚିନ୍ତାଦିରେ ଅନାସକ୍ତ ଓ ନିର୍ଲିପ୍ତ ଭାବେ ସେହି ସେହି ଆକାରମୟ ମଧ୍ୟ ହୋଇପାରନ୍ତି ଏବଂ ଏତଦ୍ ସର୍ବଅଭାବରେ ଅଭାବମୟ ଅଭାବରୂପ ମଧ୍ୟ ଧାରଣ କରିପାରନ୍ତି । ଏହିରୂପେ ଏହି ପ୍ରଭୁ ପରମାତ୍ମା, ସମାଧିନିଷ୍ଠ ଭକ୍ତିଯୁକ୍ତ ବା ଜ୍ଞାନଯୋଗାଦିନିଷ୍ଠ ମହାତ୍ମାଙ୍କଠାରେ ସଜାଗ୍ରତ ରହିଅଛନ୍ତି । ସାଧାରଣ ସାଧକ, ଉପାସକ, ବା ତତ୍ତ୍ୱବିଚାରକ ପ୍ରଭୃତିର ଜ୍ଞାନରେ ସାଧନାଦି ଅନୁରୂପ ଅର୍ଦ୍ଧଜାଗ୍ରତ ଏବଂ ଅର୍ଦ୍ଧନିଦ୍ରିତ ଅର୍ଥାତ୍ ଯଥାପ୍ରକାରର ମିଶ୍ରଭାବରେ ପ୍ରକାଶିତ ହେଉଅଛନ୍ତି, ଆଉ ସାଧାରଣ ବିଷୟଲିପ୍ତ ଅଥଚ କେବଳ ସଂସାରବ୍ୟବହାରସମ୍ପନ୍ନ ପୁଣି ଧର୍ମଚିହ୍ନସେବୀ ହୃଦୟରେ ନିଦ୍ରିତ ଭାବ ଧାରଣ କରି-ଅଛନ୍ତି । ପୁଣି ଧର୍ମସଂସ୍କାରବିରହିତ, ନିତାନ୍ତ ମୂଢ଼ ଓ ପୂରା ନାସ୍ତିକ ବା ପଶୁପକ୍ଷ୍ୟାଦି ହୃଦୟରେ ସୁପ୍ତ ଏବଂ ସ୍ଥାବରାଦି ଜୀବରେ ମହାପ୍ରସୁପ୍ତ ଭାବରେ ନିଦ୍ରିତ ରହି-ଅଛନ୍ତି ।

ଉପରୋକ୍ତ ବିବରଣର ସମାଲୋଚନାନୁସାରେ କୁହାଯାଇପାରେ, ପରମେଶ୍ୱର ସ୍ୱରୂପତଃ ନିଜବୋଧାନନ୍ଦ ମାତ୍ର । ରୂପଗତ ଜ୍ଞାନଟି ଦୃଷ୍ଟିଭେଦରେ ଦର୍ଶନ-ସଂସ୍କାରାଧୀନ ଅଟେ । ତଦନୁସାରେ ସାକାର ନିରାକାର ସମ୍ବନ୍ଧରେ କଥା ଉଠିଥାଏ, ଅତଏବ ଦୃଷ୍ଟିଗତ ସଂସ୍କାର ଅନୁସାରେ ନିରୂପଣ କରିବାକୁ ଗଲେ କୁହାଯାଇପାରେ, ପରମେଶ୍ୱର ଏହିପରି ଯେ ସେ କାଳତ୍ରୟମୁକ୍ତ ଅର୍ଥାତ୍ ସର୍ବଦା ନିତ୍ୟ ବର୍ତ୍ତମାନ ଆଉ ତଦ୍ରୂପ ନିତ୍ୟ ବର୍ତ୍ତମାନତ୍ୱକୁ ଜ୍ଞାନାକାରରେ ବିରାଜିତ ଥାଇ ଉପଭୋଗ କରୁଅଛନ୍ତି । ପୁଣି ତଦ୍ରୂପ ଜ୍ଞାନ କେବଳ ନିଜାନନ୍ଦପୂର୍ଣ୍ଣ, ଅଥଚ ପ୍ରାକୃତ ଜ୍ଞାନପରି ନୁହେ । ଏହିପରି ରୂପ ନିର୍ଣ୍ଣୟ ଜ୍ଞାନଚକ୍ଷୁରେ ହୋଇପାରେ, ଆଉ ଯୋଗଚକ୍ଷୁରେ ସେହି ପ୍ରଭୁ ଜ୍ଞାନମୟ ଅଥଚ ସର୍ବ-ଶକ୍ତିମାନ୍ ସୁତରାଂ ସାକାର ବା ନିରାକାର ନୁହନ୍ତି; ଅଥଚ ସବୁ ପ୍ରକାର ପ୍ରାକୃତିକ ଆକାରର ଏବଂ ପ୍ରକୃତିର ମୂଳ କାରଣ ସ୍ୱରୂପ ଅଟନ୍ତି । ଅର୍ଥାତ୍ ମୋଟରେ ପ୍ରଭୁ

ସର୍ବଶକ୍ତିପୂର୍ଣ୍ଣ ଜ୍ଞାନାକାର ଆଉ ଭକ୍ତଚକ୍ଷୁରେ ସେ ସର୍ବମୟ । ସବୁରେ ତାଙ୍କର ରୂପ ପ୍ରତିଫଳିତ । ଭକ୍ତ ସହିତ ଯାହା କିଛି ଦ୍ରଷ୍ଟବ୍ୟ ବା ଜ୍ଞାତବ୍ୟ ହୁଏ, ସେ ସମସ୍ତ ତାଙ୍କର ରୂପ । ମୂଢ଼ଚକ୍ଷୁରେ ସେ ଅନିଶ୍ଚିତ ରୂପ, ଅଥବା ଯେତେବେଳେ ଯେପରି ଶୁଣାଯାଏ ସେହି ଅନୁସାରେ ତାଙ୍କର ରୂପ ହୋଇପାରେ । ଏପରି ନାସ୍ତିକବାଦାନୁସାରେ ପରମେଶ୍ୱର ନାହାନ୍ତି ବୋଲି ଯାହା କୁହାଯାଏ, ତାହା ମୋହର ଜିହ୍ୱା ନାହିଁ ବୋଲି ବକ୍ତାର ଯେଉଁ ଅଭିମତ, ସେହିପରି ଅଟେ । ଅଥବା ମୁଁ ନିଜେ ଏଠାରେ ନାହିଁ ବୋଲି ଯେ କହେ, ତାହାର ନିଜର ଅସ୍ତିତ୍ୱ ସମ୍ବନ୍ଧରେ ତାହାର ଯେପରି ଜ୍ଞାନ, ପରମେଶ୍ୱର ସମ୍ବନ୍ଧରେ ଠିକ୍ ସେହିପରି ସେ ମନ୍ତବ୍ୟ ପ୍ରକାଶ କରେ । ଅତଏବ ପ୍ରତ୍ୟକ୍ଷ ବସ୍ତୁରେ ସନ୍ଦେହ କଲେ ସେ ତର୍କର ସୀମା ନାହିଁ । ଯାହାହେଉ ଏତିକରେ ନାସ୍ତିକ-ବାଦର ଉତ୍ତର ଶେଷ କରାଯାଇପାରେ ।

ସେହି ମନବଚନାତୀତ ଅହଂବୋଧମାତ୍ର ବିଗ୍ରହଧାରୀ ମହାପୁରୁଷଙ୍କୁ ଏଠାରେ ସାକାର ନିରାକାରବାଦ ଏବଂ ନାସ୍ତିକବାଦ, ଜଡ଼ବାଦ ଓ ଆସ୍ତିକବାଦାଦି ସବୁ ବାଦମାନେ ନିର୍ବିବାଦରେ ପ୍ରମାଣ ଦେଇ ବିଶ୍ରାମ କରିବାକୁ ଆଜ୍ଞା ମାଗୁଅଛନ୍ତି । ଉପାସନାଦି ସମ୍ବନ୍ଧରେ ପ୍ରଭୁ ପରମାତ୍ମା ନିରାକାରବାଦ ପକ୍ଷରେ ଆତ୍ମଲୟ ଯୋଗଦ୍ୱାରା ଅଦ୍ୱୈତ ପରଂବ୍ରହ୍ମରୂପେ ଏବଂ ସାକାରବାଦ ପକ୍ଷରେ ଭକ୍ତିପୂର୍ଣ୍ଣ ଭାବ ଓ କର୍ମାଦି ସମର୍ପଣ କରିବାଦ୍ୱାରା ସର୍ବୈଶ୍ୱର୍ଯ୍ୟଶାଳୀ ଭଗବାନ ପରମେଶ୍ୱର ରୂପରେ ଉପାସ୍ୟ ଆଉ ନାସ୍ତିକବାଦ ପକ୍ଷରେ ଦୈହିକ ସୁଖସମ୍ଭୋଗଯୁକ୍ତ ନୈତିକତା ଦ୍ୱାରା ଦେହାତ୍ମଦର୍ଶୀ ଭୌତିକାକାରରେ ଉପାସିତବ୍ୟ ହୋଇ ନିତ୍ୟ ବିରାଜମାନ ରହିଅଛନ୍ତି ।

ଏହି ପରମେଶ୍ୱର ପରିବ୍ୟାପ୍ତ ଓ ତଦଧିଷ୍ଠିତ ଏହି ଦୃଶ୍ୟମାନ ପ୍ରକୃତିନିର୍ମିତ ବିକାରମୟ ଭୌତିକ ସଂସାର ମଧ୍ୟରେ ଏହି ଜୀବାତ୍ମାର ସ୍ଥାୟିତ୍ୱ ଅଳ୍ପକାଳ ପରିମିତ ଅଟେ, ମାତ୍ର ଦୁଃଖର ସହିତ ଚିନ୍ତାର ବିଷୟ ଏହି ଯେ ଏଥିରେ ବଡ଼ ଅବିଚାର, ଅନାଚାର, ସ୍ୱେଚ୍ଛାଚାର, ମଧ୍ୟ ବହୁବହୁବିଧ ସୁଖ, ଦୁଃଖ ତାପାଦି ଏବଂ ଅକାଳ ମରଣାଦି ଦ୍ୱାରା ଦୁଃଖ-ତାପପୂର୍ଣ୍ଣ ଅସହନୀୟ ପ୍ରିୟ ବିଯୋଗାଦି ବର୍ଣ୍ଣନାତୀତ ଯନ୍ତ୍ରଣାଦାୟକ ପୈଶାଚିକ କାଳ ନର୍ତ୍ତନରେ ଏହି ଜୀବନଚୟଙ୍କୁ ସର୍ବଦା ନିଷ୍ପେଷିତ ହେଉଥିବାର ଦେଖାଯାଏ । ଅଧିକନ୍ତୁ ସ୍ଥଳବିଶେଷରେ ସାଧୁ ବା ସତ୍ଲୋକର ସଂସାରୀୟ ଅସହ୍ୟ ତାପଭୋଗ ଓ ଦୁଷ୍କୃତର ସୁଖକୋଳାହଳ ପ୍ରଭୃତି ବିପରୀତ ପରିଣାମ ଇତ୍ୟାଦି ଦେଖି ଦେଖି ମନେ କରାଯାଇଥାଏ ଯେ ତେବେ କଣ ଏ ସଂସାର ବିଚାର ଓ ଅବିଚାରାଦିଶୂନ୍ୟ ଗତିରେ ଅନିର୍ଦ୍ଦିଷ୍ଟ ପନ୍ଥା ଅବଲମ୍ବନ କରି ଅନ୍ଧର ଅସହାୟ ଅନ୍ଧକାରମୟ ପଥ ପରିଭ୍ରମଣ ପରି ଅବାରିତ ପ୍ରବାହାକାରରେ ଗତି କରି ଚାଲିଅଛି ? କେତେକ ସ୍ଥଳେ କର୍ମାନୁସାରେ ମଧ୍ୟ ଫଳ ଭୋଗ ହୋଇଥାଏ, ଆଉ କେତେ କେତେ ସ୍ଥଳରେ ବିପରୀତ ମଧ୍ୟ ଘଟିଥାଏ; ପୁଣି କେଉଁ କେଉଁ ଠାରେ ଅନିର୍ଦ୍ଦିଷ୍ଟ ଅଜ୍ଞାତ ଭାବରେ ଆକସ୍ମିକ ଫଳାଦି

ସଂଘଟିତ ହୋଇଥାଏ । ଏ ସବୁର ମୀମାଂସିତ କାରଣ କଣ ? ତେବେ ସ୍ଥୂଳତଃ କର୍ମାନୁଯାୟୀ ଫଳର ନିର୍ଦ୍ଦିଷ୍ଟ ଆଶା ଥିବାରୁ ମାନବ ସମାଜ, କର୍ମର ପନ୍ଥା ନିର୍ଦ୍ଦେଶ କରି ତଦନୁବର୍ତ୍ତୀ ହୋଇଥିବାର ନିୟମାବଦ୍ଧ ହୋଇଅଛି । ମୋଟ ଉପରେ କର୍ମାଦିର ଫଳ ନିର୍ଦ୍ଦିଷ୍ଟ ପୁଣି ଅନିର୍ଦ୍ଦିଷ୍ଟ ଅଥବା ଉଭୟବିଧ ମିଶ୍ରପ୍ରକାରର ବା ଆକସ୍ମିକ ଭାବର ବୋଲି ଦେଖାଯାଇଥାଏ । ସୁତରାଂ ଏହି କ୍ଷେତ୍ରରେ ସନ୍ଦେହ ହୁଏ ଯେ କର୍ମ ଏବଂ ଫଳଭୋଗାଦି ସମ୍ବନ୍ଧେ, ଜୀବ ସ୍ୱୟଂ କର୍ତ୍ତା ବା ଦାୟୀ, ଅଥବା ପରମେଶ୍ୱର ଏଥିର କର୍ତ୍ତା ବା କରାଉଅଛନ୍ତି ? କିମ୍ବା ପ୍ରକୃତିଗତ ନିୟମରେ ଅଥବା ଦୈବପ୍ରଭାବବଶତଃ ଏହି ଜୀବପ୍ରବାହ ସମ୍ବନ୍ଧୀୟ କର୍ମ ବା ଫଳ ନିୟନ୍ତ୍ରିତ ହୁଏ ? ଅଥବା କର୍ତ୍ତା-କର୍ମ ଏବଂ ଫଳଭୋଗାଦି ଅନିର୍ଦ୍ଦିଷ୍ଟ ବସ୍ତୁବିଶେଷ କିମ୍ବା କାକତାଳୀୟ ନ୍ୟାୟରେ ବା ସ୍ୱପ୍ନପରି ଅବା ମୃଗତୃଷ୍ଣା ଭଳି ଏ ସବୁରେ କାହାର ହିଁ ହସ୍ତ ନାହିଁ ? ତେବେ ଏ ସଂସାର କଣ ? କି ଉଦ୍ଦେଶ୍ୟରେ ଏହାର ଅବସ୍ଥିତି ବା ସୃଷ୍ଟି ? ଏ ସନ୍ଦେହ ସର୍ବଦା ବିଦ୍ୟମାନ ଥିବାର କଥା । ଏ ହେତୁ ଏହାର କିଞ୍ଚିତ ଆଲୋଚନା ଏଠାରେ ହେଉଅଛି ।

ଏ ସ୍ଥଳେ ପ୍ରଥମତଃ କର୍ମର ସଂଜ୍ଞା ବା ସ୍ୱରୂପ ନିର୍ଣ୍ଣୀତ ହେଲେ ପରେ କର୍ତ୍ତା ଏବଂ ଫଳ ପ୍ରଭୃତି ବୁଝି ପାରିବା ସହଜସାଧ୍ୟ ହେବ । ପ୍ରଥମତଃ, କର୍ମ ପୁଣ୍ୟାତ୍ମକ ବା ସତ୍ ଅଥବା ଅବଶ୍ୟ କର୍ତ୍ତବ୍ୟ କର୍ମ । ଦ୍ୱିତୀୟତଃ, ପାପାତ୍ମକ ବା ଅସତ୍ କର୍ମ ଯାହା ଦୂଷଣୀୟ । ତୃତୀୟତଃ, ଦୋଷାଦୋଷବର୍ଜିତ ଅନୁଭୟ ପ୍ରକାର । ଚତୁର୍ଥତଃ, ପୁଣ୍ୟପାପମିଶ୍ରିତ— ଏହି ଚାରି ପ୍ରକାରର ଅଟେ । ଏହା ପୁଣି ସକାମ ବା ନିଷ୍କାମ ଭେଦରେ ମୋଟରେ ଦୁଇ ପ୍ରକାର । ଏ ସବୁ ପ୍ରକାର କର୍ମ କାୟିକ, ମାନସିକ ଓ ବାଚନିକ ଇତ୍ୟାଦି ତିନି ପ୍ରକାର ।

୧ମ ପ୍ରକାର—ସଦ୍ଭାବେ ଆତ୍ମରକ୍ଷା, ଆତ୍ମୀୟପାଳନ, ପରୋପକାର ପ୍ରଭୃତି ଆଉ ପରମେଶ୍ୱର ଅର୍ଥରେ ଆତ୍ମଜ୍ଞାନ ସମ୍ପାଦନ ସମ୍ବନ୍ଧୀୟ ସନ୍ନିଷ୍ଠା ଓ ଇଷ୍ଟକର୍ମାଦି ଅଟେ; ୨ୟ ପ୍ରକାର—ଅସଦ୍ଭାବେ ଆପଣାର, ଆତ୍ମୀୟବର୍ଗର ବା ସଂସାରର ଦୁଃଖ-ଜନକ ଦୁଷ୍ଟାଚରଣ ଅଥଚ ଈଶ୍ୱରାଜ୍ଞାଲଙ୍ଘନ ରୂପ ଅଧର୍ମ ଓ ଅନ୍ୟାୟ କର୍ମାଦି ବୁଝାଯାଏ; ୩ୟ ପ୍ରକାର—କେବଳ ଆମୋଦଜନକ କୁଭାବଶୂନ୍ୟ କ୍ରୀଡ଼ାକୌତୁକ ଓ ସଦାଳାପାଦି; ଏବଂ ୪ର୍ଥ ପ୍ରକାର—କୌଣସି ଦୋଷୀ ବା ଅନ୍ୟାୟୀର ଦୋଷାଦି କ୍ଷାଳନ ବା ପ୍ରାୟଶ୍ଚିତ୍ତ ଅର୍ଥରେ ତାହା ପ୍ରତି ଯେଉଁ ବ୍ୟବସ୍ଥାଦି ଯଦି ମାତ୍ରାଧିକ୍ୟ ପରିମାଣରେ ବା ଅଯୁକ୍ତ ଭାବରେ କରାଯାଏ, ତେବେ ତଦ୍ରୂପ ବ୍ୟବସ୍ଥାଧୀନ କର୍ମାଦି ସେହି ଦୋଷୀ ପ୍ରତି ଶାସନାଦି ସମ୍ବନ୍ଧରେ ପୁଣ୍ୟାତ୍ମକ ଆଉ ମାତ୍ରାଧିକ୍ୟ ପ୍ରଭୃତି ତାହା ପ୍ରତି ଅନୁଚିତ ଅତିରିକ୍ତ ଦୁଃଖାଦିଜନକ ଅଟେ ବୋଲି ଦୋଷାବହ—ଏହିରୂପେ ଏବଂବିଧ କର୍ମ ପୁଣ୍ୟ ଓ ପାପ ଉଭୟ ମିଶ୍ରିତ ପ୍ରକାରର ଅନ୍ତର୍ଗତ ଅଟେ । ଏସବୁ କର୍ମରେ ସକାମତା ଏବଂ ନୈଷ୍କାମ୍ୟର ମଧ୍ୟ ସମ୍ପର୍କ ରହିଅଛି । ଏପରି (୧) ଯେଉଁ କର୍ମରେ ସମଧିକ ପରିମାଣରେ ଦେହର କାର୍ଯ୍ୟକାରିତା ଆବଶ୍ୟକ, ତାହା ଦୈହିକ; (୨) ଆଉ ଯେଉଁ କର୍ମ କେବଳ

ମନଦ୍ୱାରା କର୍ମ କରାଯାଏ, ଅର୍ଥାତ୍ ଧୀର-ଗମ୍ଭୀର ଚିନ୍ତନାଦି, ତାହା ମାନସିକ; ଆଉ (୩) ଯାହା ବାଗିନ୍ଦ୍ରିୟ ଦ୍ୱାରା କରାଯାଏ ଅର୍ଥାତ୍ କଥନ ଓ ଗାନାଦି, ତାହା ବାଚନିକ କର୍ମ ଅଟେ । ଏବେ ଏହି ସବୁ କର୍ମର ଯେ ଯେ କର୍ତ୍ତା ଦେଖାଯାଉ । (୧) ଦେହ ବା ଦେହାକାର (୨) ପ୍ରାଣ (୩) ଇନ୍ଦ୍ରିୟାଦି (୪) ମନ (୫) ଅହଂକାରବୃତ୍ତି (୬) ଉଦ୍ଦିଷ୍ଟ କର୍ତ୍ତବ୍ୟାଦିସମ୍ବନ୍ଧ ନିଶ୍ଚୟାତ୍ମିକାବୁଦ୍ଧିସମ୍ପନ୍ନ ବିବେକ—ଏହି ଛଅଟି ପୃଥକ୍ ଭାବେ ଅଥଚ ପରସ୍ପର ସାହାଯ୍ୟରେ ବା ସାପେକ୍ଷରେ ମୁଖ୍ୟ କର୍ତ୍ତା । ଏତଦ୍ଦ୍ୱାରା ଜୀବର ଉଦ୍ଦେଶ୍ୟ କର୍ମପଥରେ ପ୍ରବର୍ତ୍ତିତ ହୁଏ । ଏପର ସହାୟକ କର୍ତ୍ତା (୧) ସ୍ଥୂଳ ବାହ୍ୟ ପ୍ରକୃତି ବା କର୍ମଭୂମ୍ୟାଦି (୨) କର୍ମବ୍ୟାପକ କାଳ (୩) ପାରିପାର୍ଶ୍ୱିକ ଅବସ୍ଥାଦି; ଏତଦ୍‌ବ୍ୟତୀତ (୧) ପୂର୍ବସଞ୍ଚିତ କର୍ମସଂସ୍କାର ସମଷ୍ଟ୍ୟାତ୍ମକ ପିଣ୍ଡ ବା ପ୍ରାରବ୍ଧ ଅଥବା ଦୈବ ଏବଂ (୨) ନିୟତି; ଏହି ଦୁଇଟି ବଧାତୃ ବା ନିୟଂତୃ ଅଥବା ନିୟାମକ କର୍ତ୍ତା—ଏହିରୂପେ ଏକାଦଶସଂଖ୍ୟକ କର୍ତ୍ତା, କର୍ମ ଏବଂ ଫଳର ଘଟକ ।

ଏହିରୂପେ ପ୍ରଥମୋକ୍ତ ଦେହଠାରୁ ବିବେକାଦି ପର୍ଯ୍ୟନ୍ତ ଛଅଗୋଟି ମୁଖ୍ୟ କର୍ତ୍ତା ମଧ୍ୟରୁ ଗୋଟିକର ଅଭାବରେ କର୍ମ କରାଯିବା ଦୁଷ୍କର ଅଟେ । ପୁଣି ଉକ୍ତ ଛଅଟି ମଧ୍ୟରୁ ଯେ କୌଣସି ଗୋଟିକଦ୍ୱାରା କର୍ମ ନିଷ୍ପାଦନ ସମ୍ବନ୍ଧରେ ଯେଉଁରୂପ କାର୍ଯ୍ୟକାରିତା କାର୍ଯ୍ୟତଃ ଏକାନ୍ତ ଆବଶ୍ୟକ, ତାହାର ଅପଟୁତା ଦୋଷରେ ତାହାରଦ୍ୱାରା ତଦ୍ରୂପ କାର୍ଯ୍ୟକାରିତା ପୂର୍ଣ୍ଣରୂପେ ସାଧିତ ବା ସମ୍ପାଦିତ ନ ହେଲେ ତଦ୍ରୂପ ତ୍ରୁଟିର ପରିମାଣ ତୁଳନାରେ କାର୍ଯ୍ୟର ପୂର୍ଣ୍ଣାଙ୍ଗ ସଂଘଟିତ ହେବା ପ୍ରତି ଯଥାପରିମିତ ତ୍ରୁଟି ବା ଅପୂର୍ଣ୍ଣତା ନିଶ୍ଚୟ ସଂଘଟିତ ହେବ । ଏପର ଏକାଧିକର ତ୍ରୁଟିର ପରିମାଣାନୁସାରେ କର୍ମସଂଘଟନର ତ୍ରୁଟିର ପରିମାଣ ମଧ୍ୟ ତଦନୁରୂପ ହେବ । ଏ ଉତ୍ତାରୁ ସହାୟକ କର୍ତ୍ତା ତିନୋଟିର ମଧ୍ୟରୁ ଗୋଟିକର ବା ଏକାଧିକର ଅନୁକୂଳତା ବା ପ୍ରତିକୂଳତା ଅନୁସାରେ କର୍ମର ଯାଥାର୍ଥ୍ୟ ବା ରୂପାନ୍ତର କି ପ୍ରକାରାନ୍ତର ଘଟିପାରିବ । ଶେଷରେ ପ୍ରାରବ୍ଧ ବା ଦୈବ ଏବଂ ନିୟତି—ଏତଦ୍ଦ୍ୱାରା କର୍ମ, କର୍ମଫଳସିଦ୍ଧି ଏବଂ ଫଳଭୋଗାଦି ଯେ ପ୍ରଥମ ଉଦ୍ଦିଷ୍ଟ କର୍ମ ଏବଂ ଫଳଭୋଗଠାରୁ କେତେଦୂରନ୍ତର ବା କି ପ୍ରକାରରେ ଦଣ୍ଡାୟମାନ ହେବ, ତାହା ସଂସାରୀୟ ସ୍ଥୂଳବୁଦ୍ଧିର ଏକପ୍ରକାର ଅଗମ୍ୟ କହିଲେ ମଧ୍ୟ ଚଳିପାରେ । ଯାହାହେଉ ଅଷ୍ଟବଜ୍ର ପ୍ରବାଳରେ ମାଳ ଗ୍ରଥିତ ହେଲପର ଏତଦ୍ଦ୍ୱାରା ହିତ ସଂସାରୀୟ କର୍ମାଦି ଗ୍ରନ୍ଥିତ ହେଉଅଛି ।

ଏହି ଏହି କର୍ତ୍ତାବାଚକ ବସ୍ତୁମାନଙ୍କର ମଧ୍ୟରେ ପ୍ରତ୍ୟେକ ପ୍ରତ୍ୟେକଟିର ନିଜ ନିଜ କର୍ତ୍ତୃତ୍ୱାଂଶଟି ମାନ ଏଭଳି ଶୀଘ୍ରତମ ଦ୍ରୁତ ଗତିରେ ଅଲକ୍ଷିତ ଭାବେ ସାଧିତ ହୋଇ ଯାଉଅଛି ଯେ, ସେହି ସମସ୍ତଯାକ ଦ୍ୱାରା (ବହୁସଂଖ୍ୟକ କୋମଳପତ୍ରରେ ସୂଚ୍ୟଗ୍ରଭେଦନ ଏକକାଳରେ ସମାପନ ହେବା ଜଣା ଯାଉଥିବା ପରି) ଏକକାଳରେ କର୍ମଟି ସୁସିଦ୍ଧ ହୋଇଗଲପ୍ରାୟ ବୋଧହୁଏ । ସୁତରାଂ ତଦ୍ରୂପ ସୁସିଦ୍ଧ କର୍ମର କର୍ତ୍ତା, ସେମାନଙ୍କର ସମଷ୍ଟି ଫଳରୁ ଏକ ବୋଲି କାର୍ଯ୍ୟତଃ ସ୍ଥିର କରାଯାଏ ।

ଏଠାରେ ଏହି ପର୍ଯ୍ୟନ୍ତ ପ୍ରଦର୍ଶିତ ହେଲା ଯେ, ଉପରୋକ୍ତ ଦେହଠାରୁ ନିୟତି ପର୍ଯ୍ୟନ୍ତକୁ ମିଶାଇ ଏକାଦଶଟି ପଦାର୍ଥର ସମଷ୍ଟି ଫଳ ଗୋଟିଏ ମାତ୍ର ମିଶ୍ରବସ୍ତୁ ଆକାରରେ ପ୍ରକାଶିତ ହେଉଅଛି ଏବଂ ତାହାହିଁ କର୍ମାଦିର କର୍ତ୍ତା ଆଉ ଫଳାଦିର ଭୋଗ-ପ୍ରଦାତାରୂପେ ଲକ୍ଷିତ ହେଉଅଛି । ଏହିରୂପେ ଏକ ଏକ ସାଧିତ କର୍ମର ଫଳ ଯେପରି ପ୍ରଥମରେ ପ୍ରାପ୍ତ ହୁଏ ଏବଂ ପରେ ଯଥା ସମୟରେ ସେପରି ଭୋଗ ହୋଇଥାଏ, ଅର୍ଥାତ୍ କର୍ମ ପ୍ରଥମ ଆଉ ଦ୍ୱିତୀୟରେ କର୍ମସିଦ୍ଧି, ତୃତୀୟରେ କର୍ମଫଳଲାଭ ଏବଂ ଚତୁର୍ଥରେ ଭୋଗ । ପ୍ରଥମ କର୍ମାରମ୍ଭ ପରେ କେତେ ସମୟ ଅତିବାହିତ ହେଲାରୁ ସେହି କର୍ମ ସିଦ୍ଧିରେ ପରିଣତ ହୁଏ ବା ସିଦ୍ଧିଲାଭ କରେ; ପୁଣି ସିଦ୍ଧିଲାଭ ଉତ୍ତାରୁ ଫଳଲାଭ କେତେ ବିଳମ୍ବରେ ଘଟେ, ଆଉ ଫଳଲାଭ ହେବାଠାରୁ କେତେ ସମୟ ଅନ୍ତେ ଫଳଭୋଗର ବ୍ୟବସ୍ଥା ହୁଏ । ଏ ସବୁର ସମୟ ନିରୂପଣ, ପ୍ରଥମୋଦ୍ଦିଷ୍ଟ କର୍ମର ଆକାର-ପ୍ରକାର ଏବଂ ଗୁରୁତ୍ୱ-ଲଘୁତ୍ୱାନୁଯାୟୀ ସଂଘଟିତ ହୋଇଥାଏ । ଏହିରୂପେ ଆଗ କର୍ମ ଏବଂ ପରେ କର୍ମଫଳ-ଭୋଗ, ଏହି ନିୟମରେ ଏହି ଦେହରେ ପୂର୍ବକୃତ କର୍ମସମୂହର ସମଷ୍ଟି କର୍ମସଂସ୍କାର ରୂପରେ ଏବଂ ଫଳଭୋଗର ସମଷ୍ଟି ବାସନା ଆକାରରେ ଏକାଠି ମିଶି ଭବିଷ୍ୟତ କୁକର୍ମ-ଭୋଗପୂର୍ତ୍ତି ଭଣ୍ଡାର ରୂପେ ଜୀବାତ୍ମା ପାଇଁ ଗଚ୍ଛିତ ହୋଇ ରହନ୍ତି । ପୁଣି ଏହି ଭଣ୍ଡାରରେ ଗଚ୍ଛିତ ଥିବା ପୂର୍ବ କର୍ମର ଫଳଭୋଗ ଶେଷ ନ ହେଉଁ ଏହି ଦେହର ପତନରେ ବା ଅନ୍ୟ କାରଣରେ ଯଦି ସେହି ଫଳଭୋଗ ଅବଶିଷ୍ଟ ରହିଯାଏ, ତେବେ ତାହା ପରେ ଭୋଗ ହେବା ସୁନିଶ୍ଚିତ ଥିବାରୁ ତାହାହିଁ ପୁଣି ପରକାଳକୁ ଏବଂ ଦେହାନ୍ତରକୁ ଭୋଗ୍ୟରୂପେ ନିୟତି ଦ୍ୱାରା ନିର୍ଦ୍ଦିଷ୍ଟ ହୋଇ ସଞ୍ଚିତ ବା ପ୍ରାରବ୍ଧ କର୍ମ ନାମରେ ଅଭିହିତ ହୁଏ । ପୁଣି ଏହି ପ୍ରାରବ୍ଧ କର୍ମଫଳଭୋଗର ପ୍ରଦାତାରୂପେ ଦୈବକୁ ସ୍ୱୀକାର କରିଯାଏ । ଏହିରୂପେ ଜୀବକ କର୍ମର ଫଳ ପର ପର ସମୟରେ ଭୋଗ ହେବା ନିୟମ ଥିବା ସତ୍ତ୍ୱେ ଏହି ଦେହରେ ଜୀବକ ସମୁଦାୟ କର୍ମର ଫଳ ଭୋଗ ଶେଷ ହୋଇ ନ ପାରିଲେ ତାହା ଯେପରି ପରଜନ୍ମକୁ ଭୋଗ ହେବା ନିମିତ୍ତ ଗଚ୍ଛିତ ରହିବା ସୁନିଶ୍ଚିତ, ସେହିପରି ଜୀବକର ପୂର୍ବ ପୂର୍ବ ଜନ୍ମର କର୍ମଫଳମାନ କେତେ କେତେ ଯେ କ୍ରମେ କ୍ରମେ ଭୋଗରୁ ଅବଶିଷ୍ଟ ରହି ରହି ଏ ପର୍ଯ୍ୟନ୍ତ ଏକ ଜମାଟ ବାନ୍ଧି ପୁଣି ଜୀବକ ବାକି କର୍ମଫଳ ସଙ୍ଗେ ମିଶି କିପରି ସଞ୍ଚିତ କର୍ମଫଳଭୋଗଭଣ୍ଡାର ବା ପ୍ରାରବ୍ଧ ବା ଦୈବର ନୂତନାକାରର ସୃଷ୍ଟି କଲଣି, ତାହାର ହିସାବ ଯେ ରଖିଅଛି, ତାହାର ନାମ ନିୟତି । ଏହିରୂପେ ଦୈବ ଏବଂ ନିୟତିର ଅସ୍ତିତ୍ୱ ଏଠାରେ ପ୍ରମାଣ କରାଗଲା ।

ଏକାଦଶଟି କର୍ତ୍ତା ମଧ୍ୟରୁ (୧) ଦେହଠାରୁ ପୂର୍ବଲିଖିତ ମତେ (୯) ପାରିପାର୍ଶ୍ୱିକ ଅବସ୍ଥା ପର୍ଯ୍ୟନ୍ତ ନଅଟିର ଅସ୍ତିତ୍ୱ ସହଜେ ଦେଖାଯାଉଅଛି । ଏଥିସଙ୍ଗେ ଥିବା ଶେଷୋକ୍ତ ଦୁଇଟି ଅର୍ଥାତ୍ ପ୍ରାରବ୍ଧ ଏବଂ ନିୟତି ଏ ଦୁଇଟିର ଅସ୍ତିତ୍ୱ ସ୍ୱୀକାର କରିବାକୁ ସାଧାରଣରେ ସହଜବୋଧ ହେବା ନିମିତ୍ତ ଏହି ପ୍ରବନ୍ଧଟିର ଅବତାରଣା ଏଠାରେ

ଜଗତଙ୍କ । ଏହିରୂପେ ଦେହଠାରୁ ନିୟତି ପର୍ଯ୍ୟନ୍ତ ଏକାଦଶଗୋଟି ପଦାର୍ଥର ସମଷ୍ଟିରେ ଯେଉଁ ମିଶ୍ରଫଳୋଦୟ ହେଲା ଏଠାରେ ତାହାର ନାମ ଜୀବୋପାଧି । ଏହାହିଁ ସ୍ଥୂଳତଃ କର୍ତ୍ତବ୍ୟଭୋଗପ୍ରଦାତା ନାମରେ ଖ୍ୟାତ । ଏହି ଜୀବୋପାଧିସ୍ଥିତ ଦେହଠାରୁ ପାରିପାର୍ଶ୍ୱିକ ଅବସ୍ଥା ପର୍ଯ୍ୟନ୍ତ ନଅଗୋଟି ମଧ୍ୟରୁ ଗୋଟିକର ବା ଏକାଧିକର ଅଥବା ସମସ୍ତଙ୍କର ଆନୁକୂଲ୍ୟ ଏବଂ ପ୍ରତିକୂଳତାର ପରିମାଣାନୁସାରେ କର୍ମର ଯଥାପରିମିତ ସିଦ୍ଧି ବା ଅସିଦ୍ଧି ନିର୍ଣ୍ଣୀତ ହୁଏ; ପୁଣି ତଦ୍ରୂପ ନିର୍ଣ୍ଣୀତ ସିଦ୍ଧାସିଦ୍ଧ କର୍ମାନୁସାରେ କର୍ମର ଫଳଲାଭ ଯଥା ଯଥା ପରିମାଣେ ସମ୍ପାଦିତ ହୋଇଥାଏ । ପୁଣି ଏହି କର୍ମସିଦ୍ଧି ଓ ଫଳସିଦ୍ଧିର ଲାଭର ଦାନ ଉପରେ ଦୈବର ସମ୍ପୂର୍ଣ୍ଣ ଅଧିକାର ଆଉ ଏହି ଦତ୍ତଫଳାଦିର ଭୋଗ ସମ୍ବନ୍ଧେ ନିୟତି ଅର୍ଥାତ୍ କାଳର ନିୟାମକ ରୂପ ଈଶ୍ୱରୀୟ କାଳଚକ୍ରର ସମ୍ପୂର୍ଣ୍ଣ ସର୍ବାଧିକାର ଅଟେ ।

ଉପରିବର୍ଣ୍ଣିତ ମତେ ସିଦ୍ଧ କର୍ମ ଓ ଫଳଲାଭ ହେବାପରେ ତାହା ଦୈବହସ୍ତାଧୀନ ରହେ । ସେ ତାହା ନିଜ ବିଚାରର ଫଳାନୁସାରେ ପ୍ରଦାନ କରେ, ମାତ୍ର ଉକ୍ତ ଦତ୍ତଫଳର ଭୋଗସମାପ୍ତି ନିୟତିର ଅମୋଘ ହସ୍ତରେ ନିହିତ । ସେହି କାଳ ନିୟମୀ, ପ୍ରାରବ୍ଧ ବା ଦୈବର ପଞ୍ଜିକାସ୍ଥିତ ପୂର୍ବ ସଞ୍ଚିତ ଭଣ୍ଡାରର ସମସ୍ତ ତଥ୍ୟ ସହିତ ଭବିଷ୍ୟୋପଯୋଗୀ ମଙ୍ଗଳାମଙ୍ଗଳ ସୂଚକ ଫଳାଦିକୁ ଗଣନାଦ୍ୱାରା ସ୍ଥିର କରି ତଦୀୟ ସମୁଚିତ ସିଦ୍ଧାନ୍ତାନୁ-ସାରେ ତଦ୍ରୂପ ଦୈବଦତ୍ତ ଫଳକୁ ଭୋଗାଇପାରେ, ଅଥବା ନ ଭୋଗାଇପାରେ; ନତୁବା ଯେ କୌଣସି ପରିବର୍ତ୍ତନୀୟ ଭାବେ ପ୍ରକାରାନ୍ତରରେ ଭୋଗାଭୋଗ କରାଇପାରେ । ଏହି ଭୋଗାଦିର ସମସ୍ତ ନିର୍ଣ୍ଣୟ ସେହି ନିୟତିର ହସ୍ତନିହିତ ।

ଉପର ପ୍ରଦର୍ଶିତ ଜୀବୋପାଧିସ୍ଥିତ-ଦେହାତ୍ମ ବାସନାରୁ କର୍ତ୍ତୃତ୍ୱ-ଭୋକ୍ତୃତ୍ୱାଭିମାନ ଜାତ ହେଉଅଛି । ଏହି ଅଭିମାନରୁ ଅହଂକାରାତ୍ମକ ସକାମ କର୍ମ ଏବଂ ଭୋଗସାଧନ ନିମିତ୍ତ ମନ, ଅନବରତ କର୍ମଭୋଗମୟ ହୋଇ ସର୍ବଦା ସେହି କର୍ମଭୋଗାତ୍ମକ ବିଷୟାଦିକୁ ମନନ କରୁଅଛି । ପୁଣି ସାଧୀୟାଙ୍କର ନ୍ୟାୟରେ ଏତଦ୍ଦ୍ୱାରା ସେହି କର୍ମ-ଭୋଗାତ୍ମକ ମନନ ପୁନଃ ପୁନଃ ଅଭ୍ୟାସବଶତଃ କାମନାରେ ପରିଣତ ହୋଇ ଅହଂକାରକୁ କାମନାମୟ ଆକାରରେ ସକାମ କରି ଦେଉଅଛି । ପୁଣି ଏହି ସକାମ ଅହଂକାର, କର୍ମ-ଭୋଗାତ୍ମକରୂପେ ପୁନଃ ପୁନଃ (ଅଭ୍ୟାସବଶରୁ) ଅଭ୍ୟସ୍ତ ହୋଇ କର୍ତ୍ତୃତ୍ୱ-ଭୋକ୍ତୃତ୍ୱାଭିମାନରେ ପରିଣତ ହେଉଅଛି । ଏହି ଅଭିମାନ ସର୍ବଦା ଜାଗରୂକ ରହି ଦେହାତ୍ମବାସନାରେ ମିଶି ତତ୍ସହିତ ଅଭେଦତାପ୍ରାପ୍ତ ହୋଇ ଉକ୍ତ ବାସନାକୁ ପରିପୁଷ୍ଟ କରୁଅଛି । ଏତଦ୍ରୂପ ଦେହାତ୍ମବାସନା, ଜୀବୋପାଧିରେ ମିଶି ଅଭେଦାଙ୍ଗ ପ୍ରାପ୍ତହୋଇ ଜୀବୋପାଧିକୁ ସଜାଗ୍ରତ, ସବଳ ଓ ସତେଜ ଭାବେ ଜୀବିତ କରି ରଖିଅଛି । ଏହିରୂପେ ଜୀବୋପାଧିବିଶିଷ୍ଟ ଜୀବାତ୍ମାର ଉକ୍ତ ଉପାଧି, କସ୍ମିନ୍ ସମୟେ କଦାଚିତ୍ କୌଣସି ପ୍ରକାରରେ ଆତ୍ମାରୁ ପୃଥକ୍ ହେଉନାହିଁ ବା ହୋଇନାହିଁ । ଏହିରୂପେ ଏହି ଜୀବୋପାଧି, କର୍ମ ଏବଂ ଭୋଗର ହେତୁ ଅଟେ, ଆଉ ସେହିପରି କର୍ମ ଏବଂ ଭୋଗ ମଧ୍ୟ ଜୀବୋପାଧିର

ପରିପୋଷକ ପୁଷ୍ଟିଦାତା ଅଟେ । ଦେଖାଗଲା, ଶାସ୍ତ୍ରୀଙ୍କର ନ୍ୟାୟରେ ଜୀବୋପାଧି ଏବଂ କର୍ମ ଆଉ ଭୋଗ ଉଭୟ ମିଶି ଏକଯୋଗେ ପରସ୍ପର ସାପେକ୍ଷ ଅଟନ୍ତି, ଅର୍ଥାତ୍ କର୍ମଭୋଗ ଉଭୟେ ଜୀବୋପାଧିର ସାପେକ୍ଷ, ପୁଣି ଜୀବୋପାଧି ମଧ୍ୟ କର୍ମ ଓ ଭୋଗର ସାପେକ୍ଷ ଅଟେ । ଏହି ପରସ୍ପର ସାପେକ୍ଷତାବଶତଃ ଉଭୟେ ସମବାୟୀ ଅଟନ୍ତି । ପୁନଶ୍ଚ ଜୀବୋପାଧି ସହିତ ଜୀବାତ୍ମାର ସମବାୟ ସମ୍ବନ୍ଧ (ସମବାୟୀ ବସ୍ତୁମାନେ କେତେବେଳେ ହେଲେ ହେଁ ଛଡ଼ାଛଡ଼ି ନ ହେଉଥିବାରୁ ସେମାନଙ୍କ ସମ୍ବନ୍ଧର ଆଦି ନିଶ୍ଚୟ କରିବା ଅସଙ୍ଗତ) । ସେହିହେତୁ ଆତ୍ମାର ନାମ ଜୀବାତ୍ମା । ଏହି ଆତ୍ମାର ଜୀବୋପାଧି ସହିତ ଏହି ଜୀବାତ୍ମରୂପ, ଏହି ପୂର୍ବୋକ୍ତ ଶାସ୍ତ୍ରୀଙ୍କର ନ୍ୟାୟସଙ୍ଗତ ସିଦ୍ଧାନ୍ତ ଅନୁଯାୟୀ ଅନାଦି ପୂର୍ବସିଦ୍ଧ ଅଟେ । ଆଉ ତାହାର ଏହି ଜୀବୋପାଧି ମଧ୍ୟ ଅନାଦିସିଦ୍ଧ; ସୁତରାଂ ଏହି ଆତ୍ମାର ଜୀବାତ୍ମରୂପ ସହିତ (୧) ଜୀବୋପାଧି, (୨) ଦେହାତ୍ମବାସନା, (୩) କର୍ତ୍ତୃତ୍ୱ ଭୋକ୍ତୃତ୍ୱାଭିମାନ, (୪) ଅହଂକାରାତ୍ମକ ସକାମ କର୍ମଭୋଗଲିପ୍ସା ଓ (୫) କର୍ମଭୋଗାଦିର ମନନ ସହିତ କର୍ମ ଏବଂ ଭୋଗ—ଏହି ପାଞ୍ଚଟିର ସମବାୟ ସମ୍ବନ୍ଧ; ଆହୁରି ମଧ୍ୟ ଏହି ପାଞ୍ଚଟି ପରସ୍ପର ସେହି ଶାସ୍ତ୍ରୀଙ୍କର ନ୍ୟାୟରେ ସମବାୟୀ ଅଟନ୍ତି ।

ଅତଏବ ଏଠାରେ ଦେଖାଗଲା ଆତ୍ମାର ଏତଦ୍ଭୂତ ଉପସ୍ଥିତ ଏହି ଜୀବାତ୍ମରୂପ ଅନାଦିସିଦ୍ଧ ଅଟେ, ଆଉ ଜୀବାତ୍ମାର ଏହି ଜୀବୋପାଧିସୃଷ୍ଟ ଏହି ଦେହାତ୍ମବାସନାଦି ପାଞ୍ଚଟିଯାକ ପଦାର୍ଥ ମଧ୍ୟ ଜୀବାତ୍ମା ସହିତ ସମବାୟୀ ଅନାଦି ପୂର୍ବସିଦ୍ଧ ଅଟନ୍ତି । ଏଠାରେ ତ ଏହି ସ୍ଥୂଳ ଦେହର ଅଳ୍ପକାଳସ୍ଥାୟିତ୍ୱ ଦେଖାଯାଉଅଛି । ତେବେ ଆଦି ବିଶିଷ୍ଟ ସୁତରାଂ ଅନ୍ତବିଶିଷ୍ଟ ଏହି ଭୌତିକ ଜଡ଼ଦେହ ଅନାଦି ଜୀବାତ୍ମା ସଙ୍ଗେ ଅନାଦିସିଦ୍ଧ ବୋଲି କୁହାଯାଇ ପାରିବ ନାହିଁ । ସୁତରାଂ ଏହି ଜୀବାତ୍ମା, ସ୍ୱୀୟ ଜୀବୋପାଧି-ଗତ ଦେହାତ୍ମ ବାସନାଦି ଉକ୍ତ ପାଞ୍ଚଟି ପଦାର୍ଥ ସଙ୍ଗେ ଅଭେଦ ଏକାଙ୍ଗତା ଧାରଣ କରି ଅପରିଣାମୀରୂପେ ଅନାଦି କାଳରୁ ବର୍ତ୍ତମାନ ପର୍ଯ୍ୟନ୍ତ ବିରାଜିତ ରହିଅଛି; ଅଥଚ ଏହି ସବୁ ଅତୀତସୀମ କାଳ ମଧ୍ୟରେ ଅପରିଣାମୀ ଜୀବାତ୍ମା, ପରିଣାମୀ ଓ ବିକାରଗ୍ରସ୍ତ, ଆଦ୍ୟନ୍ତ ବିଶିଷ୍ଟ, ଜାତନାଶଶୀଳ, ଭୌତିକ ନାନା ପ୍ରକାର ଜଡ଼ ଦେହର ପୁନଃ ପୁନଃ ଜାତ ଏବଂ ନାଶକୁ ଦର୍ଶନ କରୁଅଛି । ଜଡ଼ ଦେହ ସ୍ଥୂଳ ଭୌତିକ ଅଟେ ବୋଲି ଏହା ଜଡ଼ ଧର୍ମାନୁସାରେ ବିକାରଗ୍ରସ୍ତତାଧୀନରେ ଉତ୍ପତ୍ତି ଏବଂ ବିନାଶ ହେଉଅଛି । ଆଉ ଜୀବୋପାଧି ସହ ଉକ୍ତ ପାଞ୍ଚ ପ୍ରକାର ପଦାର୍ଥଯୁକ୍ତ ଜୀବାତ୍ମା ସୂକ୍ଷ୍ମ ବସ୍ତୁ ଅର୍ଥାତ୍ ଆକାଶାଦିଠାରୁ ତୁଳନାରେ ସୂକ୍ଷ୍ମତମ ବସ୍ତୁ ଥିବାରୁ ଏହା ଜଡ଼ପରି ନାଶଶୀଳ ନୁହେ । ଦେହାତ୍ମ ବାସନା ବଳରେ ଜୀବାତ୍ମା ଯେପରି ମୃତକଳ୍ପ ପ୍ରସୁପ୍ତ ବା ସୁଷୁପ୍ତି ଅବସ୍ଥାପନ୍ନ ଦେହରେ ସେହି ଦଶାପରେ ପୁଣି ଜାଗ୍ରତ ହୋଇ ସଚେତ ରହିଅଛି, ସେହିପରି ଜଡ଼ ଦେହାବସାନ ପରେ ସେହି ଦେହାତ୍ମ ବାସନା ବଳରେ ପୁନଃ ନୂତନ ଦେହରେ ସେହି ଜୀବାତ୍ମା ବର୍ତ୍ତମାନର ଦେହସ୍ଥ ଅବସ୍ଥା ପରି ଦେହବାନ୍ ହୋଇ

ଆପଣାକୁ ଜ୍ଞାନ କରୁଅଛୁ । ତେବେ ଏହି ଜଡ଼ଦେହର ଜନ୍ମ ସଙ୍ଗେ ଜୀବାତ୍ମା, ଯେପରି ଯେଉଁଠାରୁ ଯେଉଁ ଅବସ୍ଥାରେ ଯୋଗ ହୋଇଅଛୁ, ଆଉ ଏହାକୁ ତ୍ୟାଗ କରି ପରେ ଯେପରି ନୂତନ ଦେହ ଧାରଣ କରୁଅଛୁ, ତାହାର ବିବରଣ ପୂର୍ବେ ଲେଖା ଯାଇଅଛୁ । ଅତଏବ ଏଠାରେ ଜୀବାତ୍ମାର ଆଉ ଜୀବୋପାଧିଠାରୁ କର୍ମଭୋଗାଦି ପର୍ଯ୍ୟନ୍ତର ଅନାଦି-ସିଦ୍ଧତା ନିରୂପିତ ହେଲା । ଏହି ଜୀବାତ୍ମାର ଏହି ଜୀବୋପାଧି ବିନଷ୍ଟ ନ ହେବାଯାଏ (ଏହି ନାଶ, ରଜ୍ଜୁରେ ସର୍ପଭ୍ରମର ନାଶ ପରି ଜ୍ଞାନନାଶ୍ୟ ଅଟେ) ତାହାର ଏହି ନିୟତି ତନ୍ତ୍ରାଧୀନ ଭୋଗକର୍ମମୟ ପ୍ରବୃତ୍ତି ପ୍ରବାହରେ ପରିଭ୍ରମଣ କରି ଭୌତିକ ଦେହ-ସଂସାର ପୁନଃ ପୁନଃ ପ୍ରାପ୍ତ ହେଉଥିବା ଲାଗି ରହିଥିବ ।

ପୂର୍ବଲିଖିତମତେ ଦେହାକାର ଠାରୁ ନିୟତି ପର୍ଯ୍ୟନ୍ତ ଏକାଦଶଟି ପଦାର୍ଥ ପରସ୍ପର ସଂଯୋଗଦ୍ୱାରା ଏକତ୍ରୀକୃତ ପିଣ୍ଡାକାରରେ ଅନାଦି କଳ୍ପତରୁ ରୂପେ ଅବସ୍ଥାନ କରି କର୍ମରୂପ ପୁଷ୍ପ ଓ ଭୋଗରୂପ କର୍ମଫଳ ଧାରଣ କରି ରହିଅଛୁ । ଏହି ପୁଷ୍ପଫଳ-ପୂର୍ଣ୍ଣ ବୃକ୍ଷରେ ଆରୂଢ଼ ଥିବା ପକ୍ଷୀରୂପ ଜୀବାତ୍ମା, ଏହି ବୃକ୍ଷକୁ 'ମୁଁ' ବୋଲି ଗ୍ରହଣ ଓ ସେହି "ମୁଁ ମୋର" ଅହଂତ୍ୱ ମମତ୍ୱ ସୂତ୍ରେ ଏଥିରେ ତନ୍ମୟ ହୋଇ ଏତଦ୍ କୃତ କର୍ମ ଓ ଫଳ ଭୋଗାଦି ଦ୍ୱାରା ମୁଁ କର୍ତ୍ତା ବା ମୁଁ ଭୋକ୍ତା, ମୁଁ ସୁଖୀ ବା ମୁଁ ଦୁଃଖୀ ଇତ୍ୟାଦି ରୂପରେ ସ୍ୱୟଂ ମୁଗ୍ଧ ରହିଅଛୁ । ଏହି ମୋହମୁଗ୍ଧତା ଅନାଦି ପୂର୍ବସିଦ୍ଧ ଭୋଗ-ବାସନା ଓ କର୍ମସଂସ୍କାର ରୂପେ ଆତ୍ମାର ଜୀବୋପାଧି ସୃଷ୍ଟି କରିଅଛୁ । ଏହି ଉପାଧି ସହିତ ଉପହିତ ଆତ୍ମା ଅଭେଦାକାର ଧାରଣ ପୂର୍ବକ ଜୀବାତ୍ମା ନାମରେ ଧରାଧାମରେ ଆତିଥ୍ୟ ଗ୍ରହଣ କରି ନିୟତିତନ୍ତ୍ରର ମୋହମୟ ପ୍ରବୃତ୍ତି ମାର୍ଗରେ ସର୍ବଦା ଭ୍ରମଣ କରୁଅଛୁ । ଏହି ଅନାଦି ଦେହାତ୍ମବାସନାଟି ଭୋଗ ଏବଂ କର୍ମମୟ । ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧାଦି ପାଞ୍ଚଟି ଭୋଗର ଅନ୍ତର୍ଗତ । ଉକ୍ତ ପଞ୍ଚଧାଭୋଗସାଧନ ଜ୍ଞାନେନ୍ଦ୍ରିୟ-ପଞ୍ଚର ସାପେକ୍ଷ । ଏହି ଜ୍ଞାନେନ୍ଦ୍ରିୟ ପଞ୍ଚକର ସାଧାରଣ ବ୍ୟାପକ ସୂତ୍ରରୁ ଅନ୍ତଃକରଣ-ଚତୁଷ୍ଟୟର ସୃଷ୍ଟି । ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ଚାରି ଅନ୍ତଃକରଣ ବୃତ୍ତି ଏକତ୍ରିତ ହେଲରୁ ଏହା ଭୋଗସାଧନୋନ୍ମୁଖୀ ହୋଇ କର୍ମର ସାପେକ୍ଷତା ଲୋଡ଼ିବାମାତ୍ର ସେହିଠାରେ ପଞ୍ଚ କର୍ମେନ୍ଦ୍ରିୟ ବିଦ୍ୟମାନ ହେଉଅଛନ୍ତି । ଏହି କର୍ମେନ୍ଦ୍ରିୟମାନଙ୍କର ସାଧାରଣ ବ୍ୟାପକ ସୂତ୍ରଟି ପଞ୍ଚପ୍ରକାର କ୍ରିୟାକାରୀ ବୃତ୍ତିଯୁକ୍ତ ପଞ୍ଚପ୍ରାଣରେ ପରିଣତ ହେଉଅଛୁ ।

ଏହିରୂପେ ଉକ୍ତ ବାସନା ଓ ସଂସ୍କାର ଓ ତତ୍‌ସଂଭୂତ ଭୋଗକର୍ମପ୍ରଦ ପଞ୍ଚ-ଜ୍ଞାନେନ୍ଦ୍ରିୟ, ଚାରି ଅନ୍ତଃକରଣ ଏବଂ ପଞ୍ଚ କର୍ମେନ୍ଦ୍ରିୟ ଓ ପଞ୍ଚପ୍ରାଣାଦି, ଏ ସମସ୍ତର ସମଷ୍ଟିକାରଣ ଦେହ ଓ ସୂକ୍ଷ୍ମ ଦେହରେ ପରିଣତ ହୁଅନ୍ତି । ଏମାନେ ଅର୍ଥାତ୍ ଉକ୍ତ ଦେହ-ଦ୍ୱୟ ଅତୀନ୍ଦ୍ରିୟ ଓ ସୂକ୍ଷ୍ମ । ଏହି ଦେହଦ୍ୱୟ ଏକତ୍ରରେ ଭୌତିକ ସଂସାର କ୍ଷେତ୍ରୋତ୍ପନ୍ନ ଭୋଗକର୍ମରୂପ ଶସ୍ୟର ଲାଭ କାମନା କରିବା ମାତ୍ରେ ଭୌତିକ ଦେହର ଅପେକ୍ଷା

କରିବାରୁ ଏବଂ ଭୌତିକ ଦେହ ଭୌତିକ ସଂସାରର ସାପେକ୍ଷ ଥିବାରୁ ଏହି ସଂସାର-ସମେତ ଦେହ ଏକ ସମୟରେ ସଂଦୃଷ୍ଟ ହେଉଅଛନ୍ତି । ପୂର୍ବୋକ୍ତ କାରଣ ଓ ସୂକ୍ଷ୍ମଦେହ-ଦ୍ୱୟ ଏବଂ ସ୍ଥୂଳ ଦେହ, ଏ ତିନହେଁ ଏକତ୍ରିତ ହୋଇ ସଂସାରରେ ଜୀବର ସର୍ବ କର୍ମ ଓ ଫଳପ୍ରଦ ହୋଇଅଛନ୍ତି । ଏ ତିନ ଦେହ ମଧ୍ୟରୁ ପ୍ରଥମୋକ୍ତ ଦେହଦ୍ୱୟ ସୂକ୍ଷ୍ମତର ଅମର ଏବଂ ଜୀବାତ୍ମାର ନିତ୍ୟ ସଙ୍ଗୀ, ପୁଣି ଦ୍ୱିତୀୟୋକ୍ତ ସ୍ଥୂଳ ଭୌତିକ ଦେହ ମରଣଶୀଳ ଆଉ କ୍ଷଣସଙ୍ଗୀ, ଅଥଚ ଜନ୍ମ-ମରଣପ୍ରବାହର ପରିବର୍ତ୍ତନଶୀଳ ଚକ୍ରଗତି-କ୍ରମେ ପୁନଃ ନୂତନ ନୂତନ ଅନ୍ୟ ଅନ୍ୟ ଆକାର ପ୍ରକାରରେ ଆତ୍ମାର ନିତ୍ୟସଙ୍ଗୀ ହୋଇଅଛି । ଏହିରୂପେ ବାସନାଠାରୁ ଦେହସଂସାର ପର୍ଯ୍ୟନ୍ତର ସଂଘଟନ ପ୍ରକୃତିଦେବୀ ଭଗବତୀ ଦ୍ୱାରା ସଂସାଧିତ ହେଉଅଛି । ଆତ୍ମଦେବ ସର୍ବଦା ଆତ୍ମପ୍ରେମରସଭୋଗୀ ଅଟନ୍ତି । ପୁଣି ସେହି ପ୍ରେମରସ ସଙ୍ଗେ (ପ୍ରକୃତିର ସାନ୍ନିଧ୍ୟ ହେତୁ) ପ୍ରାକୃତ ରସଭୋଗର ବିଶିଷ୍ଟତା ଉପଭୋଗ କରିବା ପାଇଁ, ଉକ୍ତ ଉଭୟ ରସ ଯୋଗଫଳର ଭୋଗୀ ହେବା ସକାଶେ ପ୍ରୟାସୀ ହେବାରୁ ଏହି ପ୍ରୟାସ ଉଲ୍ଲିଖିତ ଦେହାତ୍ମବାସନାଦି ରୂପରେ ପରିଣତ ହୋଇ ଜୀବାତ୍ମା ନିମିତ୍ତ ଏହି ସଂସାର ଚକ୍ରକୁ ସୂକ୍ଷ୍ମ ସ୍ଥୂଳ ମିଶ୍ରପ୍ରକାରରେ ବିସ୍ତାର କରିଅଛି । ଏହି ହେତୁ ଏହି ଦେହ-ସଂସାର ଦର୍ଶନ ବାସନାମୂଳକ ଅଟେ ।

ଏହି ବାସନାନୁଯାୟୀ ଦେହତ୍ରୟ, କର୍ମ ଏବଂ ଫଳସଂଗଠନ ଓ ଜୀବର ଭୋଗ ନିମିତ୍ତ ନିୟନ୍ତ୍ରିତ ରହିଅଛନ୍ତି । ତଥାପି ଜୀବାତ୍ମାର ମୂଳ ବାସନାନୁରୂପ କର୍ମ ଏବଂ ଭୋଗାଦିମାନ ସୁଖ, ଶାନ୍ତି ବା ପ୍ରେମମୟ ନ ହୋଇ ଅନ୍ୟତମ ପ୍ରକାରରେ ବା ଯାତନା-ମୟତ୍ୱରେ ପରିଣତ ହେବାର କାରଣ ଏହି ଯେ—କର୍ମ ଏବଂ ଫଳର ଘଟକ କର୍ତ୍ତାମାନେ କେତେକ ସୂକ୍ଷ୍ମ ବା କେତେକ ସ୍ଥୂଳଭୂତାତ୍ମକ ଅଟନ୍ତି । ଭୌତିକତାର ସ୍ୱତଃସିଦ୍ଧ ଧର୍ମାନୁସାରେ ତାହା ପରିବର୍ତ୍ତନଶୀଳ ଅଥଚ ବିକାରଭାବାପନ୍ନ, ସୁତରାଂ ଏହି ଦୋଷଦୁଷିତତାବଶତଃ ସେମାନେ ସମସ୍ତେ ବା କେହି କେହି ଜୀବାତ୍ମାର ମୂଳ ବାସନାର ଉଦ୍ଦେଶ୍ୟ ଅନୁଯାୟୀ ନିଜ ନିଜ କର୍ମକାରିତା ପକ୍ଷରେ କର୍ମକାଳୀନ ଅବସ୍ଥାରେ ଅନୁରୂପ ପୂର୍ଣ୍ଣ କ୍ଷମତାଶୀଳ ବା ପୂର୍ଣ୍ଣାଙ୍ଗବିଶିଷ୍ଟ ହୋଇ ପାରନ୍ତି ନାହିଁ । ସେହି ହେତୁ, ତଦ୍ଦ୍ୱାରା ସାଧିତ କର୍ମାଦି ଓ ଫଳାଦିର ଭୋଗାଦି ବ୍ୟଙ୍ଗାକାରରେ ଅଥବା ସ୍ଥଳବିଶେଷେ ବିପରୀତ ଭାବରେ କଦାଚିତ୍ ବା ଉଦ୍ଦିଷ୍ଟ ଭାବରେ ଇତ୍ୟାଦି ଇତ୍ୟାଦି ନାନା ପ୍ରକାରରେ ସଂଘଟିତ ହୁଅନ୍ତି ଆଉ ଜୀବ ତାହା ଭୋଗ କରିବାକୁ ବାଧ୍ୟ ହେବା ହେତୁ ମୋଟ ଉପରେ ଯାତନା ମାତ୍ର ପରିଣାମ ଫଳଭୋଗରେ ପରିଣତ ହୁଏ । ଏହିରୂପେ ସଂସାର ଦୁଃଖମୟ କାରାଗାର ସ୍ୱରୂପ ଅଟେ—ଏହା ନିତ୍ୟ ପ୍ରତ୍ୟକ୍ଷ ହେଉଅଛି । ନିଜଠାରେ ଏହାର ପରୀକ୍ଷା ସର୍ବଦା ବୁଝି ଉପଲବ୍ଧି କରିବା ଆବଶ୍ୟକ ।

ଏହିରୂପେ ଅଯଥା କର୍ମ ଓ ଅପଭୋଗାଦି ଦ୍ୱାରା ଜୀବର ମୌଳିକ ଶୁଭବାସନା ଓ ଶୁଭସଂସ୍କାରାଦି ଅଶୁଦ୍ଧ ବାସନା ଓ ଅଶୁଭ ସଂସ୍କାରରେ ପରିଣତ ହୋଇ କ୍ରମେ କ୍ରମେ ଆତ୍ମାକୁ କୁକର୍ମ ଓ କୁଭୋଗାଦିରେ ଅଭ୍ୟସ୍ତ କରାଇ ମନ୍ଦମାର୍ଗରେ ପଥିକ କରାଇ ଦିଅନ୍ତି ।

ଏଥିସଙ୍ଗେ ପୁଣି ଦେଶଗତ, ସମାଜଗତ, ବ୍ୟକ୍ତିଗତ ଓ ରୁଚିଗତ ଭେଦରେ ଓ ଆଦର୍ଶରେ ଉକ୍ତ କର୍ମ ଏବଂ ଭୋଗାଦି ନାନା ପ୍ରକାରର ବିକୃତାକାର ଧାରଣ କରି ମିଶ୍ରିତ ହେବା-ଦ୍ୱାରା ବର୍ତ୍ତମାନ ଜୀବାତ୍ମା ମୂଳ ଶୁଭ ଉଦ୍ଦେଶ୍ୟ ଠାରୁ କେତେଦୂର ନିମ୍ନତର ମନ୍ଦ ଆଡ଼କୁ ଗତି କରି କିଂଭୂତକିମାକାରବିଶିଷ୍ଟ ହେଲେଣି ଆଉ କି ପ୍ରକାର ଯାତନାଦି ଭୋଗ କରିବାକୁ ବାଧ୍ୟ ହେଲେଣି ତାହା ବର୍ଣ୍ଣନାତୀତ । ବର୍ତ୍ତମାନ ଆମ୍ଭେମାନେ ଓ ବର୍ତ୍ତମାନର ସଂସାର ଏହିଠାରେ ଅନ୍ଧକାର ଦେଖୁଥାଇଁ ।

ଏହି ପରିଦୃଶ୍ୟମାନ ଦେହ-ସଂସାରାତ୍ମକ ମହାମାନଚିତ୍ରକୁ ପରିଦର୍ଶନ କରି ବୁଝାଯାଏ ଯେ ଏହି ଅକୃତ୍ରିମ ଓ କୃତ୍ରିମ ବସ୍ତୁ ମାତ୍ର ହିଁ କର୍ମମୂଳକ, କର୍ମମୟ ଓ କର୍ମଫଳ ସ୍ୱରୂପ କର୍ମପ୍ରସୂତ ଅଟେ । ପଦାର୍ଥ ମାତ୍ରର ପୂର୍ବ ରୂପଟି କର୍ମମୟ ଓ କର୍ମଦ୍ୱାରା ହିଁ ପଦାର୍ଥର ପଦାର୍ଥତାସିଦ୍ଧି ହୁଏ । କର୍ମପ୍ରେରଣା ବ୍ୟତୀତ ପଦାର୍ଥର ଅବସ୍ଥିତି ବା ଜୀବନ୍ତତାଦିର ସିଦ୍ଧି ଅସମ୍ଭବ । ଏହି ସଂସାର ଯଦିଚ ଅକୃତ୍ରିମ ଭାବେ ଚରିଦଣ୍ଡାୟମାନ ଥିବା ଦେଖାଯାଏ, ତଥାଚ ମହାଶକ୍ତିମାନ୍‌ର ମହାଶକ୍ତିସମ୍ଭୂତ ମହନୀୟ କର୍ମଦ୍ୱାରା ଯେ ଏହାର ଆଦିସଂସ୍ଥାନ, ଏହା କ୍ଷୁଦ୍ର ମାନବୀୟ ବୁଦ୍ଧିର ଅଗମ୍ୟ ହେଲେ ସୁଦ୍ଧା କର୍ମର ମାହାତ୍ମ୍ୟ ଏବଂ ଏତଦ୍ରୂପ ମହାକର୍ମୀର ମାହାତ୍ମ୍ୟକୁ ସ୍ମରଣ କରି ଏହା ସ୍ୱୀକାର କରିବାକୁ ହେବ । ଏପରି କୃତ୍ରିମ ପଦାର୍ଥାଦି ଯେ କର୍ମସମ୍ଭୂତ ଏହା ତ ନିତ୍ୟ ପ୍ରତ୍ୟକ୍ଷ ହେଉଅଛି । ଏହି ନିୟମ ମଧ୍ୟ କୃତ୍ରିମ ପଦାର୍ଥକୁ କୃତ୍ରିମ କ୍ରିୟାର ଏବଂ ଅକୃତ୍ରିମ ବସ୍ତୁକୁ ଅକୃତ୍ରିମ କର୍ମର ପ୍ରଭାବସୃଷ୍ଟ ବୋଲି ସ୍ୱୀକାର କରାଇ ଦେଉଅଛି । ଅତଏବ କର୍ମବିନା ସଂସାରରେ କୌଣସି ପ୍ରକାର ସିଦ୍ଧିର ସାଧନା ଅସମ୍ଭବ । ମୁଖ୍ୟତଃ ସାଧନା, କର୍ମର ନାମାନ୍ତର ଅଟେ । ଏହି ହେତୁ କର୍ମ ଏକାନ୍ତ କରଣୀୟ । କର୍ମହିଁ ପୁରୁଷକାରର ଜୀବନ ସ୍ୱରୂପ ଅଟେ । କର୍ମସମ୍ବନ୍ଧେ ଯେଉଁ ସବୁ ବସ୍ତୁକୁ ପୂର୍ବେ କର୍ତ୍ତା ବୋଲି କୁହାଯାଇଅଛି, ଏଠାରେ ସେ ସମସ୍ତକୁ କର୍ତ୍ତାପୁରୁଷରୂପୀ ଜୀବାତ୍ମାର ଅଧିକାରଭୁକ୍ତ କରଣ ବା ଯନ୍ତ୍ରରୂପେ ଦେଖି ଏହି ଜୀବାତ୍ମାକୁ ଏ ସମସ୍ତର ସର୍ବାଧିକାରୀ ଅଧିନାୟକ ବୋଲି ସ୍ଥିର କରିବାକୁ ହେବ । ଏହିରୂପେ ଏହି କର୍ମକ୍ଷେତ୍ରରୂପ ସଂସାର ମଧ୍ୟରେ ଏହି ଆତ୍ମପୁରୁଷ, ସତ୍ ବା ପୁଣ୍ୟକର୍ମାଦି ସାଧନ କରି ଉଜ୍ଜ୍ୱଳତମ ଆଦର୍ଶମୟ ଚିର କୀର୍ତ୍ତିସ୍ତମ୍ଭ ସ୍ଥାପନ କରିବାକୁ ଏହି ବିଶାଳତମ କର୍ମକ୍ଷେତ୍ରକୁ ପ୍ରକୃତିଦତ୍ତ ବୁଦ୍ଧ୍ୟାଦି ବଳ-ପରାକ୍ରମଯୁକ୍ତ ଅସ୍ତ୍ରଶସ୍ତ୍ରାଦି-ଭୂଷିତ ଦେହଯନ୍ତ୍ରକୁ ଧରି ଅବତରଣ କରିଅଛି । ଏହା ଦେହ-ସଂସାରଗତ ଚିତ୍ରର ତତ୍ତ୍ୱାଲୋଚନାରୁ ସ୍ପଷ୍ଟ ବୁଝାଯାଉଅଛି । ଅତଏବ ଭୌତିକ ସଂସାରରେ ଦେହ, ପ୍ରାଣ ଏବଂ ବୁଦ୍ଧ୍ୟାଦି ଯେପରି କର୍ତ୍ତାପୁରୁଷରୂପୀ ଜୀବାତ୍ମାର ଅଧୀନସ୍ଥ ଉପକରଣ ବା କରଣ ରୂପେ ବ୍ୟବହୃତ ହୁଏ, ସେହିପରି ପରମେଶ୍ୱରର ଅଧ୍ୟାତ୍ମରାଜ୍ୟରେ ଏହି ଜୀବାତ୍ମା ଏବଂ ମହାପୁରୁଷାଦି, ସର୍ବାଦି ମହାବିଭୂତିଶୀଳ ମହାମହେଶ୍ୱର ପରମାତ୍ମାରୂପୀ ପରଂବ୍ରହ୍ମର ଅଧୀନସ୍ଥ କରଣ ବା ଉପକରଣ ରୂପେ ଚିହ୍ନିତ ଥାଇ ସେହି ପରମେଶ୍ୱରୋଦ୍ଦିଷ୍ଟ ସର୍ବମଙ୍ଗଳମୟ ପୁଣ୍ୟଜନକ କ୍ରିୟାଦିକୁ ଇହସଂସାରରେ ଐହିକ ଅଥଚ ପାରତ୍ରିକ

ଶ୍ରୁତିସମ୍ମତ ଭାବେ ଅନୁଷ୍ଠାନ କରିବା ଏକାନ୍ତ କର୍ତ୍ତବ୍ୟ । ଇନ୍ଦ୍ରିୟାଦିଦ୍ୱାରା ସାଧିତ କର୍ମ ଏବଂ କର୍ମଫଳାଦି ଯେପରି ଜୀବାତ୍ମାଠାରେ ଅର୍ପିତ ହୁଏ, ତଦ୍ରୂପ ସେହି କର୍ମ ଏବଂ ଫଳାଦିକୁ ଜୀବାତ୍ମା ପରମେଶ୍ୱରଠାରେ ଅର୍ପଣ କରିବା ତାହା ପକ୍ଷେ ସ୍ୱଭାବସିଦ୍ଧ ଧର୍ମସମ୍ମତ ଅଟେ । ଏହିରୂପେ ଜାଗତିକ ସମସ୍ତ ଜୀବକର୍ତ୍ତୃକ କର୍ମାଦି ଏବଂ ଫଳାଦି, ସେହି ପରମେଶ୍ୱରାଧୀନ ଜୀବର ନିଜସ୍ୱ ନୁହେଁ; ଆଉ ତାହା ଅପବିତ୍ର ହେଲେ ମଧ୍ୟ ପରମେଶ୍ୱରର ପୁଣ୍ୟମୟ ଅଧ୍ୟାତ୍ମରାଜ୍ୟରେ ଗ୍ରହଣୀୟ ହୋଇ ନ ପାରେ । ଏଣୁକରି ଜୀବାତ୍ମା ତାହାର ଅଧୀନସ୍ଥ ଇନ୍ଦ୍ରିୟାଦିକୁ ପବିତ୍ରଭାବେ ସଂଯତ ରଖି ସେମାନଙ୍କ ଦ୍ୱାରା ପବିତ୍ର କର୍ମସାଧନ କରାଇ ତଜ୍ଜାତ ପବିତ୍ର ଫଳକୁ ସେ ଯେଉଁ ପରମେଶ୍ୱରର ଅଧୀନ, ତାଙ୍କଠାରେ ସ୍ୱୟଂ ପବିତ୍ର ହୋଇ ପବିତ୍ରଭାବେ ଅର୍ପଣ କରିବାକୁ ଧର୍ମତଃ ବାଧ୍ୟ ଅଟେ; ଆଉ ତଦ୍ରୂପ କର୍ମ ବା ଫଳ ଅପବିତ୍ର ରାଜସ ତାମସାତ୍ମକ ହେଲେ ଜୀବ ତାହା ସ୍ୱୟଂ ଭୋଗ କରିବାକୁ ବାଧ୍ୟ ହେବ ଏବଂ ତଦ୍ରୂପ ଅବାଧ୍ୟତା ଦୋଷରେ ପାପଜନକ ଦେହ ଲାଭ କରି ସ୍ୱକୃତ ପାପ କର୍ମଦ୍ୱାରା ପାପଫଳରୂପ ଦୁଃଖତାପମୟ ନରକୋପମ ସଂସାରରେ ସଂସାରି-ପଦବାଚ୍ୟ ହେବ । ବୁଝାଗଲା, କର୍ମ ସର୍ବାର୍ଥ ସିଦ୍ଧିର ମୂଳ, ଆଉ ତାହା ସର୍ବଥା ବୈଧଭାବେ କରଣୀୟ ଅଟେ ।

ଜୀବାତ୍ମା, ତାହାର ସମୁଦାୟ ଦେହବଳ, ପ୍ରାଣବଳ, ମନେନ୍ଦ୍ରିୟାଦିର ବଳ ଏବଂ ବୁଦ୍ଧିବିବେକ ନିଶ୍ଚିତ କର୍ତ୍ତବ୍ୟ ଜ୍ଞାନବଳ ସହିତ ପୂର୍ଣ୍ଣ ଉତ୍ସାହ, ପୂର୍ଣ୍ଣ ଉଦ୍ୟମ, ପୂର୍ଣ୍ଣ ପରାକ୍ରମ, ପୂର୍ଣ୍ଣ ଦମ୍ଭ, ପୂର୍ଣ୍ଣ ସାହସ ଓ ଅଟଳ ଅବିଚଳିତ ସ୍ଥିର ଧୈର୍ଯ୍ୟାଦିକୁ ଯୋଗ କରି ପବିତ୍ରତମ ବିଶ୍ୱାସ ସହକାରେ ଯଥାବିଧ୍ୟୁକ୍ତ ସଂସାରୀୟ ବା ପାରମାର୍ଥିକ ସତ୍କର୍ମାଦିର ସାଧନାନୁଷ୍ଠାନ ଆରମ୍ଭ କରିବା କର୍ତ୍ତବ୍ୟ ଅଟେ । ଏ କ୍ଷେତ୍ରରେ ଆଳସ୍ୟ ବା ନିରୁତ୍ସାହାଦି ସର୍ବଥା ପରିବର୍ଜନୀୟ । ଏହିରୂପ କର୍ମ ହୋଇ ନ ପାରିଲେ ବା ଫଳସିଦ୍ଧିଲାଭ ଅସମ୍ଭବ ହେଲେ ତାହା ପୁନଃ ପୁନଃ ବାରମ୍ବାର ଅନୁଷ୍ଠାନ କରି ଫଳଲାଭ ପର୍ଯ୍ୟନ୍ତ ଉଦ୍ଦିଷ୍ଟ ଭାବେ ଅଗ୍ରଗାମୀ ହେଉଥିବା ଉଚିତ । ନିତାନ୍ତ ପକ୍ଷେ ଦୈବ ବା ନିୟତି ପ୍ରଭୃତି କର୍ତ୍ତୃକ ବାଧାବିଘ୍ନାଦି ସଂଘଟନର ସମ୍ଭବ ଦେଖାଗଲେ ପୁରୁଷକାରର ପରାକାଷ୍ଠା ପ୍ରଦର୍ଶନ କରି ସେହି ବାଧାବିଘ୍ନାଦି ଓ ସେସବୁର ସଂଘଟକ ଦୈବାଦି ସହିତ ମଧ୍ୟ ଶକ୍ତ୍ୟନୁସାରେ ସଂଗ୍ରାମ କରିବାଦ୍ୱାରା ଉଦ୍ଦିଷ୍ଟ ଫଳସିଦ୍ଧିଲାଭରେ ତତ୍ପର ହେବା କର୍ତ୍ତବ୍ୟ । ହତୋତ୍ସାହ ହେବା କର୍ମୀପକ୍ଷରେ ଅନୁଚିତ ଅଟେ । ଏହିପରି ଶେଷାନ୍ତ ଚେଷ୍ଟାଦି ଦ୍ୱାରା ପୁନଃ ପୁନଃ ଆରମ୍ଭ କରିବା କର୍ମାଦି ଯଦି ଅକୃତକାର୍ଯ୍ୟତାରେ ପରିଣତ ହୁଏ, ତେବେ ଧୀରଭାବେ ବୁଝିବାକୁ ହେବ ଏହି କାର୍ଯ୍ୟ ପକ୍ଷରେ ଯେପରି ପୁରୁଷକାର ଅକର୍ମଣ୍ୟ ହେଲା, ସେହିପରି ଦୈବାଦିର ପ୍ରତିକୂଳତା ମଧ୍ୟ ପ୍ରବଳତମ ଆକାର ଧାରଣ କଲା । ତେବେ କଣ କର୍ତ୍ତବ୍ୟ ? ନିବର୍ତ୍ତିବାର ତ ପୌରୁଷେୟ ନୁହେଁ, ସୁତରାଂ ଏପରି ସ୍ଥଳରେ ନିଜର ବିଶ୍ୱାସ ଏବଂ ଦୃଢ଼ ସ୍ଥିରତର ଜ୍ଞାନ ସାହାଯ୍ୟରେ ପରମେଶ୍ୱରୋପାସନା ନିଷ୍ଠିତ ଭାବେ ଆଚରଣୀୟ ଅଟେ । ଏଥିରେ ଯଦି କିଛି ଯଥୋନ୍ମୁକ୍ତ ନ ହୁଏ, ତେବେ ତଦ୍ରୂପ

ସମୁଦାୟ ବ୍ୟର୍ଥ ପରିଶ୍ରମାଦିକୁ ସେହି ପରମେଶ୍ୱରୀୟ ପ୍ରକୃତିଗର୍ଭସ୍ଥ ସୂକ୍ଷ୍ମ ଭଣ୍ଡାରରେ ଅର୍ପଣ କରି ସନ୍ତୁଷ୍ଟ ରହିବାକୁ ହେବ । ଭାବିବା ଉଚିତ ଯେ ତଦ୍ରୂପ କର୍ମର ସିଦ୍ଧି ବା ଫଳଲାଭାଦି ଯାହାର ଏବଂ ଯେଉଁଠାରେ ଅର୍ପଣ ହେବା ଯୋଗ୍ୟ ତାହା ସିଦ୍ଧ ହେଉ ବା କର୍ମମାତ୍ର କି ଅଫଳପ୍ରଦ-କର୍ମମାତ୍ରରେ ପର୍ଯ୍ୟବସିତ ହେଉ, ତାହା ସେହି ଆକାରରେ ସେହି ପରମେଶ୍ୱରଙ୍କଠାରେ ଅର୍ପଣ କରିଦେବା ହିଁ ଜୀବାତ୍ମାର କର୍ତ୍ତବ୍ୟ, ସୁତରାଂ ତାହାର କର୍ତ୍ତବ୍ୟ ସେ ପାଳନ କରିଅଛି । ହେବା ନ ହେବା କି ଗୁଣା ଅଧିକରେ ଜୀବର କିଛି ଯାଏ ଆସେ ନାହିଁ । ସର୍ବାଧୀଶ୍ୱରର ଯାହା ଇଚ୍ଛା ତାହାହିଁ ତ ହେବ, ତହିଁରେ କଣ ଭାବିବାର ଅଛି ? ଏହିପରି କେତେ କେତେ କର୍ମର ସିଦ୍ଧି ଏବଂ ଅସିଦ୍ଧି, ଫଳାଦିର ଲାଭ ବା ଅପ୍ରାପ୍ତି ଯେଉଁ ବିଶ୍ୱଗର୍ଭରେ ଅହରହ ଉଦୟ ବିଲୟ ହେଉଅଛି, ସେଠାରେ ଜୀବର କଣ କର୍ତ୍ତବ୍ୟ ? କର୍ତ୍ତବ୍ୟ ପାଳନରେ ସେ ଦାୟୀ ମାତ୍ର, ତହିଁରୁ ମୁକ୍ତ ହେବା ମାତ୍ର ତାହାର ଧର୍ମ; ଅତଏବ ଜୀବ-କର୍ତ୍ତବ୍ୟପାଳନରୂପ ଧର୍ମ ସଙ୍ଗ କରିବା ସଂସାରରେ ତାହା ପକ୍ଷରେ ଏକମାତ୍ର ପନ୍ଥା ।

ପରିଶେଷରେ ନିତ୍ୟ-ପ୍ରସିଦ୍ଧ କର୍ତ୍ତବ୍ୟକର୍ମ ଏହି ଯେ, ମନ ବଚନାତୀତ ଓ ଧ୍ୟାନ ଧାରଣାଦିର ଅଗମ୍ୟ-ବିଶୁଦ୍ଧ ନିର୍ମଳ ଅହଂବୋଧ ମାତ୍ର, ସଦାନନ୍ଦ ବିଗ୍ରହ, ତତ୍ତ୍ୱମସ୍ୟାଦି ମହାବାକ୍ୟ ପ୍ରତିପାଦିତ ପରଂବ୍ରହ୍ମ, ସର୍ବଶକ୍ତିମୟୀ ଭଗବତୀ ପ୍ରକୃତିଦେବୀ ସହିତ ଅଭେଦ ଯୁଗଳାଙ୍ଗୀକ ନିତ୍ୟୋପଲବ୍ଧି ରୂପରେ ନିତ୍ୟ ବିରାଜମାନ ରହିଅଛନ୍ତି, ଏବଂ ତଦୀୟ ସତ୍ତ୍ୱାଂଶ ଜୀବଚୈତନ୍ୟରୂପରେ ପ୍ରତ୍ୟେକ ପ୍ରାଣୀର ଦେହଯନ୍ତ୍ରରେ କର୍ମେନ୍ଦ୍ରିୟ-ଜ୍ଞାନେନ୍ଦ୍ରିୟାଦି ପ୍ରାକୃତଭାବ ସହିତ ଏହି ସଂସାରରେ ବିଚରଣ କରୁଅଛି । ଅତଏବ ସୂର୍ଯ୍ୟ କିରଣ ଦର୍ଶନରେ ସେହି କିରଣ ସହିତ ସୂର୍ଯ୍ୟଦେବଙ୍କୁ ସ୍ମରଣ କରି ଦର୍ଶନ କଲାପରି ଏହି ପ୍ରାଣୀଯନ୍ତ୍ର ଦର୍ଶନ ମାତ୍ରକେ ସେହି ଯନ୍ତ୍ରସ୍ଥିତ ଜୀବଚୈତନ୍ୟ ସହିତ ପରମାତ୍ମା ପ୍ରଭୁ ପରମେଶ୍ୱରଙ୍କୁ ସ୍ମରଣ ଓ ଅଭେଦଭାବେ ସାକ୍ଷାତ୍ ଦର୍ଶନ କରି ଅନ୍ତତଃ ଭକ୍ତି ସହିତ ପ୍ରଣତ ହେଉଥିବା ଧର୍ମସମ୍ମତ କର୍ତ୍ତବ୍ୟକର୍ମ ଅଟେ; ଆଉ ବାହ୍ୟରେ ଲୌକିକ ବ୍ୟବହାରାନୁରୋଧରେ ତଦନୁଯାୟୀ ନୈତିକ ସଦୟ ଓ ପ୍ରୀତିଯୁକ୍ତ ସମୁଚିତ ସଦ୍‌ବ୍ୟବହାର-ପରିପୂର୍ଣ ହେଉଥିବା ମଧ୍ୟ ଏକାନ୍ତ କର୍ତ୍ତବ୍ୟ ଅଟେ । ଉପସ୍ଥିତ ସଂସାରଦଶାରେ ମନୁଷ୍ୟର ପ୍ରତ୍ୟେକ କର୍ମ ଓ ପ୍ରତ୍ୟେକ କର୍ମାଙ୍ଗ ଐହିକ ଓ ପାରତ୍ରିକ ଦୁଇଦିଗକୁ ସମାନଭାବେ ମଙ୍ଗଳମୟ ନିଦର୍ଶନ ରୂପରେ ଆଚରିତ ହେବା ଯଥାବିଧି ସଙ୍ଗତ ଅଟେ, ଅର୍ଥାତ୍ ତାହା ଯେପରି ବର୍ତ୍ତମାନ ପକ୍ଷରେ ସଂସାରର ଶୁଭଦାୟକ ହେବ, ସେହିପରି ଅସୀମ ଓ ଅନ୍ତବିରହିତ ଭବିଷ୍ୟତର ସୁବିସ୍ତୀର୍ଣ୍ଣ ପଥର ସମୁଜ୍ଜ୍ୱଳ ଆଲୋକରୂପେ ଏହି କର୍ମୀ ଜୀବାତ୍ମାର ସାହାଯ୍ୟ କରିବାକୁ ଉପଯୋଗୀ ହେବ । କେବଳ ଦୁଇକଥା ମାତ୍ର କହିବା ଶୁଣିବାରେ ଯେ ଏ ପ୍ରକାର କର୍ମ ସହଜରେ ଅନୁଷ୍ଠିତ ହୋଇପାରିବ ତାହା କଦାଚ ନୁହେଁ । ଏଥି ନିମିତ୍ତ ଅନ୍ତଃକରଣର ସଂଶୋଧନ ଆବଶ୍ୟକ । ମନୁଷ୍ୟର ସଂସ୍କାର ଓ

ଛୁଟଭେଦରେ ଅନ୍ତଃଶୋଧନର ପନ୍ଥା ନିଶ୍ଚିତ ହେବା ବଡ଼ କଠିନ । ଯାହା ହେଉ, ଯାହା ପକ୍ଷରେ ଯେପରି ଉପାସନା ବା ଈଶ୍ୱର ପ୍ରାର୍ଥନାଦି ଅଭ୍ୟାସ ସର୍ବତ୍ର ଅନୁଷ୍ଠିତ ହୋଇ ଆସିଅଛି, ସେହିପରି ଭାବରେ ତାହାଦ୍ୱାରା ସେ ସବୁ ପୁଣ୍ୟ କର୍ମ ଆଚରିତ ହେବା ଆବଶ୍ୟକ । ପରମେଶ୍ୱର ଭାବରେ ଏହି ଦେହ ପବିତ୍ର ହେଲେ ଏବଂ ପ୍ରାଣ ଅନୁପ୍ରାଣିତ ବା ଆତ୍ମା ଅନୁଜ୍ଞବିତ ହେଲେ ଈଶ୍ୱରୋଦ୍ଦିଷ୍ଟ ମଙ୍ଗଳମୟ ସାଧାରଣ ହିତଜନକ କାର୍ଯ୍ୟ ଅନୁଷ୍ଠିତ ହୋଇପାରିବ, ନଚେତ୍ ଆତ୍ମମ୍ଭରିତା, ସ୍ୱେଚ୍ଛାଚାରିତା ବା ବିଳାସିତାଦି ରାଜସ ତାମସାଚ୍ଛନ୍ନ ଦେହ, ପ୍ରାଣ ବା ଅନ୍ତଃକରଣାଦିରେ ତାହା ସର୍ବଥା ଅସମ୍ଭବ । ଏ ହେତୁ ସନାତନ, ପ୍ରାଞ୍ଜଳ ଆତ୍ମ-ମନ-ପ୍ରାଣ ଓ ଦେହାଦିର ସଂଶୋଧକ ପନ୍ଥା ଶକ୍ତି, ସାମର୍ଥ୍ୟ ଓ ସଂସ୍କାରାଦି ଅନୁସାରେ ଅନୁଷ୍ଠିତ ହେବା ନିତାନ୍ତ ବିଧେୟ ଅଟେ । ଏହି ହେତୁ ଦେହାନ୍ତଃକରଣାଦିର ସଂଶୋଧନାର୍ଥ ଯମ ନିୟମାଦି, ଭକ୍ତି-ଉପାସନାଦି, ଯୋଗାବଲମ୍ବନାଦି ବା ସଂଯତ ଶାନ୍ତଭାବଯୁକ୍ତ ଈଶ୍ୱର ପ୍ରାର୍ଥନାଦି ମନୁଷ୍ୟ ସଂସାରରେ ଏକମାତ୍ର ନିର୍ଦ୍ଦିଷ୍ଟ ପନ୍ଥାରୂପେ ସେବନୀୟ ହୋଇଅଛି ।

ଏହି ଅନାଦି ଦେହାତ୍ମବାସନାରୁ ଆତ୍ମାର ସଂସାରଦଶା ନିୟନ୍ତ୍ରିତ ହୋଇଅଛି । ଏହି ଜୀବୋପାଧିଗତ ଦେହାତ୍ମବାସନା, ବର୍ତ୍ତମାନ ଦେହ-ସଂସାର ଓ କର୍ମ-ଭୋଗାଦି ପକ୍ଷରେ ଏକାକାରଣ ନୁହେ । ଏହାସଙ୍ଗେ ପୂର୍ବ ସିଦ୍ଧାନ୍ତାନୁସାରେ ପ୍ରାରବ୍ଧ ବା ଦୈବ ଏବଂ ନିୟତି ମିଶି ଏହି ତିନୋଟି ମୂଳ କାରଣ ଅଟନ୍ତି । ବର୍ତ୍ତମାନ ଆତ୍ମାର ଦୈହିକ, ମାନସିକ ଅବସ୍ଥାଦିର ବିଶେଷତ୍ୱ ଏବଂ କର୍ମ-ଭୋଗାଦି ଏବଂ ଉନ୍ନତି ବା ଅବନତି ପ୍ରଭୃତିର ବିଶେଷ ବିଶେଷ ପ୍ରକାରାଦିର ସଂଘଟନ ଏବଂ ଭୋଗାଭୋଗ ପକ୍ଷରେ ଏହି ତିନୋଟିଯାକ କାରଣ ଅଟନ୍ତି । ଦେଖାଯାଉ, ଏହି ସଂସାର ସର୍ବସାଧାରଣ ପ୍ରାଣୀ ପକ୍ଷରେ ସାଧାରଣଭାବରେ ବୈଷମ୍ୟରହିତ ସମାନ ଆକାର-ପ୍ରକାର ଓ ସମାନ ରୂପରେ ଦଣ୍ଡାୟମାନ ହୋଇଅଛି । ମାତ୍ର ଅଂଶ ବଣ୍ଟନ ପ୍ରଣାଳୀରେ ଏହି ସଂସାରର କେଉଁ ଅଂଶ କି ପ୍ରକାର କର୍ମକ୍ଷେତ୍ର ଆକାରରେ କାହାପ୍ରତି କିପରି ଭାବରେ ନିର୍ଦ୍ଦିଷ୍ଟ ହୋଇଅଛି ଏବଂ ତଦନୁସାରେ କିଏ ବା କି କି ପ୍ରକାରର କର୍ମପନ୍ଥା ଅବଲମ୍ବନ କରିଅଛି ଏବଂ କି କି ପ୍ରକାର ଉନ୍ନତି ବା ଅବନତି ଲଭିଅଛି, ପୁଣି ତହିଁରୁ କି କି ପ୍ରକାର କର୍ମ ବା ଫଳ ଭୋଗାଭୋଗ କରିବାକୁ ହେଉଅଛି, ଭାବି ଦେଖିଲେ ବୋଧହୁଏ ମୋଟ ଉପରେ ଏସବୁ ସମ୍ବନ୍ଧରେ ପ୍ରତ୍ୟେକର ଅବସ୍ଥା, ପରସ୍ପର ବିଭିନ୍ନ ପ୍ରକାରର ଅଟେ ବୋଲି ସ୍ପଷ୍ଟତଃ ପ୍ରମାଣିତ ହେବ । ଏକ ପରିବାର ମଧ୍ୟରେ ଏକ ମାତା-ପିତା ଔରସରେ ଯେତେ ଯେତେ ପୁତ୍ର କନ୍ୟା ଜନ୍ମଲାଭ କରନ୍ତି, ସେମାନଙ୍କର ଦୈହିକ, ମାନସିକ ଅବସ୍ଥା, କର୍ମକ୍ଷେତ୍ର ଓ କର୍ମପନ୍ଥା ଏବଂ କର୍ମ ବା ଫଳଭୋଗାଦି, ଉନ୍ନତି, ଅବନତି ଆଦି ଏବଂ ପରମାୟୁର ପରିମାଣାଦି ମଧ୍ୟ ସମାନ ନୁହେ । ଏହି ନିୟମରେ ଏକ ଗ୍ରାମର ବିଭିନ୍ନ ପାରିକ ଅବସ୍ଥା ଓ ବ୍ୟକ୍ତିଗତ ଅବସ୍ଥା ଏବଂ ଦେଶ, ପ୍ରଦେଶ ବା ସଂସାରସ୍ଥ

ପ୍ରତ୍ୟେକ ମାନବର ସର୍ବପ୍ରକାର ଅବସ୍ଥାଦି ସୂକ୍ଷ୍ମତଃ ପରସ୍ପର ବିଭିନ୍ନ ଧରଣର ଅଟେ । ପ୍ରତ୍ୟେକର ବିବେକ ଏ ବିଷୟର ସାକ୍ଷୀ । ସୁତରାଂ ଦେହାତ୍ମବାସନା, ଦୈବ ଏବଂ ନିୟତିର ସାହଚର୍ଯ୍ୟରେ ମନୁଷ୍ୟର ଜନ୍ମଗତ, ଆକାରଗତ ଦୈହିକ, ମାନସିକାଦି ସ୍ୱଭାବଗତ, ସମାଜଗତ ଅଥଚ କର୍ମ ଏବଂ ଭୋଗାଦିଗତ ଶୁଭାଶୁଭାଦିର ସଂଘଟନ ସେହି ପ୍ରତ୍ୟେକର ବିଭିନ୍ନ ପ୍ରକାରର ବାସନା, ଦୈବ ଏବଂ ନିୟତିର ନିୟମରେ ଏହିପରି ବିଭିନ୍ନ ପ୍ରକାରର ହୋଇଅଛି ( ପୂର୍ବୋକ୍ତ ବାସନା ଦୈବ ଏବଂ ନିୟତିର ସଂଜ୍ଞା ଆଉ କର୍ମସମ୍ପାଦନାଦିର ବ୍ୟବସ୍ଥା ଏଠାରେ ମନେ କରିଯାଉ) । ଆହୁରି ଯେପରି ସଂସାର ଏକ ହେଲେ କଣ ହେବ, ତାହା ଯେପରି ପ୍ରତ୍ୟେକ ପକ୍ଷରେ ଭାବ ବର୍ଣ୍ଣନ ପ୍ରଣାଳୀରେ ବିଭିନ୍ନ ପ୍ରକାରର ହୋଇଅଛି, ସେହିପରି ଏକ ସମଷ୍ଟ୍ୟାତ୍ମକ ଦୈବ ଏବଂ ନିୟତି, ପ୍ରତ୍ୟେକ ପ୍ରାଣୀ ପକ୍ଷରେ ବ୍ୟଷ୍ଟିଭାବରେ ଏକ ଏକ ବିଭିନ୍ନ ପ୍ରକାରରେ ଯାହାପ୍ରତି ଯାହା ଉଚିତ ତାହାପ୍ରତି ତାହାହିଁ ବ୍ୟବସ୍ଥା କରୁଅଛନ୍ତି । ଏହିହେତୁରୁ ମନୁଷ୍ୟ ସବୁ ପ୍ରକାରର ଅବସ୍ଥା-ବ୍ୟବସ୍ଥା, କର୍ମାକର୍ମ, ଭୋଗାଭୋଗ, ସୁଖ-ଦୁଃଖ, ଧର୍ମାଧର୍ମ, ଜ୍ଞାନାଜ୍ଞାନ, ଉଚିତା-ନୁଚିତ ଓ ଉନ୍ନତି ଅବନତି ଏବଂ ଆୟୁର ପରିମାଣାଦି ସମୁଦାୟ ସଂସାରୀୟ ଭୋଗାଦି ପ୍ରତ୍ୟେକରେ ବିଭିନ୍ନ ପ୍ରକାରରେ ସଂଦୃଷ୍ଟ ହେଉଅଛି । ଏହି ଅନାଦି ଦେହାତ୍ମବାସନା, ଦୈବ ଏବଂ ନିୟତି—ଏହି ତିନୋଟି ପୂର୍ବ ପୂର୍ବ ଅତୀତ ଜନ୍ମ ଏବଂ ଉପସ୍ଥିତ ଜନ୍ମ ଓ ପର ପରର ଭବିଷ୍ୟତ ଜନ୍ମାଦିର ହେତୁ । ଏ ସ୍ଥଳେ ପୂର୍ବାପର ଜନ୍ମ ସ୍ୱୀକାର୍ଯ୍ୟ । ତାହା ନ ଥାଇ ଏହିମାତ୍ର ଏକକ ଗଣ୍ୟ ସ୍ଥାୟୀ କାଳାନ୍ତର୍ବର୍ତ୍ତୀ ଆୟୁ ମଧ୍ୟରେ ମନୁଷ୍ୟର ଯଦି ସଂସାରଲୀଳା ଶେଷ ହୋଇ ଆଉ ଘଟିବାର ନ ଥାନ୍ତା, ତେବେ ଏହି ସଂସାରର ନିତ୍ୟାବସ୍ଥାନ ଏବଂ ମନୁଷ୍ୟର ବାସନାଦି ଏପରି ଦୃଢ଼ତମ ଭାବରେ ମରଣମୁହୂର୍ତ୍ତ ପର୍ଯ୍ୟନ୍ତ ରହନ୍ତା ନାହିଁ । ମନୁଷ୍ୟ ତ କଦାଚ ବାସନାଶୂନ୍ୟ ନୁହେ, ଆଉ ସେହି ବାସନା ଆୟୁ ମଧ୍ୟରେ କ୍ଷୟ ନ ହୋଇ ସର୍ବଦା ଯେପରି ରହୁଅଛି, ସେହିପରି ସେ ସର୍ବଦା ବାସନାଧୀନ ଓ ବାସନାନୁଗତ ଦେହସଂସାର କଳ୍ପନା କରୁଅଛି । ଏହି କଳ୍ପନା ପରଜନ୍ମର ହେତୁ ଅଟେ ।

ମନୁଷ୍ୟ ମଧ୍ୟରେ କେତେକ ମତରେ ଯେ ପୂର୍ବାପର ଜନ୍ମ ଅସ୍ୱୀକାର କରାଯାଏ, ତାହାର କାରଣ ଏହି ଯେ, ଏହି ଚିରସଙ୍ଗୀ ଦେହାତ୍ମବାସନା ଦୈବ ଏବଂ ନିୟତ୍ୟାଦିର ସଂଜ୍ଞା ଏବଂ ସ୍ୱରୂପ-ଲକ୍ଷଣାଦି ସେଠାରେ ଅନୁଭୂତ ବା ଅଭ୍ରାନ୍ତଭାବେ ପ୍ରମାଣିତ ଏବଂ ପରିଦୃଷ୍ଟ ହୋଇ ପାରେନାହିଁ । ଆହୁରି ମଧ୍ୟ ଏହି ଦେହର ପୂର୍ବକାଳୀନ ଏବଂ ପର-କାଳୀନ ଅବସ୍ଥାଦି ସ୍ୱଭାବତଃ ସମ୍ପୂର୍ଣ୍ଣରୂପେ ଅପରିଜ୍ଞାତ ଅଥଚ ଜାଣିବାର ଉପାୟ ନାହିଁ । ସୁତରାଂ ଆମ୍ଭାକୁ ଏହି ଉପସ୍ଥିତ ଜନ୍ମ ପରେ ଏବଂ ପୂର୍ବରୁ ମଧ୍ୟ ଅଜ୍ଞାତ ଅନ୍ଧକାର ରାଜ୍ୟରେ ଛାଡ଼ିଦେଇ ଏକପ୍ରକାରେ ନିଷ୍କୃତି ଲଭି ସୁଖ ନିଃଶ୍ୱାସ ଫେରାଇବାକୁ ହେଉ-ଅଛି । ଘୋଡ଼ିହୋଇ ପଡ଼ିଗଲେ କି ରୋଗ-ଯନ୍ତ୍ରଣା ବା ମୃତ୍ୟୁ ଛାଡ଼ିଦେବ ? ନା ନା, କଦାଚ ନୁହେ । ଭଜ ଗୋବିନ୍ଦଂ ସ୍ମର ଗୋବିନ୍ଦଂ ଗୋବିନ୍ଦଂ ଭଜ ମୂଢ଼ମତେ ।

ଏହି ପ୍ରବନ୍ଧର ମୂଳରେ ଯେଉଁ ପ୍ରଶ୍ନ ହୋଇଥିଲା, 'ଜୀବ ସ୍ୱୟଂ କର୍ତ୍ତା, ବା ପରମେଶ୍ୱର, ବା ପ୍ରକୃତି, ଅଥବା ସ୍ୱପ୍ନପର ବା ମୃଗତୃଷ୍ଣାନ୍ୟାୟ ଏହାର ପ୍ରଣୀତ ? ଆଉ ଏ ସଂସାର କଣ ? ଏହାର ଅବସ୍ଥିତି ବା କି ପ୍ରକାର ?' ଏହାର ଉତ୍ତରରେ ଏହି ସମୁଦାୟ ପ୍ରବନ୍ଧଟି ଉଲ୍ଲିଖିତ ହେଲା । ଅତଏବ ଏହାର ପଠନ ଏବଂ ମର୍ମାର୍ଥ ଜ୍ଞାନରେ ଏ ସବୁ ପ୍ରଶ୍ନର ଉତ୍ତର ଅଛି । ୮

ବର୍ତ୍ତମାନ ଏତିକିମାତ୍ର କହି ଏହି ଉପସଂହାର ଶେଷ କରାଯାଉଅଛି । ସମ୍ପ୍ରତି ଉପସ୍ଥିତ ଏହି ସଂସାରରେ ଜୀବନ୍ତ ଦଶାରେ ଜୀବପଦବାଚ୍ୟ ମାନବ ସଚେତ ଅବସ୍ଥାରେ ମନେ ମନେ ଯେଉଁ ଯେଉଁ ଉଦ୍ଦେଶ୍ୟ କଳ୍ପନା କରୁଅଛି ଏବଂ ତଦନୁସାରେ ମଧ୍ୟ ସ୍ଥଳବିଶେଷରେ ଫଳଲାଭ କରୁଅଛି; କର୍ମବାହୁଲ୍ୟ ଏବଂ ସଂକଳ୍ପ ବାହୁଲ୍ୟ ବଶରୁ ଅନେକ କର୍ମ ଏବଂ ଫଳ ସୁସିଦ୍ଧ ହେଉଥିବାରୁ ମନୁଷ୍ୟ ମୋଟ ଉପରେ ଆତ୍ମାକୁ କର୍ତ୍ତା ଏବଂ ଭୋକ୍ତା ବୋଲି ମୋହପ୍ରଯୁକ୍ତ ମାନି ନେଉଅଛି; ମାତ୍ର ଅନେକ ସ୍ଥଳରେ ସେ ନିଜ ବିବେକ ବିରୁଦ୍ଧରେ ନିଜେ କାର୍ଯ୍ୟ କରୁଅଛି ଏବଂ କେତେକ ସ୍ଥଳରେ ତାହାକୁ ବାଧ୍ୟ ହୋଇ ମଧ୍ୟ ତାହାର ଇଚ୍ଛାବିରୁଦ୍ଧରେ ବଳପୂର୍ବକ କେତେକ କାର୍ଯ୍ୟ ଯେପରି ଅନ୍ୟ ହେତୁରେ କରିବାକୁ ହେଉଅଛି, ପୁଣି ଉଦ୍ଦିଷ୍ଟ କର୍ମାନୁଯାୟୀ ଫଳ ଯେ ସମୟେ ସମୟେ ବିପରୀତ ହେଉଅଛି, ଆଉ ଇଚ୍ଛା ବିରୁଦ୍ଧରେ ଓ ଯତ୍ନ କରୁଥିଲେ ମଧ୍ୟ ଦୁଃଖ-ଯନ୍ତ୍ରଣା, ପ୍ରିୟବିଯୋଗ ଏବଂ ଆତ୍ମବିୟୋଗାଦି ବହୁ ବହୁ ଅମଙ୍ଗଳ ସଂଘଟନର ସୂତ୍ରପାତ ହେଉଅଛି, ଏସବୁ ବେଳରେ ଭ୍ରାନ୍ତଭାବରେ ବାତୁଳପ୍ରାୟ କେଜାଣି ଏ କଣ କାହିଁକି ହେଲା ବା ସଂସାର ଏହିପରି ବୋଲି କହି ସ୍ୱଭାବ ନିକାଶ କରି ଦେଉଅଛି, ମାତ୍ର ଏହା ଠିକ୍ ସିଦ୍ଧାନ୍ତ ହେଲା କି ? ଏହି ମହାସମାରୋହପୂର୍ଣ୍ଣ ବିଚିତ୍ର ସଂସାରରେ ଏବଂ ପ୍ରାଣୀବର୍ଗର ଜନ୍ମ-ମରଣ ପ୍ରବାହରେ ଏବଂ କର୍ମ-ଭୋଗାଦିର ମୂଳରେ ଯେଉଁ ଯୁକ୍ତିଯୁକ୍ତ ନିୟମାବଦ୍ଧ ଦୃଢ଼ ସିଦ୍ଧାନ୍ତ ବ୍ୟବସ୍ଥା ବିଦ୍ୟମାନ, ତାହା ଅଭାବରେ ଏ ସଂସାର ଅକ୍ଷୟ ଦଣ୍ଡାୟମାନ ରହିପାରେ କି ? ଅତଏବ ଜୀବପ୍ରବାହମୟ ସଂସାର ସଂସ୍ଥିତି ପକ୍ଷରେ ସର୍ବମୟ ପରମେଶ୍ୱର ଏବଂ ତାଙ୍କର ଅଚିନ୍ତ୍ୟଶକ୍ତିସୃଷ୍ଟ ଲୀଳାବୈଚିତ୍ର୍ୟର ସଂଘଟନ ବଳରେ ଜୀବୋପାଧିଗତ ଦେହାତ୍ମବାସନା, ଦୈବ ଏବଂ ନିୟତି, ଏପରି ସମସ୍ତ ପ୍ରକୃତିତତ୍ତ୍ୱାଦି କାରଣରୂପେ ବିଦ୍ୟମାନ ରହିଅଛନ୍ତି, ଆଉ ପ୍ରବାହରୂପେ ସତ୍ୟ ନିତ୍ୟ ଆକାରରେ ଏହି ସଂସାର ଏବଂ ଜୀବସୃଷ୍ଟି ନିତ୍ୟ ସ୍ଥାୟୀ ହୋଇଅଛି । ଅତଏବ ଜ୍ଞାନ, ତତ୍ତ୍ୱ, ବିବେକ, ଭକ୍ତି, ଯୋଗାବଲମ୍ବନ ଇତ୍ୟାଦି ଈଶ୍ୱରୀୟ ସତ୍ୟପନ୍ଥା ଅବଲମ୍ବନ କରି ଏ ଦୁସ୍ତର ମାୟାଦୃଶ୍ୟରୁ ନିବୃତ୍ତି ଓ ମୁକ୍ତି ଲାଭ କରିବା ଆମ୍ଭର ଧର୍ମ ଏବଂ କର୍ତ୍ତବ୍ୟ ଅଟେ । ହରୟେ ନମଃ । ଇତି ।

ଯାଇବାକୁ ନାହିଁ ଆଉ ଆଉ ନାହିଁ ମନେ
କହି ନାହିଁ କହିବାକୁ ଅଧିକ ବଚନେ । ୨୨୩ ।
ସର୍ବଜ୍ଞ ସରବମୟ ସର୍ବ ସର୍ବେଶ୍ବର
ଅଧିକ କହିବା ଲଜ୍ଜା ସମାନ ତୁମ୍ଭର । ୨୨୪ ।
କୀଟାଣୁ ପକ୍ଷରେ ମଧ୍ୟ ହେବ ଗୁରୁତର
ଏହିଠାରେ ସବୁ ଦୋଷ ପ୍ରଭୁ କ୍ଷମାକର । ୨୨୫ ।

କ୍ଷମା ଦୟା ଜ୍ଞାନ ଧର୍ମ ସକଳ ତୋଠାଇଁ
ଦରଶନ ମିଳୁ ପ୍ରଭୁ ବ୍ରହ୍ମାଣ୍ଡ ଗୋସାଇଁ । ୨୨୬ ।
ସର୍ବୈଶ୍ବର୍ଯ୍ୟ ସର୍ବ ଧର୍ମ ଅର୍ଥ କାମ ମୋକ୍ଷ
ସର୍ବସିଦ୍ଧଧାମ ତୁମ୍ଭେ ସିଦ୍ଧ କଳ୍ପବୃକ୍ଷ । ୨୨୭ ।
ହେଲେ ସୁଧା ଫଳମୟ ଏ ବୃକ୍ଷ ଦର୍ଶନ
ଅନ୍ୟ ଫଳ ସବୁ ତୁଚ୍ଛ ଯଥା ବାନ୍ତ୍ୟାଶନ । ୨୨୮ ।

ଭାବକୁ ନିକଟ ହରି ନିକଟରେ ଦୃଶ୍ୟ
ଅଭାବକୁ ଅତି ଦୂର ବଡ଼ ଅପ୍ରକାଶ୍ୟ । ୨୨୯ ।
ଏ ଭାବ ତୋ' କୃପାଦତ୍ତ ଅନ୍ୟ ମତେ ନାହିଁ
ସେହି କୃପା ଅହେତୁକ ଦାନ ନୁହେ କହି । ୨୩୦ ।
କୃପାର ସାଗର ହରି କରୁଣାନିଧାନ
ସର୍ବମୟ ହରି ହରିମୟ ସର୍ବ ସମ । ୨୩୧ ।

ପ୍ରଣତ ସମ୍ବଳ ହରି ତୁମ୍ଭେ ଦୟାମୟ
ନିଜ ଗୁଣେ ଦୟାକରି ଦରଶନ ଦିଅ । ୨୩୨ ।
ଦୃଶ୍ୟ, ଦ୍ରଷ୍ଟା, ଦର୍ଶନାଦି ସବୁ ଯହିଁ ଲୀନ
ସେ ଦର୍ଶନ ମିଳୁ ପ୍ରଭୁ ସେହି ଦରଶନ । ୨୩୩ ।
ମ୍ଳେଚ୍ଛନିବହନିଧନେ କରେ କରବାଳ
ପାଦତଳଗତ ହେଉ ଭୁବନ ମଣ୍ଡଳ । ୨୩୪ ।

ଆଖି ଲାଖି ରହୁ ସେହି ପାଦପଦ୍ମ ତଳେ
ସର୍ବ ଧର୍ମ, ଭକ୍ତି, ଜ୍ଞାନ ସେବନ୍ତୁ ସେଠାରେ । ୨୩୫ ।
ସମାଧିସିଦ୍ଧ ନିର୍ବାଣେ ଯେ ଅଦ୍ବୈତବ୍ରହ୍ମ
ସର୍ବମତେ ଖ୍ୟାତ ଯେହୁ ପୁରୁଷ ପ୍ରଧାନ । ୨୩୬ ।
ଦେବଦତ୍ତ ଅଶ୍ବପୃଷ୍ଠାସନେ ବୀରବେଶେ
ଅମଳ କମଳ ଶୋଭା ପଦ ଯାର ଦିଶେ । ୨୩୭ ।

---